# ବିଂଶ ଶତାବ୍ଦୀର ଓଡ଼ିଶା - ମୋ ଅନୁଭୂତି

ବିଦ୍ୟାଧର ମିଶ୍ର



ବିଦ୍ୟାପୁରୀ

# ବିଂଶ ଶତାବ୍ଦୀର ଓଡ଼ିଶା
# ମୋ ଅନୁଭୂତି

ଡକ୍ଟର ବିଦ୍ୟାଧର ମିଶ୍ର
ପୂର୍ବତନ କୁଳପତି, ଉତ୍କଳ ବିଶ୍ୱବିଦ୍ୟାଳୟ

ବିଦ୍ୟାପୁରୀ

ISBN : 81-7411-150-6

ପ୍ରଥମ ପ୍ରକାଶ
ଡିସେମ୍ବର ୧୯୯୭

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ଗ୍ରାମସେବକ ପ୍ରେସ୍
ବାଖରାବାଦ, କଟକ ୭୫୩୦୦୨

ପ୍ରଚ୍ଛଦ
ଅସିତ ମୁଖାର୍ଜୀ

ମୂଲ୍ୟ—ଟ ୧୨୦.୦୦

# ମୁଖବନ୍ଧ

ବିଂଶ ଶତାବ୍ଦୀର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ, ପ୍ରାୟ ଅଶୀ ବର୍ଷ ମଧ୍ୟରେ, ମୁଁ ଓଡ଼ିଶାର ଲୋକମାନଙ୍କର ଆର୍ଥିକ ଏବଂ ସାମାଜିକ ଅବସ୍ଥା ଏବଂ ସେଥିରେ କ୍ରମ ପରିବର୍ତ୍ତନ ନିରୀକ୍ଷଣ କରିଛି । ଏହି ଶତାବ୍ଦୀର ଓଡ଼ିଶାର ଏବଂ ଆମ ସମସ୍ତର ଲୋକମାନଙ୍କର ଜୀବନକାଳର ଇତିହାସ ସ୍ପଷ୍ଟ ରୂପେ ଦୁଇ ଭାଗରେ ବିଭକ୍ତ କରି ହେବ । ପ୍ରଥମ ଭାଗ ଶତାବ୍ଦୀର ଆରମ୍ଭରୁ ୧୯୪୭ ମସିହାରେ ଭାରତର ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ଏବଂ ଦ୍ୱିତୀୟ ଭାଗ ୧୯୪୭ ମସିହାରୁ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ । ପ୍ରଥମ ଭାଗରେ ଭାରତବର୍ଷ ପରାଧୀନ ଥିଲା, ୧୯୩୬ ମସିହା ପର୍ଯ୍ୟନ୍ତ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ନଥିଲା ଏବଂ ୧୯୪୮ ମସିହା ପର୍ଯ୍ୟନ୍ତ ଓଡ଼ିଶାର ଗଡ଼ଜାତ ରାଜ୍ୟସବୁ ଓଡ଼ିଶା ପ୍ରଦେଶରେ ମିଶି ନଥିଲା । ରାଜ୍ୟର ସବୁ ଅଞ୍ଚଳରେ ଅଧିକାଂଶ ଲୋକ ଅତି ଦରିଦ୍ର ଥିଲେ, ରାସ୍ତାଘାଟ ଓ ଗମନାଗମନର ସୁବିଧା ନଥିଲା ଏବଂ ଅଧିକାଂଶ ନଦୀରେ ପୋଲ ନଥିଲା । ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଘନ ଘନ ବଢ଼ି, ମରୁଡ଼ି ଏବଂ ବାତ୍ୟା ଏବଂ ଆଭ୍ୟନ୍ତରୀଣ ଜିଲ୍ଲାମାନଙ୍କରେ ମରୁଡ଼ି ହେଉଥିଲା । ସେଥିଯୋଗୁଁ ରାଜ୍ୟର ବିଭିନ୍ନ ଅଞ୍ଚଳରେ ବହୁବର୍ଷ ଦୁର୍ଭିକ୍ଷ ଏବଂ ଖାଦ୍ୟାଭାବ ହେଉଥିଲା । ସବୁଆଡ଼େ ପ୍ରତିବର୍ଷ ଖାଦ୍ୟାଭାବ ଏବଂ ହଇଜା, ବସନ୍ତ ପ୍ରଭୃତି ମହାମାରୀରେ ବହୁଲୋକ ମରିଯାଉଥିଲେ । ରାଜ୍ୟରେ ସ୍କୁଲ, କଲେଜ ଏବଂ ଆଧୁନିକ ଚିକିତ୍ସାଳୟ ସଂଖ୍ୟା ଖୁବ୍ କମ୍ ଥିଲା । ସାଧାରଣ ଲୋକମାନେ ପାରମ୍ପରିକ ସମାଜରେ ଦାରିଦ୍ର୍ୟ, ନିରକ୍ଷରତା, ଦୃଢ଼ ଜାତିଭେଦ, କୁସଂସ୍କାର ଏବଂ ଅନ୍ଧବିଶ୍ୱାସ ମଧ୍ୟରେ ଜୀବନଯାପନ କରୁଥିଲେ । ସାମୂହିକ ଭାବେ ସବୁ ଅଞ୍ଚଳ ଦରିଦ୍ର ଓ ଅନୁନ୍ନତ ଥିଲା । ଗଡ଼ଜାତ ଅଞ୍ଚଳମାନଙ୍କରେ ରାଜା ଏବଂ ଅନ୍ୟ ସବୁ ଅଞ୍ଚଳରେ ଜମିଦାର, ମହାଜନ ଏବଂ ରକ୍ଷଣଶୀଳ ସମାଜପତିଙ୍କର ପ୍ରାଧାନ୍ୟ ଥିଲା । ସେମାନେ ସାଧାରଣ ଲୋକମାନଙ୍କ ଉପରେ ଅତ୍ୟାଚାର କରୁଥିଲେ, ମାତ୍ର ଉତ୍ପୀଡ଼ିତ ଲୋକମାନଙ୍କର ବହୁକାଳ ପର୍ଯ୍ୟନ୍ତ ତାଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ସାହସ ବା ବଳ ନଥିଲା । ପରେ ସେମାନେ ସେ ସାହସ ପାଇଲେ ଏବଂ ସବୁ ପ୍ରକାର ଅନ୍ୟାୟ ଓ ଶୋଷଣ ବିରୋଧରେ ସଂଗ୍ରାମ କଲେ । ସଂଗ୍ରାମ ଫଳରେ ଭାରତବର୍ଷ ସ୍ୱାଧୀନ ହେଲା ଏବଂ ନୂତନ ଓଡ଼ିଶା ରାଜ୍ୟ ଗଠିତ ହେଲା ।

ସ୍ୱାଧୀନତା ପରେ ଦେଶରେ ଗଣତାନ୍ତ୍ରିକ ଶାସନ ପ୍ରତିଷ୍ଠିତ ହେଲା ଏବଂ ୧୯୫୦ ମସିହାରୁ ଗଣତାନ୍ତ୍ରିକ ଶାସନ ମାଧ୍ୟମରେ ଲୋକମାନଙ୍କର ବିଭିନ୍ନ ଦିଗରେ ଆର୍ଥିକ ଓ ସାମାଜିକ ଉନ୍ନତି, ଶିକ୍ଷା ଓ ସ୍ୱାସ୍ଥ୍ୟସେବାର ପ୍ରସାର, ସମାଜରେ ବୈଷୟିକ ଏବଂ ସାମାଜିକ ବୈଷମ୍ୟ ଦୂରୀକରଣ ପ୍ରଭୃତି ପାଇଁ ନାନା ବାଧାବିଘ୍ନ ସତ୍ତ୍ୱେ ଯୋଜନାବଦ୍ଧ ଉଦ୍ୟମ ହେଲା । ଫଳରେ ଶତାବ୍ଦୀର ଶେଷରେ ଲୋକମାନଙ୍କର ଅର୍ଥନୈତିକ ଏବଂ ସାମାଜିକ ଅବସ୍ଥା ବହୁ ପରିମାଣରେ ବଦଳିଗଲା ଏବଂ ସାମୂହିକ ଭାବେ ଆର୍ଥିକ ଓ ସାମାଜିକ ପ୍ରଗତି ହେଲା । ଅର୍ଥନୈତିକ ଉନ୍ନୟନ ଏବଂ ସାମାଜିକ ସଂସ୍କାର ପ୍ରକ୍ରିୟାରେ ରାଜା, ଜମିଦାରମାନଙ୍କର ରାଜୁତି ଲୋପ ହେଲା, ମହାଜନମାନଙ୍କର ପ୍ରାଧାନ୍ୟ କମିଗଲା, ସାମାଜିକ ନେତୃତ୍ୱ ପରିବର୍ତ୍ତିତ ହୋଇଗଲା, ଶିକ୍ଷାର ପ୍ରସାର ହେଲା, ମହାମାରୀ ରୋଗ ଓ ଖାଦ୍ୟାଭାବ କମିଗଲା ଏବଂ ସାମାଜିକ କୁସଂସ୍କାର ଓ ଅନ୍ଧବିଶ୍ୱାସ ବହୁ ପରିମାଣରେ କମିଗଲା । ଅନ୍ୟ ଦିଗରେ ସମାଜରେ ପୁରାତନ ମୂଲ୍ୟବୋଧର ଅବକ୍ଷୟ ଘଟିଲା, ପୁରାତନ ସାମାଜିକ ବ୍ୟାଧି ପରିବର୍ତ୍ତେ ଦୁର୍ନୀତି, ଯୌତୁକ ପ୍ରଥା, ବିଭିନ୍ନ ପ୍ରକାର ଅପରାଧ ଏବଂ ରାଜନୈତିକ ସଂଘର୍ଷ ପ୍ରଭୃତି ବହୁ ନୂତନ ସାମାଜିକ ବ୍ୟାଧି ଏବଂ ଦୁର୍ଗୁଣର ଉଦ୍ଭବ ହେଲା । ବିଂଶ ଶତାବ୍ଦୀର ଏହି ଦୁଇ ଭାଗରେ ଓଡ଼ିଶାର ସାମାଜିକ ଓ ଅର୍ଥନୈତିକ ଅବସ୍ଥା ଏବଂ ତହିଁରେ ପରିବର୍ତ୍ତନ ଆମ ସମୟର ଲୋକମାନେ ଅନୁଭବ କରିଛନ୍ତି ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ, ପ୍ରଥମ ମହାଯୁଦ୍ଧ ସମୟରେ ଜଗତ୍‌ସିଂହପୁର ଜିଲ୍ଲାର ଗୋଟିଏ ଗାଁରେ ମୋର ଜନ୍ମ । ପିଲାଦିନେ ମୁଁ ଗାଁ ଚାଟଶାଳୀରେ ଏବଂ ଅନ୍ୟ ଏକ ଗାଁର ମାଇନର ସ୍କୁଲରେ ପଢ଼ିଥିଲି । ୧୯୪୭ ମସିହା ପୂର୍ବରୁ ମୋର ସ୍କୁଲ, କଲେଜରେ ପଢ଼ିବା ସମୟରେ ଏବଂ ଚାକିରି କରିବାର ପ୍ରଥମାବସ୍ଥାରେ ମୁଁ ଆମ ଅଞ୍ଚଳ ଲୋକଙ୍କର ଉତ୍କଟ ଦାରିଦ୍ର୍ୟ ଏବଂ ଜମିଦାର, ମହାଜନ, ଗାଁ ମାମଲତକାର ଏବଂ ବିଭିନ୍ନ ଜାତିଆଣ ନେତାଙ୍କ କାର୍ଯ୍ୟକଳାପ ଦେଖିଛି । ୧୯୪୨—୪୩ ମସିହାରେ ଗୋଟିଏ ଗଡ଼ଜାତ ରାଜ୍ୟରେ ପ୍ରାୟ ଆଠ ମାସ ରହି ରାଜପରିବାରର ଓ ପ୍ରଜାମାନଙ୍କର ଜୀବନଯାପନ-ପ୍ରଣାଳୀ ନିରୀକ୍ଷଣ କରିଛି । ୧୯୪୩ ମସିହାରେ ବଙ୍ଗ ଦୁର୍ଭିକ୍ଷ ସମୟରେ ଚର ବନ୍ୟା-ପ୍ରପୀଡ଼ିତ ଶଙ୍ଖାରପୁର ଓ ବରି ବନ୍ୟାବିଧ୍ୱସ୍ତ ଅଞ୍ଚଳରେ ବନ୍ୟା ସାହାଯ୍ୟ ବାଣ୍ଟିଛି । ୧୯୫୫ ଏବଂ ୧୯୮୨ ମସିହାରେ ଦଲେଇଘାଇ ଭାଙ୍ଗିବା ପରେ ବନ୍ୟା-ପ୍ରପୀଡ଼ିତ ଲୋକମାନଙ୍କର ଅବସ୍ଥା ଅନୁଧ୍ୟାନ କରିଛି । ବନ୍ୟା ନିରୋଧ ପାଇଁ ମହାନଦୀ ବକ୍ଷରେ ହୀରାକୁଦ ବନ୍ଧ ନିର୍ମାଣ କାର୍ଯ୍ୟ ଦେଖିଛି । ୧୯୩୭ ଏବଂ ୧୯୬୭ ମସିହାର ଅମ ଅଞ୍ଚଳରେ ବାତ୍ୟାମାନ ଦେଖିଛି । ୧୯୩୩ ମସିହାରେ କଟକରେ ଏବଂ କଟକ ଜିଲ୍ଲାର ଗାଁମାନଙ୍କରେ ବ୍ୟାପକ ହଇଜା ଲାଗିବା ଦେଖିଛି, ୧୯୪୦ ମସିହା ପୂର୍ବ ଏବଂ ପରବର୍ତ୍ତୀ କାଳର

ଦରଦାମ୍ ପରିସ୍ଥିତିରେ ମୁଁ ଚଳିଛୁ । ୧୯୪୭ ମସିହା ପୂର୍ବରୁ ରାଜ୍ୟର ଅନୁନ୍ନତ ଅବସ୍ଥା ଏବଂ ବିଗତ ପ୍ରାୟ ପଚାଶ ବର୍ଷ ମଧ୍ୟରେ ଅର୍ଥନୈତିକ ଓ ସାମାଜିକ ପ୍ରଗତିର ସ୍ୱାଦ ନିରୀକ୍ଷଣ କରିଛୁ । ଶିକ୍ଷା ବିଭାଗରେ ୩୭ ବର୍ଷ କାର୍ଯ୍ୟ କରି ଶତାବ୍ଦୀ ମଧ୍ୟରେ ଶିକ୍ଷା ପ୍ରସାର ଓ ଶିକ୍ଷାର ମାନହ୍ରାସ ସହିତ ଓତପ୍ରୋତ ଭାବରେ ଜଡ଼ିତ ହୋଇଛୁ । ୧୯୫୦ ମସିହା ପୂର୍ବରୁ ଆମ ଗ୍ରାମ୍ୟ ଓ ସହର ସମାଜର ମୂଲ୍ୟବୋଧ, ସାମାଜିକ ଜୀବନ ଏବଂ ଶତାବ୍ଦୀ ଶେଷରେ ଲୋକମାନଙ୍କର ନୈତିକ ମୂଲ୍ୟବୋଧର ଅବକ୍ଷୟ, ଦୁର୍ନୀତି, ଅପରାଧ ମାତ୍ରା ବୃଦ୍ଧି, ଯୌତୁକ ଆଦାନ ପ୍ରଦାନ ଏବଂ ରାଜନୈତିକ ସଂଘର୍ଷ ପ୍ରଭୃତି ସାମାଜିକ ବ୍ୟାଧିମାନ ନିରୀକ୍ଷଣ କରୁଛୁ । ଏସବୁ ବିଷୟରେ ମୋର ଅନୁଭୂତି ଏବଂ ଅଭିଜ୍ଞତା ଏ ପୁସ୍ତକରେ ବର୍ଣ୍ଣିତ ହୋଇଛୁ ।

ପୁସ୍ତକଟିର ବିଷୟବସ୍ତୁ ପନ୍ଦରଟି ପରିଚ୍ଛେଦରେ ବର୍ଣ୍ଣିତ ହୋଇଛୁ । ଅନେକ ପରିଚ୍ଛେଦରେ ପ୍ରଥମେ ସେ ବିଷୟରେ କେତେକ ଐତିହାସିକ ତଥ୍ୟ ସହ ଊନବିଂଶ ଶତାବ୍ଦୀର ଅବସ୍ଥା ବର୍ଣ୍ଣନା କରାଯାଇଛୁ ଏବଂ ପରେ ମୋର ବ୍ୟକ୍ତିଗତ ଅଭିଜ୍ଞତା ବର୍ଣ୍ଣନା କରାଯାଇଛୁ । ଐତିହାସିକ ତଥ୍ୟମାନ ଏବଂ ଊନବିଂଶ ଶତାବ୍ଦୀର ପରିସ୍ଥିତି, ଫକୀରମୋହନ, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଭଗବତଚନ୍ଦ୍ର ନାୟକ ଏବଂ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରଭୃତି ଲେଖକମାନଙ୍କ ବହିରୁ ଏବଂ ଅନ୍ୟ ଗବେଷଣା-ବିବରଣୀମାନଙ୍କରୁ ସଂଗୃହୀତ ହୋଇଛୁ । ଶେଷ ପରିଚ୍ଛେଦରେ ପ୍ରଧାନତଃ ପୂର୍ବ ଚଉଦ ପରିଚ୍ଛେଦର ବିଷୟବସ୍ତୁର ସାରାଂଶ ଦିଆଯାଇଛୁ । ସୁତରାଂ ସେଥିରେ କେତେକ ବିଷୟର ପୁନରାବୃତ୍ତି ହେବା ସ୍ୱାଭାବିକ ।

୧୯୨୧ ମସିହାଠାରୁ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଓଡ଼ିଶାରେ ସ୍ୱାଧୀନତା ଏବଂ ଦେଶ ମିଶ୍ରଣ ଆନ୍ଦୋଳନ, ନୂତନ ଓଡ଼ିଶାରାଜ୍ୟ ଗଠନ, ସ୍ୱାଧୀନତା ପରେ ଓଡ଼ିଶା ବିଧାନ ସଭା ଓ ପାର୍ଲିଆମେଣ୍ଟ ପାଇଁ ବହୁବାର ନିର୍ବାଚନ, ମନ୍ତ୍ରିମଣ୍ଡଳ ଗଠନ, ବିଭିନ୍ନ ସମୟରେ ମନ୍ତ୍ରୀ ଓ ରାଜନୈତିକ ନେତାମାନଙ୍କର କାର୍ଯ୍ୟକଳାପ ଏବଂ ଅନ୍ୟ ବହୁ ରାଜନୈତିକ ଘଟଣା ମୁଁ ଦେଖିଛୁ ଏବଂ ସେଗୁଡ଼ିକର ପ୍ରଭାବ ଜୀବନରେ ଅନୁଭବ କରିଛୁ । କର୍ମକ୍ଷେତ୍ରରେ ମଧ୍ୟ ବହୁ ରାଜନୈତିକ ନେତା ଏବଂ ଉଚ୍ଚପଦସ୍ଥ ପ୍ରଶାସକଙ୍କ ସମ୍ପର୍କରେ ଆସି ସେମାନଙ୍କର କାର୍ଯ୍ୟ ଏବଂ ଚରିତ୍ରାଧାର ବିଷୟରେ ପ୍ରତ୍ୟକ୍ଷ ଅଭିଜ୍ଞତା ଅର୍ଜନ କରିଛୁ । ମାତ୍ର ଆମ ସମସ୍ତ ଓଡ଼ିଶାରେ ରାଜନୈତିକ ପରିବର୍ତ୍ତନ ଏବଂ ରାଜନୈତିକ ଓ ପ୍ରଶାସକ ବ୍ୟକ୍ତିବିଶେଷଙ୍କ କାର୍ଯ୍ୟର ମୂଲ୍ୟାୟନ ଏ ପୁସ୍ତକରେ ବର୍ଣ୍ଣନା କରାଯାଇନାହିଁ । କାରଣ ମୋ ବିଚାରରେ ସେଗୁଡ଼ିକ ନିର୍ବିବାଦୀୟ ନୁହେଁ ଏବଂ ସେ କାର୍ଯ୍ୟଗୁଡ଼ିକର ସମସ୍ତ ଦିଗ

ମୋତେ ସଂପୂର୍ଣ୍ଣ ରୂପେ ଜଣାନାହିଁ । ବସ୍ତୁତଃ କୌଣସି ବ୍ୟକ୍ତିବିଶେଷଙ୍କ ନାମ, ତାଙ୍କର କାର୍ଯ୍ୟକଳାପ ଏବଂ ନିନ୍ଦା ବା ପ୍ରଶଂସା ଏ ପୁସ୍ତକରେ ସ୍ଥାନ ପାଇନାହିଁ । କେବଳ ମୋର ଜୀବନ ଏବଂ ବିଂଶ ଶତାବ୍ଦୀର ଓଡ଼ିଶାର ଅର୍ଥନୈତିକ ଓ ସାମାଜିକ ଅବସ୍ଥା, ସେଥିରେ ପରିବର୍ତ୍ତନ ଓ ଶତାବ୍ଦୀର ବିଶେଷ ଘଟଣାବଳୀ ବିଷୟରେ ମୋର ଅନୁଭୂତି ଏଥିରେ ବର୍ଣ୍ଣିତ ହୋଇଛି । ଆମ ସମୟର ଲୋକମାନେ ଏ ପୁସ୍ତକରେ କୌଣସି ନୂତନତ୍ୱ ଦେଖି ନ ପାରନ୍ତି । କାରଣ ବିଭିନ୍ନ ବିଷୟରେ ମୋର ଯାହା ଅନୁଭୂତି, ସେମାନଙ୍କର ମଧ୍ୟ ସେହି ଅନୁଭୂତି ହୋଇଥିବ । ମାତ୍ର ମୋର ଆଶା ଯେ, ଭିନ୍ନ ସମୟରେ ଏବଂ ଭିନ୍ନ ପରିସ୍ଥିତିରେ ବିଂଶ ଶତାବ୍ଦୀର ଓଡ଼ିଶା ବିଷୟରେ ଏହି ଲିପିର ଉପାଦେୟତା ପାଠକମାନେ ଅନୁଭବ କରିପାରିବେ ।

ପରିଶେଷରେ ଅଧ୍ୟାପକ ଡକ୍ଟର ସୂର୍ଯ୍ୟକାନ୍ତ ଦାସ ଏବଂ ପୂର୍ବତନ ପ୍ରଶାସକ ଓ ଲେଖକ ଶ୍ରୀ ବିଷ୍ଣୁଚରଣ ମହାନ୍ତି ଏ ପୁସ୍ତକର ପାଣ୍ଡୁଲିପିର କେତେକ ପରିଚ୍ଛେଦ ପାଠ କରି କେତେକ ମୂଲ୍ୟବାନ୍ ପରାମର୍ଶ ଦେଇଥିବାରୁ ଏବଂ କଟକର 'ବିଦ୍ୟାପୁରୀ' ପୁସ୍ତକ ପ୍ରକାଶନ ପ୍ରତିଷ୍ଠାନର ଅଧିକାରୀ ଶ୍ରୀ ପୀତାମ୍ବର ମିଶ୍ର ଏ ପୁସ୍ତକ ପ୍ରକାଶ କରିବାକୁ ରାଜି ହୋଇଥିବାରୁ ମୁଁ ସେମାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରୁଛି ।

ସୁନ୍ଦର ଭବନ
୭୮୭, ଶହୀଦନଗର, ଭୁବନେଶ୍ୱର

ବିଦ୍ୟାଧର ମିଶ୍ର

# ସୂଚୀପତ୍ର

# ଆମ କାଳ

( ୧ )

ଇତିହାସରେ କୌଣସି ଗୋଟିଏ ଶତାବ୍ଦୀ ସାଧାରଣତଃ ବର୍ଷ ହିସାବରେ ଗଣାଯାଏ । ପ୍ରଥମ ବର୍ଷଠାରୁ ଆରମ୍ଭ କରି ପୂରା ଶହେ ବର୍ଷ ଶତାବ୍ଦୀର ଅନ୍ତର୍ଭୁକ୍ତ କରାଯାଏ । ମାତ୍ର ଏ ଗଣନା କେବଳ ମାମୁଲି । କୌଣସି ଶତାବ୍ଦୀର ପ୍ରଥମ ବର୍ଷ ଗୋଟିଏ ନୂତନ ଯୁଗ ଆରମ୍ଭ କରି ନ ଥାଇ ପାରେ କିମ୍ବା ପୃଥିବୀର ବା କୌଣସି ଦେଶର ଇତିହାସରେ ପ୍ରଥମବର୍ଷ କିମ୍ବା ପ୍ରଥମ ଦଶନ୍ଧିର କୌଣସି ଗୁରୁତ୍ୱ ନ ଥାଇ ପାରେ । ସେ ବର୍ଷ ବା ଦଶନ୍ଧିରେ ପୂର୍ବ ଶତାବ୍ଦୀରେ ପ୍ରଚଳିତ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଜୀବନଧାରାରେ କୌଣସି ପରିବର୍ତ୍ତନ ଆରମ୍ଭ ହୋଇ ନ ପାରିଥାଏ । ସୁତରାଂ ଜନକଷ୍ଟବର୍ତ୍ତୀ ଯେଉଁ ଦଶନ୍ଧିରୁ ଯୁଗାନ୍ତକାରୀ ପରିବର୍ତ୍ତନ ଆରମ୍ଭ ହେବା ଲୋକମାନେ ଜାଣିପାରନ୍ତି, ସେହିଠାରୁ ପ୍ରକୃତରେ ନୂତନ ଶତାବ୍ଦୀ ଆରମ୍ଭ ହେଲି ବୋଲି ଧରନିଅନ୍ତି ।

ବହୁ ଐତିହାସିକ ପୃଥିବୀ ଇତିହାସରେ ଊନବିଂଶ ଶତାବ୍ଦୀର ଶେଷ ଓ ବିଂଶ ଶତାବ୍ଦୀର ଆରମ୍ଭ ୧୯୦୧ ମସିହାରୁ ନ ହୋଇ ୧୯୧୪ ମସିହାରୁ ହୋଇଥିଲି ବୋଲି ମତ ଦିଅନ୍ତି; କାରଣ ୧୯୧୪ ମସିହାରେ ପ୍ରଥମ ବିଶ୍ୱ ମହାଯୁଦ୍ଧ ଆରମ୍ଭ ପର୍ଯ୍ୟନ୍ତ ପୃଥିବୀର ଅଧିକାଂଶ ଦେଶରେ ଊନବିଂଶ ଶତାବ୍ଦୀର ସାମାଜିକ, ଅର୍ଥନୈତିକ ଏବଂ ରାଜନୈତିକ ଜୀବନ-ପଦ୍ଧତି ଅପରିବର୍ତ୍ତିତ ଥିଲି । ପ୍ରଥମ ମହାଯୁଦ୍ଧ ସମୟରୁ ସମଗ୍ର ପୃଥିବୀରେ ନୂତନ ଯୁଗର ଆରମ୍ଭ ହେଲି । ସେଥିଯୋଗୁଁ ଇଂଲଣ୍ଡ ପ୍ରଭୃତି ଦେଶମାନଙ୍କର ଯେଉଁମାନେ ଅର୍ଥନୈତିକ ଇତିହାସ ଲେଖିଛନ୍ତି, ସେମାନେ ୧୯୧୩ ମସିହାକୁ ଊନବିଂଶ ଶତାବ୍ଦୀର ଶେଷବର୍ଷ ବୋଲି ଧରି ନେଇଛନ୍ତି । ଆମ ଦେଶର ଇତିହାସ ମଧ୍ୟ ତଦନୁରୂପ । ପ୍ରଥମ ମହାଯୁଦ୍ଧ ସମୟରୁ ଏ ଦେଶରେ ଅଧିକାଂଶ କ୍ଷେତ୍ରରେ ନୂତନ ଚିନ୍ତାଧାରା ଏବଂ ନୂତନ ଯୁଗ ଆରମ୍ଭ ହେଲି ।

ପ୍ରାଚୀନ କାଳରେ ବିଭିନ୍ନ ବ୍ୟକ୍ତିଙ୍କର ସାମାଜିକ ଜୀବନକାଳକୁ ସାଧାରଣତଃ ଚାରି ଆଶ୍ରମରେ ବିଭକ୍ତ କରାଯାଉଥିଲି । ବ୍ରହ୍ମଚର୍ଯ୍ୟାଶ୍ରମ ଜୀବନର କାର୍ଯ୍ୟକାଳ ପାଇଁ ପ୍ରସ୍ତୁତି ସମୟ, ଗାର୍ହସ୍ଥ୍ୟ ସମୟ ଜୀବନର ମୁଖ୍ୟ କାର୍ଯ୍ୟକାଳ, ବାନପ୍ରସ୍ଥ ସମୟରେ କାର୍ଯ୍ୟସ୍ଥଳରୁ ଧୀରେ ଧୀରେ ଅବସର ଗ୍ରହଣ ଏବଂ ଯତିବ୍ରତ

ଜୀବନର ଶେଷ କାଳ ଓ ସନ୍ନ୍ୟାସ ଜୀବନ । ଏହି ଆଶ୍ରମମାନଙ୍କର ଠିକ୍ ସମୟସୀମା ନିର୍ଦ୍ଧାରିତ ନ ଥିଲା । ତଥାପି ସାଧାରଣତଃ ପ୍ରାୟ ପଚଶ୍ ବର୍ଷ ବୟସ ପର୍ଯ୍ୟନ୍ତ ଲୋକମାନେ ଗାର୍ହସ୍ଥ୍ୟ ଜୀବନ ଏବଂ ବିଭିନ୍ନ ବୃତ୍ତି ଅବଲମ୍ବନ ପାଇଁ ଶିକ୍ଷା ପାଉଥିଲେ, ପଚଶ ବର୍ଷଠାରୁ ପ୍ରାୟ ପଞ୍ଚାବନ ବା ଷାଠିଏ ବର୍ଷ ପର୍ଯ୍ୟନ୍ତ ଗୃହସ୍ଥ ଜୀବନ ଯାପନ କରୁଥିଲେ ଏବଂ ତାପରେ ବଞ୍ଚିଥିବାଯାଏ ବାନପ୍ରସ୍ଥ ଓ ଶେଷ ଜୀବନ କାଟୁଥିଲେ ।

ଆଜିକାଲି ପୂର୍ବ ଆଶ୍ରମ ନ ଥିଲେ ମଧ୍ୟ ସବୁ ଦେଶରେ ଲୋକମାନଙ୍କର ଜୀବନକାଳ ସେହିପରି ତିନି ଭାଗରେ ବିଭକ୍ତ ହୋଇଛି । ପିଲାକାଳରୁ ପ୍ରାୟ ପଚଶ ବର୍ଷ ପର୍ଯ୍ୟନ୍ତ ଲୋକମାନେ ବିଭିନ୍ନ ପ୍ରକାର ବୃତ୍ତିପାଇଁ ଶିକ୍ଷା ପାଉଛନ୍ତି । ତା'ପରେ ପ୍ରାୟ ୩୫ ବର୍ଷ ଗାର୍ହସ୍ଥ୍ୟ ଜୀବନରେ ବିଭିନ୍ନ ବୃତ୍ତି ଅବଲମ୍ବନ କରି ଜୀବିକା ଅର୍ଜନ କରୁଛନ୍ତି । ସେହି ସମୟରେ ସେମାନଙ୍କର ସନ୍ତାନ ସନ୍ତତିଙ୍କର ଜନ୍ମ ଓ ଭବିଷ୍ୟତ ଜୀବନ ପାଇଁ ପ୍ରସ୍ତୁତ ହେଉଛି । ପ୍ରାୟ ୩୫ ବର୍ଷ ଗାର୍ହସ୍ଥ୍ୟ ଜୀବନ ପରେ ସେମାନେ କ୍ରମେ କ୍ରମେ କର୍ମକ୍ଷେତ୍ରରୁ ଅବସର ଗ୍ରହଣ କରୁଛନ୍ତି ଏବଂ ତାଙ୍କ ସ୍ଥାନରେ ତାଙ୍କ ପିଲାମାନେ କର୍ମକ୍ଷେତ୍ରରେ ପ୍ରବେଶ କରୁଛନ୍ତି । ଏ ପ୍ରକ୍ରିୟାକୁ ଆମେ ସାଧାରଣତଃ ଗୋଟିଏ ପୁରୁଷରୁ ଅନ୍ୟ ପୁରୁଷକୁ ଗତି ବୋଲି ଧରି ନେଉଛୁ । ବାଲ୍ୟ, ଯୌବନ, ଜରା ମନୁଷ୍ୟର ପ୍ରାକୃତିକ ଜୀବନର ଅନିବାର୍ଯ୍ୟ ଅବସ୍ଥା । ସେଥିପାଇଁ ସାମାଜିକ ବ୍ୟବସ୍ଥା ହେଉଛି ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ ଓ ବାନପ୍ରସ୍ଥ ପ୍ରଭୃତି ଆଶ୍ରମ । ଏ ପ୍ରକ୍ରିୟା ସବୁ ଦେଶରେ ଏବଂ ସବୁକାଳେ ପ୍ରାୟ ସମାନ ।

ଯେ କୌଣସି ବ୍ୟକ୍ତି ତାର ଜୀବନ-ପଥରେ ଏହି ତିନି ଅବସ୍ଥା ମଧ୍ୟରେ ଗତି କଲାବେଳେ ବହୁ ଅନୁଭୂତି ଓ ଅଭିଜ୍ଞତା ଅର୍ଜନ କରେ । ତା'ର ଜୀବନର ପ୍ରତ୍ୟେକ ଅବସ୍ଥାରେ ପୃଥିବୀରେ, ତାର ଦେଶରେ ଏବଂ ତା'ର ଗୃହପାଖରେ ବହୁ ଘଟଣା ଘଟିଯାଏ । ସେଥିରେ ତାର ଗୁରୁତ୍ୱପୂର୍ଣ୍ଣ ବା ସାଧାରଣ ଭୂମିକା ଥାଇପାରେ କିମ୍ବା ମୋଟେ କିଛି ଭୂମିକା ନ ଥାଇପାରେ । ମାତ୍ର ସେସବୁ ଘଟଣାର ସେ ଏକପ୍ରକାର ସାକ୍ଷୀ । ଇତିହାସରେ ସାକ୍ଷୀର ଭୂମିକା ମଧ୍ୟ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ । ମୁଁ ଅନେକ ସମୟରେ ଭାବେ ଆମ ଭୁବନେଶ୍ୱର, ପୁରୀ କୋଣାର୍କ ମନ୍ଦିର ଓ କାଠଯୋଡ଼ୀ ପଥରବନ୍ଧ ପ୍ରଭୃତି ନିର୍ମାଣ ସମୟରେ ପ୍ରତ୍ୟକ୍ଷଦର୍ଶୀ ଲୋକମାନଙ୍କ ମଧ୍ୟରୁ ଯଦି କେହି କେହି ବିଶଦ ଭାବେ ଲେଖି ଯାଇଥାନ୍ତେ କେଉଁ ରଜାମାନେ କିପରି ଭାବରେ ସେ କୀର୍ତ୍ତିସବୁ ନିର୍ମାଣ କରାଇଲେ, କେଉଁ ଶିଳ୍ପୀ ସେଥିରେ କାର୍ଯ୍ୟକଲେ ଏବଂ ନିର୍ମାଣରେ ବିନିଯୁକ୍ତ ବସ୍ତୁ ସବୁ କେଉଁଠୁ କିପରି ଆସିଲା ଏବଂ କେତେ ଲୋକ କେତେକାଳ ସେ କାମମାନଙ୍କରେ

ଲାଗିଥିଲେ, ତେବେ ଉତ୍ତରପୁରୁଷମାନଙ୍କୁ ସେ ସବୁ ବିଷୟରେ ତଥ୍ୟବିହୀନ କିମ୍ବଦନ୍ତୀ ଉପରେ ଏତେ ନିର୍ଭର କରିବାକୁ ପଡ଼ି ନ ଥାନ୍ତା କିମ୍ବା ସେସବୁ ପୂର୍ବ କୀର୍ତ୍ତିର ଇତିହାସ ଏତେ ବିବାଦମାନ ହୋଇ ନ ଥାନ୍ତା । ସେ ସମୟମାନଙ୍କରେ ଲିଖିତ ମାଦଳା ପାଞ୍ଜିରୁ ଅବଶ୍ୟ ସେ ବିଷୟରେ ଅନେକ ବିବରଣୀ ମିଳେ । ମାତ୍ର ଅନେକ ଐତିହାସିକ ଯଥାର୍ଥ ଭାବରେ ଦେଖାଇଛନ୍ତି ଯେ, ମାଦଳା ପାଞ୍ଜିର ବର୍ଣ୍ଣନାସବୁ ତଥ୍ୟ ଅପେକ୍ଷା କିମ୍ବଦନ୍ତୀରେ ଅଧିକ ପରିପୂର୍ଣ୍ଣ ।

ଅପର ପକ୍ଷରେ ଆମ ସମୟର ପାରାଦ୍ୱୀପ ବନ୍ଦର ଏବଂ ହୀରାକୁଦ ବନ୍ଧ ପ୍ରଭୃତିର ନିର୍ମାଣ-ଇତିହାସର କିମ୍ବଦନ୍ତୀ ଉପରେ ପରିବେଶିତ ନ ହୋଇ ତଥ୍ୟ ଉପରେ ପରିବେଶିତ ହେଉଛି । ସେ ସବୁର ଇତିହାସ ବିଧିବଦ୍ଧ ଭାବରେ ଲିପିବଦ୍ଧ ହେଉଛି ଏବଂ ସେ ଲିପିସବୁ ବିବାଦମାନ ନୁହେଁ । ପାରାଦ୍ୱୀପ ବନ୍ଦର ନିର୍ମାଣ ପାଇଁ ବିରାଟ ପଥରଖଣ୍ଡମାନ ତାପଙ୍ଗରୁ ଆମ ଘର ଆଗରେ ଜାତୀୟ ରାଜପଥରେ ଟ୍ରକ୍‌ରେ ଯାଉଥିଲା । ହୀରାକୁଦ ବନ୍ଧ ନିର୍ମାଣବେଳେ ସ୍ଥାନୀୟ ଲୋକମାନଙ୍କର ପ୍ରତିବାଦ ଓ ମକଦ୍ଦମା, ଆମ ସାଙ୍ଗ ଇଞ୍ଜିନିଅରମାନଙ୍କର ସେଠାରେ ଦିନରାତି କାମ ଏବଂ ଜର୍ମାନୀ ପ୍ରଭୃତି ଦେଶରୁ ଆଗତ ଇଞ୍ଜିନିଅରମାନଙ୍କର ବିଦ୍ୟୁତ୍ ଟରବାଇନ୍ ପ୍ରଭୃତି ବସାଇବା କାର୍ଯ୍ୟର ଆମ୍ଭେମାନେ ପ୍ରତ୍ୟକ୍ଷଦର୍ଶୀ । ଆମ-ସମୟର ବହୁ ଲେଖକ ସେ ସବୁ ନିର୍ମାଣକାର୍ଯ୍ୟର ଠିକଣଠି ବିବରଣୀ ଲେଖି-ଯାଇଛନ୍ତି । ପୂର୍ବକାଳରେ ଏପରି ତଥ୍ୟପୂର୍ଣ୍ଣ ଇତିହାସ ଲେଖିବାର ପଦ୍ଧତି ନ ଥିଲା । ତଥ୍ୟ ସମ୍ବଳିତ ଇତିହାସ ଲେଖିବାର ପଦ୍ଧତି ଆମ ଦେଶରେ ବିଶେଷତଃ ମୁସଲମାନ ଓ ମୋଗଲ ରାଜତ୍ୱ ସମୟରେ ଆରମ୍ଭ ହୋଇଥିଲା ।

ଆମ କାଳରେ ପୃଥିବୀରେ ଓ ଆମ ଦେଶରେ ଘଟିଥିବା ବହୁ ଘଟଣାର ଆମେ ଊଣା ଅଧିକେ ସାକ୍ଷୀ । ମୋର ଜନ୍ମ ୧୯୧୬ ମସିହା ଅଗଷ୍ଟ ପନ୍ଦର ତାରିଖରେ । ୧୯୧୬ ମସିହା ପ୍ରଥମ ମହାଯୁଦ୍ଧର ମଧ୍ୟବର୍ତ୍ତୀ ବର୍ଷ । ଉପରି ଲିଖିତ ମତେ ୧୯୧୪ ମସିହାରେ ଯୁଦ୍ଧ ଆରମ୍ଭରୁ ବିଂଶ ଶତାବ୍ଦୀର ନୂତନ ଯୁଗ ଆରମ୍ଭ ହୋଇଥିଲା । ୧୯୧୬ ମସିହାରୁ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ପ୍ରାୟ ଅଶୀବର୍ଷ ସମୟକୁ ମୁଁ ଆମକାଳ ବୋଲି ମନେକରୁଛି । କହିବାକୁ ଗଲେ ପୁରା ବିଂଶ ଶତାବ୍ଦୀ ଆମକାଳ ଏବଂ ଏ ଶତାବ୍ଦୀରେ ଘଟିଥିବା ଘଟଣାମାନ ଆମ ସମୟର ଘଟଣା ।

ଏହି ଶତାବ୍ଦୀ ଇତିହାସରେ ଏକ ଯୁଗାନ୍ତକାରୀ ଶତାବ୍ଦୀ । ପୂର୍ବ ଶତାବ୍ଦୀ-ମାନଙ୍କ ତୁଳନାରେ ବିଂଶ ଶତାବ୍ଦୀର ଘଟଣାମାନ ପୃଥିବୀ ଇତିହାସରେ ଅଧିକ ଗୁରୁତ୍ୱପୂର୍ଣ୍ଣ । ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ, ଏସିଆ ଓ ଆଫ୍ରିକାର ସବୁଦେଶରେ ଊନବିଂଶ ଶତାବ୍ଦୀର ଉପନିବେଶ ଶାସନ ଲୋପ ଏବଂ ଭାରତ ସହିତ ଏସିଆ ଓ

ଆଫ୍ରିକାର ସବୁ ପରାଧୀନ ଦେଶମାନଙ୍କର ସ୍ୱାଧୀନତା ପ୍ରାପ୍ତି । ପ୍ରଥମ ମହାଯୁଦ୍ଧ ପରେ ରୁଷ୍ ଦେଶରେ କମ୍ୟୁନିଷ୍ଟ ଶାସନ ପ୍ରତିଷ୍ଠା, ଦ୍ୱିତୀୟ ମହାଯୁଦ୍ଧ ପରେ ଚୀନ ଦେଶ, ପୂର୍ବ ୟୁରୋପର ଅଧିକାଂଶ ଦେଶ, ଉତ୍ତର କୋରିଆ, ଭିଏତନାମ୍ ଏବଂ ଆମେରିକା ମହାଦେଶ ନିକଟରେ କ୍ୟୁବା ଦ୍ୱୀପରେ କମ୍ୟୁନିଷ୍ଟ ଶାସନ ପ୍ରତିଷ୍ଠା, ବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ରୁଷଦେଶ ଓ ପୂର୍ବ ୟୁରୋପର ଦେଶମାନଙ୍କରେ କମ୍ୟୁନିଷ୍ଟ ଶାସନର ବିଲୟ ଓ ବିରାଟ ସୋଭିଏତ୍ ରୁଷ ରାଷ୍ଟ୍ରର ବିଭାଜନ, ବିଜ୍ଞାନ ଓ କାରିଗରୀ କ୍ଷେତ୍ରରେ ଅଭୂତପୂର୍ବ ପ୍ରଗତି । ପ୍ରଥମ ମହାଯୁଦ୍ଧ ପରେ ମଟରଗାଡ଼ିର ପ୍ରସାର, ଦ୍ୱିତୀୟ ମହାଯୁଦ୍ଧ ପରେ ବ୍ୟୋମଯାନର ପ୍ରସାର ଏବଂ ପୃଥିବୀର ସବୁ ଦେଶ ମଧ୍ୟରେ ଆକାଶ ପଥରେ ସାଧାରଣ ଯାତାୟାତ, ଆଣବିକ ଶକ୍ତି ଓ ଅସ୍ତ୍ରର ଉଦ୍ଭାବନ ଏବଂ ଦ୍ୱିତୀୟ ମହାଯୁଦ୍ଧ ସମୟରେ ଜାପାନର ହିରୋସୀମା ଓ ନାଗସାକି ସହରରେ ଆଣବିକ ବୋମା ନିକ୍ଷେପ, ମନୁଷ୍ୟର ମହାକାଶ ଯାତ୍ରା ଏବଂ ଚନ୍ଦ୍ର-ପୃଷ୍ଠରେ ଅବତରଣ, ମହାକାଶ-ଯାନ ପ୍ରଭୃତି ମାଧ୍ୟମରେ ଗ୍ରହ-ନକ୍ଷତ୍ରମାନଙ୍କ ବିଷୟରେ ତଥ୍ୟ ସଂଗ୍ରହ, ଚିକିତ୍ସା କ୍ଷେତ୍ରରେ ପେନିସିଲିନ୍ ପ୍ରଭୃତି ବହୁ ଔଷଧ ଓ ଯନ୍ତ୍ରପାତିର ଉଦ୍ଭାବନ ଏବଂ ମନୁଷ୍ୟ ଜୀବନର ପ୍ରତ୍ୟେକ କ୍ଷେତ୍ରରେ କମ୍ପ୍ୟୁଟର ପ୍ରଭୃତି ନବ ନବ ଯନ୍ତ୍ର ଓ ପ୍ରଣାଳୀ ପ୍ରୟୋଗ ବିଂଶ ଶତାବ୍ଦୀର ବିଶେଷ ଘଟଣା-ମାନ । ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଯେଉଁ ବୈଜ୍ଞାନିକ ଓ କାରିଗରୀ ବିଦ୍ୟାର ସୂତ୍ରପାତ ହୋଇଥିଲା, ବିଂଶ ଶତାବ୍ଦୀରେ ତାହାର ପରିପ୍ରକାଶ, ପ୍ରଗତି ଓ ପ୍ରଚଳନ ହେଲା ଏବଂ ଏକବିଂଶ ଶତାବ୍ଦୀରେ ଆହୁରି ଅଧିକ ଅଭିନବ ଜ୍ଞାନର ଉଦ୍ଭାବନ ଓ ପ୍ରସାର ପାଇଁ କ୍ଷେତ୍ର ପ୍ରସ୍ତୁତ ହେଲା ।

ପୃଥିବୀରେ ଏହି ବିରାଟ ପରିବର୍ତ୍ତନ ସଙ୍ଗେ ସଙ୍ଗେ ଭାରତବର୍ଷରେ ରାଜନୈତିକ, ସାମାଜିକ ଏବଂ ଅର୍ଥନୈତିକ କ୍ଷେତ୍ରରେ ବିରାଟ ପରିବର୍ତ୍ତନ ଘଟିଲା । ଊନବିଂଶ ଶତାବ୍ଦୀର ବ୍ରିଟିଶ-ଶାସିତ ଭାରତବର୍ଷ ବିଂଶ ଶତାବ୍ଦୀରେ ସ୍ୱାଧୀନ ହେଲା । ଦ୍ୱିତୀୟ ମହାଯୁଦ୍ଧ ପରେ ଭାରତବର୍ଷ, ଭାରତ, ପାକିସ୍ଥାନ ଏହି ଦୁଇ ଦେଶରେ ବିଭକ୍ତ ହେଲା । ବ୍ରହ୍ମଦେଶ ପୂର୍ବରୁ ଭାରତବର୍ଷରୁ ପୃଥକ୍ ହୋଇ ଯାଇଥିଲା । ପରେ ୧୯୭୧ ମସିହାରେ ବଙ୍ଗଳାଦେଶ ପାକିସ୍ଥାନରୁ ପୃଥକ୍ ହୋଇ ସ୍ୱାଧୀନ ଦେଶ ହୋଇଗଲା । ଊନବିଂଶ ଶତାବ୍ଦୀର ଇଂରେଜଶାସିତ ଭାରତବର୍ଷ ବର୍ତ୍ତମାନ ଭାରତ, ପାକିସ୍ଥାନ ଏବଂ ବଙ୍ଗଳାଦେଶ ରୂପେ ତିନିଗୋଟି ସ୍ୱାଧୀନ ସାର୍ବଭୌମ ରାଷ୍ଟ୍ରରେ ପରିଣତ ହୋଇଛି । ରାଜନୈତିକ ପରିବର୍ତ୍ତନ ସଙ୍ଗେ ସଙ୍ଗେ ଭାରତରେ ପୁରାତନ ସାମାଜିକ, ଅର୍ଥନୈତିକ ଅବସ୍ଥାରେ ବିରାଟ ପରିବର୍ତ୍ତନ ଘଟି ପୁରାତନ ସମାଜ ସ୍ଥାନରେ ନୂତନ ସମାଜ ଗଢ଼ି ଉଠୁଛି ।

ପୃଥିବୀରେ ଏବଂ ଭାରତବର୍ଷରେ ଏହି ପରିବର୍ତ୍ତନ ସହିତ ଓଡ଼ିଶାରେ ମଧ୍ୟ ନବ ଜାଗରଣ ହେଲା । ଏହି ଶତାବ୍ଦୀରେ ଆମ ସମୟରେ ଖଣ୍ଡ-ବିଖଣ୍ଡିତ ଓଡ଼ିଶା ପ୍ରଦେଶ ଏକତ୍ର ହେଲା । ରାଜା ମହାରାଜାଙ୍କ ଗଡ଼ଜାତ ଶାସନ ଲୋପ ହେଲା ଏବଂ ଗଡ଼ଜାତ ରାଜ୍ୟସବୁ ଓଡ଼ିଶା ରାଜ୍ୟରେ ମିଶିଗଲା ଏବଂ ଗଣତନ୍ତ୍ର ପଦ୍ଧତିରେ ଶାସିତ ହେଲା । ଚିର ବନ୍ୟା ଓ ଦୁର୍ଭିକ୍ଷ ପ୍ରପୀଡ଼ିତ ଓଡ଼ିଶାରେ ହୀରାକୁଦ, ରେଙ୍ଗାଲି ପରି ନଦୀବନ୍ଧ, ବାଲିମେଳା ପରି ଜଳ-ବିଦ୍ୟୁତ ପ୍ରକଳ୍ପ ଏବଂ ପାରାଦ୍ୱୀପ ପରି ବନ୍ଦର ହେଲା । ଶିକ୍ଷା-କ୍ଷେତ୍ରରେ ଓଡ଼ିଶାରେ ପାଞ୍ଚଗୋଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା ଏବଂ ପ୍ରାରମ୍ଭରେ ଥିବା ଦୁଇ ତିନି ଗୋଟି କଲେଜ ଓ ମୁଷ୍ଟିମେୟ ସ୍କୁଲ ସ୍ଥାନରେ ଶହ ଶହ କଲେଜ ଏବଂ ହଜାର ସଂଖ୍ୟାରେ ସ୍କୁଲ ହେଲା । ରାଜା, ମହାରାଜା, ଜମିଦାରଙ୍କର ବିଲୟ ହେଲା ଏବଂ ମହାଜନମାନଙ୍କର ପ୍ରତିପତ୍ତି କମିଗଲା । ଏ ସବୁ ପରିବର୍ତ୍ତନ ଆମର ଜୀବନକାଳ ପ୍ରାୟ ଅଶୀବର୍ଷ ମଧ୍ୟରେ ଘଟିଗଲା ।

ଓଡ଼ିଶାରେ ଆମ ସମୟରେ ଯେଉଁସବୁ ପରିବର୍ତ୍ତନ ହେଲା, ସେଥିମଧ୍ୟରୁ ଅଧିକାଂଶଙ୍କର ସୂତ୍ରପାତ ଆମ ପୂର୍ବପୁରୁଷମାନଙ୍କ ସମୟରେ ଆରମ୍ଭ ହୋଇଥିଲା । ସେମାନେ ଆମ ନିକଟବର୍ତ୍ତୀ ପୂର୍ବପୁରୁଷ ଏବଂ ଆମ ବାପା ଓ ଅଜାଙ୍କ କାଳର ଲୋକ । ତାଙ୍କ ପୂର୍ବର ପୁରୁଷମାନଙ୍କର ଜୀବନ ଓ କାର୍ଯ୍ୟକାଳ ଇତିହାସ ଗର୍ଭରେ ପ୍ରାୟ ଲୀନ । ସେମାନଙ୍କର କଥା ଆମ ପ୍ରତ୍ୟକ୍ଷ ବା ପରୋକ୍ଷ ଜ୍ଞାନ ମଧ୍ୟରେ ବିଶେଷ ଭାବରେ ନାହିଁ । ଐତିହାସିକମାନେ କହୁଛନ୍ତି ଯେ, ଓଡ଼ିଶ ର ରାଜା ପ୍ରତାପରୁଦ୍ର ଦେବଙ୍କର ୧୫୬୮ ଖ୍ରୀଷ୍ଟାବ୍ଦରେ ମୃତ୍ୟୁପରେ ଓଡ଼ିଶାରେ ଅନ୍ଧକାର ଯୁଗ ଆରମ୍ଭ ହେଲା । ଷୋଡ଼ଶ ଶତାବ୍ଦୀର ଶେଷ ଭାଗରୁ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଓଡ଼ିଶାର ବୀରପୁରୁଷ ଓ ଜନନେତାମାନଙ୍କ ଜୀବନ ବିଷୟରେ ଆମ ସାଧାରଣ ଲୋକଙ୍କର ବିଶେଷ ଧାରଣା ନାହିଁ । ଷୋଡ଼ଶ ଶତାବ୍ଦୀର ବଳରାମ ଦାସ, ଯଶୋବନ୍ତ ଦାସ, ଅଚ୍ୟୁତାନନ୍ଦ ଦାସ, ଶିଶୁ ଅନନ୍ତ ଦାସ ଓ ଜଗନ୍ନାଥ ଦାସ ପ୍ରଭୃତି ଭକ୍ତକବିମାନଙ୍କ ଲିଖିତ ରାମାୟଣ, ଭାଗବତ, ବହୁ ଭଜନ ଓ ମାଳିକା ପ୍ରଭୃତି ଆଜିଯାଏ ଓଡ଼ିଶାର ପୁରପଲ୍ଲୀରେ ଆଦର ସହକାରେ ପଠିତ ହେଉଛି । ବିଶେଷତଃ ଜଗନ୍ନାଥ ଦାସଙ୍କ ଭାଗବତ ପ୍ରତ୍ୟେକ ଓଡ଼ିଆ ପରିବାରରେ ଆଜିସୁଦ୍ଧା ପଠିତ ହେଉଛି । ଜଗନ୍ନାଥ ଦାସ ୧୪୯୦ ମସିହା ରାଧାଷ୍ଟମୀରେ ଜନ୍ମ ହୋଇଥିଲେ । ଅଠର ବର୍ଷ ବୟସରେ ଶ୍ରୀକ୍ଷେତ୍ରରେ କଳ୍ପବଟ ମୂଳେ ଭାଗବତ ଚର୍ଚ୍ଚା କରୁଥିଲାବେଳେ ତାଙ୍କର ଶ୍ରୀଚୈତନ୍ୟଙ୍କ ସହିତ ଭେଟ ହୋଇଥିଲା ଏବଂ ଶ୍ରୀଚୈତନ୍ୟ ତାଙ୍କୁ 'ଅତିବଡ଼' ଉପାଧିରେ ଭୂଷିତ କରିଥିଲେ । ସେ ଓଡ଼ିଆ ଦାଣ୍ଡି ରାମାୟଣ ଲେଖକ ବଳରାମ ଦାସଙ୍କ ଠାରୁ ଦୀକ୍ଷା ଗ୍ରହଣ କରିଥିଲେ ।

କବି ଦୀନକୃଷ୍ଣ ଦାସଙ୍କ ଜନ୍ମ ବହୁ ପରେ । ୧୬୬୦ ମସିହା ବେଳକୁ ସେ ଜୀବିତ ଥିଲେ ବୋଲି ପ୍ରମାଣ ମିଳେ ।

ମାତ୍ର ଷୋଡ଼ଶ, ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀର ଅନ୍ୟ ବୀରପୁରୁଷ ଓ ଜନନେତାଙ୍କ ଯଶକୀର୍ତ୍ତି ଆମ ଜନମାନସରେ ନାହିଁ । ସେ ସମୟରେ ଓଡ଼ିଶାର ଅଧିକାଂଶ ଅଞ୍ଚଳ କ୍ରମାନ୍ୱୟରେ ମୁସଲମାନ, ମୋଗଲ ଓ ମରହଟ୍ଟାମାନେ ଅଧିକାର କରିଥିଲେ । ଏ ରାଜ୍ୟର ମୂଳପିଣ୍ଡ ପୁରୀ, କଟକ ଓ ବାଲେଶ୍ୱର ଜିଲ୍ଲା ୧୮୦୩ ମସିହାରେ ମରହଟ୍ଟାମାନଙ୍କଠାରୁ ଇଂରେଜମାନେ ଅଧିକାର କରିଥିଲେ । ଏହି ଜିଲ୍ଲାମାନଙ୍କରେ ମଧ୍ୟ ପ୍ରଥମ ତିରିଶ ଚାଳିଶ ବର୍ଷ ସୁସଙ୍ଗଠିତ ଭାବେ ବ୍ରିଟିଶ ରାଜତ୍ୱ ପ୍ରତିଷ୍ଠିତ ହୋଇ ନ ଥିଲା । ୧୮୪୦ ମସିହା ବେଳକୁ ବ୍ରିଟିଶ ଶାସନ ସଙ୍ଗଠିତ ହୋଇ ଯାଇଥିଲା ଏବଂ ସେହି ସମୟରୁ ଓଡ଼ିଆମାନଙ୍କ ମଧ୍ୟରେ ନବ ଚେତନା ଜାତ ହୋଇଥିଲା । ୧୮୪୦ ମସିହାରୁ ୧୮୭୦ ମସିହା ମଧ୍ୟରେ ଜନ୍ମଗ୍ରହଣ କରିଥିବା ମନୀଷୀମାନେ ପ୍ରଥମେ ଏହାର ନେତୃତ୍ୱ ନେଇଥିଲେ । ରାମଶଙ୍କର ରାୟଙ୍କ ଜନ୍ମ ୧୮୩୮ ମସିହାରେ; ଫକୀରମୋହନଙ୍କ ଜନ୍ମ ୧୮୪୩ ମସିହାରେ । ୧୮୪୮ ମସିହାରେ ରାଧାନାଥ ରାୟ ଜନ୍ମ ହୋଇଥିଲେ ଏବଂ ସେହିବର୍ଷ ଉତ୍କଳ ଗୌରବ ମଧୁସୂଦନ ଦାସ ମଧ୍ୟ ଜନ୍ମଗ୍ରହଣ କରିଥିଲେ । ସ୍ୱଭାବ କବି ଗଙ୍ଗାଧର ମେହେରଙ୍କର ଜନ୍ମ ମଧ୍ୟ ଏହି ସମୟରେ । ଊନବିଂଶ ଶତାବ୍ଦୀରେ ଓଡ଼ିଆମାନଙ୍କର ଜାତୀୟତା ଭାବ, ଓଡ଼ିଆ ଭାଷା ସଂରକ୍ଷଣ, ସାହିତ୍ୟ ବିକାଶ ପ୍ରଭୃତି ପାଇଁ ଏମାନଙ୍କର ଅବଦାନ ଊଣାଅଧିକେ ଆମ ଲୋକମାନେ ଜାଣନ୍ତି । ୧୮୪୦ ମସିହା ଆମକାଳଠାରୁ ମୋଟେ ସତୁରି ଅଶୀ ବର୍ଷ ପୂର୍ବ ସମୟ । ସାଧାରଣ ଭାବରେ କହିବାକୁ ଗଲେ ୧୮୪୦ ମସିହା ସମୟରେ ଜନ୍ମ ହୋଇଥିବା ଲୋକମାନେ ଆମ ଅଜା ଓ ଜେଜେବାପାଙ୍କ ସମୟର ଲୋକ । ୧୮୬୬ ମସିହା ନଅଙ୍କ ଦୁର୍ଭିକ୍ଷ ସମୟକୁ ମୋ ଜେଜେବାପାଙ୍କ ଯୌବନ କାଳ । ନଅଙ୍କ ଦୁର୍ଭିକ୍ଷ ବେଳେ ଚୋର ଡକାୟତମାନେ ଧାନ ଲୁଟିଲା ନେଇଯାଉଥିବାରୁ ଜେଜେବାପା ତାଙ୍କ ସାଙ୍ଗସାଥୀଙ୍କ ସହିତ ଦାଣ୍ଡ ବାଡ଼ିଆଡ଼େ ରାତିରେ ଜଗୁଥିଲେ ବୋଲି ଆମ ଘରେ ମୁଁ ଶୁଣିଛି ।

୧୮୭୦ ମସିହାଠାରୁ ୧୮୯୫ ମସିହା ମଧ୍ୟରେ ଯେଉଁମାନେ ଜନ୍ମ ହୋଇଥିଲେ, ସେମାନେ ଆମ ବାପା ପ୍ରଭୃତିଙ୍କ ସମୟର ଲୋକ । ଏହି ସମୟରେ ପଣ୍ଡିତ ଗୋପବନ୍ଧୁ (୧୮୭୭) ଆଚାର୍ଯ୍ୟ ହରିହର (୧୮୭୯), ପଣ୍ଡିତ ନୀଳକଣ୍ଠ (୧୮୮୪), ପଣ୍ଡିତ ଗୋଦାବରୀଶ (୧୮୮୬), ପଣ୍ଡିତ କୃପାସିନ୍ଧୁ ମିଶ୍ର, ବ୍ରଜସୁନ୍ଦର ଦାସ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ସମ୍ବଲପୁରର ଚନ୍ଦ୍ରଶେଖର ବେହେରା (୧୮୭୪) ପ୍ରଭୃତିଙ୍କ ଜନ୍ମ । ନୂତନ ଓଡ଼ିଶା ପ୍ରଦେଶ ଗଠନ, ଓଡ଼ିଶାରେ ଶିକ୍ଷା

ପ୍ରସାର, ସମାଜ ସଂସ୍କାର, ସମାଜସେବା, ସାହିତ୍ୟ ବିକାଶ ଓ ସ୍ୱାଧୀନତା ଆନ୍ଦୋଳନ ପାଇଁ ସେମାନଙ୍କର ଅବଦାନ ଆମ ସମୟର ସମସ୍ତ ଲୋକେ ଜାଣନ୍ତି । ଏମାନେ ସମସ୍ତେ ଆମ ସମୟରେ ବଞ୍ଚିଥିଲେ ଏବଂ କାର୍ଯ୍ୟକ୍ଷମ ଭାବରେ ଦେଶସେବା କରୁଥିଲେ । ଗୋପବନ୍ଧୁ ବାବୁଙ୍କୁ ମୁଁ ଦେଖିନାହିଁ । ଆମେ ମାଇନର ସ୍କୁଲରେ ପଢ଼ିଲାବେଳକୁ ତାଙ୍କର ଦେହାନ୍ତ ହୋଇଯାଇଥିଲା, କିନ୍ତୁ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହର ଦାସ ପ୍ରଭୃତି ଆମ୍ଭେମାନେ ଚାକିରି କରିବାର ଦଶ କୋଡ଼ିଏ ବର୍ଷ ପର୍ଯ୍ୟନ୍ତ କାର୍ଯ୍ୟଦକ୍ଷ ଥିଲେ । କୁଳବୃଦ୍ଧ ମଧୁସୂଦନ ଦାସଙ୍କୁ ମୁଁ ହାଇସ୍କୁଲରେ ପଢ଼ିଲାବେଳେ ଦେଖିଥିଲି । ୧୯୩୪ ମସିହା ଫେବୃଆରୀ ମାସରେ ତାଙ୍କର ଦେହାନ୍ତ ହେଲା । ସେତେବେଳକୁ ଆମେ ଦଶମ ଶ୍ରେଣୀରେ ପଢ଼ୁଥିଲୁ । ୧୯୩୭ ମସିହାରେ କଲେଜରେ ପଢ଼ୁଥିଲାବେଳେ ଓଡ଼ିଶାର ନୂତନ ବିଧାନସଭାରେ ବ୍ରଜସୁନ୍ଦର ଦାସ, ଗୋବିନ୍ଦ ପଟ୍ଟନାୟକ, ବିଶ୍ୱନାଥ ଦାସ ଓ ଗୋଦାବରୀଶ ମିଶ୍ର ପ୍ରଭୃତିଙ୍କର ବକ୍ତୃତା ମୁଁ ଶୁଣିଛି । ଏମାନେ ସମସ୍ତେ ଆମର ନିକଟବର୍ତ୍ତୀ ପୂର୍ବପୁରୁଷ ଥିଲେ ଏବଂ ଆମ ପୁରୁଷର ଲୋକମାନେ କର୍ମକ୍ଷେତ୍ରରେ ମୁଖ୍ୟ ଭୂମିକା ଗ୍ରହଣ କରୁଥିଲାବେଳେ ଏମାନେ ପରିଣତ ବୟସରେ ଆମ୍ଭ-ମାନଙ୍କର ଅଗ୍ରଣୀ ଓ ପଥ-ପ୍ରଦର୍ଶକ ଭାବରେ କାର୍ଯ୍ୟ କରୁଥିଲେ । ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ବିଶ୍ୱନାଥ ଦାସ, ସମାଜ ସଂପାଦକ ରାଧାନାଥ ରଥ ପ୍ରଭୃତି ଗୋପବନ୍ଧୁ ବାବୁ ପ୍ରଭୃତିଙ୍କ କାଳ ଏବଂ ଆମ କାଳର ମଧ୍ୟବର୍ତ୍ତୀ କାଳର ଲୋକ ।

ନୂତନ ଓଡ଼ିଶା ରାଜ୍ୟ ଗଠନ, ଦୁର୍ଭିକ୍ଷ ଓ ମହାମାରୀ ନିରାକରଣ, କୁସଂସ୍କାର ଦୂରୀକରଣ, ଶିକ୍ଷା ପ୍ରସାର-ସହର-ଜୀବନ ପ୍ରସାର, ଗମନାଗମନର ସୁବିଧା, ରାଜା ଜମିଦାରମାନଙ୍କର ଲୋପ ଏବଂ ମହାଜନମାନଙ୍କ ଶୋଷଣ ହ୍ରାସ ପ୍ରଭୃତି ଆମକାଳର ପ୍ରଧାନ ଘଟଣା ଗୁଡ଼ିକର ସୂତ୍ରପାତ ଆମର ଏହି ନିକଟବର୍ତ୍ତୀ ପୂର୍ବପୁରୁଷଙ୍କ ସମୟରେ ହୋଇଥିଲା । ରାଜନୈତିକ ବ୍ୟକ୍ତି ଓ ସରକାରୀ କର୍ମଚାରୀଙ୍କ ଦୌରାତ୍ମ୍ୟ ଓ ଦୁର୍ନୀତି, ଆଇନ ଶୃଙ୍ଖଳାରେ ଅଧୋଗତି, ଶିକ୍ଷା କ୍ଷେତ୍ରରେ ବିଭ୍ରାଟ, ଦରଦାମ୍‌ର ପ୍ରଖର ବୃଦ୍ଧି, ଯୌତୁକ ପ୍ରଭୃତି ସାମାଜିକ ବ୍ୟାଧି ବିଶେଷତଃ ଆମ କାଳର ନୂତନ ଘଟଣା । ସ୍ୱାଧୀନ ଭାରତରେ ଆମକାଳର ସମାଜ ଊନବିଂଶ ଶତାବ୍ଦୀର ରକ୍ଷଣଶୀଳ ସମାଜ ଠାରୁ ଭିନ୍ନ । ଆମ କାଳ ସମାଜ ଉପରେ ଆମ ଉତ୍ତରପୁରୁଷ ତାଙ୍କ କାଳ ଏକବିଂଶ ଶତାବ୍ଦୀରେ ନୂତନ ସମାଜ ଓ ଜୀବନ ଗଢ଼ିବେ । ପୃଥିବୀ ବକ୍ଷରେ ମନୁଷ୍ୟ ଜୀବନକାଳ ଏକ କୋଟି ବର୍ଷରୁ ଅଧିକ ସମୟ ତୁଳନାରେ, ୧୮୪୦ ମସିହାରୁ ବିଂଶ ଶତାବ୍ଦୀ ଶେଷ, ପ୍ରାୟ ଏକଶହ ଷାଠିଏ ବର୍ଷ ବିଶେଷ ଦୀର୍ଘ ସମୟ ବୋଲି ମନେ ହେଉନାହିଁ । ଏହି ଏକଶହ ଷାଠିଏ ବର୍ଷ, ଆମ ଜେଜେବାପା, ବାପା ଏବଂ ଆମର ଏହି ତିନି ପୁରୁଷର କାଳ ।

# ମୋ ଜୀବନ

## ୧

ମୋ ଜୀବନର ପ୍ରାୟ ଅଶୀବର୍ଷର ଘଟଣାମାନଙ୍କ ବିଷୟରେ ସ୍ମୃତିଚାରଣ କରି ମୁଁ ଅନୁଭବ କରୁଛି, ସମ୍ପୂର୍ଣ୍ଣ କାଳଟିକୁ ତିନି ଭାଗରେ ବିଭକ୍ତ କରାଯାଇ ପାରେ । ୧୯୧୬ ମସିହାରୁ ୧୯୪୨ ମସିହା ପର୍ଯ୍ୟନ୍ତ ସମୟ ମୋର ଏବଂ ଆମ ସାଙ୍ଗସାଥୀମାନଙ୍କର ବାଲ୍ୟଜୀବନ ଏବଂ ସ୍କୁଲ କଲେଜମାନଙ୍କରେ ଅଧ୍ୟୟନ କାଳ । ତା'ପରେ ୧୯୪୩ ମସିହାରୁ ୧୯୮୦ ମସିହା ପର୍ଯ୍ୟନ୍ତ ସମୟ ଆମର ମୁଖ୍ୟ କାର୍ଯ୍ୟକାଳ । ୧୯୮୦ ମସିହା ଠାରୁ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଆମ୍ଭମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ସ୍ୱଳ୍ପ କର୍ମ ନିବିଷ୍ଟ ଅବସର କାଳ ।

**ପାଠପଢ଼ା ସମୟ ଏବଂ ପରିବେଶ ଓ ପରିସ୍ଥିତିର ପ୍ରଭାବ**

୧୯୧୬ ଠାରୁ ୧୯୨୨ ମସିହା ପର୍ଯ୍ୟନ୍ତ ଆମ ସମବୟସ୍କ ପିଲାମାନଙ୍କର ହେବୁ ହୋଇ ନ ଥିଲା । ସେ ସମୟର କଥା ଆମ୍ଭମାନଙ୍କର ବିଶେଷ କିଛି ମନେ ନାହିଁ । ୧୯୨୩ ମସିହା ଠାରୁ ୧୯୨୮ ମସିହା ପର୍ଯ୍ୟନ୍ତ ଆମ୍ଭେମାନେ ନିମ୍ନ ପ୍ରାଥମିକ ଏବଂ ଉଚ୍ଚ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ପଢ଼ୁଥିଲୁ । ସେ ସମୟରେ ଆମ ଜୀବନ ଓଡ଼ିଶାର 'ପ୍ରାୟ' ସବୁ ଗାଁର ପିଲାଙ୍କ ଜୀବନ ପରି ଅତିବାହିତ ହୋଇଥିଲା । ଖରାଦିନେ ଖରାବେଳେ ବେତକୋଳି ଓ ଲହଙ୍ଗାକୋଳି ଖୋଜି ଖାଇବା, ଆମ୍ବ ତୋଟାରେ ପାଚିଲା ଆମ୍ବ ଏବଂ କେନ୍ଦୁବଣରେ ପାଚିଲା କେନ୍ଦୁ ତୋଳିବା, ଜାମୁ ଗଛରୁ ଜାମୁକୋଳି ଓ ପିଜୁଳି ଗଛରୁ ପିଜୁଳି ତୋଳି ଖାଇବା, ଗଛ-ମାନଙ୍କରେ ଡାଳମାଙ୍କୁଡ଼ି ଖେଳିବା, ବର୍ଷାକାଳରେ ପାଣିରେ ବୁଡ଼ିବା ଓ କଇଁଫୁଲ ତୋଳିବା, ବର୍ଷାଦିନ ଶେଷରେ ବିଲମୁହଁରେ ଥିବା ଖାଲମାନଙ୍କରେ ଭଉଆବୋହି ମାଛ ଧରିବା, ଦଶହରା ଓ କୁମାର ପୂର୍ଣ୍ଣିମା ସମୟରେ ଜହ୍ନରାତିରେ ଚଙ୍ଗୁଡ଼ି ବାଲୁ ବାଲୁ ପ୍ରଭୃତି ଖେଳ ଖେଳିବା, ଶୀତଦିନେ ବିଶେଷତଃ ମାଘ ଫଗୁଣମାସରେ ମକର ମେଳା, ମାଘସପ୍ତମୀ ମେଳା, ଜାଗରଯାତ୍ରା, ଦୋଳ ମେଳନମାନ ବୁଲି ଦେଖିବା । ଜ୍ୟେଷ୍ଠ ମାସରେ ଶୀତଳଷଷ୍ଠୀ ଓ ଚମ୍ପକ ଦ୍ୱାଦଶୀରେ ଲଢ଼େଇ ଯାତ୍ରା ଦେଖିବା, ରଜରେ ଦୋଳି, ବାଗୁଡ଼ି ଓ ଡୁ ଡୁ

ପ୍ରଭୃତି ଖେଳିବା, ଆଷାଢ଼ ମାସରେ ପାଲଦେଖି ଯିବା ପ୍ରଭୃତି ବହୁ ପ୍ରକାର କାମ ପାଠପଢ଼ା ଭିତରେ ଆମ ପାଇଁ ଥାଏ । ସେଗୁଡ଼ିକ ମଧ୍ୟରେ ପାଠ ପଢ଼ା ଗୌଣ ହୋଇଯାଇଥାଏ । ଜୀବନଟା କେବେ ନୀରସ ନ ଥାଏ । ମନ ସବୁବେଳେ ଚଞ୍ଚଳ ଥାଏ ଏବଂ କଳ୍ପନା-ରାଜ୍ୟରେ ବୁଲୁଥାଏ । ଏଗୁଡ଼ାକ ପ୍ରାୟ ସବୁ ଗାଁ ପିଲାଙ୍କର ପିଲାଦିନର ଅନୁଭୂତି ।

ଆମ ଗାଁଟାର ନାଁ କାଦୁଅପଡ଼ା । ଜଗତ୍‌ସିଂହପୁର ଅଞ୍ଚଳର କଟକ ମାଛଗାଁ ରାସ୍ତା ପାଖର ଗୋଟିଏ ଗାଁ । ଗାଁ ବିଲରେ କେନାଲ ପାଣି ମାଡ଼େ । ଧୋଇ ମରୁଡ଼ିର ବିଶେଷ ପ୍ରଭାବ ନ ଥାଏ । ଗାଁର କାଦୁଅପଡ଼ା ନାଁଟା ଯଥାର୍ଥ । କେହି ଅନୁଭବୀ ବୋଧହୁଏ ଏହି ନାଁଟା ଦେଇଥିବେ, କାରଣ ଗାଁ ବଡ଼ଦାଣ୍ଡରେ ଶୀତ ଓ ଖରାଦିନେ ଆଣ୍ଠୁଏ ଧୂଳି ଏବଂ ବର୍ଷାଦିନେ ଦେଢ଼ଫୁଟ କାଦୁଅ । ଗୋରୁ ଗାଈ ଓ ମଣିଷ ଗାଲି ଶକଟା କାଦୁଅ ରାସ୍ତାକୁ ଖୁବ୍ ଚକଟି ଦେଇଥାନ୍ତି । ରାସ୍ତା ମଝିରେ ଠାଏ ଠାଏ ଆଣ୍ଠୁଏ ପାଣି ଥାଏ । ବର୍ଷାଦିନେ ସେ ରାସ୍ତାରେ ଯିବା ଆସିବା କରିବା କଷ୍ଟକର । ତେବେ ପ୍ରଶ୍ନ ଉଠେ, ପାଖ ଆଖ ସବୁ ଗାଁ' ଦାଣ୍ଡରେ ତ ଏପରି କାଦୁଅ ଥାଏ । ଏହି ଗାଁ'ଟାକୁ କାହିଁକି କାଦୁଅପଡ଼ା ନାଁ ଦିଆଗଲା । ବୋଧହୁଏ ଅନ୍ୟ ଗାଁ'ମାନଙ୍କ ଅପେକ୍ଷା କାଦୁଅର ଘନତା ଏଠାରେ ବେଶି ଥିଲା । ତଥାପି କଉ, ଗଡ଼ିଶା ମାଛ ପଙ୍କରେ ରହିବାକୁ ଭଲପାଉଥିଲା ପରି ଆମକୁ ଏ କାଦୁଅ ପାଣିର ଗାଁ'ଟାରେ ରହିବାକୁ ଭଲ ଲାଗୁଥିଲା । ସେତେବେଳେ ତ ମୁଁ ୟୁରୋପର ବିଭିନ୍ନ ଦେଶର ଗାଁ' ସବୁ ବୁଲି ଦେଖି ନଥିଲି !

ଆମ ପରିବାରଟା ଥିଲା ଗୋଟିଏ ଏକାନ୍ନବର୍ତ୍ତୀ ବଡ଼ ଗୃହସ୍ଥୀ ପରିବାର । ସେଥିରେ ଧାନ, ମୁଗ, ନଡ଼ିଆ, ପରିବାପତ୍ର ପ୍ରଚୁର ପରିମାଣରେ ଉତ୍ପନ୍ନ ହେଉଥିଲା । ଘରେ ଦୁଇ ତିନି ଜଣ ଚାକର, ପାଞ୍ଚ ଛଅ ଜଣ କୋଠିଆ ଏବଂ ଚାରି ପାଞ୍ଚ ଜଣ ବନ୍ଧା ମଜୁରିଆ ସବୁବେଳେ ଥାଆନ୍ତି । ସେମାନେ ସବୁବେଳେ ଚାଷ କାମରେ ବ୍ୟସ୍ତ ଥାଆନ୍ତି । ଘରେ ସବୁବେଳେ ଛଅ ସାତ ଜଣ ପିଲା ଥାଆନ୍ତି । ସେମାନଙ୍କର ଖାଇବା ପିଇବାରେ ଅଭାବ ନ ଥାଏ, କିନ୍ତୁ ଅତି ଗେଲବସରରେ ବଢ଼ି ନ ଥାନ୍ତି । ସମସ୍ତେ ଚାହାଳୀକୁ ପାଠ ପଢ଼ିବାକୁ ଯାଉଥିଲେ । ମାତ୍ର କିଏ କଅଣ ପଢ଼ୁଛି ବା କିପରି ପଢ଼ୁଛି, ତାହା ବଡ଼ ମଣିଷମାନେ ବୁଝୁ ନଥିଲେ । ଝିଅମାନେ ଗୋଟାଏ ଦୁଇଟା ଶ୍ରେଣୀ ପଢ଼ି ପାଠ ଛାଡ଼ି ଦେଉଥିଲେ । ପୁଅମାନେ ପ୍ରାଥମିକ ପାଠ ଶେଷ ପର୍ଯ୍ୟନ୍ତ ପଢ଼ୁଥିଲେ । ସବୁଦିନେ ସ୍କୁଲକୁ ଯିବାକୁ ମନ ଟେକେ ନାହିଁ । ଆଷାଢ଼ ମାସରେ ଥରେ ଥରେ ରାତିଯାକ ବର୍ଷା ହୋଇ ବିଲ ପୋଖରୀ ଭର୍ତ୍ତି ହୋଇଯାଏ । ବର୍ଷା ହେଉଥିଲାବେଳେ

ମନ ଭାରି ଖୁସି ହୋଇଯାଏ, କାରଣ ସକାଳଓଳି ବର୍ଷା ଲାଗି ରହିଲେ ସ୍କୁଲକୁ ଯିବାକୁ ପଡ଼ିବ ନାହିଁ । ଦୁର୍ଭାଗ୍ୟକୁ ସକାଳୁ ବର୍ଷା ଛାଡ଼ିଯାଏ । ପାଣିରେ ନ ଖେଳି ମନଦୁଃଖରେ ସ୍କୁଲକୁ ଯିବାକୁ ହୁଏ । ସ୍କୁଲରେ ଆପଣେ ଅନେକ ଦିନ କହନ୍ତି ପାଠ ପଢ଼ା ବଡ଼ ଦୁଃଖ୍, ପଶ୍ଚାତେ ବଡ଼ ସୁଖ୍ । ଏହି ପରିବେଶରେ ମୋର ପ୍ରାଥମିକ ଶିକ୍ଷା ହୋଇଥିଲା । ତଥାପି ପ୍ରାଥମିକ ପାଠଟାକୁ ଭଲରୂପେ ଧରି ନେଇଥିଲି । ବିଶେଷତଃ ଅଙ୍କ ଓ ମାନସାଙ୍କରେ ଦକ୍ଷତା ଲାଭ କରିଥିଲି । ବସ୍ତୁତଃ ଆଇ· ଏ· ପାଶ୍ କଲା ପର୍ଯ୍ୟନ୍ତ ଅଙ୍କ ପାଠଟା ମୋର ସବୁଠାରୁ ପ୍ରିୟ ବିଷୟ ଥିଲା ଏବଂ ସେଥିରେ ଦକ୍ଷତା ହେତୁ ସବୁ ପରୀକ୍ଷାରେ ମୋର ଭଲ ଫଳ ହେଉଥିଲା । ବି· ଏ· ପଢ଼ିଲାବେଳେ ମୁଁ ଅଙ୍କପାଠ ଛାଡ଼ି ଅନ୍ୟ ବିଷୟମାନ ପଢ଼ିବାରେ ବିଶେଷ ଧ୍ୟାନ ଦେଇଥିଲି ।

ଉଚ୍ଚ ପ୍ରାଥମିକ ପାଠ ଶେଷ ହେବା ପର୍ଯ୍ୟନ୍ତ ଆମେ ଗାଁ ବାହାର ଦୁନିଆରେ କଅଣ ଘଟୁଛି ତାହା ଜାଣି ନଥିଲୁ, ଆମର ଜ୍ଞାନ ଓ ଅଭିଜ୍ଞତା, ଆମ ଗାଁ' ଗାଁ' ସ୍କୁଲ, ଗାଁ' ମହାଜନ ଓ ଜମିଦାରଙ୍କର ତହସିଲ୍‌ଦାର ଓ ମୋହରିର, ଆମ ବନ୍ଧୁବାନ୍ଧବଙ୍କ ପରିବାର ଏବଂ ତାଙ୍କ ଗାଁ ପରିବେଶ ବିଷୟ ମଧ୍ୟରେ ସୀମାବଦ୍ଧ ଥିଲା । ସେଗୁଡ଼ିକ ବ୍ୟତୀତ ଓଡ଼ିଶାର ଅନ୍ୟ ଅଞ୍ଚଳ କିମ୍ବା ଭାରତ ବର୍ଷର ଅନ୍ୟ ପ୍ରଦେଶରେ ଘଟୁଥିବା ବିଷୟ ଆମେ ମୋଟେ ଜାଣୁ ନ ଥିଲୁ ।

୧୯୨୧ ମସିହାରେ ମୁଁ ଆମ ଗାଁ ଠାରୁ ବାର ମାଇଲ ଦୂର ପଞ୍ଚପଲ୍ଲୀ ଗ୍ରାମରେ ଥିବା ମାଇନର ସ୍କୁଲରେ ପଢ଼ିବାକୁ ଗଲି । ସେ ଗାଁ'ଟା ଆମ ଗାଁ' ଠାରୁ ବଡ଼ ଥିଲା, କିନ୍ତୁ ତାର ପରିବେଶ ଆମ ଗାଁ' ଠାରୁ ଭିନ୍ନ ନଥିଲା । ଗାଁ ମଝିରେ ଗ୍ରାମେଶ୍ୱର ମହାଦେବଙ୍କ ପୀଠସ୍ଥଳୀ ପାଖରେ ସ୍କୁଲଟି ଅବସ୍ଥିତ ଥିଲା । ସେ ଗାଁ' ପିଲାଙ୍କ ଜୀବନ ଆମ ଗାଁ' ପିଲାଙ୍କ ଜୀବନଠାରୁ ଭିନ୍ନ ନ ଥିଲା; କିନ୍ତୁ ଆମ ଗାଁ ଛାଡ଼ି ସ୍କୁଲ ଛାତ୍ରାବାସରେ ରହିବା ହେତୁ ଆମ ଜୀବନ ଭିନ୍ନ ହୋଇଗଲା । ଆମେ ସ୍କୁଲର ଶୃଙ୍ଖଳା ଭିତରକୁ ଆସିଲୁ ଏବଂ ସ୍କୁଲର ରୁଟିନ୍ ଅନୁସାରେ ପାଠ ପଢ଼ିବାକୁ ବାଧ୍ୟ ହେଲୁ । ପାଠପଢ଼ା ମଧ୍ୟ ନିୟମିତରୂପେ ହେଉଥିଲା ଏବଂ ପାଠରେ ଆମର ମନ ଲାଗିଗଲା ।

୧୯୨୧ ମସିହା ଠାରୁ ୧୯୩୧ ମସିହା ପର୍ଯ୍ୟନ୍ତ ସମୟରେ ଆମ୍ଭେମାନେ ଯେତେବେଳେ ମାଇନର ସ୍କୁଲରେ ପଢ଼ୁଥିଲୁ, ସେତେବେଳେ ଭାରତର ସ୍ୱାଧୀନତା ଆନ୍ଦୋଳନ, ମହାତ୍ମାଗାନ୍ଧିଙ୍କ କଥା, ବ୍ରିଟିଶ୍ ସରକାରଙ୍କ ଆମ-ଦେଶରେ ରାଜତ୍ୱର ପରିଣାମ ଏବଂ ସେମାନଙ୍କର ଅତ୍ୟାଚାର ବିଷୟରେ ବହୁକଥା ଆମ ଗୋଚରକୁ ଆସିଲା, ସେତେବେଳକୁ ଆମେ ପ୍ରାୟ ତେର ଚଉଦ ବର୍ଷର

ପିଲା ହୋଇଯାଇଥିଲୁ । ଭାରତବର୍ଷରେ ବଗ୍ରେଷ ସ୍ୱାଧୀନତା ଆନ୍ଦୋଳନ ଏବଂ ଗ୍ରାମଆଡ଼େ ସଭା ସମିତିରେ ତାର ପ୍ରଚାର, ଲବଣ ସତ୍ୟାଗ୍ରହ, ମଦ, ଅଫିମ ପ୍ରଭୃତି ଦୋକାନମାନଙ୍କ ଆଗରେ ପିକେଟିଂ, ନେତାମାନଙ୍କର ପିଲାମାନଙ୍କୁ ସ୍କୁଲ, କଲେଜ ଛାଡ଼ିବା ପାଇଁ ଡାକରା, ସ୍କୁଲ କଲେଜର ସବୁ ପିଲାଙ୍କ ଉପରେ ପ୍ରଭାବ ପକାଉଥିଲା । ସେ ସମସ୍ତ ଆମର ଅବୋଧପନାର ସମୟ । ସେ ଆନ୍ଦୋଳନ ସମ୍ବନ୍ଧରେ ଆମ୍ଭେମାନେ ଭାବବହ୍ୱଳ ହେବା ସ୍ୱାଭାବିକ ।

୧୯୩୦ ମସିହା ଲବଣ ସତ୍ୟାଗ୍ରହ ବେଳେ ଆମେ ଷଷ୍ଠଶ୍ରେଣୀରେ ପଢ଼ୁଥିଲୁ । ଗ୍ରୀଷ୍ମଛୁଟି ପୂର୍ବରୁ ଦିନେ ରାଜକୃଷ୍ଣ ବୋସ୍ ଏବଂ ବାଲିସାହିର ନୀଳକଣ୍ଠ ଦାସ ପଞ୍ଚପଲ୍ଲୀର ରାମେଶ୍ୱର ମହାଦେବ ମନ୍ଦିର ସମ୍ମୁଖରେ ଗୋଟିଏ ବଡ଼ ସଭାରେ ବକ୍ତୃତା ଦେବାକୁ ଆସିଲେ । ବେଳବୁଡ଼େ ସଭା ହେଲା ଏବଂ ବକ୍ତା ଦୁଇଜଣ ଉତ୍ତେଜନାପୂର୍ଣ୍ଣ ଓଜସ୍ୱିନୀ ଭାଷାରେ କଂଗ୍ରେସ ଆନ୍ଦୋଳନର କାର୍ଯ୍ୟକ୍ରମ ବୁଝାଇଲେ ଏବଂ ସ୍କୁଲପିଲାମାନଙ୍କୁ ଆନ୍ଦୋଳନରେ ଯୋଗ ଦେବାକୁ ଆହ୍ୱାନ ଦେଲେ । ଫଳରେ ଆମେ କେତେଜଣ ଛାତ୍ର ଆନ୍ଦୋଳନରେ ଯୋଗ-ଦେବାକୁ ସ୍ଥିର କରି ପରଦିନ ସ୍କୁଲକୁ ଗଲୁ ନାହିଁ ଏବଂ କଂଗ୍ରେସ କର୍ମୀଙ୍କ ସହିତ ଜଗତ୍‌ସିଂହପୁରସ୍ଥ ଅଲକାଶ୍ରମକୁ ଯିବାକୁ ସ୍ଥିରକଲୁ । ସ୍କୁଲର ଶିକ୍ଷକମାନେ ପ୍ରମାଦ ଗଣିଲେ ଏବଂ ଏତେ କମ୍ ବୟସରେ ଆନ୍ଦୋଳନରେ ଯୋଗ ନ ଦେଇ ପରେ ଯୋଗ ଦେବାପାଇଁ ଆମକୁ ବୁଝାଇଲେ । ତାଙ୍କ ପ୍ରବର୍ତ୍ତନାରେ ଦୁଇଦିନ ପରେ ଆମେ ସ୍କୁଲକୁ ଫେରିଗଲୁ । ମାତ୍ର ଆନ୍ଦୋଳନର ଉତ୍ତେଜନା ଆମ୍ଭମାନଙ୍କ ମନରେ ବହୁଦିନ ପର୍ଯ୍ୟନ୍ତ ରହିଥାଏ । ସେତେବେଳେ ଆମେ ଖବରକାଗଜ ପଢ଼ୁ ନ ଥିଲୁ, କିନ୍ତୁ ବିଭିନ୍ନ ସୂତ୍ରରୁ ଆନ୍ଦୋଳନର କଥା ଆମ କାନରେ ପଡ଼ୁଥାଏ । ମୋର ମନେ ଅଛି, ସେ ବର୍ଷ ଗ୍ରୀଷ୍ମଛୁଟିରେ ଦିନେ ଆମେ ଦୁଇଜଣ ପିଲା ଖଦଡ଼ ଲୁଗା କିଣିବାକୁ ଅଲକାଶ୍ରମକୁ ଯାଇଥିଲୁ । ଅଲକାଶ୍ରମ ଆମ ଗାଁଠାରୁ ପାଞ୍ଚ ମାଇଲ ଦୂରରେ ଥିଲା । ଖରାବେଳେ ଆମେ ଆଶ୍ରମରେ ପହଞ୍ଚିଲୁ । ରମାଦେବୀ ଆମ ଦୁଇଜଣଙ୍କୁ ଦୁଇଖଣ୍ଡି ଖଦି ଲୁଗା ଦେଲେ । ଖଦିରେ ଧଡ଼ି ନଥିବା ଦେଖି ଆମ୍ଭେମାନେ ମନଦୁଃଖ କଲୁ । ପିଲା ଦୁଇଜଣଙ୍କର ଖଦି ପାଇଁ ଆଗ୍ରହ ଦେଖି ରମାଦେବୀ ନିଜେ ସଙ୍ଗେ ସଙ୍ଗେ ଖଦିରେ କଳାରଙ୍ଗର ଧଡ଼ି ଛାପି ଦେଇଥିଲେ । ଆମେ ପ୍ରାୟ ଛଅମାସ ଖଣ୍ଡେ ତାକୁଡ଼ିରେ ସୂତା କାଟିଥିଲୁ ଏବଂ କଟା ସୂତାରେ ମୁଁ ଆମ ଗାଁ ପାଖ ତନ୍ତୀଘରେ ଖଣ୍ଡେ ଲୁଗା ବୁଣାଇଥିଲି । ମାତ୍ର ଛଅମାସ ପରେ ସେ ଉତ୍ତେଜନା ଆମ ମନରୁ ଆସ୍ତେ ଆସ୍ତେ କମିଗଲା ଏବଂ ଆମେ ପୁଣି ୧୯୩୧ ମସିହାର ମାଇନର ପରୀକ୍ଷାରେ ଭଲ ଫଳ କରିବା ପାଇଁ ପଢ଼ାପଢ଼ିରେ ଲାଗିଗଲୁ ।

ମାଇନର ପରୀକ୍ଷାରେ ପାସ୍ କଲାପରେ ମୁଁ କଟକ ରେଭେନ୍‌ସା-କଲିଜିଏଟ୍ ସ୍କୁଲରେ ୧୯୩୨ ମସିହାଠାରୁ ୧୯୩୭ ମସିହା ପର୍ଯ୍ୟନ୍ତ ପଢ଼ୁଥିଲି । ସେତେବେଳେ ଓଡ଼ିଶା ବିହାର-ଓଡ଼ିଶା ପ୍ରଦେଶର ଗୋଟିଏ ଡିଭିଜନ ଥିବାରୁ ସେଥିରେ ଥିବା ସମସ୍ତ ହାଇସ୍କୁଲ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା । ଓଡ଼ିଶା ଡିଭିଜନରେ ରେଭେନ୍‌ସା କଲିଜିଏଟ୍ ସ୍କୁଲ ସର୍ବୋତ୍କୃଷ୍ଟ ସ୍କୁଲ ଥିଲା ଏବଂ ବହୁବର୍ଷ ମାଟ୍ରିକୁଲେସନ୍ ପରୀକ୍ଷାରେ ସେ ସ୍କୁଲର ପିଲାମାନେ ପ୍ରଥମ ପାଞ୍ଚଜଣଙ୍କ ମଧ୍ୟରେ ରହୁଥିଲେ । ଆମେ ହାଇସ୍କୁଲରେ ପଢ଼ିଲାବେଳେ ଭାରତର ସ୍ୱାଧୀନତା ଆନ୍ଦୋଳନ ଅନେକ ପରିମାଣରେ ଧିମାଇ ଯାଇଥାଏ । ସେତେବେଳକୁ ସାଇମନ୍ କମିସନ୍ ରିପୋର୍ଟ ଦେଇ ସାରିଥାନ୍ତି । ଗାନ୍ଧି ଇର୍‌ଉଇନ୍ ଚୁକ୍ତି ହୋଇଥାଏ । ଭାରତବର୍ଷର ଭାବୀ ସମ୍ବିଧାନ ସ୍ଥିର କରିବା ପାଇଁ ଲଣ୍ଡନରେ ଗୋଟିକ ପରେ ଗୋଟିଏ ଗୋଲଟେବୁଲ୍ ବୈଠକ ବସୁଥାଏ ଏବଂ ଭାରତର ଭିନ୍ନ ନେତାମାନେ ସେଥିରେ ଯୋଗ ଦେବାକୁ ଯାଉଥାଆନ୍ତି । କଂଗ୍ରେସର ନେତାମାନଙ୍କ ମଧ୍ୟରୁ ଅନେକେ ମଝିରେ ମଝିରେ କଟକ ଆସୁଥାଆନ୍ତି । ୧୯୩୪ ମସିହାରେ ଗାନ୍ଧିଜୀ ଓଡ଼ିଶା ଆସିଥିଲେ । କଟକର କାଠଯୋଡ଼ୀ ବାଲିରେ ସଭାରେ ତାଙ୍କ ଭାଷଣ ଶୁଣିବାକୁ ଆମେ ସବୁ ଉପସ୍ଥିତ ଥିଲୁ । ଖରାଦିନ ସନ୍ଧ୍ୟାବେଳ ସମୟ । ଗାନ୍ଧିଜୀଙ୍କ ସଙ୍ଗେ ସଙ୍ଗେ ବିଭିନ୍ନ ସଭାକୁ ହିନ୍ଦୁ ମହାସଭାର ନେତା ଲାଲ୍‌ନାଥଜୀ କଳା ପତାକା ଧରି ଗାନ୍ଧିଜୀଙ୍କର ଅସ୍ପୃଶ୍ୟତା ନିବାରଣ ଓ ହରିଜନ ସେବା ପ୍ରଭୃତି କାର୍ଯ୍ୟକ୍ରମର ବିରୋଧ କରିବାକୁ ବୁଲୁଥାନ୍ତି । କାଠଯୋଡ଼ୀ-ବାଲି ସଭାରେ ଗାନ୍ଧିଜୀଙ୍କର ଭାଷଣ ପୂର୍ବରୁ ଲାଲ୍‌ନାଥଜୀ ଓ ତାଙ୍କର ସହକର୍ମୀମାନେ କଳା ପତାକା ଧରି ସେଠାରେ ପହଞ୍ଚିଲେ । ସଭାରେ ଉପସ୍ଥିତ ଥିବା ଲୋକମାନେ ଉତ୍ତେଜିତ ହୋଇ ସେମାନଙ୍କ ଉପରକୁ ବାଲି ଫୋପାଡ଼ିଲେ । ଗାନ୍ଧିଜୀ ଏଥିରେ ବ୍ୟଥିତ ହୋଇ ଲୋକମାନଙ୍କୁ ବାଲି ଫୋପାଡ଼ିବାରୁ ବିରତ ହେବାକୁ କହିଲେ । ଲାଲ୍‌ନାଥଜୀ ଓ ତାଙ୍କର ସଙ୍ଗୀମାନଙ୍କୁ ଡାକି ତାଙ୍କ ପାଖରେ ବସାଇ ପ୍ରଥମେ ବକ୍ତୃତା ଦେବାକୁ କହିଲେ । ସେମାନେ କହିସାରିବା ପରେ ଗାନ୍ଧିଜୀ କହିଲେ ଗାନ୍ଧିଜୀଙ୍କୁ ସେହିଦିନ ଆମେ ପ୍ରଥମେ ଦେଖିଲୁ । ଆଗରୁ କେବଳ ତାଙ୍କର ବିରାଟ ବ୍ୟକ୍ତିତ୍ୱ ବିଷୟରେ ଆମେ ଶୁଣିଥିଲୁ । ସେଦିନ ତାଙ୍କର ଉଦାରତା ଓ ସହନ-ଶୀଳତା ଆମେ ଆଖିରେ ଦେଖିଲୁ ଏବଂ ତାଙ୍କର ବକ୍ତୃତା ଶୁଣିଲୁ ।

୧୯୩୫ ମସିହାରେ ପଣ୍ଡିତ ନେହେରୁ ମଧ୍ୟ କଟକ ଆସିଥିଲେ । ସେ କଟକ ଷ୍ଟେସନରୁ ଗୁଡ଼ଗୁଡ଼ିଆତଳିକ ପର୍ଯ୍ୟନ୍ତ ଖୋଲା ମଟରଗାଡ଼ିରେ ବସି ଶୋଭାଯାତ୍ରାରେ ଯାଉଥିଲାବେଳେ ଆମେ ସ୍କୁଲପିଲାମାନେ ମଧ୍ୟ ସେ ଶୋଭା-ଯାତ୍ରାରେ ଯୋଗ ଦେଇଥିଲୁ ।

ହାଇସ୍କୁଲରେ ପଢ଼ିଲାବେଳେ ଆମେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମିତ୍ତ ଆନ୍ଦୋଳନ ବିଷୟରେ ଅବଗତ ହେଲୁ । ୧୯୩୫ ମସିହା ବେଳକୁ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେବ ବୋଲି ସ୍ଥିର ହୋଇ ଯାଇଥିଲା । ସ୍ୱତନ୍ତ୍ର ପ୍ରଦେଶ ହେଲେ ପ୍ରଦେଶର ରାଜଧାନୀ କେଉଁଠାରେ ହେବ, ସେ ବିଷୟରେ ବାଦାନୁବାଦ ଚାଲିଥାଏ । ଗଞ୍ଜାମ ଜିଲ୍ଲାର ନେତାମାନେ ଓଡ଼ିଶାର ରାଜଧାନୀ ଗୋପାଳପୁର ପାଖ ରଙ୍ଗେଇଲୁଣ୍ଡାରେ ହେବାପାଇଁ ଚେଷ୍ଟା କରୁଥିଲେ । ରାଜଧାନୀ ସ୍ଥାନ ନିରୂପଣ କମିଟି ମଧ୍ୟ ତାହା ସୁପାରିସ୍ କରିଥିଲା । ସେଥିପାଇଁ କଟକ ଟାଉନ୍‌ହଲରେ କେତେଥର ପ୍ରତିବାଦ ସଭା ହୋଇଥିଲା । ସେପରି ଗୋଟିଏ ଦୁଇଟି ସଭାରେ ଆମେ ସ୍କୁଲପିଲା ମଧ୍ୟ ଯୋଗ ଦେଇଥିଲୁ । ଗୋଟିଏ ସଭାରେ ଯଦୁମଣି ମଙ୍ଗରାଜ ଓ କଟକର ଓକିଲ ସତ୍ୟନାରାୟଣ ସେନଗୁପ୍ତଙ୍କ ମଧ୍ୟରେ କଳହ ହେଉ ସଭା ଭାଙ୍ଗି ଯାଇଥିବା ଆମେ ଦେଖିଥିଲୁ ।

ହାଇସ୍କୁଲରେ ପଢ଼ିଲାବେଳେ ଆମେ ଓଡ଼ିଶାର ଶୀର୍ଷ ନେତାଙ୍କ ମଧ୍ୟରୁ ଅଳ୍ପ କେତେକ ଲୋକଙ୍କୁ ମାତ୍ର ଦେଖିଥିଲୁ । ସେତେବେଳକୁ ଗୋପବନ୍ଧୁବାବୁଙ୍କ ଦେହାନ୍ତ ହୋଇ ଯାଇଥିଲା । ନବଚୌଧୁରୀଙ୍କୁ ଆମ ଗାଁ ହାଟରେ ଗୋଟିଏ ସଭାରେ ବକ୍ତୃତା ଦେଉଥିବାର ମୁଁ ଦେଖିଥିଲି । ସ୍କୁଲରେ ପଢ଼ିବା ସମୟରେ ୧୯୩୩ ମସିହାରେ ମୁଁ ଉତ୍କଳଗୌରବ ମଧୁସୂଦନ ଦାସଙ୍କୁ ଥରେ ମାତ୍ର କାଠଯୋଡ଼ି ନଦୀକୂଳେ ଦେଖିଥିଲି । ସେତେବେଳକୁ ସେ ଅତି ବୁଢ଼ା ହୋଇ-ଯାଇଥିଲେ । ସେଦିନ ସେ ଗୋଟିଏ ଘୋଡ଼ାଗାଡ଼ିରେ କାଠଯୋଡ଼ି ନଦୀକୂଳେ ବୁଲିବାକୁ ଆସିଥିଲେ । ତାର କେତେ ମାସ ପରେ ୧୯୩୪ ମସିହାରେ ତାଙ୍କର ମୃତ୍ୟୁ ହୋଇଥିଲା । ଆମେ ଅଷ୍ଟମ ଶ୍ରେଣୀରେ ପଢ଼ିଲାବେଳକୁ ବିଜୁ ପଟ୍ଟନାୟକ ଆମ ସ୍କୁଲରେ ଏକାଦଶ ଶ୍ରେଣୀରେ ପଢ଼ୁଥିଲେ । ସ୍କୁଲ କ୍ରୀଡ଼ା ପ୍ରତିଯୋଗିତା ଏବଂ ଫୁଟ୍‌ବଲ ପ୍ରଭୃତି ଖେଳରେ ତାଙ୍କର କୃତିତ୍ୱ ଆମେ ଦେଖିଥିଲୁ । ହାଇସ୍କୁଲରେ ପଢ଼ିଲାବେଳେ ଆମେ କଂଗ୍ରେସ ବା ଦେଶ-ମିଶ୍ରଣ, କୌଣସି ଆନ୍ଦୋଳନରେ ଯୋଗ ଦେଇ ନ ଥିଲୁ । ଆମେ କେବଳ ସେସବୁ ଆନ୍ଦୋଳନ ବିଷୟରେ ଅନେକ କଥା ଜାଣିଥିଲୁ । ସେତେବେଳେ ଆମର ମନୋଯୋଗ ପଢ଼ା ଉପରେ ଥିଲା । ସ୍କୁଲ-ପରୀକ୍ଷାମାନଙ୍କରେ ଉଚ୍ଚସ୍ଥାନ ଲାଭ କରିବାକୁ ଏବଂ ମାଟ୍ରିକୁଲେଶନ୍ ପରୀକ୍ଷାରେ ଉଚ୍ଚଶ୍ରେଣୀରେ ପାସ୍ କରିବା ପାଇଁ ଆମ ଭଲପିଲାଙ୍କ ମଧ୍ୟରେ ତୀବ୍ର ପ୍ରତିଯୋଗିତା ଲାଗିଥାଏ ।

୧୯୩୬ ମସିହାରେ ପାଟନା ବିଶ୍ୱବିଦ୍ୟାଳୟର ମାଟ୍ରିକୁଲେସନ୍ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ୍ କରି ମୁଁ ଓଡ଼ିଶାର ତିନିଗୋଟି ମାସିକ ପନ୍ଦର ଟଙ୍କିଆ

ଉଭିଜନାଲ ସ୍କଲରସିପ୍ ମଧ୍ୟରୁ ଗୋଟିଏ ପାଇଲି ଏବଂ ରେଭେନ୍‌ସା କଲେଜରେ ପ୍ରଥମ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଲି । ୧୯୩୮ ମସିହାରେ ଆଇ. ଏ. ପରୀକ୍ଷା ପ୍ରଥମ ଶ୍ରେଣୀରେ ପାସ୍ କରି ପାଟନା ବିଶ୍ୱବିଦ୍ୟାଳୟରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲି ଏବଂ ମାସକୁ କୋଡ଼ିଏ ଟଙ୍କା ବୃତ୍ତି ପାଇଥିଲି । ସେ ସମୟ ପଢ଼ାପଢ଼ି, ଖେଳ ଓ ବକ୍ତୃତା ପ୍ରତିଯୋଗିତା ପ୍ରଭୃତି ସବୁ ବିଷୟରେ ରେଭେନ୍‌ସା କଲେଜର ସୁବର୍ଣ୍ଣଯୁଗ ଥିଲା ବୋଲି ମୋର ମନେହେଉଛି । ଜିନିଷପତ୍ର ସବୁ ଶସ୍ତା ଥିବାରୁ କଲେଜ ହଷ୍ଟେଲରେ ଆମେ ମାସକୁ ପଚିଶ ଟଙ୍କାରେ ଚଳିଯାଉଥିଲୁ । ମାସକୁ କୋଡ଼ିଏ ଟଙ୍କା ବୃତ୍ତି ପାଉଥିବାରୁ ହଷ୍ଟେଲରେ ଚଳିବାପାଇଁ ମୋର ବିଶେଷ କିଛି ଅସୁବିଧା ହେଉନି ନ ଥିଲା । ସ୍ଥୂଳତଃ ୧୯୩୬ ମସିହାଠାରୁ ୧୯୪୦ ମସିହାରେ ବି. ଏ. ପାସ୍ କଲାପର୍ଯ୍ୟନ୍ତ ସମସ୍ତ ଆମ୍ଭେମାନେ ରେଭେନ୍‌ସା କଲେଜ ହଷ୍ଟେଲରେ ସୁଖରେ ଚଳୁଥିଲୁ ଏବଂ ମୁଁ ମେଧାବୀ ଛାତ୍ରମାନଙ୍କ ମଧ୍ୟରେ ଅନ୍ୟତମ ବୋଲି ଗଣ୍ୟ ହେଉଥିଲି ।

ଆମ୍ଭେମାନେ ଯେଉଁବର୍ଷ ରେଭେନ୍‌ସା କଲେଜର ପ୍ରଥମ ବାର୍ଷିକ ଶ୍ରେଣୀରେ ନାମ ଲେଖାଇଲୁ, ସେହିବର୍ଷ ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା ଏବଂ ଭାରତବର୍ଷରେ ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ପ୍ରବର୍ତ୍ତିତ ହେଲା । ୧୯୩୭ ମସିହାରେ ପ୍ରଥମ ନିର୍ବାଚନ ପରେ ବିଶ୍ୱନାଥ ଦାସଙ୍କ ପ୍ରଧାନ ମନ୍ତ୍ରିତ୍ୱରେ ଓଡ଼ିଶାର ପ୍ରଥମ ମନ୍ତ୍ରିମଣ୍ଡଳ ଗଠିତ ହେଲା । ରାଜଧାନୀ କେଉଁଠାରେ ହେବ, ସ୍ଥିର ହୋଇ ନ ଥିବାରୁ ବିଧାନସଭା ଏବଂ ସଚିବାଳୟ ପ୍ରଭୃତି ପାଇଁ ଘର ତିଆରି ଆରମ୍ଭ ହୋଇ ନ ଥିଲା । ବିଧାନସଭା ରେଭେନ୍‌ସା କଲେଜ ହଲ୍‌ରେ ବସୁଥିଲା । ଆମ୍ଭେମାନେ ବହୁଥର ବିଧାନସଭା ଆଲୋଚନା ଶୁଣିବା ପାଇଁ କଲେଜ ହଲ୍‌ରେ ଦର୍ଶକମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିବା ସ୍ଥାନ-ମାନଙ୍କରେ ବସୁଥିଲୁ । ରାଜଧାନୀ ସ୍ଥାନ ନିରୂପଣ ପାଇଁ ବିଧାନସଭାରେ ହେଉଥିବା ଉତ୍ତେଜିତ ତର୍କ ବିତର୍କ ଆଜିଯାଏ ମୋର ମନେ ଅଛି । ତର୍କ ବିତର୍କ ଶେଷରେ ସ୍ଥିର ହୋଇଥିଲା ଯେ, କଟକକୁ ଲାଗିଥିବା ଚଉଦୁଆରରେ ରାଜଧାନୀ ସ୍ଥାପିତ ହେବ । ସେତେବେଳକୁ ମହାନଦୀ, ବିରୂପା ଓ କାଠଯୋଡ଼ି ନଦୀ-ମାନଙ୍କରେ ରାସ୍ତା ପୋଲସବୁ ହୋଇ ନ ଥାଏ କିମ୍ବା ଜାତୀୟ ରାଜପଥ ହୋଇ ନ ଥାଏ । ପରେ ସେ ରାଜଧାନୀ ସ୍ଥାନ ନିଷ୍ପତ୍ତି ବଦଳିଗଲା ।

୧୯୩୯ ମସିହା ସେପ୍‌ଟେମ୍ବର ମାସରେ ଯୁଦ୍ଧ ଆରମ୍ଭ ହେବା ପରେ ଭାରତବର୍ଷ ଯୁଦ୍ଧରେ ଯୋଗ ଦେବାପାଇଁ ବ୍ରିଟିଶ୍ ସରକାର ସ୍ଥିର କଲେ । କେନ୍ଦ୍ରରେ ସେତେବେଳେ ପର୍ଯ୍ୟନ୍ତ ଭାରତୀୟମାନଙ୍କ ଦ୍ୱାରା ସରକାର ଗଠିତ

ହୋଇ ନ ଥାଏ । ପ୍ରଦେଶମାନଙ୍କରେ ଯେଉଁ ଲୋକ ପ୍ରତିନିଧି ସରକାର ସବୁ ଗଠିତ ହୋଇଥିଲା, ସେଥିରୁ ଅଧିକାଂଶ ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ କାର୍ଯ୍ୟ କରୁଥିଲା । ପ୍ରାଦେଶିକ ସରକାରମାନଙ୍କ ନ ପଚାରି ବ୍ରିଟିଶ କେନ୍ଦ୍ର-ସରକାର ଯୁଦ୍ଧରେ ଯୋଗଦେବା ପାଇଁ ଘୋଷଣା କରିବା ପରେ କଂଗ୍ରେସ-ପରିଚାଳିତ ପ୍ରାଦେଶିକ ସରକାରମାନେ ପ୍ରତିବାଦ କରି ଇସ୍ତଫା ଦେଲେ । ସେହି କାର୍ଯ୍ୟକ୍ରମ ଅନୁସାରେ ବିଶ୍ୱନାଥ ଦାସ ସରକାର ୧୯୩୯ ମସିହା ସେପ୍ଟେମ୍ବର ମାସରେ ଇସ୍ତଫା ଦେଲେ । ଆମ୍ଭେମାନେ ସେତେବେଳେ ଚତୁର୍ଥ ବାର୍ଷିକ ଶ୍ରେଣୀରେ ପଢ଼ୁଥିଲୁ ।

ଓଡ଼ିଶାରେ ଲାଟ ଶାସନ ଚାଲୁଥିଲାବେଳେ ୧୯୪୦ ମସିହା ଜାନୁଆରୀ ୨୬ ତାରିଖ ଦିନ ଛାତ୍ରମାନେ କଲେଜ ଟେନିସ୍ ପଡ଼ିଆରେ ଗୋଟିଏ ସଭା କରି ଜାତୀୟ ପତାକା ଉତ୍ତୋଳନ କରିଥିଲେ । ଏହି ପତାକା ଉତ୍ତୋଳନ ନୀଳମଣି ରାଉତରାୟ ଓ ବିବୁଧେନ୍ଦ୍ର ମିଶ୍ର କରିଥିବାରୁ କଲେଜ ପ୍ରିନ୍‌ସିପାଲ୍ ପ୍ରାଣକୃଷ୍ଣ ପରିଜା ସେ ଦୁଇଜଣଙ୍କୁ ୨୦ ଟଙ୍କା ଲେଖାଏଁ ଜୋରିମାନା କଲେ । ସେ ଦୁଇଜଣଯାକ ଆମ ସଙ୍ଗରେ ଚତୁର୍ଥବାର୍ଷିକ ଶ୍ରେଣୀରେ ପଢ଼ୁଥିଲେ ଏବଂ ସେହିବର୍ଷ ସେମାନଙ୍କର ବି. ଏ. ପରୀକ୍ଷା ଦେବାର ଥିଲା । ସେ ଦୁଇଜଣ ଜୋରିମାନା ଦେବାକୁ ମନା କରିବାରୁ କଲେଜ-କର୍ତ୍ତୃପକ୍ଷ ସେମାନଙ୍କଠାରୁ ପରୀକ୍ଷା ଦେବାପାଇଁ ଫିସ୍ ଗ୍ରହଣ କଲେ ନାହିଁ । ସେତେବେଳକୁ ପରୀକ୍ଷା ପ୍ରାୟ ମାସେଖଣ୍ଡେ ଥାଏ । ନୀଳମଣି ଓ ବିବୁଧେନ୍ଦ୍ରଙ୍କ ପରୀକ୍ଷାଫିସ୍ ଗ୍ରହଣ କରା ନ ଯିବାରୁ ଛାତ୍ରମାନେ ସ୍ଥିରକଲେ ଯେ, ସମସ୍ତ ବି. ଏ. ଏବଂ ଆଇ. ଏ. ପରୀକ୍ଷାର୍ଥୀ ପରୀକ୍ଷା ବର୍ଜନ କରିବେ । ଛାତ୍ରମାନଙ୍କ ମଧ୍ୟରେ ବିରାଟ ଆନ୍ଦୋଳନ ହେଲା ଏବଂ ପରୀକ୍ଷା ପାଞ୍ଚ ସାତ ଦିନ ଆଗରୁ କଲେଜରେ ଧର୍ମଘଟ ହେଲା । ପରୀକ୍ଷା ଆରମ୍ଭର ପୂର୍ବ ଦିନ ପିଲାମାନେ ହଷ୍ଟେଲ ଛାଡ଼ି ଚାଲିଯିବାର କାର୍ଯ୍ୟକ୍ରମ ହେଲା ଏବଂ ସେହି କାର୍ଯ୍ୟକ୍ରମ ଅନୁସାରେ ଆମେ ପରୀକ୍ଷାର୍ଥୀମାନେ ପରୀକ୍ଷା ପୂର୍ବ ଦିନ ରାତିରେ ହଷ୍ଟେଲ ସବୁ ଛାଡ଼ି କଟକ ସହରର ବିଭିନ୍ନ ସ୍ଥାନକୁ ଚାଲିଗଲୁ ।

କର୍ତ୍ତୃପକ୍ଷ କିନ୍ତୁ ପରୀକ୍ଷା କରାଇବା ପାଇଁ ଦୃଢ଼ପ୍ରତିଜ୍ଞ ହୋଇ ସମସ୍ତ ଆୟୋଜନ କଲେ । ପରୀକ୍ଷା ଆରମ୍ଭ ପୂର୍ବଦିନ ରାତିରୁ କଲେଜ ହତା ଚାରିପାଖ ପୁଲିସ୍ ଜଗିନେଲେ । ଆମ୍ଭେମାନେ ସମସ୍ତେ ସହରର ବିଭିନ୍ନ ସ୍ଥାନରେ ରହିଗଲୁ । ଆନ୍ଦୋଳନକାରୀ ପିଲାମାନେ ସ୍ଥିର କରିଥିଲେ ଯେ, ପରୀକ୍ଷା ଆରମ୍ଭଦିନ ପିଲାମାନେ ରାଣୀହାଟ ଏବଂ ଛତ୍ରବଜାର ପୋଲ ଉପରେ ପିକେଟିଂ କରିବେ ଏବଂ କୌଣସି ପରୀକ୍ଷାର୍ଥୀଙ୍କୁ କଲେଜକୁ ଛାଡ଼ିଦେବେ ନାହିଁ । କିନ୍ତୁ ପୁଲିସ୍

ପରୀକ୍ଷା ପୂର୍ବଦିନ ରାତିରେ ଛାତ୍ରମାନଙ୍କର ନେତାମାନଙ୍କୁ ଗିରଫ କରି ଜେଲ୍‌କୁ ନେଇଗଲେ । ତଥାପି ପରୀକ୍ଷା ଆରମ୍ଭ ଦିନ ବହୁଛାତ୍ର ରାଣୀହାଟ ଓ ଛତ୍ରବଜାର ପୋଲପାଖରେ ପିକେଟିଂ କଲେ । କିନ୍ତୁ ପୁଲିସ୍ ବେଶି କିଛି ମାଡ଼ପିଟ୍ ନ କରି ଅନାୟାସରେ ପୋଲମାନଙ୍କ ଉପରେ ପିକେଟିଂ କରୁଥିବା ଛାତ୍ରମାନଙ୍କୁ ଗିରଫ କରି ନେଇଗଲେ ଏବଂ ପରୀକ୍ଷାହଲକୁ ଯିବାପାଇଁ ବାଟ ପରିଷ୍କାର କରିଦେଲେ । ତାହାପରେ ଅଧିକାଂଶ ପରୀକ୍ଷାର୍ଥୀ ପରୀକ୍ଷାରେ ଯୋଗ ଦେଇଥିଲେ ।

ପରୀକ୍ଷା ପୂର୍ବଦିନ ରାତିରେ କଲେଜ ହଷ୍ଟେଲ୍ ଛାଡ଼ି ମୁଁ ମାଟ୍ରିକ ପଢ଼ିଲାବେଳେ ରହୁଥିବା କାଠଯୋଡ଼ୀ ହଷ୍ଟେଲକୁ ଚାଲିଯାଇଥିଲି । ପରୀକ୍ଷା ଦିନ ସକାଳୁ ଗାଧୁଆ ପାଧୁଆ କରି କଲେଜରେ ପରୀକ୍ଷାର୍ଥୀମାନେ ପରୀକ୍ଷା ଦେଉଛନ୍ତି କି ନାହିଁ, ଦେଖିବାକୁ ଆସିଲି । ସେତେବେଳକୁ ଦିନ ଦଶଟା ବାଜିଗଲଣି । ପରୀକ୍ଷା ଦଶଟା ବେଳୁ ଆରମ୍ଭ ହୋଇଯାଇଥାଏ । ମୁଁ ପ୍ରାୟ ତିନିମାଇଲ ବାଟ ଚାଲି ଚାଲି ରାଣୀହାଟ ପୋଲ ପାଖରେ ପହଞ୍ଚିଲା ବେଳକୁ ସେଠାରେ ପିକେଟିଂ ଆଉ ହେଉ ନ ଥାଏ କିମ୍ବା କେହି ଛାତ୍ର ନ ଥାନ୍ତି । ପୁଲିସ୍ ପୋଲ ଉପର ବାଟ ଜଗିଥିଲେ । ମୁଁ କୌଣସି ବାଧା ନ ପାଇ କଲେଜ ପ୍ରଧାନ ଫାଟକଯାଏ ଚାଲିଗଲି । ସେଠାରେ କେତେଜଣ ପ୍ରଫେସର ଥିଲେ ଏବଂ ପରୀକ୍ଷାରେ ଯୋଗ ଦେବାକୁ ଇଚ୍ଛା କରୁଥିବା ଛାତ୍ରମାନଙ୍କୁ ସାହାଯ୍ୟ କରୁଥିଲେ । କଲେଜରେ ଭଲ ପଢ଼ୁଥିବା ଛାତ୍ରମାନଙ୍କ ମଧ୍ୟରେ ଆମ୍ଭମାନଙ୍କ ନାମ ଥିଲା । ଗେଟ୍‌ରେ ଥିବା ଅଧ୍ୟାପକମାନେ ଆଗ୍ରହର ସହିତ ମୋତେ ନିରୂପିତ ସ୍ଥାନରେ ପରୀକ୍ଷା ଦେବାପାଇଁ ବସାଇଲେ । ସେତେବେଳକୁ ପରୀକ୍ଷା ଆରମ୍ଭ ପରେ ପୂରା ଘଣ୍ଟାଟିଏ ଚାଲି-ଯାଇଥିଲା । ପ୍ରଥମ ପରୀକ୍ଷା ଦିନ ଇଂରାଜୀ ପ୍ରଥମ ପତ୍ର ପରୀକ୍ଷା ଥାଏ । ଫେଲ୍ ହୋଇଯିବା ଭୟରେ ଦେହ ଥରୁଥାଏ । ତଥାପି ହଲ ମଧ୍ୟରେ ବସି ପ୍ରଶ୍ନ-ଗୁଡ଼ିକର ଯଥାସାଧ୍ୟ ଉତ୍ତର ଲେଖିଲି ।

ସେହି ପରୀକ୍ଷା ପରେ ଅନ୍ୟ ସବୁ ବିଷୟ ବିନା ଗୋଳମାଳରେ ପରୀକ୍ଷା ହୋଇଗଲା । ଯେଉଁ ଛାତ୍ରମାନେ ଜେଲ୍‌ରେ ଥିଲେ କିମ୍ବା ସେଦିନ ସକାଳେ କଲେଜ ଯାଏ ଆସିପାରି ନ ଥିଲେ, ସେମାନେ ପରୀକ୍ଷା ନ ଦେଇ ରହିଗଲେ । ପ୍ରଥମ ଦିନ ପରୀକ୍ଷା ପରେ ସେଦିନ ରାତିରେ ଆମେ କଲେଜ ହଷ୍ଟେଲକୁ ଫେରି-ଆସିଲୁ । ହଷ୍ଟେଲର ଓ୍ୱାର୍ଡେନ ପ୍ରଫେସର ସୁନ୍ଦରମ୍ ମୋତେ ଏବଂ ମୋର ସହପାଠୀ ଭଗବାନ ବ୍ରଜବନ୍ଧୁ ମିଶ୍ରଙ୍କୁ ଆନ୍ଦୋଳନରେ ମିଶିବା ହେତୁ ବହୁତ ଗାଳିଦେଲେ । ଆମ୍ଭେମାନେ ମନଦୁଃଖରେ ପରୀକ୍ଷାର ସବୁ ପତ୍ରରେ ପରୀକ୍ଷା ଦେଲୁ । ପରୀକ୍ଷା ବର୍ଜନ ଆନ୍ଦୋଳନ ପୂର୍ଣ୍ଣମାତ୍ରାରେ ଭାଙ୍ଗିଗଲା । କିନ୍ତୁ ପରୀକ୍ଷାଫଳ

ବାହାରିଲା ବେଳକୁ ଅନର୍ସରେ ମୋର ପ୍ରଥମ ଶ୍ରେଣୀ ନ ହୋଇ ଦ୍ୱିତୀୟ ଶ୍ରେଣୀ ହୋଇଗଲା । ସେ ବର୍ଷ ଆମ ଅର୍ଥନୀତି ଅନର୍ସରେ ବିଶ୍ୱବିଦ୍ୟାଳୟରେ କେହି ପ୍ରଥମ ଶ୍ରେଣୀରେ ପାସ୍ କରି ନ ଥିଲେ । ବିଶ୍ୱବିଦ୍ୟାଳୟରେ ପ୍ରଥମ ଦ୍ୱିତୀୟ ହେବାର ଆଶା ମଧ୍ୟ ଚୂର୍ଣ୍ଣ ହୋଇ ମୁଁ ପଞ୍ଚମ ହୋଇଗଲି । ପ୍ରଥମରୁ ପଞ୍ଚମ ହୋଇଥିବା ସବୁ ଅନର୍ସ ପିଲାଙ୍କ ନମ୍ବର ପ୍ରଥମ ଶ୍ରେଣୀ ନମ୍ବରଠାରୁ ପନ୍ଦର ନମ୍ବର ମଧ୍ୟରେ କମ୍ ଥିଲା । କଲେଜ ପଢ଼ିବା ସମୟରେ ଏ ଘଟଣା ମୋ' ଜୀବନରେ ସବୁଠାରୁ ବଡ଼ ଧକା ଦେଇଥିଲା । ଦେଶର ରାଜନୈତିକ ପରିସ୍ଥିତି ହେତୁ ଏପରି ଘଟଣାର ଆମେ ସମ୍ମୁଖୀନ ହୋଇଥିଲୁ । ଏହା ବ୍ୟତୀତ ଆମେ ବି. ଏ. ପଢ଼ିଲାବେଳେ କଲେଜରେ ଦୁଇ ତିନଥର ଧର୍ମଘଟ ହୋଇଥିଲା । ସେଥିରେ ଯୋଗଦେବା ହେତୁ ଆମର ସେ ଦିନମାନଙ୍କର ବୃତ୍ତି କଟି ଯାଇଥିଲା ଏବଂ ଆମ୍ଭେମାନେ ପ୍ରିନ୍‌ସିପାଲଙ୍କ ବିଷଦୃଷ୍ଟିରେ ପଡ଼ିଥିଲୁ । ଅନ୍ୟଥା ରେଭେନ୍‌ସା କଲେଜରେ ପଢ଼ିବା ଶେଷବର୍ଷ ସମୟ ଆମ ପକ୍ଷରେ ଶାନ୍ତିମୟ ଥିଲା । ଆମେ ଅନ୍ୟ କୌଣସି ଆନ୍ଦୋଳନରେ ଯୋଗ ନଦେଇ ପଢ଼ାପଢ଼ିରେ ମନୋନିବେଶ କରୁଥିଲୁ ।

୧୯୪୦ ମସିହାରେ ବି ଏ. ପାସ୍ କରି ମୁଁ ପାଟନା କଲେଜରେ ଅର୍ଥନୀତିରେ ଏମ୍. ଏ. ପଢ଼ିବାକୁ ଗଲି । ସେତେବେଳେ ରେଭେନ୍‌ସା କଲେଜ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା ଏବଂ ସେଥିରେ ଇଂରାଜୀ ବ୍ୟତୀତ ଅନ୍ୟ କୌଣସି ବିଷୟରେ ଏମ୍. ଏ. ଶ୍ରେଣୀ ନ ଥିଲା । ବି. ଏ ପରୀକ୍ଷାରେ ଭଲ ନ ହେବାରୁ ମୋତେ ଛାତ୍ରବୃତ୍ତି ମିଳିଲା ନାହିଁ । ସେତେବେଳେ ଧାନ ଭରଣ ଆଠ ଦଶ ଟଙ୍କା ଥିଲା । ପାଟନାରେ ଗୋଟିଏ ପିଲାକୁ ପଢ଼ାଇବାକୁ ମାସକୁ ଅନ୍ତତଃ ପକ୍ଷେ ଅଢ଼େଇ ଭରଣ ଧାନ ବିକିବାକୁ ପଡ଼ନ୍ତା । ସେଥିପାଇଁ ଆମର ଏତେ ଧାନ ନ ଥିଲା କିମ୍ବା ଆମ ପରିବାର ଧାନ ବିକି ମୋତେ ପଢ଼ାଇବାକୁ ରାଜି ନ ଥିଲେ । ରେଭେନ୍‌ସା କଲେଜର ଅଧ୍ୟାପକ ବିପିନବିହାରୀ ରାୟ ବଦାନ୍ୟ ଭାବରେ ମୋତେ ମାସିକ କୋଡ଼ିଏ ଟଙ୍କା ସାହାଯ୍ୟ ଦେବା ହେତୁ ମୁଁ ପାଟନା କଲେଜରେ ପଢ଼ି-ପାରିଲି । ଛାତ୍ରମାନଙ୍କୁ ଅର୍ଥ ସାହାଯ୍ୟ ଦେଇ ଉଚ୍ଚଶିକ୍ଷା ପାଇବାରେ ସାହାଯ୍ୟ କରିବା ବିପିନ ବାବୁଙ୍କ ମହତ୍ତ ଗୁଣ ପରି ଗୁଣ କ୍ୱଚିତ୍ ଦେଖାଯାଏ । ମୋପରି ବହୁ ଛାତ୍ର ତାଙ୍କ ଦାନରେ ମଣିଷ ହୋଇ ତାଙ୍କଠାରେ ଚିରଋଣୀ ହୋଇଛନ୍ତି ।

ପାଟନା କଲେଜରେ ୧୯୪୦ ମସିହାଠାରୁ ୧୯୪୨ ମସିହା ଦୁଇବର୍ଷ ଶାନ୍ତିରେ କଟିଥିଲା । ପାଟନାରେ ସେତେବେଳେ ସବୁ ଜିନିଷ ଅତି ଶସ୍ତା ଥିଲା । ଖାଇବାପିଇବାକୁ ପ୍ରଚୁର ମିଳୁଥିଲା । ଅଧିକାଂଶ କଲେଜ ହଷ୍ଟେଲରେ ଦ୍ୱାର-ଭଙ୍ଗା ଜିଲ୍ଲାରୁ ଆସିଥିବା ବ୍ରାହ୍ମଣ ପୂଜାରୀମାନେ ଠିକାରେ ମେସ୍‌ମାନଙ୍କରେ

ଖାଇବାକୁ ଯୋଗାଇ ଦିଅନ୍ତି । ମାସକୁ ସାତଟଙ୍କା ଆଠଅଣାରେ ଦୁଇଓଳି ମିଲ୍, ସନ୍ଧ୍ୟାବେଳେ ଜଳଖିଆ, ଗାଧୋଇବା ପାଇଁ ତେଲ, ଦାନ୍ତକାଠି ପ୍ରଭୃତି ଦିଅନ୍ତି । ପରିବାହାଟରେ ସେର ମାପରେ ପରିବା ବିକି ନ ହୋଇ ପାଞ୍ଚସେରିଆ ପସୁରିମାପରେ ବିକି ହେଉଥାଏ । ମେସ୍‌ରେ ଯଥେଷ୍ଟ ପରିମାଣରେ ଭାତ, ଡାଲି, ତରକାରି ଖାଇବାକୁ ଦିଆହେଉଥିଲି ଏବଂ ଅଧିକାଂଶ ଦିନ ମାଛ, ମାଂସ ତରକାରି ହେଉଥିଲି ।

୧୯୪୦ ମସିହା ଜୁଲାଇ ମାସରେ ଆମ୍ଭେମାନେ ଯେତେବେଳେ ପାଟନା କଲେଜକୁ ପଢ଼ିବାକୁ ଗଲୁ, ସେତେବେଳକୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଦଶମାସ ହେଲି ଚାଲିଥାଏ । ଜର୍ମାନମାନେ ବିରାଟ ପରାକ୍ରମରେ ଫ୍ରାନ୍‌ସ ସହିତ ପଶ୍ଚିମ ୟୁରୋପର ସବୁ ଦେଶମାନଙ୍କୁ ଅଧିକାର କରି ନେଇଥିଲେ ଏବଂ ମିତ୍ରଶକ୍ତିର ସୈନ୍ୟମାନେ ପଶ୍ଚିମ ୟୁରୋପରୁ ବ୍ରିଟେନ୍‌କୁ ପଳାଇଯାଇଥିଲେ । ଜର୍ମାନ୍‌ମାନେ ବ୍ରିଟେନର ବିଭିନ୍ନ ସହର ଉପରେ ପ୍ରତିଦିନ ଶହ ଶହ ବୋମା ପକାଉଥାନ୍ତି ଏବଂ ବ୍ରିଟିଶ ଚ୍ୟାନେଲ୍‌କୁ ଅବରୋଧ କରୁଥାନ୍ତି । ବ୍ରିଟେନବାସୀଙ୍କ ପାଇଁ ସେ ସମସ୍ତ ଜୀବନ ମରଣ ସମସ୍ୟା । ୧୯୪୧ ମସିହା ଜୁନ୍ ମାସରେ ଜର୍ମାନୀ ରୁଷିଆ ବିରୋଧରେ ଯୁଦ୍ଧ ଘୋଷଣା କଲି ଏବଂ ସେ ଦେଶ ଆକ୍ରମଣ କଲି । ଜର୍ମାନ ସୈନ୍ୟମାନେ ଦ୍ରୁତ-ଗତିରେ ରୁଷିଆର ବହୁ ସହର ଓ ଅଞ୍ଚଳ ଅଧିକାର କରି ମସ୍କୋ ଓ ଲେନିନ୍‌ଗ୍ରାଡ୍ ସହରମାନଙ୍କର ଉପକଣ୍ଠରେ ପହଞ୍ଚିଗଲେ ।

ଅନ୍ୟ ଦେଶରେ ୧୯୪୧ ମସିହା ଡିସେମ୍ବର ମାସରେ ଜାପାନ ଯୁଦ୍ଧରେ ଯୋଗ ଦେଲି ଏବଂ ଆମେରିକାର ନୌବାହିନୀର ବହୁ ଜାହାଜ ପାର୍ଲହାର୍‌ବର ପୋତାଶ୍ରୟଠାରେ ବୋମା ପକାଇ ନଷ୍ଟ କରିଦେଲି । ଜାପାନୀ ସୈନ୍ୟମାନେ ଦ୍ରୁତ ଗତିରେ ଆକ୍ରମଣ କରି ପୂର୍ବ ଏବଂ ଦକ୍ଷିଣପୂର୍ବ ଏସିଆର ଫିଲିପାଇନ୍, ଇଣ୍ଡୋନେସିଆ ଦ୍ୱୀପପୁଞ୍ଜ ଠାରୁ ଆରମ୍ଭ କରି ମାଲୟ, ସିଙ୍ଗାପୁର, ଥାଇଲଣ୍ଡ, ଏବଂ ବ୍ରହ୍ମଦେଶ ପ୍ରଭୃତି ଦେଶ ଦଖଲ କଲେ ଏବଂ ପୂର୍ବ ଓ ଦକ୍ଷିଣ ପୂର୍ବ ଦିଗରେ ଭାରତର ସୀମାରେ ଉପସ୍ଥିତ ହେଲେ । ନେତାଜୀ ସୁଭାଷଚନ୍ଦ୍ର ବୋଷ୍ ଗୁପ୍ତ ଭାବରେ ପ୍ରଥମେ ଜର୍ମାନୀ ଯାଇ ସେଠାରୁ ଜାପାନ ଗଲେ ଏବଂ ଜାପାନୀମାନଙ୍କ ସାହାଯ୍ୟରେ ଭାରତୀୟ ଜାତୀୟ ବାହିନୀ ଗଠନ କରି ଉତ୍ତର-ପୂର୍ବପଟେ ଭାରତ ବର୍ଷରେ ପ୍ରବେଶ କରିବାକୁ ଉଦ୍ୟମ କଲେ । ୧୯୪୨ ମସିହା ଅପ୍ରେଲ ମାସରେ କେତେକ ଜାପାନୀ ଯୁଦ୍ଧ-ଜାହାଜ ବଙ୍ଗୋପସାଗରରେ ପ୍ରବେଶ କରି ପାରାଦ୍ୱୀପ ନିକଟରେ କେତେକ ବ୍ରିଟିଶ ଜାହାଜ ଉପରେ ଆକ୍ରମଣ କଲେ । ଯୁଦ୍ଧର ଏପରି ସମୟରେ ଇଂରେଜମାନେ ଭାରତବର୍ଷରେ ସେମାନଙ୍କ ସ୍ଥିତି ବଜାୟ ରଖିବା

ପାଇଁ ପ୍ରାଣମୂର୍ଚ୍ଛା ଉଦ୍ୟମ କରୁଥାନ୍ତି ଏବଂ ଭାରତର ଲୋକମାନଙ୍କୁ ସୀମିତ ସ୍ୱାଧୀନତା ଦେଇ ସନ୍ତୁଷ୍ଟ କରିବାକୁ ଯତ୍ନବାନ୍ ଥାଆନ୍ତି ।

ଭାରତର ସ୍ୱାଧୀନତା ଆନ୍ଦୋଳନ ସେତେବେଳକୁ ପ୍ରାୟ ଶିଥିଳ ଥିଲା । ମହାତ୍ମାଗାନ୍ଧିଙ୍କ ନେତୃତ୍ୱରେ ଭାରତୀୟ କଂଗ୍ରେସ ଫାସିବାଦୀ ଜର୍ମାନୀ, ଇଟାଲି, ଓ ଜାପାନୀମାନଙ୍କୁ ସାହାଯ୍ୟ କରିବାକୁ ଚାହୁଁ ନ ଥିଲେ କିମ୍ବା ଯୁଦ୍ଧ ବିପଦବେଳେ ବ୍ରିଟିଶ ସରକାରଙ୍କୁ ଆଘାତ କରିବାକୁ ଚାହୁଁ ନ ଥିଲେ । ମାତ୍ର ପୂର୍ଣ୍ଣ ସ୍ୱାଧୀନତା ଦାବୀ କରି ବ୍ରିଟିଶ ସରକାରଙ୍କ ସଙ୍ଗେ ଯୁଦ୍ଧ ଉଦ୍ୟମରେ ସହଯୋଗ କରୁ-ନ ଥିଲେ । ୧୯୪୦ ମସିହାରେ କଂଗ୍ରେସ ବ୍ୟକ୍ତିଗତ ସତ୍ୟାଗ୍ରହ କର୍ମପନ୍ଥା ଆରମ୍ଭ କରିଥିଲା । ମାତ୍ର ତାହା କେବଳ ପ୍ରତିବାଦର ସୂଚନା ଦେବା ବ୍ୟତୀତ ଭାରତରେ ବ୍ରିଟିଶ୍ ସରକାରଙ୍କୁ ବିଶେଷ କିଛି ଆଘାତ କରିପାରୁ ନ ଥିଲା । ୧୯୪୨ ମସିହାରେ ବ୍ରିଟିଶ୍ ସରକାର ଭାରତବାସୀଙ୍କୁ କିପରି ଭାବରେ ସ୍ୱାଧୀନତା ଦିଆଯିବ, ସେ ବିଷୟ ଭାରତର ବିଭିନ୍ନ ରାଜନୈତିକ ଦଳର ନେତାମାନଙ୍କ ସହ ଆଲୋଚନା କରିବା ପାଇଁ ସାର୍ ଷ୍ଟାଫୋର୍ଡ କ୍ରିପ୍‌ସଙ୍କ ଅଧ୍ୟକ୍ଷତାରେ ଗୋଟିଏ ମିଶନ ଭାରତକୁ ପଠାଇଥିଲେ । ୧୯୪୧ ମସିହାରେ ରୁଷିଆ ଓ ଜାପାନ ଯୁଦ୍ଧରେ ବ୍ୟାପୃତ ହେବା ପରେ ଇଂଲଣ୍ଡ, ରୁଷିଆ, ଯୁକ୍ତରାଷ୍ଟ୍ର ଆମେରିକା ଏକ ପକ୍ଷରେ ଏବଂ ଜର୍ମାନୀ, ଇଟାଲୀ ଓ ଜାପାନ ଅନ୍ୟ ପକ୍ଷରେ ରହି ଯୁଦ୍ଧ କରୁଥିଲେ । ଏ ଯୁଦ୍ଧର ଉଦ୍ଦେଶ୍ୟ ସମ୍ବନ୍ଧରେ ଇଂଲଣ୍ଡ ଓ ଆମେରିକା ମୂଳରୁ ପ୍ରଚାର କରି ଆସୁଥିଲେ ଯେ, ସେମାନେ ପୃଥିବୀରେ ସ୍ୱାଧୀନତା ରକ୍ଷା ସକାଶେ ଏବଂ ପରାଜିତ ଦେଶ ସମୂହକୁ ସ୍ୱାଧୀନତା ଦେବା ସକାଶେ ଯୁଦ୍ଧ କରୁଛନ୍ତି । କିନ୍ତୁ ଏହି ନୀତି ଭାରତବର୍ଷ ପ୍ରତି ପ୍ରଯୁଜ୍ୟ ନୁହେଁ ବୋଲି ସେମାନେ ପରିଷ୍କାର ଭାବେ ପ୍ରକାଶ କରିଥିଲେ । ବ୍ରିଟିଶ ସରକାର କହୁଥିଲେ ଯେ, ଭାରତବାସୀ ଯୁଦ୍ଧରେ ପୂର୍ଣ୍ଣପ୍ରାଣରେ ସାହାଯ୍ୟ କଲେ ବ୍ରିଟିଶ ସରକାର ସେମାନଙ୍କୁ ସ୍ୱାୟତ୍ତଶାସନ ଦେବା ପାଇଁ ଯତ୍ନ କରିବେ ।

ସେ ସମୟରେ ମହମ୍ମଦ୍ ଆଲି ଜିନ୍ନାଙ୍କ ନେତୃତ୍ୱରେ ମୁସ୍‌ଲିମ୍ ଲିଗ୍ ଭାରତର ମୁସଲମାନ-ପ୍ରଧାନ ବଙ୍ଗ ପ୍ରଦେଶ, ପଞ୍ଜାବ, ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶ ଏବଂ ସିନ୍ଧୁ ପ୍ରଦେଶକୁ ଭାରତ ବର୍ଷରୁ ବିଚ୍ଛିନ୍ନ କରି ପାକିସ୍ତାନ ନାମରେ ଏକ ସ୍ୱତନ୍ତ୍ର ମୁସଲମାନ ରାଷ୍ଟ୍ର ସ୍ଥାପନ ନିମିତ୍ତ ଦାବୀ କରୁଥିଲେ ଏବଂ ଏହା ସପକ୍ଷରେ ଇଂରେଜ ସରକାର ପ୍ରତିଶ୍ରୁତି ଦେଲେ ସେମାନେ ବ୍ରିଟିଶ ସରକାରଙ୍କ ପକ୍ଷରେ ଯୁଦ୍ଧରେ ଯୋଗ ଦେବେ ବୋଲି ଘୋଷଣା କରିଥିଲେ । କଂଗ୍ରେସ ଭାରତବର୍ଷକୁ ଖଣ୍ଡ ଖଣ୍ଡ କରିବାକୁ ବିରୋଧ କରୁଥିଲା । ଇଂରେଜ ସରକାର ହିନ୍ଦୁ

ଓ ମୁସଲମାନମାନଙ୍କ ମଧ୍ୟରେ ଭେଦ ସୃଷ୍ଟି କରିବା ଉଦ୍ଦେଶ୍ୟରେ ମୁସ୍‌ଲିମ୍ ଲିଗ୍‌କୁ ସବୁ ପ୍ରକାର ଉତ୍ସାହ ଦେଉଥିଲେ ।

୧୯୪୨ ମସିହା ମାର୍ଚ୍ଚ ମାସରେ ସାର୍ ଷ୍ଟାଫୋର୍ଡ୍ କ୍ରିପସ୍ ଯୁଦ୍ଧ ପରେ ଭାରତକୁ ସ୍ୱାୟତ୍ତ ଶାସନ ଦେବା ସମ୍ବନ୍ଧରେ କେତେକ ପ୍ରସ୍ତାବ ସହ ଭାରତକୁ ଆସିଥିଲେ । ସେଥିରେ ଇଂରେଜ ସରକାର କହିଥିଲେ ଯେ, ଭାରତବାସୀ ମିତ୍ରଶକ୍ତିଙ୍କୁ ଯୁଦ୍ଧରେ ସାହାଯ୍ୟ କରନ୍ତୁ । ଯୁଦ୍ଧପରେ ସେମାନଙ୍କୁ ସ୍ୱାୟତ୍ତଶାସନ-ମୂଳକ ଶାସନ-ତନ୍ତ୍ର ଗଠନ କରିବା ସକାଶେ ଯାହା କରିବା ଆବଶ୍ୟକ, ତାହା କରାଯିବ । ଏ ପ୍ରସ୍ତାବରେ କିଛି ନୂତନତ୍ୱ ନ ଥିଲା । ମୁସ୍‌ଲିମଲିଗ୍ ସହିତ ସବୁ ରାଜନୈତିକ ଦଳ ତାହାକୁ ଅଗ୍ରାହ୍ୟ କଲେ । ଭାରତକୁ ଅବିଳମ୍ବେ ସ୍ୱାଧୀନତା ଦେବା ପାଇଁ କଂଗ୍ରେସ ଦାବୀ କଲା । ତାହା ହେଲେ ସ୍ୱାଧୀନ ଭାରତ ମିତ୍ରଶକ୍ତିଙ୍କୁ ଯୁଦ୍ଧକାର୍ଯ୍ୟରେ ପୂର୍ଣ୍ଣ ସହଯୋଗ କରିବ । ଜୁଲାଇ ୧୪ ତାରିଖ ଦିନ କଂଗ୍ରେସ କାର୍ଯ୍ୟକାରୀ କମିଟି ଏହି ମର୍ମରେ ଏକ ପ୍ରସ୍ତାବ ଧାର୍ଯ୍ୟ କଲେ ଯେ, ଯଦି ଇଂରେଜ ସରକାର ଏହି ପ୍ରସ୍ତାବକୁ ଅଗ୍ରାହ୍ୟ କରନ୍ତି, ଏହାକୁ କାର୍ଯ୍ୟରେ ପରିଣତ କରିବା ସକାଶେ କଂଗ୍ରେସ ଯଥାବିଧି ଉପାୟ ଅବଲମ୍ବନ କରିବ । ଏହାକୁ କାର୍ଯ୍ୟକାରୀ କରିବା ସକାଶେ ସର୍ବଦା ଆଇନ ଅମାନ୍ୟ କରିବ ବୋଲି ଘୋଷଣା କଲା । ଅଗଷ୍ଟମାସ ୭ ତାରିଖରେ ଏହି ପ୍ରସ୍ତାବ ବମ୍ବେଠାରେ ଆଲୋଚିତ ହୋଇ ୮ ତାରିଖରେ ତାହା ନିଖିଳ ଭାରତ କଂଗ୍ରେସ କମିଟିରେ ଧାର୍ଯ୍ୟ ହେଲା । ବ୍ରିଟିଶ ସରକାର ଏହାର ପ୍ରତିରୋଧ କରିବା ସକାଶେ ମହାତ୍ମାଗାନ୍ଧି ଓ ଅନ୍ୟ ପ୍ରଧାନ ପ୍ରଧାନ ନେତାଙ୍କୁ ୯ ତାରିଖ ସକାଳ ପୂର୍ବରୁ ଗିରଫ କଲେ । ଡକ୍ଟର ରାଜେନ୍ଦ୍ର ପ୍ରସାଦ ସେତେବେଳେ ଶ୍ୱାସରୋଗରେ ପୀଡ଼ିତ ଅବସ୍ଥାରେ ପାଟନାରେ ଥିଲେ । ୯ ତାରିଖରେ ପାଟନାଠାରେ ପୋଲିସ୍ ତାଙ୍କୁ ଗିରଫ କଲେ । ଏହି ସମସ୍ତ ସମ୍ବାଦ ୯ ତାରିଖ ସକାଳେ ବିଜୁଳି ବେଗରେ ଲୋକମାନଙ୍କ ମଧ୍ୟରେ ପ୍ରଚାରିତ ହୋଇଗଲା ।

ଆମର ଏମ୍. ଏ. ପରୀକ୍ଷା ଆଗରୁ ଜୁଲାଇ ମାସରେ ହେବାର ଥିଲା । ମାତ୍ର ପରୀକ୍ଷା ପୂର୍ବରୁ କେତେକ ଛାତ୍ର କୁଳପତି ଡକ୍ଟର ସଚ୍ଚିଦାନନ୍ଦ ସିଂହଙ୍କୁ ଭେଟି ପରୀକ୍ଷାକୁ ଅଗଷ୍ଟ ପ୍ରଥମ ସପ୍ତାହକୁ ଘୁଞ୍ଚାଇ ଦେଇଥିଲେ । ଆମ୍ଭେମାନେ ସେଥିରେ ରାଜି ନ ଥିଲୁ । କାରଣ ପରୀକ୍ଷା ପ୍ରାୟ ଏକମାସ ଘୁଞ୍ଚିଗଲେ ଆମକୁ ଆଉ ଏକମାସ ପାଟନାରେ ରହି ଖର୍ଚ୍ଚାନ୍ତ ହେବାକୁ ପଡ଼ିବ । ଯାହାହେଉ, ପରୀକ୍ଷା ପ୍ରଥମ ସପ୍ତାହରେ ଆରମ୍ଭ ହୋଇ ଅଗଷ୍ଟ ୮ ତାରିଖ ସୁଦ୍ଧା ସାତଗୋଟି ପତ୍ରର ପରୀକ୍ଷା ଶେଷ ହୋଇଥାଏ । ଶେଷ ପତ୍ର ୯ ତାରିଖ ଦିନ ପରୀକ୍ଷା ହେବାର ଥିଲା ।

୯ ତାରିଖ ଦିନ କଂଗ୍ରେସ ନେତାମାନଙ୍କର ଗିରଫ ବାର୍ତ୍ତା ପ୍ରଚାର ହେବା ମାତ୍ରେ ପାଟନାରେ ଚାରିଆଡ଼େ ହରତାଲ ଆରମ୍ଭ ହୋଇଗଲା ଏବଂ ଏ ଘଟଣା ବିରୋଧରେ ସ୍କୁଲ କଲେଜ ଛାତ୍ର-ଛାତ୍ରୀମାନେ ବିରାଟ ଶୋଭାଯାତ୍ରାରେ ସହର ପରିକ୍ରମା କଲେ । କେତେକ ଛାତ୍ର ଆମ୍ଭମାନଙ୍କୁ ପରୀକ୍ଷା ଦେବା ପାଇଁ ହଲ୍ ଭିତରକୁ ଛାଡ଼ିଲେ ନାହିଁ । ଆମ୍ଭେମାନେ ତାଙ୍କୁ ବହୁତ ବୁଝାଇଲୁ ଯେ, ସାତ ପତ୍ରର ପରୀକ୍ଷା ଶେଷ ହୋଇ-ଥିବାରୁ କେବଳ ଆଉ ଗୋଟିଏ ପତ୍ରରେ ପରୀକ୍ଷା ସେଦିନ ଦେଇଦେଲେ ପରୀକ୍ଷା ଶେଷ ହୋଇଯିବ । ତାହା ନ ଦେଲେ ଆମ ଭିତରୁ ଅନେକେ ଫେଲ୍ ହୋଇଯିବେ ଏବଂ ଆଉ ଅନେକେ ନିମ୍ନ ଶ୍ରେଣୀରେ ପାସ୍ କରିବେ । ବହୁ ଅନୁରୋଧ ପରେ ସେମାନେ ଆମକୁ ହଲ୍ ଭିତରକୁ ଛାଡ଼ିଦେଲେ ଏବଂ ଆମେ ନିର୍ବିଘ୍ନରେ ଶେଷ ପତ୍ର ପରୀକ୍ଷା ଦେଇଦେଲୁ ।

ପରୀକ୍ଷା ପରେ ଆମର ତୁରନ୍ତ ଘରକୁ ଫେରିବାର କଥା । କିନ୍ତୁ ୯ ତାରିଖ ସକାଳ ଠାରୁ ପାଟନାରେ ସ୍ୱତଃସ୍ଫୂର୍ତ୍ତ ଗଣ ଆନ୍ଦୋଳନ ଆରମ୍ଭ ହୋଇଗଲା ଏବଂ ସରକାର ସମଗ୍ର ସହରରେ ୧୪୪ ଧାରା ଜାରି କଲେ । ୧୦ ତାରିଖ ଠାରୁ ଅନ୍ୟ କଂଗ୍ରେସ ନେତାମାନଙ୍କର ଗିରଫ କାର୍ଯ୍ୟ ଚାଲିଲା । ୧୧ ତାରିଖ ଦିନ ଦଶଟା ବେଳେ ଜନତାର ଗୋଟିଏ ବିରାଟ ଶୋଭାଯାତ୍ରା ପାଟନା ମଇଦାନ ନିକଟରୁ ପାଟନା ସେକ୍ରେଟାରିଏଟ୍ ଆଡ଼େ ଚାଲିଲା । ସେଥିରେ କେତେକ ପୋଲିସ୍ କର୍ମଚାରୀ ମଧ୍ୟ ସରକାରୀ ପୋଷାକପତ୍ର ଫିଙ୍ଗିଦେଇ ଯୋଗ ଦେଇ-ଥିଲେ । ପୁରୁଷ ଓ ମହିଳା ଛାତ୍ର-ଛାତ୍ରୀ ଏବଂ ଜନସାଧାରଣ ମିଶି ପଚିଶ ହଜାରରୁ ଅଧିକ ଲୋକ ପାଟନା ସେକ୍ରେଟାରିଏଟ୍ ଆକ୍ରମଣ କରି ତାହା ଉପରେ କଂଗ୍ରେସ ପତାକା ଉଡ଼ାଇଦେଲେ । ପୁଲିସ୍ ଜନତା ଉପରେ ଗୁଳି ଚଳାଇଲେ । ଫଳରେ କେତେକ ଲୋକ ନିହତ ହେଲେ ଏବଂ ବହୁତ ଲୋକ ଆହତ ହେଲେ । ସେହି ଦିନଠାରୁ ଜନସାଧାରଣଙ୍କ ମନରେ କଳ୍ପନାତୀତ ଉତ୍ତେଜନା ଜାଗ୍ରତ ହେଲା ଏବଂ ସେମାନେ ହିଂସାତ୍ମକ ଆନ୍ଦୋଳନ ଆରମ୍ଭ କଲେ ।

ସେମାନେ ପୁଲିସ୍ ଗାଡ଼ି ପୋଡ଼ିଦେଲେ, ରେଲଲାଇନ୍ ଉପାଡ଼ି ଫୋପାଡ଼ି ଦେଲେ ଏବଂ ଟେଲିଫୋନ୍ ଓ ଟେଲିଗ୍ରାଫ୍ ଲାଇନ୍ କାଟିଦେଲେ । ବଡ଼ ବଡ଼ ଗଛ କାଟି ରାସ୍ତା ଉପରେ ପକାଇଲେ ଏବଂ ଇଟା ପଥର ଜମା କରି ରାସ୍ତା ଅବରୋଧ କଲେ । ସହରରେ ଗୋଟିଏ ହେଲେ ଦୋକାନ ଖୋଲୁ ନ ଥିଲା କିମ୍ବା ଯାନବାହନ ଚାଲୁ ନ ଥିଲା । ସ୍କୁଲ କଲେଜ ବନ୍ଦ କରି ଦିଆଗଲା ଏବଂ ଛାତ୍ର-ଛାତ୍ରୀମାନଙ୍କୁ ଛାତ୍ରାବାସ ଛାଡ଼ି ଚାଲିଯିବା ପାଇଁ ଆଦେଶ ହେଲା । ଲୋକମାନେ ପାଟନା ସିଟି ଷ୍ଟେସନ୍ ପୋଡ଼ିଦେଲେ ଏବଂ ମାଲଗୋଦାମରୁ ଜିନିଷ

ପରି ଲୁଟିକରି ନେଇଗଲେ । ପାଟନା ଜଙ୍କସନ୍ ଷ୍ଟେସନରେ ସେତେବେଳେ କେତେଗୁଡ଼ିଏ ମେଲ୍‌ଗାଡ଼ି ଠିଆ ହୋଇଥିଲା । ସେ ଷ୍ଟେସନକୁ ସମସ୍ତ ପୁଲିସ୍ ଜଗିଥିଲେ । ଇମ୍ପିରିଆଲ୍ ବ୍ୟାଙ୍କ୍ ଏବଂ ବଡ଼ ଡାକଘର ମଧ୍ୟ ସମସ୍ତ ପୁଲିସ୍ ଜଗିଥିଲେ । ଆନ୍ଦୋଳନ କ୍ଷିପ୍ରଗତିରେ ସହରରୁ ଗ୍ରାମାଞ୍ଚଳକୁ ବ୍ୟାପିଗଲା । ଲୋକମାନେ ସହରରୁ ବିଭିନ୍ନ ଅଞ୍ଚଳକୁ ଯାଇଥିବା ରାସ୍ତାର ଛୋଟ ଛୋଟ ପୋଲ ସବୁ ଭାଙ୍ଗିପକାଇଲେ । ରାସ୍ତାକଡ଼ର ଗଛ କାଟି ପକାଇ ରାସ୍ତା ଅବରୋଧ କଲେ । ସହରରୁ ବିଭିନ୍ନ ଅଞ୍ଚଳକୁ ଯାଇଥିବା ରେଲଲାଇନ୍‌ରୁ ରେଲ୍‌ଧାରଣା ଉପାଡ଼ି ଫୋପାଡ଼ିଦେଲେ, ଛୋଟ ଛୋଟ ପୋଲ ଭାଙ୍ଗିଦେଲେ ଏବଂ ରେଲ୍ ଷ୍ଟେସନ୍ ସବୁ ପୋଡ଼ିଦେଲେ । ପାଟନା ସହରରୁ ସବୁ ଦିଗରେ ରେଲ୍ ଓ ସଡ଼କ ପଥର ଯାତାୟାତ ଛିନ୍ନ ହୋଇଗଲା ଏବଂ ସହରକୁ ଜିନିଷପତ୍ର ଆସିବା ବନ୍ଦ ହୋଇଗଲା । ଫଳରେ ସହର ମଧ୍ୟରେ ଖାଦ୍ୟ ସହିତ ସବୁ ପ୍ରକାର ଜିନିଷର ଅଭାବ ପଡ଼ିଲା ଏବଂ ଦର୍‌ଦାମ୍ ଅଭୂତପୂର୍ବ ଭାବରେ ବଢ଼ିଗଲା । ଅନ୍ୟ ଅଞ୍ଚଳ ସହିତ ସହରର ବ୍ୟବସାୟ-ବାଣିଜ୍ୟ ବନ୍ଦ ହୋଇଗଲା । ଆଠ ଦଶ ଦିନ ପର୍ଯ୍ୟନ୍ତ ସରକାର ରାସ୍ତାଘାଟ ଖୋଲି ପାରିଲେ ନାହିଁ କିମ୍ବା ସହରରେ ସାଧାରଣ ଜୀବନ ପ୍ରଣାଳୀ ଚାଲୁ କରି ପାରିଲେ ନାହିଁ ।

ପରୀକ୍ଷା ପରେ କୌଣସି ଦିଗରେ ରେଲ୍ କିମ୍ବା ବସ୍‌ରେ ଆମ୍ଭମାନଙ୍କର ଓଡ଼ିଶା ଫେରିବାର ସୁବିଧା ନ ଥିଲା । ସବୁ ଦିଗରେ ରାସ୍ତା ଓ ରେଲପଥ ବନ୍ଦ ହୋଇଯାଇଥିଲା । ଏଣେ ହଷ୍ଟେଲ ବନ୍ଦ ହୋଇଯାଇଥିବାରୁ ଆମେ ହଷ୍ଟେଲ ଛାଡ଼ିବାକୁ ବାଧ୍ୟ ହୋଇଥିଲୁ । ପାଟନା କଲେଜ, ପାଟନା ସାଇନ୍‌ସ କଲେଜ ଏବଂ ଇଞ୍ଜିନିୟରିଂ କଲେଜର ଓଡ଼ିଆ ଛାତ୍ରମାନେ କୌଣସିମତେ ଓଡ଼ିଶାକୁ ଫେରି ଆସିବାକୁ ବହୁ ଚେଷ୍ଟା କରିଥିଲେ । କିନ୍ତୁ ଆଠ ଦଶଦିନ ପର୍ଯ୍ୟନ୍ତ ସେଥିରେ ସଫଳ ହୋଇ ନ ଥିଲେ ।

ଅଗଷ୍ଟ ବାର ତେର ତାରିଖରୁ ବହୁ ଗୋରା ସୈନ୍ୟ ପାଟନାରେ ପହଞ୍ଚିଲେ ଏବଂ ସେମାନେ ସହର ବାସିନ୍ଦା ଓ ହଷ୍ଟେଲ, ମେସ୍‌ମାନଙ୍କରେ ରହିଥିବା ଛାତ୍ରମାନଙ୍କୁ ଟାଣି ନେଇ ରାସ୍ତାମାନଙ୍କରୁ ଗଛ, ପଥର, ଇଟା ପ୍ରଭୃତି ପ୍ରତିବନ୍ଧକ ସବୁ ସଫା କରିବାକୁ ବାଧ୍ୟ କଲେ । ସେମାନେ ରେଲରାସ୍ତା ଏବଂ ଦୂରଗାମୀ ବସ୍‌ରାସ୍ତା ସବୁ ଚାଲୁ କରିବାକୁ ଉଦ୍ୟମ କଲେ । ମାତ୍ର ବହୁ ସ୍ଥାନରେ ରାସ୍ତା ଓ ରେଲ ଲାଇନ୍ ପୋଲସବୁ ଭାଙ୍ଗିଥିବାରୁ ଏବଂ ରେଲ ଧାରଣା ସବୁ ଖୋଲା ହୋଇ ଯାଇଥିବାରୁ ରାସ୍ତା କିମ୍ବା ରେଲରାସ୍ତା ମରାମତି ଦଶ ବାର ଦିନେ ସରିବା ସମ୍ଭବ ନ ଥିଲା । ସେଥିଯୋଗୁଁ ପରୀକ୍ଷା ପରେ ଆମ୍ଭମାନଙ୍କୁ ପ୍ରାୟ ଦଶ ବାର ଦିନ ପାଟନାରେ ଅପେକ୍ଷା କରିବାକୁ ପଡ଼ିଲା ।

ଏଥି ମଧ୍ୟରେ କେତେକ ଓଡ଼ିଆ ପିଲା ଗଙ୍ଗାନଦୀ ପାର ହୋଇ ସୋନପୁର ଠାରେ ରେଲଗାଡ଼ି ଧରିବାକୁ ଚେଷ୍ଟା କରିଥିଲେ । ମାତ୍ର ଲୋକମାନେ ସୋନପୁର ଷ୍ଟେସନ ପୋଡ଼ିଦେଇଥିବାରୁ ସେମାନେ ପୁଣି ପାଟନାକୁ ଫେରିଆସିଲେ । ସୈନ୍ୟମାନେ ପ୍ରଥମେ ପାଟନାରୁ କଲିକତାକୁ ଯାଇଥିବା ମେନ୍ ଲାଇନ୍ ରେଲପଥ ଖୋଲି କରିବାକୁ ଚେଷ୍ଟା କଲେ । ପାଟନା ଠାରୁ ମୋକାମା ଷ୍ଟେସନ ମଧ୍ୟରେ ପ୍ରାୟ ସବୁ ରେଲଷ୍ଟେସନ ଲୋକମାନେ ପୋଡ଼ି ଦେଇଥିଲେ ଏବଂ ବହୁ ସ୍ଥାନର ରେଲ ଲାଇନ୍ ଉପାଡ଼ି ଫିଙ୍ଗି ଦେଇଥିଲେ ଓ ପୋଲ ଭାଙ୍ଗି ଦେଇଥିଲେ । ସୈନ୍ୟମାନେ ପ୍ରଥମେ ପାଟନା ଜଙ୍କସନ୍ ଷ୍ଟେସନରୁ ଚାରି ପାଞ୍ଚ ଗୋଟି ରେଲଗାଡ଼ି ପାଖକୁ ପାଖ ଲଗାଇ ଧୀରେ ଧୀରେ ମୋକାମା ଷ୍ଟେସନଯାଏ ନେଇଥିଲେ । କେତେକ ଓଡ଼ିଆ ପିଲା ଓଡ଼ିଶା ଫେରିବା ପାଇଁ ସେ ଗାଡ଼ିରେ ଯାଇଥିଲେ । ସେ ଗାଡ଼ିସବୁ ପ୍ରାୟ କୋଡ଼ିଏ ପଚିଶ ଘଣ୍ଟାରେ ପ୍ରାୟ ୫୦ ମାଇଲ ଦୂର ମୋକାମା ଷ୍ଟେସନ୍ ଯାଏ ଯାଇଥିଲା । ଗାଡ଼ିରେ ଯାଉଥିବା ଲୋକମାନେ ଦେଖିଲେ ଯେ, ଆନ୍ଦୋଳନ ସମର୍ଥନ କରୁଥିବା ଜନତା ବାଟରେ ଥିବା ପ୍ରାୟ ସବୁ ରେଲଷ୍ଟେସନ ପୋଡ଼ି ଦେଇଥିଲେ ଏବଂ ଟେଲିଗ୍ରାଫ ଲାଇନ୍ କାଟି ଦେଇଥିଲେ । ଗାଡ଼ିଗୁଡ଼ିକ ସୈନ୍ୟ-ବାହିନୀ ତତ୍ତ୍ୱାବଧାନରେ ଯାଉଥିଲେ ମଧ୍ୟ ସାଧାରଣ ଲୋକମାନେ ଗାଡ଼ି ମଧ୍ୟରେ ପଶି ଚେନ୍ ଟାଣି ଗାଡ଼ି ବନ୍ଦ କରିଦେଉଥିଲେ ଏବଂ ଇଞ୍ଜିନ୍ ଉପରକୁ ପଥର ଫିଙ୍ଗୁଥିଲେ । ଗାଡ଼ିରେ ଗୋରା ସୈନ୍ୟ ଥିଲେ ମଧ୍ୟ ଲୋକମାନେ ଭୟ ନ କରି ତାଙ୍କ ଆଗରେ ରେଲଲାଇନ୍ ପାଖରେ ଥିବା ତାର କାଟିପକାଉ ଥିଲେ । ରେଲ କର୍ମଚାରୀମାନେ ରେଲଗାଡ଼ି ଯିବାପାଇଁ ଆଗରେ ଭାଙ୍ଗିଯାଇଥିବା ରେଲ ଧାରଣାକୁ ମରାମତି କଲାବେଳେ ଲୋକମାନେ ପଛପଟରୁ ଲାଇନ୍ ଭାଙ୍ଗି ଦେଉଥିଲେ । ପ୍ରତି ରେଲଷ୍ଟେସନ ନିକଟରେ ହଜାର ହଜାର ଲୋକ ଜମା ହୋଇଥାନ୍ତି । ସେମାନେ ରେଲଯାତ୍ରୀମାନଙ୍କୁ ପୁରି ତରକାରି ଓ ଚୂଡ଼ା ପ୍ରଭୃତି ଖାଇବାକୁ ଦେଉଥାନ୍ତି, କିନ୍ତୁ ପୁଲିସ ଓ ସୈନ୍ୟମାନଙ୍କୁ କିଛି ବିକୁ ନ ଥାନ୍ତି । ଏହିପରି ଅବସ୍ଥାରେ ରେଲଗାଡ଼ିସବୁ କୋଡ଼ିଏ ପଚିଶ ଘଣ୍ଟାରେ ମୋକାମା ପର୍ଯ୍ୟନ୍ତ ଯାଇଥିଲା । ମାତ୍ର ମୋକାମା ବଡ଼ ପୋଲର କେତେକ ଅଂଶ ଭାଙ୍ଗିଥିବା ଦେଖି ପୁଣି ପାଟନା ଷ୍ଟେସନକୁ ଫେରିଆସିଲା । ସମସ୍ତ ପ୍ରକାର ରେଲଗାଡ଼ି ଚଳାଚଳ ପ୍ରାୟ ଦଶ ପନ୍ଦର ଦିନ ବନ୍ଦ ହୋଇଯାଇଥିଲା ।

ପାଟନା ସହରରେ ସୈନ୍ୟମାନେ ପାଟନା କଲେଜ, ସାଇନ୍‌ସ କଲେଜ, ସିନେଟ ହଲ୍ ଓ ହଷ୍ଟେଲମାନଙ୍କରେ ରହିଥାନ୍ତି । ସାଧାରଣ ଲୋକଙ୍କୁ ବାଧ୍ୟକରି ରାସ୍ତା ସଫା ଓ ମରାମତି କରାଉଥାନ୍ତି । ଡାକବାଜି ଯନ୍ତ୍ରରେ ପ୍ରଚାର କରୁଥାନ୍ତି ଯେ,

ତାର ଓ ରେଳଲାଇନ୍ କାଟୁଥିବା ଲୋକଙ୍କୁ କଠୋର ଦଣ୍ଡ ଦିଆଯିବ । ରାସ୍ତା ସବୁ ଗୋରା ସୈନ୍ୟଙ୍କ ତତ୍ତ୍ୱାବଧାନରେ ବନ୍ଧୁକଧାରୀ ଦେଶୀ ସିପାହୀ ଜଗିଲେ । ଛାତ୍ରମାନଙ୍କ ଉପରେ ସେମାନଙ୍କର ତୀକ୍ଷ୍ଣ ଦୃଷ୍ଟି ଥାଏ । ପରୀକ୍ଷା ପରେ ଏହିପରି ଅବସ୍ଥାରେ ପାଟନା ସହରରେ ଦଶ ବାରଦିନ ଅଟକିଯିବା ହେତୁ ଆମ୍ଭେମାନେ ଅତି ବ୍ୟସ୍ତ ହେଉଥିଲୁ ଏବଂ ପ୍ରତିଦିନ ଓଡ଼ିଶା ଫେରିବାର ପଥ ଅନ୍ୱେଷଣ କରୁଥିଲୁ । କେତେକ ଓଡ଼ିଆ ପିଲା ଗଙ୍ଗାନଦୀରେ ଡଙ୍ଗାରେ ବହୁଦୂର ଦକ୍ଷିଣକୁ ଯାଇ ବିଭିନ୍ନ ପଥରେ ଓଡ଼ିଶା ଫେରିଥିଲେ । ଆମେ କେତେଜଣ ବସ୍ କିମ୍ବା ରେଲଗାଡ଼ି ଚାଲିବା ପର୍ଯ୍ୟନ୍ତ ଅପେକ୍ଷା କରିଥିଲୁ । କେତେକ ଦିନ ପରେ ପାଟନା ଠାରୁ ରାଞ୍ଚି ଯାଇଥିବା ସଡ଼କଟି ପ୍ରଥମେ ଖୋଲିଲା ଏବଂ ସେଥିରେ ବସ୍ ଯାତାୟାତ ଆରମ୍ଭ ହେଲା । ଆମେ କେତେଜଣ ଓଡ଼ିଶା ଛାତ୍ର ବସ୍ ଚାଲିବାର ଦିନେ ଦୁଇଦିନ ମଧ୍ୟରେ ବସ୍‌ରେ ରାଞ୍ଚି ଆସିଲୁ ଏବଂ ସେଠାରୁ ରେଲରେ ଖଡ଼ଗପୁର ବାଟେ କଟକ ଫେରିଆସିଲୁ । ରାଞ୍ଚିଠାରୁ ଖଡ଼ଗପୁର ମଧ୍ୟରେ କିମ୍ବା କଲିକତାଠାରୁ କଟକ ମଧ୍ୟରେ କୌଣସିଠାରେ ରେଲଲାଇନ୍ ଭାଙ୍ଗି ନ ଥିଲା । ପରେ ଜାଣିଲୁ ଭାରତଛାଡ଼ ଆନ୍ଦୋଳନରେ ଭାରତର ସବୁ ଅଞ୍ଚଳରେ ଉତ୍ତେଜନା ଜାଗ୍ରତ ହୋଇଥିଲେ ମଧ୍ୟ ପାଟନା ଅଞ୍ଚଳ ପରି ଯାତାୟାତ ପଥ କେଉଁଠାରେ ଏତେ ଭାଙ୍ଗି ନ ଥିଲା କିମ୍ବା ସାଧାରଣ ଜୀବନଯାପନ ଏତେ ବ୍ୟାହତ ହୋଇ ନ ଥିଲା ।

ମୋର ଛାତ୍ର-ଜୀବନର ଶେଷ ପର୍ଯ୍ୟାୟ ଏହିପରି ଶେଷ ହୋଇଥିଲା । ମାତ୍ର ଶେଷ ପର୍ଯ୍ୟାୟର ଆଉ ଗୋଟିଏ ଉଜ୍ଜ୍ୱଳ ଦିଗ ଥିଲା । ତାହା ମାସକ ପରେ ପରୀକ୍ଷା ଫଳ ବାହାରିଲାବେଳେ ଜଣା ପଡ଼ିଥିଲା । ପରୀକ୍ଷା ଫଳ ବାହାରିଲା ପରେ ଜାଣିଲି ଯେ, ମୁଁ ଅର୍ଥନୀତି ଏମ୍. ଏ. ପରୀକ୍ଷାରେ ବିଶ୍ୱବିଦ୍ୟାଳୟରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇଛି । ସେଥିପାଇଁ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣ ପଦକ ସହିତ ଦୁଇଶହ ଟଙ୍କାର ବହି ପୁରସ୍କାର ମିଳିବ । ଫଳ ବାହାରିଲା ବେଳକୁ ମୁଁ କଟକର କଲେଜ ଛକରେ ଗୋଟିଏ ମେସ୍‌ରେ ଥିଲି ଏବଂ ଟ୍ୟୁସନ୍ କରି ଖର୍ଚ୍ଚ ଚଳାଉଥିଲି । ଶେଷ ପରୀକ୍ଷା ଫଳ ମୋ ଛାତ୍ର-ଜୀବନରେ ସର୍ବୋତ୍କୃଷ୍ଟ ଫଳ । ପରବର୍ତ୍ତୀ କାଳରେ ସ୍ଥାୟୀ ଭାବରେ କଲେଜ ଶିକ୍ଷକ ବୃତ୍ତି ଅବଲମ୍ବନ କରିବାରୁ ଜୀବନଯାକ ଅଧ୍ୟୟନ ଓ ଅଧ୍ୟାପନା କାର୍ଯ୍ୟ ଲାଗିରହିଲା । ପୁଣି ଦଶବର୍ଷ ପରେ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ଡକ୍ଟରେଟ୍ ଡିଗ୍ରି ପାଇଁ ଅଢ଼େଇବର୍ଷ ଗବେଷଣା ଛାତ୍ର ହେବାକୁ ପଡ଼ିଲା ଏବଂ କ୍ଲାସରେ ଯୋଗ ଦେବାକୁ ହେଲା । ମାତ୍ର ତାହା ଚାକିରି ଜୀବନ ମଧ୍ୟରେ ତାର ଆନୁଷଙ୍ଗିକ କାର୍ଯ୍ୟ ଥିଲା । ମୋର ଏବଂ ଆମ ସହପାଠୀମାନଙ୍କର ଛାତ୍ର-ଜୀବନ ୧୯୪୨ ମସିହା ଅଗଷ୍ଟ ମାସରେ ଦେଶରେ ବିରାଟ ବିପ୍ଳବ ହେଉଥିଲା-

ବେଳେ ଶେଷ ହୋଇଥିଲା । ପଛକୁ ଫେରି ଦେଖିଲେ ଆମେ ମାଇନର ପଢ଼ିବା ଠାରୁ ଏମ୍. ଏ. ପରୀକ୍ଷା ଦେବା ପର୍ଯ୍ୟନ୍ତ ସମସ୍ତ ସମୟ ଭାରତ ବର୍ଷର ତୀବ୍ର ସ୍ୱାଧୀନତା ଆନ୍ଦୋଳନର ସମୟ । ଆମେ ଜାତୀୟ ଘଟଣା-ସ୍ରୋତରେ ଭାସି ଯାଉଥିଲୁ । ବେଳେ ବେଳେ ପଢ଼ା ପଢ଼ି ଓ ପରୀକ୍ଷା ଛାଡ଼ି ଜାତୀୟ ଆନ୍ଦୋଳନରେ ପଶିଯିବା ପାଇଁ ପାଦ ପକାଉଥିଲୁ । ସେ ଦଗରେ ଗତି କରିଥିଲେ ଜୀବନ ସମ୍ପୂର୍ଣ୍ଣ ଭିନ୍ନ ହୋଇଥାନ୍ତା । ମାତ୍ର ଶେଷ ପର୍ଯ୍ୟନ୍ତ ସ୍କୁଲ କଲେଜ ଶିକ୍ଷା ସିଧା ବାଟରୁ ବିଚ୍ୟୁତ ହୋଇ ନ ଥିଲୁ ।

## ଚାକିରି ଜୀବନ ଓ ନିଯୁକ୍ତିର ଗତି

ଛାତ୍ର ଜୀବନ ଶେଷରେ କର୍ମକ୍ଷେତ୍ର ବାଛିବା ଏବଂ ସ୍ଥାୟୀ ବୃତ୍ତି ଅବଲମ୍ବନ କରିବାକୁ ସବୁ ଦେଶରେ କିଛି ସମୟ ଲାଗିଯାଏ । ଆମ ଦେଶରେ ବିଶେଷତଃ ସ୍କୁଲ କଲେଜମାନଙ୍କରେ କଳା, ବିଜ୍ଞାନ, ବାଣିଜ୍ୟ ପ୍ରଭୃତି ସାଧାରଣ ବିଷୟ-ମାନଙ୍କରେ ଶିକ୍ଷା ପାଉଥିବା ଛାତ୍ରମାନେ ଶିକ୍ଷା ଶେଷରେ କଣ କରିବେ, ତାହା ଠିକ୍ ଭାବରେ ସିଦ୍ଧାନ୍ତ କରିପାରି ନ ଥାନ୍ତି । ଏ ବିଷୟରେ ଆମେ ପଢ଼ିଲାବେଳେ ଯେଉଁ ଅବସ୍ଥା ଥିଲା, ବର୍ତ୍ତମାନ ମଧ୍ୟ ସେହି ଅବସ୍ଥା ଅଛି । ପଢ଼ା ଶେଷରେ ପିଲା-ମାନେ ବିଭିନ୍ନ ସୁବିଧା ଜନକ ଚାକିରିରେ ପଶିବାକୁ ଚେଷ୍ଟା କରନ୍ତି. ସେଥିପାଇଁ ପ୍ରତିଯୋଗିତା ପରୀକ୍ଷାମାନ ଦିଅନ୍ତି ଏବଂ ସୁବିଧାଜନକ କାର୍ଯ୍ୟଟିଏ ମିଳିଲେ ସେଥିରେ ଯୋଗ ଦିଅନ୍ତି । ଅନେକ କ୍ଷେତ୍ରରେ ପଛରେ ଅଧିକ ସୁବିଧାଜନକ କାର୍ଯ୍ୟ ମିଳିଲେ ଲୋକମାନେ ପୂର୍ବ ଚାକିରି ଛାଡ଼ି ସେଥିରେ ଯୋଗ ଦିଅନ୍ତି । ଶେଷରେ ଯେଉଁ କାମରେ ସେ ସ୍ଥାୟୀ ଭାବରେ ରହେ, ତାର ଜୀବନ, ମତିଗତି ଓ ଚାଲିଚଳଣି ଚାକିରିର ପରିବେଷ୍ଟନୀ ଅନୁସାରେ ଗଢ଼ିହୋଇଯାଏ ।

ଆମେ ପଢ଼ିଲାବେଳେ ପାଠ ପଢ଼ିଥିବା ଲୋକଙ୍କ ପାଇଁ ଚାକିରି ସଂଖ୍ୟା ଖୁବ୍ କମ୍ ଥିଲା । ୧୯୨୯ ମସିହାରୁ ୧୯୩୯ ମସିହା ପର୍ଯ୍ୟନ୍ତ ପୃଥିବୀରେ ସବୁ-ଦେଶରେ ଅର୍ଥନୈତିକ ସଙ୍କଟ ଯୋଗୁଁ ବଜାର ମାନ୍ଦା ଥିଲା । ୧୯୪୨-୪୩ ମସିହା ସମୟରେ ଉଚ୍ଚଶ୍ରେଣୀରେ ଏମ୍. ଏ. ପାସ୍ କରିଥିବା ଲୋକଙ୍କ ପାଇଁ ମାସକୁ ୭୫ କିମ୍ବା ୧୦୦ ଟଙ୍କାର ଚାକିରି ଖଣ୍ଡିଏ ପାଇବା ଅତ୍ୟନ୍ତ କଷ୍ଟକର ଥିଲା । ସେତେବେଳେ ସବ୍‌ରେଜିଷ୍ଟ୍ରାର ପଦବୀର ଦରମା ମାସକୁ ୭୫ ଟଙ୍କା, ସବ୍ ଡେପୁଟିଙ୍କର ଦରମା ମାସକୁ ୧୦୦ ଟଙ୍କା ଏବଂ କଲେଜ ଲେକ୍‌ଚରରଙ୍କ ଦରମାମାସକୁ ୧୨୫ ଟଙ୍କା ଥିଲା । ସେତେବେଳେ ଡେପୁଟି ମାଜିଷ୍ଟ୍ରେଟ୍‌ଙ୍କୁ ଚାକିରିରେ ପ୍ରତ୍ୟକ୍ଷ ଭାବରେ ନିଯୁକ୍ତ ଦିଆଯାଉ ନ ଥିଲା । ସବ୍ ଡେପୁଟି ଚାକିରିରୁ ପଦୋନ୍ନତି ପାଇ ଲୋକମାନେ ଡେପୁଟି ମାଜିଷ୍ଟ୍ରେଟ୍ ହେଉଥିଲେ । ଓଡ଼ିଶାରେ ସେତେବେଳେ

ପ୍ରତ୍ୟକ୍ଷ ଭାବରେ ବର୍ଷକୁ ପାଞ୍ଚ ଛଅ ଜଣରୁ ଅଧିକ ଲୋକ ସବ୍‌ଡେପୁଟି ପଦରେ ନିଯୁକ୍ତ ପାଉ ନ ଥିଲେ । ରେଭେନ୍‌ସା କଲେଜ ଗୋଟିଏ ମାତ୍ର କଲେଜ ଥିଲା । ସେଥିରେ କାଁ ଭାଁ ଲେକ୍‌ଚରର ପଦଟିଏ ଖାଲି ପଡ଼ିଲେ ବହୁକାଳ ଅପେକ୍ଷା କରିଥିବା ଉଚ୍ଚ ଶିକ୍ଷାପ୍ରାପ୍ତ ଲୋକ ନିଯୁକ୍ତ ପାଉଥିଲେ । ସର୍ବ ଭାରତୀୟ ସ୍ତରରେ ସେତେବେଳେ ପ୍ରାୟ ପାଞ୍ଚଟି ଆଇ. ସି. ଏସ୍. ଚାକିରି ପାଇଁ ପ୍ରତିଯୋଗିତା ହେଉଥିଲା । ପ୍ରାଦେଶିକ ସ୍ତରରେ ଦୁଇ ଚାରିଜଣ ଆଇ. ପି. ଏସ୍. ଚାକିରି ପାଇଁ ପ୍ରତିଯୋଗିତା ପରୀକ୍ଷା ହେଉଥିଲା । ଆମ ସମୟରେ ଯୁଦ୍ଧ ହେତୁ ଆଇ. ସି. ଏସ୍. ନିଯୁକ୍ତି ବନ୍ଦ ଥିଲା । ଆଜିକାଲି ସର୍ବଭାରତୀୟ ଏବଂ ରାଜ୍ୟ ସ୍ତରରେ ବିଭିନ୍ନ କ୍ଷେତ୍ରରେ ଶିକ୍ଷିତ ଲୋକମାନଙ୍କୁ ଯେପରି ହଜାର ହଜାର ସଂଖ୍ୟାରେ ନିଯୁକ୍ତି ମିଳୁଛି, ସେତେବେଳେ ତାହା ସ୍ୱପ୍ନରେ ସୁଦ୍ଧା ଆମ୍ଭେମାନେ ଭାବି ପାରୁ ନ ଥିଲୁ । ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀ ପାଇଥିବା ଭଲପିଲା ଚାରି ପାଞ୍ଚଗୋଟି ସବ୍‌ଡେପୁଟି, ଗୋଟିଏ ଦୁଇଟି ଲେକ୍‌ଚରର ଏବଂ ଦୁଇ ତିନି ଗୋଟି ଆଇ. ପି. ଏସ୍ ପଦ ପାଇଁ ପ୍ରତିଯୋଗିତା ପରୀକ୍ଷା ଦେଉଥିଲେ । ଭଲ ଡିଗ୍ରୀ ପାଇ ନ ଥିବା ଶିକ୍ଷିତ ଲୋକଙ୍କ ପକ୍ଷରେ କିରାଣି କିମ୍ବା ସ୍କୁଲଶିକ୍ଷକ ଚାକିରିଟିଏ ପାଇବା କଷ୍ଟକର ଥିଲା । ବହୁ ଶିକ୍ଷିତ ବ୍ୟକ୍ତି କେତେବର୍ଷ ବେକାର ଜୀବନ କଟାଇବା ପରେ ଗ୍ରେଟ ଗ୍ରେଟ କିରାଣି ଓ ସ୍କୁଲ ଶିକ୍ଷକ ଚାକିରିଟିଏ ପାଇଲେ କୃତକୃତ୍ୟ ହେଉଥିଲେ ।

୧୯୩୯ ମସିହାରେ ଯୁଦ୍ଧ ଲାଗିଲା ପରେ ଯୁଦ୍ଧର ଆନୁଷଙ୍ଗିକ କାର୍ଯ୍ୟ ଏବଂ ଯୋଗାଣ ବିଭାଗ ପ୍ରଭୃତିରେ ଅନେକ ଚାକିରି ଖୋଲିଲା । ୧୯୪୦ ରୁ ୧୯୪୫ ମସିହା ମଧ୍ୟରେ ବହୁ ଶିକ୍ଷିତ ଲୋକ ସେ ଚାକିରିମାନଙ୍କରେ ନିଯୁକ୍ତି ପାଇଥିଲେ । ୧୯୪୨ ମସିହାରେ ମୁଁ ଏମ୍. ଏ. ପାସ୍ କଲାବେଳକୁ ରେଭେନ୍‌ସା କଲେଜରେ ଅର୍ଥନୀତି ବିଭାଗରେ ଚାକିରି ଖାଲି ନଥିଲା । ମୁଁ ସବ୍‌ଡେପୁଟି ଏବଂ ଜୁନିଅର ମାର୍କେଟିଂ ଅଫିସର ପଦବୀ ପାଇଁ ଦରଖାସ୍ତ କରିଥିଲି । ସବ୍‌ଡେପୁଟି ଚାକିରି ତାଲିକାରେ ମୁଁ ପ୍ରଥମ ହୋଇଥିଲି । ଜୁନିଅର୍ ମାର୍କେଟିଂ ଅଫିସର ପଦ ପାଇଁ ମଧ୍ୟ ମନୋନୀତ ହୋଇଥିଲି, ମାତ୍ର ସେ ଚାକିରିରେ ଯୋଗ ଦେବାକୁ ମୁଁ ଇଚ୍ଛା ପ୍ରକାଶ କଲି ନାହିଁ । ଦୁର୍ଭାଗ୍ୟକ୍ରମେ ସବ୍‌ଡେପୁଟି ଚାକିରି-ପ୍ରାର୍ଥୀମାନଙ୍କର ସ୍ୱାସ୍ଥ୍ୟ ପରୀକ୍ଷାରେ ମୁଁ କାଟ ଖାଇଗଲି । ହୃତ୍‌ପିଣ୍ଡର ସ୍ପନ୍ଦନ ଶବ୍ଦରେ କିଛି ଅନିୟମିତତା ଥିବା ଦର୍ଶାଇ ମେଡ଼ିକାଲ୍ ବୋର୍ଡ଼ ମୋତେ ଚାକିରି ପାଇଁ ସୁପାରିସ୍ କଲେ ନାହିଁ । ଏ ଘଟଣା ପଚାଶ ବର୍ଷରୁ ଅଧିକ ହୋଇଗଲାଣି । ମୋ' ସଙ୍ଗରେ ବା ମୋ ପରେ ଯେଉଁମାନେ ମେଡ଼ିକାଲ ବୋର୍ଡ଼ରେ ଯୋଗ୍ୟ ବିବେଚିତ

ହୋଇଥିଲେ, ସେମାନଙ୍କ ମଧ୍ୟରୁ ଅନେକ ବ୍ୟକ୍ତ ମରିଗଲେଣି । ବିଗତ ପଚିଶ ବର୍ଷରେ ମୁଁ ବହୁ ଶାରୀରିକ କଷ୍ଟକର କାମ କରିଛି, ପାହାଡ଼ ପର୍ବତ ଚଢ଼ିଛି, ଜାହାଜ୍‌ରେ ୟୁରୋପ ଯାଇଛି ଏବଂ ଉଡ଼ାଜାହାଜରେ ପୃଥିବୀର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଦୁଇଥର ଯାଇଛି ଏବଂ ଭାରତ ବର୍ଷରେ ବହୁଥର ବିଭିନ୍ନ ସ୍ଥାନକୁ ଯାଇଛି । ତଥାପି ମୁଁ ଆଜିପର୍ଯ୍ୟନ୍ତ ସୁସ୍ଥ ଶରୀରରେ ବଞ୍ଚିଛି ଏବଂ କେବେ ହାସପାତାଲରେ ରହିନାହିଁ । ପଚିଶ ବର୍ଷ ପରେ ମୁଁ ସେ ବର୍ଷ ମେଡ଼ିକାଲ୍ ବୋର୍ଡ଼ରେ ଥିବା ତିନିଜଣ ଡାକ୍ତରଙ୍କ ଜ୍ଞାନ ଓ କର୍ମ-କୁଶଳତା ବିଷୟ ଚିନ୍ତା କରୁଛି । ଅପରିପକ୍ୱ ଜ୍ଞାନ ହେତୁ ଏମାନଙ୍କପରି ଲୋକଙ୍କ ଦ୍ୱାରା ଅନେକ ଯୁବକଙ୍କ ଜୀବନ ନଷ୍ଟ ହୋଇଯାଏ ।

ଯାହାହେଉ, ସବ୍‌ଡେପୁଟି ଏବଂ ଜୁନିଅର ମାର୍କେଟିଂ ଅଫିସର, ଉଭୟ ଚାକିରି ହରାଇ ମୁଁ ହତାଶ ହେଲି । ମାତ୍ର ମାସେ ଦୁଇମାସ ମଧ୍ୟରେ ମୁଁ ଯୋଗାଣ ବିଭାଗରେ ମାସକୁ ୧୨୫ ଟଙ୍କା ଦରମାରେ ସୁପରଭାଇଜର୍ ଚାକିରିଟିଏ ପାଇ ୧୯୪୩ ମସିହା ଅଗଷ୍ଟ ମାସରେ ଯାଜପୁର ସହରରେ ସେହି କାର୍ଯ୍ୟରେ ଯୋଗଦେଲି । ସେ ଚାକିରିର ମାସିକ ଦରମା ସବ୍‌ଡେପୁଟି ଚାକିରି ଦରମାଠାରୁ ୨୫ ଟଙ୍କା ଅଧିକ ଥିଲି । ମାତ୍ର ଚାକିରି ଅସ୍ଥାୟୀ ଥିଲି ଏବଂ ସବ୍‌ଡେପୁଟି ଚାକିରିଠାରୁ ମର୍ଯ୍ୟାଦା କମ୍ ଥିଲି । ପ୍ରାୟ ଏଗାରମାସ ପରେ ମୁଁ ସେହି ବିଭାଗରେ ଆସିଷ୍ଟାଣ୍ଟ୍ ସିଭିଲ୍ ସପ୍ଲାଇ ଅଫିସର ପଦବୀକୁ ପଦୋନ୍ନତ ପାଇ ସେଥିରେ ୧୯୪୪ ମସିହା ଜୁଲାଇ ମାସରେ ବ୍ରହ୍ମପୁର ସହରରେ ଯୋଗ ଦେଇଥିଲି । ସେତେବେଳେ ସେ ଚାକିରିରେ ମାସିକ ଦରମା ୧୭୫ ଟଙ୍କା ଥିଲି । ତାହା ସବ୍‌ଡେପୁଟି କମ୍ବା ଲେକ୍‌ଚରରଙ୍କ ଦରମାଠାରୁ ଯଥେଷ୍ଟ ଅଧିକ ଥିଲି । ମାତ୍ର ସେ ଚାକିରିରେ ମୋର ମୋଟେ ମନ ଲାଗିଲି ନାହିଁ । ସେ ଚାକିରିଟି ଏକେତ ଅସ୍ଥାୟୀ । ସେଥିରେ ପୁଣି ଚିନି, କିରାସିନି, ଚାଉଳ, ଗହମ ଯୋଗାଣ ନିୟନ୍ତ୍ରଣ ଯେଣି ସବୁବେଳେ ବେପାରୀମାନଙ୍କ ସହ କାରବାର । ଯେଉଁମାନଙ୍କର ପଇସା ଖାଇବାର ଇଚ୍ଛା ସେ ଚାକିରିରେ ସେମାନଙ୍କ ମନ ଲାଗିଯାଏ । ଯେଉଁମାନେ ପଇସା ଖାଇବାକୁ ଇଚ୍ଛା, କରନ୍ତି ନାହିଁ, ସେ ଚାକିରିର କାରବାର ତାଙ୍କୁ ବିପରି ଲାଗେ ।

ଯାହାହେଉ, ୧୯୪୪ ମସିହା ଜୁଲାଇ ମାସରେ ଓଡ଼ିଶାରେ ପୁରୀ, ସମ୍ବଲପୁର ଓ ବାଲେଶ୍ୱରରେ ସରକାରୀ ଡିଗ୍ରୀ କଲେଜମାନ ଖୋଲିଲି । ସେ କଲେଜମାନଙ୍କରେ ସାତ ଅଠ ଅର୍ଥନୀତି ଲେକ୍‌ଚରର ପଦବୀ ପାଇଁ ବିଜ୍ଞାପନ ଦେଖି ମୁଁ ସେଥିରୁ ଗୋଟିଏ ପଦବୀ ପାଇଁ ଦରଖାସ୍ତ କରିଥିଲି । ଓଡ଼ିଶା ପବ୍ଲିକ୍ ସର୍ଭିସ୍ କମିସନ୍ ଦ୍ୱାରା ମନୋନୀତ ହେଲାପରେ ସେ ଚାକିରିରୁ ଗୋଟିଏ ମିଳିଗଲି ।

ମୁଁ ବ୍ରହ୍ମପୁରଠାରେ ଆସିଷ୍ଟାଣ୍ଟ ସିଭିଲ୍ ସପ୍ଲାଇ ଅଫିସର୍ ରୂପେ କେବଳ ଗୋଟିଏ ମାସ ରହି ୧୯୪୪ ମସିହା ଅଗଷ୍ଟ ମାସ ଶେଷ ତାରିଖରେ ସମ୍ବଲପୁର କଲେଜରେ ଅସ୍ଥାୟୀ ଅଧ୍ୟାପକ ରୂପେ ଯୋଗ ଦେଲି ।

ସେଥିରେ ଯୋଗଦେବା ଅର୍ଥ କଲେଜ-ଶିକ୍ଷକ ଜୀବନର ସ୍ଥାୟୀ ମାର୍ଗରେ ଚାଲିଲି । ସେହି ସ୍ଥାୟୀ ମାର୍ଗରେ ଚାଲି ଶେଷରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଭାବରେ ତିନି ବର୍ଷ କାର୍ଯ୍ୟକରି ୧୯୮୦ ମସିହାରେ ଶିକ୍ଷା ବିଭାଗର କର୍ମକ୍ଷେତ୍ରରୁ ଅବସର ନେଲି ।

ଶିକ୍ଷା ବିଭାଗରେ ମୋର କାର୍ଯ୍ୟକାଳ ଏହି ୩୬ ବର୍ଷ ମଧ୍ୟରେ ଚାକିରିରେ ଉନ୍ନତି ପାଇଁ ଶିକ୍ଷକମାନଙ୍କୁ ବହୁ ସୁଯୋଗ ମିଳୁଥିଲା । ଭାରତର ସ୍ୱାଧୀନତା-ଲାଭର ବର୍ଷକ ଆଗରୁ, ୧୯୪୬ ମସିହାରୁ ଯୁଦ୍ଧୋତ୍ତର ପୁନର୍ଗଠନ ଏବଂ ଅର୍ଥନୈତିକ ବିକାଶ ନିମିତ୍ତ ଭାରତ ସରକାର ପ୍ରତିବର୍ଷ ବିଭିନ୍ନ ଯୋଜନା କାର୍ଯ୍ୟକ୍ରମରେ ବହୁ ବିଭାଗର ଅଫିସରମାନଙ୍କୁ ଉନ୍ନତ ପଶ୍ଚାତ୍ୟ ଦେଶମାନଙ୍କରେ ବିଶେଷତଃ ଇଂଲଣ୍ଡ, ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା ଓ ଅଷ୍ଟ୍ରେଲିଆ ପ୍ରଭୃତି ଦେଶର ବିଶ୍ୱବିଦ୍ୟାଳୟ ମାନଙ୍କରେ ଉଚ୍ଚଶିକ୍ଷା ପାଇବାକୁ ପଠାଇଲେ । ସେ ସବୁ ଯୋଜନା ମଧ୍ୟରୁ କେତେକ ଆଜି ସୁଦ୍ଧା ଚାଲିଛି । କିନ୍ତୁ ପ୍ରଥମ କୋଡ଼ିଏ ବର୍ଷ ମଧ୍ୟରେ ଏ ଦେଶରୁ ଶହ ଶହ ଲୋକ ଭାରତ ସରକାର କିମ୍ବା ବିଦେଶୀ ସରକାରଙ୍କଠାରୁ ବୃତ୍ତି ପାଇ ବିଦେଶୀ ବିଶ୍ୱବିଦ୍ୟାଳୟମାନଙ୍କରେ ଶିକ୍ଷା ପାଇବାକୁ ଯାଇଥିଲେ । ସେମାନଙ୍କ ମଧ୍ୟରେ କଳା, ବିଜ୍ଞାନ, ବାଣିଜ୍ୟରେ ଉଚ୍ଚଶିକ୍ଷା ପାଇଥିବା ଯୁବକମାନଙ୍କ ବ୍ୟତୀତ ବହୁ ସଂଖ୍ୟାରେ ଡାକ୍ତର, ଇଞ୍ଜିନିଅର୍, କୃଷି, ପଶୁପାଳନ ଓ ମତ୍ସ୍ୟ ବିଜ୍ଞାନ ଏବଂ ବନ ବିଜ୍ଞାନ ପ୍ରଭୃତିର ଅଫିସରମାନେ ଥିଲେ । ଆମ ରାଜ୍ୟରେ ଶିକ୍ଷା ବିଭାଗର କଲେଜ ଶିକ୍ଷକମାନେ ଯେତେବେଳେ କୌଣସି ବିଷୟରେ ଉନ୍ନତ ବିଦେଶୀ ବିଶ୍ୱବିଦ୍ୟାଳୟରୁ ଏମ୍. ଏ. ଡିଗ୍ରୀ ପାଇଲେ ଦରମାରେ ପାଞ୍ଚଗୋଟି ଏବଂ ଡକ୍ଟରେଟ୍ ପାଇଲେ ଛଅଗୋଟି ଇନ୍‌କ୍ରିମେଣ୍ଟ ପାଉଥିଲେ । ତା'ପରେ ବିଦେଶରୁ ଉଚ୍ଚ ଡିଗ୍ରୀ ପାଇ ଆସିଲେ ଚାକିରି କ୍ଷେତ୍ରରେ ପଦୋନ୍ନତି ଦେବାରେ ଅଗ୍ରାଧିକାର ଦିଆଯାଉଥିଲା । ଯେଉଁମାନେ ଉଚ୍ଚଶିକ୍ଷା ପାଇଁ ବିଦେଶକୁ ଯାଇପାରୁ ନ ଥିଲେ, ସେମାନେ ଏସବୁ ସୁବିଧାରୁ ବଞ୍ଚିତ ହେଉଥିଲେ । ବ୍ରିଟିଶ ଶାସନ କାଳରେ ମଧ୍ୟ ଭାରତୀୟ ବିଶ୍ୱବିଦ୍ୟାଳୟମାନଙ୍କରେ ଉଚ୍ଚସ୍ଥାନ ରଖିଥିବା ଛାତ୍ରମାନଙ୍କୁ ବିଲାତ ପଠାଯାଉଥିଲା ଏବଂ ସେଠାରେ ଶିକ୍ଷାପାଇ ଫେରିଲେ ବିଭିନ୍ନ ବିଭାଗରେ ଉଚ୍ଚପଦବୀମାନଙ୍କରେ ନିଯୁକ୍ତି ଦିଆଯାଉଥିଲା । କିନ୍ତୁ ଯୁଦ୍ଧ ଓ ସ୍ୱାଧୀନତା ପ୍ରାପ୍ତି ପରେ ବହୁ ସଂଖ୍ୟାରେ

ଯୁବକମାନଙ୍କୁ କେବଳ ଇଂଲଣ୍ଡ ନୁହେଁ, ୟୁରୋପ ଓ ଆମେରିକାର ବହୁ ଦେଶକୁ ପଠାଯାଉଥିଲା ।

ମୁଁ ଉଚ୍ଚଶିକ୍ଷା ପାଇଁ ବିଦେଶ ଯିବାକୁ ୧୯୪୭ ମସିହାରୁ ଉଦ୍ୟମ କଲି । ୧୯୪୯ ମସିହାରେ ଆମେରିକାର ଫୁଲବ୍ରାଇଟ ସ୍କଲାରସିପ୍ ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲି । ମାତ୍ର ଶେଷ ନିର୍ବାଚନରେ ସେ ସ୍କଲାରସିପ୍ ପାଇଲି ନାହିଁ । ସେହି ୧୯୪୯ ମସିହାରେ ବିଲାତରେ ପଢ଼ିବା ପାଇଁ ଦୁଇବର୍ଷ ଷ୍ଟୁଡ଼େଣ୍ଟଶିପ୍ ପାଇବା ପାଇଁ ଚୂଡ଼ାନ୍ତ ନିଷ୍ପତ୍ତି ହୋଇସାରିଥିଲା, ମାତ୍ର ସେବର୍ଷ ଟଙ୍କାର ମୂଲ୍ୟ ଅବମୂଲ୍ୟାୟନ ହେବାରୁ ମୋର ଯିବା ବନ୍ଦ ହୋଇଗଲା । ଶେଷରେ ୧୯୫୨ ମସିହାରେ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ପଢ଼ିବାକୁ ଭାରତ ସରକାରଙ୍କଠାରୁ ଗୋଟିଏ ବୃତ୍ତି ପାଇଲି । ସେତେବେଳକୁ ସେ ବୃତ୍ତିର ପୂର୍ବ ପରିମାଣ ଓ ସର୍ତ୍ତ ବଦଳିଯାଇଥିଲା । ତାକୁ ପରିବର୍ତ୍ତିତ ବୃତ୍ତି କାର୍ଯ୍ୟକ୍ରମ କୁହାଯାଉଥିଲା । ନୂତନ ସର୍ତ୍ତ ଅନୁସାରେ ବୃତ୍ତି ପାଉଥିବା ଛାତ୍ର କମ୍ବା ତାଙ୍କୁ ପଠାଉଥିବା ରାଜ୍ୟ ସରକାର ବୃତ୍ତିର ଅଧେ ବହନ କରିବେ । ଅନ୍ୟ ଅର୍ଦ୍ଧ ଭାରତ ସରକାର ବୃତ୍ତି ହିସାବରେ ଦେବେ । ବୃତ୍ତି ସଂଖ୍ୟା ବୃଦ୍ଧି କରିବାକୁ ବୋଧହୁଏ ଏପରି ବ୍ୟବସ୍ଥା କରାହୋଇଥିଲା ।

ଯାହାହେଉ, ଏହି ସର୍ତ୍ତରେ ମୁଁ ଭାରତ ସରକାରଙ୍କଠାରୁ ଅଧା ବୃତ୍ତିଟିଏ ପାଇଲି ଏବଂ ବହୁ ଉଦ୍ୟମ କରି ଓଡ଼ିଶା ସରକାର ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୬୦୦୦ ଟଙ୍କା ଋଣ ନେଇ ଭାରତ ସରକାରଙ୍କଠାରେ ଦାଖଲ କଲି ଏବଂ ୧୯୫୨ ମସିହା ଡିସେମ୍ବର ମାସରେ ଉଚ୍ଚ ଶିକ୍ଷା ପାଇଁ ଲଣ୍ଡନ ଗଲି । ସେଠାରେ ଦୁଇବର୍ଷ ପାଞ୍ଚମାସ ଗବେଷଣା କରି ପି. ଏଚ୍.-ଡ଼ି. ଡିଗ୍ରୀ ଲାଭ କରି ୧୯୫୫ ମସିହା ମଇ-ମାସରେ ମୋର ପୂର୍ବ ଚାକିରିକୁ ଫେରି ରେଭେନ୍ସା କଲେଜରେ ଯୋଗ ଦେଲି । ବର୍ଷକ ପରେ ଡକ୍ଟର ସଦାଶିବ ମିଶ୍ରଙ୍କ ଉଦ୍ୟମରେ ଗ୍ରାମ୍ୟ ଅର୍ଥନୀତି ଓ ସମାଜ-ବିଜ୍ଞାନରେ ଗବେଷଣା ପାଇଁ ଆମେରିକାର ଫୋର୍ଡ଼ ଫାଉଣ୍ଡେସନ୍ ଉତ୍କଳ ବିଶ୍ୱବିଦ୍ୟାଳୟକୁ ଗୋଟିଏ ଅନୁଦାନ ଦେଇଥିଲେ । ସେହି କାର୍ଯ୍ୟକ୍ରମରେ ଉତ୍କଳ ବିଶ୍ୱବିଦ୍ୟାଳୟରେ ୧୯୫୬ ମସିହାରେ ଗ୍ରାମ୍ୟ ଅର୍ଥନୀତି ଓ ସମାଜ ବିଜ୍ଞାନ ବିଭାଗ ଖୋଲିଲା । ମୁଁ ସେହି ବିଭାଗରେ ୧୯୫୬ ମସିହାରୁ ଗ୍ରାମ୍ୟ ଅର୍ଥନୀତିରେ ପ୍ରଥମେ ରିଡ଼ର ଏବଂ ପରେ ୧୯୬୦ ମସିହାରୁ ପ୍ରଫେସର ପଦରେ ନିଯୁକ୍ତ ପାଇଥିଲି । ସେ ବିଭାଗ କଟକରେ ବର୍ତ୍ତମାନ ପଢ଼ୁଆରେ ଛଅବର୍ଷ କାର୍ଯ୍ୟକରି ୧୯୬୨ ମସିହା ଜୁଲାଇ ମାସରେ ବାଣୀବିହାର ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍‌କୁ ଉଠି ଆସିଥିଲା । ପରେ ୧୯୬୩ ମସିହାରୁ ପ୍ରଧାନତଃ ମୋ' ଉଦ୍ୟମରେ ପ୍ରୟୋଗାତ୍ମକ

ଅର୍ଥନୀତିରେ ଏମ୍ ଏ. କ୍ଲାସ୍ ଖୋଲିଲି । ଆଜିଠାରୁ ବାରବର୍ଷ ପରେ ସେ ଏମ୍. ଏ ଡିଗ୍ରୀ ବିଶ୍ଳେଷଣାତ୍ମକ ଓ ପ୍ରୟୋଗାତ୍ମକ ଅର୍ଥନୀତିରେ ଏମ୍. ଏ. ଡିଗ୍ରୀ ରୂପେ ଆଖ୍ୟାୟିତ ହେଲା । ସେ ବିଭାଗ ବର୍ତ୍ତମାନ ଉତ୍କଳ ବିଶ୍ୱବିଦ୍ୟାଳୟରେ ମୁଖ୍ୟ ଅର୍ଥନୀତି ବିଭାଗରୂପେ କାର୍ଯ୍ୟ କରୁଛି ଏବଂ ଅର୍ଥନୀତିରେ ଉଚ୍ଚମାନର ଅଧ୍ୟାପନା ଓ ଗବେଷଣା ପାଇଁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗରୁ ଅନୁଦାନ ପାଉଛି ।

ମୁଁ ସେହି ବିଭାଗରେ ମୁଖ୍ୟ ଅଧ୍ୟାପକ ରୂପେ ୧୭ ବର୍ଷ କାର୍ଯ୍ୟ କଲାପରେ ୧୯୭୭ ମସିହା ସେପ୍ଟେମ୍ବର ମାସରେ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ରୂପେ ନିଯୁକ୍ତି ପାଇ ୧୯୭୭ ମସିହାଠାରୁ ୧୯୮୦ ମସିହା ପର୍ଯ୍ୟନ୍ତ ତିନିବର୍ଷ ବିଶ୍ୱବିଦ୍ୟାଳୟର କୁଳପତି ରୂପେ କାର୍ଯ୍ୟ କରିଥିଲି ।

୧୯୬୨ ମସିହା ଜୁଲାଇ ମାସରେ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗମାନ ଏବଂ ପ୍ରଶାସନିକ କାର୍ଯ୍ୟାଳୟ କଟକରୁ ବାଣୀବିହାରକୁ ସ୍ଥାନାନ୍ତରିତ ହୋଇଥିଲା । ସେତେବେଳେ ବିଶ୍ୱବିଦ୍ୟାଳୟରେ ମୋଟେ ୧୧ ଗୋଟି ଶିକ୍ଷାଦାନ ବିଭାଗ ଥିଲା । ଆମ୍ଭେମାନେ ସେହିବର୍ଷ ଜୁଲାଇ ମାସରେ ପ୍ରଥମ ବ୍ୟାଚ୍‌ରେ ବାଣୀବିହାରରେ ରହିବାକୁ ଆସିଥିଲୁ । ୧୯୬୨ ମସିହାଠାରୁ ୧୯୮୦ ମସିହା ପର୍ଯ୍ୟନ୍ତ ଅଠର ବର୍ଷ ମୁଁ ବାଣୀବିହାରରେ ରହିଥିଲି । ଏହି ଅଠର ବର୍ଷ ବିଶ୍ୱବିଦ୍ୟାଳୟର ପ୍ରଗତି ଓ ଉନ୍ନୟନର ସମୟ ଥିଲା । ଏହି ସମୟ ମଧ୍ୟରେ ବିଶ୍ୱବିଦ୍ୟାଳୟର ସ୍ନାତକୋତ୍ତର ବିଭାଗ ସଂଖ୍ୟା ୨୧ କୁ ବୃଦ୍ଧି ପାଇଥିଲା । ବାଣୀବିହାରରେ ବିଭିନ୍ନ ଶିକ୍ଷାଦାନ ବିଭାଗ, ଛାତ୍ରାବାସ, ଅଧ୍ୟାପକ ଓ କର୍ମଚାରୀମାନଙ୍କ ପାଇଁ ବାସଗୃହ, ସ୍କୁଲ, ଡାକ୍ତରଖାନା, ଲାଇବ୍ରେରୀ, କାଣ୍ଟିନ୍ ପ୍ରଭୃତି ପାଇଁ ବହୁ କୋଠାବାଡ଼ି ନିର୍ମିତ ହୋଇଥିଲା ଏବଂ ସ୍ନାତକୋତ୍ତର ବିଭାଗମାନଙ୍କରେ ଛାତ୍ରଛାତ୍ରୀ ସଂଖ୍ୟା ବହୁଗୁଣରେ ବୃଦ୍ଧି ପାଇଥିଲା । ଏହି ଅଠର ବର୍ଷଯାକ ମୁଁ ବିଶ୍ୱବିଦ୍ୟାଳୟର ସିନେଟ୍ ଓ ଶିକ୍ଷା ସଂସଦର ସଦସ୍ୟ ଥିଲି ଏବଂ ଛଅବର୍ଷ ସିଣ୍ଡିକେଟର ସଭ୍ୟ ଏବଂ ଶେଷ ତିନିବର୍ଷ କୁଳପତି ଥିଲି । ଏହି ସମସ୍ତ ମଧ୍ୟରେ ବିଶ୍ୱବିଦ୍ୟାଳୟର ଶିକ୍ଷାନୀତି ନିର୍ଦ୍ଧାରଣ, ବିଭିନ୍ନ କଲେଜରେ ଶିକ୍ଷା ପ୍ରସାର, ବିଶ୍ୱବିଦ୍ୟାଳୟ କେନ୍ଦ୍ରରେ କୋଠାବାଡ଼ି ନିର୍ମାଣ, ବିଭିନ୍ନ ବିଭାଗରେ କନ୍‌ଫରେନ୍‌ସ ଓ ଆଲୋଚନା-ଚକ୍ର ପ୍ରଭୃତି ଆୟୋଜନ, ବିଶ୍ୱବିଦ୍ୟାଳୟର ବାର୍ଷିକ ସମାବର୍ତ୍ତନ ଉତ୍ସବ ଏବଂ ରଜତ ଜୟନ୍ତୀ ସମାରୋହମାନ ଆୟୋଜନ ପ୍ରଭୃତି ସମସ୍ତ ପ୍ରଗତିମୂଳକ କାର୍ଯ୍ୟ ସହିତ ଓତପ୍ରୋତ ଭାବରେ ସଂଶ୍ଳିଷ୍ଟ ଥିଲି ।

ଏହି ଅଠର ବର୍ଷ ମଧ୍ୟରେ ପରିଜା ସାହେବ ୧୯୬୬ ମସିହା ଫେବୃଆରି ମାସ ପର୍ଯ୍ୟନ୍ତ କୁଳପତି ଥିଲେ । ତାଙ୍କ ପରେ ଡକ୍ଟର ସଦାଶିବ ମିଶ୍ର ୧୯୬୯

ମସିହା ପର୍ଯ୍ୟନ୍ତ ପାଞ୍ଚ ବର୍ଷ ଏବଂ ଡକ୍ଟର ରମାନାଥ ମହାନ୍ତ ୧୯୭୪ ମସିହା ପର୍ଯ୍ୟନ୍ତ ସାଢ଼େ ତିନ ବର୍ଷ କୁଳପତି ଥିଲେ । ତାଙ୍କ ପରେ ପ୍ରାୟ ତିନିବର୍ଷ ରାଜ୍ୟ ସରକାର ବିଶ୍ୱବିଦ୍ୟାଳୟର ଶାସନ ହାତକୁ ନେଇଥିଲେ ଏବଂ ଏକବର୍ଷ ଡକ୍ଟର ଗୌତମ ମାଥୁର ପ୍ରଶାସକ ଓ କୁଳପତି ହିସାବରେ କାର୍ଯ୍ୟ କରିଥିଲେ । ତାଙ୍କ ପରେ ମୁଁ ୧୯୭୭ ମସିହା ସେପ୍ଟେମ୍ବର ମାସଠାରୁ ୧୯୮୦ ମସିହା ସେପ୍ଟେମ୍ବର ମାସ ପର୍ଯ୍ୟନ୍ତ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲି ।

ମୁଁ କୁଳପତି ଥିବା ତିନିବର୍ଷଯାକ ଶାନ୍ତିପୂର୍ଣ୍ଣ ସମୟ ନ ଥିଲା । ପ୍ରଥମ ବର୍ଷ ପରୀକ୍ଷା ଘୁଞ୍ଚାଇବା ଏବଂ ସେମିଷ୍ଟର୍ ପଦ୍ଧତି ଉଠାଇବା ପାଇଁ ଛାତ୍ରମାନେ ଆନ୍ଦୋଳନ କରିଥିଲେ, କିନ୍ତୁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ଓ ଅଧ୍ୟାପକମାନେ ତାହାର ଦୃଢ଼ ବିରୋଧ କରିଥିଲେ । ଅନ୍ୟ ଦୁଇବର୍ଷରେ ମଝିରେ ମଝିରେ ମଧ୍ୟ ବିଭିନ୍ନ ଶ୍ରେଣୀର ଛାତ୍ରମାନେ ଗଣ୍ଡଗୋଳ କରୁଥିଲେ । ମାତ୍ର ସେ ସବୁ ପ୍ରକାର ଗଣ୍ଡଗୋଳ ଆଜିକାଲି ବିଶ୍ୱବିଦ୍ୟାଳୟ ପରିଚାଳନାର ଦୈନନ୍ଦିନ ଅଙ୍ଗ ହୋଇଛି । ମୁଁ କୁଳପତି ହେବା ପୂର୍ବରୁ ବିଶ୍ୱବିଦ୍ୟାଳୟ ପରିଚାଳନାରେ ଅବ୍ୟବସ୍ଥା ହେତୁ ପ୍ରାୟ ତିନି ବର୍ଷ ସରକାର ତାହାର ପରିଚାଳନା ନିଜ ହାତକୁ ନେଇଥିଲେ । ମୁଁ କାର୍ଯ୍ୟ ଆରମ୍ଭ କଲାବେଳକୁ ପାଞ୍ଚବର୍ଷ କାଳ ସମାବର୍ତ୍ତନ ଉତ୍ସବ ହୋଇ ନ ଥିଲା ଏବଂ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଡିଗ୍ରୀ ସାର୍ଟିଫିକେଟମାନ ବଣ୍ଟା ହୋଇ ନ ଥିଲା, ମୋର ତିନିବର୍ଷ କାର୍ଯ୍ୟ କାଳରେ ବିଶ୍ୱବିଦ୍ୟାଳୟ ଶାସନକୁ ନିୟମିତ ପନ୍ଥାରେ ପକାଇବା ପାଇଁ ଏବଂ ବିଶ୍ୱବିଦ୍ୟାଳୟର ଉନ୍ନୟନ କାର୍ଯ୍ୟରେ ପ୍ରଗତି କରିବା ପାଇଁ ମୁଁ ଯଥାସମ୍ଭବ ଉଦ୍ୟମ କରିଥିଲି । ମୋ' ସମୟରେ, ୧୯୭୮ ମସିହାରେ ତତ୍କାଳୀନ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ମୋରାରଜୀ ଦେଶାଇ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଦୀକ୍ଷାନ୍ତ ଭାଷଣ ଦେଇଥିଲେ ।

ପଛକୁ ଚାହିଁ ମୋର ସେହି ତିନିବର୍ଷର କାର୍ଯ୍ୟ ଅନୁଶୀଳନ କରି ମୁଁ ଅନୁଭବ କରିପାରୁଛି ଯେ, ସେ ତିନିବର୍ଷ ମୁଁ ଆଦର୍ଶ ଓ ବାସ୍ତବତା ମଧ୍ୟରେ ସଂଗ୍ରାମ କରୁଥିଲି । ମୁଁ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସରେ ଅଢ଼େଇବର୍ଷ ପାଠ ପଢ଼ିଥିଲି । ସେହି ସମୟରେ ମୁଁ ପୃଥିବୀ ବିଖ୍ୟାତ ଅକ୍ସଫୋର୍ଡ୍ ଓ କାମ୍ବ୍ରିଜ ବିଶ୍ୱବିଦ୍ୟାଳୟ-ମାନଙ୍କର କାର୍ଯ୍ୟକ୍ରମ, କଲେଜ ଏବଂ ଲାଇବ୍ରେରୀମାନ ବୁଲି ଦେଖିଥିଲି । ସେହି ସମୟରେ ମଧ୍ୟ ମୁଁ ଫ୍ରାନ୍ସର ପ୍ୟାରିସ୍ ବିଶ୍ୱବିଦ୍ୟାଳୟ ଯାଇ ତାହାର ଗୋଟିଏ ହଷ୍ଟେଲରେ ସାତ ଆଠ ଦିନ ରହିଥିଲି । ତାପରେ ୧୯୭୧ ମସିହାରେ ମୁଁ ଗ୍ରୀସ୍ ଯାଇ ସେଠାରେ ଆଥେନ୍ସ ଓ ସାଲୋନିକା ବିଶ୍ୱବିଦ୍ୟାଳୟମାନଙ୍କରେ ପ୍ରାୟ କୋଡ଼ିଏ ଦିନ ରହି ସେଗୁଡ଼ିକରେ କେତେକ ବକ୍ତୃତା ଦେଇଥିଲି ଏବଂ

ଆଲୋଚନାଚକ୍ରରେ ଯୋଗ ଦେଇଥିଲି । ବିଶ୍ୱବିଦ୍ୟାଳୟରେ କୁଳପତି ଥିଲାବେଳେ ମୁଁ ୧୯୭୮ ମସିହାରେ ରାଜ୍ୟଗୋଷ୍ଠୀ ବିଶ୍ୱବିଦ୍ୟାଳୟମାନଙ୍କର କୁଳପତିମାନଙ୍କର ପାଞ୍ଚବର୍ଷରେ ଥରେ ହେଉଥିବା କନ୍‌ଫରେନ୍‌ସରେ ଯୋଗ ଦେବା ପାଇଁ କାନାଡ଼ା ଯାଇଥିଲି । ସେବର୍ଷ ସେ କନଫରେନ୍‌ସ କାନାଡ଼ାର ଦୁଇଟି ବିଶ୍ୱବିଦ୍ୟାଳୟ, ଲଣ୍ଡନ, ଅଣ୍ଟାରିଓ ଓ ଭାଙ୍କୁଭର ବିଶ୍ୱବିଦ୍ୟାଳୟରେ ଅନୁଷ୍ଠିତ ହେଉଥିଲା । ତାହାପରେ ମୁଁ ପ୍ରାୟ ଏକମାସ ଯୁକ୍ତରାଷ୍ଟ୍ର ଆମେରିକାରେ ବୁଲି ସେଠାରେ ବିଶ୍ୱବିଖ୍ୟାତ ବିଶ୍ୱବିଦ୍ୟାଳୟ କଲମ୍ବିଆ, କାଲିଫର୍ଣ୍ଣିଆ ବିଶ୍ୱ-ବିଦ୍ୟାଳୟର ବର୍କ୍‌ଲେ କ୍ୟାମ୍ପସ୍, ଷ୍ଟାନ୍‌ଫୋର୍ଡ୍, ମେରିଲାଣ୍ଡ ପ୍ରଭୃତି ବିଶ୍ୱବିଦ୍ୟାଳୟ-ମାନଙ୍କର ଲାଇବ୍ରେରି ଓ କଲେଜମାନ ବୁଲି ଦେଖିଥିଲି । ପ୍ରଫେସର ଥିଲାବେଳେ ମୁଁ ଭାରତର ଦିଲ୍ଲୀ, ବମ୍ବେ, କଲିକତା, ମାଡ୍ରାଜ, ଆଲାହାବାଦ, ଚଣ୍ଡୀଗଡ଼ ପ୍ରଭୃତି ବିଶ୍ୱବିଦ୍ୟାଳୟ ସମେତ ଭାରତର ଅଧିକାଂଶ ବିଶ୍ୱବିଦ୍ୟାଳୟରେ କନ୍‌ଫରେନ୍‌ସରେ ଯୋଗ ଦେବା, ପରୀକ୍ଷା କାର୍ଯ୍ୟ ପ୍ରଭୃତି କରିବା ଦ୍ୱାରା ସେସବୁ ବିଶ୍ୱବିଦ୍ୟାଳୟମାନଙ୍କର କାର୍ଯ୍ୟପଦ୍ଧତି ବିଷୟରେ ଅବଗତ ଥିଲି ।

ସୁତରାଂ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରେ କୁଳପତି ଥିବାବେଳେ ସେ ବିଶ୍ୱବିଦ୍ୟାଳୟ କିପରି ପୃଥିବୀର ଅନ୍ୟ ବିଶ୍ୱବିଦ୍ୟାଳୟମାନଙ୍କ ପରି କାର୍ଯ୍ୟ କରିବ, ତାର ବିଭିନ୍ନ ବିଭାଗମାନଙ୍କରେ ପାଠପଢ଼ା ଓ ଗବେଷଣା କିପରି ଉନ୍ନତ ହେବ, ପରୀକ୍ଷାମାନ କିପରି ନିୟମିତ ଓ ଶୃଙ୍ଖଳିତ ଭାବରେ ହେବ, କ୍ୟାମ୍ପସ୍‌ର ଉନ୍ନୟନ କାର୍ଯ୍ୟ କିପରି ତ୍ୱରାନ୍ୱିତ ହେବ, ସେ ଆଦର୍ଶରେ ଦିନରାତି କାର୍ଯ୍ୟ କରିବାକୁ ଚାହୁଁଥିଲି, କିନ୍ତୁ ବାସ୍ତବ କ୍ଷେତ୍ରରେ ସେଗୁଡ଼ିକରେ ବହୁ ପ୍ରତିରୋଧର ସମ୍ମୁଖୀନ ହେଉଥିଲି । ବିଶ୍ୱବିଦ୍ୟାଳୟର ସବୁଦିଗରେ ଉନ୍ନୟନପାଇଁ ପାଣ୍ଠି ରାଜ୍ୟ ସରକାର ଓ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଠାରୁ ମିଳେ । ତାହା ସହଜରେ ମିଳେ ନାହିଁ । ପରୀକ୍ଷା ଠିକ୍ ସମୟରେ ଓ ଶୃଙ୍ଖଳିତ ଭାବରେ କରିବାରେ ଛାତ୍ର ଛାତ୍ରୀଙ୍କ ଠାରୁ ବହୁ ପ୍ରତିରୋଧ ହୁଏ, ଦୈନନ୍ଦିନ କାର୍ଯ୍ୟ ପରିଚାଳନାରେ ବହୁ ଦିଗରୁ ବ୍ୟାଘାତ ଉପୁଜେ ଏବଂ ପଢ଼ାଶୁଣା ପାଇଁ ଶାନ୍ତ ବାତାବରଣ ରହେ ନାହିଁ । ଏହି ଆଦର୍ଶ ଓ ବାସ୍ତବତାର ସଂଘର୍ଷ ମଧ୍ୟରେ ତିନିବର୍ଷ କଟି ଯାଇଥିଲା । ଅନେକ ବିଷୟରେ ଉଦ୍ୟମ ସଫଳ ହୋଇଥିଲା । ମାତ୍ର ଆହୁରି ଅନେକ ବିଷୟରେ ଆଦର୍ଶ କଳ୍ପନା-ରାଜ୍ୟରେ ରହିଯାଇଥିଲା । ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍ ଚାରିପାଖରେ ପାଚେରି କରିବା, କ୍ୟାମ୍ପସ୍‌ରେ ବାଣୀଭବନ ନିର୍ମାଣ କରିବା, ଲାଇବ୍ରେରୀକୁ ପୁନର୍ଗଠିତ ଓ ବଡ଼ କରିବା ପ୍ରଭୃତି ଆକାଂକ୍ଷା କଳ୍ପନାରେ ରହିଗଲା । ପନ୍ଦରବର୍ଷ ପରେ ମଧ୍ୟ ଦେଖୁଛି, ସେ କାମ ହୋଇପାରି ନାହିଁ ।

ଜୀବନର ଶେଷକାଳରେ ଆଉ ଗୋଟିଏ କଥା ମନେପଡ଼ୁଛି । ଉତ୍କଳର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ତାଙ୍କ 'ମୋ ସମୟର ଓଡ଼ିଶା' ବହିରେ ଲେଖିଛନ୍ତି ଯେ, ସବୁବେଳେ କୌଣସି ଅଦୃଶ୍ୟ ହାତ ତାଙ୍କୁ ଗୋଟିଏ ଅତି ଦରିଦ୍ର ପରିବାରରୁ ଏବଂ ଦୁଃସ୍ଥ ଅବସ୍ଥାରୁ ଜଣେ ଯଶସ୍ୱୀ ଐତିହାସିକ ହେବାକୁ ବାଟ କଢ଼ାଇ ନେଇ-ଥିଲା । ମୁଁ ମଧ୍ୟ ଭାବୁଛି ଯେ, ଅଧିକାଂଶ ବ୍ୟକ୍ତିଙ୍କ ଜୀବନରେ ଏପରି ଅଦୃଶ୍ୟ ହାତ ତାଙ୍କୁ ବିଭିନ୍ନ ଦିଗରେ ଟାଣି ନେଇଯାଏ, ଘଟଣାସବୁ ଆକସ୍ମିକ ଭାବରେ ଘଟେ । ଏପରି ଗତିକୁ କିଏ କହେ ଯୋଗ ଥିଲା, ଏହା ହେଲା, ଆଉ କିଏ କହେ । ଭାଗ୍ୟ ହେତୁ ବା ଈଶ୍ୱରଙ୍କ ଇଚ୍ଛା ହେତୁ ଏହା ହେଲା । ଭବିଷ୍ୟତ ଘଟଣା ଜାଣିବା ପାଇଁ ବ୍ୟଗ୍ର ହୋଇ ମଣିଷ ଅନେକ ସମୟରେ ଜ୍ୟୋତିଷ ଶାସ୍ତ୍ରର ଆଶ୍ରୟ ନିଏ । ଫଳିତ ଜ୍ୟୋତିଷ ଗଣନାରେ ମୋର ବିଶ୍ୱାସ ନାହିଁ । ମାତ୍ର ବହୁବାର ଆକସ୍ମିକ ଘଟଣାମାନଙ୍କ ଦ୍ୱାରା ମୋ ଜୀବନର ଗତିପଥ ବଦଳିଯାଇଛି ବୋଲି ମୁଁ ଅନୁଭବ କରୁଛି ।

ଆମ ପରିବାର ଦରିଦ୍ର ପରିବାର ନ ଥିଲା । ମହାଜନ ଘର ବୋଲି ତିନି ଗୃଭ ମୌଜାରେ ଆମର ଖ୍ୟାତି ଥିଲା, ଯଦିଓ ଆମର ମହାଜନି କାରବାର ବଡ଼ ଆକାରର ନ ଥିଲା । କିନ୍ତୁ ଘରେ କେହି ମୋର ପଢ଼ାପଢ଼ି ତତ୍ତ୍ୱ ନେଉ ନ ଥିଲେ ବୋଲି ମୋର ସ୍ପଷ୍ଟ ମନେ ଅଛି । ଗାଁ ପ୍ରାଥମିକ ସ୍କୁଲରେ କୌଣସି ଆଡ଼ମ୍ବରରେ କିମ୍ବା ପୂଜାପାଠ ପରେ ବିଦ୍ୟା ଆରମ୍ଭ କରି ନ ଥିଲି । ସାଙ୍ଗସାଥୀ ପିଲଙ୍କ ସାଙ୍ଗରେ ଯାଇ ସ୍କୁଲରେ ପଢ଼ି ବସିଥିଲି । ଗାଁ ସ୍କୁଲର ଶିକ୍ଷକ, ଆମ ପରିବାର ଓ ମୋତେ ଚିହ୍ନିଥିଲେ ଏବଂ ସ୍କୁଲରେ ମୋର ନାମ ଲେଖିଥିଲେ । ମୋର ବୟସ କେତେ, ଆମ ଘରୁ ପଗ୍ଭରି ବୁଝିଥିବେ । ପରେ ଅବଶ୍ୟ ମୋର ବଡ଼ ଭାଇ, ଯେ କି ସେତେବେଳେ କଲେଜରେ ପଢ଼ୁଥିଲେ, ମୋତେ ଗୋଟିଏ ପ୍ରାଥମିକ ସ୍କୁଲରୁ ଆଣି ଅନ୍ୟ ଗୋଟିଏ ସ୍କୁଲରେ ନାମ ଲେଖାଇ ଦେଇଥିଲେ । ତୃତୀୟ ଶ୍ରେଣୀ ପରେ ମୁଁ ବୃତ୍ତି ପରୀକ୍ଷା ଦେବାକୁ ଗଲି । ପରୀକ୍ଷାରେ ଭଲ କରିଥିଲି । ମାତ୍ର ସେ ସର୍କଲ୍‌ରେ ଦୁଇଗୋଟି ବୃତ୍ତି ଥିବାରୁ ମୋଠାରୁ ଦୁଇଗୁଣ ନମ୍ବର ଅଧିକ ରଖିଥିବା ଦୁଇଜଣ ପିଲା ତାହା ପାଇଗଲେ । ମୋତେ ବୃତ୍ତି ମିଳିଲା ନାହିଁ । ପରୀକ୍ଷା ପରେ ମୁଁ ଗାଁ ପିଲଙ୍କ ସାଙ୍ଗରେ ଯାଇ ଆମ ଗାଁରେ ଥିବା ଅପର ପ୍ରାଇମେରୀ ସ୍କୁଲରେ ପଢ଼ିଲେ ସେ ସ୍କୁଲର ହେଡ଼ପଣ୍ଡିତ ମଧ୍ୟ ଆମର ଆତ୍ମୀୟ ଥିବାରୁ ଆମ ପରିବାରକୁ ଭଲଭାବରେ ଜାଣିଥିଲେ । ପୂର୍ବ ସ୍କୁଲରୁ ସାର୍ଟିଫିକେଟ ମଗାଇ ଆଣି ଚତୁର୍ଥ ଶ୍ରେଣୀରେ ମୋର ନାମ ଲେଖାଇ ଦେଇଥିଲେ । ସେ ସ୍କୁଲରେ ଦୁଇବର୍ଷ ପଢ଼ିଲି ପରେ ମୋର ମାଇନର ସ୍କୁଲକୁ ପଢ଼ିବା ପାଇଁ ଯିବାର କଥା । ମାତ୍ର ମୁଁ ଅପର ପ୍ରାଇମେରୀ ପାସ୍

କଲବର୍ଷ ପାଟନା ଇଞ୍ଜିନିଅରିଂ କଲେଜରେ ପଢ଼ୁଥିବା ମୋର ବଡ଼ଭାଇ ମରିଗଲେ । ଏ ଘଟଣା ଆମ ପରିବାର ପାଇଁ ଗୋଟିଏ ବଡ଼ ବିପଦ ଥିଲା । ଆମର ଏକାନ୍ନବର୍ତ୍ତୀ ବଡ଼ ପରିବାରର ସମସ୍ତ ଲୋକ ହତାଶ ହୋଇପଡ଼ିଲେ । ମୋର ନନାଙ୍କ ବୟସ ସେତେବେଳେ ଷାଠିଏ ବର୍ଷ ଏବଂ ବୋଉଙ୍କ ପ୍ରାୟ ୫୫ ବର୍ଷ ବୟସ ହୋଇଥିଲା । ସେମାନେ ଦୁଃଖରେ ଭାଙ୍ଗିପଡ଼ିଲେ । ମୋର ପଢ଼ା ବିଷୟରେ ଆଉ କେହି ମନେ ଯୋଗ ଦେଲେ ନାହିଁ କିମ୍ବା ମୋତେ କୌଣସି ମାଇନର ସ୍କୁଲକୁ ପଠାଇବାକୁ ଇଚ୍ଛା କଲେ ନାହିଁ ।

ପରବର୍ତ୍ତୀ ଶିକ୍ଷାବର୍ଷର ପାଞ୍ଚମାସ ଚାଲିଗଲା । ମୁଁ ଅପର ପ୍ରାଇମେରୀ ପରୀକ୍ଷା ପାସ୍ କରି ଗାଁରେ ବୁଲିଲି । ଉଚ୍ଚ ଶିକ୍ଷା ପାଇବାର ଆଶା ଛାଡ଼ିଦେଇଥିଲି । ପାଞ୍ଚମାସ ପରେ ଆମ ଘର ପାଖରୁ ଆଉ ଗୋଟିଏ ପିଲା ଆମ ଗାଁ ଠାରୁ ବାର ମାଇଲ ଦୂର ପଞ୍ଚପଲ୍ଲୀ ଗାଁରେ ଥିବା ମାଇନର ସ୍କୁଲକୁ ପଢ଼ିବାକୁ ଯାଉଥିବା ଶୁଣି ମୁଁ ସେଠାକୁ ଯିବାକୁ ବୋଉ ପାଖରେ କାନ୍ଦିଲି । ଆମ ଘରେ ବୋଉର ପ୍ରତିପତ୍ତି ଖୁବ୍ ଥିଲା । ସେ ନିରକ୍ଷର ଥିଲେ ବି ଆମ ପରିବାରର ସମସ୍ତ ଲୋକ ଏବଂ ଗାଁର ବହୁ ଲୋକ ତା କଥା ମାନୁଥିଲେ । ମୋତେ ସେହି ମାଇନର ସ୍କୁଲକୁ ପଠାଇବାକୁ ବୋଉର ମନ ବଳିଲା । ସେ ଗାଁରେ ମୋର ଗୋଟିଏ ପିଇସୀ ଘର ଥିଲା । ଅଳ୍ପଦିନ ପରେ ସେହି ପିଇସୀଙ୍କ ପୁଅ ଭାଇ ଆମ ଘରକୁ ଆସିଥିଲେ । ମୁଁ ତାଙ୍କରି ସଙ୍ଗରେ ସେ ସ୍କୁଲରେ ପଢ଼ିବାକୁ ଗଲି । ମୁଁ ଅପର ପ୍ରାଇମେରୀ ସ୍କୁଲରେ ଇଂରାଜୀ ପଢ଼ି ନ ଥିଲି । ପୁଣି ସେତେବେଳକୁ ଶିକ୍ଷାବର୍ଷର ପାଞ୍ଚ ମାସ ବିତି ଯାଇଥିଲା । ତେଣୁ ସେ ସ୍କୁଲରେ ପୁଣି ପଞ୍ଚମ ଶ୍ରେଣୀରେ ନାମ ଲେଖାଇଲି । ସ୍କୁଲ ହଷ୍ଟେଲରେ ରହି ପାଠ ପଢ଼ିଲି ଏବଂ ରହିବା ଓ ପଢ଼ିବା ଖର୍ଚ୍ଚ ଘରୁ ନେଲି । କିନ୍ତୁ ପ୍ରଥମରୁ ମୋତେ ସେଠାକୁ ପଠାଇବାକୁ କେହି ଭାବି ନ ଥିଲେ ବା ରାଜି ହୋଇ ନଥିଲେ ।

ଏ ଘଟଣା ଘଟି ନ ଥିଲେ ମୁଁ ଉଚ୍ଚ ଶିକ୍ଷା ପାଇପାରି ନ ଥାନ୍ତି । ଘରେ ଅନ୍ୟ ଭାଇମାନଙ୍କ ପରି ଜମିବାଡ଼ି ଓ ଗୃହବାସ ଖବର ବୁଝି ଗାଁରେ ରହିଥାନ୍ତି । ମୋର ଜୀବନ ସମ୍ପୂର୍ଣ୍ଣ ଭିନ୍ନ ହୋଇ ଆଆନ୍ତା । ମାଇନର ପରୀକ୍ଷା ପରେ ମଧ୍ୟ ସେହି ପ୍ରକାର ପରିସ୍ଥିତି ଉପୁଜିଥିଲା । ମାଇନର ପରୀକ୍ଷାରେ ମୁଁ ବୃତ୍ତି ପାଇଲି ନାହିଁ । ତେଣୁ ଆଉ ଉପରକୁ ନ ପଢ଼ାଇବାକୁ ଘରେ ସ୍ଥିର ହେଲା । କଟକରେ ଗୋଟିଏ ପିଲାକୁ ହାଇସ୍କୁଲରେ ପଢ଼ାଇବାକୁ ସେତେବେଳେ ଅନ୍ତତଃପକ୍ଷେ ମାସକୁ ଦଶ ଟଙ୍କା ଲାଗିଯାଉଥିଲା । ସେତେବେଳେ ଧାନ ଭରଣ ଆଠଟଙ୍କା ଥିଲା । ମୋ ପିଛା ମାସକୁ ଭରଣେ ଧାନ ଖର୍ଚ୍ଚ କରିବାକୁ ଆମ ପରିବାର ଅକ୍ଷମ ଥିଲା । ମୁଁ

କଲୁ ପଢ଼ିବାକୁ ଖୁବ୍ ଆଗ୍ରହ ଥିଲି । ମୋର ବୋଉ କିଛି ଟଙ୍କା ମହାଜନି କରୁଥିଲା । ସେହି ଟଙ୍କାରୁ ସେ ମୋତେ କଟକରେ ପଢ଼ାଇବାକୁ ସାହସ କଲା । କଟକରେ ଆମର ଜଣେ ଚନ୍ଦ୍ରୀ ମୋହରର ଥିଲେ । ତାଙ୍କର ବସାରେ ରହି ପଢ଼ିବା ପାଇଁ ବଦେଇଙ୍କ ସଙ୍ଗରେ କଟକ ଗଲି ଏବଂ ରେଭେନ୍‌ସା କଲିଜିଏଟ୍ ସ୍କୁଲରେ ନାମ ଲେଖାଇଲି । ସେ ମୋହରରଙ୍କ ବସା ମେସ୍‌ରେ ଦୁଇବର୍ଷ ରହିବା ପରେ ମୋର ମୃତ ବଡ଼ଭାଇଙ୍କ ସାଙ୍ଗ ଜଣେ ଇଞ୍ଜିନିଅରଙ୍କ ଘରେ ବର୍ଷେ ରହିଲି ଏବଂ ଶେଷ ବର୍ଷ କାଠଯୋଡ଼ୀ ହଷ୍ଟେଲରେ ରହି ମାଟ୍ରିକୁଲେସନ୍ ପରୀକ୍ଷା ଦେଲି । ମୋର ପରମ ଉପକାରୀ ମୋହରର କୃପାସିନ୍ଧୁ ମିଶ୍ର ଓ ମୋର ଭାଇନାଙ୍କ ସାଙ୍ଗ ଇଞ୍ଜିନିଅର ଅକ୍ଷୟ କୁମାର ଦାଶ ମୋତେ ତାଙ୍କ ସାନଭାଇ ପରି ଅତି ସ୍ନେହ କରୁଥିଲେ । ମୁଁ ଭଲ ପଢୁଥିବାରୁ ସେମାନେ ମୋତେ ଆଦର କରୁଥିଲେ । ସେମାନଙ୍କ ସାହାଯ୍ୟ ଓ ସହାନୁଭୂତି ହେତୁ ମାଟ୍ରିକୁଲେସନ ପଢ଼ିବା ସମ୍ଭବ ହେଲା । ମାଟ୍ରିକୁଲେସନ ପରୀକ୍ଷା ଏବଂ ଆଇ. ଏ. ପରୀକ୍ଷାରେ ସ୍କଲାର୍‌ଶିପ୍ ପାଇବା ହେତୁ କଲେଜରେ ପଢ଼ିବାରେ ବିଶେଷ ଅସୁବିଧା ହେଲା ନାହିଁ ।

ବି.ଏ ପରୀକ୍ଷାରେ ପରୀକ୍ଷା ବର୍ଜନ, ହଷ୍ଟେଲ ଛାଡ଼ ପ୍ରଭୃତି କଥା ଆଗରୁ କହିଛି । ଅନର୍ସ ପରୀକ୍ଷାରେ ଓଡ଼ିଶାରେ ପ୍ରଥମ ସ୍ଥାନ ନପାଇ ଦ୍ୱିତୀୟ ସ୍ଥାନ ପାଇବାରୁ ପୋଷ୍ଟ୍‌ଗ୍ରାଜୁଏଟ୍ ସ୍କଲରଶିପ୍ ପାଇଲି ନାହିଁ, କାରଣ ସେତେବେଳେ ପ୍ରତି ବିଷୟରେ ଗୋଟିଏ ମାତ୍ର ପୋଷ୍ଟଗ୍ରାଜୁଏଟ୍ ସ୍କଲର୍‌ଶିପ୍ ଦିଆଯାଉଥିଲା । ମୁଁ କଟକରେ ବି. ଏଲ୍ କମ୍ବା ଆଇନ ପଢ଼ିବା ପାଇଁ ଯତ୍ନ କରୁଥିଲି ଏବଂ ଗୋଟିଏ ମେସ୍‌ରେ ରହୁଥିଲି । ସେତେବେଳେ ମୋର ସେହି ଉପକାରୀ ଭାଇ କୃପାସିନ୍ଧୁ ମିଶ୍ର ମୋତେ ସାହାଯ୍ୟ କଲେ । ସେ ପ୍ରଫେସର ବିପିନବିହାରୀ ରାୟଙ୍କୁ ମୋତେ ପାଟନାରେ ଏମ୍. ଏ. ପଢ଼ାଇବାପାଇଁ ସାହାଯ୍ୟ ଦେବାକୁ ଅନୁରୋଧ କଲେ । ବିପିନବାବୁ ତାଙ୍କର ଖୁବ୍ ଜଣାଶୁଣା ବ୍ୟକ୍ତି ଥିଲେ । ବିପିନବାବୁ ଗରିବ ମେଧାବୀ ଛାତ୍ରମାନଙ୍କୁ ଉଚ୍ଚଶିକ୍ଷା ପାଇଁ ସାହାଯ୍ୟ କରୁଥିଲେ ବୋଲି ମୁଁ ଜାଣି ନଥିଲି । ବିପିନବାବୁ ଅର୍ଥନୀତି ଅଧ୍ୟାପକ ବ୍ରହ୍ମାନନ୍ଦଙ୍କୁ ମୋର ଚରିତ୍ର ଓ ପାଠପଢ଼ା ବିଷୟରେ ପଚାରିଲେ । ତାଙ୍କଠାରୁ ମୋର ଉଚ୍ଚ ପ୍ରଶଂସା ଶୁଣି ମୋତେ ପୁରି ଦୁଇବର୍ଷ କାଳ ପାଟନାରେ ଏମ୍. ଏ. ପଢ଼ିବା ପାଇଁ ମାସକୁ ୨୦ ଟଙ୍କା ହିସାବରେ ସାହାଯ୍ୟ କଲେ । ଟଙ୍କା ପଠାଇବାରେ ସେ କୌଣସି ମାସରେ ବିଲମ୍ବ କରି ନାହାନ୍ତି । ତାଙ୍କର ନିୟମିତ ଦାନ ତାଙ୍କ ମହତ୍ ଗୁଣର ପରିଚୟ । ତାଙ୍କ ଟଙ୍କା ମୁଁ ପରେ କିସ୍ତି କରି ପରିଶୋଧ କରିଥିଲି । କିନ୍ତୁ ଉପକାର

ସହଜରେ ପରିଶୋଧ କରି ହୁଏ ନାହିଁ । ଋଣ ଟଙ୍କା ପରିଶୋଧ ପରେ ୧୯୫୦ ମସିହାରେ ବିପିନବାବୁ ମୋ ପାଖକୁ ନିମ୍ନଲିଖିତ ଚିଠି ଲେଖିଥିଲେ ।

Sunshine Road
Cuttack-2
5-6-50

My dear Bidyadhar,

Many thanks for your letter of third inst. I have received Rs. 20/- through M. O. It was very kind of you to have thought of repaying what you took from me for your studies and I greatly appreciate the scrupulous care and regularity with which you have been able to clear of what was due to me. More than this. I value the noble spirit expressed in the words that "the benefit done can never be repaid". May god's blessings be with you !

Gostha is preparing for the Supplementary Examination and intends to leave for Sambalpur on 20th inst.

Please keep an eye on him as you have been doing so far. I need not say much.

Sri Bidyadhar Mishra
At./P.O.—Kaduapada,
Via—Jagatsinghpur
Dist. Cuttack

yours affectionately
**Bipin Roy**

କୃପାସିନ୍ଧୁବାବୁଙ୍କର ମୁଁ କୌଣସି ପ୍ରତି-ଉପକାର କରିପାରି ନାହିଁ । ସେ ମୃତ୍ୟୁ ପର୍ଯ୍ୟନ୍ତ ନିଃସ୍ୱାର୍ଥପର ଭାବରେ ମୋତେ ସାହାଯ୍ୟ କରିଥିଲେ । ପାଟନାରେ ଏମ୍. ଏ. ପଢ଼ିବାକୁ ଯାଇ ନଥିଲେ କିମ୍ବା ପଢ଼ା ଶେଷରେ ସବ୍‌ଡେପୁଟି କାମରେ ନିଯୁକ୍ତ ହୋଇଥିଲେ ଜୀବନର ଗତିପଥ ଭିନ୍ନ ହୋଇଥାନ୍ତା । ମାତ୍ର ଅଦୃଶ୍ୟ ହାତର ଇଙ୍ଗିତରେ କଲେଜ-ଶିକ୍ଷକ ଭାବରେ ଜୀବନ କଟାଇଲି ଏବଂ ଶେଷ ପର୍ଯ୍ୟାୟରେ ଉଚ୍ଚ ସ୍ଥାନ ଅଧିକାର କରିବାକୁ ସମର୍ଥ ହୋଇଥିଲି ।

## ଦେଶ ମିଶ୍ରଣ ଓ ନୂତନ ଓଡ଼ିଶା ରାଜ୍ୟ ଗଠନ
( ୩ )

ବିଂଶ ଶତାବ୍ଦୀର ଆମ ସମୟରେ ଭାରତବର୍ଷରେ ଏବଂ ଆମ ରାଜ୍ୟରେ ବହୁ ଯୁଗାନ୍ତକାରୀ ଘଟଣା ଘଟିଯାଇଛି । ଆମ ସମବୟସ୍କ ଲୋକମାନେ ସମସ୍ତେ ପରାଧୀନ ଭାରତରେ ଜନ୍ମ ହୋଇଥିଲେ । ୧୯୪୭ ମସିହାରେ ଭାରତ ସ୍ୱାଧୀନ ହେଲାବେଳକୁ ମୋତେ ୩୧ ବର୍ଷ ବୟସ ହୋଇଥିଲା । ସେତେବେଳ ପର୍ଯ୍ୟନ୍ତ ସ୍କୁଲ କଲେଜରେ ନାମ ଲେଖାଇବା କମ୍ବା ଚାକିରି ପାଇଁ ଆବେଦନ କରିବା ଫରମମାନଙ୍କରେ ନାଗରିକତ୍ୱ ବିଷୟରେ ଆମେସବୁ ବ୍ରିଟିଶ ସାମ୍ରାଜ୍ୟର ପ୍ରଜା ବା British Subject ବୋଲି ଲେଖୁଥିଲୁ । ଆମ ବୟସର ଲୋକମାନେ ତାଙ୍କ ଜୀବନର ଏକ ତୃତୀୟାଂଶରୁ ଅଧିକ କାଳ ପରାଧୀନ ଭାରତରେ ବଞ୍ଚିଛନ୍ତି ଏବଂ ଅନ୍ୟ ଦୁଇ ତୃତୀୟାଂଶ ସମୟ ସ୍ୱାଧୀନ ଭାରତରେ ବଞ୍ଚିଛନ୍ତି । ଦୁଇପ୍ରକାର ଶାସନ ମଧ୍ୟରେ ପ୍ରଭେଦ ସେମାନେ ପ୍ରତ୍ୟକ୍ଷ ଭାବରେ ଅନୁଭବ କରିପାରିଛନ୍ତି ।

ସେହିପରି ଆମ୍ଭମାନଙ୍କର ବୟସ କୋଡ଼ିଏ ବାଇଶି ବର୍ଷ ହେବାଯାଏ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ନଥିଲା । ପାଞ୍ଚଗୋଟି ଜିଲ୍ଲା ସମ୍ବଳିତ ଓଡ଼ିଶା ତତ୍କାଳୀନ ବିହାର-ଓଡ଼ିଶା ପ୍ରଦେଶର ଅନ୍ତର୍ଭୁକ୍ତ ଥିଲା । ଆହୁରି ବାରବର୍ଷ ପର୍ଯ୍ୟନ୍ତ ଓଡ଼ିଶାର ଗଡ଼ଜାତ ଅଞ୍ଚଳ ଓଡ଼ିଶା ପ୍ରଦେଶ ସହିତ ମିଶି ନଥିଲା । ଆମ ସମୟରେ ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା ଏବଂ ୧୯୪୮ ମସିହାରେ ଓଡ଼ିଶାର ଗଡ଼ଜାତ ଅଞ୍ଚଳ ସବୁ ଓଡ଼ିଶାପ୍ରଦେଶ ସହିତ ମିଶିଗଲା । ମୋ' ବିଚାରରେ ୧୯୪୭ ମସିହାରେ ସ୍ୱାଧୀନତା ପ୍ରାପ୍ତି ବିଂଶ ଶତାବ୍ଦୀରେ ସମଗ୍ର ଭାରତବାସୀଙ୍କ ପାଇଁ ଯେପରି ସର୍ବପ୍ରଧାନ ଘଟଣା, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଏବଂ ଓଡ଼ିଶା ପ୍ରଦେଶରେ ଗଡ଼ଜାତ ରାଜ୍ୟମାନଙ୍କ ମିଶ୍ରଣ ଓଡ଼ିଆମାନଙ୍କ ପାଇଁ ସେହିପରି ଶତାବ୍ଦୀର ସର୍ବପ୍ରଧାନ ଘଟଣା । ସ୍ୱତନ୍ତ୍ର ପ୍ରଦେଶ ଗଠନ ପୂର୍ବରୁ ଓଡ଼ିଆମାନଙ୍କର ପ୍ରଶାସନିକ ସ୍ଥିତି ନଥିଲା ଏବଂ ସେମାନଙ୍କର ଅବସ୍ଥା ଦୟନୀୟ ଥିଲା । ପୂର୍ବର ସେହି ଦୁଃସ୍ଥ ଅବସ୍ଥା ହେତୁ ଆଜିସୁଦ୍ଧା ଭାରତବର୍ଷର ଅନ୍ୟ

ରାଜ୍ୟମାନଙ୍କ ତୁଳନାରେ ଓଡ଼ିଶା ଗୋଟିଏ ଅତ୍ୟନ୍ତ ଅନୁନ୍ନତ ଓ ଅନଗ୍ରସର ରାଜ୍ୟ ହୋଇ ରହିଛି ।

ପ୍ରାଚୀନ କାଳରେ ଭାରତବର୍ଷର ଦକ୍ଷିଣପୂର୍ବ ଅଞ୍ଚଳରେ ଏକ ବିସ୍ତୃତ ଭୂଖଣ୍ଡରେ ଓଡ଼ିଆ ଭାଷାର ଜନ୍ମ-ବିକାଶ ହୋଇଥିଲା । କେଉଁ ଯୁଗରେ ଓ କିପରି ଭାବରେ ଏହି ଭାଷାର ବିକାଶ ହୋଇଥିଲା ଏବଂ ନିକଟତମ ପୂର୍ବାଞ୍ଚଳ ରାଜ୍ୟ-ମାନଙ୍କର ଭାଷା ମାଗଧୀ, ମୈଥିଳୀ, ଅସମିୟା ଏବଂ ସଂସ୍କୃତ ଓ ପ୍ରାକୃତ ଭାଷା ସହିତ ଏହି ଭାଷାର ପୁରାତନ ଓ ବର୍ତ୍ତମାନ ସମ୍ବନ୍ଧ ବିଷୟରେ ବହୁ ଭାଷା ତତ୍ତ୍ୱବିତ୍ ଗବେଷଣା ଓ ଆଲୋଚନା କରୁଛନ୍ତି । ଏଠାରେ ଏତିକ ମାତ୍ର କୁହାଯାଇପାରେ ଯେ, ଖ୍ରୀଷ୍ଟପୂର୍ବ ବହୁ ଶତାବ୍ଦୀ ପୂର୍ବରୁ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ଏବଂ ପୂର୍ବରେ ସମୁଦ୍ରଠାରୁ ପଶ୍ଚିମରେ ଅମରକଣ୍ଟକ ପର୍ଯ୍ୟନ୍ତ ବିସ୍ତୃତ ଏକ ବିରାଟ ଅଞ୍ଚଳରେ ଓଡ଼ିଆଭାଷାଭାଷୀ ଲୋକମାନେ ବାସ କରୁଥିଲେ । ଐତିହାସିକମାନେ କହନ୍ତି, ପ୍ରାଚୀନ କାଳରେ ଓଡ଼ିଆଭାଷାଭାଷୀ ଲୋକମାନେ କଳିଙ୍ଗ, ଉତ୍କଳ, ଓଡ୍ର ଓ କୋଶଳ ଏହି ଚାରି ରାଜ୍ୟରେ ବାସ କରୁଥିଲେ । ଏହି ଚାରି ରାଜ୍ୟର ସୀମା ଠିକ୍ କେଉଁଯାଏ ଥିଲା, ତାହା କହିବା କଷ୍ଟକର, କାରଣ ସବୁକାଳରେ ସୀମାନ୍ତବର୍ତ୍ତୀ ଅଞ୍ଚଳ-ମାନଙ୍କରେ ଓଡ଼ିଆ ଭାଷାଭାଷୀ ଲୋକଙ୍କ ସହିତ ପଡ଼ୋଶୀ ରାଜ୍ୟ-ଭାଷାଭାଷୀ ଲୋକ ବାସକରିବା ସ୍ୱାଭାବିକ । ଅନେକ ଐତିହାସିକ କହନ୍ତି ଯେ, ବିଭିନ୍ନ କାଳରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ହୋଇ ନପାରିଥାଏ । ସମୟେ ସମୟେ ପରାକ୍ରମୀ ଓଡ଼ିଆ ରାଜାମାନେ ସଦର୍ପରେ ଉତ୍ତରରେ ଗଙ୍ଗା ଓ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ମାଡ଼ିଯାଉଥିଲେ । ସୂର୍ଯ୍ୟବଂଶୀ ରାଜାଙ୍କ ପରି କେତେକ ଓଡ଼ିଆ ରାଜା ମଧ୍ୟ ସମୟ ସମୟରେ ଦକ୍ଷିଣରେ କାବେରୀ ନଦୀ ପର୍ଯ୍ୟନ୍ତ ଯାଇ ଯୁଦ୍ଧରେ ଜୟଲାଭ କରିଥିଲେ । କିନ୍ତୁ ସେମାନେ ଜୟ କରିଥିବା ସବୁ ଅଞ୍ଚଳ ଓଡ଼ିଆ ଭାଷାଭାଷୀ ଲୋକଙ୍କ ଦ୍ୱାରା ଅଧ୍ୟୁଷିତ ନଥିଲା । ସେ ଯାହାହେଉ, ବହୁ ଶତାବ୍ଦୀ ଧରି ଆଧୁନିକ କଟକ, ପୁରୀ, ବାଲେଶ୍ୱର ଓ ଗଞ୍ଜାମ ଜିଲ୍ଲା ଅଞ୍ଚଳ ଓଡ଼ିଶା ରାଜ୍ୟର କେନ୍ଦ୍ରସ୍ଥଳ ଥିଲା ଏବଂ ଓଡ଼ିଶାର ରାଜାମାନେ ସେହି ଅଞ୍ଚଳରେ ପ୍ରତ୍ୟକ୍ଷ ଭାବରେ ରାଜତ୍ୱ କରୁଥିଲେ ବୋଲି ଐତିହାସିକମାନେ ପ୍ରାୟ ଏକମତ ।

ଓଡ଼ିଶାର ପଶ୍ଚିମାଞ୍ଚଳ ବର୍ତ୍ତମାନର ମଧ୍ୟପ୍ରଦେଶ ପର୍ଯ୍ୟନ୍ତ ଠିକ ଭାବରେ ବିସ୍ତୃତ ଥିଲା । ମାତ୍ର ସେ ସବୁ ଅଞ୍ଚଳ ବିଭିନ୍ନ କରଦ ରାଜ୍ୟରେ ବିଭକ୍ତ ହୋଇଥିଲା । ସେ ରାଜ୍ୟମାନଙ୍କର ଅଣ-ଆଦିବାସୀ ଲୋକମାନେ ଓଡ଼ିଆ ଭାଷାଭାଷୀ

ଥିଲେ । ସେଠାରେ ବିଭିନ୍ନ ସମୟରେ ବିଭିନ୍ନ ବଂଶର ଓଡ଼ିଆ ରାଜାମାନେ ରାଜତ୍ୱ କରୁଥିଲେ । ସମସ୍ତ ଓଡ଼ିଆ ରାଜ୍ୟ ଏକ କେନ୍ଦ୍ର ଓଡ଼ିଆ ନରପତିଙ୍କ ଅଧୀନରେ ଥିବା ସମ୍ବନ୍ଧରେ ମଧ୍ୟ ଅନେକ ଲୋକ ଭିନ୍ନ ମତ ପ୍ରକାଶ କରନ୍ତି । ଏ ଶତାବ୍ଦୀରେ ଓଡ଼ିଶାରାଜ୍ୟ ସହିତ ଗଡ଼ଜାତ ରାଜ୍ୟମାନଙ୍କ ମିଶ୍ରଣ ସମୟରେ ପାଟଣା ମହାରାଜାଙ୍କ ପରି କେତେକ ରାଜା ଯୁକ୍ତି କରିଥିଲେ ଯେ, ସେମାନେ କୌଣସି ଐତିହାସିକ କାଳରେ ଓଡ଼ିଶାର ରାଜାଙ୍କ ଅଧୀନରେ ନଥିଲେ । କିନ୍ତୁ ଏକଥା ସତ୍ୟ ଯେ, ଏହି କରଦ ରାଜ୍ୟର ଓଡ଼ିଆ ରାଜାମାନେ ନିଜ ନିଜ ମଧ୍ୟରେ ଏବଂ ପୁରୀର ଠାକୁରରାଜାଙ୍କ ସହିତ ବୈବାହିକ ସୂତ୍ରରେ ବନ୍ଧୁବାନ୍ଧବ ସମ୍ପର୍କ ରଖିଥିଲେ । ଗୋଟିଏ ରାଜବଂଶରୁ ଅନ୍ୟ ରାଜବଂଶ ପୋଷ୍ୟପୁତ୍ର ଗ୍ରହଣ କରୁଥିଲେ । ସବୁ ରାଜ୍ୟରେ ଓଡ଼ିଆ ଭାଷାଭାଷୀ ପ୍ରଜାମାନଙ୍କର ସଂସ୍କୃତି, ଦୈନନ୍ଦିନ ଜୀବନ-ଯାପନର ରୀତି, ଖାଦ୍ୟପେୟ, ଓଷା ବାର, ପୂନେଇଁ ପରବ, ବିବାହ ବ୍ରତୋପନୟନ ପ୍ରଭୃତି ଉତ୍ସବ ସମାନ ପ୍ରକାରର ଥିଲା । ବିଭିନ୍ନ ନିକଟବର୍ତ୍ତୀ ରାଜ୍ୟର ପ୍ରଜାମାନଙ୍କ ମଧ୍ୟରେ ଜାତି ଭିତ୍ତିରେ ବୈବାହିକ ସମ୍ବନ୍ଧ ସ୍ଥାପିତ ହେଉଥିଲା । ସାଂସ୍କୃତିକ ଦିଗରୁ ଏ ସମସ୍ତ ରାଜ୍ୟରେ ବାସ କରୁଥିବା ଓଡ଼ିଆମାନେ ଏକ ଥିଲେ ।

କରଦ ରାଜ୍ୟମାନଙ୍କ ସହିତ ପୂର୍ଣ୍ଣ ଓଡ଼ିଆଭାଷୀ ଅଞ୍ଚଳ, କଳିଙ୍ଗ, ଉତ୍କଳ, ଓଡ୍ର ଏବଂ କୋଶଳ ପ୍ରଭୃତି ରାଜ୍ୟମାନଙ୍କୁ ଯେଉଁ ଖ୍ରୀଷ୍ଟପୂର୍ବ ବହୁ ଶତାବ୍ଦୀ ଧରି ଗୋଟିଏ ବିଶାଳ ଅଞ୍ଚଳ ଭାବରେ ପରିଗଣିତ ହେଉଥିଲା ବୋଲି ଐତିହାସିକମାନେ ପ୍ରାୟ ଏକମତ । ଅଙ୍ଗ, ମଗଧ, ପଞ୍ଚାଳ, କଳିଙ୍ଗ ପ୍ରଭୃତି ରାଜ୍ୟର ସ୍ୱତନ୍ତ୍ର ଅସ୍ତିତ୍ୱ ମହାଭାରତ ଯୁଗରୁ ସ୍ୱୀକୃତ । ମାତ୍ର ଇତିହାସରୁ ଜଣାଯାଏ ଯେ, ସାଂସ୍କୃତିକ ଐକ୍ୟ ସତ୍ତ୍ୱେ ଇଂରେଜ ଶାସନ ଆରମ୍ଭର ପ୍ରାୟ ତିନିଶହ ବର୍ଷ ପୂର୍ବରୁ ଆଫଗାନ୍, ମୋଗଲ ଓ ମରହଟ୍ଟା ମାନଙ୍କ ରାଜତ୍ୱ ସମୟରେ ଓଡ଼ିଶାର ବହୁ ଅଂଶ ଛିନ୍ନ ଭିନ୍ନ ହୋଇ ବିଭିନ୍ନ ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ବହୁ ଶ୍ରେଷ୍ଠ ବଡ଼ ଗଡ଼ଜାତ ରାଜା ମୋଗଲ ସମ୍ରାଟ ଏବଂ ପରେ ମରହଟ୍ଟା ରାଜାଙ୍କର କରଦ ରାଜାରୂପେ ନିଜ ନିଜ ରାଜ୍ୟରେ ଶାସନ କରୁଥିଲେ । ଦକ୍ଷିଣ ଓଡ଼ିଶାର ଗୋଟିଏ ବଡ଼ ଅଂଶ ବହୁକାଳ ହାଇଦ୍ରାବାଦର ନିଜାମଙ୍କ ଅଧୀନରେ ଥିଲା । ଓଡ଼ିଶାର ଠାକୁର-ରାଜାଙ୍କ ଶାସିତ ଅଞ୍ଚଳ ସୀମିତ ଥିଲା । ପୂର୍ଣ୍ଣ ଓଡ଼ିଶା ରାଜ୍ୟ ଏକ ଖଣ୍ଡ ହିସାବରେ ଏକ ଶାସନ ଅଧୀନରେ ନଥିବାରୁ ଇଂରେଜମାନେ ବିଭିନ୍ନ ସମୟରେ ବିଭିନ୍ନ ଅଞ୍ଚଳ ଅଧିକାର କରି ସେଗୁଡ଼ିକର ଶାସନ ନିମିତ୍ତ ବିଭିନ୍ନ ବ୍ୟବସ୍ଥା କରିଥିଲେ ।

ଓଡ଼ିଶା ବୋଲି ଯେଉଁ ଅଞ୍ଚଳ ଇଂରେଜମାନେ ୧୮୦୩ ମସିହା ଡିସେମ୍ବର ମାସରେ ମରହଟ୍ଟାମାନଙ୍କଠାରୁ ଅଧିକାର କରିଥିଲେ, ତାହା କେବଳ କଟକ,

ପୁରୀ, ବାଲେଶ୍ୱର ଜିଲ୍ଲାକୁ ନେଇ ପୂର୍ବର ବିଶାଳ ଓଡ଼ିଶାର ଗୋଟିଏ କ୍ଷୁଦ୍ର ଅଂଶ ଥିଲା । ଇଂରେଜମାନେ ଭାରତବର୍ଷରେ ଭାଷା ଓ ସାଂସ୍କୃତିକ ଐକ୍ୟ ଭିତ୍ତିରେ ସେମାନଙ୍କର ଶାସିତ ପ୍ରଦେଶମାନ ଗଢ଼ିନଥିଲେ । ବମ୍ବେ ପ୍ରେସିଡେ଼ନ୍‌ସିରେ ମହାରାଷ୍ଟ୍ର ଏବଂ ଗୁଜରାଟ ରାଜ୍ୟମାନ ଅନ୍ତର୍ଭୁକ୍ତ ଥିଲେ । ମହାରାଷ୍ଟ୍ରର ଏକ ବିରାଟ ଅଂଶ ମଧ୍ୟପ୍ରଦେଶ ଅଧୀନରେ ଥିଲା । ତାମିଲନାଡ଼ୁ ଏବଂ ଆନ୍ଧ୍ର ପ୍ରଦେଶର ଏକ ବିରାଟ ଅଂଶ ମାନ୍ଦ୍ରାଜ ପ୍ରେସିଡେନ୍‌ସି ଅଧୀନରେ ଶାସିତ ହେଉଥିଲା । ଆନ୍ଧ୍ରର ଅନ୍ୟ ବୃହତ୍ ଅଂଶ ଏବଂ ଓଡ଼ିଶାର କିଛି ଅଂଶ ହାଇଦରାବାଦ୍ ନିଜାମଙ୍କ ଅଧୀନରେ ଥିଲା । ବଙ୍ଗ, ବିହାର, ଓ ଓଡ଼ିଶାର ପ୍ରଧାନ ଅଂଶ ବଙ୍ଗ ପ୍ରେସିଡେ଼ନ୍‌ସି ଅଧୀନରେ ଥିଲା । ମରହଟ୍ଟାମାନଙ୍କଠାରୁ ଓଡ଼ିଶା ଡିଭିଜନ ନେଲାପରେ ଇଂରେଜମାନେ ତାହାକୁ ବଙ୍ଗ ପ୍ରେସିଡେନ୍‌ସି ଅଧୀନରେ ରଖିଥିଲେ । ଓଡ଼ିଶା ଡିଭିଜନର ଉତ୍ତରରେ ମେଦିନୀପୁର, ସିଂହଭୂମି ପ୍ରଭୃତି ଅଞ୍ଚଳ ଦକ୍ଷିଣରେ ଗଞ୍ଜାମ ଓ କୋରାପୁଟ ଅଞ୍ଚଳ ଏବଂ ଗଡ଼ଜାତ ରାଜ୍ୟମାନ ଅନ୍ତର୍ଭୁକ୍ତ ନଥିଲା । ଗଡ଼ଜାତ ରାଜ୍ୟମାନ ମୋଗଲ ଓ ମରହଟ୍ଟାମାନଙ୍କ ପରେ ବ୍ରିଟିଶ ସରକାରଙ୍କ ଅଧୀନରେ କରଦ ରାଜ୍ୟ ହୋଇ ରହିଥିଲେ । ଗଞ୍ଜାମ ଓ କୋରାପୁଟ ଅଞ୍ଚଳ ହାଇଦରାବାଦ୍ ନିଜାମ ଇଂରେଜମାନଙ୍କୁ ସମର୍ପଣ କଲାପରେ ତାହା ମାନ୍ଦ୍ରାଜ ପ୍ରେସିଡେ଼ନ୍‌ସି ଅଧୀନରେ ରହିଲା । ସମ୍ବଲପୁର ରାଜ୍ୟ ଡେଲହାଉସିଙ୍କ ଡକ୍ଟ୍ରିନ୍ ଅଫ୍ ଲାପ୍‌ସ୍ ନୀତିରେ ଖାସ୍ ହେଲାପରେ ମଧ୍ୟପ୍ରଦେଶରେ ମିଶିଲା । ମେଦିନୀପୁର ବଙ୍ଗ ପ୍ରେସିଡେ଼ନ୍‌ସିର ଗୋଟିଏ ସ୍ୱତନ୍ତ୍ର ଜିଲ୍ଲା ହୋଇଥିଲା ଏବଂ ସିଂହଭୂମି ଛୋଟନାଗପୁର ଡିଭିଜନର ଅନ୍ତର୍ଭୁକ୍ତ ହୋଇ ବଙ୍ଗ ପ୍ରେସିଡେ଼ନ୍‌ସିରେ ଥିଲା । ବଙ୍ଗ ପ୍ରେସିଡେ଼ନ୍‌ସିର ଓଡ଼ିଶା ଡିଭିଜନରେ କେବଳ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲା ଅନ୍ତର୍ଭୁକ୍ତ ଥିଲା । ପ୍ରାୟ ଶହେବର୍ଷ ପରେ ୧୯୦୫ ମସିହାରେ ସେଥିରେ ସମ୍ବଲପୁର ଜିଲ୍ଲା ମିଶିଥିଲା ।

୧୯୧୨ ମସିହାରେ ଯେତେବେଳେ ବିହାର-ଓଡ଼ିଶା ପ୍ରଦେଶ ଗଠିତ ହେଲା, ସେତେବେଳେ ଓଡ଼ିଶା ଡିଭିଜନରେ କେବଳ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଏବଂ ଅନୁଗୁଳ ଜିଲ୍ଲା ଅନ୍ତର୍ଭୁକ୍ତ ଥିଲା । ଏହି ପ୍ରକ୍ରିୟାରେ ବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧି ବେଳକୁ ଓଡ଼ିଆମାନେ ବଙ୍ଗଳା, ବିହାର, ମଧ୍ୟପ୍ରଦେଶ, ଓ ମାନ୍ଦ୍ରାଜ ପ୍ରେସିଡେ଼ନ୍‌ସି ଏବଂ ବିଭିନ୍ନ ଗଡ଼ଜାତ ରାଜ୍ୟମାନଙ୍କରେ ବିକ୍ଷିପ୍ତ ଭାବରେ ରହିଥିଲେ । ସମସ୍ତ ଓଡ଼ିଆଭାଷା-ଭାଷୀ ଅଞ୍ଚଳ ମିଶି ଓଡ଼ିଶା ବୋଲି ଏକ ସ୍ୱତନ୍ତ୍ର ଶାସିତ ପ୍ରଦେଶ ନଥିଲା । ସେତେବେଳେ ଓଡ଼ିଆମାନେ ଯେପରି ବିକ୍ଷିପ୍ତ ଭାବରେ ରହିଥିଲେ, ଭାରତବର୍ଷରେ ଅନ୍ୟ କୌଣସି ଭାଷାଭାଷୀ ଲୋକ

ସେପରି ବିକ୍ଷିପ୍ତ ଭାବରେ ନଥିଲେ । ଓଡ଼ିଆମାନେ ବିକ୍ଷିପ୍ତ ଭାବରେ ବହୁ ପ୍ରଦେଶରେ ରହିବା ହେତୁ ସେମାନଙ୍କର ଭାଷା, ସାହିତ୍ୟ, ସଂସ୍କୃତି, ଶିକ୍ଷା ଓ ଆର୍ଥିକ ଅବସ୍ଥା ପ୍ରଭୃତି ଉପରେ କିପରି କୁପ୍ରଭାବ ପଡ଼ୁଥିଲା, ତାହା ଇଂରେଜ ସରକାର ବହୁକାଳ ଯାଏ ହୃଦୟଙ୍ଗମ କରିପାରି ନଥିଲେ । ବିକ୍ଷିପ୍ତ ଭାବରେ ରହୁଥିବା ଓଡ଼ିଆମାନେ ମଧ୍ୟ ଏ ବିଷୟରେ ସଚେତନ ହୋଇପାରି ନଥିଲେ ।

ଯେଉଁସବୁ ପ୍ରଦେଶରେ ଓଡ଼ିଆମାନେ ବିକ୍ଷିପ୍ତ ହୋଇ ରହିଥିଲେ, ସେ ସବୁ ପ୍ରଦେଶମାନଙ୍କରେ ସେମାନେ ସଂଖ୍ୟାଲଘୁ ସମ୍ପ୍ରଦାୟ ଥିଲେ । ସେମାନେ ପ୍ରଦେଶର ଶେଷଭାଗରେ ଏବଂ ପ୍ରଦେଶ ରାଜଧାନୀରୁ ବହୁ ଦୂରରେ ରହୁଥିଲେ ଏବଂ ପ୍ରଦେଶର ଶାସନକଳ ଓ ଚାକିରି-ବାକିରିରେ ସେମାନଙ୍କର କୌଣସି ସ୍ଥାନ ନଥିଲା । ସେମାନଙ୍କ ମଧ୍ୟରେ ଶିକ୍ଷା-ପ୍ରସାର ହେଉନାହିଁ ଏବଂ ସେମାନଙ୍କର ଭାଷା, ଶିକ୍ଷା ଏବଂ ଅର୍ଥନୈତିକ ଅବସ୍ଥା—ସବୁ ଅବହେଳିତ ହୋଇ ରହିଥିଲା । ସେମାନେ ବସ୍ତୁତଃ ସେହି ପ୍ରଦେଶମାନଙ୍କରେ ବାହାରର ଲୋକ ଭାବରେ ରହିଥିଲେ । ବଙ୍ଗ ପ୍ରେସିଡେନ୍‌ସିରେ ରହିଥିବା ଓଡ଼ିଶା ଡିଭିଜନ ଓଡ଼ିଆମାନଙ୍କର ସର୍ବବୃହତ ଏବଂ ମୁଖ୍ୟ ଅଞ୍ଚଳ ହୋଇଥିଲେ ସୁଦ୍ଧା, ସେଥିରେ କଚେରି, ସ୍କୁଲ ଏବଂ ସମସ୍ତ ଶାସନ ବିଭାଗରେ ଥିବା ଚାକିରି ବଙ୍ଗାଳୀମାନେ ପାଉଥିଲେ । କଚେରିରେ ବଙ୍ଗାଳୀମାନେ ଓକିଲ, ହାକିମ ଓ କିରାଣି ଥିଲେ । ଓଡ଼ିଶା ଡିଭିଜନରେ ସ୍କୁଲ ଶିକ୍ଷକ, କଲେଜ ଅଧ୍ୟାପକ, ଓଭରସିଅର୍, ଇଞ୍ଜିନିଅର୍, ଡାକ ଓ ରେଲ ବିଭାଗର କର୍ମଚାରୀ ପ୍ରଭୃତି ସମସ୍ତ ଚାକିରି ସେମାନେ ଅଧିକାର କରିଥିଲେ । ଓଡ଼ିଆମାନେ ଇଂରେଜୀ ଶିକ୍ଷା ପାଇ ନ ଥିବାରୁ, କୌଣସି ବିଭାଗର ଚାକିରିରେ ପଶି ପାରୁ-ନଥିଲେ । ସେମାନେ ଦରିଦ୍ର ଓ ଅଜ୍ଞ ଥିବାରୁ ଗାଁ ରେ ଚାଷୀ ବା ମୂଲିଆ ଏବଂ ସହରମାନଙ୍କରେ ବାବୁମାନଙ୍କର ଚାକର ପୂଜାରୀ ରୂପେ କାର୍ଯ୍ୟ କରି ହୀନସ୍ଥାନ ଜୀବନ ଯାପନ କରୁଥିଲେ । ଓଡ଼ିଶାରୁ ହଜାର ହଜାର ସଂଖ୍ୟକ ଅଶିକ୍ଷିତ ଓ ଦରିଦ୍ରଲୋକ କଲିକତାରେ ବିଭିନ୍ନ କଳକାରଖାନାରେ ମଜୁରିଆ କମ୍ବା ବାବୁମାନଙ୍କ ଘରେ ପୂଜାରୀ, ଚାକର, ମାଳୀ ପ୍ରଭୃତି ଭାବରେ କାମ କରିବାକୁ ଯାଉଥିଲେ । କଟକ, ପୁରୀ, ବାଲେଶ୍ୱର, ଏପରିକି ଯାଜପୁର, କେନ୍ଦ୍ରାପଡ଼ା, ଭଦ୍ରକ ପ୍ରଭୃତି ଶ୍ରେଷ୍ଠ ଓ ବଡ଼ ସହରମାନଙ୍କରେ ବଙ୍ଗାଳୀ ବାବୁମାନେ ହାକିମ, ଓକିଲ, ବିଭିନ୍ନ ବିଭାଗର ସରକାରୀ କର୍ମଚାରୀ ଏବଂ ଶ୍ରେଷ୍ଠ ବଡ଼ କଣ୍ଟ୍ରାକ୍ଟର ଓ ବ୍ୟବସାୟୀ ହିସାବରେ କାର୍ଯ୍ୟ କରି ସେ ସ୍ଥାନମାନଙ୍କରେ କୋଠାବାଡ଼ି କରି ବାସ କରୁଥିଲେ । କଲିକତାର ବଙ୍ଗାଳୀମାନେ ଓଡ଼ିଶାର ଉପକୂଳ ଜିଲ୍ଲା-ମାନଙ୍କରେ ଅଧିକାଂଶ ଜମିଦାରୀ କିଣି ନେଇଥିଲେ । ସେ ଜମିଦାରୀମାନଙ୍କରେ ମାନେଜରଠାରୁ ଆରମ୍ଭ କରି ତଳସ୍ତରର କର୍ମଚାରୀ କାମ ବଙ୍ଗାଳୀମାନେ

ପାଉଥିଲେ । ଏ ସବୁ ଜିଲ୍ଲାମାନଙ୍କରେ ଅନେକ ଗ୍ରାମାଞ୍ଚଳରେ ମଧ୍ୟ ବହୁ ବଙ୍ଗବାସୀ ଭୂସମ୍ପତ୍ତି କିଣି ଏବଂ ଘରଦ୍ୱାର କରି ସ୍ୱଚ୍ଛନ୍ଦ ଭାବରେ ରହୁଥିଲେ ।

ବସ୍ତୁତଃ କଲିକତାରେ ବାସ କରୁଥିବା ବାବୁମାନଙ୍କର ଶିକ୍ଷିତ ପିଲାମାନଙ୍କ ପାଇଁ ବିଭିନ୍ନ ବୃତ୍ତିରେ କାମ କରି ଧନ ଅର୍ଜନ କରିବା ନିମିତ୍ତ, ବଙ୍ଗଳା, ବିହାର, ଓଡ଼ିଶା, ଆସାମ ପ୍ରଭୃତି ଅଞ୍ଚଳରେ ବିସ୍ତୀର୍ଣ୍ଣ କ୍ଷେତ୍ର ଉନ୍ମୁକ୍ତ ଥିଲା । ସେଥିଯୋଗୁଁ ବଙ୍ଗଳା ଭାଷା, ସାହିତ୍ୟ ଓ ସଂସ୍କୃତି ଏହିସବୁ ପ୍ରଦେଶମାନଙ୍କରେ ପ୍ରାଧାନ୍ୟ ଲାଭ କଲା । ଏହିସବୁ ସୁବିଧା ହରାଇବା ବଙ୍ଗବାସୀଙ୍କ ପକ୍ଷରେ ଜୀବନ-ମରଣ ସମସ୍ୟା ଥିଲା । ସେଥିଯୋଗୁଁ ସେମାନେ ଓଡ଼ିଶା, ବିହାର ଓ ଆସାମ ପ୍ରଭୃତି ରାଜ୍ୟରେ ସେମାନଙ୍କ ଆସନ ଦୃଢ଼ୀଭୂତ କରିବାକୁ ସର୍ବଦା ଚେଷ୍ଟା କରୁଥିଲେ ଏବଂ ଓଡ଼ିଆ ଓ ଆସାମୀ ପ୍ରଭୃତି ଭାଷାକୁ ଲୋପ କରିଦେବାକୁ ଉଦ୍ୟମ କରୁଥିଲେ । କଲିକତା ବଙ୍ଗ ପ୍ରେସିଡ଼େନ୍‌ସିର ଏବଂ ବହୁକାଳ ଭାରତବର୍ଷର ରାଜଧାନୀ ଥିବା ହେତୁ ଏବଂ ଇଂରାଜୀ ଶିକ୍ଷାଦାନୀ ସ୍କୁଲ, କଲେଜ, ବିଶ୍ୱବିଦ୍ୟାଳୟ ପ୍ରଭୃତିର କେନ୍ଦ୍ର ହୋଇଥିବାରୁ ବଙ୍ଗବାସୀ ଯୁବକମାନେ ଶିକ୍ଷିତ ହୋଇ ବଙ୍ଗଳା ସହିତ ବିହାର, ଓଡ଼ିଶା, ଆସାମ ପ୍ରଭୃତି ଅଞ୍ଚଳରେ ପ୍ରାୟ ସବୁ ଚାକିରି ଅଧିକାର କରିଥିଲେ । ବଙ୍ଗାଳୀମାନେ ଆଗରୁ ଚାକିରିମାନଙ୍କରେ ଥିବାରୁ ନୂତନ ଚାକିରି ସବୁ ବଙ୍ଗାଳୀମାନଙ୍କୁ ଦେବାକୁ ଚେଷ୍ଟା କରୁଥିଲେ । କଲିକତା ବଙ୍ଗଳା ଭାଷା, ସାହିତ୍ୟ, ସଂସ୍କୃତି ଓ ସମାଜର କେନ୍ଦ୍ର ଥିଲା । ଅନ୍ୟ ପ୍ରଦେଶ, ବିଶେଷତଃ ପୂର୍ବାଞ୍ଚଳ ପ୍ରଦେଶମାନଙ୍କରେ ବାସ କରୁଥିବା ବଙ୍ଗାଳୀମାନେ ଗୋଟିଏ ବୃହତ୍ତ୍ର ବଙ୍ଗ ସମାଜର ଅଙ୍ଗ ଥିଲେ । ଏ ସମସ୍ତଙ୍କ ମଧ୍ୟରେ ବିବାହାଦି ସୂତ୍ରରେ ବନ୍ଧୁବାନ୍ଧବ ସମ୍ପର୍କ ଆଜି ପର୍ଯ୍ୟନ୍ତ ଚାଲିଛି । ଦୂର ପ୍ରଦେଶମାନଙ୍କରେ ରହୁଥିବା ବଙ୍ଗାଳୀମାନେ ଧନୀ ହୋଇଗଲେ କିମ୍ବା ବିଭିନ୍ନ କ୍ଷେତ୍ରରେ ବଡ଼ ହୋଇଗଲେ କଲିକତାରେ ରହିବାକୁ ଅଧିକ ପସନ୍ଦ କରନ୍ତି । କଟକର ଜାନକୀନାଥ ବୋଷ, ଅନ୍ନଦାଶଙ୍କର ରାୟ, ମିହିର ସେନ ପ୍ରଭୃତିଙ୍କ ପରିବାର ଏ ପଦ୍ଧତିର ଅଳ୍ପ କେତେକ ନମୁନା ମାତ୍ର ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଫକୀରମୋହନ ଏ ସବୁ ବିଷୟରେ ତାଙ୍କର ଅନୁଭୂତି, ତାଙ୍କ "ଆତ୍ମଜୀବନ ଚରିତ" ବହିରେ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ସେ ଲେଖିଛନ୍ତି ଯେ, ମେଦିନୀପୁର ଜିଲ୍ଲାରେ ପ୍ରାୟ ଅଧାଅଧି ଲୋକ ଓଡ଼ିଆ ଥିଲେ ଏବଂ ସେମାନେ ଜିଲ୍ଲାର ଦକ୍ଷିଣାଞ୍ଚଳରେ ବାସ କରୁଥିଲେ । କିନ୍ତୁ ବଙ୍ଗ ସରକାରଙ୍କ ଶିକ୍ଷା ବିଭାଗର କର୍ମଚାରୀମାନେ ଷଡ଼ଯନ୍ତ୍ର କରି ପ୍ରାଥମିକ ସ୍କୁଲ ସ୍ତରରେ ଓଡ଼ିଆ ଭାଷା ଶିକ୍ଷା ଉଠାଇ ଦେଇଥିଲେ । ବାଲେଶ୍ୱର ଜିଲ୍ଲା ସମେତ

ଓଡ଼ିଶାର ସବୁ ଅଞ୍ଚଳରେ ପ୍ରତ୍ୟେକ ବିଭାଗରେ ପ୍ରଧାନ କର୍ମଚାରୀ ବଙ୍ଗାଳୀମାନେ ଥିବାରୁ ସବୁ ବିଭାଗରେ ଓଡ଼ିଆ ଭାଷା ଉଠାଇଦେଇ ବଙ୍ଗଳା ଭାଷା ଚଳାଇବା ପାଇଁ ସେମାନେ ଅକ୍ଲାନ୍ତ ଚେଷ୍ଟା କରୁଥିଲେ । ସଭା ସମିତିରେ ବକ୍ତୃତା, ସମ୍ବାଦ ବାହିକାରେ ଲେଖାଲେଖି ଏବଂ ପ୍ରକାଶ୍ୟରେ ଏହା ବିଦ୍ୱେଷରେ ତର୍କ ବିତର୍କ କରୁଥିବାରୁ, ଫକୀରମୋହନ ବଙ୍ଗାଳୀ ବାବୁମାନଙ୍କର ପରମ ଶତ୍ରୁ ହୋଇ-ଯାଇଥିଲେ ଏବଂ ସେମାନେ ତାଙ୍କୁ ଅତ୍ୟନ୍ତ ଘୃଣା କରୁଥିଲେ ।

୧୯୦୬ ମସିହା ସମୟରେ ବଙ୍ଗାଳୀ ନେତାମାନଙ୍କର ଓଡ଼ିଶା ଓ ଓଡ଼ିଆ-ମାନଙ୍କ ପ୍ରତି ମନୋଭାବ ନୀଳକଣ୍ଠ ଦାସ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି । ସେ ଲେଖିଛନ୍ତି ଯେ, ସେ ବର୍ଷ ବଙ୍ଗ ପ୍ରଦେଶରେ ହେଉଥିବା ପ୍ରାଦେଶିକ କଂଗ୍ରେସ ସମ୍ମିଳନୀରେ ମଧୁସୂଦନ ଦାସ "ଓଡ଼ିଆ ଭାଷାଭାଷୀମାନେ ସ୍ୱତନ୍ତ୍ର ଏବଂ ଓଡ଼ିଆ ଭାଷାଭାଷୀ ଏକ" ଏହି ମର୍ମରେ ଗୋଟିଏ ପ୍ରସ୍ତାବ ଧାର୍ଯ୍ୟ କରାଇବା ପାଇଁ ବଡ଼ ଉତ୍ସାହରେ ଲାଗିଥିଲେ । କିନ୍ତୁ ବିଷୟ ନିର୍ବାଚନ କମିଟିରେ ସାର୍ ସୁରେନ୍ଦ୍ରନାଥ ବାନାର୍ଜିଙ୍କଠାରୁ ଆରମ୍ଭ କରି ସମସ୍ତ ବଙ୍ଗବାସୀ ନେତା ଏହି ପ୍ରସ୍ତାବର ବିରୋଧ କରିବାରୁ ଏହି ପ୍ରସ୍ତାବଟି ଗୃହୀତ ହୋଇପାରିଲା ନାହିଁ । ମଧୁବାବୁ ସେହିଦିନ-ଠାରୁ ଚିରଦିନ ପାଇଁ କଂଗ୍ରେସରୁ ବିଦାୟ ନେଲେ ଏବଂ ୧୯୦୩ ମସିହାଠାରୁ ଓଡ଼ିଶାରେ ଉତ୍କଳ ସମ୍ମିଳନୀ ଆରମ୍ଭ କଲେ । ସେ ସମୟରେ କଲିକତା ବିଶ୍ୱବିଦ୍ୟାଳୟର ବଙ୍ଗାଳୀ ବିଭାଗୀୟ ମୁଖ୍ୟମାନେ କିପରି ଦେଶୀଭାଷା ଶିକ୍ଷା ବିଭାଗରେ ବି.ଏ. ପରୀକ୍ଷାରେ ଓଡ଼ିଆରେ ପ୍ରଶ୍ନ ହେବା ପ୍ରସ୍ତାବ ସବୁବେଳେ ଅଗ୍ରାହ୍ୟ କରୁଥିଲେ, ତାହା ମଧ୍ୟ ନୀଳକଣ୍ଠ ଦାସ ତାଙ୍କ ଆତ୍ମଜୀବନୀ ବହିରେ ଲେଖିଛନ୍ତି ।

ସେହି ୧୯୦୦ ମସିହା ପାଖାପାଖି ସମୟର ଅବସ୍ଥା ଗୋଦାବରୀଶ ମିଶ୍ର ତାଙ୍କ 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ' ବହିରେ ଲେଖିଛନ୍ତି । ସେ ଲେଖିଛନ୍ତି, 'ପାଠ ପଢ଼ୁଆ ଲୋକଙ୍କର ବଙ୍ଗଳା ଛଡ଼ା ଗତ୍ୟନ୍ତର ନ ଥିଲା । କି କଚେରି କି ବିଦ୍ୟାଳୟ, କି ଡାକ୍ତରଖାନା, ସବୁଠାରେ ଉପରୁ ତଳ ପର୍ଯ୍ୟନ୍ତ ପ୍ରାୟ ବଙ୍ଗାଳୀ ରହିଥିଲେ । ଓଡ଼ିଆ ଯାହା ଥିଲେ, ଅଧ କଟାରୀଏ ପାଚନରେ ଟୋପାଏ ମହୁ ପରିଖ ପରି ମାତ୍ର × × × × ମୁଷ୍ଟିମେୟ ଓଡ଼ିଆଙ୍କୁ ଛାଡ଼ିଦେଲେ ଉପରେ କିଣି ଗୋରା ଓ ତାଙ୍କ ତଳକୁ କେବଳ ବଙ୍ଗାଳୀ ସବଂଶ ଗାଦି ମାଡ଼ି ରହିଥିଲେ । ସେ ପରିସ୍ଥିତିରେ ଓଡ଼ିଶାରୁ ଓଡ଼ିଆ ଭାଷା ଲୋପ କରି ବଙ୍ଗଳା ଭାଷା ଚଳାଇବା ଦିଗରେ ଚେଷ୍ଟା କରିବା କେହି କାହିଁ ବିଚିତ୍ର ମଣିବେ ! ଉକ୍ତ ବହିରେ ଗୋଦାବରୀଶବାବୁ ମଧ୍ୟ ଲେଖିଛନ୍ତି ଯେ, ଇଂରେଜମାନେ ୧୮୬୦ ମସିହାରେ ସିଂହଭୂମି ଜିଲ୍ଲା ଅଧିକାର କରିଥିଲେ । ସେଠାରେ ୧୯୬୦ ମସିହା ପୁର୍ଵା

ମୁଷ୍ଟିମେୟ ବିହାରୀ ଥିଲେ । ୧୯୨୦ ମସିହା ଡିସେମ୍ବର ମାସରେ ଚକ୍ରଧରପୁର ଠାରେ ହୋଇଥିବା ଉତ୍କଳ ସମ୍ମିଳନୀରେ ବଙ୍ଗାଳୀ ଓ ବିହାରୀମାନଙ୍କଠାରୁ ସହଯୋଗ ମିଳି ନ ଥିଲି । ଭାରତୀୟ ଜାତୀୟ କଂଗ୍ରେସ ସେତେବେଳକୁ ଭାଷା ସୂତ୍ରରେ ପ୍ରଦେଶ ଗଠନ ନୀତି ଗ୍ରହଣ କରି ସାରିଥିଲେ । ବିହାରୀମାନେ କହିଲେ ଯେ କଂଗ୍ରେସ ବିଧିଗ ଅନୁସାରେ ସିଂହଭୂମି ବିହାରରେ ରହିବା ଉଚିତ କିନ୍ତୁ ଓଡ଼ିଆମାନେ ସେଥିରେ ରାଜି ହେଲେ ନାହିଁ । ଫଳରେ ବିହାରୀ ଓ ଓଡ଼ିଆଙ୍କ ମଧ୍ୟରେ ଏହି ସମୟରେ ମତଭେଦ ହେବାକୁ ଲଗିଲି । ସ୍ୱୟଂ ରାଜେନ୍ଦ୍ର ପ୍ରସାଦ ସିଂହଭୂମି ଜିଲ୍ଲା କଂଗ୍ରେସ କମିଟି ଯେପରି ବିହାର ପ୍ରାଦେଶିକ କମିଟି ଅଧୀନରେ ରହିବ, ସେଥିପାଇଁ ଚକ୍ରାନ୍ତ କରିଥିଲେ । ଯଦିଓ ସେତେବେଳେ ସିଂହଭୂମି ଜିଲ୍ଲାର ୫୦୦୦ କଂଗ୍ରେସ ମେମ୍ବରଙ୍କ ମଧ୍ୟରୁ ୩୯୦୦ ଓଡ଼ିଆ ସପକ୍ଷରେ ଏବଂ ୨୮୦ ବିହାର ସପକ୍ଷରେ ମତ ଦେଇଥିଲେ, ରାଜେନ୍ଦ୍ର ପ୍ରସାଦ କଂଗ୍ରେସ ସଭାପତି ମୋତିଲାଲ ନେହରୁଙ୍କୁ ପ୍ରଭାବିତ କରି ସିଂହଭୂମି ଜିଲ୍ଲା କଂଗ୍ରେସ କମିଟିକୁ ବିହାର ପ୍ରଦେଶ କଂଗ୍ରେସ କମିଟି ଅଧୀନରେ ରଖାଇଥିଲେ ।

ଜଷ୍ଟିସ୍ ହରିହର ମହାପାତ୍ର ମଧ୍ୟ ତାଙ୍କ 'ଜୀବନ ଓ ଜୀବିକା' ବହିରେ ସେହି ୧୯୧୬ ମସିହା ଠାରୁ ୧୯୨୦ ମସିହା ପର୍ଯ୍ୟନ୍ତ ସମୟରେ ସିଂହଭୂମି ଜିଲ୍ଲାରେ ଓଡ଼ିଆମାନଙ୍କ ଅବସ୍ଥା ବର୍ଣ୍ଣନା କରିଛନ୍ତି । ସେ ଲେଖିଛନ୍ତି 'ଆଦିବାସୀମାନଙ୍କୁ ଛାଡ଼ିଦେଲେ ସିଂହଭୂମିର ମୂଳ ବାସିନ୍ଦା ସର୍ବାଧିକ ସଂଖ୍ୟା ଓଡ଼ିଆ, ହିନ୍ଦୀ ଓ ବଙ୍ଗଳା ଭାଷୀ ଯେ ଅଳ୍ପ ସଂଖ୍ୟକ ଅଧିବାସୀ, ସେମାନେ ବିହାର ଓ ବଙ୍ଗଳାରୁ ଆଗନ୍ତୁକ । କିନ୍ତୁ ସରକାରୀ ଚାକିରି, ବୃତ୍ତି ଓ ବ୍ୟବସାୟରେ ସେମାନେ ପ୍ରତିଷ୍ଠିତ ଓ ଅଗ୍ରଣୀ ଥିଲେ । ଓଡ଼ିଆମାନଙ୍କର ସେଥିରେ ସ୍ଥାନ ତ ଦୂରର କଥା, ପ୍ରବେଶର ସୁଦ୍ଧା ସମ୍ଭାବନା ନ ଥାଏ । ସ୍କୁଲମାନଙ୍କରେ ଓଡ଼ିଆ ଛାତ୍ର ଘରେ ଓଡ଼ିଆ ଏବଂ ସ୍କୁଲରେ ହିନ୍ଦୀ ବା ବଙ୍ଗଳା ମାତୃଭାଷା ରୂପେ ପଢ଼ୁଥିଲେ । ପରବର୍ତ୍ତୀ କାଳରେ କିପରି ଭାବରେ ସିଂହଭୂମି ଜିଲ୍ଲା ଏବଂ ସରେଇକଳା ଓ ଖରସୁଆଁ କରଦ ରାଜ୍ୟ ବିହାର ରାଜ୍ୟର ଅନ୍ତର୍ଭୁକ୍ତ ହେଲ; ତାର ଇତିହାସ ଓଡ଼ିଶାର ବୁଦ୍ଧିଜୀବୀମାନେ ସମସ୍ତେ ଊଣାଅଧିକ ଜାଣିଛନ୍ତି ।

୧୯୧୨ ମସିହାରେ ବିହାର-ଓଡ଼ିଶା ଓ ଆସାମ ରାଜ୍ୟ ବଙ୍ଗ ପ୍ରଦେଶରୁ ପୃଥକ୍ ହୋଇଯିବାରୁ ବଙ୍ଗବାସୀଙ୍କ ପ୍ରାଧାନ୍ୟ ଏସବୁ ପ୍ରଦେଶ ଉପରୁ କମିଗଲି । ଓଡ଼ିଶା, ବିହାର ଓ ଆସାମ ପ୍ରଭୃତି ପ୍ରଦେଶରେ ସ୍ଥାନୀୟ ଲୋକମାନେ ବଙ୍ଗାଳୀ-ମାନଙ୍କର ପ୍ରତିପତ୍ତିର ଘୋର ବିରୋଧ କରିଥିଲେ । ଆସାମ ରାଜ୍ୟରେ ତୀବ୍ର ବିରୋଧ ଆଜିଯାଏ ଚାଲିଛି । ବିହାର-ଓଡ଼ିଶା ପ୍ରଦେଶ ଗଠନର କୋଡ଼ିଏବର୍ଷ

ପରେ ଆମ୍ଭେମାନେ ଯେତେବେଳେ କଟକରେ ହାଇସ୍କୁଲରେ ପ୍ରବେଶ କଲୁ, ସେତେବେଳେ ବଙ୍ଗାଳୀମାନଙ୍କର ପ୍ରତିପତ୍ତି ଅନେକ ପରିମାଣରେ କମି ଯାଇଥିଲା । ତଥାପି ମୋର ମନେ ଅଛି ଯେ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ବହୁ ବଙ୍ଗାଳୀ ପିଲା ପଢ଼ୁଥିଲେ ଏବଂ ଶିକ୍ଷକମାନଙ୍କ ମଧ୍ୟରୁ ପ୍ରାୟ ଅଧେ ବଙ୍ଗାଳୀ ଥିଲେ । ଇଂରାଜୀ, ଇତିହାସ, ଭୂଗୋଳ, ଗଣିତ ପ୍ରଭୃତି ପ୍ରଧାନ ବିଷୟମାନଙ୍କର ସବୁ ବରିଷ୍ଠ ଶିକ୍ଷକ ବଙ୍ଗାଳୀ ଥିଲେ । ପ୍ୟାରୀମୋହନ ଏକାଡେମୀ ଓ ଟାଉନ ଭିକ୍ଟୋରିଆ (ବର୍ତ୍ତମାନର ଭକ୍ତମଧୁ ବିଦ୍ୟାପୀଠ) ହାଇସ୍କୁଲରେ ମଧ୍ୟ ବହୁ ଶିକ୍ଷକ ବଙ୍ଗାଳୀ ଥିଲେ । ଇତିହାସ, ଭୂଗୋଳ, ଗଣିତ, ବୀଜଗଣିତ, ଜ୍ୟାମିତି ପ୍ରଭୃତି ସବୁ ପ୍ରଧାନ ବିଷୟମାନଙ୍କରେ ପାଠ୍ୟପୁସ୍ତକ କଲିକତାର ବଙ୍ଗାଳୀ ଅଧ୍ୟାପକ ଓ ଶିକ୍ଷକ ରଚନା କରିଥିଲେ । ଆମ ସମୟରେ ରେଭେନ୍‌ସା କଲେଜରେ ମଧ୍ୟ ବହୁ ବିଭାଗରେ ବଙ୍ଗାଳୀ ଅଧ୍ୟାପକ ମୁଖ୍ୟ ଅଧ୍ୟାପକ ଥିଲେ । ବ୍ୟକ୍ତିଗତ ଭାବରେ ବଙ୍ଗାଳୀ ଶିକ୍ଷକ ଓ ଅଧ୍ୟାପକମାନେ ଅତି ଭଦ୍ର ଓ ଉଚ୍ଚ ଶିକ୍ଷିତ ବ୍ୟକ୍ତି ଥିଲେ ଏବଂ ସେମାନେ ଓଡ଼ିଆ ପିଲାମାନଙ୍କୁ ଭଲ ପାଉଥିଲେ ଏବଂ ସବୁ ବିଷୟରେ ସାହାଯ୍ୟ କରୁଥିଲେ । ଏଠାରେ କେବଳ ଓଡ଼ିଶା ଉଭିଜନର ଚାକିରିରେ ଓଡ଼ିଆମାନଙ୍କର ସ୍ଥାନ ବିଷୟରେ ଆଲୋଚନା କରାଯାଉଛି ।

ବିହାର-ଓଡ଼ିଶା ପ୍ରଦେଶ ଗଠନ ବେଳକୁ ଓଡ଼ିଶାରେ ଆସ୍ତେ ଆସ୍ତେ ଇଂରାଜୀ ଶିକ୍ଷା ପ୍ରସାରଲାଭ କରୁଥାଏ । ବଙ୍ଗାଳୀମାନଙ୍କ ପ୍ରାଧାନ୍ୟ କମି ନ ଥିଲେ ମଧ୍ୟ ବୃଦ୍ଧି ପାଉ ନ ଥାଏ । ବିହାରୀମାନଙ୍କର ପାଟନା ଏବଂ ବିହାରର ଅନ୍ୟ ସହରମାନଙ୍କରୁ ଆସି ଓଡ଼ିଶାରେ ଚାକିରି କରିବା ପାଇଁ ବିଶେଷ ସୁବିଧା ନ ଥାଏ । ବିହାରରେ ମଧ୍ୟ ଶିକ୍ଷା ପ୍ରସାର ହୋଇ ନ ଥାଏ ଏବଂ ବିହାରୀମାନେ ଶିକ୍ଷା କ୍ଷେତ୍ରରେ ଓଡ଼ିଆମାନଙ୍କଠାରୁ ଆଗୁଆ ନ ଥିଲେ । ବିହାରର ବହୁଲୋକ କଲିକତାରେ କୁଲି କାମ ଏବଂ ଗ୍ରେଟକାଟିଆ ବ୍ୟବସାୟ କରୁଥିଲେ । ଓଡ଼ିଶାରେ ସେମାନଙ୍କ ପାଇଁ ସେ ସୁବିଧା ନଥିଲା । ଅନ୍ୟ ଦିଗରେ ବିହାର ସହିତ ଓଡ଼ିଶା ଉଭିଜନ ସଂଯୋଗ କରି ବିହାର-ଓଡ଼ିଶା ପ୍ରଦେଶ ଗଠନ ଓଡ଼ିଆମାନଙ୍କ ପାଇଁ କୌଣସିମତେ ସୁବିଧା-ଜନକ ନଥିଲା । ବିହାର ସହିତ ଓଡ଼ିଶା ଜିଲ୍ଲାମାନଙ୍କର ସଡ଼କ ପଥରେ ବିଶେଷ ଯୋଗାଯୋଗ ନଥିଲା । ରେଲପଥରେ ମଧ୍ୟ ଓଡ଼ିଶାରୁ ପାଟନା ସମେତ ବିହାରର ବିଭିନ୍ନ ଅଞ୍ଚଳକୁ ଯିବାକୁ ହେଲେ ବଙ୍ଗପ୍ରଦେଶ ମଧ୍ୟ ଦେଇ ଯିବାକୁ ହେଉଥିଲା । ବିହାର ଲୋକଙ୍କ ହିନ୍ଦୀ ଭାଷା, ରୀତି-ନୀତି ଓ ଚାଲିଚଳନ ସହିତ ଓଡ଼ିଆମାନଙ୍କର ଭାଷା ଓ ଚାଲିଚଳନର ବିଶେଷ ସାମଞ୍ଜସ୍ୟ ନଥିଲା । ବରଂ ଏସବୁ ବିଷୟରେ ବଙ୍ଗାଳୀମାନଙ୍କ ସହିତ ଅଧିକ ସାମଞ୍ଜସ୍ୟ ଥିଲା । ପାଟନାରେ ରାଜଧାନୀ

ସଚିବାଳୟ, ହାଇକୋର୍ଟ, ବିଶ୍ୱବିଦ୍ୟାଳୟ ଏବଂ ସମସ୍ତ ଶାସନ ବିଭାଗର ସର୍ବୋଚ୍ଚ କର୍ତ୍ତା ରହୁଥିବାରୁ, ଓଡ଼ିଶାରେ ସବୁ ବିଭାଗରେ କାର୍ଯ୍ୟ ଅବହେଳିତ ହେଉଥିଲା । ସେ ସବୁ ଅଫିସ୍‌ମାନଙ୍କରେ ମୁଷ୍ଟିମେୟ ଓଡ଼ିଆ କାମ କରୁଥିଲେ ଏବଂ ରାଜଧାନୀ ଠାରୁ ବହୁଦୂରରେ ଥିବା ଓଡ଼ିଶାବାସୀ ସବୁ ବିଷୟରେ ଅସୁବିଧା ଭୋଗ କରୁଥିଲେ । ଆମ ସମୟର ତିରିଶ ବର୍ଷ ପୂର୍ବରୁ ଓଡ଼ିଆମାନେ ଉଚ୍ଚଶିକ୍ଷା ପାଇବା ପାଇଁ ଏବଂ ଉଚ୍ଚ ସରକାରୀ ଅଫିସମାନଙ୍କରେ ବିଭିନ୍ନ କାର୍ଯ୍ୟ ପାଇଁ କଲିକତା ଯାଉଥିଲେ । କଲିକତାରେ ବହୁ ଓଡ଼ିଆ ଲୋକ ରହି କଳକାରଖାନା ପ୍ରଭୃତିରେ ବିଭିନ୍ନ କାର୍ଯ୍ୟ କରୁଥିଲେ । ଆମ ସମୟରେ ସେହିସବୁ କାର୍ଯ୍ୟ ପାଇଁ ଦ୍ୱିଗୁଣ ଖର୍ଚ୍ଚ କରି ଏବଂ ଦ୍ୱିଗୁଣ ସମୟ ନଷ୍ଟକରି କଲିକତା ବାଟେ ଓଡ଼ିଆମାନେ ପାଟନା ଯାଉଥିଲେ । ପାଟନାରେ ଅତି ଅଳ୍ପ ଓଡ଼ିଆ ଲୋକ ବାସ କରୁଥିଲେ । ସେଠାରେ ରହିବା ଏବଂ ସେଠାକୁ ଯିବାଆସିବା କରିବା ଅଧିକ କଷ୍ଟକର ଥିଲା । ମୋଟ ଉପରେ ୧୯୩୬ ମସିହା ପୂର୍ବରୁ ବଙ୍ଗ ପ୍ରଦେଶରେ ଏବଂ ପରେ ବିହାର-ଓଡ଼ିଶା ପ୍ରଦେଶରେ ଥିବା ଓଡ଼ିଶା ଭୂଭାଗର ଲୋକମାନଙ୍କର ଅବସ୍ଥା ଏହିପରି ଥିଲା । ଅନ୍ୟ ପ୍ରଦେଶମାନଙ୍କରେ ବିକ୍ଷିପ୍ତ ଭାବରେ ରହିଥିବା ଓଡ଼ିଆମାନଙ୍କର ଅବସ୍ଥା ମଧ୍ୟ ତଦନୁରୂପ ଥିଲା ।

ଦକ୍ଷିଣରେ ଗଞ୍ଜାମ ଓ କୋରାପୁଟ୍ ଜିଲ୍ଲା ଇଂରେଜମାନଙ୍କ ଅଧୀନକୁ ଆସିବା ପୂର୍ବରୁ ହାଇଦରାବାଦ୍‌ର ନିଜାମଙ୍କ ଅଧୀନରେ ଥିଲା । ୧୫୭୧ ମସିହାରେ ଗୋଲକୁଣ୍ଡା ରାଜ୍ୟର ସୁଲତାନ୍ ଇବ୍ରାହିମ୍ କୁତବ ସାହି ଓଡ଼ିଶାର ସେ ଅଞ୍ଚଳକୁ ଜୟକରି ଗୋଲକୁଣ୍ଡା ରାଜ୍ୟରେ ମିଶାଇ ଦେଇଥିଲେ । ୧୬୮୭ ମସିହାରେ ଆଉରଙ୍ଗଜେବ୍ ସମଗ୍ର ଗୋଲ୍‌କୁଣ୍ଡା ରାଜ୍ୟ ବିଜୟକରି ତାକୁ ମୋଗଲ ସାମ୍ରାଜ୍ୟ ଅଧୀନକୁ ଆଣିଥିଲେ । ୧୭୬୬ ଖ୍ରୀଷ୍ଟାବ୍ଦରେ ହାଇଦରାବାଦ୍‌ର ନିଜାମ ଓଡ଼ିଶାର ଏହି ଦୁଇଗୋଟି ଜିଲ୍ଲାକୁ ଇଂରେଜମାନଙ୍କୁ ସମର୍ପଣ କରିଥିଲେ ଏବଂ ଇଂରେଜ ସରକାର ସେ ଅଞ୍ଚଳକୁ ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ମିଶାଇ ଦେଇଥିଲେ । ସୁତରାଂ ୧୯୩୬ ମସିହା ପୂର୍ବରୁ ପ୍ରାୟ ତିନିଶହ ଷାଠିଏ ବର୍ଷକାଳ ଏହି ଅଞ୍ଚଳ ଓଡ଼ିଶାରୁ ଛିନ୍ନ ହୋଇ ଅନ୍ୟ ରାଜ୍ୟମାନଙ୍କରେ ଥିଲା । ଇଂରେଜ ଶାସନ କାଳରେ ମାନ୍ଦ୍ରାଜ ସରକାରଙ୍କ ଅଧୀନରେ ଥିବା ପ୍ରାୟ ସବୁ କର୍ମଚାରୀ ତେଲଙ୍ଗା ବା ତାମିଲ୍ ହୋଇଥିବାରୁ ଏବଂ ଗଞ୍ଜାମ କୋରାପୁଟ ସମେତ ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ସବୁ ଅଞ୍ଚଳର ସ୍କୁଲ୍ କଲେଜରେ ତେଲଗୁ ଓ ତାମିଲ ଭାଷା ଚଳୁଥିବାରୁ, ଗଞ୍ଜାମ ଓ କୋରାପୁଟ ଅଞ୍ଚଳର ସ୍କୁଲ୍ କଲେଜରେ ଓଡ଼ିଆ ଭାଷା ଶିକ୍ଷାର ସୁବିଧା ନଥିଲା । ୧୯୦୩ ମସିହାରେ ଲାଲ୍‌ମୋହନ ଘୋଷଙ୍କ ସଭାପତିତ୍ୱରେ ମାନ୍ଦ୍ରାଜରେ ଜାତୀୟ କଂଗ୍ରେସର ଯେଉଁ ଅଧିବେଶନ ହୋଇଥିଲା, ସେଥିରେ ଗଞ୍ଜାମ ଓ ବିଶାଖାପାଟଣା

ଜିଲ୍ଲା ଦୁଇଟିକୁ ମାନ୍ଦ୍ରାଜରୁ ଆଣି ଓଡ଼ିଶାରେ ମିଶାଇବା କଳ୍ପନା ବିରୋଧରେ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ମାନ୍ଦ୍ରାଜ ସରକାର ତାଙ୍କ ରାଜ୍ୟର କୌଣସି ଓଡ଼ିଆଭାଷୀ ଅଞ୍ଚଳ ପରିତ୍ୟାଗ ନ କରିବାକୁ ଦୃଢ଼ ପ୍ରତିଜ୍ଞ ଥିଲେ ମାତ୍ର ଗଞ୍ଜାମ ଜିଲ୍ଲା ଓଡ଼ିଆ ଭାଷା ଓ ସଂସ୍କୃତିର ପୀଠସ୍ଥଳୀ ଥିବାରୁ, ଗଞ୍ଜାମବାସୀ ସେ ସଂସ୍କୃତିକୁ ୧୯୩୬ ମସିହା ପର୍ଯ୍ୟନ୍ତ ଜୀବିତ ରଖିଥିଲେ ଏବଂ ଗଞ୍ଜାମ ବାସୀ ୧୯୦୨ ମସିହାରେ ପ୍ରଥମେ ଉତ୍କଳ ସମ୍ମିଳନୀ ଆରମ୍ଭ କରିଥିଲେ ।

ପଶ୍ଚିମ ଓଡ଼ିଶାରେ ୧୮୪୯ ମସିହାରେ ସମ୍ବଲପୁର ରାଜ୍ୟ ଇଂରେଜମାନଙ୍କର ପ୍ରତ୍ୟକ୍ଷ ଶାସନ ଅଧୀନକୁ ଆସିଲା । ଇଂରେଜ ସରକାର ସେ ରାଜ୍ୟକୁ ଗୋଟିଏ ଜିଲ୍ଲା ଭାବରେ ମଧ୍ୟପ୍ରଦେଶରେ ମିଶାଇଦେଲେ । ସେ ଜିଲ୍ଲାର ଅଧିବାସୀମାନେ ଯେଉଁ ଓଡ଼ିଆ ଥିଲେ ଏକଥା ସେମାନେ ବିଚାରକୁ ନେଲେ ନାହିଁ । ଫଳରେ ସେ ଅଞ୍ଚଳର ଅଧିବାସୀମାନେ ପ୍ରାୟ ପଚାଶ ବର୍ଷ କାଳ ବିଭିନ୍ନ ପ୍ରକାର ଦୁର୍ଦ୍ଦଶା ଭୋଗ କଲେ । ୧୯୦୫ ମସିହାରେ ସମ୍ବଲପୁର ଜିଲ୍ଲା ଓଡ଼ିଶାରେ ମିଶିବା ପୂର୍ବରୁ, ସେ ଜିଲ୍ଲାର ଓଡ଼ିଆମାନଙ୍କ ଅବସ୍ଥା ଭରତ ଚନ୍ଦ୍ର ନାୟକ ପ୍ରଭୃତି ବହୁ ଲେଖକ ବର୍ଣ୍ଣନା କରିଛନ୍ତି । ଭରତ ଚନ୍ଦ୍ର ନାୟକ ତାଙ୍କ ବହି "ମୋର ପୂର୍ବ ସ୍ମୃତି କଥା" ବହିରେ ୧୯୦୨।୦୩ ମସିହା ସମୟର କଥା ଲେଖିଛନ୍ତି । ସେ ଲେଖିଛନ୍ତି ଯେ, ୧୯୦୨।୦୩ ମସିହା ସୁଦ୍ଧା ସମ୍ବଲପୁର ଜିଲ୍ଲା ସ୍କୁଲରେ ଅଧିକାଂଶ ଶିକ୍ଷକ ହିନ୍ଦୁସ୍ଥାନୀ ଓ ମରହଟ୍ଟା ଥିଲେ । ପିଲାମାନେ ହିନ୍ଦୀ ଭାଷା ଶିକ୍ଷା କରୁଥିଲେ ଏବଂ ଶିକ୍ଷକମାନେ ପିଲାମାନଙ୍କ ସହିତ ହିନ୍ଦୀରେ କଥାବାର୍ତ୍ତା କରୁଥିଲେ । ପାଟଣା, ସୋନପୁର, କଳାହାଣ୍ଡି, ବାମଣ୍ଡା ଓ ରେଢ଼ାଖୋଲ ପ୍ରଭୃତି ଷ୍ଟେଟ୍‌ର ପଲିଟିକାଲ ଏଜେଣ୍ଟ ଛତିଶ୍‌ଗଡ଼ ବିଭାଗର ରାଜଧାନୀ ରାୟପୁରଠାରେ ରହୁଥିଲେ । ମଧ୍ୟ-ପ୍ରଦେଶରୁ ବହୁସଂଖ୍ୟକ ମରହଟ୍ଟା ଓ ହିନ୍ଦୁସ୍ଥାନୀ ଆସି ସମ୍ବଲପୁର ସମେତ ଏ ସବୁ ଅଞ୍ଚଳରେ ସରକାରୀ ଚାକିରି ଏବଂ ଅନ୍ୟାନ୍ୟ ବ୍ୟବସାୟ ଅଧିକାର କରି ନେଇଥିଲେ । ପ୍ରାଥମିକ ଶିକ୍ଷା ପରିଦର୍ଶନ ସବୁ ହିନ୍ଦୁସ୍ଥାନୀ ଓ ମରହଟ୍ଟା କର୍ମଚାରୀଙ୍କ ହସ୍ତରେ ଥିଲା । ମରହଟ୍ଟା ଓ ହିନ୍ଦୁସ୍ଥାନୀମାନେ କ୍ରମେ ଓଡ଼ିଆ ଜାତୀୟତାକୁ ଲୋପ କରିବାକୁ ବସିଲେ ଏବଂ ସମ୍ବଲପୁରରୁ ଓଡ଼ିଆ ଭାଷାକୁ ଲୋପ କରିବାକୁ ଉଦ୍ୟମ କଲେ । ସ୍କୁଲମାନଙ୍କରୁ ଓଡ଼ିଆ ଭାଷାର ପ୍ରଚଳନ ହଟାଇ ଦେଇ ହିନ୍ଦୀ ଭାଷା ପ୍ରଚଳନର ଉଦ୍ୟମ ହେଲା । ଅଦାଲତରୁ ଓଡ଼ିଆ ଭାଷା ଉଠାଇ ଦିଆଗଲା । ଏହା ହେଲା ମଧ୍ୟପ୍ରଦେଶର ତଦାନୀନ୍ତନ ଚିଫ୍‌କମିସନର ସାର ଜନ ଉଡ଼ବର୍ଣ୍ଣଙ୍କ ଅମଳରେ । ସେତେବେଳେ ସମ୍ବଲପୁର ଜିଲ୍ଲାର ଡେପୁଟି କମିସନର କରି ମରହଟ୍ଟା ଥିଲେ ଏବଂ ଅଧୀନସ୍ଥ ହାକମ, କିରାଣି ପ୍ରାୟ ସମସ୍ତେ ମରହଟ୍ଟା ବା ହିନ୍ଦୁସ୍ଥାନୀ ଥିଲେ । ଏହି ପରିସ୍ଥିତିରେ ଓଡ଼ିଶା ମୁଣ୍ଡଟେକି ରହିବା

କଷ୍ଟକର ବ୍ୟାପାର ଥିଲା । ମାତ୍ର ସମ୍ବଲପୁରର ସ୍ୱଭାଷା ଓ ସ୍ୱଦେଶପ୍ରେମୀ ଲୋକମାନେ କୋର୍ଟ କଚେରିରୁ ଓଡ଼ିଆ ଭାଷା ଉଠାଇଦେବାର ଏବଂ ହିନ୍ଦୀ ଭାଷା ପ୍ରଚଳନର ଘୋର ବିରୋଧ କଲେ ଏବଂ ସେମାନଙ୍କର ଅକ୍ଳାନ୍ତ ଉଦ୍ୟମ ଫଳରେ ପରବର୍ତ୍ତୀ ମଧ୍ୟ ପ୍ରଦେଶର ଚିଫ୍ କମିସନର ସାର ଆଣ୍ଡ୍ରୁ ଫ୍ରେଜରଙ୍କ ସହାନୁଭୂତିରେ, ୧୯୦୫ ମସିହା ଅକ୍ଟୋବର ମାସରେ ସମ୍ବଲପୁର ବଙ୍ଗପ୍ରଦେଶ ଅନ୍ତର୍ଗତ ଓଡ଼ିଶା ଡିଭିଜନ ସହିତ ମିଳିତ ହେଲା, କିନ୍ତୁ ଫୁଲଝର ଜମିଦାରି, ପଦ୍ମପୁର ଓ ଚନ୍ଦ୍ରପୁର ତାଲୁକ ଓଡ଼ିଆ ଅଞ୍ଚଳ ହୋଇଥିଲେ ସୁଦ୍ଧା ମଧ୍ୟପ୍ରଦେଶରେ ରହିଗଲା ।

ବ୍ରିଟିଶ ସରକାରଙ୍କ ପ୍ରତ୍ୟକ୍ଷ ଶାସନ ଅଧୀନରେ ଥିବା ଓଡ଼ିଶା ଅଞ୍ଚଳମାନଙ୍କ ବ୍ୟତୀତ ଓଡ଼ିଶାର କେନ୍ଦ୍ର ଓ ପଶ୍ଚିମାଞ୍ଚଳରେ ୨୬ ଗୋଟି କରଦ ରାଜ୍ୟ ବ୍ରିଟିଶ ସରକାରଙ୍କ ସାର୍ବଭୌମ କ୍ଷମତା ଅଧୀନରେ ବିଭିନ୍ନ ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲା । ରାଜ୍ୟରେ ଅରାଜକତା, ପ୍ରଜା ବିପ୍ଳବ କିମ୍ବା ପ୍ରଜାମାନଙ୍କ ଉପରେ ଅତୀବ ଅତ୍ୟାଚାରର ଅଭିଯୋଗ ନ ହେଲେ, ସାଧାରଣତଃ ବ୍ରିଟିଶ ସରକାର ରାଜ୍ୟ ଶାସନରେ ହସ୍ତକ୍ଷେପ କରୁ ନ ଥିଲେ । ରାଜାମାନେ ପ୍ରଜାବିପ୍ଳବ ପ୍ରଭୃତି ଗଣ୍ଡଗୋଳ ପାଇଁ ବ୍ରିଟିଶ ସରକାରଙ୍କ ପୁଲିସ, ସୈନ୍ୟ ଓ ଅସ୍ତ୍ରଶସ୍ତ୍ର ବଳ ଉପରେ ନିର୍ଭର କରୁଥିଲେ । ସବୁ ଗଡ଼ଜାତ ରାଜ୍ୟମାନଙ୍କରେ ସାଧାରଣ ଲୋକମାନଙ୍କର ଜୀବନଧାରଣମାନ, ଶାସନ ବ୍ୟବସ୍ଥା ଶିକ୍ଷା, ସ୍ୱାସ୍ଥ୍ୟ ଏବଂ ରାସ୍ତାଘାଟ ପ୍ରଭୃତି ବ୍ୟବସ୍ଥା ବ୍ରିଟିଶ ଶାସିତ ଅଞ୍ଚଳମାନଙ୍କ ଠାରୁ ନିକୃଷ୍ଟ ବୋଲି ସାଧାରଣ ଭାବେ ଜଣା ଥିଲା । ବ୍ରିଟିଶ ଶାସନ ସମୟରେ ଗଡ଼ଜାତ ରାଜ୍ୟମାନଙ୍କର ମନମୁଖି ଶାସନ, ପ୍ରଜାମାନଙ୍କର ଦରିଦ୍ର ଓ ଅଶିକ୍ଷିତ ଅବସ୍ଥା, ବେଠି ବେଗାରି ପ୍ରଥା, ରାଜପରିବାର ଲୋକ ଏବଂ ରାଜକର୍ମଚାରୀମାନଙ୍କର ପ୍ରଜାମାନଙ୍କ ଉପରେ ଅତ୍ୟାଚାର ବିଷୟରେ ଫକୀରମୋହନଙ୍କ ଠାରୁ ଆରମ୍ଭ କରି ବହୁ ଲେଖକ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ୧୯୩୬ ମସିହା ପୂର୍ବରୁ ଏସବୁ ଅତ୍ୟାଚାର ବିରୋଧରେ ପ୍ରଜା ଆନ୍ଦୋଳନମାନ ଆରମ୍ଭ ହୋଇ ଯାଇଥିଲା ।

ସଂକ୍ଷେପରେ କହିବାକୁ ଗଲେ, ୧୯୩୬ ମସିହା ପୂର୍ବରୁ ବିଭିନ୍ନ ପ୍ରଦେଶରେ ବିକ୍ଷିପ୍ତ ହୋଇ ରହିଥିବା ଓଡ଼ିଆମାନଙ୍କର ଅବସ୍ଥା ଏହିପରି ଦୟନୀୟ ଥିଲା । ଗଞ୍ଜାମ, କୋରାପୁଟ ଅଞ୍ଚଳ ମାନ୍ଦ୍ରାଜ ପ୍ରେସିଡେନ୍ସିରେ, କଟକ, ପୁରୀ, ବାଲେଶ୍ୱର ଓ ସମ୍ବଲପୁର ଜିଲ୍ଲା ସମେତ ଓଡ଼ିଆ ଡିଭିଜନ ପ୍ରଥମେ ବଙ୍ଗ ପ୍ରେସିଡେନ୍ସିରେ ଏବଂ ପରେ ବିହାର ଓଡ଼ିଶା ପ୍ରଦେଶରେ, ମେଦିନୀପୁର ଜିଲ୍ଲା ବଙ୍ଗ ପ୍ରଦେଶରେ, ସିଂହଭୂମି ଜିଲ୍ଲା ବିହାର, ଓଡ଼ିଶା ପ୍ରଦେଶର ଛୋଟନାଗପୁର ଡିଭିଜନରେ ରହିଥିଲା । ମାନ୍ଦ୍ରାଜ ପ୍ରେସିଡେନ୍ସିରେ ରହିଥିବା ଅଞ୍ଚଳରେ

ଅଧିକାଂଶ ସ୍କୁଲରେ ତେଲୁଗୁରେ, ମେଦିନୀପୁର ଅଞ୍ଚଳରେ ବଙ୍ଗଳାରେ, ସିଂହଭୂମିରେ ହିନ୍ଦୀରେ ଶିକ୍ଷା ଦିଆଯାଉଥିଲା । ଗଞ୍ଜାମ, କୋରାପୁଟ ଅଞ୍ଚଳରେ ସବୁ ଚାକିରୀରେ ତେଲଙ୍ଗାମାନେ, ସମ୍ବଲପୁର ଅଞ୍ଚଳରେ ୧୯୦୫ ମସିହା ପର୍ଯ୍ୟନ୍ତ ମରହଟ୍ଟା ଓ ହିନ୍ଦୁସ୍ଥାନୀମାନେ, ସିଂହଭୂମିରେ ବଙ୍ଗାଳୀ ଓ ବିହାରୀମାନେ ଏବଂ ଖୋଦ୍ ଓଡ଼ିଆ ଉତ୍କଳରେ ବଙ୍ଗାଳୀମାନେ ପ୍ରାଧାନ୍ୟ ବିସ୍ତାର କରିଥିଲେ । ସବୁଆଡ଼େ ଓଡ଼ିଆମାନେ ଉଚ୍ଚଶିକ୍ଷା ପାଇବାରୁ ଏବଂ ଚାକିରୀରେ ପ୍ରଦେଶରୁ ବଞ୍ଚିତ ଥିଲେ । ସବୁ ପ୍ରଦେଶରେ ସେମାନେ ସଂଖ୍ୟାଲଘୁ ଥିଲେ ଏବଂ ପ୍ରଦେଶର ଶେଷଭାଗରେ ରାଜଧାନୀଠାରୁ ବହୁ ଦୂରରେ ବାସ କରୁଥିଲେ । ପ୍ରଦେଶର ଯାବତୀୟ ପ୍ରାଦେଶିକ ଏବଂ କେନ୍ଦ୍ରୀୟ କାର୍ଯ୍ୟାଳୟମାନଙ୍କୁ ଯିବା ସେମାନଙ୍କ ପକ୍ଷରେ ସହଜ ନ ଥିଲା । ଓଡ଼ିଶାର ବାଲେଶ୍ୱର ଅଞ୍ଚଳ କଲିକତାଠାରୁ ସବୁଠାରୁ ନିକଟତମ । ରେଲରାସ୍ତା ହେବା ପୂର୍ବରୁ ବାଲେଶ୍ୱରରୁ କଚ୍ଚାରାସ୍ତାରେ ବଳଦଗାଡ଼ିରେ କଲିକତା ଯିବାକୁ ଛଅ ସାତ ଦିନ ଲାଗି ଯାଉଥିଲା । ତା'ପରେ ମଧ୍ୟ ସବୁଆଡ଼େ ରାସ୍ତାରେ ଚୋର ଡକାୟତଙ୍କ ଉପଦ୍ରବ ଥିଲା । ସେପରି ଅବସ୍ଥାରେ କଟକ ଓ ପୁରୀଜିଲ୍ଲାର ଗାମାନଙ୍କରୁ କଲିକତା ଯିବା କିମ୍ବା ଗଞ୍ଜାମ, କୋରାପୁଟ ଜିଲ୍ଲାରୁ ମାନ୍ଦ୍ରାଜ ଯିବା କିପରି କଷ୍ଟକର ଥିଲା ତାହା ସହଜରେ ଅନୁମେୟ । ରେଲରାସ୍ତା ହେଲାପରେ ମଧ୍ୟ ଓଡ଼ିଶାର ବିଭିନ୍ନ ଜିଲ୍ଲାରୁ ପାଟନା ବା ମାନ୍ଦ୍ରାଜ ସହରକୁ ଯିବା ଏବଂ ସେଠାକାର ଭିନ୍ନ ପରିବେଶରେ ସ୍ୱଳ୍ପକାଳ ରହି ନିଜର କାର୍ଯ୍ୟ ସମ୍ପନ୍ନ କରିବା କିପରି କଷ୍ଟକର ଥିଲା ତାହା ଆମ୍ଭେମାନେ ଅନେକ ଜାଣିଛୁ ।

ସବୁ ଓଡ଼ିଆଭାଷୀ ଅଞ୍ଚଳର ଲୋକମାନଙ୍କୁ ଏକାଠି କରି ଗୋଟିଏ ପୂର୍ଣ୍ଣାଙ୍ଗ ପ୍ରଦେଶ ଗଠନ କରିବା ଚେତନା ଓଡ଼ିଆମାନଙ୍କ ମଧ୍ୟରେ ଜାଗ୍ରତ କରିବାକୁ ପ୍ରାୟ ଶହେ ବର୍ଷ ଲାଗିଯାଇଥିଲା । ଇଂରେଜମାନେ ମରହଟ୍ଟାମାନଙ୍କଠାରୁ ଓଡ଼ିଶା ଉତ୍କଳ ୧୮୦୩ ମସିହାରେ ଅଧିକାର କରିଥିଲେ । ଦେଶ ମିଶ୍ରଣ ଉଦ୍ଦେଶ୍ୟରେ ପ୍ରଥମ ଉତ୍କଳ ସମ୍ମିଳନୀ ୧୯୦୩ ମସିହାରେ କଟକରେ ଅନୁଷ୍ଠିତ ହୋଇଥିଲା । ତା' ପୂର୍ବରୁ ଦେଶ ମିଶ୍ରଣ ନିମିତ୍ତ ଆନ୍ଦୋଳନ ସଙ୍ଗଠିତ ଓ ଧାରାବାହିକ ରୂପେ ହୋଇପାରି ନ ଥିଲା । ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଓଡ଼ିଶାରେ ଇଂରାଜୀ ଶିକ୍ଷାର ପ୍ରସାର ଅତି ମନ୍ଥର ଥିଲା ଏବଂ ଇଂରାଜୀ ଶିକ୍ଷିତ ଲୋକଙ୍କ ସଂଖ୍ୟା ମୁଷ୍ଟିମେୟ ଥିଲା । ତଥାପି ସେହି ମୁଷ୍ଟିମେୟ ଶିକ୍ଷିତ ବ୍ୟକ୍ତିଙ୍କ ମଧ୍ୟରେ ଦେଶ ମିଶ୍ରଣ ନିମିତ୍ତ ଚେତନାପାତ ହେଲା । ଏ ଚେତନାର ଜାଗୃତ ଓ ପ୍ରଗତିରେ

ଉତ୍କଳ ଗୌରବ ମଧୁସୂଦନଙ୍କ ଅବଦାନ ଅତୁଳନୀୟ ଏବଂ ଅବିସ୍ମରଣୀୟ ବୋଲି ଓଡ଼ିଶାରେ ଊଣାଅଧିକେ ସମସ୍ତେ ଜାଣନ୍ତି ।

ବିଂଶ ଶତାବ୍ଦୀର ଆରମ୍ଭରେ ୧୯୦୨ ମସିହାରେ ମଧୁବାବୁ ବଙ୍ଗପ୍ରଦେଶ କଂଗ୍ରେସ କମିଟିରେ ଓଡ଼ିଆ ଭାଷାଭାଷୀ ଲୋକମାନେ ସ୍ୱତନ୍ତ୍ର ଓ ଓଡ଼ିଆଭାଷୀ ଏକ ପ୍ରସ୍ତାବକୁ ପାସ୍ କରାଇବାକୁ ଅକୃତକାର୍ଯ୍ୟ ହେବାରୁ କଂଗ୍ରେସ ତ୍ୟାଗ କଲେ । ୧୯୦୨ ଖ୍ରୀଷ୍ଟାବ୍ଦରେ ଗଞ୍ଜାମବାସୀ ସମସ୍ତ ଓଡ଼ିଆଭାଷୀ ଅଞ୍ଚଳରୁ ଲୋକଙ୍କୁ ନିମନ୍ତ୍ରଣ କରି ଗୋଟିଏ ସମ୍ମିଳନୀ ଡାକଥିଲେ । ୧୯୦୩ ମସିହାରେ ମାନ୍ଦ୍ରାଜରେ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନରେ ଗଞ୍ଜାମ ଓ ଭିଶାଖାପାଟଣା ଜିଲ୍ଲାମାନଙ୍କୁ ମାନ୍ଦ୍ରାଜରୁ ଆଣି ଓଡ଼ିଶାରେ ମିଶାଇବା କଳ୍ପନା ବିରୋଧରେ ଗୋଟିଏ ପ୍ରସ୍ତାବ ଗୃହୀତ ହୋଇଥିଲା । ଏହି ପରିପ୍ରେକ୍ଷୀରେ ମଧୁବାବୁ ୧୯୦୩ ମସିହାରେ ଦକ୍ଷିଣ, ଉତ୍ତର ଓ ପଶ୍ଚିମର ଓଡ଼ିଆ ଭାଷାଭାଷୀ ଅଞ୍ଚଳରୁ ଓଡ଼ିଆ ଜନ ନେତାମାନଙ୍କୁ ନିମନ୍ତ୍ରଣ କରି କଟକରେ ଉତ୍କଳ ସମ୍ମିଳନୀ ଆୟୋଜନ କଲେ । ଓଡ଼ିଆ ଦେଶ ମିଶ୍ରଣ ଏହି ସମ୍ମିଳନୀର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ବଙ୍ଗଳା, ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶର ଅଣଓଡ଼ିଆ ଅଧିବାସୀମାନେ ଓଡ଼ିଶା ଦେଶ ମିଶ୍ରଣ ଉଦ୍ୟମର ବିରୋଧରେ କାମ କରିବେ ବୋଲି ମଧୁବାବୁ ଜାଣିଥିଲେ । ସେ ସମୟରେ ମଧ୍ୟ ବିଭିନ୍ନ ରାଜନୀତିକ ଅନୁଷ୍ଠାନମାନ ସେମାନଙ୍କର କାର୍ଯ୍ୟସିଦ୍ଧି-ପାଇଁ ଇଂରେଜ ସରକାରଙ୍କୁ ଆବେଦନ ନିବେଦନ ବ୍ୟତୀତ ଅନ୍ୟ କୌଣସି ଆନ୍ଦୋଳନାତ୍ମକ ପନ୍ଥା ଅବଲମ୍ବନ କରି ପାରୁ ନ ଥିଲେ । ସୁତରାଂ ମଧୁବାବୁଙ୍କର ଉଦ୍ଦେଶ୍ୟ ଥିଲା ଇଂରେଜ ସରକାରଙ୍କୁ ଧରି ଓଡ଼ିଶା ଦେଶ ମିଶ୍ରଣ କରାଇବା, ନୀଳକଣ୍ଠ ଦାସ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ଯେ "ବର୍ଷକୁ ବର୍ଷ ବହୁକାଳଯାଏଁ ସମ୍ମିଳନୀରେ ପ୍ରଥମରୁ ପ୍ରବଳ ପ୍ରତାପ ସପ୍ତମ ଏଡ଼ୱାର୍ଡ ଓ ପଞ୍ଚମ ଜର୍ଜଙ୍କଠାରୁ ସବ୍‌ଡିଭିଜନାଲ ଅଫିସରଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଜଣ ଜଣ କରି ଅଭିବାଦନ ଓ ଆନୁଗତ୍ୟ ଜଣାଇ ପ୍ରସ୍ତାବମାନ କରିବାକୁ ହୁଏ, ତାପରେ ଓଡ଼ିଆ ଦେଶ ମିଶ୍ରଣ ଓଡ଼ିଶା ଦେଶର ଅନ୍ୟାନ୍ୟ କଲ୍ୟାଣ ସବୁ କଳ୍ପନା ଯୋଜନା କରି ପ୍ରସ୍ତାବମାନ ହୁଏ । ଗଡ଼ଜାତର ଲୋକେ ଓ ରାଜାମାନେ ସମ୍ମିଳନୀରେ ଖୁବ୍ ଯୋଗ ଦେଉଥାନ୍ତି । ପ୍ରଥମ ସମ୍ମିଳନୀରେ ସଭାପତି ହୋଇଥିଲେ ମୟୂରଭଞ୍ଜର ସ୍ୱନାମଧନ୍ୟ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜ" । ମାତ୍ର ସେତେବେଳେ ଗଡ଼ଜାତ ଅଞ୍ଚଳ ସବୁ ଓଡ଼ିଶା ପ୍ରଦେଶରେ ମିଶିବାର ପ୍ରସ୍ତାବ ନ ଥିଲା ।

୧୯୦୩ ମସିହାଠାରୁ ଉତ୍କଳ ସମ୍ମିଳନୀ ଗୋଟିଏ ସ୍ଥାୟୀ ସଙ୍ଗଠନ ହେଲା । ସେହି ବର୍ଷଠାରୁ ଓଡ଼ିଶାର ସବୁ ଅଞ୍ଚଳର ଜନନାୟକ, ରାଜା, ଜମିଦାର, କବି, ଲେଖକ ଏବଂ ସମସ୍ତ ବୁଦ୍ଧିଜୀବୀ ଲୋକ ଏହି ସମ୍ମିଳନୀ ମାଧ୍ୟମରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ଓ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମିତ୍ତ ସରକାରଙ୍କ ନିକଟରେ ଦାବୀ କଲେ । ୧୯୦୩ ମସିହାଠାରୁ ୧୯୩୬ ମସିହା ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀର ବିଭିନ୍ନ ଅଞ୍ଚଳରେ ବାର୍ଷିକ ସଭା, ଧାରାବାହିକ କାର୍ଯ୍ୟ, ସମ୍ମିଳନୀର ନେତା ଓ କର୍ମୀ ଭଦ୍ରପର ସଭ୍ୟ ପ୍ରଭୃତି ସମସ୍ତ ବିଷୟ ସେ ସମୟର ଲିପିବଦ୍ଧ ଇତିହାସର ଅନ୍ତର୍ଭୁକ୍ତ । ବାସ୍ତବରେ ସେହି ସମୟରେ ଓଡ଼ିଆମାନଙ୍କର ସର୍ବପ୍ରଧାନ ସମସ୍ୟା ଥିଲା, ବିଭିନ୍ନ ପ୍ରଦେଶରେ ବିକ୍ଷିପ୍ତ ଭାବରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କର ଏକୀକରଣ ଓ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ । ଏ ବିଷୟରେ ଓଡ଼ିଶାର ସମସ୍ତ ଜନନାୟକ ଏକମତ ଥିଲେ । ଏହି କାର୍ଯ୍ୟ ସିଦ୍ଧିପାଇଁ ଉତ୍କଳ ସମ୍ମିଳନୀ ଥିଲା ଓଡ଼ିଆମାନଙ୍କର ସର୍ବପ୍ରଧାନ ସଗଠନ ଏବଂ ଏହି ସଗଠନରେ ସେମାନେ ଏକଜୁଟ ହେଉଥିଲେ ।

ପ୍ରଥମ ସମ୍ମିଳନୀ ବିଷୟରେ ରିପୋର୍ଟରୁ ଜଣାଯାଏ ଯେ ସମ୍ମିଳନୀରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ସଭାପତି ହୋଇଥିଲେ । ସମ୍ବଲପୁରର ରାମନାରାୟଣ ମିଶ୍ର, ସିଂହଭୂମର ଯୁଗଳ କିଶୋର ତ୍ରିପାଠୀ, ବାଲେଶ୍ୱରର ଫକୀରମୋହନ ସେନାପତି, କଟକର ଗୌରୀଶଙ୍କର ରାୟ, କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେବ, ଗଞ୍ଜାମର ହରିହର ପଣ୍ଡା ଓ କେତେକ ଜମିଦାର ମଞ୍ଚ ଉପରେ ବସିଥିଲେ । ମଧୁବାବୁ ସମ୍ମିଳନୀର ସମସ୍ତ ଆୟୋଜନ କରାଇଥିଲେ ଏବଂ ୨୬ ବର୍ଷ ବୟସ୍କ ଯୁବକ ଗୋପବନ୍ଧୁ ଦାସ ମଧୁବାବୁଙ୍କୁ ସମ୍ମିଳନୀର ସମସ୍ତ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ପରେ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଲିଙ୍ଗରାଜ ମିଶ୍ର, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣଦେବ, ଗଞ୍ଜାମର ଲିଙ୍ଗରାଜ ପାଣିଗ୍ରାହୀ, ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ, ଲକ୍ଷ୍ମୀନାରାୟଣ ପଟ୍ଟନାୟକ, ଖଲିକୋଟ ରାଜାସାହେବ ରାମଚନ୍ଦ୍ର ମର୍ଦ୍ଦରାଜ, ଜୟପୁରର ମହାରାଜା ବିକ୍ରମଦେବ, ହରିହର ମିଶ୍ର, କଟକର ଭୁବନାନନ୍ଦ ଦାସ, ସ୍ୱାମୀ ବିଚିତ୍ରାନନ୍ଦ ଦାସ, ଭିକାରୀଚରଣ ପଟ୍ଟନାୟକ, ଲକ୍ଷ୍ମୀଧର ମହାନ୍ତି, ପୁରୀର ଜଗବନ୍ଧୁ ସିଂହ, ଭୁବନେଶ୍ୱର ରଥ, ସମ୍ବଲପୁରର କବି ଗଙ୍ଗାଧର ମେହେର ସମେତ ଉତ୍କଳର ବହୁ ବରପୁତ୍ର ସମ୍ମିଳନୀର ନେତୃତ୍ୱ ନେଇ ଦେଶମିଶ୍ରଣପାଇଁ ସଂଗ୍ରାମ କଲେ । ସମ୍ମିଳନୀର ଉଦ୍ୟୋକ୍ତାମାନଙ୍କ ଅନୁରୋଧକ୍ରମେ ବିଭିନ୍ନ ବର୍ଷରେ ବିଭିନ୍ନ ସହରରେ

ସମ୍ମିଳନୀର ବାର୍ଷିକ ଅଧିବେଶନ ଅନୁଷ୍ଠିତ ହେଉଥିଲା । ବର୍ଷେ ବର୍ଷେ ବିଚ୍ଛିନ୍ନାଞ୍ଚଳରେ ମଧ୍ୟ ବାର୍ଷିକ ସଭା ବସୁଥିଲା । ପାରଳାଖେମୁଣ୍ଡିର ଯୁବକ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ନିମନ୍ତ୍ରଣ କ୍ରମେ ୧୯୧୪ ମସିହାରେ ସମ୍ମିଳନୀର ବାର୍ଷିକ ଅଧିବେଶନ ପାରଳାଖେମୁଣ୍ଡିରେ ଅନୁଷ୍ଠିତ ହୋଇଥିଲା । ସେଥିରେ ଜୟପୁରର ମହାରାଜା ବିକ୍ରମ ଦେବ ବର୍ମା ସଭାପତି ହୋଇଥିଲେ । ୧୯୧୭ ମସିହାର ଶେଷ ଭାଗରେ କଟକରେ ହୋଇଥିବା ସମ୍ମିଳନୀରେ ଫକୀରମୋହନ ସେନାପତି ସଭାପତି ହୋଇଥିଲେ । ୧୯୨୦ ମସିହା ସେପ୍ଟେମ୍ବର ମାସରେ ଗୋଦାବରୀଶ ବାବୁଙ୍କ ଉଦ୍ୟମରେ ସିଂହଭୂମର ଚକ୍ରଧରପୁରଠାରେ ସମ୍ମିଳନୀ ବସିଥିଲା । ସେଥିରେ ଜଗବନ୍ଧୁ ସିଂହ ସଭାପତି ହୋଇଥିଲେ ।

୧୯୨୦/୨୧ ମସିହା ପର୍ଯ୍ୟନ୍ତ ଦେଶମିଶ୍ରଣ ସମସ୍ତ ଓଡ଼ିଆଙ୍କପାଇଁ ସର୍ବପ୍ରଧାନ ସମସ୍ୟା ଥିଲା । ଓଡ଼ିଶାର ଦେଶପ୍ରେମୀ ଲୋକମାନେ ସେହି କାର୍ଯ୍ୟରେ ମନୋନିବେଶ କରିଥିଲେ । ୧୯୨୦/୨୧ ମସିହାରେ ଓଡିଶା ସମେତ ସମସ୍ତ ଭାରତ ବର୍ଷରେ ଗୋଟିଏ ବିରାଟ କାର୍ଯ୍ୟକ୍ରମ ଆରମ୍ଭ ହେଲା । ତାହା ହେଉଛି ଭାରତବର୍ଷର ଆଶୁ ସ୍ୱାଧୀନତା ଲାଭପାଇଁ ଗାନ୍ଧିଜୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ । ଭାରତର ସ୍ୱାଧୀନତାପାଇଁ ଅସହଯୋଗ ଆନ୍ଦୋଳନ ଏବଂ ଓଡ଼ିଶାର ଦେଶମିଶ୍ରଣ ଆନ୍ଦୋଳନ କାର୍ଯ୍ୟକ୍ରମ ପରସ୍ପର ବିରୋଧୀ ନ ଥିଲା । ସ୍ୱାଧୀନ ଭାରତରେ ଭାଷାସୂତ୍ରରେ ପ୍ରଦେଶ ଗଠନ ନୀତି କଂଗ୍ରେସ ଗ୍ରହଣ କରିଥିଲା । ମାତ୍ର ଓଡ଼ିଶାର ସମସ୍ତ ଦେଶପ୍ରେମୀ ନେତା ଉଭୟ ଆନ୍ଦୋଳନରେ ଯୋଗ ଦେଇ ନଥିଲେ ଏବଂ ଯେଉଁ ଦେଶପ୍ରେମୀ ଲୋକମାନେ ଉଭୟ ଆନ୍ଦୋଳନରେ ନେତୃତ୍ୱ ନେଉଥିଲେ ସେମାନେ ଅନେକ ସମୟରେ ଦ୍ୱନ୍ଦ୍ୱରେ ପଡ଼ୁଥିଲେ । ଉତ୍କଳମଣି ଗୋପବନ୍ଧୁ ଭାରତର ସ୍ୱରାଜ୍ୟ ଆନ୍ଦୋଳନ ଓ ଉତ୍କଳର ଦେଶ ମିଶ୍ରଣ ଆନ୍ଦୋଳନ ମଧ୍ୟରେ କୌଣସି ବିରୋଧାତ୍ମକ ଭାବ ଦେଖିପାଉ ନ ଥିଲେ । ଭାରତବର୍ଷ ପଦ୍ମହେଲେ ଉତ୍କଳ ତାର କେଶର ବୋଲି ସେ ଲେଖିଥିଲେ । ମାତ୍ର ଉତ୍କଳ ଗୌରବ ମଧୁସୂଦନ ପଡ଼ୋଶୀ ପ୍ରଦେଶର କଂଗ୍ରେସ ନେତାମାନେ ଓଡ଼ିଆଙ୍କ ସ୍ୱାତନ୍ତ୍ର୍ୟ ଗ୍ରହଣ କରି ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକୀକରଣ ପ୍ରସ୍ତାବ ବିରୋଧ କରିବାରୁ ଅସହଯୋଗ ଆନ୍ଦୋଳନର ବହୁପୂର୍ବରୁ କଂଗ୍ରେସରୁ ବିଦାୟ ନେଇଥିଲେ । ବାସ୍ତବ କ୍ଷେତ୍ରରେ ସାର୍ ସୁରେନ୍ଦ୍ର ନାଥ ବାନାର୍ଜି, ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ପରି ସର୍ବଭାରତୀୟ ସ୍ତରରେ କଂଗ୍ରେସର ଉଚ୍ଚ ନେତାମାନେ ସେମାନଙ୍କର ପ୍ରାଦେଶିକ ସ୍ତରରୁ ଊର୍ଦ୍ଧ୍ୱକୁ ଉଠିପାରି ନ ଥିଲେ । ସୁତରାଂ ଭାରତର ସ୍ୱରାଜ୍ୟ ଆନ୍ଦୋଳନ ମଧ୍ୟରେ ଉତ୍କଳର ସ୍ୱାର୍ଥରକ୍ଷାପାଇଁ ସ୍ୱତନ୍ତ୍ର ଆବଶ୍ୟକତା ଥିଲା ।

ତାହାପରେ ବ୍ରିଟିଶ ସରକାରଙ୍କୁ ଆବେଦନ ନିବେଦନ କରି ତାଙ୍କ ଅନୁଗ୍ରହରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ପ୍ରଥମରୁ ଉତ୍କଳ ସମ୍ମିଳନୀର ଅଭିମୁଖ୍ୟ ଥିଲା । ବ୍ରିଟିଶ ସରକାରଙ୍କ ସହିତ ଅସହଯୋଗ କରି ବିପ୍ଳବାତ୍ମକ ପନ୍ଥାରେ ସେ ଉଦ୍ଦେଶ୍ୟ ସାଧିତ ହୋଇପାରିବ ନାହିଁ ବୋଲି ସମ୍ମିଳନୀର ବହୁ ନେତା ମତ ପୋଷଣ କଲେ । ପୁନଶ୍ଚ ଉତ୍କଳ ସମ୍ମିଳନୀରେ ବହୁ ଜମିଦାର, ଗଡ଼ଜାତ ରାଜ୍ୟର ରାଜା ଏବଂ ବୁଦ୍ଧିଜୀବୀ ଜନନାୟକ ଉଦ୍ୟୋକ୍ତା ଥିଲେ ସେଉଁମାନେକ ବ୍ରିଟିଶ ସରକାରଙ୍କ ବିରୋଧରେ କାର୍ଯ୍ୟ କରିବାକୁ ଏବଂ ଅସହଯୋଗ ଆନ୍ଦୋଳନ ପ୍ରଭୃତି ବିପ୍ଳବାତ୍ମକ କାର୍ଯ୍ୟକ୍ରମରେ ଯୋଗଦେବାକୁ ଅନିଚ୍ଛୁକ ଥିଲେ । ଫଳରେ ସ୍ୱରାଜ୍ୟ ଆନ୍ଦୋଳନର କେତେକ କାର୍ଯ୍ୟକ୍ରମ ଉତ୍କଳର ସ୍ୱତନ୍ତ୍ର ସ୍ୱାର୍ଥର ପରିପନ୍ଥୀ ବୋଲି ବିଚାରି ସମ୍ମିଳନୀର ବହୁ ଉଦ୍ୟୋକ୍ତାଙ୍କ ତାର ବିରୋଧରେ କାର୍ଯ୍ୟକରିବାକୁ ପଡ଼ିଲା ।

ପ୍ରଥମରେ ଗୋପବନ୍ଧୁବାବୁ ତାଙ୍କର ଚେତନାଶୀଳ ଦେଶପ୍ରେମୀ ଓ ସେବା ମନୋଭାବାପନ୍ନ ସାଥୀମାନଙ୍କ ସହିତ ଉତ୍କଳର ନବଜାଗରଣପାଇଁ ଯୁବସମ୍ପ୍ରଦାୟଙ୍କୁ ଗଠନ କରିବା ନିମିତ୍ତ ଯେଉଁ ବନ ବିଦ୍ୟାଳୟ ପ୍ରତିଷ୍ଠିତ କରିଥିଲେ, ତାହା ଯଦି ପ୍ରଥମରୁ ଆରମ୍ଭ ହୋଇଥିବା ଶିକ୍ଷା, ସେବା ଓ ସଂଯମ ପରମ୍ପରା ସହ ବହୁବର୍ଷ ଚାଲିଥାନ୍ତା ଏବଂ ସେହି ଆଦର୍ଶରେ ଓଡ଼ିଶାରେ ବହୁ ଅନ୍ୟ ବିଦ୍ୟାଳୟ ଗଠିତ ହୋଇଥାନ୍ତା, ତେବେ ଜନସାଧାରଣଙ୍କର ବହୁ ଉପକାର ହୋଇଥାନ୍ତା, ମାତ୍ର ଅସହଯୋଗ ଆନ୍ଦୋଳନ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଗୋପବନ୍ଧୁବାବୁ ସତ୍ୟବାଦୀ ବନ ବିଦ୍ୟାଳୟକୁ ଜାତୀୟ ବିଦ୍ୟାଳୟରେ ପରିଣତ କଲେ । ସେହି ସମୟରେ ଗୋପବନ୍ଧୁବାବୁଙ୍କ ପ୍ରେରଣା ଓ ସହାୟତାରେ ଗୋଦାବରୀଶବାବୁ ଚକ୍ରଧରପୁରଠାରେ ଗୋଟିଏ ଓଡ଼ିଆ ସ୍କୁଲ ଗଢ଼ିଥିଲେ । ସେ ଗୋପବନ୍ଧୁବାବୁଙ୍କୁ ଉପରୋକ୍ତ ଦୁଇଟି ସ୍କୁଲକୁ ଅସହଯୋଗ ଆନ୍ଦୋଳନରୁ ବାଦ ଦେବାପାଇଁ ଅନୁରୋଧ କରିଥିଲେ । ମାତ୍ର ଗୋପବଂଧୁବାବୁ ସତ୍ୟବାଦୀ ସ୍କୁଲକୁ ଜାତୀୟ ବିଦ୍ୟାଳୟରେ ପରିଣତ କରିବାକୁ ଅତ୍ୟନ୍ତ ଆଗ୍ରହୀ ଥିବାରୁ ଗୋଦାବରୀଶବାବୁ ତାର ପ୍ରତିବାଦ କଲେ ନାହିଁ । ଫଳରେ ଦୁଇଟିଯାକ ସ୍କୁଲ ଦୁଇ ତିନି ବର୍ଷ ପରେ ଭାଙ୍ଗିଗଲା ଏବଂ ଓଡ଼ିଶାର ଯୁବ ସମ୍ପ୍ରଦାୟର ଅପୂରଣୀୟ କ୍ଷତି ହେଲା ।

ଦ୍ୱିତୀୟରେ ଓଡ଼ିଶାର ବହୁ ଦେଶପ୍ରେମୀ ଯୁବନେତା ବିପ୍ଳବାତ୍ମକ ଅସହଯୋଗ ଆନ୍ଦୋଳନରେ ମନ ପ୍ରାଣ ଢାଳିଦେବାରୁ, ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକୀକରଣ ସେମାନଙ୍କ ସମ୍ମୁଖରେ ସର୍ବପ୍ରଧାନ ସମସ୍ୟା ରୂପେ ରହିଲା

ନାହିଁ । ବସ୍ତୁତଃ ଦେଶ ମିଶ୍ରଣ ଆନ୍ଦୋଳନର ଶେଷ ଭାଗରେ ପାରଳା ମହାରାଜାଙ୍କ ପରି ଅଣକଂଗ୍ରେସ ନେତା ଯଦି ଆନ୍ଦୋଳନର ଦାୟିତ୍ୱ ନେଇ ନ ଥାନ୍ତେ ଏବଂ ଉଦ୍ଦେଶ୍ୟ ସିଦ୍ଧିପାଇଁ ଅକ୍ଳାନ୍ତ ପରିଶ୍ରମ ଓ ଅର୍ଥ ବ୍ୟୟ କରି ନ ଥାନ୍ତେ, ତେବେ ୧୯୩୬ ମସିହା ବେଳକୁ ନୂତନ ଉତ୍କଳ ପ୍ରଦେଶ ଗଠିତ ହୋଇପାରି ନ ଥାନ୍ତା । ୧୯୨୮ ମସିହା ଜୁଲାଇ ମାସରେ ଗୋପବନ୍ଧୁବାବୁଙ୍କର ତିରୋଧାନ ହେଲା । ମଧୁବାବୁ ସେତେବେଳକୁ ବୃଦ୍ଧ ହୋଇଯାଇଥିଲେ । କଂଗ୍ରେସର ନେତାମାନେ ୧୯୩୦ ମସିହାରୁ ଆଇନ୍ ଅମାନ୍ୟ ଓ ଅସହଯୋଗ ଆନ୍ଦୋଳନରେ ବ୍ୟସ୍ତ ରହିଲେ । ଫକୀରମୋହନ ପ୍ରଭୃତି ବହୁ ଉତ୍କଳ ସମ୍ମିଳନୀର ନେତାମାନଙ୍କର ତିରୋଧାନ ହୋଇ ଯାଇଥିଲା । ସୁତରାଂ ଉତ୍କଳ ସମ୍ମିଳନୀର ପ୍ରଧାନ କାର୍ଯ୍ୟ ପାରଳା ମହାରାଜା ଓ ତାଙ୍କ ସହକର୍ମୀମାନଙ୍କ ଦାୟିତ୍ୱରେ ରହିଲା ।

୧୯୨୭ ମସିହାରେ ବ୍ରିଟିଶ ସରକାରଙ୍କଠାରୁ ଭାରତବାସୀଙ୍କୁ କ୍ଷମତା ହସ୍ତାନ୍ତରର ପରିସର ଏବଂ ଭାରତବର୍ଷରେ ଶାସନ ସଂସ୍କାର କିପରି ଓ କେତେଦୂର ପ୍ରବର୍ତ୍ତନ କରାଯାଇ ପାରିବ ତାହା ଅନୁସନ୍ଧାନ କରି ରିପୋର୍ଟ ଦେବାପାଇଁ ବ୍ରିଟିଶ ସରକାର ସାର୍ ଜନ୍ ସାଇମନଙ୍କ ଅଧ୍ୟକ୍ଷତାରେ ଗୋଟିଏ କମିଶନ୍ ନିଯୁକ୍ତ କରିଥିଲେ । ଭାରତର ଜାତୀୟ କଂଗ୍ରେସ ଏହି କମିଶନ୍‌କୁ ବିରୋଧ କରି ଏହା ସହିତ ଅସହଯୋଗ କରିବାକୁ ଦେଶବାସୀଙ୍କୁ ଆହ୍ୱାନ ଦେଇଥିଲେ । ମାତ୍ର ସ୍ୱତନ୍ତ୍ର ଓଡ଼ିଶା କମିଶନ୍ ଆଗରେ ଉପସ୍ଥାପିତ କରିବାକୁ ଉତ୍କଳ ସମ୍ମିଳନୀର ପ୍ରମୁଖ ନେତାମାନେ ତତ୍ପର ହୋଇଥିଲେ । କଂଗ୍ରେସର କମିଶନ୍ ସହିତ ଅସହଯୋଗ ଆହ୍ୱାନ ହେତୁ, ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ ଏବଂ ପଣ୍ଡିତ ଗୋଦାବରୀଶ ପ୍ରଭୃତି ଦେଶ ମିଶ୍ରଣପାଇଁ ଆପ୍ରାଣ ଚେଷ୍ଟା କରୁଥିବା କଂଗ୍ରେସ ନେତାମାନେ କମିଶନ୍‌ଠାରୁ ଦୂରେଇ ହୋଇ ରହିଲେ । କିନ୍ତୁ ଉତ୍କଳ ସମ୍ମିଳନୀର ଅନ୍ୟ ନେତାମାନେ କମିଶନ୍‌କୁ ସ୍ୱାଗତ କଲେ ଏବଂ ସେମାନଙ୍କ ଆଗରେ ଓଡ଼ିଆମାନଙ୍କର ଦାବି ଉପସ୍ଥାପିତ କଲେ । ଓଡ଼ିଶାର କଂଗ୍ରେସ ନେତାମାନେ କମିଶନ୍‌ଠାରୁ ଦୂରେଇ ହୋଇ ରହିଥିଲେ ସୁଦ୍ଧା, ୧୯୨୮ ମସିହା ଶେଷରେ କଲିକତାରେ ହୋଇଥିବା କଂଗ୍ରେସର ବାର୍ଷିକ ଅଧିବେଶନରେ ଭର୍ତ୍ସିତ ହୋଇଥିଲେ ।

୧୯୨୮ ମସିହାରେ ସାଇମନ କମିଶନ୍‌ର ତିନିଜଣ ସଭ୍ୟଙ୍କୁ ନେଇ ମେଜର ଆଟ୍ଲିଙ୍କ ଅଧ୍ୟକ୍ଷତାରେ ଆଟ୍ଲି କମିଟି ଗଢ଼ା ହୋଇଥିଲା । ସେମାନେ ଓଡ଼ିଶା ସମସ୍ୟା ପରୀକ୍ଷା କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନପାଇଁ ସୁପାରିଶ୍

କରିଥିଲେ । ଏହି ଆଞ୍ଚଲ କମିଟି ଆଗରେ ଓଡ଼ିଶାର ଦାବି ଉପସ୍ଥାପନ କରି ପାରଳା ମହାରାଜା ସାକ୍ଷ୍ୟ ଦେଇଥିଲେ । ସାଇମନ୍ କମିଶନ୍ ରିପୋର୍ଟ ୧୯୩୦ ମସିହା ମଇ ୨୭ ତାରିଖରେ ପ୍ରକାଶ ପାଇଲା । ତା' ପରେ ସେ ବର୍ଷ ନଭେମ୍ବର ମାସଠାରୁ ୧୯୩୧ ମସିହା ଜାନୁଆରି ୧୯ ତାରିଖ ପର୍ଯ୍ୟନ୍ତ ଲଣ୍ଡନଠାରେ ଗୋଲଟେବୁଲ୍ ବୈଠକ ବସିଲା । ସେ ବୈଠକରେ ଓଡ଼ିଶା ତରଫରୁ ପାରଳା ମହାରାଜା ପ୍ରତିନିଧିତ୍ୱ କରିଥିଲେ । ବୈଠକ ସମୟରେ ରାଜାସାହେବ ଭାରତ ସଚିବ ପ୍ରଭୃତି ଇଂଲଣ୍ଡରେ କ୍ଷମତାରେ ଥିବା ବହୁ ବ୍ୟକ୍ତିଙ୍କୁ ସାକ୍ଷାତ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଏବଂ ସେଥିରେ ପାରଳାଖେମୁଣ୍ଡି ଓ ଜୟପୁର ଜମିଦାରୀ ଅନ୍ତର୍ଭୁକ୍ତ କରିବାପାଇଁ ବହୁ ଚେଷ୍ଟା କରିଥିଲେ । ସେହି ସମୟରେ ଖଲ୍ଲିକୋଟ୍ ମହାରାଜା ମଧ୍ୟ ବିଲାତ ଯାଇଥିଲେ ଏବଂ ପାରଳା ମହାରାଜାଙ୍କ ଉଦ୍ୟମରେ ସାହାଯ୍ୟ କରିଥିଲେ ।

ସାଇମନ୍ କମିଶନ୍‌ଙ୍କ ସୁପାରିସ୍ ଏବଂ ଗୋଲଟେବୁଲ ବୈଠକରେ ଆଲୋଚନା ପରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ସମ୍ପର୍କୀୟ ବିଷୟ ସବୁ ଅନୁଧ୍ୟାନ କରିବାପାଇଁ ବ୍ରିଟିଶ ସରକାର ୧୯୩୧ ମସିହା, ସେପ୍‌ଟେମ୍ବର ୧୮ ତାରିଖରେ ଓଡ଼ୋନଲ ସାହେବଙ୍କ ଅଧ୍ୟକ୍ଷତାରେ ଗୋଟିଏ କମିଟି ଗଠନ କରିଥିଲେ । ଏହି କମିଟି ରିପୋର୍ଟ ଉପରେ ଓଡ଼ିଶା ଆନ୍ଦୋଳନର ଶେଷ ପର୍ଯ୍ୟାୟ ଫଳ ନିର୍ଭର କରୁଥିବାରୁ ଓଡ଼ିଶାର ନେତାମାନେ କମିଟି ଆଗରେ ଦାବୀ ଉପସ୍ଥାପିତ କରିବାକୁ ପ୍ରାଣପଣେ ଚେଷ୍ଟା କରୁଥିଲେ । ପଣ୍ଡିତ ନୀଳକଣ୍ଠ ଦାସ କମିଟି ଆଗରେ ଜାମସେଦ୍‌ପୁରଠାରେ ୧୦-୧-୩୨ ତାରିଖରେ ସାକ୍ଷ୍ୟ ଦେବା ଉଦ୍ଦେଶ୍ୟରେ ଏକ ସୁଚିନ୍ତିତ ଦୀର୍ଘ ମେମୋରାଣ୍ଡମ୍ ପ୍ରସ୍ତୁତ କରିଥିଲେ । ସେତେବେଳେ ଡକ୍ଟର ରାଜେନ୍ଦ୍ର ପ୍ରସାଦ କଂଗ୍ରେସର ବିହାର ଓଡ଼ିଶା ଜୋନାଲ ମୁଖ୍ୟ ଥିଲେ । ସେ ଓଡ଼ୋନଲ୍ କମିଟିକୁ ବର୍ଜନ କରିବାପାଇଁ ଜାନୁଆରି ୫ ତାରିଖରେ ନିର୍ଦ୍ଦେଶ ଦେଲେ । ନୀଳକଣ୍ଠବାବୁ ମେମୋରାଣ୍ଡମ୍‌ଟିକୁ କମିଟିକୁ ଦେଲେ ମାତ୍ର ରାଜେନ୍ଦ୍ର ପ୍ରସାଦଙ୍କ ନିର୍ଦ୍ଦେଶରେ କମିଟି ଆଗରେ ସାକ୍ଷ୍ୟ ନ ଦେଇ ଜାମସେଦ୍‌ପୁରଠାରୁ ଫେରି ଆସିଲେ ।

ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କ ପରି ସର୍ବଭାରତୀୟ ନେତା ପ୍ରାଦେଶିକ ଭାବରେ ପ୍ରଭାବିତ ହୋଇ ସିଂହଭୂମ ଜିଲ୍ଲା ଓଡ଼ିଶାରେ ମିଶିବାକୁ ବିରୋଧ କରୁଥିଲେ । ଏକଥା ନୀଳକଣ୍ଠବାବୁ ଓ ଗୋଦାବରୀଶବାବୁ ଲେଖିଛନ୍ତି ଏବଂ ଓଡ଼ିଶାର ସାଧାରଣ ଲୋକ ଏହା ଭଲଭାବେ ଜାଣିଛନ୍ତି । ଓଡ଼ୋନଲ କମିଟିରେ

ବିହାରରୁ ଡକ୍ଟର ସଚ୍ଚିଦାନନ୍ଦ ସିଂହ ସଭ୍ୟ ଥିଲେ, ମାତ୍ର ଓଡ଼ିଶାରୁ କେହି ସଭ୍ୟ ନ ଥିଲେ । କଂଗ୍ରେସରେ ସେତେବେଳେ ଓଡ଼ିଶାର ନେତାମାନଙ୍କ ଅପେକ୍ଷା ବିହାରର ନେତାମାନଙ୍କର ଅଧିକ ପ୍ରଭାବ ଥିଲା ଏବଂ ସେମାନଙ୍କ ଇଚ୍ଛା ଅନୁସାରେ ସିଂହଭୂମ ଓଡ଼ିଶାରେ ନ ମିଶିବାର ସିଦ୍ଧାନ୍ତ ହେଲା । ପାରଳା ମହାରାଜା ଓଡ଼ିଆମାନଙ୍କର ଦାବୀ ଏହି କମିଟି ଆଗରେ ଉପସ୍ଥାପନ କରିଥିଲେ । ସ୍ୱତନ୍ତ୍ର ପ୍ରଦେଶ ଗଠନ କରାଗଲେ ଓଡ଼ିଶାର ଆର୍ଥିକ ସ୍ଥିତି ଓ ସୀମା ବିଷୟର କରିବାକୁ ଏହି କମିଟିକୁ ଦାୟିତ୍ୱ ଦିଆଯାଇଥିଲା । କମିଟିର ରିପୋର୍ଟ ୧୯୩୦ ମସିହା ଅପ୍ରେଲ ୧୯ ତାରିଖ ଦିନ ପ୍ରକାଶ ପାଇଲା । କମିଟି ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ନିମିତ୍ତ ସୁପାରିଶ୍ କରିଥିଲେ, ମାତ୍ର ସେମାନେ ବଙ୍ଗଳାରୁ ଏବଂ ବିହାରରୁ ସିଂହଭୂମ ସହିତ କୌଣସି ଅଂଶ ନୂତନ ପ୍ରଦେଶରେ ମିଶାଇବାକୁ ସୁପାରିଶ୍ କରି ନ ଥିଲେ । ଦକ୍ଷିଣରେ ପାରଳାଖେମୁଣ୍ଡି ଓ ଜୟପୁର ଓଡ଼ିଶାରେ ମିଶିବାର ସୂଚନା ନ ଥିଲା । ଦକ୍ଷିଣରେ ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ମଧ୍ୟ ଓଡ଼ିଶାରେ ମିଶିବାପାଇଁ ସୁପାରିଶ୍ ନ ଥିଲା । କମିଟିର ଦୁଇଜଣ ସଭ୍ୟ ପାରଳାଖେମୁଣ୍ଡି ଓଡ଼ିଶାରେ ମିଶିବା ପାଇଁ ମତ ଦେଇଥିଲେ । ମାତ୍ର ତାହା ସଂଖ୍ୟାଲଘୁ ମତ ଥିବା ହେତୁ ଗୃହୀତ ହୋଇ ନ ଥିଲା ।

କମିଟିର ଏପରି ସୁପାରିଶ୍‌ରେ ଓଡ଼ିଶାର ସବୁ ଶ୍ରେଣୀର ନେତାମାନେ ନିରାଶ ହୋଇଥିଲେ । ସେତେବେଳେ ଉତ୍କଳ ସମ୍ମିଳନୀର କେତେକ ନେତା ଏପ୍ରସ୍ତାବିତ ସ୍ୱତନ୍ତ୍ର ପ୍ରଦେଶକୁ ଗ୍ରହଣ କରିନେବା ପରେ ସେହି ପ୍ରଦେଶ ମାଧ୍ୟମରେ ପ୍ରଦେଶରେ ମିଶି ନ ଥିବା ଅନ୍ୟ ଅଞ୍ଚଳମାନଙ୍କୁ ମିଶାଇବାପାଇଁ ଆନ୍ଦୋଳନ କରିବାକୁ ଆଗ୍ରହୀ ଥିଲେ । ମାତ୍ର ପାରଳା ମହାରାଜା ଓ ତାଙ୍କର ସହକର୍ମୀମାନେ ଏ ପ୍ରସ୍ତାବର ଘୋର ବିରୋଧ କରିଥିଲେ ଏବଂ ପାରଳା ଓ ଜୟପୁର ନ ମିଶିଲେ ସ୍ୱତନ୍ତ୍ର ପ୍ରଦେଶ ଗ୍ରହଣୀୟ ନୁହେଁ ବୋଲି ମତ ଦେଲେ । ପାରଳା ଓ ଜୟପୁର ନୂତନ ପ୍ରଦେଶରେ ମିଶାଇବା ନିମିତ୍ତ ଉଦ୍ୟମ କରିବାକୁ ପାରଳା ମହାରାଜା ୧୯୩୩ ମସିହାରେ ଦ୍ୱିତୀୟବାର ବିଲାତ ଗଲେ । ମହାରାଜା ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ବହୁ ନେତାଙ୍କୁ ତାଙ୍କ ସଙ୍ଗରେ ବିଲାତ ନେଇଥିଲେ । ସେଠାରେ ଭାରତ ସଚିବ ପ୍ରଭୃତିଙ୍କୁ ଭେଟି ଶେଷରେ ଅବିଭାଜିତ ଜୟପୁର ଜମିଦାରୀ ଏବଂ ପାରଳାଖେମୁଣ୍ଡିର ନିର୍ଦ୍ଧାରିତ ଅଂଶ ନୂତନ ପ୍ରଦେଶରେ ମିଶାଇବା ନିମିତ୍ତ ସେମାନଙ୍କୁ ରାଜି କରାଇଥିଲେ । ଦୁଇବର୍ଷ ପରେ ଭାରତ ଶାସନ ଆଇନ ୧୯୩୫ (Government of India Act, 1935) ୪-୮-୧୯୩୫ ତାରିଖରେ ବ୍ରିଟିଶ

ପାର୍ଲିଆମେଣ୍ଟରେ ଗୃହୀତ ହୋଇ ୧୯୩୭ ମସିହା ଜାନୁଆରୀ ମାସରେ ବ୍ରିଟିଶ ସମ୍ରାଟଙ୍କର ସ୍ୱୀକୃତ ଲାଭକଲା । ସେହି ଆଇନ ଅନୁସାରେ ୧୯୩୬ ମସିହା ଅପ୍ରେଲ ପହିଲା ଦିନଠାରୁ ଓଡ଼ିଶା ଓ ସିନ୍ଧୁ, ଏହି ଦୁଇଗୋଟି ନୂତନ ପ୍ରଦେଶ ଗଠିତ ହେଲା । ନୂତନ ପ୍ରଦେଶରେ ବିହାର ଓଡ଼ିଶା ପ୍ରଦେଶର ଓଡ଼ିଶା ଡିଭିଜନ, ମାନ୍ଦ୍ରାଜ ପ୍ରଦେଶରୁ ଆଗତ ଗଞ୍ଜାମ ଜିଲ୍ଲାର ମାଳ ଅଞ୍ଚଳ, ସେହି ଜିଲ୍ଲାର ଆସ୍କା, ଘୁମୁସର, ସୋରେଡ଼ା, କୋଦଳା, ଛତ୍ରପୁର ତାଲୁକ, ବ୍ରହ୍ମପୁର, ଇଚ୍ଛାପୁର ତାଲୁକର ଅନ୍ତର୍ଗତ ଅଂଶ, ପାରଳାଖେମୁଣ୍ଡି ଜମିଦାରୀର ଅନ୍ତର୍ଗତ ଅଂଶ, ବିଶାଖାପାଟଣା ଜିଲ୍ଲାର ଅନ୍ତର୍ଗତ ଜୟପୁର ଜମିଦାରୀ, ପଟାଙ୍ଗି ତାଲୁକର ଅଂଶ, ମଧ୍ୟପ୍ରଦେଶରୁ ଆଗତ ରାୟପୁର ଜିଲ୍ଲାର ଖଡ଼ିଆଳ ଜମିଦାରୀ, ବିଲାସପୁର ଜିଲ୍ଲାର ପଦ୍ମପୁର, ଚନ୍ଦ୍ରପୁର ଜମିଦାରୀର କେତେକ ଅଂଶ ସ୍ଥାନ ପାଇଲା । ଏ ସବୁ ଅଞ୍ଚଳ ସମ୍ବଳିତ ପ୍ରଦେଶରେ ଛଅଗୋଟି ଜିଲ୍ଲା ରହିଲା । ତଥାପି ଦୁର୍ଭାଗ୍ୟରେ ରହିଥିବା ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ନ୍ୟସ୍ତସ୍ୱାର୍ଥ ଲୋକଙ୍କ ଚକ୍ରାନ୍ତ ଓ ବିରୋଧ ହେତୁ ନୂତନ ପ୍ରଦେଶର ଅନ୍ତର୍ଭୁକ୍ତ ହୋଇ ପାରିଲା ନାହିଁ । ବିହାରରେ ସିଂହଭୂମ, ବଙ୍ଗଳାରେ ମେଦିନୀପୁର, ମଧ୍ୟ ପ୍ରଦେଶରେ ଫୁଲଝର ଏବଂ ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ଇଚ୍ଛାପୁର ଅଞ୍ଚଳରେ ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ରହିଗଲା । ସେ ସବୁ ଅଞ୍ଚଳପାଇଁ ଆଜଯାଏ ସୁଦ୍ଧା ଓଡ଼ିଆମାନେ ସ୍ୱର ଉତ୍ତୋଳନ କରୁଛନ୍ତି । ମାତ୍ର ସେମାନଙ୍କର ସ୍ୱର ଅରଣ୍ୟ ରୋଦନରେ ପରିଣତ ହୋଇଛି ।

୧୯୩୬ ମସିହାରେ ଓଡ଼ିଶା ପ୍ରଦେଶ ଗଠିତ ହେବା ପରେ ବହୁକାଳ ଧରି ବିଭିନ୍ନ ଅଞ୍ଚଳରେ ରହିଥିବା ଓଡ଼ିଆମାନଙ୍କର ଆଶା ଆଂଶିକ ପରିମାଣରେ ସଫଳ ହେଲା । ଉତ୍କଳ ଗୌରବ ମଧୁସୂଦନ, ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ, ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ସମେତ ପ୍ରଦେଶର ସେଉଁ ବହୁ ଜନନାୟକ ଦେଶ ମିଶ୍ରଣପାଇଁ ଅକ୍ଳାନ୍ତ ଉଦ୍ୟମ କରି ଭାରତବର୍ଷରେ ଗୋଟିଏ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିପାରିଲେ ସେମାନେ ଏ ଜାତିର ଚିର ନମସ୍ୟ ହୋଇ ରହିଥିବେ । ସ୍ୱତନ୍ତ୍ର ପ୍ରଦେଶ ଗଠନ ହିଁ ବିଂଶ ଶତାବ୍ଦୀରେ ଓଡ଼ିଆମାନଙ୍କର ପ୍ରଗତି କ୍ଷେତ୍ରରେ ପ୍ରଥମ ସୋପାନ ।

୧୯୩୨ ମସିହାରେ ଆମ୍ଭେମାନେ କଟକରେ ହାଇସ୍କୁଲରେ ପଢ଼ିବାକୁ ଆସିଲାବେଳେ ସ୍ୱତନ୍ତ୍ର ଉତ୍କଳ ଆନ୍ଦୋଳନ ଶେଷ ପର୍ଯ୍ୟାୟରେ ପହଞ୍ଚିଥିଲା । ୧୯୩୬ ମସିହା ଅପ୍ରେଲ ମାସରେ ଆମ୍ଭେମାନେ ମାଟ୍ରିକୁଲେସନ୍ ପାସ୍ କଲା ବେଳକୁ ନୂତନ ଓଡ଼ିଶା ପ୍ରଦେଶ ଗଠିତ ହେଲା । ୧୯୩୬ ଏବଂ ୧୯୩୭ ମସିହାରେ ନୂତନ

ପ୍ରଦେଶର ରାଜଧାନୀ କେଉଁଠାରେ ହେବ ସେ ବିଷୟରେ ବିବାଦ ଲାଗିଥିଲା । ଖଲ୍ଲିକୋଟ ରାଜା, ଗୋବିନ୍ଦ ପଟ୍ଟନାୟକ, ଲିଙ୍ଗରାଜ ପାଣିଗ୍ରାହୀ ପ୍ରଭୃତି ଗଞ୍ଜାମର ନେତୃସ୍ଥାନୀୟ ବ୍ୟକ୍ତିମାନେ ଗୋପାଳପୁର ନିକଟବର୍ତ୍ତୀ ରମ୍ଭେଇଲୁଣ୍ଡାରେ ଓଡ଼ିଶାର ରାଜଧାନୀ ସ୍ଥାପନ କରିବାକୁ ବିଶେଷ ଉଦ୍ୟମ କରୁଥିଲେ । ଅନ୍ୟ ଦିଗରେ ବ୍ରଜସୁନ୍ଦର ଦାସ, ରାଧାନାଥ ରଥ ସମେତ କଟକ, ପୁରୀ ଓ ବାଲେଶ୍ୱରର ବହୁ ନେତା ଓଡ଼ିଶାର ପୂର୍ବ ରାଜଧାନୀ କଟକରେ ନୂତନ ପ୍ରଦେଶର ରାଜଧାନୀ ସ୍ଥାପନ କରିବାକୁ ଦୃଢ଼ ଯୁକ୍ତି ବାଢ଼ୁଥିଲେ । ରାଜଧାନୀର ସ୍ଥାନ ନିରୂପଣ ବିଷୟରେ ପରାମର୍ଶ ଦେବାକୁ ରାଜ୍ୟପାଳ ଏକ ପରାମର୍ଶଦାତା କମିଟି ଗଢ଼ିଥିଲେ । (Orissa Capital Site Selection Committee, 1936) । ତାଙ୍କ ପାଖରେ ଗଞ୍ଜାମ ଓ କଟକ ଅଞ୍ଚଳର ନେତାମାନେ ରମ୍ଭେଇଲୁଣ୍ଡା ଓ କଟକ ଚୌଦ୍ୱାର ସପକ୍ଷରେ ଯୁକ୍ତି ଉପସ୍ଥାପନ କରିଥିଲେ । ମାତ୍ର କମିଟି ରମ୍ଭେଇଲୁଣ୍ଡା ଉପଯୁକ୍ତ ସ୍ଥାନ ବୋଲି ମତ ଦେଇଥିଲେ । ୧୯୩୭ ମସିହାରେ ବିଶ୍ୱନାଥ ଦାସ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥିବାବେଳେ କଟକ ଚୌଦ୍ୱାରରେ ରାଜଧାନୀ କରିବା ନିମିତ୍ତ ଓଡ଼ିଶା ବିଧାନସଭାରେ ଏକ ପ୍ରସ୍ତାବ ପାସ୍ ହୋଇଥିଲା । ମାତ୍ର ରାଜଧାନୀର ସ୍ଥାନ ବିଷୟରେ ଶେଷ ସିଦ୍ଧାନ୍ତ ହେବା ପୂର୍ବରୁ ୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ଯୁଦ୍ଧ ସମୟରେ ଭାରତବର୍ଷର ସ୍ୱାଧୀନତାପାଇଁ ଦେଶବାସୀ ଚରମ ପଦକ୍ଷେପମାନ ନେଲେ । ୧୯୩୯ ମସିହାରେ ବିଶ୍ୱନାଥ ଦାସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ । ପରେ ୧୯୪୩ ମସିହାରେ ପାରଳା ମହାରାଜାଙ୍କ ମୁଖ୍ୟମନ୍ତ୍ରିତ୍ୱରେ ଗୋଟିଏ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ଯୁଦ୍ଧ କାର୍ଯ୍ୟରେ ଏବଂ ଭାରତର ଯୁଦ୍ଧୋତ୍ତର ଶାସନ ସମସ୍ୟାର ଆଲୋଚନା କାର୍ଯ୍ୟରେ ବ୍ରିଟିଶ ସରକାର ଏବଂ ଭାରତର ନେତାମାନେ ସମ୍ପୂର୍ଣ୍ଣଭାବେ ବ୍ୟସ୍ତ ଥିଲେ । ୧୯୪୫ ମସିହାରେ ଯୁଦ୍ଧ ଶେଷ ପୂର୍ବରୁ ଓଡ଼ିଶାର ରାଜଧାନୀର ସ୍ଥାନ ନିରୂପଣ କରିବା ସମ୍ଭବ ହୋଇ ନ ଥିଲା । ୧୯୪୫ ମସିହାରେ ଯୁଦ୍ଧ ଶେଷ ପରେ ସାଧାରଣ ନିର୍ବାଚନରେ ବିଜୟୀ ହୋଇ କଂଗ୍ରେସ କ୍ଷମତାକୁ ଆସିଲେ । ୧୯୪୬ ମସିହାରେ ଓଡ଼ିଶାରେ ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଢ଼ାହେଲା । ତା ପୂର୍ବରୁ ରାଜ୍ୟପାଳ ଶାସନ ସମୟରେ ବି. କେ. ଗୋଖଲେ ରାଜ୍ୟପାଳଙ୍କ ପରାମର୍ଶଦାତା ଥିଲାବେଳେ କଟକ ଚୌଦ୍ୱାରକୁ ରାଜଧାନୀ କରିବାପାଇଁ ଖର୍ଚ୍ଚ ଅଟକଳ ପ୍ରସ୍ତୁତ କରାଇ ଥିଲେ । ମାତ୍ର ମହତାବ ଶାସନଭାର ଗ୍ରହଣ କଲାପରେ, ସରକାର ଭୁବନେଶ୍ୱରରେ ଓଡ଼ିଶା ପ୍ରଦେଶର ରାଜଧାନୀ ସ୍ଥାପନ କରିବାପାଇଁ ସ୍ଥିର କଲେ । ୧୯୪୭ ମସିହା ଅପ୍ରେଲ ମାସରେ ଭାରତର ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହାରଲାଲ୍ ନେହରୁ ଭୁବନେଶ୍ୱରରେ ଓଡ଼ିଶା

ପ୍ରଦେଶର ରାଜଧାନୀର ଶିଳାନ୍ୟାସ କଲେ, ଭୁବନେଶ୍ୱରରେ ଓଡ଼ିଶାର ରାଜଧାନୀ ହେବା ସିଦ୍ଧାନ୍ତ ଏବଂ ରାଜଧାନୀ ସ୍ଥାପନ ଉଦ୍ଦେଶ୍ୟରେ ମହତାବଙ୍କ କାର୍ଯ୍ୟ ଏବଂ ଏହି ଅବଦାନ ପାଇଁ ସେ ଓଡ଼ିଶାବାସୀଙ୍କର ଚିର ସ୍ମରଣୀୟ ।

ଉତ୍କଳ ସମ୍ମିଳନୀ ଏବଂ ବିଭିନ୍ନ ଅଞ୍ଚଳର ଓଡ଼ିଆମାନଙ୍କର ସଂଗ୍ରାମ ଫଳରେ ଓଡ଼ିଆ ଭାଷାଭାଷୀ ଲୋକଙ୍କର ଏକୀକରଣ ଓ ଦେଶ ମିଶ୍ରଣର ପ୍ରଥମ ପର୍ଯ୍ୟାୟ ୧୯୩୬ ମସିହାରେ ଶେଷ ହୋଇ ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ମାତ୍ର ଛଅ ଗୋଟି ଜିଲ୍ଲା ସମ୍ବଳିତ ଏହି ପ୍ରଦେଶଟି ଗୋଟିଏ କ୍ଷୁଦ୍ର ପ୍ରଦେଶ ଥିଲା ଏବଂ ଓଡ଼ିଶା ବିଧାନସଭାର ସଭ୍ୟସଂଖ୍ୟା ମୋଟେ ୬୦ ଥିଲା । ଓଡ଼ିଶା ରାଜ୍ୟର ଏକତୃତୀୟାଂଶରୁ ଅଧିକ ଲୋକ ଓଡ଼ିଶାର ୨୬ଟି ଗଡ଼ଜାତ ରାଜ୍ୟରେ ବାସ କରୁଥିଲେ । ଗଡ଼ଜାତ ରାଜ୍ୟମାନଙ୍କରେ ଶାସନ ସବୁ ବିଷୟରେ ବ୍ରିଟିଶ ଓଡ଼ିଶାର ଶାସନଠାରୁ ନିକୃଷ୍ଟ ଥିଲା । ଗଡ଼ଜାତ ମୁଲକ ଅନୁନ୍ନତ ଅନ୍ଧକାର ମୁଲକ । ରାଜାମାନଙ୍କର ଶାସନ ମନମୁଖୀ ଏବଂ ରାଜା ଓ ତାଙ୍କ କର୍ମଚାରୀମାନଙ୍କ ଅତ୍ୟାଚାର ଓ ବେଠି ବେଗାରି ପ୍ରଭୃତି ପ୍ରଥା ପ୍ରଚଳନ ଦ୍ୱାରା ଗଡ଼ଜାତବାସୀ ଓଡ଼ିଆମାନେ ହନ୍ତସନ୍ତ ହେଉଥିଲେ ବୋଲି ସବୁଆଡ଼େ ସାଧାରଣ ଲୋକଙ୍କର ଧାରଣା ଥିଲା । କିନ୍ତୁ ରାଜା କିମ୍ବା ତାଙ୍କ ଶାସନ ବିରୋଧରେ ସ୍ୱର ଉତ୍ତୋଳନ କରିବାପାଇଁ ଗଡ଼ଜାତ ବାସୀଙ୍କର ସାହସ ନ ଥିଲା ।

ଉତ୍କଳ ସମ୍ମିଳନୀର ଦେଶ ମିଶ୍ରଣ ଉଦ୍ୟମରେ ବିଭିନ୍ନ ଗଡ଼ଜାତର ଶିକ୍ଷିତ ଓ ଦେଶ ହିତୈଷୀ ରାଜାମାନେ ସହଯୋଗ କରିଥିଲେ । ମାତ୍ର ସେତେବେଳେ ଗଡ଼ଜାତ ରାଜ୍ୟ ସବୁ ଓଡ଼ିଶା ପ୍ରଦେଶରେ ମିଶିବା ପ୍ରସ୍ତାବ ନଥିଲା । ବ୍ରିଟିଶ ସରକାରଙ୍କ ସାର୍ବଭୌମ କ୍ଷମତା ଅଧୀନରେ ବିଭିନ୍ନ ସନ୍ଧି ଚୁକ୍ତି ଅନୁସାରେ ଗଡ଼ଜାତର ରାଜାମାନେ ସେମାନଙ୍କର ରାଜ୍ୟମାନଙ୍କରେ ଶାସନ କରୁଥିଲେ । ବ୍ରିଟିଶ ସରକାର ପଲିଟିକାଲ ଏଜେଣ୍ଟଙ୍କ ମାଧ୍ୟମରେ ରାଜାମାନଙ୍କର ଶାସନର ଭଲମନ୍ଦ ଏବଂ ରାଜ୍ୟ ଶାସନରେ ସେମାନଙ୍କର ଚୁକ୍ତି ପାଳନ ବିଷୟ ବୁଝୁଥିଲେ ଏବଂ ସେମାନଙ୍କୁ ନିୟନ୍ତ୍ରିତ କରୁଥିଲେ । ଭାରତବର୍ଷରେ ବ୍ରିଟିଶ ଶାସିତ ଅଞ୍ଚଳରେ କଂଗ୍ରେସ ନେତୃତ୍ୱରେ ବ୍ରିଟିଶ ଶାସନ ବିରୋଧରେ ୧୯୨୧ ମସିହାଠାରୁ ଜନଜାଗରଣ ହେଲା । ଏହି ଜନଜାଗରଣ କ୍ରମେ ବିପ୍ଳବାତ୍ମକ ରୂପ ନେଲା । କଂଗ୍ରେସ ନେତୃତ୍ୱରେ ଲୋକମାନେ ଗୋରାଆଡ଼େ ଇଂରେଜମାନଙ୍କୁ ଦେଶରୁ ବହିଷ୍କାର ଏବଂ ଦେଶର ପୂର୍ଣ୍ଣ ସ୍ୱାଧୀନତା ଦାବି କଲେ । ଯେଉଁ ରାଜା, ଜମିଦାର, ମହାଜନ ପ୍ରଭୃତି ଲୋକଙ୍କୁ ଶୋଷଣ କରୁଥିଲେ, ସେମାନଙ୍କ ବିରୋଧରେ ମଧ୍ୟ ଲୋକମାନେ ସ୍ୱର ଉତ୍ତୋଳନ କଲେ । ଏ ସବୁ ଆନ୍ଦୋଳନର ପ୍ରଭାବ ଗଡ଼ଜାତ

ଲୋକଙ୍କ ଉପରେ ପଡ଼ିଲା । ସେମାନେ ପ୍ରଜାମଣ୍ଡଳମାନ ଗଠନ କଲେ ଏବଂ ରାଜାମାନଙ୍କ କ୍ଷମତା ଲୋପ ଓ ପ୍ରଜାମଣ୍ଡଳ ଶାସନ ଦାବି କଲେ । ବ୍ରିଟିଶ ଶାସିତ ଅଞ୍ଚଳରେ କଂଗ୍ରେସ ଆନ୍ଦୋଳନ ସହିତ ଗଡ଼ଜାତ ଅଞ୍ଚଳରେ ପ୍ରଜାମଣ୍ଡଳ ଆନ୍ଦୋଳନ ଏକ ସାଙ୍ଗରେ ଚାଲିଲା । ରାଜାମାନେ ବ୍ରିଟିଶ ସରକାରଙ୍କ କଂଗ୍ରେସ ଆନ୍ଦୋଳନ ବିରୋଧ କାର୍ଯ୍ୟକ୍ରମ ସମର୍ଥନ କଲେ ଏବଂ ନିଜ ନିଜ ରାଜ୍ୟରେ ପ୍ରଜା ଆନ୍ଦୋଳନ ଦମନପାଇଁ ପଦକ୍ଷେପ ନେଲେ । ଏ ବିଷୟରେ ବ୍ରିଟିଶ ସରକାର ଏବଂ ରାଜାମାନଙ୍କର ସ୍ୱାର୍ଥ ଏକ ଥିଲା ।

୧୯୩୦ ମସିହା ପରେ ଓଡ଼ିଶାର ୨୬ଟି ଗଡ଼ଜାତ ରାଜ୍ୟ ମଧ୍ୟରୁ ଢେଙ୍କାନାଳ, ତାଳଚେର, ନୀଳଗିରି ଓ ରଣପୁର ପରି କେତେକ ରାଜ୍ୟରେ ପ୍ରଜାମଣ୍ଡଳ ଆନ୍ଦୋଳନ ତୀବ୍ର ହେଲା । ସାରଙ୍ଗଧର ଦାସ ଓ ପବିତ୍ରମୋହନ ପ୍ରଧାନ ପ୍ରଭୃତି ନେତାମାନେ ଏ ଆନ୍ଦୋଳନକୁ ନେତୃତ୍ୱ ଦେଉଥିଲେ । ୧୯୩୭ ମସିହାଠାରୁ ୧୯୩୯ ମସିହା ମଧ୍ୟରେ ଓଡ଼ିଶାରେ ଯେତେବେଳେ କଂଗ୍ରେସ ସରକାର ଶାସନ କରୁଥିଲେ, ସେତେବେଳେ ଢେଙ୍କାନାଳ, ତାଳଚେର ଏବଂ ନୀଳଗିରି ପ୍ରଭୃତି ରାଜ୍ୟମାନଙ୍କରେ ପ୍ରଜା ଆନ୍ଦୋଳନ ହିଂସାତ୍ମକ ରୂପ ନେଇଥିଲା ଏବଂ ରାଜାମାନଙ୍କ ଦମନ ଫଳରେ ବହୁ ବିଦ୍ରୋହୀ ପ୍ରଜା ଅନୁଗୁଳ ଓ କଟକ ପ୍ରଭୃତି ଅଞ୍ଚଳରୁ ପଳାଇ ଆସିଥିଲେ । ସେତେବେଳେ ପ୍ରାଦେଶିକ କଂଗ୍ରେସ ସରକାର ସେମାନଙ୍କୁ ସାହାଯ୍ୟ କରୁଥିଲେ । ପୁନର୍ବାର ୧୯୪୨ ମସିହାରେ ଭାରତର ସ୍ୱାଧୀନତା ଭାରତ ଛାଡ଼ ଆନ୍ଦୋଳନ ବେଳେ ଢେଙ୍କାନାଳ, ତାଳଚେର, ନୀଳଗିରି ଏବଂ ରଣପୁର ପ୍ରଭୃତି ରାଜ୍ୟରେ ହିଂସାତ୍ମକ ପ୍ରଜାଆନ୍ଦୋଳନ ହେଲା । ୧୯୩୯ରେ ଢେଙ୍କାନାଳରେ ବ୍ରିଟିଶ ସୈନ୍ୟଙ୍କ ଗୁଳିରେ ନାବିକ ବାଳକ ବାଜିରାଉତର ମୃତ୍ୟୁ ଏବଂ ରଣପୁରଠାରେ ୧୯୪୦ ମସିହାରେ ଉତ୍ତ୍ୟକ୍ତ ପ୍ରଜାମାନଙ୍କ ଦ୍ୱାରା ପଲିଟିକାଲ ଏଜେଣ୍ଟ ବେଜେଲ୍‌ଗେଟଙ୍କ ହତ୍ୟା ଗଡ଼ଜାତ ପ୍ରଜାମଣ୍ଡଳ ଆନ୍ଦୋଳନ ଇତିହାସର ବିଶିଷ୍ଟ ଘଟଣା । ତାଳଚେର ସହରର ବ୍ରାହ୍ମଣୀ ନଦୀ କୂଳେ ସମବେତ ଜନତା ଉପରେ ପୁଲିସ ଗୁଳି ଚଳାଇବାରୁ କେତେକ ଲୋକ ମୃତ ଓ ବହୁଲୋକ ଆହତ ହୋଇଥିଲେ । ପୁଲିସ ମୃତ ଲୋକଙ୍କ ଦେହକୁ ନଦୀକୂଳେ ପୋଡ଼ି ଦେଇଥିଲେ । ଏହି ସମୟରେ ଦେଶରେ କଂଗ୍ରେସ ଆନ୍ଦୋଳନ ଏବଂ ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରଜାମଣ୍ଡଳ ଆନ୍ଦୋଳନ ଏକ ସଙ୍ଗରେ ବିପ୍ଳବାତ୍ମକ ଭାବରେ ଚାଲିଥାଏ ।

୧୯୪୭ ମସିହାରେ ଭାରତ ସ୍ୱାଧୀନ ହେବା ପରେ ବ୍ରିଟିଶ ସରକାରଙ୍କ ସାର୍ବଭୌମ କ୍ଷମତା (Paramountary) ଭାରତ ସରକାରଙ୍କ ଉପରେ ନ୍ୟସ୍ତ

ହେଲା । ସେତେବେଳେ ଜନନାୟକ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଭାରତର ସ୍ୱରାଷ୍ଟ୍ରମନ୍ତ୍ରୀ ଏବଂ ରାଜାମାନଙ୍କ ଶାସିତ ରାଜ୍ୟ ଶାସନ ବିଭାଗ ଦାୟିତ୍ୱରେ ଥିଲେ । ତାଙ୍କର ଦୂରଦୃଷ୍ଟି ଏବଂ ଚତୁର ରାଷ୍ଟ୍ରନୀତି ହେତୁ, ଭାରତର ସାନବଡ଼ ପାଞ୍ଚଶହରୁ ଊର୍ଦ୍ଧ୍ୱ ରାଜାମାନଙ୍କ ଶାସିତ ରାଜ୍ୟ ଭାରତ ସହିତ ମିଶିଗଲା । ସେ ସମୟରେ ହାଇଦରାବାଦ୍, ମହୀଶୂର, ତ୍ରାଭାଙ୍କୋର ପରି ବଡ଼ରାଜ୍ୟ ଏବଂ ମଧ୍ୟପ୍ରଦେଶ, ଗୁଜୁରାଟ, ଓ ଓଡ଼ିଶାର ସବୁ ଛୋଟ କରଦ ରାଜ୍ୟ ଭାରତବର୍ଷରେ ମିଶିବାକୁ ବାଧ୍ୟ ହୋଇଥିଲେ । ଓଡ଼ିଶାରେ ସେତେବେଳେ ବଲାଙ୍ଗୀର, କଳାହାଣ୍ଡି ପ୍ରଭୃତି ରାଜାମାନଙ୍କ ନେତୃତ୍ୱରେ ରାଜାମାନେ ପୂର୍ବାଞ୍ଚଳ ଗଡ଼ଜାତ ରାଜ୍ୟମାନଙ୍କୁ ନେଇ ଗୋଟିଏ ପ୍ରଦେଶ ଗଠନ କରିବାକୁ ଉଦ୍ୟମ କରିଥିଲେ । ମାତ୍ର ଡକ୍ଟର ହରେକୃଷ୍ଣ ମହତାବଙ୍କ ନେତୃତ୍ୱରେ କଂଗ୍ରେସ ନେତାମାନେ ୨୬ଟିଯାକ ଗଡ଼ଜାତ ରାଜ୍ୟକୁ ଓଡ଼ିଶା ପ୍ରଦେଶରେ ମିଶାଇବାକୁ ଉଦ୍ୟମ କଲେ । ବ୍ରିଟିଶ ସରକାରଙ୍କ ସୈନ୍ୟବଳ ଓ ସରକାରୀ କଳ ଗଡ଼ଜାତ ରାଜାମାନଙ୍କ ରକ୍ଷକ ଥିଲା । ସ୍ୱାଧୀନତା ପରେ ସେ ସବୁ କ୍ଷମତା ଭାରତ ସରକାରଙ୍କ ହାତରେ ପଡ଼ିଲା । ସୁତରାଂ ରାଜାମାନଙ୍କର ଭାରତ ସରକାରଙ୍କର ଆଦେଶ ଅମାନ୍ୟ କରିବାକୁ ଶକ୍ତି ନ ଥିଲା । ହାଇଦରାବାଦ ପରି ବଡ଼ ରାଜ୍ୟରେ ଯେଉଁଠି ଭାରତ ସରକାରଙ୍କର ଆଦେଶ ଅମାନ୍ୟ କରିବାକୁ ଉଦ୍ୟମ ହୋଇଥିଲା, ସେଠାରେ ଭାରତୀୟ ସୈନ୍ୟବାହିନୀ ଦ୍ୱାରା ତାହା ଦମନ କରାଗଲା । ଓଡ଼ିଶାର ରାଜାମାନଙ୍କର ସେପରି କିଛି ଶକ୍ତି ନଥିଲା ।

୧୯୪୭ ମସିହା ଡିସେମ୍ବର ୧୩ ତାରିଖରେ ସର୍ଦ୍ଦାର ପଟେଲ ନିଜେ କଟକ ଆସିଲେ । ୧୪ ତାରିଖ ଦିନ ତାଙ୍କ ସହିତ ରାଜାମାନଙ୍କର ଗୋଟିଏ ସମ୍ମିଳନୀ ହେଲା । ସେଥିରେ ମୟୂରଭଞ୍ଜ ରାଜାଙ୍କ ବ୍ୟତୀତ ଅନ୍ୟ ୨୫ଟି ରାଜ୍ୟର ରାଜାମାନେ ତାଙ୍କ ରାଜ୍ୟ ଓଡ଼ିଶା ପ୍ରଦେଶରେ ମିଶିବା ନିମିତ୍ତ ସମ୍ମତି ପ୍ରଦାନ କରି ଚୁକ୍ତିପତ୍ରରେ ସ୍ୱାକ୍ଷର କଲେ । ମୟୂରଭଞ୍ଜ ମହାରାଜା ଆଗରୁ ଏ ବିଷୟ ଅବଗତ ହୋଇ ତାଙ୍କ ରାଜ୍ୟ ଶାସନ ପ୍ରଜା ପ୍ରତିନିଧିମାନଙ୍କୁ ହସ୍ତାନ୍ତର କରିଥିଲେ ବୋଲି ଯୁକ୍ତି ଦର୍ଶାଇ ରାଜ୍ୟଶାସନ ଦାୟିତ୍ୱରେ ଥିବା ମନ୍ତ୍ରୀମାନଙ୍କ ପରାମର୍ଶ ବିନା ଚୁକ୍ତିରେ ସ୍ୱାକ୍ଷର କରିବାପାଇଁ ଅକ୍ଷମତା ପ୍ରକାଶ କଲେ । ସୁତରାଂ ମୟୂରଭଞ୍ଜ ବ୍ୟତୀତ ସେହିଦିନ ଓଡ଼ିଶାର ଅନ୍ୟ ଗଡ଼ଜାତ ସବୁ ଓଡ଼ିଶା ପ୍ରଦେଶରେ ମିଶିବା ସ୍ଥିର ହୋଇଗଲା ଏବଂ ୧୯୪୮ ମସିହା ଜାନୁଆରୀ ପହିଲାରୁ ବିଧିବଦ୍ଧ ଭାବରେ ସେଗୁଡ଼ିକ ଓଡ଼ିଶାରେ ମିଶିଗଲା । ମୟୂରଭଞ୍ଜ ନ ମିଶିବାରୁ ଅନ୍ୟ ଦୁଇଗୋଟି ଓଡ଼ିଶା କରଦ ରାଜ୍ୟ, ସରେଇକଳା ଓ ଖରସୁଆଁ ଓଡ଼ିଶା ପ୍ରଦେଶରେ ମିଶି-ପାରିଲେ ନାହିଁ, କାରଣ ସେ ଦୁଇଟି ରାଜ୍ୟ ମୟୂରଭଞ୍ଜକୁ ଲାଗିଥିଲା ଏବଂ ଓଡ଼ିଶା

ପ୍ରଦେଶରୁ ସେ ଦୁଇଟି ରାଜ୍ୟକୁ କେବଳ ମୟୂରଭଞ୍ଜ ମଧ୍ୟଦେଇ ବାଟ ଥିଲା । ପରେ ମୟୂରଭଞ୍ଜ ରାଜ୍ୟର ପ୍ରଜାମାନଙ୍କ ଆନ୍ଦୋଳନ ଓ ସମର୍ଥନ ଫଳରେ ୧୯୪୯ ମସିହାରେ ମୟୂରଭଞ୍ଜ ଓଡ଼ିଶାରେ ମିଶିଗଲା, ମାତ୍ର ସରାଇକଳା ଓ ଖରସୁଆଁ ଓଡ଼ିଶା ପ୍ରଦେଶ ବାହାରେ ରହିଗଲା । ବିଧିର ବିଡ଼ମ୍ବନା ଯେ ଯେଉଁ ମୟୂରଭଞ୍ଜ ରାଜ୍ୟର ମହାରାଜା ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନରେ ୧୯୦୩ ମସିହାରେ ଅଧ୍ୟକ୍ଷତା କରିଥିଲେ ତାଙ୍କର ଦାୟାଦମାନେ ନିଜ ରାଜ୍ୟ ରକ୍ଷା କରିବାକୁ ଉଦ୍ୟମ କରିବା ହେତୁ ସରାଇକଳା ଓ ଖରସୁଆଁ ଚିରକାଳପାଇଁ ଓଡ଼ିଶା ବାହାରେ ରହିଗଲା ।

ତାହାପରେ ଭାଷାଭିତ୍ତିରେ ପ୍ରଦେଶ ଗଠନ ବିଷୟରେ ସୁପାରିଶ୍ କରିବା ପାଇଁ ୧୯୫୬ ମସିହାରେ ଭାରତ ସରକାର ଗୋଟିଏ କମିଟି (States Reorganisation Committee) ନିଯୁକ୍ତ କରିଥିଲେ । ସେତେବେଳେ ସିଂହଭୂମି, ସରାଇକଳା ଓ ଖରସୁଆଁ ସହିତ ୧୯୩୬ ମସିହା ଦେଶ ମିଶ୍ରଣ ବେଳେ ଯେଉଁ ସବୁ ଓଡ଼ିଆ ଅଞ୍ଚଳ ଓଡ଼ିଶା ବାହାରେ ରହି ଯାଇଥିଲା, ସେ ସବୁ ଓଡ଼ିଶା ସହିତ ମିଶାଇବାପାଇଁ ଓଡ଼ିଶା ପକ୍ଷରୁ ଦୃଢ଼ ଦାବୀ ହୋଇଥିଲା । କିନ୍ତୁ ଦୁର୍ଭାଗ୍ୟବଶତଃ ସେତେବେଳେ ଆଉ କୌଣସି ଅଞ୍ଚଳ ଓଡ଼ିଶାରେ ମିଶାଇବାକୁ କମିଟି ସୁପାରିଶ୍ କରି ନ ଥିଲେ । ଅନ୍ୟ ରାଜ୍ୟମାନଙ୍କର ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିଙ୍କ କାର୍ଯ୍ୟ ଯୋଗୁଁ ଏହା ହୋଇଥିଲା । କମିଟିର ରିପୋର୍ଟ ୧୯୫୬ ମସିହାରେ ବାହାରିବା ପରେ ଓଡ଼ିଶାରେ ଆନ୍ଦୋଳନ ହୋଇଥିଲା । ସେଥିରେ ପୁଲିସ୍ ଗୁଳିରେ ପୁରୀରେ ବେଙ୍ଗପାଣିଆ ନାମରେ ଜଣେ ବ୍ୟକ୍ତିର ମୃତ୍ୟୁ ହୋଇଥିଲା । କିନ୍ତୁ ସେ ଆନ୍ଦୋଳନ ବ୍ୟର୍ଥ ହେଲା । ସୁତରାଂ ୧୯୩୬ ମସିହାରେ ଗଠିତ ହୋଇଥିବା ଓଡ଼ିଶା ପ୍ରଦେଶ ସହିତ ୧୯୪୮—୪୯ ମସିହାରେ ୨୬ଟି ଗଡ଼ଜାତ ରାଜ୍ୟ ମିଶି ବର୍ତ୍ତମାନର ଓଡ଼ିଶା ରାଜ୍ୟ ଗଠିତ ହୋଇଛି । ଓଡ଼ିଶାରେ ୨୬ଟିଯାକ ଗଡ଼ଜାତ ରାଜ୍ୟ ମିଶିବାରେ ମଧ୍ୟ ଡକ୍ଟର ମହତାବଙ୍କ ବିରାଟ ଅବଦାନ ରହିଛି । ସେତେବେଳେ ସେ ଚେଷ୍ଟା ନ କରିଥିଲେ, ଗଡ଼ଜାତ ରାଜ୍ୟମାନ ଓଡ଼ିଶାରେ ମିଶିବା ସମ୍ଭବ ହୋଇପାରି ନ ଥାନ୍ତା ।

୧୯୩୨ ମସିହାର ଓଡ଼ୋନେଲ କମିଟି ରିପୋର୍ଟ ପରେ ଓଡ଼ିଶାର କେତେକ ନେତା ଯେଉଁ ଯୁକ୍ତି କରୁଥିଲେ ଯେ ପ୍ରଥମେ ଖଣ୍ଡିତ ପ୍ରଦେଶ ଗ୍ରହଣ କରାଯାଇ ପରେ ସେ ପ୍ରଦେଶ ମାଧ୍ୟମରେ ମିଶି ନ ଥିବା ଓଡ଼ିଆ ଅଞ୍ଚଳ ମିଶାଇବାକୁ ଉଦ୍ୟମ କରାଯିବ, ସେ ଯୁକ୍ତିର ବ୍ୟର୍ଥତା ପରବର୍ତ୍ତୀ ଐତିହାସିକ ଘଟଣାବଳୀ ଦ୍ୱାରା ପ୍ରମାଣିତ ହୋଇଛି । ଓଡ଼ିଶାର ସ୍ୱାର୍ଥ ଏବଂ ମହାଭାରତୀୟ ଜାତୀୟ ସ୍ୱାର୍ଥ

ସବୁବେଳେ ଏକ ସଙ୍ଗରେ ଯାଏ ନାହିଁ ବୋଲି ମଧ୍ୟ ପ୍ରମାଣିତ ହୋଇଛି । କାରଣ ଭାରତର ବିଭିନ୍ନ ରାଜ୍ୟର ଲୋକମାନେ ଏବଂ ସେ ରାଜ୍ୟମାନଙ୍କରେ ବାସ କରୁଥିବା ଭାରତୀୟ ତୁଙ୍ଗ ନେତାମାନେ ପ୍ରାଦେଶିକ ମନୋଭାବରେ ସର୍ବଦା ପ୍ରଭାବିତ । ନିଜ ରାଜ୍ୟର ସ୍ୱାର୍ଥ ଦୃଷ୍ଟିରୁ ଅନ୍ୟ ରାଜ୍ୟର ଯୁକ୍ତିଯୁକ୍ତ ଦାବି ମଧ୍ୟ ସେମାନେ ଗ୍ରହଣ କରିବାକୁ ରାଜି ନୁହନ୍ତି ଏବଂ ଯେକୌଣସି ଉପାୟରେ ନିଜ ରାଜ୍ୟର ସ୍ୱାର୍ଥ ରକ୍ଷା କରିବାକୁ ସେମାନେ ପ୍ରସ୍ତୁତ ।

ଓଡ଼ିଶାର ଦେଶମିଶ୍ରଣ ଆନ୍ଦୋଳନର ଶେଷ ପର୍ଯ୍ୟାୟ ବେଳକୁ ଆମ୍ଭେମାନେ ସ୍କୁଲରେ ପଢ଼ୁଥିଲୁ । ଆନ୍ଦୋଳନ ଆବଶ୍ୟକତା ଓ ବିଭିନ୍ନ କାର୍ଯ୍ୟକଳାପ ବିଷୟରେ ଆମ୍ଭେମାନେ ସମ୍ପୂର୍ଣ୍ଣରୂପେ ଅବଗତ ନ ଥିଲୁ । କିନ୍ତୁ ଗଡ଼ଜାତର ପ୍ରଜାମଣ୍ଡଳ ଆନ୍ଦୋଳନ ସମୟରେ ଆମ୍ଭେମାନେ କଲେଜରେ ପଢ଼ୁଥିଲୁ । କଲେଜ ହଷ୍ଟେଲ ଛାତ୍ରମାନଙ୍କ ମଧ୍ୟରେ ଏ ବିଷୟରେ ବହୁ ସମୟରେ ଆଲୋଚନା ହେଉଥିଲା । ୧୯୪୮ ମସିହାରେ ଗଡ଼ଜାତ ରାଜ୍ୟମାନେ ଓଡ଼ିଶାରେ ମିଶିବା ବେଳକୁ ଆମ୍ଭେମାନେ କଲେଜରେ ଚାକିରି କରୁଥିଲୁ ଏବଂ ସେ ବିଷୟରେ ଆମ୍ଭେମାନେ ସମ୍ପୂର୍ଣ୍ଣ ଅବଗତ ଥିଲୁ । ମୋ ବିଚାରରେ ୧୯୩୬ ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଏବଂ ୧୯୪୮—୪୯ ମସିହାରେ ପ୍ରଦେଶ ସହିତ ଗଡ଼ଜାତ ରାଜ୍ୟମାନଙ୍କର ମିଶ୍ରଣ ଓଡ଼ିଆମାନଙ୍କପାଇଁ ଆମ ସମୟ ବିଂଶ ଶତାବ୍ଦୀର ସର୍ବ ପ୍ରଧାନ ଘଟଣା । ତାହା ନ ହୋଇଥିଲେ ସ୍ୱାଧୀନତା ବେଳକୁ ଓଡ଼ିଆମାନଙ୍କର କୌଣସି ପ୍ରଶାସନିକ ସ୍ଥିତି ନ ଥାନ୍ତା । ସ୍ୱାଧୀନତା ପରେ ବିଭିନ୍ନ ରାଜ୍ୟମାନଙ୍କର ନିଜ ନିଜର ସ୍ୱାର୍ଥ ବିଷୟରେ ସତର୍କତା ଏବଂ ସ୍ୱାର୍ଥରକ୍ଷା ନିମିତ୍ତ ପ୍ରତିଯୋଗିତା, ସର୍ବଭାରତୀୟ ନେତାମାନଙ୍କର ପ୍ରାଦେଶିକ ଭାବ ଏବଂ ନିଜ ରାଜ୍ୟରେ ଭୋଟପାଇଁ ବ୍ୟାକୁଳତା ପରିପ୍ରେକ୍ଷୀରେ ଓଡ଼ିଶା ରାଜ୍ୟର ରୂପରେଖ ଏବଂ ଓଡ଼ିଆମାନଙ୍କର ସ୍ଥିତି କିପରି ହୋଇଥାନ୍ତା କହିବା କଷ୍ଟକର । ସ୍ୱାଧୀନତା ପୂର୍ବରୁ ଓଡ଼ିଆମାନଙ୍କର ଗୋଟିଏ ସ୍ଥିତି ପ୍ରତିଷ୍ଠିତ ହୋଇଥିବାରୁ ସେହି ମୂଳଦୁଆ ଉପରେ ଆର୍ଥିକ ଓ ସାମାଜିକ ପ୍ରଗତି ସମ୍ଭବ ହୋଇଥିଲା ।

ଅନ୍ନ କଷ୍ଟ କାଳେ କାଳେ—

## ବଢ଼ି, ମରୁଡ଼ି ଓ ଦୁର୍ଭିକ୍ଷ

### ୪

ଆମ୍ଭେମାନେ ପ୍ରାଥମିକ ବିଦ୍ୟାଳୟର ଦ୍ୱିତୀୟ, ତୃତୀୟ ଶ୍ରେଣୀରେ ପଢ଼ୁଥିଲାବେଳେ, ଶ୍ରେଣୀର ସବୁ ପିଲା ପ୍ରାୟ ନ'ଅଙ୍କ ଦୁର୍ଭିକ୍ଷ କଥା ଜାଣିଥିଲୁ ଏବଂ ସେ ବିଷୟରେ ଭୟାବହ କାହାଣୀମାନ ଶୁଣିଥିଲୁ। ଆମ ପିଲାକାଳଠାରୁ ନ'ଅଙ୍କ ଦୁର୍ଭିକ୍ଷ ବହୁ ପୂର୍ବ ବର୍ଷର ଘଟଣା ନ ଥିଲା । ସେ ଘଟଣା ଆମ ଜେଜେବାପାଙ୍କ ଯୁବକ ବୟସରେ, ଆମ ପିଲାକାଳଠାରୁ ପ୍ରାୟ ଷାଠିଏ ବର୍ଷ ପୂର୍ବେ ଘଟିଥିଲା । ଆମେ ଶୁଣିଥିଲୁ ଯେ ପ୍ରଥମେ ଚୋରମାନେ କପର ଧାନ ଚାଉଳ ରଖିଥିବା ଲୋକମାନଙ୍କ ଘରେ ପଶି ଧାନଚାଉଳ ଲୁଟି ନେଉଥିଲେ । ପରେ ଖାଇବାକୁ ନ ପାଇ ଲୋକମାନେ କପର ବିଭିନ୍ନ ଗଛପତ୍ର ଖାଉଥିଲେ ଏବଂ ଶେଷରେ ଗାଁମୁଣ୍ଡମାନଙ୍କରେ କପର ବହୁ ଲୋକ ପଡ଼ି ମରିଯାଇଥିଲେ ।

ପରେ ମୁଁ କାହ୍ନୁଚରଣ ମହାନ୍ତିଙ୍କ 'ହା ଅନ୍ନ' ଉପନ୍ୟାସରୁ ନ'ଅଙ୍କ ଦୁର୍ଭିକ୍ଷ ସମୟର ଭୟାବହ କାଳ୍ପନିକ ଚିତ୍ର ପଢ଼ିଥିଲି ଏବଂ କଲେଜରେ ଅଧ୍ୟାପକ ଥିଲାବେଳେ ଫକୀରମୋହନ ଓ ପ୍ୟାରୀମୋହନ ଆଚାର୍ଯ୍ୟ ପ୍ରଭୃତି ଦୁର୍ଭିକ୍ଷର ପ୍ରତ୍ୟକ୍ଷଦର୍ଶୀଙ୍କ ବିବରଣୀ ଏବଂ ଦୁର୍ଭିକ୍ଷ କମିଶନଙ୍କ ବିବରଣୀ ପଢ଼ିଥିଲି। ଦୁର୍ଭିକ୍ଷରେ ଗଣ ବୁଭୁକ୍ଷା ଓ ଜନକ୍ଷୟ ଏବଂ ତାହାର କାରଣ ବିଷୟରେ ସେ ସବୁ ବିବରଣୀ ପ୍ରାୟ ଏକମତ ଥିଲେ । ୧୮୬୬ ମସିହାରେ ସେ ଦୁର୍ଭିକ୍ଷ ଘଟିଥିଲା । ସେତେବେଳେ ଇଂରେଜ ସରକାରଙ୍କ ଦ୍ୱାରା ଶାସିତ ବଙ୍ଗ ପ୍ରେସିଡେନ୍‌ସିର ଓଡ଼ିଆ ଭୂଭାଗରେ କେବଳ କଟକ, ପୁରୀ, ବାଲେଶ୍ୱର ଜିଲ୍ଲା ଥିଲା । ୧୮୬୬—୬୭ ଖ୍ରୀଷ୍ଟାବ୍ଦରେ ଦୁର୍ଭିକ୍ଷ ଅବସ୍ଥା ଓ ଖାଦ୍ୟାଭାବ ଭାରତବର୍ଷର ସମୁଦ୍ର ପୂର୍ବ ଉପକୂଳରେ ମାଡ୍ରାଜ-ଠାରୁ କଲିକତା ପର୍ଯ୍ୟନ୍ତ ଅନୁଭୂତ ହୋଇଥିଲା । ମାତ୍ର ଓଡ଼ିଶାର ଉପକୂଳବର୍ତ୍ତୀ କଟକ, ପୁରୀ, ବାଲେଶ୍ୱର ଏହି ତିନିଗୋଟି ଜିଲ୍ଲାରେ ଦୁର୍ଭିକ୍ଷ ଅତ୍ୟନ୍ତ ଉତ୍କଟ ଅବସ୍ଥା ଧାରଣ କରିଥିଲା । ସେ ସମୟରେ ଏହି ତିନି ଜିଲ୍ଲାର ମୋଟ ଜନସଂଖ୍ୟା

ପ୍ରାୟ ୩୦ ଲକ୍ଷ ଥିଲା । ସେଥିରୁ ପ୍ରାୟ ଦଶଲକ୍ଷରୁ ଊର୍ଦ୍ଧ୍ୱ ଲୋକ ସେ ଦୁର୍ଭିକ୍ଷରେ ମରିଗଲେ । ସେ ବର୍ଷର ଦୁର୍ଭିକ୍ଷର କରୁଣ ଚିତ୍ର ଫକୀରମୋହନ ତାଙ୍କ "ଆତ୍ମଜୀବନ ଚରିତ" ବହିରେ ଏବଂ ପ୍ୟାରୀମୋହନ ଆଚାର୍ଯ୍ୟ ତାଙ୍କ "ଓଡ଼ିଶା ଇତିହାସ" ବହିରେ ବର୍ଣ୍ଣନା କରିଛନ୍ତି । ୧୮୬୮ ମସିହାର ଦୁର୍ଭିକ୍ଷ କମିଶନ୍ ମଧ୍ୟ ତାହା ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ସେ ଦୁର୍ଭିକ୍ଷର ଭୟାବହତା ଓ କାରଣ ବିଷୟରେ ସବୁ ଲିପିକାର ପାୟ ଏକମତ ।

୧୮୬୫ ମସିହା ଭାଦ୍ରବମାସ ଆରମ୍ଭରେ ବିଭିନ୍ନ ଅଞ୍ଚଳରେ କିଛି ବର୍ଷା ହୋଇଥିଲା । ତା' ପରେ ବର୍ଷା ଛାଡ଼ିଗଲା । ଫଳରେ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାରେ ଧାନଫସଲ ସମ୍ପୂର୍ଣ୍ଣ ନଷ୍ଟ ହୋଇଗଲା । ସେ ଜିଲ୍ଲାମାନଙ୍କରେ ଏକମାତ୍ର ଫସଲ ଧାନ ଏବଂ ସେହି ଫସଲ ଉପରେ ଲୋକମାନଙ୍କ ଜୀବନ ନିର୍ଭର କରୁଥିଲା । ଫସଲ ନଷ୍ଟ ହେବାରୁ ପ୍ରଥମେ ଦିନମଜୁରିଆମାନେ ସେମାନଙ୍କର କଂସା ପିତ୍ତଳ ପ୍ରଭୃତି ବିକି ମାସେ ଦିଧେ ଚଳିଲେ । କାର୍ତ୍ତିକମାସ ବେଳକୁ ଦୁଆର ଦୁଆର ବୁଲି ଭିକ ମାଗିଲେ । ଭିକ ମଧ୍ୟ ସେମାନଙ୍କୁ ମିଳିଲା ନାହିଁ କାରଣ ଭିକ ଦେବାକୁ କାହାରି ଘରେ ଚାଉଳ ନ ଥିଲା । ଚାଷୀ ଲୋକମାନେ କଂସା, ପିତ୍ତଳ, ଗୋରୁ-ଗାଈ, ସୁନା-ରୁପା ବିକି ମାଘ ଫଗୁଣ ଯାଏ ଘରେ ପଡ଼ି ରହିଲେ । ତା'ପରେ ସେମାନଙ୍କୁ ଧାନ କିଣିବାକୁ ପୁଞ୍ଜି ମିଳିଲା ନାହିଁ । ଚାରିଆଡ଼େ ଧାନ ଚାଉଳର ଅଭାବ ହେତୁ ଯେଉଁ ଅଳ୍ପଲୋକଙ୍କ ଘରେ କିଛି ଧାନ ଥିଲା ସେମାନେ ତାହା ଲୁଚାଇ ଦେଲେ । ତାଙ୍କ ମଧ୍ୟରୁ ଅନେକ ଲୋକ ଘରେ ଗାତ ଖୋଳି ଧାନଚାଉଳ ପୋତି ପକାଇଲେ । ସୁତରାଂ ଫଗୁଣମାସ ବେଳକୁ ଚାଷୀ ଓ କାରିଗର ଶ୍ରେଣୀର ଲୋକ ଚାରିଆଡ଼େ ବୁଲି ଭିକ ମାଗିଲେ ଏବଂ କୌଣସି ଉପାୟରେ ଧାନଚାଉଳ ନ ପାଇ ଗଛ ପତ୍ର ଖାଇଲେ । ତାପରେ ଆସ୍ତେ ଆସ୍ତେ ଖାଇବାକୁ ନ ପାଇ ବହୁ ଲୋକ ମରିଗଲେ । ଦାଣ୍ଡରେ, ଘାଟରେ, ବଣରେ, ପୋଖରୀ ତୁଠରେ, ସବୁଆଡ଼େ ବହୁ ଲୋକଙ୍କର ଶବ ପଡ଼ିଥିବାର ଦେଖାଗଲା । ସହରମାନଙ୍କରେ ହଜାର ହଜାର ସଂଖ୍ୟାରେ ଦୁର୍ଭିକ୍ଷ ପ୍ରପୀଡ଼ିତ ଅସ୍ଥିକଙ୍କାଳସାର ପୁରୁଷ, ନାରୀ ଓ ପିଲା ଭିଡ଼ ହେଉଥିଲେ ଏବଂ ସେମାନଙ୍କ କରୁଣ ଧ୍ୱନି ସହରର ସବୁ ଗଳିକନ୍ଦିରେ ଶୁଣା-ଯାଉଥିଲା । ସହର ଓ ଗାଁ ପାଖ ଶ୍ମଶାନମାନଙ୍କରେ ଅସଂଖ୍ୟ ଶବ ପଡ଼ିଥାଏ ଏବଂ ସେଗୁଡ଼ିକ ବିଲୁଆ, କୁକୁର ଓ ଶାଗୁଣା ଖାଉଥାନ୍ତି । ପ୍ୟାରୀମୋହନଙ୍କ ଭାଷାରେ, "ଦୁଃଖ ଶୋକରେ ଲୋକମାନେ ତାଙ୍କର ମାନବିକ ପ୍ରକୃତି ହରାଇଥାନ୍ତି ଏବଂ ନିଜ ପିଲାମାନଙ୍କୁ ମଧ୍ୟ ବନ୍ୟଜନ୍ତୁଙ୍କ ପାଖରେ ପକାଇ ଦିଅନ୍ତି । କେତେକ ମଧ୍ୟ

ନିଜ ସନ୍ତାନର ମୃତ ଦେହକୁ ଅସୁରଙ୍କ ପରି ଖାଉଥିଲେ । ନରହତ୍ୟା ଓ ଆତ୍ମହତ୍ୟା ପ୍ରଭୃତି ଅପରାଧ ସେ ସମୟରେ ସମାଜରେ ସାଧାରଣ କଥା ହୋଇ ଯାଇଥିଲା ।"

ରେଭେନ୍‌ସା ସାହେବ ସେତେବେଳେ ଓଡ଼ିଶାର ନୂଆ କମିଶନର ହୋଇ ଆସିଥାନ୍ତି । ୧୮୬୫ ମସିହା ସେପ୍‌ଟେମ୍ବର, ଅକ୍ଟୋବର ମାସରେ ବଙ୍ଗ ସରକାରଙ୍କଠାରୁ ତାଙ୍କ ପାଖକୁ ଚିଠି ଆସିଲା ଯେ, ଅନାବୃଷ୍ଟି ହେତୁରୁ ଓଡ଼ିଶାରେ ଦୁର୍ଭିକ୍ଷ ହେବାର ଖୁବ୍ ସମ୍ଭାବନା । ପ୍ରଜାମାନଙ୍କର ରକ୍ଷା ନିମନ୍ତେ ଗଭର୍ଣ୍ଣମେଣ୍ଟଙ୍କ ପକ୍ଷରୁ କୌଣସି ପ୍ରକାର ଉପାୟ ବିଧାନ ଆବଶ୍ୟକ କି ନା ? ଯଦି ପ୍ରୟୋଜନ ହୁଏ କି ପ୍ରକାର ଉପାୟ ବିଧାନ କରାଯାଇପାରେ ? ଚିଠିର ଉତ୍ତର ଦେବା ପକାଶେ କମିଶନର କଚେରିରେ ସମସ୍ତ ଅମଲାମାନଙ୍କ ସହିତ ପରାମର୍ଶ କଲେ । ସେ ସମସ୍ତେ ଅତିରଞ୍ଜିତ କରି କହିଲେ ଯେ, ମଫସଲରେ ମହାଜନ ଓ ଜମିଦାରମାନଙ୍କ ଘରେ ଯଥେଷ୍ଟ ଧାନ ମହଜୁଦ ଅଛି । ସେଥିରେ ବର୍ଷେ ଚଳିଯାଇପାରେ । କମିଶନର ସେହି ମର୍ମରେ ସରକାରଙ୍କୁ ଉତ୍ତର ଦେଲେ, ପ୍ରକୃତରେ ଏତେ ଧାନ ମହଜୁଦ୍ ଥିଲା କି ନାହିଁ ଏବଂ ଯେଉଁମାନଙ୍କ ଘରେ ଧାନ ମହଜୁଦ୍ ଥିଲା, ସଙ୍କଟ ସମୟରେ ସେମାନେ ସେ ଧାନ ବିକ୍ରୟ ବା ବିତରଣ କରିବେ କି ନାହିଁ ତାହା ସରକାର ତଦନ୍ତ କଲେ ନାହିଁ ।

ଫାଲ୍‌ଗୁନ ମାସଠାରୁ ଯେତେବେଳେ ବହୁ ସଂଖ୍ୟାରେ ଲୋକମାନେ ମରିବାକୁ ଲାଗିଲେ, ସେତେବେଳେ ଜଣାପଡ଼ିଲା ଯେ, ସହରମାନଙ୍କରେ ଅଳ୍ପ କିଛି ଧାନ ଚାଉଳ ମିଳୁଥିଲା । ମାତ୍ର ମଫସଲରେ ଧାନ ଚାଉଳ ଏକାବେଳକେ ଦୁଷ୍ପ୍ରାପ୍ୟ ଥିଲା । ମଫସଲରେ ଯେଉଁ ଲୋକମାନଙ୍କ ଘରେ ଧାନ ଚାଉଳ ଥିଲା ସେମାନେ ତାହା ଲୁଚାଇଦେଲେ । ମଇ ମାସରେ ଜଣାପଡ଼ିଲା ଯେ, ବଜାରରେ ଧାନର ଏପରି ଅଭାବ ଯେ, ଜେଲ୍‌ରେ କଇଦୀମାନଙ୍କ ପାଇଁ କିମ୍ବା ସରକାରୀ ସଂସ୍ଥାମାନଙ୍କୁ ମଧ୍ୟ ଚାଉଳ ଯୋଗାଇ ହେବ ନାହିଁ ।

ଅପ୍ରେଲ ସରିକି କମିଶନର ପ୍ରକୃତ ଅବସ୍ଥା ଜଣାଇ ଯଥେଷ୍ଟ ପରିମାଣରେ ଧାନ, ଚାଉଳ ପଠାଇବାପାଇଁ ସରକାରଙ୍କୁ ଅନୁରୋଧ କଲେ । ମାତ୍ର ସେ ସମୟକୁ ସ୍ଥଳ ବା ଜଳପଥରେ ଅଳ୍ପ ସମୟ ମଧ୍ୟରେ ଧାନ, ଚାଉଳ ବଙ୍ଗଳାରୁ ଓଡ଼ିଶାକୁ ଆସିବାର ଉପାୟ ନ ଥିଲା । ସେତେବେଳକୁ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁ ପ୍ରବାହ ଆରମ୍ଭ ହୋଇ ଯାଇଥାଏ । ଓଡ଼ିଶାରୁ କଲିକତାକୁ ଯେଉଁ ଏକମାତ୍ର ରାସ୍ତା ଥିଲା ତାହା ସମ୍ପୂର୍ଣ୍ଣ କଚା ରାସ୍ତା । ତା'ର ମଝିରେ ମଝିରେ ବଡ଼

ବଡ଼ ନଈ ଥିଲା ଏବଂ ସେଥିରେ ପୋଲ ନ ଥିଲା । ବହୁ ସ୍ଥାନରେ ବର୍ଷାଦିନେ ରାସ୍ତାରେ ବଢ଼ି ପାଣି ଚାଲୁଥିଲା । ସମୁଦ୍ର ପଥରେ ମଧ୍ୟ ବିଶେଷ ଯୋଗାଯୋଗ ନ ଥିଲା । କେବଳ ଶୀତଦିନେ ଓଡ଼ିଶାରୁ ସମୁଦ୍ରବାଟେ ଧାନ ଚାଉଳ ରପ୍ତାନି ହେଉଥିଲା । ସେ ବର୍ଷ ମଧ୍ୟ ଶୀତଦିନେ ବହୁ ଧାନ ବାହାରକୁ ରପ୍ତାନି ହୋଇ ଯାଇଥିଲା । ଅନ୍ୟ ଦିନେ ଆମଦାନିପାଇଁ ସୁବିଧା ନ ଥିଲା । ଦକ୍ଷିଣରୁ ମଧ୍ୟ ରିଲିଫ୍ ପାଇଁ ଧାନ ଚାଉଳ ଆଣି ହେଲା ନାହିଁ । କାରଣ ଗଞ୍ଜାମ ଜିଲ୍ଲାରେ ସେ ସମୟରେ ଧାନ ଚାଉଳର ଖୁବ୍ ଅଭାବ ପଡ଼ିଥାଏ । ବହୁ କଷ୍ଟ ଓ ବହୁ ଖର୍ଚ୍ଚରେ ନଭେମ୍ବର ଶେଷ ସୁଦ୍ଧା ସରକାର ଦଶହଜାର ଟନ୍ ଚାଉଳ ଆଣି ପାରିଲେ । ତାହା ସମୁଦ୍ରକୂଳରେ ଅଧିକ ପାଣି ପରି ଥିଲା । ସେଥିରୁ କେତେକ ପରିମାଣ ମାଗଣାରେ ବିତରଣ କରାଗଲା, ଆଉ କେତେକ ପରିମାଣ ରିହାତି ଦରରେ ବିକ୍ରିହେଲା ଏବଂ ମଜୁରି ଆକାରରେ ଦିଆଗଲା । ସେଥିରେ ଅଳ୍ପ କେତେକ ଲୋକଙ୍କ ଜୀବନ ରକ୍ଷା କରାଯାଇ ପାରିଥିଲା । ମାତ୍ର ଯେଉଁ ବହୁ ଲୋକଙ୍କ ପାଖରେ ସାହାଯ୍ୟ ପହଞ୍ଚିପାରି ନ ଥିଲା କିମ୍ବା ଅତି ବିଳମ୍ବରେ ପହଞ୍ଚିଥିଲା, ସେମାନଙ୍କ ମଧ୍ୟରେ ମୃତ୍ୟୁହାର ଖୁବ୍ ଅଧିକ ହେଲା । ପରେ ଦୁର୍ଭିକ୍ଷ ବିଷୟରେ ବିଭିନ୍ନ ରିପୋର୍ଟରେ କଳନା କରାଯାଇଥିଲା ଯେ, ସେ ସମୟର ଓଡ଼ିଶା ଡିଭିଜନ୍‌ର ମୋଟ ଲୋକସଂଖ୍ୟାର ଏକ ତୃତୀୟାଂଶ ବା ପ୍ରାୟ ଦଶଲକ୍ଷ ଲୋକ କ୍ଷୁଧାରେ ମରିଗଲେ । ଗୋଟିଏ ବିସ୍ତୃତ ଅଞ୍ଚଳରେ ଅଳ୍ପ ସମୟରେ କ୍ଷୁଧାରେ ଏତେ ଲୋକ ମରିବା କେତେ ଶତାବ୍ଦୀରେ ଥରେ ଘଟେ । ସେ ଦୃଷ୍ଟିରୁ ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷ କେବଳ ଊନବିଂଶ ଶତାବ୍ଦୀର ନୁହେଁ, ବିଗତ ଚାରି ପାଞ୍ଚଶହ ବର୍ଷ ମଧ୍ୟରେ ଗୋଟିଏ ଅତି ଭୟାବହ ଘଟଣା । ସେ ଘଟଣା ଆହୁରି ବହୁଶହ ବର୍ଷ ଜନଶ୍ରୁତିରେ ରହିଥିବ ।

ଏ ଘଟଣା ଓଡ଼ିଶାରେ ବ୍ରିଟିଶ୍ ରାଜତ୍ୱର ବାଷଠି ବର୍ଷ ପରେ ଘଟିଥିଲା । ସରକାରଙ୍କର ଅବହେଳା ଓ ଦାୟିତ୍ୱହୀନ କାର୍ଯ୍ୟପାଇଁ ଦଶଲକ୍ଷରୁ ଅଧିକ ଲୋକ ପୋକମାଛି ପରି ମରିଗଲେ । ୧୮୬୮ ମସିହା ଦୁର୍ଭିକ୍ଷ କମିଶନ ଦେଖାଇଥିଲେ ଯେ, ସେ ବର୍ଷ ଓଡ଼ିଶାରେ ବର୍ଷା ଅସମୟରେ ବନ୍ଦ ହୋଇ ଯାଇଥିଲା । ଫଳରେ ଯେଉଁ ଖରିଫ୍ ଧାନ ଫସଲ ଉପରେ ଦେଶ ମୁଖ୍ୟତଃ ନିର୍ଭର କରୁଥିଲା ତାର ଉତ୍ପାଦନ ବାର୍ଷିକ ହାରାହାରି ଉତ୍ପାଦନର ଏକ ତୃତୀୟାଂଶରୁ କମ୍ ହେଲା । ଓଡ଼ିଶାରେ ମହଜୁଦ୍ ଧାନ କମ୍ ଥିଲା, କାରଣ ସେ ସମୟ ପୂର୍ବରୁ ବହୁ ଧାନ ରପ୍ତାନି ହୋଇ ବାହାରକୁ ଚାଲିଯାଇଥିଲା । ଲୋକମାନେ ମଧ୍ୟ ଅକାଳପାଇଁ ଘରେ ଯଥେଷ୍ଟ ଧାନ ମହଜୁଦ୍ ରଖି ନ ଥିଲେ । ଯେତେବେଳେ ଫସଲ ସମ୍ପୂର୍ଣ୍ଣ

ରୂପେ ନଷ୍ଟ ହୋଇଗଲା, ଲୋକମାନେ ତାହାର ଭୟାବହ ପରିଣାମ ସହଜରେ ଜାଣିପାରିଲେ ନାହିଁ । ସ୍ଥାନୀୟ ସରକାର ଓ ସରକାରୀ କର୍ମଚାରୀମାନେ ଭୟଭୀତ ନ ହୋଇ ଏବଂ ଅବସ୍ଥାର ଗୁରୁତ୍ୱ ଉପଲବ୍ଧି ନ କରି ଅବସ୍ଥା ଭଲଭାବରେ ଅନୁସନ୍ଧାନ କଲେ ନାହିଁ କିମ୍ବା ଲୋକମାନଙ୍କୁ ଧାନଚାଉଳ କମ୍ ଖର୍ଚ୍ଚ କରିବାକୁ ସାବଧାନ କଲେ ନାହିଁ । ବିଶେଷତଃ ଧାନ ଚାଉଳର ଦର ମଧ୍ୟ ଏତେ ଅଳ୍ପ ରହିଲା ଯେ, ଆମଦାନୀ କରୁଥିବା ବେପାରୀମାନେ ଅଧିକ ଧାନ ଆମଦାନୀ କଲେ ନାହିଁ । ହଠାତ୍ ଯେତେବେଳେ ଜଣାପଡ଼ିଲା ଯେ, ପ୍ରଦେଶରେ ମୋଟେ ଧାନ ନାହିଁ ସେତେବେଳେ ବାହାରୁ ଧାନ ଆଣିବାକୁ ଉପାୟ ନ ଥିଲା । ଫଳରେ ଲକ୍ଷ ଲକ୍ଷ ଲୋକ କ୍ଷୁଧାରେ ମରିଗଲେ ।

ବିଲାତ ସରକାର ଏ ବିଷୟରେ ଅବଗତ ହୋଇ ବଙ୍ଗ ସରକାରଙ୍କୁ ଭର୍ତ୍ସନା କଲେ । ଏପରି ଦୁର୍ଭିକ୍ଷର କାରଣମାନ ଅନୁସନ୍ଧାନ କରି ପ୍ରତିକାର ବ୍ୟବସ୍ଥା ସୁପାରିଶ୍ କରିବାକୁ କମିଶନ୍ ନିଯୁକ୍ତ ହେଲା । କମିଶନ୍ ସରକାରଙ୍କ ଶାସନ ପ୍ରଣାଳୀର ଘୋର ସମାଲୋଚନା କରି କହିଥିଲେ ଯେ ସରକାର ଲୋକମାନଙ୍କ ଆର୍ଥିକ ଅବସ୍ଥା ବିଷୟରେ କିଛି ନ ଜାଣି କେବଳ ଆଇନର ଶାସନ ଚଳାଇଥିଲେ । କମିଶନ୍ ମଧ୍ୟ ସରକାରଙ୍କର ଖଜଣାଧାର୍ଯ୍ୟ ଓ ଲବଣ ଶିଳ୍ପନୀତିର ଘୋର ସମାଲୋଚନା କରିଥିଲେ । ଓଡ଼ିଶା ପରି କ୍ରମାଗତ ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳରେ ଜଳସେଚନ, ରାସ୍ତାଘାଟ ଓ ପରିବହନର ସୁବିଧା କରିବା ଉପରେ ସେମାନେ ଜୋର ଦେଇଥିଲେ । ଇତିହାସରୁ ଜଣାଯାଏ ଯେ, ଊନବିଂଶ ଶତାବ୍ଦୀର ଶେଷ ଦ୍ୱିତୀୟାର୍ଦ୍ଧରେ ଭାରତର ବିଭିନ୍ନ ପ୍ରଦେଶରେ ବହୁବାର ଦୁର୍ଭିକ୍ଷ ହୋଇଥିଲା । ଦୁର୍ଭିକ୍ଷ ପ୍ରତିରୋଧପାଇଁ ସୁପାରିସ କରିବା ନିମନ୍ତେ ଭାରତ ସରକାର ୧୮୮୦ ଏବଂ ୧୮୯୯ ମସିହାରେ ଦୁର୍ଭିକ୍ଷ କମିଶନ୍ ମାନ ବସାଇଥିଲେ । ୧୮୮୦ ମସିହା କମିଶନ୍ ଦୁର୍ଭିକ୍ଷ ସମ୍ବନ୍ଧୀୟ ବହୁ ବିଷୟ ପୁଙ୍ଖାନୁପୁଙ୍ଖ ରୂପେ ଅନୁଧ୍ୟାନ କରିଥିଲେ ଏବଂ ଦୁର୍ଭିକ୍ଷ ସମୟରେ କାର୍ଯ୍ୟକ୍ରମର ନିୟମାବଳୀ (Famine Code) ପ୍ରଣୟନ କରିଥିଲେ । ପରେ କମିଶନ୍ ଦୁର୍ଭିକ୍ଷ ନିରୋଧ ଏବଂ ଦୁର୍ଭିକ୍ଷ ସମୟରେ ମୃତ୍ୟୁହାର କମାଇବାପାଇଁ ଦୁଇପ୍ରକାର ପ୍ରତିକାର ସୁପାରିଶ୍ କରିଥିଲେ । ପ୍ରଥମଟି ହେଲା, ଦୁର୍ଭିକ୍ଷ ସମୟରେ ଶାସନ ବିଭାଗମାନ ସଙ୍ଗଠିତ କରି ଲୋକମାନଙ୍କ ମଧ୍ୟରେ ତ୍ୱରାନ୍ୱିତ ଭାବରେ ରିଲିଫ୍ ବଣ୍ଟନ, ଖଜଣା ଛାଡ଼ ଏବଂ କର୍ମସଂସ୍ଥାନପାଇଁ ନଦୀବନ୍ଧ ଓ ରାସ୍ତା ପ୍ରଭୃତି ନିର୍ମାଣ କରିବାକୁ ବ୍ୟବସ୍ଥା କରିବା । ଦ୍ୱିତୀୟରେ ଦୁର୍ଭିକ୍ଷର ସ୍ଥାୟୀ ପ୍ରତିକାରପାଇଁ ବନ୍ୟା ନିୟନ୍ତ୍ରଣ,

ଜଳସେଚନ, ରାସ୍ତା ଓ ରେଳପଥ ପ୍ରଭୃତି ନିର୍ମାଣ ଦ୍ୱାରା ପରିବହନର ସୁବ୍ୟବସ୍ଥା କରିବା, ଏହି ସୁପାରିଶ୍ ଗୁଡ଼ିକ ଅନୁସାରେ ଭାରତ ସରକାର ଓ ବିଭିନ୍ନ ପ୍ରାଦେଶିକ ସରକାରମାନେ ୧୮୬୬ ମସିହା ପରେ ବହୁବିଧ କାର୍ଯ୍ୟ ଆରମ୍ଭ କରିଥିଲେ । ସେଥିମଧ୍ୟରୁ ଅଧିକାଂଶ କାର୍ଯ୍ୟ ବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧି ସୁଦ୍ଧା ଶେଷ ହୋଇଥିଲା । ମାତ୍ର ଊନବିଂଶ ଶତାବ୍ଦୀରେ ସେଗୁଡ଼ିକର ସୁଫଳ ମିଳିବା ସମ୍ଭବ ହୋଇ ନ ଥିଲା ।

ଓଡ଼ିଶାରେ ୧୮୬୬ ମସିହା ପରେ ଜଳସେଚନ, ବନ୍ୟାନିୟନ୍ତ୍ରଣ, ଗମନାଗମନ ଓ ପରିବହନର ସୁବିଧାପାଇଁ ବିଭିନ୍ନ ପ୍ରକଳ୍ପ କାର୍ଯ୍ୟକାରୀ ହୋ'ଇଥିଲା । ଊନବିଂଶ ଶତାବ୍ଦୀ ଶେଷ ବେଳକୁ ନରାଜଠାରୁ ମହାନଦୀ ଓ ବିରୂପା ଉପରେ ଆନିକଟ୍, ମହାନଦୀ ଓ ବ୍ରାହ୍ମଣୀକୁ ଯୋଗ କରୁଥିବା ହାଇଲେଭେଲ୍ କେନାଲ, କଟକରୁ ମହାନଦୀ ମୁହାଣ ପର୍ଯ୍ୟନ୍ତ କେନ୍ଦ୍ରାପଡ଼ା କେନାଲ, କଟକରୁ ସମୁଦ୍ରକୂଳ ପର୍ଯ୍ୟନ୍ତ ତାଳଦଣ୍ଡା କେନାଲ, ମାଛଗାଁ କେନାଲ, ପଟ୍ଟାମୁଣ୍ଡାଇ କେନାଲ ଓ ଗୋବରୀ କେନାଲ ପ୍ରଭୃତି ସମ୍ପୂର୍ଣ୍ଣ ହୋଇଥିଲା । ୧୮୬୬ ମସିହା ପୂର୍ବରୁ ଏହି ସବୁ କେନାଲ କାମ ଇଷ୍ଟଇଣ୍ଡିଆ ଜଳସେଚନ କମ୍ପାନୀ ଦ୍ୱାରା ଆରମ୍ଭ ହୋଇଥିଲା । ମାତ୍ର ନିର୍ମାଣ କାର୍ଯ୍ୟ ତ୍ୱରାନ୍ୱିତ କରିବା ପାଇଁ ୧୮୬୮ ମସିହାରେ ସରକାର କମ୍ପାନୀକୁ କ୍ଷତିପୂରଣ ଦେଇ ଏହି ଜଳସେଚନ ପ୍ରକଳ୍ପମାନ ନିଜ ହାତକୁ ନେଇଥିଲେ ।

ବନ୍ୟା ନିୟନ୍ତ୍ରଣପାଇଁ ନଦୀବନ୍ଧ ସବୁ ନିର୍ମାଣ କରାଯାଇଥିଲା । ଶତାବ୍ଦୀ ଶେଷ ବେଳକୁ କଟକ ଜିଲ୍ଲାରେ ୯୬୯ ମାଇଲ, ପୁରୀ ଜିଲ୍ଲାରେ ୨୫୯ ମାଇଲ ଏବଂ ବାଲେଶ୍ୱର ଜିଲ୍ଲାରେ ୮୪ ମାଇଲ ନଦୀବନ୍ଧ ନିର୍ମିତ ହୋଇଥିଲା । ୧୮୭୩ ମସିହାରେ ନଦୀବନ୍ଧ ସବୁ ସମ୍ପୂର୍ଣ୍ଣ କରିବାପାଇଁ ଏବଂ ସେଗୁଡ଼ିକର ରକ୍ଷଣା-ବେକ୍ଷଣପାଇଁ ନଦୀବନ୍ଧ ଆଇନ୍ ପାସ୍ ହୋଇଥିଲା ।

୧୮୬୬ ମସିହା ପୂର୍ବରୁ ରାସ୍ତାଘାଟର କିଛି ସୁବିଧା ନ ଥିଲା । ୧୮୨୫ ମସିହାରେ ଜଗନ୍ନାଥ ସଡ଼କର ନିର୍ମାଣ ଶେଷ ହୋଇଥିଲା, ମାତ୍ର ସେ ରାସ୍ତାରେ ପୋଲସବୁ ନିର୍ମିତ ହୋଇ ନ ଥିଲା । ବର୍ଷାଦିନେ ସେ ରାସ୍ତାର ବହୁ ଅଂଶ ବନ୍ୟା ପାଣିରେ ବୁଡ଼ିଯାଉଥିଲା ଏବଂ ଧୋଇ ହୋଇ ଯାଉଥିଲା । ବର୍ଷାଦିନେ ସେ ରାସ୍ତା-ଲେକ ଗମନାଗମନ ଏବଂ ମାଲ ପରିବହନପାଇଁ ଅଯୋଗ୍ୟ ଥିଲା । ୧୮୬୬ ମସିହା ପରେ ରାସ୍ତା ନିର୍ମାଣ ଓ ମରାମତି ଉପରେ ପ୍ରକୃତ ରୂପେ ଧ୍ୟାନ ଦିଆଯାଇଥିଲା । ଏହି ସମୟରେ ମାନ୍ଦ୍ରାଜ ଓ କଲିକତା ଗ୍ରାଣ୍ଡଟ୍ରଙ୍କ ରୋଡ଼ ପର୍ଯ୍ୟାପ୍ତ

କ୍ରମେ ନିର୍ମିତ ହୋଇଥିଲା । ଓଡ଼ିଶାରେ ଏହି ରାସ୍ତାର ୩୬୩ ମାଇଲ ଅଂଶ ୧୮୭୫ ମସିହାରେ ସମ୍ପୂର୍ଣ୍ଣ ହୋଇଥିଲା । ଏହି ସମୟରେ କଟକରୁ ପୁରୀ ପର୍ଯ୍ୟନ୍ତ ରାସ୍ତା ପକ୍କା କରାଯାଇଥିଲା । ରାସ୍ତା ନିର୍ମାଣ ଓ ମରାମତିପାଇଁ ପ୍ରାଦେଶିକ ସରକାର ପଥକର ବସାଇଥିଲେ । ଶତାବ୍ଦୀର ଶେଷ, ୧୯୦୦ ମସିହା ସୁଦ୍ଧା ଓଡ଼ିଶାରେ ଦଶଗୋଟି ସୁଦୀର୍ଘ ପକ୍କା ରାସ୍ତା ନିର୍ମିତ ହୋଇଥିଲା । ସେ ଗୁଡ଼ିକ ହେଲା ମାନ୍ଦ୍ରାଜ, କଲିକତା ଗ୍ରାଣ୍ଡ୍‌ଟ୍ରଙ୍କ୍ ରୋଡ଼, କଟକ, ସମ୍ବଲପୁର ରୋଡ଼, ଗଞ୍ଜାମରୋଡ଼, କେନ୍ଦୁଝର ରୋଡ଼, ମାଛଗାଁ ରୋଡ଼, ତାଳଦଣ୍ଡା ରୋଡ଼, ଚାନ୍ଦବାଲି ରୋଡ଼, ଯାଜପୁର ରୋଡ଼, ସମ୍ବଲପୁର ସାଟେଁ ରୋଡ଼, ସମ୍ବଲପୁର ରାୟପୁର ରୋଡ଼ । ଏହା ବ୍ୟତୀତ ବହୁ କଚା ରାସ୍ତା ମଧ୍ୟ ନିର୍ମିତ ହୋଇଥିଲା । ନଅଙ୍କ ଦୁର୍ଭିକ୍ଷ ପୂର୍ବରୁ ଶାଠିଏ, ସତୁରି ବର୍ଷରେ ଯାହା ହୋଇପାରି ନ ଥିଲା, ଦୁର୍ଭିକ୍ଷ ପରେ କୋଡ଼ିଏ ତିରିଶ ବର୍ଷରେ ତାହା ହୋଇଥିଲା । ଦୁର୍ଭିକ୍ଷ ନିରାକରଣ ପାଇଁ ଦୁର୍ଭିକ୍ଷ କମିଶନ୍‌ମାନ ରାସ୍ତାଘାଟର ତୁରନ୍ତ ପ୍ରସାର ଉପରେ ସର୍ବଦା ଅଗ୍ରାଧିକାର ଦେଉଥିଲେ ।

ସ୍ଥଳପଥରେ ରାସ୍ତା ନିର୍ମାଣ ବ୍ୟତୀତ ଜଳପଥରେ ପରିବହନ ସୁବିଧା କରିବା ଉପରେ ମଧ୍ୟ ଦୃଷ୍ଟି ଦିଆଯାଇଥିଲା । ବ୍ରିଟିଶ ଶାସନ ପୂର୍ବରୁ ମହାନଦୀ ବକ୍ଷରେ ଯେଉଁ ପରିବହନ ହେଉଥିଲା ତାହା ଅବହେଳିତ ହୋଇ କମି ଆସୁଥିଲା । ପୂର୍ବକାଳର ପୂର୍ବ ଉପକୂଳ ବନ୍ଦରମାନ ପ୍ରାୟ ଲୁପ୍ତ ହୋଇ ଆସୁଥିଲା । ଦୁର୍ଭିକ୍ଷ ପରେ ମହାନଦୀ ମୁହାଣ ବନ୍ଦର ପାରା ବନ୍ଦର, ବାଲେଶ୍ୱର, ଧାମରା, ଚାନ୍ଦବାଲି ଏବଂ ପୁରୀ ପ୍ରଭୃତି ବନ୍ଦରର ଉନ୍ନତି ପାଇଁ ପଦକ୍ଷେପ ନିଆଯାଇଥିଲା । ରେଲରାସ୍ତା ନିର୍ମାଣ ପୂର୍ବରୁ କେନାଲମାନଙ୍କରେ ମଧ୍ୟ ମାଲ ପରିବହନ ହେଉଥିଲା, ମାତ୍ର ବନ୍ୟା, ବାତ୍ୟା ଓ ସମୁଦ୍ର ଜୁଆର ଦ୍ୱାରା କେନାଲମାନଙ୍କର ଅନେକ ସମୟରେ ପ୍ରଭୂତ କ୍ଷତି ଘଟୁଥିଲା ।

ଓଡ଼ିଶାରେ ରେଲପଥ ନିର୍ମାଣ ଦାବି ଭାରତ ସରକାର ବହୁକାଳ ପ୍ରତ୍ୟାଖ୍ୟାନ କରିଥିଲେ । ନ'ଅଙ୍କ ଦୁର୍ଭିକ୍ଷ ପରେ ମଧ୍ୟ ଭାରତ ସରକାର ଓଡ଼ିଶାରେ ରେଲପଥ ନିର୍ମାଣପାଇଁ ରାଜି ହୋଇ ନ ଥିଲେ । ମାତ୍ର ୧୮୭୭-୭୮ ମସିହାରେ ଓଡ଼ିଶାରେ ଗୋଟିଏ ବଡ଼ ଆକାରର ଦୁର୍ଭିକ୍ଷ ହୋଇଥିଲା । ତାହାପରେ ୧୮୮୧ ମସିହାରେ ଓଡ଼ିଶାରେ ରେଲପଥ ନିର୍ମାଣପାଇଁ ଭାରତ ସରକାର ରାଜିହେଲେ । ତାହା ଫଳରେ ବେଙ୍ଗଲ; ନାଗପୁର ରେଲପଥ କଲିକତାଠାରୁ ନାଗପୁର ପର୍ଯ୍ୟନ୍ତ ୧୮୮୯ ମସିହାରେ ସଂପୂର୍ଣ୍ଣ ହୋଇଥିଲା । ଧାନଗୁଡ଼ିକ

ପରିବହନର ସୁବିଧାପାଇଁ ଏହି ରେଳପଥର ଗୋଟିଏ ଶାଖା ରେଳପଥ ଝାରସୁଗୁଡ଼ାଠାରୁ ସମ୍ବଲପୁର ପର୍ଯ୍ୟନ୍ତ ନିର୍ମିତ ହୋଇଥିଲା । ଅନ୍ୟ ଦିଗରେ ପୂର୍ବ ଉପକୂଳରେ କଲିକତାଠାରୁ ମାନ୍ଦ୍ରାଜ ରେଳପଥ ୧୮୯୫ ମସିହାରେ ସମ୍ପୂର୍ଣ୍ଣ ହୋଇଥିଲା । ଏହି ରେଳପଥର ଗୋଟିଏ ଶାଖା ରେଳପଥ ଖୋର୍ଦ୍ଧାରୋଡ଼ ଠାରୁ ପୁରୀ ପର୍ଯ୍ୟନ୍ତ ନିର୍ମିତ ହୋଇଥିଲା । କଲିକତା ମାନ୍ଦ୍ରାଜ ରେଳପଥର ପ୍ରାୟ ୨୩୦ ମାଇଲ ପଥ ଓଡ଼ିଶା ମଧ୍ୟ ଦେଇ ଯାଇଥିଲା । ସେ ସମୟରେ କଟକ ଓ ସମ୍ବଲପୁରକୁ ରେଳପଥରେ ଯୋଗ କରିବାକୁ ପ୍ରସ୍ତାବ ହୋଇଥିଲା । ମାତ୍ର ଅର୍ଥାଭାବ ହେତୁ ସେ ପ୍ରସ୍ତାବ ସରକାର ବନ୍ଦ କରିଥିଲେ । ୧୯୦୪ ମସିହାରେ ରୂପ୍‌ସାଠାରୁ ବାରିପଦା ପର୍ଯ୍ୟନ୍ତ ଅଣଓସାରିଆ ରେଳପଥ ମୟୂରଭଞ୍ଜ ମହାରାଜା ବେଙ୍ଗଲ, ନାଗପୁର ରେଲ କମ୍ପାନୀ ସାହାଯ୍ୟରେ ନିର୍ମାଣ କରାଇଥିଲେ । ପରେ ବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧିରେ କୋଇଲଖଣି ସବୁ କାର୍ଯ୍ୟକାରୀ କରିବାପାଇଁ କଟକରୁ ତାଳଚେର ପର୍ଯ୍ୟନ୍ତ ନିର୍ମିତ ହୋଇଥିଲା ଏବଂ ରାୟପୁର ବିଜୟନଗରମ ରେଳପଥ କେସିଙ୍ଗା, ଟିଟିଲାଗଡ଼ ପ୍ରଭୃତି ଦେଇ ଓଡ଼ିଶାସୀମା ମଧ୍ୟରେ କେତେକ ମାଇଲ ଯାଇଥିଲା । ଏହିସବୁ ରେଳପଥମାନ ନିର୍ମାଣ ଦ୍ୱାରା ରେଳପଥ ଓଡ଼ିଶାର ଚାରିଦିଗରେ ସୀମାନ୍ତ ଅଞ୍ଚଳମାନଙ୍କରେ ନିର୍ମିତ ହୋଇଥିଲା । ମାତ୍ର ରାଜ୍ୟର ମଧ୍ୟଭାଗ ଗଡ଼ଜାତ ଅଞ୍ଚଳରେ ମୋଟେ ରେଳପଥ ନିର୍ମିତ ହୋଇ ନ ଥିଲା । ସେହିକାଳଠାରୁ ସ୍ୱାଧୀନତା ପର୍ଯ୍ୟନ୍ତ ଓଡ଼ିଶାରେ ଆଉ ରେଳପଥ ନିର୍ମିତ ହୋଇ ନ ଥିଲା । ସ୍ୱାଧୀନତା ପରେ ୧୯୬୦ ମସିହାଠାରୁ ୧୯୭୦ ମସିହା ମଧ୍ୟରେ ସମ୍ବଲପୁରଠାରୁ ଟିଟିଲାଗଡ଼ ପର୍ଯ୍ୟନ୍ତ ରେଳପଥ ନିର୍ମିତ ହୋଇଥିଲା । ୧୯୮୦ ମସିହାଠାରୁ ଆଜି ପର୍ଯ୍ୟନ୍ତ କୋରାପୁଟଠାରୁ ରାୟଗଡ଼ା ଏବଂ ତାଳଚେରଠାରୁ ସମ୍ବଲପୁର ରେଳପଥ ଧୀରମନ୍ଥର ଗତିରେ ନିର୍ମିତ ହେଉଛି ।

ନ'ଅଙ୍କ ଦୁର୍ଭିକ୍ଷ ପରେ ବନ୍ୟା ନିୟନ୍ତ୍ରଣ, ଜଳସେଚନ, ଗମନାଗମନ ଓ ପରିବହନର ସୁବିଧା କରିବା ନିମିତ୍ତ ଉପରୋକ୍ତ ନଦୀବନ୍ଧ, କେନାଲ, ରାସ୍ତା ଓ ରେଳପଥମାନ ନିର୍ମାଣ କରାଯାଇଥିଲା । ମାତ୍ର ବିଂଶ ଶତାବ୍ଦୀର ପ୍ରଥମ ଦଶକ ପର୍ଯ୍ୟନ୍ତ ନିର୍ମାଣ କାର୍ଯ୍ୟ ସବୁ ଶେଷ ହୋଇ ନ ଥିବାରୁ ତାହାର ସୁଫଳ ମିଳି ନ ଥିଲା ଏବଂ ସେ ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଘନ ଘନ ଦୁର୍ଭିକ୍ଷ ପଡ଼ୁଥିଲା ।

ମୌସୁମୀ ବାୟୁ ପ୍ରବାହିତ ପୃଥିବୀର ଗ୍ରୀଷ୍ମମଣ୍ଡଳରେ ଦୁର୍ଭିକ୍ଷ ଏକ ଅସାଧାରଣ ଘଟଣା ନୁହେଁ । ପ୍ରାକ୍ ଐତିହାସିକ କାଳରୁ ଆଫ୍ରିକା ମହାଦେଶ, ମଧ୍ୟ ଏସିଆ, ଚୀନ୍ ଦେଶ ଓ ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ଘନ ଘନ ଦୁର୍ଭିକ୍ଷ

ହୋଇ ଲକ୍ଷ ଲକ୍ଷ ସଂଖ୍ୟାରେ ମୃତ୍ୟୁମୁଖେ ପଡ଼ିଛନ୍ତି । ଏ ସବୁ ଦେଶର ଇତିହାସରେ ଏବଂ ରାମାୟଣ ମହାଭାରତ ଯୁଗର ଆମ ଦେଶର ଇତିହାସରେ ଦୁର୍ଭିକ୍ଷର ଭୟାବହ କାହାଣୀ ଲିପିବଦ୍ଧ ହୋଇଛି । ମୌସୁମୀ ବାୟୁ ଜନିତ ବର୍ଷା ଉପରେ ସମ୍ପୂର୍ଣ୍ଣ ଭାବରେ ନିର୍ଭର କରୁଥିବାରୁ, ଏ ଦେଶମାନଙ୍କରେ କେଉଁ ବର୍ଷ ବେଶି ଆଉ କେଉଁ ବର୍ଷ କମ୍ ବର୍ଷା ହୋଇଯାଏ । ବର୍ଷା ମଧ୍ୟ ବିଭିନ୍ନ ମାସରେ ଫସଲର ଆବଶ୍ୟକତା ଅନୁଯାରେ ହୁଏ ନାହିଁ । କେଉଁ ବର୍ଷ ବିଳମ୍ବରେ ବର୍ଷାଋତୁ ଆରମ୍ଭ ହୁଏତ, କେଉଁ ବର୍ଷ ବର୍ଷାଋତୁ ଅଧାରୁ ବର୍ଷା ଛାଡ଼ିଯାଏ । ଅତି ବୃଷ୍ଟି ବା ଅନାବୃଷ୍ଟିରେ ଫସଲ ନଷ୍ଟ ହୋଇଗଲେ ଦେଶରେ ଖାଦ୍ୟାଭାବ ହୁଏ ଏବଂ ଦୁର୍ଭିକ୍ଷ ପଡ଼େ ।

ଓଡ଼ିଶାରେ ଚିରକାଳ ଖାଦ୍ୟାଭାବ ଏବଂ ଦୁର୍ଭିକ୍ଷ ଏକ ବିରାଟ ସମସ୍ୟା । ସେ ସମସ୍ୟାର ଆଜିଯାଏ ବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ମଧ୍ୟ ସମାଧାନ ହୋଇନାହିଁ । ପୂର୍ବକାଳରୁ ଖରିଫ ଧାନ ଫସଲ ଚାଷୀମାନଙ୍କର ଏକମାତ୍ର ବଡ଼ ଫସଲ । ସେହି ଫସଲ ଉପରେ ପୂର୍ବ ଅଞ୍ଚଳର ଲୋକମାନେ ନିର୍ଭର କରନ୍ତି । ଯେଉଁ ବର୍ଷ ଭଲ ବର୍ଷା ହୁଏ ଏବଂ ଆବଶ୍ୟକ ସମୟରେ ହୁଏ, ସେ ବର୍ଷ ଧାନ-ଫସଲ ଭଲ ଉତ୍ପୁଣଯାଏ । ଅତି ବର୍ଷା ବା ସ୍ୱଳ୍ପ ବର୍ଷା ଧାନଫସଲର କାଳ । ଅତି ବର୍ଷାରେ ନଦୀମାନଙ୍କରେ ବଢ଼ି ହୋଇଯାଏ । ବଢ଼ି ଉପରେ କାହାର ନିୟନ୍ତ୍ରଣ ନ ଥାଏ । ବଢ଼ିରେ ଧାନଫସଲ ପଚିଯାଏ, ଘରଦ୍ୱାର ଭାଙ୍ଗିଯାଏ, ଗୋରୁଗାଈ, ମଣିଷ ଭାସିଯାଆନ୍ତି ଏବଂ ଘରର ଆସବାବପତ୍ର ନଷ୍ଟ ହୋଇଯାଏ । ବିଲରେ ଫସଲ ଏବଂ ଘରେ ରହିଥିବା ଧାନ ଚାଉଳ ନଷ୍ଟ ହୋଇଯାଏ । ବଢ଼ିରେ ବିସ୍ତୀର୍ଣ୍ଣ ଅଞ୍ଚଳର ଲୋକମାନେ ଛିନ୍ନ ଭିନ୍ନ ଓ କାଙ୍ଗାଳ ହୋଇଯାନ୍ତି । ମରୁଡ଼ିରେ ମଧ୍ୟ ଫସଲ ନଷ୍ଟ ହୋଇଗଲେ ବିକଳ୍ପ ବ୍ୟବସ୍ଥା ନ ଥାଏ । ବିସ୍ତୀର୍ଣ୍ଣ ଅଞ୍ଚଳରେ ଲୋକମାନେ ଖାଦ୍ୟାଭାବ ଓ ଦୁର୍ଭିକ୍ଷରେ ପଡ଼ନ୍ତି । ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁର ଶେଷ ପର୍ଯ୍ୟାୟରେ ଆଶ୍ୱିନ, କାର୍ତ୍ତିକ ମାସରେ ବାତ୍ୟା ହୁଏ । ଯେତେବେଳକୁ ଧାନ ଫସଲର ଯୋଡ଼ ବାହାରୁଥାଏ କିମ୍ବା ଫୁଲ ଉଡ଼ୁଥାଏ । ବାତ୍ୟାରେ ବିସ୍ତୀର୍ଣ୍ଣ ଅଞ୍ଚଳରେ ଧାନ ଅଗାଡ଼ ହୋଇଯାଏ ଏବଂ ଫସଲ ନଷ୍ଟ ହୋଇଯାଏ । ବଢ଼ି; ମରୁଡ଼ି କିମ୍ବା ବାତ୍ୟାରେ ଧାନ ଫସଲ ସମଗ୍ର ରାଜ୍ୟରେ ବହୁବର୍ଷ ନଷ୍ଟ ହୋଇଯାଏ । ଲୋକମାନେ ସର୍ବସ୍ୱାନ୍ତ, ଅଭାବଗ୍ରସ୍ତ ହୋଇ ଧାରକରଜରେ ବୁଡ଼ି ରୋଗଗ୍ରସ୍ତ ହୋଇ ଦୁଃସ୍ଥ ଅବସ୍ଥାରେ କାଳକୁ କାଳ ବଞ୍ଚିଥାନ୍ତି । ଅତି ଅଳ୍ପ ଲୋକ, ଯେଉଁମାନେ ମହାଜନ ବା ଜମିଦାର ହୋଇ ଅଭାବଗ୍ରସ୍ତ ହୋଇ ନ ଥାନ୍ତି, ସେମାନେ ଦୁସ୍ଥ ଜନତାକୁ ଶୋଷଣ କରନ୍ତି ।

ବଢ଼ିବେଳେ ଲୋକଙ୍କୁ ଉଦ୍ଧାର କରିବା, କ୍ଷୁଧାର୍ତ୍ତ ଓ ନିରାଶ୍ରୟଙ୍କୁ ଚୁଡ଼ାଗୁଡ଼ ଓ ଲୁଗା ବାଣ୍ଟିବା, ବଢ଼ି ମରୁଡ଼ି ଯୋଗୁଁ ରୋଗୀଙ୍କୁ ବିଶେଷତଃ ହଇଜା ରୋଗୀଙ୍କୁ ଔଷଧ ବାଣ୍ଟିବା—ଏହାହିଁ ଥିଲା କାଳେ କାଳେ ସାଧାରଣ ଓଡ଼ିଶା ବାସୀଙ୍କ ଜୀବନ, ନୃତ୍ୟ ଗୀତ, କାବ୍ୟ କବିତା, ଧର୍ମ, ସଂସ୍କୃତି, କଳା, ସ୍ଥାପତ୍ୟ ଏହାର ଭିତରେ।

ଚିରକାଳ ଓଡ଼ିଶାରେ ବହୁବର୍ଷ ଦୁର୍ଭିକ୍ଷ ହେଉଥିଲା। ହିନ୍ଦୁ ମୋଗଲ ଏବଂ ମରହଟ୍ଟା ରାଜତ୍ୱ କାଳରେ ମଧ୍ୟ ବହୁବର୍ଷ ବିଭିନ୍ନ ଅଞ୍ଚଳରେ ଦୁର୍ଭିକ୍ଷ ହେଉଥିଲା। ଇତିହାସରୁ ଜଣାଯାଏ ଯେ, ଭାରତବର୍ଷରେ ପ୍ରତି ପଚାଶ ବର୍ଷରେ ଥରେ ବଡ଼ ଦୁର୍ଭିକ୍ଷ ପଡ଼େ। ଏକାଦଶ ଶତାବ୍ଦୀରୁ ସପ୍ତଦଶ ଶତାବ୍ଦୀ ମଧ୍ୟରେ ପ୍ରାୟ ୧୪ଟି ବଡ଼ ଦୁର୍ଭିକ୍ଷ ହୋଇଥିଲା। ମାତ୍ର ବ୍ରିଟିଶ ରାଜତ୍ୱ କାଳରେ ଦୁର୍ଭିକ୍ଷର ସଂଖ୍ୟା ଯଥେଷ୍ଟ ବଢ଼ିଯାଇଥିଲା। ୧୭୬୫ ମସିହାରୁ ୧୮୫୮ ମସିହା ମଧ୍ୟରେ, ୯୦ ବର୍ଷରେ ୧୨ ଗୋଟି ବଡ଼ ଦୁର୍ଭିକ୍ଷ ଏବଂ ଚାରି ଗୋଟି ବ୍ୟାପକ ଖାଦ୍ୟାଭାବ ହୋଇଥିଲା। ୧୮୬୦ ମସିହାରୁ ୧୯୦୮ ମସିହା ପର୍ଯ୍ୟନ୍ତ ୪୫ ବର୍ଷରେ ୨୦ଟି ଦୁର୍ଭିକ୍ଷ ପଡ଼ିଥିଲା। ଓଡ଼ିଶାରେ ମରହଟ୍ଟା ଶାସନ କାଳରେ, ୧୭୫୧ ମସିହାରୁ ୧୮୦୩, ପ୍ରାୟ ୫୦ ବର୍ଷରେ ତିନି ଗୋଟି ବଡ଼ ଦୁର୍ଭିକ୍ଷ ହୋଇଥିଲା। ବ୍ରିଟିଶ ଶାସନ କାଳରେ ୧୮୦୩ରୁ ୧୮୬୪ ପର୍ଯ୍ୟନ୍ତ ପ୍ରାୟ ଷାଠିଏ ବର୍ଷରେ ୧୧ଟି ଦୁର୍ଭିକ୍ଷ ହୋଇଥିଲା। ପ୍ରାୟ ପ୍ରତି ତିନିବର୍ଷରେ ବିଭିନ୍ନ ଅଞ୍ଚଳରେ ଦୁର୍ଭିକ୍ଷ ପଡ଼େ। ଲୋକମାନଙ୍କ ଜୀବନରେ ଖାଦ୍ୟାଭାବ ଏବଂ ଦୁର୍ଭିକ୍ଷ ଗୋଟିଏ ସାଧାରଣ କଥା ହୋଇ ଯାଇଥିଲା। ପରିବହନର ସୁବିଧା ନଥିବାରୁ ବ୍ରିଟିଶ ରାଜତ୍ୱ ପୂର୍ବରୁ ବହୁ ପରିମାଣରେ ଧାନ ଚାଉଳ ଆମଦାନି ଓ ରପ୍ତାନି ହୋଇ ପାରୁନଥିଲା। ବିଭିନ୍ନ ଅଞ୍ଚଳର ଲୋକମାନେ ଅଭାବ ସମୟରେ ସେହି ଅଞ୍ଚଳର ମହଜୁଦ୍ ଧାନ ଚାଉଳ ଉପରେ ନିର୍ଭର କରୁଥିଲେ। ଦୁର୍ଭିକ୍ଷ ସମୟରେ ଗରିବ ଲୋକମାନେ କଂସା, ପିତ୍ତଳ, ଗୋରୁ ଗାଈ, ଜମି ବାଡ଼ି ବନ୍ଧକ ଧାନ ସାଇତି ରଖିଥିବା ଲୋକଙ୍କ ଠାରୁ ଧାନ କିଣି ବଞ୍ଚି ଯାଉଥିଲେ। ବ୍ରିଟିଶ ରାଜତ୍ୱ କାଳରେ କିନ୍ତୁ ଶୀତଦିନେ ଧାନ ଅମଳ ପରେ ବସନ୍ତ ଋତୁରେ ଜାହାଜରେ ଧାନ ରପ୍ତାନି ହୋଇ ଯାଉଥିଲା। ତେଣୁ ପରବର୍ଷ ପାଇଁ ପୁରା ଅଞ୍ଚଳରେ ମହଜୁଦ୍ ଧାନ ବେଶି ରହି ନଥାଏ। ପରବର୍ଷ ଫସଲ ନଷ୍ଟ ହୋଇଗଲେ, ଜ୍ୟେଷ୍ଠ ମାସଠାରୁ ମାଘ ଫଗୁଣ ପର୍ଯ୍ୟନ୍ତ ଧାନ ଚାଉଳ ବାହାରୁ ଜାହାଜରେ ସହଜରେ ଆମଦାନି କରି ହୁଏ ନାହିଁ। ନ'ଅଙ୍କ ଦୁର୍ଭିକ୍ଷ ବେଳେ ଏହିପରି ଘଟଣା ଘଟିଲା। ବସନ୍ତ ଋତୁରେ ଧାନ ରପ୍ତାନି ହୋଇଗଲା, ପରବର୍ତ୍ତୀ ବର୍ଷା ଏବଂ ଶୀତ କାଳରେ ବାହାରୁ ଧାନ ଆଣିବା କଷ୍ଟକର ହେଲା। ସେହି

ଅଳ୍ପ ପରିମାଣରେ ଧାନ ବାହାରୁ ଅଣାଯାଇ ପାରିଲା ତାଛୁ ରାସ୍ତା ଘାଟ ନଥିବାରୁ ଗ୍ରାମାଞ୍ଚଳରେ ବିକିବା କିମ୍ବା ବାଣ୍ଟିବା ସମ୍ଭବ ହେଲା ନାହିଁ ।

ନ'ଅଙ୍କ ଦୁର୍ଭିକ୍ଷ ପରେ ବନ୍ୟା ନିୟନ୍ତ୍ରଣ, ପରିବହନ ଓ ଗମନାଗମନ ସୁବିଧା ପାଇଁ ଯେଉଁ ପ୍ରକଳ୍ପମାନ କାର୍ଯ୍ୟକାରୀ କରାଗଲା ତାହା ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ହୋଇ ପାରି ନଥିଲା । ତେଣୁ ଊନବିଂଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଦୁର୍ଭିକ୍ଷର ପ୍ରକୋପ କମି ନଥିଲା । ୧୮୬୦ ମସିହା ଠାରୁ ୧୯୦୦ ମସିହା ପର୍ଯ୍ୟନ୍ତ ୩୦ ବର୍ଷ ମଧ୍ୟରେ ନଅବର୍ଷ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାରେ ଖାଦ୍ୟାଭାବ ଓ ଦୁର୍ଭିକ୍ଷ ହୋଇଥିଲା । ଏହିସବୁ ଦୁର୍ଭିକ୍ଷ ମଧ୍ୟରୁ ୧୮୭୦, ୧୮୭୩—୭୪ ଏବଂ ୧୮୭୭ ମସିହାର ଦୁର୍ଭିକ୍ଷ ବଡ଼ ଆକାରର ଥିଲା । ବିଂଶ ଶତାବ୍ଦୀର ପ୍ରଥମ ଦଶକ ବେଳକୁ ଦୁର୍ଭିକ୍ଷର ସଂଖ୍ୟା କମି ଆସିଥିଲା ଏବଂ ଦୁର୍ଭିକ୍ଷମାନଙ୍କର ପ୍ରକୋପ ଗୋଟିଏ ଗୋଟିଏ ଅଞ୍ଚଳ ମଧ୍ୟରେ ସୀମାବଦ୍ଧ ଥିଲା । ତଥାପି ୧୯୬୦ ମସିହା ପୂର୍ବରୁ ବିଭିନ୍ନ ଅଞ୍ଚଳରେ ଯେଉଁ ଦୁର୍ଭିକ୍ଷ ହେଉଥିଲା ସେଥିରେ ଲୋକମାନଙ୍କର ଦୁଃଖ ଦୁର୍ଦ୍ଦଶା ଏବଂ ଜନକ୍ଷୟ କମ୍ ଭୟାବହ ନଥିଲା । ୧୯୧୯—୨୦ ମସିହାରେ ପୁରୀ ଜିଲ୍ଲାର ଚଢ଼ିର ଅଞ୍ଚଳରେ ଯେଉଁ ଦୁର୍ଭିକ୍ଷ ହୋଇଥିଲା, ତାହାର କରୁଣ କାହାଣୀମାନ ନୀଳକଣ୍ଠ ଦାସ ତାଙ୍କ ଆତ୍ମଜୀବନୀ ବହିରେ ବର୍ଣ୍ଣନା କରିଛନ୍ତି । ସେ ଦୁର୍ଭିକ୍ଷରେ ମଧ୍ୟ ବିଭିନ୍ନ ଗ୍ରାମରେ ବହୁଲୋକ ଖାଦ୍ୟାଭାବରେ ମରିଯାଇଥିଲେ । ଗୋଟିଏ ଗାଁ ମୁଣ୍ଡରେ ବାଇଶିଟି ମୁର୍ଦ୍ଦାର ପଡ଼ିଥିବାର ସେ ଗଣିଥିଲେ । ଶବ ସତ୍କାର କରିବା ପାଇଁ ଗାଁରେ କାହାର ବଳ ବା ଅବସ୍ଥା ନଥିଲା । ବଡ଼ କଷ୍ଟରେ ଶବ ସବୁ ଗାଁ ମୁଣ୍ଡ ଶ୍ମଶାନରେ ପକାଇ ଦେଇ ଯାଉଥିଲେ । ଦୁର୍ଭିକ୍ଷ ପ୍ରପୀଡ଼ିତ ଲୋକ-ମାନଙ୍କର କରୁଣ ଓ ଶୋଚନୀୟ ଅବସ୍ଥା ଗୋପବନ୍ଧୁ ବାବୁ ବିହାରଓଡ଼ିଶା ଲେଜିସ୍ଲେଟିଭ୍ କାଉନସିଲ୍‌ରେ ଭାବ ବିହ୍ୱଳ ହୋଇ ବର୍ଣ୍ଣନା କରିଥିଲେ । ଫଳରେ ପ୍ରଦେଶର ଲାଟସାହେବ ନିଜେ ଘଟଣା ଦେଖିବାକୁ ସେ ଅଞ୍ଚଳକୁ ଆସିଥିଲେ । ଘଟଣା ପ୍ରତ୍ୟକ୍ଷରେ ଦେଖି କହି ପକାଇଥିଲେ, "ଯାହା କରିବାର ଥିଲା କରାଯାଇ ପାରିନାହିଁ । (What ought to have been done has not been done.)

୧୮୯୯ ମସିହାରେ ପାଟଣା ରାଜ୍ୟରେ ହୋଇଥିବା ଦୁର୍ଭିକ୍ଷର ଭୟାବହ ଚିତ୍ର ଭରତ ନାୟକ ତାଙ୍କ "ମୋର ପୂର୍ବ ଅନୁଭୂତିର କଥା" ବହିରେ ବର୍ଣ୍ଣନା କରିଛନ୍ତି । ନଅଙ୍କ ଦୁର୍ଭିକ୍ଷ ସମୟ ପରି ଲୋକମାନେ ଘରେ ଘରେ ବୁଲି ଭିକ ମାଗିବା, କାଙ୍ଗାଳଙ୍କ ପାଇଁ ଅନ୍ନଛତ୍ରରେ ମୁଠିଏ ମୁଠିଏ ଭାତ ଖାଇ ବହୁଲୋକ ହଇଜାରେ ମରିବା, ଲୋକମାନେ ଗଛର କଅଁଳ ପତ୍ର, ମୂଳ ଏବଂ ପୋଖରୀ ପଙ୍କରୁ କନ୍ଦା ପ୍ରଭୃତି ଖାଇବା, ବହୁ ସ୍ଥାନରେ ରାସ୍ତାକଡ଼ରେ ଲୋକମାନଙ୍କର

ଶବ ପଡ଼ିଥିବାର କରୁଣ ଦୃଶ୍ୟ ସେ ନିଜେ ଦେଖିଥିଲେ ବୋଲି ବର୍ଣ୍ଣନା କରିଛନ୍ତି । ସେହି ବହିରେ ୧୯୧୫ ମସିହାରେ ବାଲେଶ୍ୱର ନିକଟବର୍ତ୍ତୀ ସମୁଦ୍ରକୂଳ ଅଞ୍ଚଳରେ କ୍ରମାଗତ ଅନାବୃଷ୍ଟି ହେତୁ, ଅନାହାରରେ ବହୁ ଲୋକ ଅସ୍ଥିଚର୍ମସାର ହୋଇଯିବା ଏବଂ ମରିଯିବା କଥା ମଧ୍ୟ ସେ ବର୍ଣ୍ଣନା କରିଛନ୍ତି ।

୧୯୨୦ ମସିହା ପରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଦୁର୍ଭିକ୍ଷ କମି ଯାଇଥିଲା । ମାତ୍ର ବିଭିନ୍ନ ଅଞ୍ଚଳରେ ଘନ ଘନ ମରୁଡ଼ି, ବନ୍ୟା ଓ ବାତ୍ୟା ପ୍ରଭୃତି ହେତୁ ଖାଦ୍ୟାଭାବ ଏବଂ ଅନାହାରଜନିତ ମୃତ୍ୟୁ ଆଜିପର୍ଯ୍ୟନ୍ତ ଶତାବ୍ଦୀର ଶେଷ ସୁଦ୍ଧା ସମ୍ପୂର୍ଣ୍ଣଭାବେ ବନ୍ଦ ହୋଇ ପାରିନାହିଁ । ୧୯୬୭ ମସିହାରେ କଳାହାଣ୍ଡି ଜିଲ୍ଲାରେ ମରୁଡ଼ି ଯୋଗୁଁ ଦୁର୍ଭିକ୍ଷ ଅବସ୍ଥା ଏବଂ ଦୁର୍ଭିକ୍ଷ ପ୍ରପୀଡ଼ିତ ଅସ୍ଥିକଙ୍କାଳସାର ଚିତ୍ର ପୃଥିବୀର ବିଭିନ୍ନ ଦେଶରେ ଦୂରଦର୍ଶନ ଏବଂ ପତ୍ର-ପତ୍ରିକାରେ ଦେଖାହେଉଥିଲା । ସେତେବେଳର ଭାରତର ପ୍ରଧାନ ମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧି ସ୍ୱ ଚକ୍ଷୁରେ ଲୋକଙ୍କ ଅବସ୍ଥା ଦେଖିବା ପାଇଁ କଳାହାଣ୍ଡି ଆସିଥିଲେ । ୧୯୮୫-୮୬ ମସିହାରେ କଳାହାଣ୍ଡିରେ ମରୁଡ଼ି ଜନିତ ଖାଦ୍ୟାଭାବ ଯୋଗୁଁ ଲୋକମାନେ ଗଛ, ପତ୍ର, କନ୍ଦା ମୂଳ ପ୍ରଭୃତି ଖାଇଲେ ଏବଂ ଅନେକ ଲୋକ ଅନାହାରରେ ମରିଗଲେ । ସେ ସମୟର ଭାରତର ପ୍ରଧାନ ମନ୍ତ୍ରୀ ରାଜୀବ ଗାନ୍ଧି ଲୋକଙ୍କ ଅବସ୍ଥା ସ୍ୱ ଚକ୍ଷୁରେ ଦେଖିବା ପାଇଁ କଳାହାଣ୍ଡି ଆସିଥିଲେ । ତା'ପରେ କଳାହାଣ୍ଡି ଆଦିବାସୀ ଅଞ୍ଚଳର ଶୋଚନୀୟ ଆର୍ଥିକ ଅବସ୍ଥା ସୁଧାରିବା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ହୋଇଥିଲା । ତଥାପି ସେଠାରେ ବରାବର ଅନାହାର ମୃତ୍ୟୁ ଘଟିବାରୁ, ୧୯୮୯ ମସିହାରେ ବିଧାନ ସଭାରେ ହଟ୍ଟଗୋଳ ହୋଇଥିଲା ଏବଂ ଲୋକଙ୍କର ପ୍ରକୃତ ଅବସ୍ଥା ଅନୁସନ୍ଧାନ କରିବା ପାଇଁ ଗୋଟିଏ ଗୃହ କମିଟି ନିଯୁକ୍ତ ହୋଇଥିଲା । ସେହି ସମୟରେ ସେଠାକାର ଲୋକମାନଙ୍କର ଦାରିଦ୍ର୍ୟ ଏବଂ ଖାଦ୍ୟାଭାବର ପ୍ରକୃତ ତଥ୍ୟ ଅନୁସନ୍ଧାନ କରିବା ପାଇଁ କେତେକ ଲୋକ ସୁପ୍ରିମ୍‌କୋର୍ଟରେ ମକଦମା କରିଥିଲେ । ସୁପ୍ରିମ୍ କୋର୍ଟ ଏହା ଅନୁସନ୍ଧାନ କରିବାକୁ ଜଣେ ଜିଲ୍ଲା ଜଜ୍‌ଙ୍କୁ ନିଯୁକ୍ତ କରିଥିଲେ । ତାଙ୍କ ରିପୋର୍ଟ ୧୯୯୧ ମସିହାରେ ବାହାରିଲା । ସେଥିରେ କଳାହାଣ୍ଡିର ଆଦିବାସୀ ଲୋକଙ୍କର ଶୋଚନୀୟ ଦାରିଦ୍ର୍ୟ, ଅନାହାର ଏବଂ ସେମାନଙ୍କ ସାହାଯ୍ୟ ପାଇଁ ଉଦ୍ଦିଷ୍ଟ ସରକାରୀ ସଙ୍ଗଠନର ଅବ୍ୟବସ୍ଥା ବିଶଦ ଭାବରେ ବର୍ଣ୍ଣିତ ହୋଇଥିଲା । ୧୯୯୨ ମସିହା ଫେବୃଆରୀ ମାସରେ ଓଡ଼ିଶା ହାଇକୋର୍ଟ ସେ ରିପୋର୍ଟ ସତ୍ୟ ବୋଲି ଗ୍ରହଣ କରି, ଅନାହାରରେ ମରିଥିବା ଲୋକମାନଙ୍କର ପରିବାରକୁ ୨୫୦୦୦ ଲେଖାଏଁ ଟଙ୍କା କ୍ଷତିପୂରଣ ଦେବାକୁ ଓଡ଼ିଶା ସରକାରଙ୍କୁ ନିର୍ଦ୍ଦେଶ

ଦେଇଥିଲେ । ପୁନର୍ବାର ୧୯୧୬ ମସିହା ମାର୍ଚ୍ଚ ଅପ୍ରେଲ ମାସରେ କଳାହାଣ୍ଡି, ବଲାଙ୍ଗିର, କେନ୍ଦୁଝର, କୋରାପୁଟ ଏବଂ ପୁରୀ ପ୍ରଭୃତି ୧୧ ଗୋଟି ଜିଲ୍ଲାରେ ମରୁଡ଼ି ହେତୁ ଖାଦ୍ୟାଭାବ ଏବଂ ଅନାହାର ମୃତ୍ୟୁ ବିଷୟରେ ବିଧାନ ସଭାରେ ବାଦାନୁବାଦ ଲାଗିଛି ଏବଂ ଖବରକାଗଜମାନଙ୍କରେ ବିଶଦ ବିବରଣୀମାନ ବାହାରୁଛି । ନଅଙ୍କ ଦୁର୍ଭିକ୍ଷର ପ୍ରାୟ ୧୩୦ ବର୍ଷ ପରେ ଆମ ଆଖି ଆଗରେ ଏ ସବୁ ଘଟଣା ଘଟୁଛି । ଓଡ଼ିଶାରେ ଊନବିଂଶ ଶତାବ୍ଦୀର ଭୟାବହ ଦୁର୍ଭିକ୍ଷମାନ କମିଯାଇଛି ସତ୍ୟ, ମାତ୍ର ବ୍ୟାପକ ମରୁଡ଼ିଜନିତ ଖାଦ୍ୟାଭାବ ଏବଂ ବିଭିନ୍ନ ଅଞ୍ଚଳରେ ଅନାହାର ମୃତ୍ୟୁ ସମ୍ପୂର୍ଣ୍ଣଭାବରେ ବିଂଶ ଶତାବ୍ଦୀରେ ଦୂର ହୋଇ ନାହିଁ । ଅନ୍ନକଷ୍ଟ କାଳେ କାଳେ ଲାଗି ରହିଛି ।

ଓଡ଼ିଶାରେ ନଅଙ୍କ ଦୁର୍ଭିକ୍ଷ ସମେତ ସବୁ ଦୁର୍ଭିକ୍ଷ ଏବଂ ଖାଦ୍ୟାଭାବ ବିଶେଷତଃ ପ୍ରାକୃତିକ ବିପଦ ହେତୁ ଘଟୁଛି ବୋଲି ବହୁକାଳରୁ ଜଣା ପଡ଼ୁଛି । ଊନବିଂଶ ଶତାବ୍ଦୀର ସବୁ ଦୁର୍ଭିକ୍ଷ କମିଶନ୍ ଏହା ବର୍ଣ୍ଣନା କରିଥିଲେ । ପ୍ରାକୃତିକ ବିପଦ ହେତୁ କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳରେ କିମ୍ବା ବ୍ୟାପକ ଅଞ୍ଚଳରେ ଫସଲ ନଷ୍ଟ ହେଲେ ପୂର୍ବେ ରାସ୍ତାଘାଟ ଓ ପରିବହନର ଅସୁବିଧା ହେତୁ ବାହାରୁ ଧାନ, ଚାଉଳ ଆସିପାରେ ନାହିଁ । ଫଳରେ ବହୁ ସଂଖ୍ୟାରେ ଜନକ୍ଷୟ ହେଉଥିଲା । ବିଂଶ ଶତାବ୍ଦୀର ପଞ୍ଚମ ଦଶନ୍ଧିପରେ ବିଶେଷତଃ ସ୍ୱାଧୀନତା ପରେ ପରିବହନର ଅସୁବିଧା ବହୁ ପରିମାଣରେ ହ୍ରାସ ପାଇଛି ଏବଂ ଅନାହାର ମୃତ୍ୟୁ ଦୂର କରିବାକୁ ଶାସନ କଳର ତତ୍ପରତା ବୃଦ୍ଧି ପାଇଛି । ମାତ୍ର ପ୍ରାକୃତିକ ବିପର୍ଯ୍ୟୟ ଦୂର କରିବା ସମ୍ଭବ ହୋଇନାହିଁ । ଏ ରାଜ୍ୟରେ ତିନି ପ୍ରକାର ପ୍ରାକୃତିକ ବିପର୍ଯ୍ୟୟ କାଳେ କାଳେ ଘଟୁଥିଲା ଏବଂ ଏବେ ମଧ୍ୟ ଘଟୁଛି । ସେ ତିନିଗୋଟି ବିପର୍ଯ୍ୟୟ ହେଲା ବଢ଼ି, ମରୁଡ଼ି ଓ ବାତ୍ୟା । ଉପକୂଳ ଜିଲ୍ଲାମାନଙ୍କରେ ତିନିଗୋଟିଯାକ ପ୍ରାକୃତିକ ବିପର୍ଯ୍ୟୟ ବଢ଼ି, ମରୁଡ଼ି, ବାତ୍ୟା ଏବଂ ଆଭ୍ୟନ୍ତରୀଣ ଜିଲ୍ଲାମାନଙ୍କରେ ବିଶେଷତଃ ମରୁଡ଼ି ହେତୁ ବ୍ୟାପକ ଫସଲ ନଷ୍ଟ ହୁଏ ।

ଭୌଗୋଳିକ ଗବେଷଣାରୁ ଜଣାଯାଏ ଯେ, ଊନବିଂଶ ଶତାବ୍ଦୀରେ ଉପକୂଳ ଜିଲ୍ଲାମାନଙ୍କରେ ୧୮୦୬ ମସିହାରୁ ୧୮୬୩ ମସିହା ମଧ୍ୟରେ ୧୩ ଥର ବଢ଼ି, ଚାରିଥର ବ୍ୟାପକ ମରୁଡ଼ି ଏବଂ ଦୁଇଥର ୧୮୩୦ ଓ ୧୮୩୧ ମସିହାରେ ବଡ଼ ବାତ୍ୟା ହୋଇଥିଲା । ୧୮୩୦ ରୁ ୧୮୬୪ ମସିହା ପର୍ଯ୍ୟନ୍ତ ପୁରୀ ଏବଂ ବାଲେଶ୍ୱର ଜିଲ୍ଲାରେ ପ୍ରାୟ ପ୍ରତିବର୍ଷ ବଢ଼ି ହୋଇଥିଲା । ତାହାର ଫଳରେ ୧୮୦୩ ରୁ ୧୮୬୩ ମସିହା ପର୍ଯ୍ୟନ୍ତ ସମୟରେ ୧୩ ଥର ଦୁର୍ଭିକ୍ଷ ହୋଇଥିଲା । ଯେଉଁ ବର୍ଷ ବଢ଼ି, ମରୁଡ଼ି କିମ୍ବା ବ୍ୟାପକ ବାତ୍ୟା ହୋଇଯାଏ, ସେ ବର୍ଷ ଦୁର୍ଭିକ୍ଷ

ପଡ଼େ । ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଲୋକମାନଙ୍କ ମଧ୍ୟରେ ଭୂ-ରାଜସ୍ୱ ପ୍ରଭୃତି ଟିକସ ଭାର ଅଧିକ ଥିଲା, ଲୁଣ ମାରିବା ବ୍ୟବସାୟ ବନ୍ଦ ହୋଇଗଲା, ଅଧିକାଂଶ କୁଟୀର ଶିଳ୍ପ ଲୋପ ପାଇଗଲା । ସୁତରାଂ ବ୍ୟାପକ ଭାବେ ଲୋକମାନେ ଦରିଦ୍ର ଓ ବେକାର ହୋଇ ସବୁବେଳେ ଢୋକେ ପିଇ ଦଣ୍ଡେ ଜୀଇବା ଅବସ୍ଥାରେ ଥାଆନ୍ତି । ଫସଲ ନଷ୍ଟ ହୋଇଗଲେ ମୂଲ ମିଳେ ନାହିଁ, ଘରେ ପଇସା ପତ୍ର ଓ ଅନ୍ୟ ସମ୍ବଳ ନ ଥାଏ । ଧାନ ଚାଉଳ କିଣିବାକୁ ମିଳୁଥିଲେ ସୁଦ୍ଧା ଧାନ, ଚାଉଳ କିଣିବାକୁ ଲୋକଙ୍କର ଶକ୍ତି ନ ଥାଏ । ତେଣୁ ଦୁର୍ଭିକ୍ଷ ସମୟରେ ମୂଲିଆ ଓ ନାମମାତ୍ର ଚାଷୀମାନେ ପ୍ରଥମେ ବେଶି ସଂଖ୍ୟାରେ ମୃତ୍ୟୁମୁଖରେ ପଡ଼ନ୍ତି । ନ'ଅଙ୍କ ପରି ଦୁର୍ଭିକ୍ଷରେ ବଜାରରେ ସୁଦ୍ଧା ଧାନ କିଣିବାକୁ ମିଳୁ ନ ଥିଲା । ତେଣୁ ଅନାହାର ମୃତ୍ୟୁ ବ୍ୟାପକ ହେଲା ।

ନ' ଅଙ୍କ ଦୁର୍ଭିକ୍ଷ ପରେ ୧୮୭୦ ମସିହାଠାରୁ ୧୯୦୦ ମସିହା ପର୍ଯ୍ୟନ୍ତ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ୧୫ ଥର ବଢ଼ି ଓ ୧୫ ଥର ବାତ୍ୟା ହୋଇଥିଲା । ୧୮୮୫ ମସିହାରୁ ୧୮୯୭ ମସିହା ପର୍ଯ୍ୟନ୍ତ ପ୍ରାୟ ପ୍ରତିବର୍ଷ ମୌସୁମୀ ବାୟୁ ପ୍ରବାହର ଶେଷ ବେଳକୁ ବାତ୍ୟା ହୁଏ । ଫଳରେ ପ୍ରାୟ ପ୍ରତିବର୍ଷ ଖାଦ୍ୟାଭାବ ହୁଏ । ଇତିହାସରୁ ମଧ୍ୟ ଜଣାଯାଏ ଯେ, ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଦକ୍ଷିଣ ଓ ଉତ୍ତର ଭାରତର ବିଭିନ୍ନ ପ୍ରଦେଶରେ ବହୁବାର ଦୁର୍ଭିକ୍ଷ ହୋଇଥିଲା । ସାଧାରଣ ଭାବେ ୧୮୭୭ ରୁ ୧୮୭୮, ବାରବର୍ଷ ଏବଂ ୧୮୯୭ ରୁ ୧୯୦୦ ଚାରିବର୍ଷ ପୂରା ଭାରତ ବର୍ଷରେ ଦୁର୍ଭିକ୍ଷ ସମୟ ଥିଲା । ପ୍ରାକୃତିକ ବିପର୍ଯ୍ୟୟରେ ଫସଲ ନଷ୍ଟ, ରାସ୍ତାଘାଟର ଅସୁବିଧା, ଦେଶରୁ ଧାନ ରପ୍ତାନି, ଲୋକମାନଙ୍କ ମଧ୍ୟରେ ବ୍ୟାପକ ଦାରିଦ୍ର୍ୟ ଓ ବେକାରି, କୁଟୀର ଶିଳ୍ପ ପ୍ରଭୃତିର ଲୋପ ଏବଂ ଲୋକମାନଙ୍କ ଉପରେ ଅତ୍ୟଧିକ କରଭାର ପ୍ରଭୃତି ଘନ ଘନ ଦୁର୍ଭିକ୍ଷ ଓ ଲୋକ କ୍ଷୟର କାରଣ ଥିଲା ।

ବିଂଶ ଶତାବ୍ଦୀରେ ୧୯୧୯-୨୦ ମସିହାର ଚରମ ଦୁର୍ଭିକ୍ଷ କଥା ଉପରେ ବର୍ଣ୍ଣନା କରାଯାଇଛି । ସେ ବର୍ଷ ମରୁଡ଼ି ହେବାରୁ ଓଡ଼ିଶାର ସ୍ୱଳ୍ପଆଡ଼େ ମଧ୍ୟ ଖାଦ୍ୟାଭାବ ହୋଇଥିଲା । ୧୯୫୫ ମସିହାରେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ବ୍ୟାପକ ମରୁଡ଼ି ଏବଂ ସେପ୍ଟେମ୍ବର ମାସରେ ଦଳାଇଘାଇ ଭାଙ୍ଗି କଟକ ଜିଲ୍ଲାର ବିସ୍ତୀର୍ଣ୍ଣ ଅଞ୍ଚଳରେ ବନ୍ୟା, ୧୯୬୫ ମସିହାର ମରୁଡ଼ି ଏବଂ ୧୯୬୫ ଠାରୁ ୧୯୭୫ ମସିହା ମଧ୍ୟରେ ପ୍ରାୟ ପ୍ରତିବର୍ଷ ସାରା ଓଡ଼ିଶା କିମ୍ବା ତା'ର ବିଭିନ୍ନ ଅଞ୍ଚଳରେ ମରୁଡ଼ିର ଆମ୍ଭେମାନେ ପ୍ରତ୍ୟକ୍ଷଦର୍ଶୀ । ୧୯୬୭ ମସିହାରେ କଳାହାଣ୍ଡିରେ

ଦୁର୍ଭିକ୍ଷ ବିଷୟ ଉପରେ ବର୍ଣ୍ଣନା କରାଯାଇଛି । ୧୯୬୭ ମସିହାରେ କଟକ ଜିଲ୍ଲାରେ ବିସ୍ତୃତ ଅଞ୍ଚଳରେ ବଡ଼ ବାତ୍ୟା ହୋଇଥିଲା । ୧୯୭୬ ମସିହାରେ କୋରାପୁଟ, କଳାହାଣ୍ଡି, ବଲାଙ୍ଗିର, ଗଞ୍ଜାମ ଓ ସମ୍ବଲପୁର ଜିଲ୍ଲାରେ ମରୁଡ଼ି ହୋଇଥିଲା । ୧୯୮୬ ମସିହାରେ କଟକ, ପୁରୀ, ଓ ଗଞ୍ଜାମ ଜିଲ୍ଲାରେ ମରୁଡ଼ି ଏବଂ ତା'ପରେ ପରେ ବନ୍ୟା ଓ ବାତ୍ୟା ହେତୁ ତିନଗୋଟିଯାକ ବିପତ୍ତି ଏକା ବର୍ଷରେ ଘଟିଥିଲା । ଘନ ଘନ ମରୁଡ଼ି ହେତୁ କଟକର ସତୁରିଟି ବ୍ଲକ୍‌କୁ ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳ ବୋଲି ଘୋଷଣା କରାଯାଇଛି । ମରୁଡ଼ି ସହିତ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଆଜିପୁରିକା ବନ୍ୟା ପ୍ରାୟ ପ୍ରତିବର୍ଷର ଦୁର୍ଘଟଣା । ୧୯୫୫ ମସିହାଠାରୁ ୧୯୯୧ ମସିହା ପର୍ଯ୍ୟନ୍ତ ୩୬ ବର୍ଷରେ ମହାନଦୀ, ବ୍ରାହ୍ମଣୀ, ବୈତରଣୀ ଏବଂ ସୁବର୍ଣ୍ଣରେଖା ନଦୀମାନଙ୍କର ଅବବାହିକାରେ ପ୍ରାୟ ୧୦ ଥରରୁ ଅଧିକ ବଡ଼ ବଢ଼ି ହୋଇଛି ।

## ହୀରାକୁଦ ବନ୍ଧ

ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ବନ୍ୟା ବିପତ୍ତି ବହୁ ଶତାବ୍ଦୀ ଧରି ଦୁର୍ଭିକ୍ଷ, ଖାଦ୍ୟାଭାବ, ଗଣ ଦାରିଦ୍ର୍ୟ ଓ ଗଣମୃତ୍ୟୁର ପ୍ରଧାନ କାରଣ ବୋଲି ସରକାର ଏବଂ ଏ ରାଜ୍ୟର ଲୋକମାନେ ଉପଲବ୍ଧି କରିଛନ୍ତି । ନ'ଅଙ୍କ ଦୁର୍ଭିକ୍ଷ ପରେ ନଦୀ-ମାନଙ୍କ କଡ଼ରେ ବନ୍ଧ ଦେବାଦ୍ୱାରା ଅଳ୍ପ କେତେକ ଅଞ୍ଚଳ ସୁରକ୍ଷିତ ହୋଇ ପାରିଥିଲା । କିନ୍ତୁ ବହୁବର୍ଷ ନଦୀ ବନ୍ଧମାନଙ୍କରେ ଘାଇ ହୋଇ ସେହି ସୁରକ୍ଷିତ ଅଞ୍ଚଳମାନ ମଧ୍ୟ ବନ୍ୟାରେ ବୁଡ଼ିଯାଏ । ଅସୁରକ୍ଷିତ ଅଞ୍ଚଳମାନଙ୍କରେତ ପ୍ରତିବର୍ଷ ବଢ଼ିହୁଏ ଏବଂ ଲୋକମାନେ ସବଂସ୍ୱାନ୍ତ ହୁଅନ୍ତି । ସ୍ୱାଧୀନତା ସମୟରେ ଏ ସବୁ ଅଞ୍ଚଳରେ ବନ୍ୟା ନିୟନ୍ତ୍ରଣ ପାଇଁ ଆମେରିକାର ଟେନେସି ଉପତ୍ୟକା ବହୁମୁଖୀ ଜଳ ନିୟନ୍ତ୍ରଣ ପ୍ରକଳ୍ପ ପରି ଓଡ଼ିଶାରେ ବନ୍ୟା ନିୟନ୍ତ୍ରଣ ପାଇଁ ପରିକଳ୍ପନା କରାଗଲା । ଏହି ପରିକଳ୍ପନାରେ ପ୍ରଥମେ ଓଡ଼ିଶାର ବୃହତ୍ତମ ନଦୀ ମହାନଦୀ ଉପରେ ସମ୍ବଲପୁର, ଟିକରପଡ଼ା ଓ ନରାଜଠାରେ ଲୁହା ସିମେଣ୍ଟରେ ବନ୍ଧ ବାନ୍ଧି ନଦୀର ଉପର ମୁଣ୍ଡରେ ଏବଂ ତଳ ମୁଣ୍ଡରେ ଏହି ତିନି ସ୍ଥାନରେ ଜଳ ଭଣ୍ଡାର-ମାନ ନିର୍ମାଣ କରି ଜଳ ନିୟନ୍ତ୍ରଣ ଦ୍ୱାରା ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ବନ୍ୟା ନିୟନ୍ତ୍ରଣ କରିବା ଯୋଜନା କରାଗଲା । ଜଳଭଣ୍ଡାର ସଂଲଗ୍ନ ବିସ୍ତୀର୍ଣ୍ଣ ଅଞ୍ଚଳରେ ଜଳସେଚନ, ଜଳଭଣ୍ଡାର ପାଖରେ ବିଦ୍ୟୁତ ଶକ୍ତି ଉତ୍ପାଦନ, ଜଳଭଣ୍ଡାରରେ ମତ୍ସ୍ୟଚାଷ ଏବଂ ନଦୀର ବିଭିନ୍ନ ଅଂଶରେ ନୌକାରେ ଲୋକମାନଙ୍କର ଗମନା-ଗମନ ଓ ମାଲପତ୍ର ପରିବହନ ଏହି ଯୋଜନାର ଅନ୍ତର୍ଭୁକ୍ତ ଥିଲା । ଏହି ବହୁମୁଖୀ ପ୍ରକଳ୍ପମାନଙ୍କରେ ବହୁ ଖର୍ଚ୍ଚ କରିବାକୁ ପଡ଼ିବ ବୋଲି ପ୍ରଥମରୁ

ସରକାର ଜାଣିପାରିଥିଲେ । ପ୍ରଥମେ ସମ୍ବଲପୁରର ହୀରାକୁଦଠାରେ ମହାନଦୀରେ ବନ୍ଧ କେନ୍ଦ୍ର ଜଳନିୟନ୍ତ୍ରଣ ବୋର୍ଡ଼ ଦ୍ୱାରା ଆରମ୍ଭ ହେଲା । ସେତେବେଳେ ପ୍ରଖ୍ୟାତ ଇଞ୍ଜିନିଅର ଅଯୋଧ୍ୟାନାଥ ଖୋସଲା କେନ୍ଦ୍ର ଜଳନିୟନ୍ତ୍ରଣ ବୋର୍ଡ଼ର ଅଧ୍ୟକ୍ଷ ଥିଲେ । ପରେ ସେ ପାଞ୍ଚବର୍ଷ ଓଡ଼ିଶାର ରାଜ୍ୟପାଳ ହୋଇଥିଲେ । ସେ ଏହି ପ୍ରକଳ୍ପର ପରିକଳ୍ପନା କରିଥିଲେ ଏବଂ ତାଙ୍କରି ପ୍ରେରଣା ଏବଂ ଉଦ୍ୟମରେ ଏ ପ୍ରକଳ୍ପର ପ୍ରଥମ ବନ୍ଧ ହୀରାକୁଦଠାରେ ଆରମ୍ଭ ହେଲା ।

ସେତେବେଳେ ପଣ୍ଡିତ ନେହରୁ ଭାରତର ପ୍ରଧାନମନ୍ତ୍ରୀ ଏବଂ ହରେକୃଷ୍ଣ ମହତାବ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ । ପଣ୍ଡିତ ନେହରୁ ୧୯୪୭ ମସିହା ମାର୍ଚ୍ଚମାସ ୩୧ ତାରିଖ ଦିନ ବନ୍ଧର ଶୁଭ ଦେଇଥିଲେ । ଆମ୍ଭେମାନେ ସେତେ-ବେଳେ ସମ୍ବଲପୁର କଲେଜର ଅଧ୍ୟାପକ ଥିଲୁ ଏବଂ ସେ ସଭାରେ ଯୋଗ ଦେଇଥିଲୁ । ବହୁ ବାଧାବିଘ୍ନ ପରେ ସାତ ଆଠ ବର୍ଷ ମଧ୍ୟରେ ବନ୍ଧ ନିର୍ମିତ ହେଲା । ସମ୍ବଲପୁର ଜିଲ୍ଲାର ବହୁ ସମୃଦ୍ଧ ଅଞ୍ଚଳ ଏବଂ ଉର୍ବର କୃଷିଜମି ଜଳଭଣ୍ଡାରରେ ବୁଡ଼ିଗଲା । ବିଦ୍ୟୁତ ଉତ୍ପାଦନ ପାଇଁ ବୁର୍ଲାଠାରେ କାରଖାନାମାନ ନିର୍ମିତ ହେଲା । ବରଗଡ଼ ପ୍ରଭୃତି ଅଞ୍ଚଳରେ ଜଳସେଚନ କେନାଲମାନ ଖୋଳିବା ପାଇଁ ଆହୁରି କେତେକ ବର୍ଷ ବିତିଗଲା । ଏ ସବୁ ଅତି ଅଳ୍ପବର୍ଷ ତଳର କଥା । ବନ୍ଧ ନିର୍ମାଣରେ ଏତେ ଅଧିକ ଖର୍ଚ୍ଚ ହେଲା, ଏତେ ଅଞ୍ଚଳ ବୁଡ଼ିଗଲା ଏବଂ ଏତେ ଲୋକଙ୍କୁ ଥଇଥାନ କରିବାକୁ ପଡ଼ିଲା ଯେ, ପରବର୍ତ୍ତୀ ଦୁଇବନ୍ଧ ଟିକରପଡ଼ା ଓ ନରାଜଠାରେ କରିବାକୁ ସରକାରଙ୍କର ଅର୍ଥବଳ ନଥିଲା । ସେ ଦୁଇବନ୍ଧ ଆଜିପର୍ଯ୍ୟନ୍ତ ନିର୍ମିତ ହୋଇ ନାହିଁ । ତାହା କରିବା ଉଚିତ୍ କି ନୁହେଁ ତାହା ଆଲୋଚିତ ଓ ସମାଲୋଚିତ ହେଉଛି । ମଣିବନ୍ଧଠାରେ ମହାନଦୀରେ ବନ୍ଧ କରିବା ପାଇଁ ବର୍ତ୍ତମାନ ଯୋଜନା କରାଯାଇଛି । ତାହା ମଧ୍ୟ ବର୍ତ୍ତମାନ ଗୋଟିଏ ବଡ଼ ବିବାଦୀୟ ବ୍ୟାପାର ହୋଇଛି ।

୧୯୫୫ ମସିହାରେ ଉପକୂଳବର୍ତ୍ତୀ ସବୁ ଜିଲ୍ଲାରେ ପ୍ରବଳ ବନ୍ଧି ଏବଂ ଦେବୀ ନଦୀର ଦଳେଇଘାଇ ଭାଙ୍ଗିଲା ବେଳକୁ ହୀରାକୁଦ ବନ୍ଧର କାର୍ଯ୍ୟ ସମ୍ପୂର୍ଣ୍ଣ ହୋଇ ନ ଥାଏ । ମାତ୍ର ୧୯୮୨ ଏବଂ ୧୯୯୧ ମସିହା ବନ୍ଧି ବେଳକୁ ସେ ବନ୍ଧ ସମ୍ପୂର୍ଣ୍ଣ ହୋଇ ପ୍ରାୟ ପଚିଶ ବର୍ଷ ଜଳ ନିୟନ୍ତ୍ରଣ ବ୍ୟବସ୍ଥା କାର୍ଯ୍ୟକାରୀ ହୋଇଥିଲା । ତଥାପି ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ପ୍ରଳୟଙ୍କରୀ ବନ୍ୟାର ପ୍ରତିରୋଧ କରା ହୋଇ ନ ଥିଲା । ହୀରାକୁଦର ଉପରମୁଣ୍ଡରେ ପ୍ରବଳ ବର୍ଷା ହେଲେ ହୀରାକୁଦ ଜଳଭଣ୍ଡାର ଦୁଇତିନି ଦିନ ପାଇଁ ଜଳପ୍ରବାହ ଅଟକାଇ ଦେଇ ପାରେ । ମାତ୍ର

ହୀରାକୁଦର ତଳଓ୍ୱାଗରେ ଏବଂ ଉପକୂଳ ଜିଲ୍ଲାମାନଙ୍କରେ ପ୍ରବଳ ବର୍ଷା ହେଲେ ହୀରାକୁଦ ବନ୍ଧ ଓ ଜଳଭଣ୍ଡାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ବନ୍ୟା ପ୍ରତିରୋଧ କରିବାକୁ କ୍ଷମ ହୋଇପାରେ ନାହିଁ । ୧୯୮୨ ଏବଂ ୧୯୯୧ ମସିହାରେ ସେହି ଘଟଣା ଘଟିଲା । ହୀରାକୁଦର ତଳଅଞ୍ଚଳରେ ଏବଂ ରାଜ୍ୟର ଉପକୂଳ ଅଞ୍ଚଳରେ ପ୍ରବଳ ବର୍ଷ ହେତୁ ବନ୍ୟା ହେଲା । ୧୯୮୨ ମସିହାରେ ଦଳେଇଘାଇ ଦ୍ୱିତୀୟଥର ସାଙ୍ଗିଲା । ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ସବୁ ବଡ଼ ନଦୀ ଏବଂ ସେମାନଙ୍କର ଶାଖାନଦୀ ଗୁଡ଼ିଆଡ଼େ ବସ୍ତିଇହୋଇ ବହୁଛନ୍ତି । ସେ ନଦୀଶଯ୍ୟା ସବୁ ପୋତି ହୋଇ ଯାଉଛି । ତା ପରେ ପୁଣି ବନ୍ଧ କେନାଲବନ୍ଧ ଓ ରେଲଲାଇନ ପ୍ରଭୃତି ବିଗତ ଶହେ ବର୍ଷ ମଧ୍ୟରେ ନିର୍ମାଣ କରାଯାଇ ଥିବାରୁ ବଢ଼ିପାଣି ଚାରିଆଡ଼େ ମାଡ଼ିଯାଇ ପାରୁ ନାହିଁ କିମ୍ବା ଅଳ୍ପଦିନ ମଧ୍ୟରେ ସମୁଦ୍ର ଗର୍ଭକୁ ନିଷ୍କାସିତ ହୋଇ ପାରୁ ନାହିଁ । ଫଳରେ ବନ୍ୟାଞ୍ଚଳମାନଙ୍କରେ ବଢ଼ିପାଣି ଦଶ ପନ୍ଦର ଦିନରୁ ଅଧିକ ଜମିରହୁଛି ଏବଂ ତାହାଦ୍ୱାରା ଫସଲ ଓ ଧନଜୀବନ ନଷ୍ଟ ହେଉଛି ।

୧୯୯୧ ମସିହା ଅଗଷ୍ଟ ୧୩ ତାରିଖରୁ ଆରମ୍ଭ ହୋଇଥିବା ବନ୍ୟାରେ ଅଗଷ୍ଟ ୨୬—୨୭ ତାରିଖ ଯାଏ, ବସ୍ତା ଅଞ୍ଚଳରେ ୧୫ଟି ଗ୍ରାମ ପଞ୍ଚାୟତରେ ପ୍ରାୟ ୧୦୫ ଗୋଟି ଗ୍ରାମର ହଜାର ହଜାର ଲୋକ ପାଣି ଘେର ମଧ୍ୟରେ ରହି ବାହାର ଜଗତରୁ ପ୍ରାୟ ବିଚ୍ଛିନ୍ନ ହୋଇ ରହିଥିଲେ । ସେ ମାସ ୨୬ ତାରିଖରେ ସୁଦ୍ଧା କୁଆଁଶିଆ—ବସ୍ତା ରାସ୍ତାରେ ସାହାସପୁରଠାରେ ଚାରିଫୁଟରୁ ଆଠଫୁଟ ପାଣି ଜମି ରହିଥିଲା ବୋଲି ଖବରକାଗଜମାନଙ୍କରେ ବାହାରିଥିଲା । ସେହିପରି କଟକ ଜିଲ୍ଲାର ଆଳି, ଇନ୍ଦୁପୁର, ପଟାମୁଣ୍ଡାଇ ଏବଂ ଏରସମା ପ୍ରଭୃତି ଅଞ୍ଚଳରେ ଏବଂ ପୁରୀ ଜିଲ୍ଲାର ନିମାପଡ଼ା, କାକଟପୁର ପ୍ରଭୃତି ଅଞ୍ଚଳ ଓ ବାଲେଶ୍ୱର ଜିଲ୍ଲାର ମର୍ତ୍ତୋ, ଶ୍ରୀରାମପୁର, ଗୃନ୍ଦବାଲି ପ୍ରଭୃତି ଅଞ୍ଚଳ ବହୁଦିନ ଧରି ପାଣିଘେର ମଧ୍ୟରେ ରହିଥିବା ଖବର ସବୁ ପ୍ରକାଶ ପାଇଥିଲା । ଏହିପରି ବନ୍ୟା ଶହ ଶହ ବର୍ଷ ଧରି ଏ ସବୁ ଅଞ୍ଚଳରେ ଲାଗି ରହିଛି । ଏହି ସବୁ ବିପତ୍ତି, ଦୁଃଖ, ଅନାହାର ରୋଗ, ଗୃହଶୂନ୍ୟତା, ଶିଳ୍ପ ବର୍ଣ୍ଣନ ଆମ ଲୋକଙ୍କର ଦେହସୁହା ଘଟଣା ହୋଇ ଯାଇଛି । ୧୯୯୧ ମସିହାରେ ଓଡ଼ିଶାର ସାତଗୋଟି ଜିଲ୍ଲାରେ ଲକ୍ଷ, ଲକ୍ଷ, ଲୋକ ବନ୍ୟାବିପନ୍ନ ଓ ଶହଶହ କୋଟି ଟଙ୍କାର ଫସଲ ନଷ୍ଟ ହୋଇଥିଲା ବୋଲି ସରକାର ଶ୍ୱେତପତ୍ର ପ୍ରକାଶ କରିଥିଲେ । ପୁନର୍ବାର ୧୯୯୩ ମସିହାରେ ୧୧ ଗୋଟି ଜିଲ୍ଲାରେ ଲକ୍ଷ ଲକ୍ଷ ଲୋକ ମରୁଡ଼ିପ୍ରପୀଡ଼ିତ ହୋଇଛନ୍ତି ବୋଲି ସରକାର ଶ୍ୱେତପତ୍ର ପ୍ରକାଶ କରିଛନ୍ତି । ସୁତରାଂ ବହୁ ପୂର୍ବକାଳର ଇତିହାସକୁ ନଯାଇ ୧୮୦୩ ମସିହାରୁ ୧୯୯୩ ମସିହା ପର୍ଯ୍ୟନ୍ତ ପ୍ରାୟ ଦୁଇଶହ ବର୍ଷର ଯେଉଁ

ଇତିହାସ ଆମ ସମ୍ମୁଖରେ ରହିଛି 'ସେଥିରୁ ଜଣାଯାଉଛି ଯେ, ବିଂଶ ଶତାବ୍ଦୀର ଶେଷପର୍ଯ୍ୟନ୍ତ ଏ ସମସ୍ୟାର ସମାଧାନ ହୋଇପାରି ନାହିଁ ।

ମରୁଡ଼ି ଓ ବନ୍ୟା ସହିତ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଘନଘନ ବାତ୍ୟା ମଧ୍ୟ ଲୋକମାନଙ୍କର ଫସଲ ଓ ଧନଜୀବନ ପ୍ରତି ଆଉ ଏକ ପ୍ରଧାନ ବିପଦ ହୋଇଛି । ଏହା ସାଧାରଣତଃ ବର୍ଷାଋତୁର ଶେଷରେ ଗୋପାଳପୁରଠାରୁ ବାଲେଶ୍ୱର ପର୍ଯ୍ୟନ୍ତ ସମୁଦ୍ର କୂଳରୁ ୫୦ରୁ ୧୨୦ କିଲୋମିଟର ଭିତର ଅଞ୍ଚଳରେ ହୁଏ । ୧୯୩୬, ୧୯୬୭, ୧୯୭୧ ଓ ୧୯୮୨ ମସିହାର ବତାସମାନଙ୍କର ଆମେ ପ୍ରତ୍ୟକ୍ଷଦର୍ଶୀ । ଆମ ଜଗତସିଂହପୁର ଅଞ୍ଚଳରେ ୧୨୯୯ ସାଲ ବା ୧୮୯୧ ମସିହାର ବଡ଼ ବତାସ ଆମ ଅଞ୍ଚଳର ଲୋକଙ୍କର ସ୍ମୃତିରେ ଆଜିସୁଦ୍ଧା ଜାଗ୍ରତ ଅଛି । ବିଂଶ ଶତାବ୍ଦୀର ଶେଷପର୍ଯ୍ୟନ୍ତ ବାତ୍ୟାର ମଧ୍ୟ କୌଣସି ପ୍ରତିକାର କରାଯାଇ ପାରିନାହିଁ । ଘନଘନ ମରୁଡ଼ି; ବନ୍ୟା ଓ ବାତ୍ୟା ହେତୁ କୃଷି ଉପରେ ପ୍ରଧାନତଃ ନିର୍ଭର କରୁଥିବା ଓଡ଼ିଶାର ଲୋକମାନେ ଚିରକାଳ ଦରିଦ୍ର ଓ ଅନଗ୍ରସର ରହିଯାଇଛନ୍ତି ।

**୧୯୪୩ ମସିହାର ବାଞ୍ଛାରପୁର ଓ ବରୀ ଅଞ୍ଚଳରେ ବଢ଼ିରେ ମୋର ଅନୁଭୂତି**

୧୯୬୦ ମସିହା ବେଳକୁ ଦେବୀ ନଦୀ କୂଳରେ ବନ୍ଧ ହେବା ହେତୁ ଏବଂ ତାଳଦଣ୍ଡା ଓ ମାଛଗାଁ କେନାଲ ଦ୍ୱାରା ଜଳସେଚନର ସୁବିଧା ହେତୁ ଏବଂ ମାଛଗାଁ ଓ ତାଳଦଣ୍ଡା ରାସ୍ତା ତିଆରି ହେତୁ ଆମ ଜଗତସିଂହପୁର ଓ ତିର୍ତ୍ତୋଲ ଅଞ୍ଚଳ ସୁରକ୍ଷିତ ଏବଂ ଅପେକ୍ଷାକୃତ ସମୃଦ୍ଧ ଅଞ୍ଚଳ ହୋଇଯାଇଥିଲା । ନ'ଅଙ୍କ ଦୁର୍ଭିକ୍ଷ ଓ ଅନେଶତ ସାଲ ବତାସ ଆମ ଅଞ୍ଚଳ ଲୋକଙ୍କର କେବଳ ସ୍ମୃତିରେ ଥିଲା । ମଝିରେ ମଝିରେ ଅବଶ୍ୟ ମରୁଡ଼ି ଏବଂ ବତାସ ହୁଏ ଏବଂ ଦଳେଇଘାଇ ଭାଙ୍ଗି ବଢ଼ି ହେବାର ଆଶଙ୍କା ଥାଏ । ମାତ୍ର ଆମ ପିଲାକାଳରୁ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଆମ ଅଞ୍ଚଳରେ ଆମେ ଦୁର୍ଭିକ୍ଷ ଓ ଉତ୍କଟ ଖାଦ୍ୟାଭାବ ହେତୁ ଜନକ୍ଷୟ ଘଟଣା ଦେଖିନାହୁଁ ।

ଆମ ପିଲାଦିନେ ମୋ ବୋଉ କହୁଥିଲା ଯେ, ବୋହୂ ହୋଇ ଆମ ଘରକୁ ଆସିବା ସମୟରେ ଆମ ଗାଁକୁ ବଢ଼ିପାଣି ଆସୁଥିଲା । ତାହା ୧୮୯୫ ମସିହା ପୂର୍ବର କଥା । ବଢ଼ିବେଳେ ଆମ ଗାଁ ଦାଣ୍ଡରେ ଜଙ୍ଘେରୁ ଅଣ୍ଟାଏ ଯାଏ ପାଣି ହୋଇଯାଏ । ଦୁଇ ତିନ ଦିନ ପରେ ପାଣି ଛାଡ଼ିଯାଏ ଏବଂ ପାଣି ଛାଡ଼ିଲା ବେଳକୁ ଗାଁ ଲୋକ ଗାଁ ଦାଣ୍ଡରୁ ଏବଂ ବିଲରୁ ବହୁ ମାଛ ଧରନ୍ତି । କିନ୍ତୁ ଗାଁରେ ଘରଦ୍ୱାର

ଭାଙ୍ଗିଯିବା କିମ୍ବା ପାଣି ଘେରରେ ଲୋକ ମରିଯିବା କଥା ଯେ କିଛି କହୁ ନ ଥିଲି । ଗାଁରେ ବୋଧହୁଏ ପଚ୍ଛୁଆଣି ଗହ୍ୱରର ପାଣି ପଶୁଥିଲା, ନଈର ସୁଅ ପାଣି ନୁହେଁ । ସେ କଥା ଶୁଣି ଆମ ପିଲାକାଳକୁ ଗାଁ ଦାଣ୍ଡରେ ପାଣି ପଶୁ ନଥିବା ଏବଂ ଆମେ ମାଛମାରିବାର ସୁବିଧାରୁ ବଞ୍ଚିତ ହୋଇଥିବାରୁ ଆମେ ମନଦୁଃଖ କରୁଥିଲୁ ।

ନନା ବଢ଼ି କଥା ନ କହି ୯୯ ସାଲ ବତାସ କଥା ଅନେକଥର କହନ୍ତି । ବତାସରେ କପର ନଡ଼ିଆଗଛ ସବୁ ଭାଙ୍ଗିଗଲା ଏବଂ ବତାସବେଳେ ସେ କପରି ଧାନ ମରେଇ ମଧ୍ୟରେ ଦିନେ ରହିଥିଲେ, ସେ କଥା ସେ ବର୍ଣ୍ଣନା କରନ୍ତି । ସେ ମଧ୍ୟ କହନ୍ତି ତାଙ୍କ ଜନ୍ମ ପୂର୍ବରୁ ତାଙ୍କ ନନା, ମୋ ଜେଜେବାପା, ନ'ଅଙ୍କ ଦୁର୍ଭିକ୍ଷ ବେଳେ କପରି ତାଙ୍କ ସାଙ୍ଗସାଥୀଙ୍କ ସହିତ ଗ୍ରାମର ଡକାୟତଙ୍କଠାରୁ ଅମାରର ଧାନ ଚାଉଳ ଓ ଜନଜପଦ ରକ୍ଷା କରିବା ପାଇଁ ରାତିରେ ଘର ଜଗୁଥିଲେ । ନନାଙ୍କ ଯୁବକ ଅବସ୍ଥାରେ ଆମ ବାଡ଼ି ପାଖ ଆମ୍ବବଗିଚା କଡ଼ରେ କପରି ମାଛଗାଁ କେନାଲର ଶାଖା କେନାଲ ସବୁ ଖୋଲାହେଲା ତାହା ମଧ୍ୟ ସେ ବର୍ଣ୍ଣନା କରୁଥିଲେ । ଆମ ପିଲାକାଳକୁ କିନ୍ତୁ କେନାଲ ହୋଇ ସାରିଥିଲା ଏବଂ ଆମ ଘରପାଖ ଗହ୍ୱର ବିଲରେ ନାଳପାଣି ମାଡ଼ୁଥିଲା । ଫସଲ ମରୁଡ଼ି ଓ ବାତ୍ୟା ହେତୁ ବର୍ଷେ ବର୍ଷେ କମି ଯାଉଥିଲା ମାତ୍ର ସମ୍ପୂର୍ଣ୍ଣ ନଷ୍ଟ ହୋଇ ଯାଉନଥିଲା । ଆମ ପିଲାକାଳେ ମଧ୍ୟ ବର୍ଷେ ବର୍ଷେ ଦେବୀନଦୀରେ ବଢ଼ି ସମୟରେ ନଈବନ୍ଧ ପାଖ ଗାଁରୁ କେତେକ ଲୋକ ଗାଈ ବଳଦ ଧରି ଆମ ଗାଁରେ ତାଙ୍କ ବନ୍ଧୁଘରକୁ ଆସନ୍ତି । କହନ୍ତି ଦଲେଇଘାଇ ଟଲମଟଳ । ବନ୍ଧରେ ଘଲଆ ପଡ଼ିଛି । ବାଲିବସ୍ତା ପକାଯାଉଛି । ବନ୍ଧ ଭାଙ୍ଗିବା ଭୟରେ ସେମାନେ ଆମ ଗାଁକୁ ପଳାଇ ଆସିଛନ୍ତି । ଦଲେଇଘାଇ କିନ୍ତୁ ଆମ ପିଲାକାଳରୁ ୧୯୫୫ ମସିହା ପର୍ଯ୍ୟନ୍ତ କେବେ ଭାଙ୍ଗି ନଥିଲା । ଦଲେଇଘାଇ କେଉଁଠି ଏବଂ ତାହା ଭାଙ୍ଗିଲେ ଆମ ଗାଁର କପରି କ୍ଷତି ହେବ, ସେ ବିଷୟରେ ଆମର କିଛି ଧାରଣା ନଥିଲା କିମ୍ବା ସେଥିପାଇଁ ଆମ ଗାଁ ଲୋକଙ୍କର କୌଣସି ଚିନ୍ତା ନଥିଲା ।

୧୯୩୨ ମସିହାଠାରୁ ୧୯୪୦ ମସିହା ମଧ୍ୟରେ ଆମେ ଯେତେବେଳେ କଟକର ସ୍କୁଲ କଲେଜରେ ପଢ଼ୁଥିଲୁ, ସେତେବେଳେ ପ୍ରାୟ ପ୍ରତିବର୍ଷ ଶ୍ରାବଣ ପୂର୍ଣ୍ଣିମା ବେଳକୁ କାଠଯୋଡ଼ି ନଈପାଣି ପଥରବନ୍ଧ କଡ଼ରେ ବହୁ ଉପରକୁ ଉଠି ଆସେ । କଟେଣି ପାଖରେ ନଈପାଣି ୨୪—୨୬ ଫୁଟ ଉଠିଲେ ବଡ଼ ବଢ଼ି ହେଲାବୋଲି ସମସ୍ତେ ଆଶଙ୍କା କରନ୍ତି । ସେତେବେଳେ କଟକର ହଜାର ହଜାର ଲୋକ ନଦୀ ବନ୍ଧରେ ଠିଆ ହୋଇ ପାଣିରେ ପୂର୍ଣ୍ଣ ହୋଇଥିବା ବଢ଼ିଲା ନଈର ସ୍ରୋତ ଦେଖନ୍ତି । ବର୍ଷେ ବର୍ଷେ ନଈବନ୍ଧ ଉପରୁ ନଈପାଣିକୁ ହାତ ପାଏ । ସେ

ସମସ୍ତରେ ନଈକୂଳେ ଗୋଟିଏ ଯାତ୍ରା ହେଲପରି ଲଗେ । କେତେକ ଲୋକ ନଈବଢ଼ି ଗୀତ ଛପାଇ ବିକନ୍ତି । ଭଜା ଚନାବାଦାମର ଖୁବ୍ ବିକା କିଣା ହୁଏ । ଲୋକମାନେ ନଈବଢ଼ି ଦେଖି ମଉଜ କରନ୍ତି । ଯଦିଓ ନଈପାଣି ବାଂଧ ତଳ ରାସ୍ତାଠାରୁ ଚାରି ପାଞ୍ଚଫୁଟ ଉପରେ ଥାଏ, ସହରରେ ପାଣି ପଶିଯିବ ବୋଲି ଲୋକମାନେ ଭୟ କରନ୍ତି ନାହିଁ । ସମସ୍ତେ ଜାଣନ୍ତି ପୂର୍ବପୁରୁଷ ନିର୍ମିତ ପଥରବାଂଧ ନଥିଲେ କଟକ ସହର ନ ଥାନ୍ତା । ସମସ୍ତେ ମଧ୍ୟ ଆଶ୍ୱସ୍ତ ହୋଇଥାନ୍ତି ଯେ, କଟକରେ ପାଣି ପଶିଲା ପୂର୍ବରୁ ନଈର ତଳମୁଣ୍ଡରେ ବାଂଧବାଡ଼ ଭାଙ୍ଗିଯିବ ଏବଂ ପାଣି ସେହିଆଡ଼େ ଚାଲିଯିବ । କେତେକ ଲୋକ ମଧ୍ୟ କହନ୍ତି ସରକାର କଟକ ସହରରେ ପାଣି ପଶିବାକୁ ଦେବେ ନାହିଁ । ପାଣି ପଶିବା ପୂର୍ବରୁ ସରକାରୀ ଲୋକ ତଳମୁଣ୍ଡରେ ନଈବାଂଧ କାଟି ଦେବେ । ଏ କଥା ସତକି ନାହିଁ ଆମେ ଜାଣି ନାହୁଁ । ମାତ୍ର ବାଂଶ ଶତାବ୍ଦୀରେ କଟକ ସହରରେ ବଢ଼ିପାଣି କେବେ ପଶି ନାହିଁ ବୋଲି ଆମେ ଅଭିଜ୍ଞତାରୁ ଜାଣିଛୁ । ବଢ଼ିର କରାଳ ରୂପ ଏବଂ ସେଥିରେ ଲକ୍ଷ ଲକ୍ଷ ଲୋକଙ୍କ ଦୁର୍ଦ୍ଦଶା ଆମେ କେନାଲ ଅଞ୍ଚଳ ଏବଂ କଟକ ସହରରେ ରହିବା ଲୋକ ଅନୁଭବ କରି ନଥିଲୁ । କଟକରେ ପଥର ବାଂଧ ଉପରୁ ନଈବଢ଼ି ଦେଖିବା ଆମପାଇଁ ଗୋଟିଏ ମଉଜ ବ୍ୟାପାର ଥିଲା ।

ବଢ଼ିର ପ୍ରକୃତ ରୂପ ମୁଁ ଦେଖିଲି ୧୯୪୩ ମସିହାରେ । ସେ ବର୍ଷ ଅଗଷ୍ଟ ୨୧ ତାରିଖରେ ମୁଁ ଯାଜପୁର ସବ୍‌ଡିଭିଜନରେ ଯୋଗାଣ ବିଭାଗରେ ଜଣେ ସୁପରଭାଇଜର ହିସାବରେ ପ୍ରଥମେ ଚାକିରିରେ ଯୋଗଦେଲି । ସେତେ-ବେଳେ ଯୁଦ୍ଧ ସମୟ । ସୋମନାଥ ମହାପାତ୍ର ଯେ କି ପରବର୍ତ୍ତୀ କାଳରେ ଓଡ଼ିଶାର ମୁଖ୍ୟ ଶାସନ ସଚିବ ପଦବୀ ପର୍ଯ୍ୟନ୍ତ ଉଠିଥିଲେ, ସେତେବେଳେ ଯାଜପୁରର ଏସ୍.ଡି.ଓ. ଥାଆନ୍ତି । ମୁଁ ଚାକିରିରେ ଯୋଗ ଦେଲାବେଳକୁ ଯାଜପୁରର ବାଞ୍ଛାରପୁର, ବରି ପ୍ରଭୃତି ଅଞ୍ଚଳରେ ବଡ଼ବଢ଼ି ହୋଇଥାଏ ଏବଂ ବାଞ୍ଛାରପୁର ପାଖ କଲ୍ୟାଣପୁର ଗାଁ ପାଖରେ ଖରସୁଆଁ ନଈର ବାଂଧ ଭାଙ୍ଗିଯାଇ ଥାଏ । ଚାକିରିରେ ଯୋଗ ଦେବାର ପରଦିନ ଏସ୍.ଡି.ଓ. ମୋତେ ତାଙ୍କ ସଙ୍ଗରେ ବାଞ୍ଛାରପୁର ଯିବାକୁ କହିଲେ ଏବଂ ଯାଜପୁରଠାରୁ ମୁଁ ତାଙ୍କ ସଙ୍ଗରେ ଟାଙ୍ଗାରେ ବାଞ୍ଛାରପୁର ଡାକବଙ୍ଗଳା ପର୍ଯ୍ୟନ୍ତ ଗଲି । ଯାଜପୁରଠାରୁ ବାଞ୍ଛାରପୁର ପର୍ଯ୍ୟନ୍ତ ସେତେବେଳେ ଗୋଟିଏ କଚ୍ଚା ରାସ୍ତା ଥାଏ ଏବଂ ସେ ରାସ୍ତା ପାଣିରେ ବୁଡ଼ି ନଥାଏ । କିନ୍ତୁ ସେ ରାସ୍ତା ଏପରି ଚକଟା କାଦୁଅରେ ପୂର୍ଣ୍ଣ ହୋଇଥାଏ ଯେ, ବଳଦଗାଡ଼ି ବ୍ୟତୀତ ଅନ୍ୟ କୌଣସି ଯାନରେ ସେଥିରେ ଯିବା ସମ୍ଭବ ନଥିଲା ।

ଆମ୍ଭେମାନେ ପ୍ରାୟ ଦଶ ଘଣ୍ଟାରେ ବାଷ୍ଠାରପୁର ଡାକ ବଙ୍ଗଳା କଡ଼ରେ ଡଙ୍ଗାରୁ ଓହ୍ଲାଇଲୁ । ଡାକବଙ୍ଗଳାଟା ନଦୀବନ୍ଧ ଉପରେ । ଡଙ୍ଗାରୁ ଓହ୍ଲାଇ ଡାକବଙ୍ଗଳା ହତାକୁଯାଇ ମୁଁ ଚାରିଆଡ଼କୁ ଅନାଇଲି । ଗୋଟିଏ ପାଖରେ ନଦୀବନ୍ଧ ତଳେ ବହୁ ଦୂରରେ ବାଷ୍ଠାରପୁରର କର୍ମଚାରୀ ଏବଂ ବାଷ୍ଠାରପୁର ଗାଁର ବସ୍ତି । ଅନ୍ୟ ପାଖରେ ଆଖି ପାଇଲାପାଏ ଯେଉଁ ଆଡ଼କୁ ଚାହିଁଲେ କେବଳ ପାଣି ଦେଖା-ଯାଉଥାଏ । ସେ ପାଣି ନଦୀ ସଙ୍ଗରେ ମିଶିକରି ଥାଏ ଏବଂ ତା ମଧ୍ୟରେ ଘର କି ଗଛ ବା ଧାନ କିଆରି କିଛି ଦେଖାଯାଉ ନଥାଏ । କେବଳ ଦେଖାଯାଉଥାଏ ଦିଗନ୍ତ ବିସ୍ତାରୀ ଲହରହୀନ ସମୁଦ୍ର ପରି ଗୋଳିଆ ପାଣି । ଏସ୍.ଡି.ଓ. ସେ ଦିନ ସେଠାକୁ ଯିବେ ବୋଲି ଆଗରୁ କାର୍ଯ୍ୟକ୍ରମ ବିଭିନ୍ନ ବିଭାଗର କର୍ମଚାରୀମାନଙ୍କୁ ଦିଆଯାଇଥିଲା । ବାଷ୍ଠାରପୁର ଛକରେ ରାଜସ୍ୱ ବିଭାଗ ବିଶ୍ରାମାଗାରରେ ଥାନାର, ରାଜସ୍ୱ ବିଭାଗର କର୍ମଚାରୀମାନେ ଏବଂ ଡକାହୋଇ ଆସିଥିବା ବିଭିନ୍ନ ଗ୍ରାମର ବହୁ ବଡ଼ ଚାଷୀ ଅପେକ୍ଷା କରି ବସିଥିଲେ । ଆମ୍ଭେମାନେ ସଙ୍ଗେ ସଙ୍ଗେ ସେଠକୁ ଗଲୁ । ଗଲା-ବେଳେ ମୋ ସଙ୍ଗରେ ଯାଇଥିବା ପିଅନଟିକୁ ଡଙ୍ଗାରୁ ମୋର ବିଛଣାପତ୍ର ଡାକବଙ୍ଗଳା ବାରନ୍ଦାରେ ରଖିବାକୁ କହିଦେଇ ଏସ୍.ଡି.ଓ.ଙ୍କ ସଙ୍ଗରେ ଗଲି ।

ରାଜସ୍ୱ ବିଭାଗ ବିଶ୍ରାମାଗାରରେ ବହୁଲୋକ ଜମା ହୋଇଥିଲେ । ଏସ୍.ଡି.ଓ. ସ୍ଥାନୀୟ ଅଫିସରଙ୍କଠାରୁ ବଡ଼ି କଥା ବୁଝିଲେ ଏବଂ ଚକଲା କାନନ୍‌ଗୋ ତାଲିକା ପ୍ରସ୍ତୁତ କରି ଡାକଥିବା ବିଭିନ୍ନ ଗ୍ରାମର ଅଧିକ ଜାଣିଥିବା ପ୍ରତ୍ୟେକ ଚାଷୀ ସହିତ କଥାବାର୍ତ୍ତା କରି କିଏ କେତେ ଧାନ ବର୍ଣ୍ଣି କରିବ ସ୍ଥିର କରିଦେଲେ । ଚାଷୀମାନେ ଡରରେ ଏସ୍ ଡି.ଓ.ଙ୍କ କଥାରେ ରାଜି ହୋଇଗଲେ । ଯିଏ ଆପତ୍ତି କଲେ ତାଙ୍କୁ ଏସ୍.ଡି.ଓ. ରାଗିକରି ଗାଳି ଦେଲେ । ଧାନ ସବୁ ଆସି ମାସଡ଼ା ଗ୍ରାମର ବାସିନ୍ଦା ଯାଜପୁରର ଓକିଲ ଓ ସରକାରୀ ପର୍‌ଚେଜିଙ୍ଗ୍ ଏଜେଣ୍ଟ ହୋଇଥିବା କୃଷ୍ଣବିହାରୀ ମିଶ୍ରଙ୍କ ଅମାରରେ ରହିବା କଥା ସ୍ଥିର ହେଲା । ସେଠାରୁ ଅଭାବଗ୍ରସ୍ତ ଲୋକମାନେ ନିର୍ଦ୍ଦିଷ୍ଟ ପରିମାଣର ଧାନ କିଣି ନେବାର ମଧ୍ୟ ସ୍ଥିର ହେଲା । ଦୁର୍ଭିକ୍ଷରେ ଯାଜପୁରଠାରୁ ଡଙ୍ଗାରେ ଚାଉଳ ଆସି ବାଷ୍ଠାରପୁରଠାରେ ରହିବ ଏବଂ ବନ୍ୟା ଦୁର୍ଗତ ଗାଁମାନଙ୍କରେ ଲୋକମାନଙ୍କ ମଧ୍ୟରେ ଅଳ୍ପ ଅଳ୍ପ ପରିମାଣରେ ବର୍ଣ୍ଣି ହେବା ସ୍ଥିର ହେଲା । ଏସ୍.ଡି.ଓ. ମୋତେ ଡାକି କହିଲେ "ବାବୁ ତୁମର ଏହି ସବୁ କାମ । ଧାନ ଚାଷୀମାନଙ୍କଠାରୁ ଆଣି କୃଷ୍ଣବାବୁଙ୍କ ଅମାରରେ ରଖିବ ଏବଂ ସେଠାରେ ବର୍ଣ୍ଣି ବ୍ୟବସ୍ଥା କରିବ ଏବଂ ବାଷ୍ଠାରପୁରଠାରୁ ଡଙ୍ଗାରେ ଚାଉଳ ନେଇ ବିଭିନ୍ନ ବନ୍ୟାଗ୍ରସ୍ତ ଗ୍ରାମରେ ବନ୍ୟାପ୍ରପୀଡ଼ିତ ଦରିଦ୍ର ଲୋକଙ୍କୁ ଅଳ୍ପ ଅଳ୍ପ ପରିମାଣରେ ବର୍ଣ୍ଣି କରାଇବ ।" କଥାଟା ସହଜରେ

ସମାଧାନ ହୋଇଗଲା ବୋଲି ଏସ୍.ଡି.ଓ. ଭାବିଲେ । ଚାଷୀ ଓ କର୍ମଚାରୀମାନଙ୍କ ସହିତ ଆଲୋଚନା କରୁ କରୁ ରାତି ଏଗାରଟା ବାଜିଗଲା । ଏଗାରଟା ବେଳକୁ ଡାକବଙ୍ଗଳାକୁ ଫେରିଲା ବେଳକୁ ଏସ୍.ଡି.ଓ. ମୋତେ ପଚାରିଲେ "ବାବୁ ତୁମେ କେଉଁଠି ରହିବ ?" ମୁଁ ତା ପୂର୍ବଦିନ ଚାକିରିରେ ଯାଜପୁରଠାରେ ଯୋଗ ଦେଇଥିଲି ଏବଂ ଆମ ଗାଁ ଲୋକ ଯାଜପୁରଠାରେ ଥିବା ଡାକ୍ତରଙ୍କ ଘରେ ଓହ୍ଲାଇଥିଲି । ଯାଜପୁର ଯିବା ମୋର ପ୍ରଥମ ଏବଂ ପରଦିନ ଏସ୍.ଡି.ଓ.ଙ୍କ ସଙ୍ଗେ ବିଞ୍ଝାରପୁର ଯିବା ମଧ୍ୟ ପ୍ରଥମ । ଯାଜପୁରଠାରେ କିମ୍ବା ବିଞ୍ଝାରପୁରରେ କୌଣସି ସ୍ଥାନ ବା ଲୋକ ସଙ୍ଗରେ ମୋର ପରିଚୟ ନଥିଲା । ମୁଁ ଦିନ ତିନଟା ବେଳେ ଡଙ୍ଗାରୁ ଓହ୍ଲାଇ ରାଜସ୍ୱ ବିଭାଗ ବିଶ୍ରାମାଗାରରେ ହେଉଥିବା ସଭାକୁ ଆସିଥିଲି । ବିଞ୍ଝାରପୁର ଆସିବାବେଳେ ଡାକ୍ତରଙ୍କ ଘରେ ସକାଳ ଦଶଟା ବେଳେ ଯାହା ଖାଇଥିଲି ।

ମୁଁ ଏସ୍.ଡି.ଓ.ଙ୍କୁ କହିଲି, "ମୁଁ କୌଣସି ସ୍ଥାନରେ ରହିବାର ସ୍ଥିର କରିନାହିଁ । ଡାକବଙ୍ଗଳା ବାରନ୍ଦାରେ ମୋର ବିଛଣାଟା ଓହ୍ଲାଇ ଦେଇ ଆସିଛି ।" ସେ କହିଲେ ହଉ, ଆସ । ଡାକବଙ୍ଗଳାର କୌଣସି ଗୋଟିଏ କଡ଼ ରୁମ୍‌ରେ ରହିଯିବ । ରାତି ସାଢ଼େ ଏଗାରଟା ବେଳକୁ ଡାକବଙ୍ଗଳାକୁ ଫେରିଲି । ସେତେବେଳକୁ ମୋର ପିଅନ ଡାକବଙ୍ଗଳାର ଗୋଟିଏ କଡ଼ ରୁମ୍‌ରେ ଗୋଟିଏ ଖଟ ଉପରେ ମୋର ବିଛଣା ପକାଇ ଦେଇଥିଲା । ଯାଜପୁରେ ଯେଉଁ ଡାକ୍ତରଙ୍କ ଘରେ ଓହ୍ଲାଇଥିଲି ସେ ଆମର ଆତ୍ମୀୟ ଲୋକ । ବିଞ୍ଝାରପୁର ଆସିବାବେଳେ ତାଙ୍କ ସ୍ତ୍ରୀ ଗୋଟିଏ ଜଳଖିଆ ଡବାରେ କେତେଖଣ୍ଡି କାକରା ଏବଂ ନାନମାନ ପିଠା ଜଳଖିଆ କରିବାକୁ ଦେଇଥିଲେ । କଣ ଦେଇଥିଲେ ମୁଁ ଦେଖି ନଥିଲି । ରାତି ସାଢ଼େ ଏଗାରଟାରେ ଡବା ଖୋଲି ତାକୁ ଦେଖିଲି ଏବଂ ତାହାକୁ ଖାଇ ଶୋଇ ପଡ଼ିଲି । ଏହି ହେଲା ମୋର ଏମ୍.ଏ. ପାସ୍ ପରେ ଯୋଗାଣ ବିଭାଗରେ ଚାକିରି ଆରମ୍ଭ ।

ଏସ୍. ଡି. ଓ ପରଦିନ ଯାଜପୁର ଫେରି ଆସିଲେ । ମୁଁ ବିଞ୍ଝାରପୁରଠାରେ ମୋତେ ଦିଆ ଯାଇଥିବା କାମ କରିବାକୁ ଅଢ଼େଇମାସରୁ ଅଧିକକାଳ ରାଜସ୍ୱ ବିଭାଗର ସେହି ବିଶ୍ରାମାଗାରରେ ରହିଗଲି । ଯେଉଁ କାମଟା ମୋତେ ଦିଆ-ଯାଇଥିଲା, ଏସ୍. ଡି. ଓ ସିନା ତାହା ସହଜ ଭାବିଲେ, କିନ୍ତୁ ବାସ୍ତବ କ୍ଷେତ୍ରରେ ତାହା ସହଜ ନ ଥିଲା । ସେ ବର୍ଷ ବିଞ୍ଝାରପୁରଠାରୁ ଦୁଇ ତିନମାଇଲ ଦୂର କଲ୍ୟାଣପୁର ପାଖରେ ନଈବନ୍ଧ ଭାଙ୍ଗିଥିଲା । କଲ୍ୟାଣପୁର ଓ ତା'ର ଆଖପାଖ ଗାଁ

ସାଧାରଣତଃ ଧୋଇଆ ଅଞ୍ଚଳ ନୁହେଁ । ନଦୀବନ୍ଧ ଏପାରିର ଗାଁ କିନ୍ତୁ ବନ୍ଧ ଭାଙ୍ଗିଯିବାରୁ ସେ ଗାଁମାନଙ୍କରେ ପାଣି ପଶି ସ୍ରୋତରେ ଘରଦ୍ୱାର ଭାଙ୍ଗି ଯାଇଥିଲା ଏବଂ ଲୋକମାନେ ବିଶେଷ କ୍ଷତିଗ୍ରସ୍ତ ହୋଇଥିଲେ । ବଢ଼ି ବିପଦ ପାଇଁ ସେମାନେ ପ୍ରସ୍ତୁତ ନ ଥିଲେ । ନଈବନ୍ଧର ଆରପାଖରେ ସବୁ ଅଞ୍ଚଳରେ ପ୍ରତିବର୍ଷ ବଢ଼ି ହୁଏ । ସବୁ ବର୍ଷ ଲୋକମାନଙ୍କ ଘରଦ୍ୱାର ଭାଙ୍ଗିଯାଏ ଏବଂ ଗୋରୁ ଗାଈ ଭାସିଯାନ୍ତି ଏବଂ ସେମାନେ ଦୁଇ ତିନିମାସ ଅତି କଷ୍ଟ ଭୋଗ କରନ୍ତି । ସେମାନେ ବଢ଼ିପାଇଁ ବିଶେଷ ଭାବରେ କିଛି ପ୍ରସ୍ତୁତ ନ ଥାନ୍ତି । ମାତ୍ର କେବଳ ସେ କଷ୍ଟ ସହିବାକୁ ସେମାନେ ତାଙ୍କ ପିଲାଦିନୁ ଅଭ୍ୟସ୍ତ । ଅଧିକାଂଶ ପରିବାରର ଘର କାଠ ଖୁମ୍ବ, ବାଉଁଶରେ ଝାଟିମାଟି କାନ୍ଥ ଏବଂ ଛଣ ଛପର ଚାଳ, ବଢ଼ିବେଳେ କାନ୍ଥ ଅଧା ବା ଶେଷ ପର୍ଯ୍ୟନ୍ତ ଘରେ ପାଣି ଠିଆ ହୋଇଯାଏ । ଘରର ସବୁ ଆସବାବ୍‌ପତ୍ର ଏବଂ ସଞ୍ଚିତ ଧାନ ଚାଉଳ ପାଣିରେ ବୁଡ଼ିଯାଏ । ବଡ଼ ବଢ଼ି ହେଲେ ଚାଳ ଭାଙ୍ଗି ଭାସିଯାଏ । ବଢ଼ିବେଳେ ଲୋକମାନେ ପିଲା ଛୁଆ ଓ ଗୋରୁ ଗାଈ ଧରି ନଦୀବନ୍ଧ ଉପରକୁ କିମ୍ବା ଅନ୍ୟ ଉଚ୍ଚ ସ୍ଥାନକୁ ଆଶ୍ରୟ ପାଇଁ ଚାଲିଯାଆନ୍ତି । ପାଣି ଛାଡ଼ିଗଲେ ଘରକୁ ଫେରନ୍ତି । ଘର ମରାମତି କରନ୍ତି । ଘରର ଚଟାଣ, ଅଗଣା, ବାଡ଼, ବଗିଚା ଶୁଖୁ ଶୁଖୁ କାର୍ତ୍ତିକ ମାର୍ଗଶିର ହୋଇଯାଏ । ଓଦା ଘରେ ଏବଂ ପାଣି ଘେରରେ ରହିବା ହେତୁ ପରିବାରର ସମସ୍ତଙ୍କୁ ଶର୍ଦ୍ଦି, କାଶ, ଜର ହୋଇଯାଏ । ମହାମାରୀ ହଇଜା ପ୍ରକୋପ ହେଲେ ବହୁଲୋକ ମରିଯାନ୍ତି ।

ତା'ପରେ ପୁଣି ଅନେକ ଅଞ୍ଚଳରେ ବନ୍ୟା ଜଳରେ ବାଲିଚଢ଼ି ଧାନଜମି ନଷ୍ଟ ହୋଇଯାଏ । କେତେ ଲୋକଙ୍କର ଜମି ଘାଇରେ ଯାଏ । ଭାଙ୍ଗତିଗାଡ଼ି ପରି ନଦୀର ନୂତନ ଶାଖା ହୋଇଯାଏ । ଜମି ପାଇଁ ଖଜଣା ଗଣନ୍ତି ମାତ୍ର ଜମି ନଈ ଘାଇରେ ରହିଯାଏ । ଅନେକ ଲୋକଙ୍କର ଘରବାଡ଼ି ଆସ୍ତେ ଆସ୍ତେ ନଦୀ ଗର୍ଭରେ ଲୀନ ହୋଇଯାଏ । ଶେଷ ଅବସ୍ଥାରେ ପରିବାର ଅନ୍ୟ ସ୍ଥାନକୁ ଯିବାକୁ ବାଧ୍ୟ ହୁଏ । ଅଧିକାଂଶ ଲୋକଙ୍କ ଘରେ ବର୍ଷକୁ ବର୍ଷ ସଞ୍ଚିତ ଆସବାବ୍ ପତ୍ର କିଛି ରହେ ନାହିଁ । ବର୍ଷକୁ ବର୍ଷ ବଢ଼ିରେ ଘରର ଆସବାବ୍‌ପତ୍ର ସବୁ ନଷ୍ଟ ହୋଇଯାଏ । ଅଭାବଗ୍ରସ୍ତ ହୋଇ ଲୋକମାନେ ସବୁବେଳେ ଧାର କରଜରେ ବୁଡ଼ି ରହିଥାନ୍ତି । ଏଇଟା ବନ୍ୟାଞ୍ଚଳରେ ସାଧାରଣ ଜୀବନ । ଅନେକ ସମୟରେ ପ୍ରଶ୍ନ ହୁଏ ଏପରି ଅବସ୍ଥାରେ ରହିଛନ୍ତି କିପରି ? ବା ଏପରି ସ୍ଥାନରେ ରହିଛନ୍ତି କାହିଁକି ? ମାତ୍ର କୁଆଡ଼େ ଯିବେ ? ଗୋଟିଏ ଦୁଇଟି ପରିବାର କିମ୍ବା ଗୋଟିଏ ଦୁଇଟି ଗାଁ ହୋଇନାହାନ୍ତି । ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କର ବଢ଼ି ଅଞ୍ଚଳ ବିସ୍ତୃତ ଅଞ୍ଚଳ ଏବଂ ଜନ ସଂଖ୍ୟାର ଘନତା ଖୁବ୍ ବେଶି । ସେହିଠାରେ ଲୋକ-

ମାନଙ୍କ ଜନ୍ମ, ଜୀବନଯାପନ, ବନ୍ଧୁବାନ୍ଧବ ଓ ଭିଟାମାଟି, ବାପ ଅଜା କାଳର ଘରବାଡ଼ି ଓ ଜମି । ସେହିଠାରେ ଜନ୍ମ । ସେହିଠାରେ ମୃତ୍ୟୁ । ଅନ୍ୟଆଡ଼େ ଯିବାର ପ୍ରଶ୍ନ ନାହିଁ ?

ଏସ୍. ଡ଼ି. ଓ ଫେରିଗଲା ପରେ ମୁଁ ମୋର କାମ ଆରମ୍ଭ କଲାବେଳକୁ ଜାଣିଲି ଯେ, ଧାନ ସଂଗ୍ରହ କରିବାକୁ ଥିବା ଗାଁ ମାନ ଏବଂ ଧାନ ମହଜୁଦ୍ କରି ରଖିବା ଗାଁ ମଧ୍ୟରେ କୌଣସି ବାଟ ନାହିଁ । ଚାରିଆଡ଼େ ପାଣି । ବିଲମାନଙ୍କରେ ଚାରି ପାଞ୍ଚ ଫୁଟ ପାଣି ଏବଂ ଗାଁ ଦାଣ୍ଡମାନଙ୍କରେ ଜଙ୍ଘେ ପାଣି । ଗୋଟାଏ ଗାଁରୁ ଅନ୍ୟ ଗାଁକୁ ଲୋକମାନେ ଡଙ୍ଗାରେ ଯିବା ଆସିବା କରୁଥାନ୍ତି ଏବଂ ଗାଁ ଭିତରେ ଜଙ୍ଘେ ପାଣିରେ ପଶି ଚାଲି କରି ଯାଉଥାନ୍ତି । ଦ୍ୱିତୀୟରେ ଯେଉଁ ଲୋକମାନଙ୍କ ଘରୁ ଧାନ ସଂଗ୍ରହ ହେବ ବୋଲି କାନଗୋଇ ତାଲିକା ଦେଇଥିଲେ ଏବଂ ସେମାନେ ଏସ୍. ଡ଼ି. ଓ. ଙ୍କ ଆଗରେ ହଁ ଭରିଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କ ଘରେ ପ୍ରକୃତରେ ଧାନ ନ ଥିଲା । ସେମାନେ ଭୟରେ ଏସ୍. ଡ଼ି. ଓ. ଙ୍କ ପାଖରେ ହଁ ଭରିଥିଲେ, କାରଣ ଧାନ ନାହିଁ ବୋଲି କହିଲେ ସେ ତାଙ୍କୁ ଅତି କର୍କଶ ଭାଷାରେ ଗାଳି ଦେଇଥାନ୍ତେ । ତୃତୀୟରେ ଯେଉଁ ଅଳ୍ପ ସଂଖ୍ୟକ ପରିବାରରେ ଧାନ ଥିଲା, ସେମାନେ ମୋଟେ ଧାନ ନାହିଁ ବୋଲି କହିଲେ । ଗୋଟିଏ ଦୁଇଟି ଏପରି ପରିବାରର ଯୁବକମାନେ ଆମକୁ ଗାଳିଦେଲେ ଏବଂ ତାଙ୍କ ଘରେ ପଶିବାକୁ ବାଧାଦେଲେ, ଏପରି ପରିବାରର ଦୁଇ ଚାରି ଜଣଙ୍କୁ ଥାନା ଅଫିସର ସରକାରୀ କର୍ମଚାରୀଙ୍କ କାର୍ଯ୍ୟରେ ବାଧା ଦେବା ହେତୁ ଗିରଫ କଲେ । ମୋ' ହାତରେ ମାଜିଷ୍ଟ୍ରେଟଙ୍କ କ୍ଷମତା ନ ଥିଲା । ସେଥିପାଇଁ ଯାଜପୁରଠାରୁ ଏସ୍. ଡ଼ି. ଓ. ଙ୍କ ଠାରୁ ଆଦେଶ ଆଣିବାକୁ ପଡ଼ିଲା । ଏସବୁ ଅସୁବିଧା ହେତୁ ଅତି ଅଳ୍ପ ପରିମାଣରେ ଧାନ ସଂଗ୍ରହ କରାଯାଇ ପାରିଲା । ଯେତେ ସଂଗ୍ରହ କରିବାର ହିସାବ କରାଯାଇଥିଲା ତାର ଶତକଡ଼ା ଦଶଭାଗ ସୁଦ୍ଧା ସଂଗ୍ରହ ହୋଇ ପାରିଲାନାହିଁ । ଏସ୍. ଡ଼ି. ଓ. ମୋ' ଉପରେ ଭାରି ବିରକ୍ତ ହେଲେ । କିନ୍ତୁ ମୋର ଶତଚେଷ୍ଟା ସତ୍ତ୍ୱେ ସେ କାମ ଆଂଶିକ ଭାବରେ ମଧ୍ୟ ସଫଳ ହୋଇ ପାରିଲା ନାହିଁ ।

ଦ୍ୱିତୀୟ କାମ ଗାଁକୁ ଗାଁ ଚାଉଳ ନେଇ ଅଭାବଗ୍ରସ୍ତ ଲୋକଙ୍କୁ ବିକିବା କାମରେ ବିଶେଷ କିଛି ଅସୁବିଧା ହେଲା ନାହିଁ । ଯାଜପୁରଠାରୁ ବିଞ୍ଝାରପୁରଠାରେ ଥିବା ଗୋଦାମକୁ ବଡ଼ ନାଆରେ କେତେଶହ ବସ୍ତା ଚାଉଳ ଆସିଲା । ମୁଁ ଆଉ ଦୁଇ ଚାରି ଜଣ କର୍ମଚାରୀଙ୍କ ସହିତ ବିଭିନ୍ନ ଗାଁକୁ ଡଙ୍ଗାରେ ଦୁଇ ଚାରି ବସ୍ତା

ଲେଖାଏଁ ଚାଉଳ ନେଇ ଲୋକମାନଙ୍କୁ ବିକାଇଲୁ । ବହୁ ଲୋକ ଚାଉଳ ନେବାକୁ ଆସିଲେ । ପ୍ରତ୍ୟେକ ଲୋକକୁ ଦୁଇ ଟଙ୍କା-ସେରରୁ ଅଧିକ ଚାଉଳ ବିକ୍ରି କରାହେଉ ନ ଥିଲା । ପ୍ରତିଦିନ ସକାଳ ଆଠ ଘଣ୍ଟା ବେଳକୁ ତଙ୍ଗୀରେ ଆମେ ଦୁଇ ତିନିଜଣ କର୍ମକର୍ତ୍ତା ଏବଂ ସଂପୃକ୍ତ ଗ୍ରାମରୁ ଆସିଥିବା ବ୍ୟକ୍ତି ଯାଉଁ । ବିଞ୍ଝାରପୁରକୁ ଫେରୁ ଫେରୁ ରାତି ଦଶଟା ହୋଇଯାଏ । କିନ୍ତୁ ଏ ବିକ୍ରି ଯେ ସମୁଦ୍ରକୁ ଶଙ୍ଖେ ପଣା ପରି ହେଉଥାଏ ତାହା ଆମେ ଅନୁଭବ କରୁଥାଉ । ଗୋଟିଏ ପରିବାରକୁ ଦିନେ ଦୁଇ ତିନି ସେର ଚାଉଳ ବିକଦେଲେ ତା'ର ଅଭାବ କଣ ବେଶି ଦିନ ପାଇଁ ମେଣ୍ଟିଯିବ କି ? ସେଥିରେ ପୁଣି ବହୁ ଉଚ୍ଚ ଜାତିକ ପରିବାରର ଲୋକ ଭୋକ ଉପବାସରେ ରହୁଥିଲେ ସୁଦ୍ଧା ସମ୍ମାନନାଶ ଭୟରେ ମୋଟେ ଚାଉଳ କିଣିବାକୁ ଆସିଲେ ନାହିଁ । କଲ୍ୟାଣପୁରପରି କେତେ ସ୍ଥାନରେ ଦୁଃସ୍ଥା ବିଧବାମାନଙ୍କ ଘରକୁ ଆମ କର୍ମକର୍ତ୍ତାମାନେ ଚାଉଳ ନେଇ ବିତରଣ କରିଥିଲେ ।

ପୂର୍ବ ବଣ୍ଟ ଅଞ୍ଚଳ ବନ୍ୟା ବିପନ୍ନ ହୋଇଥାଏ । ସେଥିପାଇଁ ଆମକୁ ବଣ୍ଟ ଡାକ ବଙ୍ଗଳାକୁ ଶତାଧିକ ବସ୍ତା ଚାଉଳ ବିକିବା ପାଇଁ ସେଠାରେ ଚାରି ପାଞ୍ଚଦିନ ରହିବାକୁ ହୋଇଥିଲା । ବିଞ୍ଝାରପୁରରୁ ଗୋଟିଏ ବଡ଼ ନାଆରେ ଚାଉଳ ଲଦି ଆମ୍ଭେମାନେ ବଣ୍ଟ ଅଞ୍ଚଳକୁ ଗଲୁ । ରଙ୍ଗେଇ ଘାଟରେ ନାଆ ଲାଗିଲାବେଳକୁ ରାତି ଆଠଟା ଉପରେ ହୋଇ ଯାଇଥାଏ । ନାଆଟା ବଡ଼ ହୋଇଥିବାରୁ ଏକଦମ୍ ଘାଟ ପାଖକୁ ଯାଇପାରିଲା ନାହିଁ । ଆମ୍ଭେମାନେ ତଙ୍ଗୀରୁ ଓହ୍ଲାଇ ଆଣ୍ଠୁଏରୁ ଅଧିକ ପାଣିରେ ପଶି ଗାଁ ଠାକୁର ଘର ପାଖରେ ପହଞ୍ଚିଲୁ । ନଈକୂଳଠାରୁ ଠାକୁର ଘରର ଉଚ୍ଚତା ପ୍ରାୟ ଦୁଇଟା ଡେଙ୍ଗା ତାଳଗଛର ଉଚ୍ଚତା ସଙ୍ଗେ ସମାନ ହେବ । ମୁଁ ନଈକୂଳରୁ ଉପରକୁ ଚାହିଁ ଦେଖୁଥିଲାବେଳେ ଜଣେ ମୋତେ କହିଲା ଯେ, ବର୍ଷେ ବଢ଼ି ବଢ଼ିବେଳେ ଠାକୁରଘର ମଧ୍ୟରେ ପାଣି ପଶିଥିଲା ଏବଂ ସେଥିରୁ ସିଝିଲା ହାଣ୍ଡି ଭାସି ଯାଇଥିଲା ।

ସେ ଦିନ ରାତିରେ ଆମେ ବଣ୍ଟ ଡାକବଙ୍ଗଳା ଯାଏ ଯାଇପାରିଲୁ ନାହିଁ । ସେହି ଗାଁରେ ଜଣକ ମେଲରେ ରାତି କଟାଇଲୁ । ଗାଁ ଦାଣ୍ଡଯାକ ପାଣି । ପରଦିନ ସୁବିଧା ବାଟରେ ଶଗଡ଼ରେ ଚାଉଳ ତଙ୍ଗୀରୁ ଡାକବଙ୍ଗଳାଯାଏ ବୁହାହେଲା । ସେଠାରେ ଚାଉଳ ସବୁ ଚାରି ଛଅଦିନ ମଧ୍ୟରେ ବିକ୍ରି ହୋଇଗଲା । ଲୋକମାନେ ଆସି ସେହି ସ୍ଥାନରୁ ଚାଉଳ କିଣି ନେଇଥିଲେ । ବଣ୍ଟ ଡାକବଙ୍ଗଳା-ଠାରୁ ଗୋପବନ୍ଧୁ ଚୌଧୁରୀଙ୍କ ବଣ୍ଟ ସେବାଶ୍ରମ ବେଶି ଦୂରରେ ନ ଥିଲା । ଆଶ୍ରମ ଉଚ୍ଚା ଜାଗାରେ ଥିଲା ଏବଂ ତାର କୌଣସି ଅଂଶରେ ପାଣି ଜମି ନ ଥିଲା ।

କିନ୍ତୁ ମୁଁ ଯେଉଁଦିନ ଆଶ୍ରମ ଦେଖିବାକୁ ଯାଇଥିଲି, ସେ ଦିନ ଆଶ୍ରମ ପଡ଼ିଆରେ କେବଳ ମାଟି କୁଦମାନ ଥିଲା, ଖଣ୍ଡିଏ ଚୂଲଘର କିମ୍ବା କାଠ ବାଉଁଶ ସୁଦ୍ଧା ନଥିଲା । ତାର ପୂର୍ବବର୍ଷ, ୧୯୪୨ ମସିହା ଅଗଷ୍ଟ ବିପ୍ଳବ ସମୟରେ ପୁଲିସ୍ ଆଶ୍ରମ ପଡ଼ିଆର ସବୁ ଘର ଭାଙ୍ଗି ଦେଇଥିଲେ । ପରେ ୧୯୪୫ ମସିହାରେ ଗୋପବାବୁ ଜେଲ୍‌ରୁ ଖଲାସ ହେଲା ପରେ ବରି ସେବାଶ୍ରମର ପୁନରୁଦ୍ଧାର କରିଥିଲେ । ୧୯୪୩ ମସିହା ଅଗଷ୍ଟ ୨୨ ତାରିଖଠାରୁ ପ୍ରାୟ ଅଢ଼େଇମାସ ସମୟ ମୁଁ ବରି ଓ ବିଞ୍ଝାରପୁର ଅଞ୍ଚଳର ପାଣି ଘେରରେ ଥିବା ବହୁ ଗାଁରେ ଡଙ୍ଗାରେ ବୁଲି ଚାଉଳ ବିକାଇଥିଲି । ବନ୍ୟା ବିପନ୍ନ ଅଞ୍ଚଳ ଦେଖିବା ପାଇଁ ହୃଦୟନାଥ କୁଞ୍ଜୁରୁଙ୍କ ପରି ଭାରତର ବିଭିନ୍ନ ଅଞ୍ଚଳରୁ ଆସିଥିବା ଦେଶସେବୀମାନଙ୍କୁ ବନ୍ୟା ବିଧ୍ୱସ୍ତ ଅଞ୍ଚଳ ସବୁ ବୁଲାଇ ଦେଖାଇଥିଲି । ଅକ୍ଟୋବର ଶେଷ ଓ ନଭେମ୍ବର ମାସ ପ୍ରଥମ ଭାଗ ବେଳକୁ ଗାଁମାନଙ୍କରୁ ପାଣି ଘୁଞ୍ଚି ଆସିଲା ଏବଂ ମୁଁ ଯାଜପୁର ଫେରି ଆସିଲି । ପଚିଶ ବର୍ଷ ପରେ ଆଜକାଲି ଯେତେବେଳେ ବରି, ବିଞ୍ଝାରପୁର, ମହାକାଳପଡ଼ା, ପଟ୍ଟାମୁଣ୍ଡାଇ, ରାଜନଗର ପ୍ରଭୃତି ଅଞ୍ଚଳ ବଢ଼ିପାଣିରେ ବହୁଦିନ ବୁଡ଼ି ରହିଥିବା ସମ୍ବାଦ ଖବରକାଗଜମାନଙ୍କରୁ ପଢ଼ୁଛି, ୧୯୪୩ ମସିହାର ସେହି ଦୃଶ୍ୟ ମୋର ଆଖିଆଗରେ ଭାସି ଉଠୁଛି । କାଳେ କାଳେ ବଢ଼ି ଅଞ୍ଚଳ-ମାନଙ୍କରେ ସେହି ଅବସ୍ଥା ଲାଗି ରହିଛି ।

୧୯୪୩ ମସିହାର ଆଉ ଗୋଟିଏ କଥା ମଧ୍ୟ ଉଲ୍ଲେଖଯୋଗ୍ୟ । ଯୁଦ୍ଧ ମଝି ସମୟ, ସେ ବର୍ଷ ଅବିଭକ୍ତ ବଙ୍ଗ ପ୍ରଦେଶରେ ଓଡ଼ିଶାର ନ'ଅଙ୍କ ଦୁର୍ଭିକ୍ଷ ପରି ଭୀଷଣ ଦୁର୍ଭିକ୍ଷ ହେଲା । ଦକ୍ଷିଣ ପୂର୍ବ ଏସିଆର ଯୁଦ୍ଧର ବିଭିନ୍ନ ଅଞ୍ଚଳକୁ ବଙ୍ଗ ପ୍ରଦେଶରୁ ବହୁ ଚାଉଳ ରପ୍ତାନି ହୋଇଗଲା । ବଙ୍ଗଳାର ବିଭିନ୍ନ ଗୋଦାମ ମାନଙ୍କରେ ରହିଥିବା ଚାଉଳ ଲୋକଙ୍କ ମଧ୍ୟରେ ବାଣ୍ଟି କିମ୍ବା ବିତରଣ ହୋଇ ପାରିଲା ନାହିଁ । ସେଥିରୁ ବହୁ ପରିମାଣ ନଷ୍ଟ ହୋଇଗଲା । ଫଳରେ ବଙ୍ଗଳାର ବିଭିନ୍ନ ଅଞ୍ଚଳରେ ଲୋକମାନେ ପୋକମାଛି ପରି ମରିଗଲେ । ସେ ଦୁର୍ଭିକ୍ଷର କାରଣ ପ୍ରଭୃତି ଅନୁସନ୍ଧାନ କରିବାକୁ ବସିଥିବା କମିସନ୍ ରିପୋର୍ଟ ଦେଇଥିଲେ ଯେ, ସେ ଦୁର୍ଭିକ୍ଷରେ ବଙ୍ଗଳାର ପ୍ରାୟ ୧୫ ଲକ୍ଷ ଲୋକ ଖାଦ୍ୟାଭାବରେ ମରିଯାଇଥିଲେ । ରେଳ ଷ୍ଟେସନମାନଙ୍କରେ ଯାତ୍ରୀମାନେ ଜଳଖିଆ ଖାଇସାରି ଫୋପାଡ଼ି ଦେଇଥିବା ପତ୍ରକୁ ଅସ୍ଥିକଙ୍କାଳସାର ନରନାରୀ ଓ ଶିଶୁ ଚାଟୁଥିବାର ଦୃଶ୍ୟ ନିଜ ଆଖିରେ ଦେଖିଛି ।

ବଙ୍ଗଳାର ସେ ଦୁର୍ଭିକ୍ଷ ଅବସ୍ଥାର ପ୍ରଭାବ ଓଡ଼ିଶାର ଉପକୂଳ ଜିଲ୍ଲାମାନଙ୍କ ଉପରେ ପଡ଼ିଥିଲା । ବିଶେଷତଃ ବାଲେଶ୍ୱର, କଟକ ଏବଂ ପୁରୀ ଜିଲ୍ଲାମାନଙ୍କରେ

ଉତ୍କଟ ଖାଦ୍ୟାଭାବ ଅନୁଭୂତ ହୋଇଥିଲା । ଲୋକମାନେ ଧାନ, ଚାଉଳ କିଣିବାକୁ ପାଇଲେ ନାହିଁ । ସେତେବେଳେ ଆମ ଯୋଗାଣ ବିଭାଗର କର୍ମଚାରୀ ବିଭିନ୍ନ ଗାଁକୁ ଯାଇ ଧାନ ମହଜୁଦ୍ ରଖିଥିବା ପରିବାରମାନଙ୍କର ଧାନ ଅଭାବଗ୍ରସ୍ତ ଲୋକଙ୍କୁ ବିକାଇ ଦେବାକୁ ଜିଲ୍ଲା କଲେକ୍ଟର ଆଦେଶ ଦେଲେ । ଯାଜପୁର ସବ୍‌ଡ଼ିଭିଜନରେ ଏହି କାମ ମୋ ଉପରେ ଓ ମୋର ସହକର୍ମୀମାନଙ୍କ ଉପରେ ପଡ଼ିଲା । ସେତେବେଳେ ବଢ଼ି ଅଞ୍ଚଳରେ ଧାନ କିଛି ନ ଥିଲା । ମାତ୍ର ବନ୍ୟାରୁ ସୁରକ୍ଷିତ ଅଞ୍ଚଳରେ ଧନୀଲୋକଙ୍କ ଘରେ ବହୁ ଧାନ ପ୍ରକୃତରେ ମହଜୁଦ୍ ଥିଲା । ଆମେ ଇଉନିୟନ ପ୍ରେସିଡେଣ୍ଟମାନଙ୍କଠାରୁ ତାଲିକା ସଂଗ୍ରହ କରି ବିଭିନ୍ନ ଗାଁରେ ଧାନ ମହଜୁଦ୍ ରଖିଥିବା ଲୋକଙ୍କ ଘରକୁ ଗଲୁ । ମହଜୁଦ୍ ଧାନ ବିକ୍ରି କରିନେବାକୁ ସେମାନଙ୍କୁ ବାଧ୍ୟକଲୁ । ସେ ଧନୀ ଲୋକମାନେ ସରକାରୀ ଆଦେଶ ଅମାନ୍ୟ କରିବାକୁ ସାହସ କଲେ ନାହିଁ । ଅନେକେ ଆମର ଗୋଡ଼ହାତ ଧରିଲେ ଏବଂ ତାଙ୍କର ପିଲାଛୁଆଙ୍କୁ ଆଣି ଆମ ଗୋଡ଼ତଳେ ପକାଇଲେ । ଆମ୍ଭେମାନେ ସେଥିରେ ବିଚଳିତ ନ ହୋଇ ସେମାନଙ୍କୁ କହିଲୁ, "ଆମର ଉପସ୍ଥିତିରେ ନିର୍ଦ୍ଧାରିତ ଦରରେ ଧାନ ତୁମେ ଲୋକଙ୍କୁ ବିକିଦିଅ ଏବଂ ଧାନବିକ୍ରି ଟଙ୍କା ତୁମେ ନିଜେ ଲୋକମାନଙ୍କଠାରୁ ନିଅ । ଆମର ଉଦ୍ଦେଶ୍ୟ କେବଳ ବିଭିନ୍ନ ଗ୍ରାମରୁ ଅଭାବଗ୍ରସ୍ତ ଲୋକମାନେ ନିର୍ଦ୍ଧାରିତ ଦରରେ ଧାନ କିଣିନିଅନ୍ତୁ ।" ଧାନ ମହଜୁଦ୍ ରଖିଥିବା ଲୋକ ଧାନ ଲୁଚାଇ ପାରିଲେ ନାହିଁ ଏବଂ ତାଙ୍କ ନିଜ ପରିବାର ପାଇଁ କିଛି ଧାନ ରଖି, ବାକି ଧାନ ବିକିବାକୁ ବାଧ୍ୟ ହେଲେ । ମୁଁ ଦେଖିଲି ଯେ, ଆମର ସେ କାମ ଖୁବ୍ ସଫଳ ହେଲା । ପରବର୍ତ୍ତୀ ଫସଲ ଅମଳ ହେବାକୁ ଦୁଇ ତିନିମାସ ଥାଏ । ସେ ସମୟ ଖୁବ୍ ତତ୍ପର ସମୟ ଥିଲା । ଆମେ ବହୁ ପରିମାଣରେ ଗଚ୍ଛିତ ଧାନ ବିତରଣ କରି ଦେବାରୁ ବହୁ ଦରିଦ୍ର ଲୋକ ପ୍ରକୃତରେ ଉପକୃତ ହେଲେ । ଆଜି ମୋର ମନେ ହେଉଛି ନଅଙ୍କ ଦୁର୍ଭିକ୍ଷବେଳେ ଅମଲାମାନେ ଧନୀଲୋକମାନେ ଗଚ୍ଛିତ ଧାନ ଅମାର ଖୋଲିଦେଲେ ଗରିବ ଲୋକମାନେ ବର୍ଷକ ଚଳିଯିବେ ବୋଲି ରେଭେନ୍‌ସା ସାହେବଙ୍କୁ ଯେଉଁ ଖବର ଦେଇଥିଲେ, ତାହା ଯଦି ପ୍ରକୃତ ତଥ୍ୟ ଉପରେ ଆଧାରିତ ହୋଇଥାନ୍ତା ଏବଂ ସରକାର ଧାନ ବିକ୍ରି ବ୍ୟବସ୍ଥା କରିଥାନ୍ତେ ତେବେ ବହୁଲୋକଙ୍କର ପ୍ରାଣରକ୍ଷା ହୋଇ ପାରିଥାନ୍ତା ।

**ବିଲେଇ ଘାଇ ଖର୍ଚ୍ଚିଲା**

ବଢ଼ି ଓ ଖାଦ୍ୟାଭାବ ବିଷୟରେ ୧୯୪୩ ମସିହାରେ ମୋର ଉପରୋକ୍ତ ଅଭିଜ୍ଞତା ହୋଇଥିଲା । ତାପରେ ଶିକ୍ଷା ବିଭାଗରେ ବାରବର୍ଷ ଚାକିରି କରି ଏବଂ

ଲଣ୍ଡନରେ ଅଢ଼େଇବର୍ଷ ରହିବେ ସେ କଥା ପ୍ରାୟ ମୁଁ ଭୁଲି ଯାଇଥିଲି । ପୂର୍ବରୁ ଲେଖିଛି ଯେ, ପିଲାଦିନେ ଆମେ ଦେବୀନଦୀର ଦଲେଇ ଘାଇ ବିଷୟରେ ବହୁବାର ଶୁଣିଥିଲୁ ଏବଂ ଗାଁ ଲୋକ କହୁଥିଲେ ଦଲେଇ ଘାଇ ଭାଙ୍ଗିଲେ ଆମ ଗାଁକୁ ବଢ଼ି ପାଣି ଆସିବ । ଦଲେଇ ଘାଇ କେଉଁଠି ଏବଂ ଦଲେଇ କିଏ ସେ ବିଷୟରେ ଆମର କୌଣସି ଧାରଣା ନ ଥିଲା । ଆଜିଯାଏ ଦଲେଇ କିଏ ଏବଂ ସେ ଘାଇକୁ କାହିଁକି ଦଲେଇ ଘାଇ କୁହାଯାଏ ତାହା ମୋତେ ଜଣା ନାହିଁ । ସେ ଘାଇ କିନ୍ତୁ ଆମ ପିଲାଦିନୁ ୧୯୫୫ ମସିହା ପର୍ଯ୍ୟନ୍ତ କେବେ ଭାଙ୍ଗି ନଥିଲା । ୧୯୫୫ ମସିହା ସେପ୍ଟେମ୍ବର ମାସରେ ଦଲେଇ ଘାଇ ପ୍ରକୃତରେ ଭାଙ୍ଗିଲା । ସେତେବେଳେ ମୁଁ ରେଭେନ୍‌ସା କଲେଜ ହତାରେ ଗୋଟିଏ ଘରେ ରହୁଥିଲି । ସେ ବର୍ଷ ଜୁଲାଇ ମାସଠାରୁ ସେପ୍ଟେମ୍ବର ପ୍ରଥମ ସପ୍ତାହ ପର୍ଯ୍ୟନ୍ତ ବର୍ଷା ହେଲା ନାହିଁ । ଲୋକମାନେ ମରୁଡ଼ି ଅବସ୍ଥା ଭୋଗୁଥିଲେ । ସେପ୍ଟେମ୍ବର ୬-୭ ତାରିଖରେ ଲଗାତାର ପ୍ରବଳ ବର୍ଷା ହେଲା ଏବଂ ଦେବୀ ନଦୀରେ ପ୍ରବଳ ବନ୍ୟା ହୋଇ ଆଠ ତାରିଖ ପାହାନ୍ତାରୁ ଘାଇ ଭାଙ୍ଗିଗଲା । ଆମ୍ଭେମାନେ ୮ ତାରିଖ ସକାଳ ଦଶଟା ପୂର୍ବରୁ ଖବର ପାଇଲୁ ଏବଂ ଦିନ ବାରଟା ପରେ ସାଇକେଲ୍‌ରେ ମୁଁ ସେ ଘାଇ ପାଖକୁ ଗଲି । ଘାଇ ସ୍ଥାନ କଟକଠାରୁ ପ୍ରାୟ ପନ୍ଦର ମାଇଲ ଦୂର । ଦେଖିଲି ଦୁଇଟି ଘାଇ ହୋଇଛି । ବରଡ଼ା ଗାଁ ପାଖରେ କେନାଲ ବନ୍ଧ ଭାଙ୍ଗି ଗାଁ ବାଟେ ପାଣି ଗୁଲୁଥାଏ । ବରଡ଼ା ଓ ମଧ୍ୟଶାସନର ଘର ସବୁ ପାଣିରେ ବୁଡ଼ି ଯାଇଥିଲା । ତାର ମାଇଲକ ପରେ ନଈବନ୍ଧରେ ଦଲେଇ ଘାଇ ଭାଙ୍ଗି ଯାଇଥିଲା । କେନାଲ ଘାଇ ପାଣି ଏବଂ ଦଲେଇ ଘାଇ ପାଣି ମିଶି ବିରାଟ ସ୍ରୋତରେ ପାଣି ଗୁଲୁଥିଲା । ଆମେ କେନାଲ୍ ଘାଇ ପାରହୋଇ ବଡ଼ ଘାଇ ପର୍ଯ୍ୟନ୍ତ ଯାଇ ପାରିଲୁ ନାହିଁ । ସନ୍ଧ୍ୟାବେଳକୁ ମୁଁ କଟକ ଫେରି ଆସିଲି ।

ପରେ ଆମ୍ଭେମାନେ ଜାଣିଲୁ ଯେ, ପ୍ରାୟ ଦେଢ଼ ମାଇଲରୁ ଦୁଇ ମାଇଲ ଚଉଡ଼ାରେ ପାଣି ଢଙ୍କୌଳ ଓ ଜଗତସିଂହପୁର ଅଞ୍ଚଳରେ ଘରଦ୍ୱାର ଭାଙ୍ଗି ହଂସୁଆ ନଈବାଟେ ଯାଇ ଏରସମା ଓ ପଞ୍ଚପଲ୍ଲୀ ପ୍ରଭୃତି ସମୁଦ୍ରକୂଳିଆ ଅଞ୍ଚଳରେ ମାସକରୁ ଉପରେ ଜମା ହୋଇ ରହିଲା ଏବଂ ସେହି ଅଞ୍ଚଳରେ ବ୍ୟାପକ ଫସଲ ନଷ୍ଟ କଲା । ଆଗରୁ ଲୋକମାନଙ୍କର ଧାରଣା ଥିଲା ଯେ, ଦଲେଇ ଘାଇ ଭାଙ୍ଗିଲେ ଜଗତସିଂହପୁରର ବିସ୍ତୀର୍ଣ୍ଣ ଅଞ୍ଚଳ ପାଣିରେ ବୁଡ଼ିଯିବ ଏବଂ ପାଣି ବାଲିକୁଦା ବୋରିକିନା ପର୍ଯ୍ୟନ୍ତ ଗୁଲିଯିବ । ମାତ୍ର ପ୍ରକୃତରେ ସେପରି କିଛି ହେଲା ନାହିଁ । ଆମ ଗାଁ ଆଡ଼େ ମୋଟେ ପାଣି ଗଲାନାହିଁ । ପ୍ରାୟ ଦୁଇମାଇଲ ଚଉଡ଼ାରେ ହଂସୁଆ ନଈରେ ଜଗତସିଂହପୁର ଓ ଢଙ୍କୌଳ ଅଞ୍ଚଳରେ ଯାଇ

ଏରସମା ଅଞ୍ଚଳରେ ଜମା ହୋଇଗଲା । ପରେ ଜାଣିଲୁ ଯେ, ଦଲେଇ ଘାଇ ବନ୍ଧ ହେବା ପୂର୍ବରୁ ଦେବୀ ନଦୀର କେତେକ ପାଣି ସେହି ଅଞ୍ଚଳ ମଧ୍ୟଦେଇ ହଂସୁଆ ନଈରେ ସମୁଦ୍ରକୁ ଯାଉଥିଲା । ସେଠାରେ ଦେବୀ ନଦୀରେ ବନ୍ଧ ହୋଇ-ଯିବାରୁ ହଂସୁଆ ନଈ ଗ୍ରେଷ୍ଟ ନଈଟିଏ ହୋଇ ରହିଲା ଏବଂ ସେ ଅଞ୍ଚଳ ସୁରକ୍ଷିତ ହୋଇ କେନାଲ ଜଳସେଚିତ ଅଞ୍ଚଳ ହେବାରୁ କ୍ରମେ ସମୃଦ୍ଧିଶାଳୀ ଏବଂ ଘନ ଜନବସତି ଅଞ୍ଚଳ ହୋଇଗଲା । ମାତ୍ର ନଦୀ ସ୍ରୋତ ମୁହଁରେ ବନ୍ଧ ହୋଇଥିବାରୁ ପ୍ରତିବର୍ଷ ବନ୍ୟା ସମୟରେ ନଦୀସ୍ରୋତ ସେହି ସ୍ଥାନରେ ଧକ୍କା ଦିଏ ଏବଂ ବନ୍ଧ ଭାଙ୍ଗି ଯିବାର ଆଶଙ୍କା ହୁଏ । ଆଜିକାଲି ମଧ୍ୟ ସେହି କଥା ହେଉଛି ।

ସେ ବର୍ଷ ବନ୍ଧ ଭାଙ୍ଗିବାରେ ମୋଟେ ପାଞ୍ଚ ସାତ ଲୋକ ମରିଥିଲେ । ବନ୍ଧ ଭାଙ୍ଗିବା ପୂର୍ବରୁ ଲୋକମାନେ ଗାଈ ଗୋରୁ ସହ ଉଚ୍ଚା ସ୍ଥାନ ମାନଙ୍କୁ ଚାଲିଯାଇଥିଲେ । ପାଣି ଗାଁ ଗଣ୍ଡା ଦେଇ ଯାଉଥିଲାବେଳେ ମଧ୍ୟ ଅନେକ ଲୋକ ରାସ୍ତା ଓ କେନାଲ ବନ୍ଧରେ ପାଣି ଆଗେ ଆଗେ ସାଇକେଲ ପ୍ରଭୃତିରେ ଯାଇ ଲୋକମାନଙ୍କୁ ସାବଧାନ କରାଇ ଦେଇଥିଲେ । ବନ୍ଧ ଭାଙ୍ଗିବାର ପ୍ରାୟ ମାସକ ପରେ ସରକାରଙ୍କ ନିର୍ଦ୍ଦେଶରେ ରେଭେନ୍ସା କଲେଜର କେତେକ ଛାତ୍ରଙ୍କୁ ସଙ୍ଗରେ ନେଇ ମୁଁ ଜଗତସିଂହପୁର ଓ ତିର୍ତ୍ତୋଲର କେତେକ ଅଞ୍ଚଳରେ ବନ୍ୟାଜନିତ କ୍ଷୟକ୍ଷତିର ଅନୁଧାନ କରିବାକୁ ଯାଇଥିଲି । ଆମେ ଜଗତସିଂହପୁର-ଠାରେ ସାତ ଆଠ ଦିନ ରହି ବନ୍ୟାକ୍ଳିଷ୍ଟ ବିଭିନ୍ନ ଗାଁକୁ ଯାଇ ଅନୁଧାନ କରିଥିଲୁ । ସେତେବେଳକୁ ପାଣି ଛାଡ଼ି ଯାଇଥିଲା ଏବଂ ସେ ଅଞ୍ଚଳ ଶୁଖି ଆସୁଥିଲା । ଆମେ ଦେଖିଲୁ ଯେ ପାଣିସୁଅ ଯେଉଁ ଗାଁ ବାଟେ ଯାଇଥିଲା ସେ ଅଞ୍ଚଳରେ ବହୁ ଘରଦ୍ୱାର ଭାଙ୍ଗିଥିଲା ଏବଂ ବହୁ ଜମିରେ ବାଲି ଚଢ଼ି ଯାଇଥିଲା । ମାତ୍ର ଯେଉଁ ଅଞ୍ଚଳରେ ପାଣି ସୁଅ ନ ପଡ଼ି କେବଳ ମାଡ଼ି ଯାଇଥିଲା ସେ ଗାଁ ବିଶେଷ କିଛି କ୍ଷତି ହୋଇ ନ ଥିଲା । ଗାଁ ମାନଙ୍କରେ ଗଛ, ଘରଦ୍ୱାର ଏବଂ ବନ୍ଧ ବାଡ଼ ପ୍ରଭୃତି ବହୁ ବାଧା ଥିବାରୁ ସ୍ରୋତର ବେଗ କମି ହୋଇଥିଲା । ସ୍ରୋତରେ ବେଶି ଲୋକ ବା ଗାଈଗୋରୁ ଭାସିଯାଇ ନ ଥିଲେ । ଲୋକମାନେ ଆଗରୁ ସାବଧାନ ହୋଇ କେନାଲ, ନଈବନ୍ଧ ଓ ଅନ୍ୟ ଉଚ୍ଚସ୍ଥାନ ମାନଙ୍କରେ ଆଶ୍ରୟ ନେଇଥିଲେ ।

ସତେଇଶ ବର୍ଷ ପରେ ୧୯୮୨ ମସିହାରେ ପୁଣି ଦଲେଇ ଘାଇ ଭାଙ୍ଗିଲା । ତାହା ପୂର୍ବ ଘାଇ ସ୍ଥାନରେ ନ ଭାଙ୍ଗି ତାହାଠାରୁ ଅଧମାଇଲରୁ କମ୍ ଦୂରରେ ଭାଙ୍ଗିଥିଲା ଏବଂ ୧୯୫୫ ମସିହାରେ ପାଣି ଯେଉଁବାଟେ ଯାଇଥିଲା ସେହି ବାଟ ଦେଇ ଯାଇଥିଲା । ପାଣି କେତେ ଉଚ୍ଚ ଉଠିଥିଲା ତାହା କଳନା କରିବା ପାଇଁ

ବିରଡ଼ି ପାଖ କଟକ ମାଛ ଗାଁ ଗୁଂଷ୍ଠା କଡ଼ରେ ବଡ଼ ବଡ଼ ଗଛମାନଙ୍କରେ ଚିହ୍ନ ଦିଆଯାଇଛି । ସେ ଚିହ୍ନ ଆଜିଯାଏ ସୁଦ୍ଧା ଅଛି । ମାତ୍ର ସେତେବେଳକୁ ବିଲେଇପାଇ ଭାଙ୍ଗିଲେ ପାଣି କେଉଁବାଟେ ଯିବ ଏବଂ କେଉଁ କେଉଁ ଗାଁର ଲୋକମାନେ ବିଶେଷ କ୍ଷତିଗ୍ରସ୍ତ ହେବେ ତାହା ଲୋକମାନେ ଜାଣି ଯାଇଥିଲେ । ୧୯୫୫ ମସିହା ପର ୧୯୮୨ ମସିହାରେ ମଧ୍ୟ ବହୁ ଗ୍ରାମରେ ଲୋକମାନେ ବିଶେଷ କ୍ଷତିଗ୍ରସ୍ତ ହୋଇଥିଲେ । ସେ ବର୍ଷ ଦେବୀ ନଦୀର ଶାଖା ବିଲୁଆ ଖାଇ ନଈରେ ବନ୍ୟା ହୋଇ ଜଗତସିଂହପୁର ନିକଟବର୍ତ୍ତୀ ଆଲି ପିଙ୍ଗଳ ପ୍ରଭୃତି ଗାଁ ମାନଙ୍କରେ ବିଶେଷ କ୍ଷତି ହୋଇଥିଲା । ଜଗତସିଂହପୁର କଲେଜ ହତାରେ ଥିବା କେତେକ ଘରର କାନ୍ଥ ଅଧଯାଏ ପାଣି ହୋଇଥିଲା । ୧୯୮୨ ମସିହା ମହାନଦୀରେ ଗୋଟିଏ ବଡ଼ ବଢ଼ି ବର୍ଷ ବାଙ୍କି ପାଖରେ ଘାଇ ଭାଙ୍ଗି ବାଙ୍କି ସହର ସମେତ ବାଙ୍କି ଅଞ୍ଚଳର ବହୁଗ୍ରାମ ପାଣିରେ ବୁଡ଼ି ଯାଇଥିଲା । ବାଙ୍କି କଲେଜର ଲାଇବ୍ରେରୀ ଓ ଅନ୍ୟ ଘରମାନ ନଷ୍ଟ ହୋଇଥିଲା । କଟକ ଭୁବନେଶ୍ୱର ଜାତୀୟ ରାଜପଥର ପ୍ରତାପନଗରୀ ପାଖରେ କେତେକ ଅଂଶ ମଧ୍ୟ ଭାଙ୍ଗି ଯାଇଥିଲା । କେନ୍ଦ୍ରାପଡ଼ା, ଆଳି, ରାଜକନିକା, ବିରି ପ୍ରଭୃତି କଥା କହିବା ବାହୁଲ୍ୟ । ସେ ସବୁ ଅଞ୍ଚଳ ତ ଆଜିଯାଏ ସୁଦ୍ଧା ପ୍ରତିବର୍ଷ ସାଧାରଣ ବଢ଼ିରେ ପାଣିରେ ବୁଡ଼ିଯାଉଛି ଏବଂ ବହୁଦିନ ପର୍ଯ୍ୟନ୍ତ ପାଣି ଜମି ରହୁଛି । ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲା-ମାନଙ୍କରେ ବହୁ ଗାଁ ଲୋକଙ୍କର ବଢ଼ି ଆଜିଯାଏ ମଧ୍ୟ ଚିର ସହଚର ହୋଇ ରହିଛି ।

## ଆମ ଅଞ୍ଚଳରେ ବାତ୍ୟା

ବଢ଼ି, ମରୁଡ଼ି ସାଙ୍ଗକୁ ବାତ୍ୟା ମଧ୍ୟ ଉପକୂଳ ଜିଲ୍ଲାମାନଙ୍କରେ ଗୋଟିଏ ବାର୍ଷିକ ବଡ଼ ବିପତ୍ତି । ମହାଳୟା ଅମାବାସ୍ୟାଠାରୁ ଦୀପାବଳୀ ଅମାବାସ୍ୟା ପର୍ଯ୍ୟନ୍ତ ଆମ ଅଞ୍ଚଳର ଲୋକମାନେ ସବୁବର୍ଷ ବାତ୍ୟାର ଆଶଙ୍କା କରନ୍ତି । ବାତ୍ୟାରେ କେତେକ ଅଞ୍ଚଳରେ ଘରଦ୍ୱାର ଭାଙ୍ଗିଯାଏ, ମାତ୍ର ବ୍ୟାପକ ଅଞ୍ଚଳରେ ଧାନ ଫସଲ ନଷ୍ଟ ହୋଇଯାଏ କାରଣ ଧାନ ଥୋଡ଼ ଧରିଥିଲା ବେଳେ ଟିକିଏ ଜୋରରେ ପବନ ଦେଲେ ଧାନ ଅଗାଡ଼ି ହୋଇଯାଏ । ସେ ସମୟରେ କୃଷୀ-ମାନେ ଭୟଭୀତ ହୋଇ ଥାଆନ୍ତି । ସାମାନ୍ୟ ବାତ୍ୟା ହେଲେ ଧାନ ଫସଲ ନଷ୍ଟ ହେବାର ଆଶଙ୍କା କରନ୍ତି । ବାତ୍ୟାର କେହି ହିସାବ ରଖନ୍ତି ନାହିଁ । ବଡ଼ ବଡ଼ ବାତ୍ୟା ଜନିତ କ୍ଷୟକ୍ଷତି ଜନସ୍ମୃତିରେ ରହିଯାଏ । ଶହେବର୍ଷ ତଳେ ୧୮୯୯ ସାଲ ଦୀପାବଳୀ ଅମାବାସ୍ୟାର କୃଷ୍ଣଦିନ ପରେ ନାଗଲ ଚଉଠୀ ଦିନର ବାତ୍ୟା ଆଜିଯାଏ ଆମ ଅଞ୍ଚଳରେ ଜନସ୍ମୃତିରେ ଅଛି । ଆମ ଗାଁରେ ଅନେକ ବଙ୍କା

ନଡ଼ିଆ ଗଛ ଅଛି । ଗଛ ଅଧଯାଏ ଶୋଇଯାଇଥାଏ ପୁଣି ଅଧାଠାରୁ ଉପରକୁ ଉଠି ଯାଇଥାଏ । ଆମ ଘରପାଖ ଗୋଟିଏ ଖୋଲା ପଡ଼ିଆରେ ଦୁଇଟା ବଡ଼ ବରଗଛର ଗଣ୍ଡି ସେହିପରି ଭୂଇଁରେ ଶୋଇଯାଇ ପୁଣି ଉପରକୁ ଶାଖା ପ୍ରଶାଖା ମେଲିଛି । ସେ ଗଛମାନଙ୍କରେ ଆମେ ପିଲାଦିନେ ଡାଳମାଙ୍କୁଡ଼ି ଖେଳୁଥିଲୁ । କିନ୍ତୁ ସେଗୁଡ଼ିକ ସବୁ ବିଭିନ୍ନ ବର୍ଷରେ ବାତ୍ୟାର ଫଳ ବୋଲି ଜାଣି ନଥିଲୁ । ବଡ଼ ବଡ଼ ବାତ୍ୟାରେ ଅନେକ ବଡ଼ ଗଛ ମୂଳରୁ ଉପୁଡ଼ିଯାଏ, ଆଉ ଅନେକ ଭୂମିରେ ଶୋଇଯାଏ, ମାତ୍ର ସେ ଗୁଡ଼ିକର ଅଧିକାଂଶ ଚେର ମାଟି ଭିତରେ ଥାଏ । ଅନେକ ନଡ଼ିଆ ଗଛ ପୁଣି ଭାଙ୍ଗିଯାଏ ଆଉ ଅନେକ ଲଇଁଯାଏ । ସେଗୁଡ଼ିକର ଅଗ ପୁଣି କେତେ ବର୍ଷ ପରେ ସଳଖ ହୋଇଯାଏ । ବାତ୍ୟା ଯୋଗୁଁ ଆମ ଅଞ୍ଚଳରେ ବହୁ ଡେଙ୍ଗା ନଡ଼ିଆ ଗଛ ଭାଙ୍ଗିଯାଏ ।

ସେ ଅଞ୍ଚଳର କେତେକ ବଡ଼ ବାତ୍ୟା ମୋର ସ୍ପଷ୍ଟ ମନେ ଅଛି । ୧୯୫୬ ମସିହା ପୂଜାଛୁଟି ପୂର୍ବରୁ ଗୋଟିଏ ବଡ଼ ବାତ୍ୟା ହୋଇଥିଲା । ସେତେବେଳେ ମୁଁ କଲେଜର ପ୍ରଥମ ବାର୍ଷିକ ଶ୍ରେଣୀରେ ନାମଲେଖାଇ କାଜିବଜାରର ଗୋଟିଏ ମେସ୍‌ରେ ଥିଲି, କଲେଜ ହଷ୍ଟେଲରେ ରହି ନଥିଲି । ବାତ୍ୟା ପରଦିନ ସକାଳେ ଦଶଟାବେଳେ ସାଇକେଲରେ ଗଙ୍ଗାମନ୍ଦିରଠାରୁ ଜେଲ୍‌ଖାନା, ସେମିନାରିସ୍କୁଲ ବାଟେ କଲେଜ ଗଲାବେଳେ ରାସ୍ତାର ଅବସ୍ଥା ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ପୂର୍ବରାତିରେ ଏତେବଡ଼ ବାତ୍ୟା ହୋଇଗଲା ବୋଲି ମୁଁ ଅନୁମାନ କରି ନଥିଲି । ରାସ୍ତାରେ ବହୁ ବଡ଼ ବଡ଼ ଗଛ ଉପୁଡ଼ି ବା ଭାଙ୍ଗି ଯାଇଥାଏ । ସେ ଗୁଡ଼ିକ ସବୁ ହଣା ହୋଇ ସଫା ହେଉ ଥାଏ । ଅଧିକାଂଶ ଇଲେକ୍‌ଟ୍ରିକ୍ ଫୋନ୍ ଖୁଣ୍ଟ ଓ ଘର ଭାଙ୍ଗିରୁଜି ଛନ୍ନଛତ୍ର ହୋଇଯାଇଥାଏ । ପୂଜାଛୁଟିରେ ଗାଁକୁ ଗଲା ପରେ ଜାଣିଲି ଯେ, ଆମ ଅଞ୍ଚଳ ଧାନ ଫସଲ ଏକାବେଳକେ ନଷ୍ଟ ହୋଇ ଯାଇଥିଲା । ଆମର ପ୍ରତିବର୍ଷ ବଳକା ଧାନ କରଜ ଲାଗେ । କିନ୍ତୁ ସେ ବର୍ଷ ଅବସ୍ଥା ଏପରି ହେଲା ଯେ ଆମ ଘର ଖର୍ଚ୍ଚ ପାଇଁ ଆମେ ଦୁଇ ଭରଣ ଧାନ ଜମିଦାରଙ୍କ କଚେରିରୁ କରଜ ଆଣିଲୁ ।

୧୯୬୭ ମସିହାରେ ଜଗତସିଂହପୁର, ତିର୍ତ୍ତୋଲ ଏବଂ ଏରସମା ଅଞ୍ଚଳରେ ଆଉରି ଗୋଟିଏ ବଡ଼ ବାତ୍ୟା ହୋଇଥିଲା । ପ୍ରଥମେ ଜୋର୍‌ରେ ପବନ ହୋଇ ଘରମାନଙ୍କର ଛାଳ ସବୁ ଉଡ଼ିଗଲା । ତା'ପରେ ବହୁ ସମୟ ଧରି ବର୍ଷା ହେବାରୁ ଲୋକମାନଙ୍କର ମାଟି କାନ୍ଥ ସବୁ ପଡ଼ିଗଲା । ଲୋକମାନେ ଘରୁ ବାହାରି ନିରାପଦ ସ୍ଥାନକୁ ଯାଇ ପାରିଲେ ନାହିଁ । ଘରର ଧାନଗଣ୍ଡିଲା ଆସବାବ ପତ୍ର ସବୁ

ନଷ୍ଟ ହୋଇଗଲା । ଆମର ଦୁଇ ଘୃଣ ବଖରା ପକ୍କା ଘରେ ଆମ ଗାଁର ବହୁଲୋକ ଦୁଇଦିନ ପାଇଁ ଆଶ୍ରୟ ନେଲେ । ଆମ ଘର ପାଖରେ ଧୋବା ସାହିର ଅଧିକାଂଶ ଲୋକ ଘରଗୁଡ଼ି ପଳାଇ ଆସି ଆମ ଘରେ ଏବଂ ପିଣ୍ଡାରେ ଚୁଡ଼ା, ମୁଢ଼ି ଖାଇ ରହିଲେ । ଅନେକ ନଡ଼ିଆ ଗଛ ଭାଙ୍ଗି ଯାଇଥାଏ ଏବଂ ବହୁ ନଡ଼ିଆ ପଇଡ଼ ଛୁଣ୍ଡି ବାଡ଼ରେ ଗଦା ହୋଇଥାଏ । ସେ ଲୋକମାନେ ସେ ନଡ଼ିଆ ପଇଡ଼ ସବୁ ଖାଇଲେ । ଏରସମା ଡାକ୍ତରଖାନା ହତାର ଟିଣ ଛାତ ଥିବା ଘରମାନଙ୍କର ଟିଣ ସବୁ ଉଡ଼ି ଅଧମାଇଲଏ ଦୂର ବାଟରେ ପଡ଼ିଲା । କେତେକ ସ୍ତ୍ରୀଲୋକ ଓ ପିଲା ଘର ଛାଡ଼ି ଅନ୍ୟ ସ୍ଥାନକୁ ପଳାଇଲାବେଳେ ପବନରେ ଉଡ଼ି ପଗୃଶ ଫୁଟରୁ ଅଧିକ ଦୂରରେ ପଡ଼ିଲେ । ଏକ ବିରାଟ ଅଞ୍ଚଳରେ ଧାନ ଫସଲତ ସମୁଦାୟ ଗଲା, ତା ପରେ ବହୁ ଗାଁରେ ଘରଦ୍ୱାର ଭାଙ୍ଗିଗଲା ଏବଂ ଆମ୍ବ, ନଡ଼ିଆ, ପଣସ ପ୍ରଭୃତି ମୂଲ୍ୟବାନ୍ ଗଛ ସବୁ ଭାଙ୍ଗି ପଡ଼ିଲା । ବାତ୍ୟାର ଦୁଇ ଦିନ ପରେ ମୁଁ ଆମ ଗାଁକୁ ଯାଇ ଏ ଦୃଶ୍ୟ ଦେଖିଲି । କଟକ ମାଛଗାଁ ଓ ପାରାଦ୍ୱୀପ ରାସ୍ତାମାନଙ୍କର ଦୁଇ-କଡ଼ରେ ବାତ୍ୟାରେ ଭାଙ୍ଗିଥିବା ଘର ଓ ଗଛ ବହୁ ଦିନଯାଏ ଦେଖିବାକୁ ମିଳୁଥିଲା । ଗାଁ ମୁଣ୍ଡରେ ଖୋଲା ଯାଗାମାନଙ୍କରେ ଥିବା ସ୍କୁଲ ଘରସବୁ ପ୍ରଥମେ ଭାଙ୍ଗି ଯାଏ ଏବଂ ସେ ଗୁଡ଼ିକ ବର୍ଷ ବର୍ଷ ଧରି ମରାମତି ହୋଇ ପାରେ ନାହିଁ । ସେ ବର୍ଷ ବାତ୍ୟାରେ ଭାଙ୍ଗିଥିବା ବହୁ ସ୍କୁଲ ମଧ୍ୟରେ ଏରବାଙ୍କି ହାଇସ୍କୁଲର ଆଜବେଷ୍ଟସ ଛାତ ପୂରା ଉଡ଼ି ଯାଇଥିଲା । ଆଠ ଦଶବର୍ଷ ଯାଏ ମରାମତି ହୋଇ ନଥିବାର ଦେଖାଯାଇଥିଲା ।

ଏ ସବୁ ବାତ୍ୟା ଆମ ଅଞ୍ଚଳ ଲୋକଙ୍କର ଦେହସୁହା ହୋଇ ଯାଇଛି । ବାତ୍ୟା ବା ବଢ଼ିରେ କାଳେ କାଳେ ଘର ଭାଙ୍ଗିଯାଏ କମ୍ବା ଭାସିଯାଏ । ତା'ପରେ ଲୋକମାନେ ପୁଣି ଘର ତୋଳନ୍ତି । ଫସଲ ନଷ୍ଟ ହୋଇଯାଏ, ଘରର ଆସବାବପତ୍ର ନଷ୍ଟ ହୁଏ, ରୋଗ ବିରାଗ ହୁଏ, ଖାଦ୍ୟ ଅଭାବ ହୁଏ । ତଥାପି କୌଣସିମତେ ବଞ୍ଚିଯାନ୍ତି । ଲୋକସଂଖ୍ୟା କମିବା ପରିବର୍ତ୍ତେ ବିଗତ ୭୦ ବର୍ଷ ହେଲା କ୍ରମାଗତ ଭାବରେ ଦ୍ରୁତଗତିରେ ବଢ଼ୁଛି । ୧୯୬୭ ମସିହା ବାତ୍ୟା ପରେ ମୁଁ ଯେତେବେଳେ ଗାଁକୁ ଯାଇଥିଲି, ସେତେବେଳେ ଦେଖିଥିଲି ଯେ ଗାଁ ମୁଣ୍ଡର ଗୋଟିଏ ବରଗଛ ମୂଳେ ଘୃଣ ପାଞ୍ଚଜଣ ଲୋକ ବସି ବାତ୍ୟା ବିଷୟରେ ଗପସପ ହେଉଥିଲେ । ସେଥିମଧ୍ୟରୁ ଜଣେ କହୁଥାଏ ଯେ "ଏ କି ବାତ୍ୟା ? ମୁଁ ବଙ୍ଗ ଦେଶର ବରିସାଲ୍ ଓ ଚଟ୍ଟଗ୍ରାମ ପ୍ରଭୃତି ଅଞ୍ଚଳର ବାତ୍ୟା ଦେଖିଛି । ପବନରେ ଛେଳିମାନେ ବରଗଛ ଉଚ୍ଚ ଉପରକୁ ଉଡ଼ିଯାଇ ତଳେ କଚାଡ଼ି ହୋଇ ପଡ଼ନ୍ତି । ଏ କଥା ସତ କି ମିଛ ମୁଁ ଜାଣି ନାହିଁ । ସେ ଲୋକ ବୋଧହୁଏ ଦେଶ

ବିଭାଜନ ପୂର୍ବରୁ ସେ ଅଞ୍ଚଳକୁ ଯାଇଥିଲି । ମାତ୍ର ବଙ୍ଗଳାଦେଶର ବହୁ ଅଞ୍ଚଳରେ ବଢ଼ି ଓ ବାତ୍ୟା ଆମ ଅଞ୍ଚଳଠାରୁ ଯଥେଷ୍ଟ ଅଧିକ ବୋଲି ମୁଁ ଜାଣେ । ଏ ଗପ ଆମ ଅଞ୍ଚଳ ଲୋକମାନଙ୍କର ମନୋଭାବର ସୂଚନା ଦିଏ । ମରୁଡ଼ି, ବଢ଼ି, ବାତ୍ୟା କାଳେ କାଳେ ହେଉଛି । ଯାହାଦ୍ୱାରା ବ୍ୟକ୍ତିଗତ ଭାବେ ଏବଂ ସମୂହ ଭାବେ ଲୋକମାନଙ୍କର ବହୁ ଦୁଃଖ ଦୁର୍ଦ୍ଦଶା ଘଟୁଛି । ଏ ଦୁଖର ଦିନ ଚିରକାଳ ଚାଲିଛି । ଊନବିଂଶ ଓ ବିଂଶ ଶତାବ୍ଦୀରେ ଏ ସମସ୍ୟାର ସମାଧାନ ହୋଇ ପାରି ନାହିଁ । ଏକବିଂଶ ଓ ଦ୍ୱାବିଂଶ ଶତାବ୍ଦୀରେ ଆମର ଭବିଷ୍ୟତ ବଂଶଧରଗଣ ଏହାର କିପରି ସମାଧାନ କରିବେ ତାହାର ସ୍ପଷ୍ଟ ଚିତ୍ର ଆମ ଆଖି ଆଗରେ ନାହିଁ ।

# ମହାମାରୀ ହଇଜା

ଜିଲ୍ଲା ଭୌଗୋଳିକ ବିବରଣୀମାନଙ୍କରୁ (District Gazcttercs) ଜଣାଯାଏ ଯେ ୧୮୭୦ ମସିହା ପାଖାପାଖି ସମୟରେ ବାଲେଶ୍ୱର ଜିଲ୍ଲାର କଲେକ୍ଟର ଜନ୍ ବିମସ୍ ସାହେବ ଥରେ ଘୋଡ଼ାରେ ପୁରୀରୁ ଭଦ୍ରକ ପର୍ଯ୍ୟନ୍ତ ଜଗନ୍ନାଥ ସଡ଼କରେ ଯାଉଥିଲେ । ରାସ୍ତାର ଦୁଇ କଡ଼ରେ ଶହ ଶହ ହଇଜା ରୋଗୀଙ୍କ ଶବ ବିଲୁଆ କୁକୁର ଖାଉଥିବାର ଦୃଶ୍ୟ ଦେଖି ସେ ଅତ୍ୟନ୍ତ ବିମର୍ଷ ହୋଇଥିଲେ । ଏ ଦେଶରେ ମନୁଷ୍ୟ ଜୀବନ ଏତେ ଶସ୍ତା ଓ ଅବହେଳିତ ଦେଖି ସେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ଓ ମର୍ମାହତ ହୋଇଥିଲେ । କିନ୍ତୁ ଆମ ଦେଶର ଲୋକମାନଙ୍କ ପାଇଁ ଏପରି ଦୃଶ୍ୟ ଆଶ୍ଚର୍ଯ୍ୟଜନକ ନଥିଲା । ପୂର୍ବ କାଳରେ ଏପରି ଦୃଶ୍ୟ ଉଣା-ଅଧିକ ସମସ୍ତେ ଦେଖିଛନ୍ତି । ବହୁ ଶତାବ୍ଦୀ ଧରି ଏ ଦେଶର ଗାଁ ଓ ସହର-ମାନଙ୍କରେ ହଇଜା ରୋଗ ବ୍ୟାପକ ଭାବରେ ହେଉଥିଲା । ଲୋକମାନେ ସେ ରୋଗର ଆରୋଗ୍ୟ ବା ପ୍ରତିଷେଧକ ଉପାୟ ଜାଣି ନଥିଲେ । ରୋଗ ସହଜରେ ଗ୍ରାମେ ଗ୍ରାମେ ବ୍ୟାପି ଯାଉଥିଲା ଏବଂ ଶହ ଶହ ଲୋକ ମରିଯାଉଥିଲେ । ସେ ଶବ ସବୁ ଲୋକମାନେ ପୋଡ଼ନ୍ତି ନାହିଁ । ପୋଡ଼ିବାକୁ ସମୟ ଓ ସମ୍ବଳ ମଧ୍ୟ ନଥାଏ । ତେଣୁ ସେ ଗୁଡ଼ିକୁ ରାସ୍ତା କଡ଼ରେ, ନଦୀକୂଳେ, ବା ଶ୍ମଶାନ ପାଖରେ ଫୋପାଡ଼ି ଦିଅନ୍ତି । କୁକୁର ଓ ଶାଗୁଣା ସେଗୁଡ଼ିକ ବିକଟାଳ ଭାବେ ଖାଆନ୍ତି । ଏହା ଆମ ରାଜ୍ୟର ବିଭିନ୍ନ ଅଞ୍ଚଳରେ ସାଧାରଣ ଦୃଶ୍ୟ ଥିଲା ।

୧୮୯୯ ମସିହାରେ ନୀଳକଣ୍ଠ ଦାସ ଏପରି ଦୃଶ୍ୟ ଦେଖି ତାଙ୍କ ଆତ୍ମଜୀବନୀ ବହିରେ ଲେଖିଛନ୍ତି, "ସେ ବର୍ଷ ରଥଯାତ୍ରା ପରେ ପୁରୀରେ ଭୀଷଣ ହଇଜା ହୋଇଥିଲା । ପୁରୀ ବଡ଼ ଦାଣ୍ଡରେ ଶତ ଶତ ସଂଖ୍ୟାରେ ମଡ଼ା ପଡ଼ିଥାନ୍ତି । ଲୋକେ ବ୍ୟାକୁଳ ହୋଇ ପାଣି ମାଗୁ ମାଗୁ ତାଙ୍କୁ ମ୍ୟୁନିସିପାଲିଟିରେ ନିଯୁକ୍ତ ଥିବା ହାଡ଼ି ଡୋଲରେ ଭର୍ତ୍ତିକରି ସମୁଦ୍ରକୂଳ ବାଲି ଆଡ଼କୁ ବୋହି ନିଅନ୍ତି । ସମୁଦ୍ର କୂଳ ବାଲିରେ ଗୋଟାଏ ବଡ଼ ଟୋପ ଖୋଳା ହୋଇଥାଏ । ସେଥିରେ

ବାଡ଼ ମୁର୍ଦ୍ଦାର ବୋଲି ହାଡ଼ମାନେ ମୁମୂର୍ଷୁ ସହିତ ମୁର୍ଦ୍ଦାରଙ୍କୁ ଫିଙ୍ଗି ଦିଅନ୍ତି । ସେହି ବାଲି ଟୋପ ଭିତରୁ ପରେ କେତେ ଲୋକ ବଞ୍ଚିକରି ଉଠି ଆସୁଥିଲେ । ସେ ବର୍ଷ ସହରରେ ଘରେ ଘରେ ବାଡ଼ ମୁର୍ଦ୍ଦାର ଶୋଇଲେ ।" ଜଗନ୍ନାଥ ସଡ଼କ ବାଟେ ଗାଁକୁ ଯାଉଥିଲା ବେଳେ ସେ ଦେଖିଥିଲେ ଯେ ଶଗଡ଼ ସବୁ ମଝିରେ ଓ ଶଗଡ଼ ସବୁକୁ ଲାଗି ମୁର୍ଦ୍ଦାର ପଡ଼ିଥାନ୍ତି । ପୁରୀଠାରୁ ହାଟ ଦାମୋଦର ପୁର ଛଅମାଇଲ ମଧ୍ୟରେ ଶଗଡ଼ସବୁ ମଧ୍ୟରେ ବା ପାଖରେ ପଡ଼ିଥିବା ୩୯ଟି ମୁର୍ଦ୍ଦାର ସେ ଗଣିଥିଲେ । ସଡ଼କ ନୟନଯୋଡ଼ିରେ ଆଉ କେତେ ପଡ଼ିଥିଲେ ସେ ଜାଣି ନଥିଲେ । ଠାଏ ଠାଏ ବିଲୁଆମାନେ ମୁର୍ଦ୍ଦାରଙ୍କ ମାଂସକୁ ଭିଡ଼ି ଖାଉଥାନ୍ତି ଓ କଳି କରୁଥାନ୍ତି ।

ପାଖାପାଖି ସେହି ସମୟରେ ଦିନେ ରାତିରେ ଏପରି ଦୃଶ୍ୟ ଗୋପବନ୍ଧୁବାବୁ, ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ ଓ ପ୍ରଖ୍ୟାତ ଅନନ୍ତ ମିଶ୍ର ସୁଆଣ୍ଡୋ ଗ୍ରାମ ପାଖରେ, ଭାର୍ଗବୀ ନଦୀ ଶଯ୍ୟାରେ ବାଲିପୁର ମୌଜା ଶ୍ମଶାନରେ ଦେଖିଥିଲେ । ସେ ଦୃଶ୍ୟ ଦେଖି ସେମାନଙ୍କ ମନରେ ଉଦ୍ରେକ ହୋଇଥିଲା, କରୁଣା, ଦେଶବାସୀଙ୍କ ଦୁଃଖରେ ଶୋଚନା ଏବଂ ସେ ଦୁଃଖ ବିମୋଚନ ପାଇଁ ସଂକଳ୍ପ । ସେଥିପାଇଁ ସେଦିନ ରାତିରେ ସେମାନେ ପ୍ରତିଜ୍ଞା କରିଥିଲେ, "ଆମେ ପାଠ ପଢ଼ି ସରକାରୀ ଚାକିରି କରିବା ନାହିଁ । ଦେଶପାଇଁ କିଛି କରିବା । ଜନ୍ମବେଳେ ଦେଶକୁ ଯାହା ଦେଖିଥାଇଁ ତାହାଠାରୁ ଉନ୍ନତ ଦେଖି ମରିବା ।"

ସାଧାରଣ ଭାବରେ ଲୋକମାନେ ଜାଣନ୍ତି ଯେ, ଏ ଦେଶରେ ଶହ ଶହ ବର୍ଷ ଧରି ପ୍ରତିବର୍ଷ ଦୁର୍ଭିକ୍ଷ, ହଇଜା, ବସନ୍ତ ଓ ପ୍ଲେଗ ପ୍ରଭୃତି ମହାମାରୀ ରୋଗ ଏବଂ ଯୁଦ୍ଧ ବା ଗୋଷ୍ଠୀ ସଂଘର୍ଷ ପ୍ରଭୃତି ଦ୍ୱାରା ହଜାର ହଜାର ଲୋକ ମରିଯାଉଥିଲେ । କେଉଁଥିରେ କେତେ ଲୋକ ମରୁଥିଲେ ତାର ହିସାବ ନଥିଲା । ପୂର୍ବକାଳେ ଆମ ଦେଶରେ ଜନଗଣନା ଓ ଜନ୍ମମୃତ୍ୟୁ ହିସାବ ରଖିବାର ବ୍ୟବସ୍ଥା ନଥିଲା । ଇଂରେଜ ଶାସନ କାଳରେ, ୧୮୭୧ ମସିହାରେ ପ୍ରଥମେ, ଜନଗଣନା ଆରମ୍ଭ ହେଲା । ସେହିଦିନଠାରୁ ବିଗତ ୧୨୦ ବର୍ଷ ହେଲା, ପ୍ରତି ଦଶବର୍ଷରେ ଆମ ଦେଶରେ ଜନଗଣନା ହେଉଛି ଏବଂ ଜନଗଣନା ସମୟରେ ପ୍ରତି ଦଶବର୍ଷରେ ଜନ୍ମମୃତ୍ୟୁହାର ହିସାବ କରାଯାଉଛି । ଏହି ୧୨୦ ବର୍ଷର ଜନଗଣନାରୁ ଜଣାଯାଉଛି ଯେ ୧୯୨୧ ମସିହା ପର୍ଯ୍ୟନ୍ତ ଭାରତବର୍ଷରେ ଜନସଂଖ୍ୟା ବିଶେଷ ବୃଦ୍ଧି ପାଉ ନଥିଲା । ପ୍ରତି ହଜାର ଲୋକରେ ବାର୍ଷିକ ଜନ୍ମହାର ୪୦ରୁ ୪୫ ମଧ୍ୟରେ ଥିଲା । ମାତ୍ର ମୃତ୍ୟୁହାର ସେହି ୪୦ ପାଖାପାଖି ଥିବାରୁ, ବଳକା ବଞ୍ଚିଥିବା ଲୋକଙ୍କ ସଂଖ୍ୟା ଖୁବ୍ କମ୍ ହେଉଥିଲା । ତେଣୁ ଜନସଂଖ୍ୟା ବିଶେଷ ଭାବରେ ବଢ଼ୁ ନ ଥିଲା । ମାତ୍ର ବିଗତ ସତୁରି ବର୍ଷ ମଧ୍ୟରେ ବାର୍ଷିକ ଜନ୍ମହାର ହଜାରକରେ ଚାଳିଶରୁ ଅଳ୍ପ କିଛି

କମିଛି । ମାତ୍ର ମୃତ୍ୟୁହାର ବର୍ତ୍ତମାନ ପ୍ରାୟ ଦଶ ପର୍ଯ୍ୟନ୍ତ କମି ଆସିବାରୁ ବଞ୍ଚିବା ଲୋକଙ୍କ ସଂଖ୍ୟା ବଢ଼ିଯାଉଛି । ଫଳରେ ମୋଟ ଜନସଂଖ୍ୟା ଦ୍ରୁତଗତିରେ ବଢ଼ି ଯାଉଥିବାରୁ, ଦେଶରେ ବହୁ ସମସ୍ୟା ଉପୁଜୁଛି ଏବଂ ଜନସଂଖ୍ୟା ବୃଦ୍ଧି କମାଇବା ପାଇଁ ବହୁ ପ୍ରକାର ଉପାୟ ଅବଲମ୍ବନ କରାଯାଉଛି ।

ପୂର୍ବେ ମୃତ୍ୟୁ ହାର ବେଶୀ ଥିବାର ମୂଳ କାରଣମାନ ଥିଲା ଦୁର୍ଭିକ୍ଷ, ବିଭିନ୍ନ ମହାମାରୀ ରୋଗ ଏବଂ ଗୋଷ୍ଠୀ ଓ ଆଞ୍ଚଳିକ ସଂଘର୍ଷ । ବିଗତ ସତୁରି ବର୍ଷ ମଧ୍ୟରେ ଭାରତର ସବୁ ଅଞ୍ଚଳରେ ସେଗୁଡ଼ିକର ନିରାକରଣ ଯୋଗୁଁ ମୃତ୍ୟୁହାର କମିଯାଉଛି ।

ଆମ ଓଡ଼ିଶାର ବିଗତ ଦେଢ଼ଶହ ବର୍ଷ ଇତିହାସରୁ ଜଣାଯାଏ ଯେ, ପ୍ଲେଗ ଯୋଗୁଁ ଏ ରାଜ୍ୟରେ ଲୋକକ୍ଷୟ ହେଉ ନ ଥିଲା । ବିହାର ଓ ଉତ୍ତରପ୍ରଦେଶ ପ୍ରଭୃତିରେ ପ୍ଲେଗ ଗୋଟିଏ ବିଶେଷ ଜନକ୍ଷୟକାରୀ ମହାମାରୀ ଥିଲା । ଓଡ଼ିଶାରେ ଦୁର୍ଭିକ୍ଷ ସାଙ୍ଗକୁ ମହାମାରୀ ହଇଜା ଓ ବସନ୍ତ ଯୋଗୁଁ ଗଣମୃତ୍ୟୁ ହୋଇଥିଲା । ବସନ୍ତ ଅପେକ୍ଷା ହଇଜାରେ ମୃତ୍ୟୁସଂଖ୍ୟା ଖୁବ୍ ଅଧିକ ହେଉଥିଲା । କହିବାକୁଗଲେ ହଇଜା ଏ ରାଜ୍ୟର ଜାତୀୟ ରୋଗ ଥିଲା । ଦୁର୍ଭିକ୍ଷ ଓ ହଇଜା ସବୁବେଳେ ସାଥି । ଅନ୍ୟ ସମୟରେ ଏବଂ ଅନ୍ୟ କାରଣରୁ ମଧ୍ୟ ହଇଜା ଆରମ୍ଭ ହୋଇ ଚାରିଆଡ଼େ ବ୍ୟାପିଯାଏ ମାତ୍ର ଦୁର୍ଭିକ୍ଷ ସମୟରେ ଖାଦ୍ୟାଭାବ ଓ ଅଖାଦ୍ୟ ଖାଇବା ହେତୁ ଏହା ସବୁବେଳେ ହୁଏ ଏବଂ କ୍ଷିପ୍ର ଗତିରେ ବହୁ ଅଞ୍ଚଳରେ ମାଡ଼ିଯାଏ । ଅଳ୍ପଦିନ ମଧ୍ୟରେ ବହୁଲୋକ ମରିଯାନ୍ତି । ଓଡ଼ିଶାର ଜଳବାୟୁ, ନଈ ପୋଖରୀ ପାଣି, ଗାଁ ଓ ସହରମାନଙ୍କର ପରିବେଶ ଏବଂ ଲୋକମାନଙ୍କ ଖାଦ୍ୟପେୟ ପ୍ରଣାଳୀରେ, ହଇଜା ରୋଗ ଆରମ୍ଭ ହେବା ଏବଂ ଚାରିଆଡ଼େ ବ୍ୟାପିଯିବା ଅତି ସହଜ । ସେଥିଯୋଗୁଁ ବିଭିନ୍ନ ଅଞ୍ଚଳରେ ଏହା ପ୍ରାୟ ପ୍ରତିବର୍ଷ ହେଉଥିଲା । ସବୁଆଡ଼େ ଲୋକମାନେ ଏ ରୋଗ ସାଙ୍ଗରେ ପରିଚିତ ଥିଲେ ଏବଂ ଏହାକୁ ବିଶେ ଭୟ କରୁଥିଲେ । ବାଡ଼ିପଶା, ଯୋଗଣୀଖିଆ, ବାଡ଼ପୋଡ଼ା, ଗୋଟିଏ ବାଡ଼ରେ ଯାଆ ଆଦି ଗାଳିମାନଙ୍କରେ ସ୍ତ୍ରୀଲୋକମାନଙ୍କର ଅତି ସାଧାରଣ ଓ ପ୍ରଧାନ ଗାଳି । ଓଡ଼ିଶାରେ କୌଣସି ଗାଁ ନାହିଁ । ଯେଉଁଥିରେ କି କେବେ ହଇଜା ହୋଇ ନାହିଁ ଓ ସେଥିରେ ଲୋକ ମରି ନାହାନ୍ତି । ଏପରି ପରିବାର ମଧ୍ୟ ନାହିଁ ଯାହାର କୌଣସି ବନ୍ଧୁବାନ୍ଧବ ବା ନିଜ ପରିବାରର ଲୋକ ହଇଜାରେ ମରି ନାହାନ୍ତି ।

ହଇଜା ଜୀବାଣୁ ତତ୍ତ୍ୱ ଆଜିଯାଏ ଲୋକମାନେ ଜାଣିପାରି ନାହାନ୍ତି, ପୂର୍ବକାଳେ ଏହା ଜାଣିବେ ବା କିପରି ? ଏ ରୋଗ କାହିଁକି ହୁଏ, ଦୂଷିତ ଜଳ

ଓ ଖାଦ୍ୟ ସହିତ ଏହାର ସମ୍ବନ୍ଧ କ'ଣ, ଏ ବିଷୟରେ ପ୍ରାୟ ସବୁ ଲୋକ ଅଜ୍ଞ ଥିଲେ । ଗାଁ ଓ ସହରର ବୈଦ୍ୟମାନେ ବି, ଏ ରୋଗର ଚିକିତ୍ସା ଓ ଔଷଧ ଜାଣି ନଥିଲେ । ତେଣୁ ଲୋକମାନେ ଅଜ୍ଞ ଓ ଅସହାୟ ହୋଇ ଭାବୁଥିଲେ, ଠାକୁରାଣୀ ହିଁ ଏ ରୋଗ କରାଉଛନ୍ତି ଏବଂ ସେହି ଠାକୁରାଣୀହିଁ ଏଥିରୁ ରକ୍ଷା କରିବେ । ଊଭୟ ହଇଜା ଓ ବସନ୍ତ ବିଷୟରେ ଲୋକମାନଙ୍କର ଏହି ଧାରଣା ଥିଲା । ଆମେ କଲେଜରେ ପଢ଼ିବା ପର୍ଯ୍ୟନ୍ତ ଆମ ଗାଁ ଆଡ଼େ ଲୋକମାନେ କାହାକୁ ବସନ୍ତ ହେଲେ ବସନ୍ତ ହୋଇଛି ବୋଲି କହନ୍ତି ନାହିଁ, କହନ୍ତି ଠାକୁରାଣୀ ହୋଇଛନ୍ତି । ମା ଶୀତଳା ବା ମଙ୍ଗଳା ସେଥିରୁ ତାକୁ ରକ୍ଷା କରିବେ ।

ହଇଜା ଗାଁରେ ଆରମ୍ଭ ହେଲାକ୍ଷଣି ସବୁ ଲୋକ ଭୟଭୀତ ହୋଇଯାନ୍ତି । ସେମାନେ ଆଶଙ୍କା କରନ୍ତି ଯେ, ଏହା ଅତିଶୀଘ୍ର ମାଡ଼ିଯିବ ଏବଂ ଘରେ ଘରେ ବହୁଲୋକ ମରିଯିବେ । ସେଥିଯୋଗୁଁ ସେ ଗାଁ କିଂକର୍ତ୍ତବ୍ୟବିମୂଢ଼ ହୋଇଯାଏ । ବିଶେଷତଃ ରାତିରେ ଲୋକମାନେ ଘରୁ ନବାହାରି କବାଟ କିଳି ରହନ୍ତି । ଗାଁ ଠାକୁରାଣୀଙ୍କୁ ମାର୍ଜନା କରନ୍ତି । ତାଙ୍କ ପାଖରେ ପଣାପାଣି କରି ଗାଁ ମୁଣ୍ଡରେ ଥୁଅନ୍ତି । ତାଙ୍କ ପାଖରେ କୀର୍ତ୍ତନ କରନ୍ତି । ରୋଗ ପ୍ରତିଷେଧ ପାଇଁ ଅନ୍ୟ ଉପାୟ ଭାବି ପାରନ୍ତି ନାହିଁ । ଅନେକ ସମୟରେ ରୋଗର ଓଲଟା ଚିକିତ୍ସା କରନ୍ତି । ରୋଗୀ ପାଣି ମାଗିଲେ କାଳେ ରୋଗ ବେଶି ହୋଇଯିବ ଭାବି ପାଣି ଦିଅନ୍ତି ନାହିଁ । ରୋଗୀକୁ ଗାଧୋଇଦେଇ ଠାକୁର ଠାକୁରାଣୀଙ୍କ ପାଖରେ ଧାରଣା ଦେବା ପାଇଁ ଶୁଆଇ ଦିଅନ୍ତି । ରୋଗ ନ ହୋଇଥିବା ଲୋକଙ୍କୁ ରୋଗରୁ ରକ୍ଷା ପାଇବା ପାଇଁ ଠାକୁରାଣୀଙ୍କ ପାଖରେ ପୂଜା ହୋଇଥିବା ପଣା ପିଇବାକୁ ଦିଅନ୍ତି । ଏ ସବୁ ପ୍ରକ୍ରିୟା ଦ୍ୱାରା ରୋଗ ହୋଇଥିବା ଲୋକ ଯେ ଚଞ୍ଚଳ ମରିଯାଏ ଏବଂ ରୋଗ ନହୋଇଥିବା ଲୋକର ରୋଗ ହୋଇଯାଏ ଏକଥା ଜାଣି ପାରନ୍ତି ନାହିଁ ।

ଉତ୍କଳରେ ହଇଜା ରୋଗରେ ଗଣମୃତ୍ୟୁର କେହି ଇତିହାସ ରଖିନାହିଁ, ରଖିବା ବି ସମ୍ଭବ ନୁହେଁ । ସବୁ ଗ୍ରାମରେ କୌଣସି ନା କୌଣସି ସମୟରେ ହଇଜାରେ ଗଣ୍ଡା ଗଣ୍ଡା ଲୋକ ମରିଛନ୍ତି । ବନ୍ୟା ବିପନ୍ନ ଗାଁ ମାନଙ୍କରେ ବନ୍ୟା ସଙ୍ଗେ ସଙ୍ଗେ ହଇଜା ହୁଏ । ଅନ୍ୟ ଅଞ୍ଚଳମାନଙ୍କରେ ମଧ୍ୟ ବିଭିନ୍ନ କାରଣରୁ ହଇଜା ଆରମ୍ଭ ହୋଇ ଗାଁରୁ ଗାଁ ବ୍ୟାପିଯାଏ । ଭାଗ୍ୟର ବିଡ଼ମ୍ବନା ଯେ, ଉତ୍କଳର ସର୍ବଜନ ଆରାଧ୍ୟ ଦେବତା କରୁଣାସାଗର ଶ୍ରୀଜଗନ୍ନାଥ ଲକ୍ଷ ଲକ୍ଷ୍ୟ ଭକ୍ତଙ୍କୁ ଦର୍ଶନ ଦେବା ପାଇଁ ପ୍ରତିବର୍ଷ ଜୁନ୍—ଜୁଲାଇ ମାସରେ ଯେଉଁ ସମୟରେ ରଥରେ ବିଜେ କରନ୍ତି, ସେହି ସମୟରେ ଶ୍ରୀକ୍ଷେତ୍ରରେ ଭକ୍ତମାନଙ୍କ ମଧ୍ୟରେ ହଇଜା ଆରମ୍ଭ ହୋଇ ଓଡ଼ିଶାର ଓ ଭାରତବର୍ଷର ବିଭିନ୍ନ ପ୍ରାନ୍ତକୁ ବିକୀର୍ଣ୍ଣ ହୋଇଯାଏ ।

ଓଡ଼ିଶାରେ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ସାଧାରଣତଃ ହଇଜା ଜୁଲାଇ, ଅଗଷ୍ଟ, ସେପ୍ଟେମ୍ବର ମାସରେ, ବର୍ଷାଦିନରେ ବ୍ୟାପେ ଏବଂ ବସନ୍ତ ଖରାଦିନର ଅବ୍ୟବହିତ ପୂର୍ବରୁ ବସନ୍ତ ଋତୁରେ ଆରମ୍ଭ ହୋଇଯାଏ । ଜନ୍ ବିମ୍ ସାହେବ ଏବଂ ନୀଳକଣ୍ଠ ଦାସଙ୍କର ଯେଉଁ ଅନୁଭୂତି ଉପରେ ବର୍ଣ୍ଣନା କରାଯାଇଛି ତାହା ସେହି ଜୁଲାଇମାସର ଘଟଣା । ଏ ବିଷୟରେ ମଧ୍ୟ ଓଡ଼ିଶାର ସବୁ ଗାଁର ଲୋକମାନଙ୍କର ଅନୁଭୂତି ଅଛି । ଏ ଅବସ୍ଥା କାଳେ କାଳେ ଲାଗି ରହିଥିଲା ଏବଂ ବହୁ ଲେଖକ ତାଙ୍କର ଅନୁଭୂତି ବର୍ଣ୍ଣନା କଲାବେଳେ ଏକଥା ଉଲ୍ଲେଖ କରିଛନ୍ତି ।

ଫକୀରମୋହନ ତାଙ୍କ ଆତ୍ମଜୀବନ ଚରିତ ବହିରେ ଲେଖିଛନ୍ତି ଯେ ତାଙ୍କୁ ଏକବର୍ଷ ପାଞ୍ଚମାସ ବୟସ ହୋଇଥିଲାବେଳେ, ତାଙ୍କର ବାପା, ତାଙ୍କ ଠାକୁର ମା ଏବଂ ଗ୍ରାମର କେତେକ ଲୋକଙ୍କ ସହିତ ପୁରୀରେ ରଥଯାତ୍ରା ଦେଖିବାକୁ ଯାଇଥିଲେ । ବାହୁଡ଼ା ସମୟରେ ଭୁବନେଶ୍ୱରରେ ଓଲାଉଠା ରୋଗରେ ଲୋକାନ୍ତର ପ୍ରାପ୍ତ ହେଲେ । ସେ ଭୁବନେଶ୍ୱର ମନ୍ଦିର ସମୀପସ୍ଥ ବିନ୍ଦୁସାଗର ପୁଷ୍କରଣୀର ପଥର ଘାଟ ଉପରେ ପ୍ରାଣତ୍ୟାଗ କଲେ । ଏହା ୧୮୪୪ ମସିହାର ଘଟଣା । ନୀଳକଣ୍ଠ ଦାସ ତାଙ୍କ ଆତ୍ମଜୀବନରେ ଦେଖିଛନ୍ତି ଯେ ତାଙ୍କ ପିତାମହ ୨୮ ବର୍ଷ ବୟସରେ ୧୮୭୮ ମସିହାରେ ହଇଜାରେ ମରିଯାଇଥିଲେ । ୧୮୧୧ ମସିହାରେ ପୁରୀରେ ରଥଯାତ୍ରା ସମୟରେ ଯେଉଁ ହଇଜା ହେବାର ସେ ଲେଖିଛନ୍ତି ତାହା ଉପରେ ଉଦ୍ଧୃତ ହୋଇଛି । ୧୯୦୩ ମସିହାରେ କଟକ କଲେଜିଏଟ୍ ସ୍କୁଲ ହଷ୍ଟେଲରେ, ସେ ନିଜେ ହଇଜା ରୋଗରେ ଆକ୍ରାନ୍ତ ହୋଇଥିଲେ ଏବଂ ଭାଗ୍ୟବଳରେ ବଞ୍ଚି ଯାଇଥିଲେ । ସେ ସମୟରେ ଓଡ଼ିଆ ପୂଝାରୀମାନଙ୍କୁ କଟକରେ ହଇଜା କିମିତି ବରାବର ହେଉଥିଲା ଏବଂ ଲୋକେ ଟୋପାଏ ପାଣି ନପାଇ କିପରି ମରୁଥିଲେ, ମଲାପରେ ତାଙ୍କୁ କେହି ପୋଡ଼ିବାକୁ ନଥିଲା ଏବଂ ଗୋପବନ୍ଧୁ ବାବୁ, ସେ ଓ ପ୍ରଚାରକ ଅନନ୍ତ ମିଶ୍ର ମଧ୍ୟ ହଇଜା ରୋଗୀଙ୍କ ସେବା କରିବା ପାଇଁ କିପରି ଏକ ସମିତି ଗଢ଼ିଥିଲେ ଏବଂ କଲେଜିଏଟ୍ ସ୍କୁଲ ପାଖ ଲମ୍ବା ଦେଉଳ ବସାଘରେ କିପରି ହଇଜା ରୋଗୀଙ୍କର ସେବା କରୁଥିଲେ, ତାହା ସେ ବର୍ଣ୍ଣନା କରିଛନ୍ତି । ୧୯୧୨ ମସିହାରେ ପୁରୀରେ ଠାକୁରଙ୍କ ନବ କଳେବର ହେବାବେଳେ ପୁରୀରେ କିପରି ଭୀଷଣ ହଇଜା ହେଲା ଏବଂ ତାହା ଗାଁମାନଙ୍କୁ ବ୍ୟାପିଲା ଓ ସେ କିପରି ସତ୍ୟବାଦୀ ସ୍କୁଲର ପିଲାମାନଙ୍କ ସଙ୍ଗରେ ଧରି ଶତାଧିକ ହଇଜା ରୋଗୀଙ୍କର ସେବା କରୁଥିଲେ ତାହା ମଧ୍ୟ ସେ ବର୍ଣ୍ଣନା କରିଛନ୍ତି ।

୧୯୦୫ ମସିହା ରଥଯାତ୍ରା ସମୟର ହଇଜା ବିଷୟରେ ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କ "ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ' ସ୍ଥାନ"

ବନ୍ଧରେ ଲେଖିଛନ୍ତି, "ସେ ବର୍ଷ ଶ୍ରୀମ୍ପୁଛୁଟି ସରିବା ପୂର୍ବରୁ ଶ୍ରୀଗୁଣ୍ଡିଚ୍ଚ ଭିଡ଼ ଆରମ୍ଭ ହୋଇଗଲା । ଅସଂଖ୍ୟ ଯାତ୍ରୀ ଆସି ଜମା ହୋଇ ପଡ଼ିଲେ । ସେମାନଙ୍କର ସେବା କରିବା ଉଦ୍ଦେଶ୍ୟରେ ଗୋଟିଏ ବିରାଟ ସ୍ୱେଚ୍ଛାସେବକ ଦଳ ଗଠିତ ହେଲା । ଗୋପବନ୍ଧୁବାବୁ ହେଲେ ଦଳର ଚାଳକ । କ୍ରମେ ହଇଜା ପ୍ରବଳ ହୋଇ-ଉଠିଲା । ଶହ ଶହ ଲୋକ ମରିବାକୁ ଲାଗିଲେ ଏପରିକ ଶବ ସବୁ ରାସ୍ତାରେ ପଡ଼ିବାର ଦେଖାଗଲା । ହଇଜାର ପ୍ରାଦୁର୍ଭାବ ମାସେ ପର୍ଯ୍ୟନ୍ତ ପ୍ରବଳ ଆକାରରେ ରହିଥିଲା, ଆମ ଉଚ୍ଚ ବିଦ୍ୟାଳୟ ଶ୍ରୀଷ୍ମଛୁଟି ସହିତ ମିଶାଇ ପୁଣି ଦେଢ଼ମାସ ବନ୍ଦ କରି ଦିଆଗଲା ।"

ପୁରୀରେ ହଇଜା ଖବର ପାଇ ତାଙ୍କ ବାପା ତାଙ୍କୁ ଘରକୁ ନେବାପାଇଁ ଶ୍ରାବଣମାସ ଶୁକ୍ଳପକ୍ଷ ଆରମ୍ଭରେ ଆସିଥିଲେ । କିନ୍ତୁ ସେ ବାପାଙ୍କ ସଙ୍ଗରେ ଗଲେ ନାହିଁ । ବାପା ଗାଁକୁ ଫେରିସିବାର ଚାରି ଦିନପରେ ହଇଜାରେ ମରିଗଲେ । ତାଙ୍କ ବୋଉ ତାର ଦୁଇଚାରି ଦିନ ପରେ ସେହି ରୋଗରେ ମଲେ । ତାଙ୍କର ଆଠବର୍ଷ ବୟସର ଭଉଣୀଟି, ସେ ରୋଗରେ ଆକ୍ରାନ୍ତ ହୋଇଥିଲା, ମାତ୍ର ବଞ୍ଚିଗଲା; କିନ୍ତୁ ତା' ପରଠାରୁ ରୁଗ୍‌ଣ ଅବସ୍ଥାରେ ରହି ଦୁଇବର୍ଷ ପରେ ମରିଗଲା ।

ସେହି ୧୯୦୮-୯ ମସିହା ସମୟରେ ହେବ, ମୋ' ଆଈ ମୋ' ମାମୁଁ ଏବଂ ତାଙ୍କ ଗାଁର ଆଉ କେତେ ଜଣଙ୍କ ସହିତ ପୁରୀର ରଥ ଦେଖିବାକୁ ଯାଇଥିଲେ । ସେତେବେଳେ ରେଲଗାଡ଼ି କଟକରୁ ପୁରୀ ଯାଉଥିଲେ ସୁଦ୍ଧା, ଆମ ଅଞ୍ଚଳର ଲୋକ ସାଧାରଣତଃ ଦେବୀନଦୀ ପାର ହୋଇ, ନିଆଳି, ପିପିଲି ପ୍ରଭୃତି ବାଟଦେଇ ଚାଲିକରି ପୁରୀ ଯାଉଥିଲେ । ଆମ ଗାଁରୁ କଟକ ୩୨ ମାଇଲ ଦୂର, କିନ୍ତୁ ଚାଲିବାଟରେ ପୁରୀ ୩୨/୩୩ ମାଇଲରୁ ବେଶି ନ ଥିଲା । ଆଈ ଓ ମ ମୁଁ ପ୍ରଭୃତି ରଥ ଦେଖି ଫେରିବା ବାଟରେ ଆଈ ହଇଜାରେ ମରିଗଲେ । ମାମୁଁ କେବଳ ମାଟି ଦୁଇ ମୁଠା ତା'ର ମୁହଁରେ ପକାଇଦେଇ ଘରକୁ ଫେରିଥିଲେ ବୋଲି ମୋର ବୋଉ କହୁଥିଲା । ଏହା ମୋ' ଜନ୍ମ ପୂର୍ବର ଘଟଣା । ପରେ ୧୯୩୩ ମସିହାରେ ମାମୁଁ ଓ ମୋର ଜଣେ ମାଉସୀ ମାମୁଁଙ୍କ ଗାଁରେ ସେହି ହଇଜା ରୋଗରେ ମରି ଯାଇଥିଲେ । ହଇଜା ରୋଗରେ ଆତ୍ମୀୟ ସ୍ୱଜନଙ୍କ ମୃତ୍ୟୁ ଅନୁଭୂତ ଆମ ଅଞ୍ଚଳର ପ୍ରାୟ ସବୁଲୋକଙ୍କର ଅଛି । ୧୯୨୦-୨୫ ମସିହା ପର୍ଯ୍ୟନ୍ତ ପୁରୀଠାରୁ ରଥପରେ ବର୍ଷାଦିନେ ଉପକୂଳ ଜିଲ୍ଲାମାନଙ୍କରେ ଏହା ବ୍ୟାପିଯାଏ ବୋଲି ଊଣା ଅଧିକ ସମସ୍ତେ ଜାଣନ୍ତି । ପୁରୀରେ ପାଣି କଳ ହେବା ପରେ ଏବଂ ବ୍ୟାପକ ଭାବରେ ଲୋକମାନଙ୍କୁ ହଇଜା ଇଞ୍ଜେକ୍‌ସନ ଦେବା

ଫଳରେ, ଗତ ସମୟରେ ଏହି ବ୍ୟାପକ ହଇଜା କମିଯାଇଛି । ରଥବେଳେ ପୁରୀକୁ ଯାଉଥିବା ସବୁ ଯାତ୍ରୀଙ୍କୁ ତ ବର୍ତ୍ତମାନ ହଇଜା ଇଞ୍ଜେକ୍‌ସନ୍ ନେଇଥିବା ପ୍ରମାଣପତ୍ର ଦେଖାଇବାକୁ ପଡ଼ୁଛି ।

୧୯୧୨-୧୩ ମସିହା ପର୍ଯ୍ୟନ୍ତ ହଇଜାର ସାଲାଇନ୍ ଚିକିତ୍ସା ବିଷୟରେ ଆମ ସାଧାରଣ ଲୋକଙ୍କର କୌଣସି ଧାରଣା ନ ଥିଲା । ୧୯୫୦ ମସିହା ପର୍ଯ୍ୟନ୍ତ ହଇଜା ରୋଗୀଙ୍କୁ ଡାକ୍ତରଖାନା ନେବାପାଇଁ କୌଣସି ସୁବିଧା ନ ଥିଲା । ପ୍ରତି ଜିଲ୍ଲାରେ ଗ୍ରାମାଞ୍ଚଳରେ ମାତ୍ର ଆଠରୁ ବେଶି ଡାକ୍ତରଖାନା ନ ଥିଲା । ସେଥିରେ କେବଳ ଜର, ସର୍ଦ୍ଦି, କାଶ ପ୍ରଭୃତି ସାଧାରଣ ରୋଗ ପାଇଁ ଔଷଧ ବଣ୍ଟନ କରାଯାଉଥିଲା । ସେଠାରେ ରୋଗୀ ରହିବା ପାଇଁ ଘର ନ ଥିଲା କିମ୍ବା ରୋଗୀ ସେଠାରେ ରହିବାକୁ ଆସୁ ନ ଥିଲେ । ସୁତରାଂ ଗାଁ ମାନଙ୍କରେ ହଇଜା ରୋଗ ହେଲେ ରୋଗୀଙ୍କୁ ଡାକ୍ତରଖାନା ନେବା ସୁବିଧା ଆଦୌ ନ ଥିଲା । ଗାଁ ବୈଦ୍ୟମାନେ ହଇଜା ରୋଗୀଙ୍କୁ ଚିକିତ୍ସା କରୁଥିଲେ । ସେଥିରେ ଅଧିକାଂଶ ରୋଗୀ ମରି ଯାଉଥିଲେ । ଅଳ୍ପ କେତେକ ବଞ୍ଚି ଯାଉଥିଲେ ।

୧୯୨୦ ମସିହା ପରେ ଓଡ଼ିଶାରେ ହଇଜା ରୋଗର ପ୍ରାଦୁର୍ଭାବ କମି ଯାଇଥିଲେ ମଧ୍ୟ, ବର୍ଷେ ବର୍ଷେ ବିଭିନ୍ନ ଅଞ୍ଚଳରେ ବ୍ୟାପକ ଭାବରେ ହେଉଥିଲା । ୧୯୨୮ ମସିହାରେ ଜଷ୍ଟିସ୍ ହରିହର ମହାପାତ୍ର ନିଜେ ହଇଜା ରୋଗରେ ଆକ୍ରାନ୍ତ ହୋଇ ବଞ୍ଚିପାରିଥିଲେ ବୋଲି ଲେଖିଛନ୍ତି । ପରବର୍ତ୍ତୀ କାଳରେ ବିଶେଷ ସୁନାମ ଅର୍ଜନ କରି ସେ ପାଟନା ହାଇକୋର୍ଟର ଜଷ୍ଟିସ୍ ହୋଇଥିଲେ । ସାମ୍ୟବାଦୀ ନେତା ଭଗବତୀ ପାଣିଗ୍ରାହୀଙ୍କର ହଇଜା ରୋଗରେ ମୃତ୍ୟୁ ହୋଇଥିଲା । ୧୯୩୩ ମସିହାରେ ଆମେ କଟକରେ ହାଇସ୍କୁଲରେ ପଢ଼ିଲାବେଳେ କଟକ ସହରରେ ଭୀଷଣ ହଇଜା ହୋଇଥିଲା । ସେଥିପାଇଁ କଟକର ସ୍କୁଲ କଲେଜ ସବୁ ପ୍ରାୟ ମାସକ ପାଇଁ ବନ୍ଦ କରି ଦିଆଯାଇଥିଲା । ସେ ବର୍ଷ ନୀଳକଣ୍ଠ ଦାସ ଲେଖିଥିବା, ସେହି ଲଣ୍ଡାଦେଉଳ ପାଖ କାଠଯୋଡ଼ୀ ହଷ୍ଟେଲରୁ, ଗ୍ରୀଷ୍ମଛୁଟି ପରେ ସ୍କୁଲ ଖୋଲିବା ପୂର୍ବରୁ ହଇଜା ଆରମ୍ଭ ହୋଇଗଲା ମୁଁ ସେତେବେଳେ କାଜିବଜାରରେ ଗୋଟିଏ ମେସ୍‌ରେ ରହୁଥିଲି । ଛୁଟି ପରେ ଆମେ ସ୍କୁଲରେ ଯୋଗଦେବା ପାଇଁ ଘରୁ ଆସିବାର ଦୁଇ ତିନି ଦିନ ମଧ୍ୟରେ, ଆମ ମେସ୍‌ରେ ଜଣେ ପିଲାକୁ ହଇଜା ହେଲା । ତାକୁ ତୁରନ୍ତ କଟକ ବଡ଼ ଡାକ୍ତରଖାନାକୁ ପଠାଇ ଦିଆଗଲା ଏବଂ ସେ ସେଠାରୁ ଆରୋଗ୍ୟ ହୋଇ ଫେରିଲା । ମାତ୍ର ଆମେ ସେଦିନ ରାତିଟି ମେସ୍‌ରେ ଅତି ଭୟଭୀତ ହୋଇ କଟାଇଲୁ । ପରଦିନ ମେସ୍‌ରେ ଆମ୍ଭମ ସବୁ ପିଲା ଗାଁକୁ ଚାଲିଗଲୁ ।

ସେ ବର୍ଷ କଟକରୁ ହଇଜା ଅଳ୍ପଦିନ ମଧ୍ୟରେ ଆମ ଅଞ୍ଚଳର ଗାଁ ମାନଙ୍କୁ ବ୍ୟାପିଗଲା । ମୋର ମାମୁଁଘର ଗାଁରେ ମାମୁଁ ଓ ମାଉସୀ ମରିଗଲେ । ମୋର ଗୋଟିଏ ଭଉଣୀଘର ଗାଁରେ ହଇଜା ଲାଗିଲା ପରେ ଭଉଣୀର ବୁଢ଼ା ଶଶୁର, ଦିନେ ରାତିରେ ଗାଁ ଠାକୁରାଣୀଙ୍କଠାରୁ ପାଣି ଆଣି ତାଙ୍କ ପରିବାରରେ ସମସ୍ତଙ୍କୁ ପିଇବାକୁ ଦେଇଥିଲେ । ଫଳରେ ତାଙ୍କ ଘରେ ଗୋଟିକ ପରେ ଗୋଟିଏ ସମସ୍ତଙ୍କୁ ହଇଜା ହେଲା । ଭଉଣୀର ସ୍ୱାମୀ, ଶାଶୂ, ଏବଂ ଗୋଟିଏ ଝିଅଟି ମରିଗଲେ । ଅନ୍ୟ ତିନି ଚାରି ଜଣ ରୋଗରେ ଆକ୍ରାନ୍ତ ହୋଇ ବଞ୍ଚିଗଲେ । ଏହିପରି ଅବସ୍ଥା ବହୁ ଗାଁରେ ବହୁ ପରିମାଣରେ ଘଟିଥିଲା । ସେ ବର୍ଷ ଆମ ଅଞ୍ଚଳରେ ହଇଜା ଦଶହରା ପର୍ଯ୍ୟନ୍ତ ଲାଗି ରହିଥିଲା ।

୧୯୫୦-୫୧ ମସିହାରେ ଅନଗୁଳ ସହର ପାଖରେ ରନ୍ତଲେଇ ଗାଁରେ ନେପାଳ ବାବା ନାମରେ ଜଣେ ବାଳକ ସବୁ ପ୍ରକାର ରୋଗ ଆରୋଗ୍ୟ ପାଇଁ ହୁକୁମ ଔଷଧ ବାଣ୍ଟିଲେ । ଏ ଖବର ଏତେ ଜୋର୍‌ରେ ପ୍ରଚାରିତ ହୋଇଗଲା ଯେ, ହୁକୁମ ଔଷଧ ନେବା ପାଇଁ ଦୂର ରାଜ୍ୟ ମଧ୍ୟ ପ୍ରଦେଶ, ଉତ୍ତର ପ୍ରଦେଶ ଓ ବିହାର ପ୍ରଭୃତି ରାଜ୍ୟରୁ ହଜାର ହଜାର ସଂଖ୍ୟାରେ ଲୋକ ରେଲଗାଡ଼ି, ବସ୍ ଓ ଘରୋଇ ଗାଡ଼ି ପ୍ରଭୃତିରେ ଔଷଧ ନେବାକୁ ଆସିଲେ । ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ତ ବହୁତ ଲୋକ ପ୍ରତିଦିନ ସେଠାରେ ଜମା ହୋଇ ଯାଉଥିଲେ, ପ୍ରଥମେ ପ୍ରାୟ ପନ୍ଦରଦିନ ଲୋକମାନେ ଔଷଧ ଖାଇ ଅଦ୍ଭୁତ ଭାବରେ ଭଲ ହୋଇଗଲେ ବୋଲି ଭାବିଲେ । ସେ କଥା ପ୍ରଚାର ହେବାରୁ ଆହୁରି ଅଧିକ ସଂଖ୍ୟାରେ ଲୋକ ରନ୍ତଲେଇଠାରେ ଜମାହେଲେ । ମୁଁ ସେତେବେଳେ ସମ୍ବଲପୁର କଲେଜରେ ଚାକିରି କରୁଥିଲି । ଉତ୍କଳ ବିଶ୍ୱବିଦ୍ୟାଳୟର ଗୋଟିଏ ମିଟିଂରେ ଯୋଗ ଦେବା-ପାଇଁ ଦୁଇ ତିନିଦିନ ପାଇଁ କଟକ ଆସିଥିଲି । ସେତେବେଳେ ଓଡ଼ିଶା ଭିତରେ ବିଶେଷତଃ ସମ୍ବଲପୁର ରାସ୍ତାରେ ବସ୍ କମ୍ପା ରେଲରେ ଯିବା ଆସିବା କରିବା ଅତ୍ୟନ୍ତ କଷ୍ଟକର ହୋଇ ପଡ଼ିଥିଲା । ଚାରିଆଡ଼େ ଲୋକମାନେ ଅନଗୁଳ ଆସୁଥିବା ଏବଂ ଫେରୁଥିବା ହେତୁ, ରେଲରେ କମ୍ବା ବସ୍‌ରେ ଟିକେଟ୍ ପାଇବା ଅତି କଷ୍ଟକର ଥିଲା । ମୁଁ ସମ୍ବଲପୁରକୁ ଫେରିଲାବେଳେ, କଟକରୁ ମେରାମୁଣ୍ଡଳି ପର୍ଯ୍ୟନ୍ତ ଗୋଟିଏ ରେଲଡ଼ବା ଦୁଆରମୁହଁରେ ଆତି କଷ୍ଟରେ ଠିଆ ହୋଇକରି କଲି ଏବଂ ଅତି କଷ୍ଟରେ ମଧ୍ୟ ମେରାମୁଣ୍ଡଳିଠାରେ ସମ୍ବଲପୁର ବସ୍‌ରେ ଟିକେଟ ଖଣ୍ଡିଏ ପାଇଲି । ଅନଗୁଳଠାରେ ଆମ ବସ୍ ଦିନ ଗୋଟାକ ବେଳେ ପହଞ୍ଚିଲା ବେଳକୁ, ପ୍ରାୟ ହଜାରରୁ ଅଧିକ ଲୋକ ରନ୍ତଲେଇ ପାଖରେ ରାସ୍ତା ଦୁଇ କଡ଼ରେ ବସିଥିଲେ । ନେପାଳବାବା କିଛି ସମୟପରେ ଆସି ସେମାନଙ୍କୁ ଔଷଧ ବାଣ୍ଟିବେ

ବୋଲି ସେମାନେ ବସିଥାନ୍ତି । ସେଠାରେ ପହଞ୍ଚି ବସ୍ ଡ୍ରାଇଭର, କଣ୍ଡକ୍ଟର ଓ କେତେକ ବସ୍ ଯାତ୍ରୀ ସେ ଧାଡ଼ିରେ ବସିଗଲେ । ଆମେ ବସ୍‌ରେ ଅପେକ୍ଷା କରିଥିଲୁ । କିଛି ସମୟ ପାଇଁ ମୁଁ ବସ୍‌ରୁ ବାହାରି, କିଛି ଦୂରରେ ଠିଆ ହୋଇ-ଥିବା ମଧ୍ୟପ୍ରଦେଶରୁ ଆସିଥିବା କେତେକ ଲୋକଙ୍କ ସଙ୍ଗରେ କଥାବାର୍ତ୍ତା ହୋଇଥିଲି । ସେମାନେ ଗାଉଁଲି ଲୋକ ନଥିଲେ । ଶିକ୍ଷିତ ଧର୍ମଲୋକ ବୋଲି ମନେ ହେଉଥିଲା । ପାଖରେ ଗୋଟାଏ ଖାଲରେ ନିର୍ମଳ ପାଣିଥିଲା । ସେମାନେ ମୋତେ କହିଲେ, ଯେ ସେ ସ୍ଥାନର ପାଣି ପବନ ଏପରି ସୁନ୍ଦର ଯେ ପାଞ୍ଚଦିନ ହେଲା ଡିସେମ୍ବରମାସ ଶୀତରେ ସେଠାରେ ରହିଥିଲେ ସୁଦ୍ଧା ସେମାନଙ୍କୁ ଟିକିଏ ସର୍ଦ୍ଦି ସୁଦ୍ଧା ହୋଇନାହିଁ ।

କିଛି ସମୟ ପରେ ବାଲକ ନେପାଳିବାବା ତିନି ଚାରି ଲୋକଙ୍କ ସଙ୍ଗରେ ଆସି ଧାଡ଼ିରେ ବସିଥିବା ଲୋକଙ୍କ ହାତରେ ଟିକିଏ ଟିକିଏ ଔଷଧ ଦେଇଗଲେ ଏବଂ ଲୋକମାନେ ଉଠିଗଲେ । ଆମ ବସ୍ ସମ୍ବଲପୁର ଗଲା । ତାର ଠିକ୍ ଦୁଇ ତିନିଦିନ ପରେ ଆମେ ଜାଣିଲୁ ଯେ ରଣ୍ଡେଲଇରେ ଭୀଷଣ ହଇଜା ହୋଇ ଚାରିଆଡ଼କୁ ରେଲ୍ ଓ ବସ୍‌ରେ ଯାଉଥିବା ଶହ ଶହ ଲୋକ ହଇଜାରେ ଆକ୍ରାନ୍ତ ହୋଇଗଲେ । ସମ୍ବଲପୁରେ, କଟକରେ, ଖଡ଼ଗପୁରେ ବାଲାସପୁରେ ଏବଂ ଆହୁରି ବହୁ ଲୋକ ଷ୍ଟେସନମାନଙ୍କରେ ଶହଶହ ମୃତ ଓ ମୁମୂର୍ଷୁ ହଇଜା ରୋଗୀଙ୍କୁ ଗାଡ଼ିରୁ ବାହାର କରିହେଲା । ବସ୍‌ରେ ଯାଉଥିବା ଯାତ୍ରୀମାନଙ୍କୁ ହଇଜା ହେବା କ୍ଷଣି ତାଙ୍କୁ ରାସ୍ତା କଡ଼ରେ ବିଭିନ୍ନ ସ୍ଥାନରେ ଓହ୍ଲାଇ ଦିଆଗଲା । ଶହ ଶହ ଲୋକ ଓଡ଼ିଶାରେ ଏବଂ ପଡ଼ୋଶୀ ରାଜ୍ୟମାନଙ୍କରେ ମରିଯିବାର ଖବର, ଖବରକାଗଜ-ମାନଙ୍କରେ ବାହାରିଲା । ଓଡ଼ିଶା ସରକାର ଏପରି ଗୋଟାଏ ପରିସ୍ଥିତିକୁ ବନ୍ଦ କରି ନଥିବାରୁ ଚାରିଆଡ଼େ ସମାଲୋଚନା ହେଲା । ଇଂଲଣ୍ଡ ଏବଂ ଆମେରିକାର ଖବରକାଗଜମାନଙ୍କରେ ସ୍ୱାଧୀନ ଭାରତରେ ଏପରି ପରିସ୍ଥିତି ଘଟିଥିବାରୁ, ଏ ଦେଶର କୁତ୍ସାରଟନା କରିଗଲା । ଓଡ଼ିଶା ସରକାର ନେପାଳିବାବା ଏବଂ ତାଙ୍କ ସହଯୋଗୀମାନଙ୍କୁ ଗିରଫ କଲେ । ତା ପରେ ରଣ୍ଡେଲଇ ନାଟକର ଯବନିକା ପଡ଼ିଲା ।

ସ୍ୱାଧୀନତା ପରେ ବିଭିନ୍ନ ପରିସ୍ଥିତିରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଆଜିସୁଦ୍ଧା ବ୍ୟାପକ ହଇଜା ହୋଇଯାଉଛି । ୧୯୯୧ ଏବଂ ୧୯୯୩ ମସିହାରେ କଳାହାଣ୍ଡି ଏବଂ କୋରାପୁଟ ଜିଲ୍ଲାମାନଙ୍କରେ ଖାଦ୍ୟାଭାବ ଏବଂ ହଇଜା ପ୍ରକୋପରେ ଶହ ଶହ ଲୋକ ମରିଯିବା ଖବର ସମ୍ବାଦପତ୍ରମାନଙ୍କରେ ବାହାରିଥିଲା ଏବଂ

ଓଡ଼ିଶା ବିଧାନସଭାରେ ଆଲୋଚିତ ହୋଇଥିଲା । ମାତ୍ର ୧୯୬୦ ମସିହା ପୂର୍ବରୁ ପୂର୍ବରୁ ଯେପରି ହଇଜା ପ୍ରତିବର୍ଷ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କର ଗାଁମାନଙ୍କରେ ମାଡ଼ି ଯାଉଥିଲା ତାହା ନିୟନ୍ତ୍ରିତ ହୋଇଯାଇଛି । ଏବେ କାଁ ଭାଁ ହଇଜା ଏଠି ସେଠି ହେଉଛି, ମାତ୍ର ସେଥିରେ ଏ ରାଜ୍ୟରେ ଗଣମୃତ୍ୟୁ ହେଉ ନାହିଁ, ପୂର୍ବ ଅପେକ୍ଷା ଲୋକମାନେ ଏବଂ ସରକାରୀ ସ୍ୱାସ୍ଥ୍ୟ ବିଭାଗ ଅଧିକ ସଚେତନ ହେଉ-ଛନ୍ତି । କୌଣସି ଅଞ୍ଚଳରେ ହଇଜା ହେଲେ ଖବରକାଗଜମାନଙ୍କରେ ପ୍ରଚାର ହେଉଛି । ସ୍ୱାସ୍ଥ୍ୟବିଭାଗ କର୍ମଚାରୀମାନେ କୂଅ ପୋଖରୀ ବିଶୋଧନ କରୁଛନ୍ତି ଏବଂ ବ୍ୟାପକଭାବରେ ଲୋକମାନଙ୍କୁ ହଇଜା ପ୍ରତିଷେଧକ ଇଞ୍ଜେକ୍‌ସନ୍ ଦେଉଛନ୍ତି । ଚାରିଆଡ଼େ ମଧ୍ୟ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରମାନ ରହିଥିବା ହେତୁ ହଇଜା ପ୍ରତିଷେଧକ କାର୍ଯ୍ୟମାନ କରି ହେଉଛି ଏବଂ ହଇଜା ଏକାବେଳକେ ବହୁ ଅଞ୍ଚଳକୁ ମାଡ଼ି ଯାଉ ନାହିଁ । ଆଜିକାଲିର ଗାଁ ଲୋକମାନେ ସେମାନଙ୍କ ବାପଅଜା କାଳର ଲୋକ-ମାନଙ୍କ ପରି ଏତେ ଅଜ୍ଞ ଓ କୁସଂସ୍କାରାଚ୍ଛନ୍ନ ନୁହନ୍ତି । ସେମାନଙ୍କ ମଧ୍ୟରୁ ଅନେକ ଲୋକ ସ୍କୁଲ କଲେଜରେ ପଢ଼ିଛନ୍ତି । ସେମାନେ ଜାଣିଗଲେଣି ଯେ, ହଇଜା ଗୋଟିଏ ସଂକ୍ରାମକ ଓ ମାରାତ୍ମକ ରୋଗ । ଏହି ଠାକୁରାଣୀଙ୍କ କୋପରୁ ହୁଏ ନାହିଁ କିମ୍ବା ଠାକୁରାଣୀଙ୍କ ପାଖରେ ପଣାପାଣି ଦେଲେ ଏହାର ଉପଶମ ହୁଏ ନାହିଁ । ଏହାର ପ୍ରତିଷେଧ ପାଇଁ ଲୋକମାନେ ହଇଜା ଇଞ୍ଜେକ୍‌ସନ୍ ନେବା ଦରକାର ଏବଂ କୂଅ ପୋଖରୀର ପାଣି ବିଶୋଧନ କରିବା ଆବଶ୍ୟକ । ରୋଗୀକୁ ଡାକ୍ତର-ଖାନାରେ ଚିକିତ୍ସା କରାଇବା ଜରୁରୀ ଭାବରେ ଆବଶ୍ୟକ । ସୁତରାଂ କୌଣସି ଗ୍ରାମରେ ହଇଜା ଆରମ୍ଭ ହେଲାକ୍ଷଣି ଲୋକମାନେ ଏସବୁ ଅବସ୍ଥା ପାଇଁ ନିଜେ ପାଟିତୁଣ୍ଡ ଓ ଦଉଡ଼ାଧାପଡ଼ କରୁଛନ୍ତି । ସେଥିଯୋଗୁଁ ରୋଗ ଗାଁରୁ ଗାଁ ଚଞ୍ଚଳ ମାଡ଼ି ଯାଉନାହିଁ । ମୋର ମନେ ଅଛି, ପ୍ରାୟ ୧୯୭୫ କିମ୍ବା ୭୬ ମସିହା ହେବ । ଆମ ଗାଁ ଧୋବା ସାହିରେ ଜଣକୁ ହଇଜା ହେଲା । ସାହି ଲୋକମାନେ ଆତଙ୍କିତ ହୋଇଗଲେ । ଡାକ୍ତରଖାନା ସେଠାରୁ ଚାରିମାଇଲ ବାଟ । ସେଠାକୁ ରୋଗୀକୁ ନେବାକୁ କୌଣସି ସୁବିଧା ନଥାଏ । ଡାକ୍ତରଖାନାରେ ଆମ୍ବୁଲାନ୍‌ସ ଗାଡ଼ି ନଥାଏ କିମ୍ବା ସେ ଗାଁକୁ ଗାଡ଼ିମଟର ଯିବାର ରାସ୍ତା ନଥାଏ । କେତେଜଣ ଲୋକ ସାହସ କରି ରୋଗୀକୁ ଗୋଟିଏ ବେତାରେ ବସାଇ ଭାରକରି ଜଗତସିଂହପୁର ଡାକ୍ତରଖାନାକୁ ନେଇଗଲେ । ସେ ରୋଗୀ ବଞ୍ଚିଗଲା ଏବଂ ସେ ଗାଁରେ ଆଉ କାହାକୁ ହଇଜା ହେଲା ନାହିଁ । ୧୯୪୦ ମସିହା ପୂର୍ବରୁ ନିରକ୍ଷର ଲୋକମାନଙ୍କର ଏପରି ତତ୍ପରତା ଅଚିନ୍ତନୀୟ ଥିଲା ।

ହଇଜାପରି ବସନ୍ତ ମଧ୍ୟ ଊନବିଂଶ ଶତାବ୍ଦୀରେ ଏବଂ ବିଂଶ ଶତାବ୍ଦୀର ପ୍ରଥମ କୋଡ଼ିଏ ବର୍ଷ ମଧ୍ୟରେ ଗୋଟିଏ ମାରାତ୍ମକ ସଂକ୍ରାମକ ରୋଗଥିଲା ଏବଂ ସେଥିରେ ବହୁଲୋକ ମରିଯାଉଥିଲେ । ସେ ରୋଗ ମଧ୍ୟ ଠାକୁରାଣୀଙ୍କ କୋପରୁ ହୁଏ ବୋଲି ବହୁଲୋକ ଭାବୁଥିଲେ । ରୋଗୀପାଇଁ ନଅ ଦଶଦିନ ମଙ୍ଗଳା ବା ଶୀତଳା ଠାକୁରାଣୀଙ୍କର ପୂଜା ହେଉଥିଲା । ସାହି ଭାଇ ଲୋକମାନେ ପୂଜାରେ ଯୋଗ ଦେଉଥିଲେ ଏବଂ ପ୍ରସାଦ ଖାଉଥିଲେ । ମୋର ମନେ ଅଛି ଯେ, ଆମେ ପ୍ରାଥମିକ ସ୍କୁଲରେ ପଢ଼ିଲାବେଳେ ଆମ ସାହିରେ ଜଣକ ଘରେ ବସନ୍ତ ହେଲା । ନବରାତ୍ର ବା ନଅଦିନ ପୂଜାବେଳେ ଆମେ ତାଙ୍କ ଘରକୁ ଯାଇଥିଲୁ ଏବଂ ପୂଜା ପ୍ରସାଦ ଖାଇଥିଲୁ । ଆମେ ପ୍ରାଥମିକ ସ୍କୁଲରେ ପଢ଼ିଲା ବେଳକୁ ଗାଁ ଲୋକମାନଙ୍କୁ ବସନ୍ତ ଟିକା ଦିଆ ହେଉଥାଏ । ଆମ ଗାଁକୁ ମଝିରେ ମଝିରେ ଟିକାଦିଆ ଆସନ୍ତି । ସେ ଆସିଲାବେଳେ ଆମେ ସବୁ ପିଲା ଏଣେ ତେଣେ ଲୁଚୁ । ବାପ ମା ମଧ୍ୟ ପିଲାମାନଙ୍କୁ ଟିକା ନେବାକୁ ବାଧ୍ୟ କରୁ ନଥିଲେ । କାରଣ ପ୍ରଥମଥର ଟିକା ନେଲାପରେ ପିଲାମାନଙ୍କୁ ଖୁବ୍ ଜର ହୁଏ ଏବଂ ଟିକାନେବା ସ୍ଥାନରେ ବଡ଼ ବଡ଼ ଘା ହୁଏ । ତଥାପି ଆମକୁ ଆଠ ନଅ ବର୍ଷ ହେଲାବେଳେ ଆମେ ପ୍ରଥମ ବସନ୍ତ ଟିକା ନେଇଥିଲୁ । ଏବେ କିନ୍ତୁ ସବୁ ପିଲା ଅତି ଅଳ୍ପ ବୟସରୁ ବସନ୍ତ ଟିକା ନେଉଛନ୍ତି ଏବଂ ବସନ୍ତ ରୋଗ ଏ ଦେଶରୁ ସମ୍ପୂର୍ଣ୍ଣ ନିର୍ମୂଳ ହୋଇଛି ବୋଲି କୁହାଯାଉଛି । ବସନ୍ତ ରୋଗ ଆଜିକାଲି ଗାଁ ମାନଙ୍କରେ ହେଉନାହିଁ ଯଦିଓ ହାଡ଼ଫୁଟି ଓ ମିଳମିଳା ରୋଗ ବହୁ ସମୟରେ ହେଉଛି ।

ଏସବୁ ସଂକ୍ରାମକ ରୋଗ ବ୍ୟତୀତ ଆମ ପିଲାକାଳେ ବିଶେଷତଃ ୧୯୨୫ ଠାରୁ ୧୯୩୫ ମଧ୍ୟରେ ଲୋକମାନଙ୍କୁ ଅନ୍ୟ ବହୁପ୍ରକାର ରୋଗ ହେଉଥିଲା ଏବଂ ଗାଁ ବଇଦମାନଙ୍କ ବ୍ୟତୀତ ରୋଗୀମାନଙ୍କର ଚିକିତ୍ସା ପାଇଁ କିଛି ସୁବିଧା ନଥିଲା । ଆମ ପିଲାବେଳେ ଲୋକମାନଙ୍କୁ ବ୍ୟାପକଭାବେ ମାଲେରିଆ ରୋଗ ହେଉଥିଲା । ପୂର୍ବେ ଆମ ଗାଁମାନଙ୍କରେ ମାଲେରିଆ ରୋଗ ହେଉ ନଥିଲା । ଲୋକେ କହନ୍ତି ଯେ, ବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧି ବେଳକୁ ଆମ ଅଞ୍ଚଳ ସବୁ କଲିକତା ସହ ରେଳପଥ ସଂଯୁକ୍ତ ହୋଇ ଯିବାରୁ ଏବଂ ବହୁଲୋକ କଲିକତା ଯିବା ଆସିବା କରିବାରୁ, ମାଲେରିଆ ଆମଆଡ଼େ ବ୍ୟାପକ ଭାବରେ ହେଲା । ସେ ସମୟରେ ଗୋଟିଏ ଜିଲ୍ଲାରେ ଡିଷ୍ଟ୍ରିକ୍ଟବୋର୍ଡ଼ ଦ୍ୱାରା ପରିଚାଳିତ ଦାତବ୍ୟ ବା ଚିକିତ୍ସାଳୟ ସାତ ଆଠରୁ ବେଶି ନଥିଲା । ଡାକ୍ତରଖାନାମାନଙ୍କରେ ବୋତଲଧରି ପ୍ରତିଦିନ ମାଲେରିଆ ରୋଗୀମାନଙ୍କର ଭିଡ଼ ହେଉଥିଲା ଏବଂ ଡାକ୍ତରମାନେ ବିଶେଷ କିଛି

ପରୀକ୍ଷା ନକରି ରୋଗୀଙ୍କୁ କୁଇନାଇନ୍ ଔଷଧ ଦେଉଥିଲେ । ଅନେକ କବିରାଜ ମଧ୍ୟ କରିରୋଗୀଙ୍କୁ କୁଇନାଇନ୍ ଔଷଧ ଦେଉଥିଲେ । ବହୁଲୋକ ଅନେକଦିନ ମାଲେରିଆ ରୋଗ ଭୋଗି ଭୋଗି ମରିଯାଉଥିଲେ । ବର୍ତ୍ତମାନ ମାଲେରିଆ ନିରାକରଣ କାର୍ଯ୍ୟକ୍ରମ ଦ୍ଵାରା ମାଲେରିଆ ରୋଗ ବହୁ ପରିମାଣରେ କମି ଯାଇଛି, ଯଦିଓ ଏହା ଏହା ସମ୍ପୂର୍ଣ୍ଣ ନିଶ୍ଚିହ୍ନ ହୋଇ ଯାଇନାହିଁ ।

ମାଲେରିଆ ବ୍ୟତୀତ କଟକ ଓ ପୁରୀ ଜିଲ୍ଲାରେ ବ୍ୟାପକ ଭାବରେ ବାତଜର ହେଉଥିଲା । ଆଜକାଲି ମଧ୍ୟ ସେ ରୋଗ ବହୁ ଲୋକଙ୍କୁ ହେଉଛି । ବାତଜରରେ ଲୋକମାନେ ବହୁ କଷ୍ଟ ପାଉଥିଲେ ଏବଂ ସେମାନଙ୍କର ଗୋଡ଼ ପ୍ରଭୃତି ଅଙ୍ଗ ଗୋଦର ହୋଇ ଯାଉଥିଲା । ମାତ୍ର ସେଥିରେ ରୋଗୀମାନେ ଚଞ୍ଚଳ ମରି ଯାଉ ନଥିଲେ । ଏ ସବୁ ବ୍ୟତୀତ ଆମାଶୟ ପ୍ରଭୃତି ବାର ପ୍ରକାର ରୋଗ ବ୍ୟାପକ ଭାବରେ ଲୋକମାନଙ୍କୁ ହେଉଥିଲା ଏବଂ ଶିଶୁ ମୃତ୍ୟୁହାର ଖୁବ୍ ଅଧିକ ଥିଲା । ଆଜକାଲି ମଧ୍ୟ ପାଶ୍ଚାତ୍ୟ ଦେଶମାନଙ୍କ ତୁଳନାରେ ଭାରତବର୍ଷରେ ଶିଶୁମୃତ୍ୟୁହାର ଖୁବ୍ ଅଧିକ । ଏବେ ଖବରକାଗଜମାନଙ୍କରେ ବାହାରୁଛି ଯେ, ଭାରତବର୍ଷରେ ଓଡ଼ିଶାରେ ଶିଶୁ ମୃତ୍ୟୁହାର ସବୁଠାରୁ ଅଧିକ । ହଜାରେ ଜନ୍ମିତ ଶିଶୁମାନଙ୍କ ମଧ୍ୟରୁ ପ୍ରାୟ ଏକଶହ ମରି ଯାଉଛନ୍ତି । ସାଧାରଣ ଭାବେ କୁହାଯାଇପାରେ ଯେ, ସ୍ଵାଧୀନତା ପୂର୍ବରୁ ଆମ ଗାଁ ଗହଳରେ ସାଧାରଣ ଲୋକ ସ୍ଵାସ୍ଥ୍ୟବାନ୍ ନଥିଲେ ଏବଂ ସ୍ଵାସ୍ଥ୍ୟପାଇଁ ସଚେତନତା ସେମାନଙ୍କ ମଧ୍ୟରେ ବିଶେଷଭାବରେ ନଥିଲା ।

ପ୍ରାଚୀନ କାଳରୁ ଆୟୁର୍ବେଦ ଚିକିତ୍ସା ଆମଦେଶର ସବୁଆଡ଼େ ପ୍ରଚଳିତ ଥିଲା । ପ୍ରତି ଗାଁରେ କିମ୍ବା ପ୍ରତି ଦୁଇ ତିନି ଗାଁରେ କବିରାଜମାନେ ଥିଲେ । ବିଂଶ ଶତାବ୍ଦୀର ପ୍ରଥମ, ଦ୍ଵିତୀୟ ଦଶନ୍ଧି ବେଳକୁ ଜିଲ୍ଲା ଓ ସବ୍‌ଡିଭିଜନ ମହକୁମାମାନଙ୍କରେ ଡାକ୍ତରଖାନାମାନ ଖୋଲା ହୋଇଯାଇଥିଲା । ଗ୍ରାମାଞ୍ଚଳରେ ଥାନା ମହକୁମାମାନଙ୍କରେ ଦାତବ୍ୟ ଚିକିତ୍ସାଳୟମାନ ଥାଏ । ସେଥିରେ ସବୁ ଏଲ୍.ଏମ୍ ପି. ଡାକ୍ତର ବା ଡାକ୍ତରୀ ଚିକିତ୍ସା ପାଇଁ ଲାଇସେନ୍ସ୍ ପ୍ରାପ୍ତ ଡାକ୍ତରମାନେ ନିଯୁକ୍ତ ପାଉଥାନ୍ତି । ସେ ସବୁ ଚିକିତ୍ସାଳୟ ଜିଲ୍ଲାବୋର୍ଡ଼ମାନଙ୍କ ଅଧୀନରେ ଥିଲା । ଔଷଧ କିଣିବା ପାଇଁ ସେମାନଙ୍କର ପଇସା ନଥାଏ । କିମ୍ବା ସେଠାରେ ରୋଗୀ ରହିବା ପାଇଁ ବ୍ୟବସ୍ଥା ନଥାଏ । ତେଣୁ ସାଧାରଣତଃ ରୋଗୀମାନଙ୍କୁ କବିରାଜ-ମାନେ ଚିକିତ୍ସା କରୁଥିଲେ । ଆଗେ ଆୟୁର୍ବେଦ ଶାସ୍ତ୍ରବିତ୍ ପଣ୍ଡିତ କବିରାଜମାନେ ରୋଗୀମାନଙ୍କୁ ଦକ୍ଷ ଭାବରେ ଚିକିତ୍ସା କରି ପାରୁଥିଲେ । ସେମାନଙ୍କର ସଂଖ୍ୟା

ଆମ ପିଲାବେଳକୁ ଖୁବ୍ କମି ଯାଇଥିଲା । ଏମେ ଲୋକମାନଙ୍କର ପାଶ୍ଚାତ୍ୟ ଚିକିତ୍ସା ପଦ୍ଧତି ଏବଂ ସେଥିରେ ଶିକ୍ଷା ପାଇଥିବା ଡାକ୍ତରମାନଙ୍କ ପ୍ରତି ଅଧିକ ବିଶ୍ୱାସ ଜାତ ହୋଇଥିଲା । କିନ୍ତୁ ଡାକ୍ତର ଏବଂ ଡାକ୍ତରଖାନା ସଂଖ୍ୟା ଖୁବ୍ କମ୍ ଥିଲା । ଜିଲ୍ଲା ଓ ସବ୍‌ଡିଭିଜନ ମହକୁମାମାନଙ୍କରେ ଯେଉଁ ହାସ୍‌ପାତାଳମାନ ଥିଲା, ସେଥିରେ ବହୁ ଅଭାବ ଏବଂ ଅବ୍ୟବସ୍ଥା ହେତୁ ସେଠାକୁ ଯାଇ ଭଲ ହୋଇ ଫିରିବାର ବିଶ୍ୱାସ ରୋଗୀମାନଙ୍କର ନଥିଲା । କଟକର ବଡ଼ ଡାକ୍ତରଖାନାରେ ମଧ୍ୟ ସେହି ଅଭାବ ଓ ଅସୁବିଧା ଥିଲା । ଅତ୍ୟନ୍ତ ସଙ୍କଟାପନ୍ନ ନ ହେଲେ ରୋଗୀମାନେ ସେଠାକୁ ଆସୁ ନଥିଲେ ।

ପଚିଶବର୍ଷ ତଳର ଅବସ୍ଥା ସହିତ ବର୍ତ୍ତମାନର ଅବସ୍ଥା ତୁଳନା କଲେ ସହଜରେ ଅନୁମିତ ହୁଏ ଯେ, ଏଥି ମଧ୍ୟରେ ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ବିପୁଳ ପରିବର୍ତ୍ତନ ହୋଇଛି । ଏହି ପରିବର୍ତ୍ତନ ବିଶେଷତଃ ଶାସନ ପ୍ରଣାଳୀର ପରିବର୍ତ୍ତନ, ଲୋକମାନଙ୍କର ଶିକ୍ଷା ଦୀକ୍ଷା ଓ ସ୍ୱାସ୍ଥ୍ୟ ଚେତନା ବୃଦ୍ଧି ଏବଂ ସ୍ୱାସ୍ଥ୍ୟସେବା ଅନୁଷ୍ଠାନ ଓ ସ୍ୱାସ୍ଥ୍ୟ ସେବାକାରୀ ବ୍ୟକ୍ତିମାନଙ୍କ ସଂଖ୍ୟାବୃଦ୍ଧି ହେତୁ ସମ୍ଭବ ହୋଇଛି । ସରକାର ଲୋକମାନଙ୍କର ଚିକିତ୍ସା ପାଇଁ ଗ୍ରାମାଞ୍ଚଳରେ ବହୁ ପ୍ରାଥମିକ ଶିକ୍ଷାକେନ୍ଦ୍ର ଖୋଲିଛନ୍ତି । ସେଥିରେ ବହୁ ଡାକ୍ତର, ନର୍ସ ଏବଂ ପରିବାର କଲ୍ୟାଣ ସଂକ୍ରାନ୍ତ ସ୍ୱାସ୍ଥ୍ୟ ସେବାକର୍ମୀ ନିଯୁକ୍ତ ହୋଇଛନ୍ତି । ଓଡ଼ିଶାର ତିନିଗୋଟି ମେଡ଼ିକାଲ କଲେଜ, କେତେଗୋଟି ଆୟୁର୍ବେଦ ଏବଂ ହୋମିଓପାଥିକ୍ କଲେଜରୁ ପ୍ରତିବର୍ଷ ଶହ ଶହ ଗ୍ରାଜୁଏଟ ପାସ୍ କରି ସ୍ୱାସ୍ଥ୍ୟ ବିଭାଗରେ ଯୋଗଦାନ କରୁଛନ୍ତି । କଟକ, ବୁର୍ଲା ଏବଂ ବ୍ରହ୍ମପୁରସ୍ଥିତ ହାସ୍‌ପାତାଳମାନ ସମ୍ପ୍ରସାରିତ ହୋଇ ସେଠାରେ ବିଭିନ୍ନ ବିଭାଗରେ ବହୁ ବିଶେଷଜ୍ଞ ଡାକ୍ତର କାମ କରୁଛନ୍ତି । ରାଜ୍ୟର ଜିଲ୍ଲା ଓ ସବ୍‌ଡ଼ିଭିଜନାଲ ହାସପାତାଳ ଗୁଡ଼ିକ ମଧ୍ୟ ସମ୍ପ୍ରସାରିତ ହୋଇଛି ଏବଂ ସେଥିରେ ରୋଗୀଙ୍କ ପାଇଁ ଶଯ୍ୟା ଯଥେଷ୍ଟ ବୃଦ୍ଧି ପାଇଛି । ହଇଜା, ବସନ୍ତ, ମାଲେରିଆ, ବାତଜର ପ୍ରଭୃତିର ନିରାକରଣ ପାଇଁ ସ୍ୱତନ୍ତ୍ର ପ୍ରକଳ୍ପମାନ କାର୍ଯ୍ୟକାରୀ କରାଯାଉଛି । ବିଭିନ୍ନ ସ୍ୱାସ୍ଥ୍ୟ ଯୋଜନା କାର୍ଯ୍ୟକ୍ରମରେ ବହୁ ସ୍ୱାସ୍ଥ୍ୟ କର୍ମୀ ଗ୍ରାମ ଓ ସହର-ମାନଙ୍କରେ କାର୍ଯ୍ୟ କରୁଛନ୍ତି । ତାହା ବ୍ୟତୀତ ବହୁ ଘରୋଇ ସ୍ୱାସ୍ଥ୍ୟ କେନ୍ଦ୍ରମାନ ଖୋଲାଯାଇଛି ଏବଂ ସେଥିରେ ଡାକ୍ତରମାନେ ବ୍ୟକ୍ତିଗତ ଭାବରେ ଚିକିତ୍ସା କରୁଛନ୍ତି । ପୃଥିବୀରେ ଚିକିତ୍ସାଶାସ୍ତ୍ରରେ ବହୁ ନୂତନ ତଥ୍ୟ ବାହାରୁଛି ଏବଂ ନୂତନ ପ୍ରଣାଳୀରେ ରୋଗ ନିର୍ଣ୍ଣୟ କରାଯାଇ, ସେଗୁଡ଼ିକର ଚିକିତ୍ସା କରାଯାଉଛି ।

ରୋଗ ନିର୍ଣ୍ଣୟ ଓ ଚିକିତ୍ସାରେ ବହୁ ନୂତନ ପ୍ରକାର ଔଷଧ, ଓ ଯନ୍ତ୍ରପାତି ବ୍ୟବହାର କରାଯାଉଛି । ଆମ ମେଡ଼ିକାଲ କଲେଜ କେନ୍ଦ୍ରମାନଙ୍କରେ ସେ ସବୁ ପ୍ରୟୋଗ କରିବାକୁ ଯତ୍ନ କରାଯାଉଛି ଏବଂ ନୂତନ ଯନ୍ତ୍ରମାନ କିଣାଯାଉଛି । ମାତ୍ର ରୋଗ ନିର୍ଣ୍ଣୟ ଓ ଚିକିତ୍ସାରେ ଆମ କଲେଜଗୁଡ଼ିକ ଭାରତର ଦିଲ୍ଲୀ, ବମ୍ବେ, ମାନ୍ଦ୍ରାଜ ଓ କଲିକତା କେନ୍ଦ୍ରମାନଙ୍କ ପରି ଉନ୍ନତମାନ ଓ ଖ୍ୟାତି ଅର୍ଜନ କରିପାରି ନାହାନ୍ତି । ଧନୀ ଓ କ୍ଷମତାପନ୍ନ ଲୋକମାନେ ବିଦେଶରେ କିମ୍ବା ଆମ ଦେଶରେ ବଡ଼ ବଡ଼ ସହରମାନଙ୍କରେ ବିଭିନ୍ନ ରୋଗର ଚିକିତ୍ସା ପାଇଁ ଯାଉଛନ୍ତି କିନ୍ତୁ ସାଧାରଣ ଲୋକମାନଙ୍କର ଏହିଠାରେ ରୋଗର ଚିକିତ୍ସା କରାଇବା ବ୍ୟତୀତ ଅନ୍ୟ ଉପାୟ ନାହିଁ ।

ଏଠାରେ କିନ୍ତୁ ରୋଗୀ ସଂଖ୍ୟା ତୁଳନାରେ କଲେଜମାନଙ୍କ ହାସପାତାଲଠାରୁ ଆରମ୍ଭ କରି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ପର୍ଯ୍ୟନ୍ତ ସବୁଠାରେ ସୁବିଧାର ଘୋର ଅଭାବ । ହାସପାତାଲମାନଙ୍କରେ ଔଷଧ ନାହିଁ ବା ଚିକିତ୍ସା ପାଇଁ ଅତ୍ୟାବଶ୍ୟକ ଉପକରଣମାନ ନାହିଁ । ହାସପାତାଲମାନ ଅତି ଅପରିଷ୍କାର ଓ ଅପରିଚ୍ଛନ୍ନ ଏବଂ ସେଗୁଡ଼ିକର ପରିବେଶ ଅସ୍ୱାସ୍ଥ୍ୟକର । ବହୁ ପ୍ରାଥମିକ ସ୍ୱାସ୍ଥ୍ୟ-କେନ୍ଦ୍ରରେ ବର୍ଷ ବର୍ଷ ଧରି ଡାକ୍ତର ନାହାନ୍ତି । କଲେଜମାନଙ୍କରୁ ପାସ୍ କରୁଥିବା ଡାକ୍ତରମାନେ ଦୂରଦୂରାନ୍ତ ଅନୁନ୍ନତ ଜିଲ୍ଲାମାନଙ୍କରେ ଏବଂ ଗ୍ରାମାଞ୍ଚଳରେ ଥିବା ସ୍ୱାସ୍ଥ୍ୟ କେନ୍ଦ୍ରମାନଙ୍କୁ ଯିବାକୁ ଅନିଚ୍ଛୁକ । ସେଠାରେ ସେମାନଙ୍କର ରହିବାର କିମ୍ବା ଚଳିବାର ସୁବିଧା ନାହିଁ । ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ରମାନଙ୍କରେ ଡାକ୍ତର ନିଯୁକ୍ତି ଓ ବଦଳି ପ୍ରଭୃତି କ୍ଷେତ୍ରରେ ସ୍ୱାସ୍ଥ୍ୟ ବିଭାଗର ବିଭିନ୍ନ ପଦସ୍ଥ ବ୍ୟକ୍ତି-ମାନଙ୍କର ଦୁର୍ନୀତି ଓ ଅନାଚାର ବିଷୟରେ ବହୁ ଅଭିଯୋଗ ଶୁଣିବାକୁ ମିଳୁଛି । ସ୍ୱାସ୍ଥ୍ୟ ଅନୁଷ୍ଠାନମାନ ସିନା ଖୋଲାଯାଇଛି, କିନ୍ତୁ ସେ ଗୁଡ଼ିକର ପରିଚାଳନା କ୍ଷେତ୍ରରେ ବହୁ ଅବ୍ୟବସ୍ଥା ଥିବାର ସାଧାରଣ ଲୋକେ ଜାଣି ପାରୁଛନ୍ତି । ରୋଗୀମାନେ ଆଶାନୁରୂପ ଚିକିତ୍ସା ପାଉନାହାନ୍ତି । ଡାକ୍ତରମାନେ ଘରୋଇ ଚିକିତ୍ସା କରି ପ୍ରଭୂତ ଅର୍ଥ ଉପାର୍ଜନ କରୁଛନ୍ତି । ସାଧାରଣ ଲୋକଙ୍କ ମଧ୍ୟରେ ଏ ବିଷୟରେ ବହୁ ଅସନ୍ତୋଷ ରହିଛି ।

ଗାଁ ମାନଙ୍କରେ ପୂର୍ବକାଳର କବିରାଜମାନେ ଆଉ ନାହାନ୍ତି, ପୂର୍ବକାଳରେ ଟୁଣୁକା ଟୁଣୁକି ଔଷଧ ଦେଉଥିବା ବ୍ୟକ୍ତିମାନେ ମଧ୍ୟ ବିରଳ ହୋଇ ଗଲେଣି । ମେଡ଼ିକାଲ କଲେଜ ଏବଂ ଆୟୁର୍ବେଦ ଓ ହୋମିଓ ପାଥିକ୍ କଲେଜମାନଙ୍କରୁ ପାସ୍ କରିଥିବା ଘରୋଇ ଡାକ୍ତରମାନେ ସବୁଆଡ଼େ ଗ୍ରାମାଞ୍ଚଳରେ ଚିକିତ୍ସା

କରୁଛନ୍ତି । ଔଷଧ ଦୋକାନମାନ ଗ୍ରାମେଗ୍ରାମେ ଖୋଲିଯାଇଛି ଏବଂ ବହୁଲୋକ ନିଜ ଜ୍ଞାନ ଅନୁସାରେ ବହୁ ପ୍ରକାର ଜଣାଶୁଣା ପେଟେଣ୍ଟ ଔଷଧ ବ୍ୟବହାର କରୁଛନ୍ତି । ଶତାବ୍ଦୀର ପ୍ରଥମ ଭାଗ ତୁଳନାରେ ଶେଷ ଭାଗରେ ଲୋକମାନଙ୍କର ସ୍ୱାସ୍ଥ୍ୟ ଏବଂ ଚିକିତ୍ସା ବ୍ୟବସ୍ଥାରେ ବୈପ୍ଳବିକ ପରିବର୍ତ୍ତନ ଘଟିଥିବା କଥା ଯେଉଁମାନେ ଦୁଇ ଅବସ୍ଥା ଦେଖିଛନ୍ତି, ସେମାନେ ସ୍ପଷ୍ଟ ଅନୁଭବ କରି ପାରୁଛନ୍ତି । ବିଂଶ ଶତାବ୍ଦୀ ଶେଷରେ ଓଡ଼ିଶାରେ ସ୍ୱାସ୍ଥ୍ୟରକ୍ଷା ଏବଂ ଚିକିତ୍ସା ବ୍ୟବସ୍ଥା ପାଶ୍ଚାତ୍ତ୍ୟ ଦେଶମାନଙ୍କ ସହିତ କିମ୍ବା ଆମ ପୂର୍ବକାଳ ଅବସ୍ଥା ସହିତ ତୁଳନୀୟ ନୁହେଁ । ମାତ୍ର ଗତି ପ୍ରଗତି ପଥେ । ପ୍ରଗତିର ଗତି ଓ ବେଗ ଅନୁସାରେ ଏକବିଂଶ ଶତାବ୍ଦୀର ଅବସ୍ଥା ନିର୍ଭର କରିବ ।

## ରାଜା ଓ ପ୍ରଜା

### ୭

୧୯୪୭ ମସିହା ପୂର୍ବରୁ ପ୍ରାୟ ଚାରିଶହ ବର୍ଷ କାଳ ଓଡ଼ିଶା ଇଷ୍ଟରାଜ୍ୟରେ ଦୁଇ ପ୍ରକାର ଶାସିତ ଅଞ୍ଚଳରେ ବିଭକ୍ତ ହୋଇଥିଲା । ଉପକୂଳବର୍ତ୍ତୀ ଅଞ୍ଚଳର ବାଲେଶ୍ୱର, କଟକ ଓ ପୁରୀ ଜିଲ୍ଲା ଠାକୁର ରାଜାମାନଙ୍କ ଅଧୀନରୁ ୧୫୬୮ ମସିହା ପରେ ପ୍ରଥମେ ଆଫଗାନ୍, ପରେ ମୋଗଲ, ମରହଟ୍ଟା ଏବଂ ଶେଷରେ ଇଂରେଜମାନଙ୍କର ଶାସନ ଅଧୀନସ୍ଥ ହୋଇଥିଲା । ରାଜ୍ୟର ମଧ୍ୟ ଓ ପଶ୍ଚିମ ଭାଗର ବିଭିନ୍ନ ଅଞ୍ଚଳ ଏହି ସମସ୍ତ ମଧ୍ୟରେ ବିଭିନ୍ନ କରଦ ରାଜ୍ୟ ରୂପେ ହିନ୍ଦୁ ରାଜାମାନଙ୍କର ଶାସନ ଅଧୀନରେ ଥିଲା । ଏହି କରଦ ରାଜ୍ୟମାନେ ମୁସଲମାନ, ମୋଗଲ, ମରହଟ୍ଟା ଅମଳରେ ସେମାନଙ୍କର ପ୍ରତ୍ୟକ୍ଷ ଶାସନ ଅଧୀନକୁ ଆସି ନ ଥିଲେ । ଇଂରେଜମାନେ ମଧ୍ୟ ସେମାନଙ୍କୁ ପ୍ରତ୍ୟକ୍ଷ ଶାସନ ଅଧୀନକୁ ନ ଆଣି କେତେକ ସର୍ତ୍ତରେ ସେମାନଙ୍କ ସହିତ ସନ୍ଧି ଚୁକ୍ତି କରି ସେମାନଙ୍କୁ ନିଜ ନିଜ ରାଜ୍ୟ ଶାସନ କରିବା ପାଇଁ ସୁବିଧା ଦେଇଥିଲେ । ମାତ୍ର ସନ୍ଧିଚୁକ୍ତି ଅନୁସାରେ ଇଂରେଜ ସରକାରଙ୍କର ସମସ୍ତ କରଦ ରାଜ୍ୟ ଉପରେ ସାର୍ବଭୌମ କ୍ଷମତା ଓ ପୂର୍ଣ୍ଣ କର୍ତ୍ତୃତ୍ୱ ବଳବତ୍ତର ରହିଥିଲା । ଇଂରେଜ ସରକାର କରଦ ରାଜାମାନଙ୍କୁ ବହିଃ ଆକ୍ରମଣ ଓ ରାଜ୍ୟ ଅନ୍ତର୍ଗତ ବିପ୍ଳବରୁ ରକ୍ଷା କରିବାକୁ ପ୍ରତିଶ୍ରୁତି ଦେଇଥିଲେ ଏବଂ ରାଜାମାନେ ଇଂରେଜ ସରକାରଙ୍କର କର୍ତ୍ତୃତ୍ୱ ସ୍ୱୀକାର କରି ସର୍ତ୍ତମୂଳକ ଭାବରେ ନିଜ ନିଜ ରାଜ୍ୟରେ ଶାସନ କରୁଥିଲେ । ରାଜ୍ୟମାନଙ୍କ ଭିତରେ ଗୁରୁତର ପ୍ରଜା ବିପ୍ଳବ ପ୍ରଭୃତି ହୋଇ ରାଜାଙ୍କ ଶାସନ ଓ ଇଂରେଜ ଶାସନ ପ୍ରତି ବିପଦ ନ ଆସିଲେ ଇଂରେଜ ସରକାର ସାଧାରଣତଃ ରାଜାମାନଙ୍କ ଶାସନରେ ହସ୍ତକ୍ଷେପ କରୁ ନ ଥିଲେ । ରାଜ୍ୟ ସୁଶାସନ ଓ ପ୍ରଜାମାନଙ୍କ ହିତ-ସାଧନ ରାଜାମାନଙ୍କର କର୍ତ୍ତବ୍ୟ ଥିଲା । ଇଂରେଜ ସରକାର ସେଥିପାଇଁ ବିଶେଷ ସନ୍ତୁବାନ ନ ଥିଲେ ।

ରାଜ୍ୟଶାସନ ପରିଦର୍ଶନ ଏବଂ ନିୟନ୍ତ୍ରଣ ପାଇଁ ସରକାର ରେସିଡେଣ୍ଟ ଓ ପଲିଟିକାଲ୍ ଏଜେଣ୍ଟ ପ୍ରଭୃତି ଉଚ୍ଚ କର୍ମଚାରୀ ନିଯୁକ୍ତ କରିଥିଲେ । ଦକ୍ଷ ରାଜ୍ୟ-

ଶାସନରେ ରାଜାମାନଙ୍କୁ ସାହାଯ୍ୟ କରିବା ନିମିତ୍ତ ଇଂରେଜ ସରକାର ବହୁ ରାଜ୍ୟରେ ଦେବାନ୍ ଏବଂ ମ୍ୟାନେଜର ପ୍ରଭୃତି କର୍ମଚାରୀ ନିଯୁକ୍ତ କରୁଥିଲେ । ସମସ୍ତ କ୍ଷେତ୍ରରେ ରାଜାମାନେ ଇଂରେଜ ସରକାରଙ୍କର ସମ୍ପୂର୍ଣ୍ଣ ଅଧୀନତା ସ୍ୱୀକାର କରି ତାଙ୍କର ନିର୍ଦ୍ଦେଶ ପାଳନ କଲେ । ମାତ୍ର ନିଜ ରାଜ୍ୟର ପ୍ରଜାମାନଙ୍କ ଉପରେ ସେମାନଙ୍କର ପୂର୍ଣ୍ଣ କର୍ତ୍ତୃତ୍ୱ ବଜାୟ ରହିଥିଲା । ଏହିପରି ଅବସ୍ଥାରେ କରଦ ରାଜାମାନଙ୍କର ରାଜତ୍ୱ ଭାରତବର୍ଷରେ ଇଂରେଜ ସରକାର ଥିବା ପର୍ଯ୍ୟନ୍ତ ଚାଲି-ଆସିଥିଲା । ୧୯୪୭ ମସିହାରେ ଇଂରେଜ ସରକାର ଭାରତବର୍ଷ ପରିତ୍ୟାଗ କରି ଯିବା ପରେ ଇଂରେଜ ସରକାରଙ୍କର କରଦ ରାଜ୍ୟ ସମ୍ବନ୍ଧୀୟ କ୍ଷମତା ଭାରତର କେନ୍ଦ୍ର ସରକାରଙ୍କ ହାତରେ ପଡ଼ିଲା । ଶେଷରେ ୧୯୪୮ ମସିହାରେ, ସମଗ୍ର ଭାରତବର୍ଷରେ ଶ୍ରେଷ୍ଠ ଶ୍ରେଷ୍ଠ କରଦ ରାଜ୍ୟମାନ ବିଭିନ୍ନ ପ୍ରଦେଶରେ ମିଶିଗଲେ ଏବଂ ମହୀଶୂର, ତ୍ରାଭାଙ୍କୋର ପରି ବଡ଼ ରାଜ୍ୟ ଭାରତର ସ୍ୱତନ୍ତ୍ର ରାଜ୍ୟ ହୋଇଗଲେ । କିନ୍ତୁ ଶହ ଶହ ବର୍ଷ ଧରି ଭିନ୍ନ ଭିନ୍ନ ଶାସନରେ ରହିବା ଫଳରେ ବିଭିନ୍ନ କରଦ ରାଜ୍ୟରେ ମୋଗଲବନ୍ଦୀ ଅଞ୍ଚଳମାନଙ୍କଠାରୁ ଏବଂ ବିଭିନ୍ନ କରଦ ରାଜ୍ୟ ମଧ୍ୟରେ ଅର୍ଥନୈତିକ ଓ ସାମାଜିକ ପରିବେଶ, ଜମିଜମା ଆଇନ ପ୍ରଭୃତି ଭିନ୍ନ ଭିନ୍ନ ହୋଇ ରହି ଯାଇଥିଲା ।

ଓଡ଼ିଶାର ଅନେକ କ୍ଷୁଦ୍ର କରଦ ରାଜ୍ୟ ବିଭିନ୍ନ ସମୟରେ ଖାସ୍ ହୋଇ ବ୍ରିଟିଶ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ମିଶି ଯାଇଥିଲେ ଏବଂ ସେଗୁଡ଼ିକର ରାଜାମାନେ ଜମିଦାର ପଦକୁ ଖସି ଆସିଥିଲେ । ଶେଷରେ ୧୯୪୭ ମସିହା ବେଳକୁ । ୨୬ଟି ଗଡ଼ଜାତ ରାଜ୍ୟଥିଲେ । ସେହି ୨୬ଟି ରାଜ୍ୟର ରାଜା ଇଂରେଜ ସରକାରଙ୍କ ସହ ସ୍ୱତନ୍ତ୍ର ଚୁକ୍ତି ବଳରେ ସେମାନଙ୍କ ଦ୍ୱାରା ସଂରକ୍ଷିତ ହୋଇ ନିଜ ନିଜ ରାଜ୍ୟରେ ରାଜତ୍ୱ କରୁଥିଲେ । ଏପରି ବ୍ୟବସ୍ଥାରେ ଇଂରେଜ ସରକାରଙ୍କର ସ୍ୱାର୍ଥ ମଧ୍ୟ ଜଡ଼ିତ ଥିଲା । ରାଜାମାନେ ଏ ଦେଶରେ ଇଂରେଜ ସରକାରଙ୍କର ପୂର୍ଣ୍ଣ ସମର୍ଥକ ଥିଲେ । ୧୯୪୮ ମସିହାରେ ଓଡ଼ିଶା ରାଜ୍ୟରେ ମିଶିଲା ବେଳକୁ ଗଡ଼ଜାତ ରାଜ୍ୟମାନଙ୍କର ଲୋକ ସଂଖ୍ୟା ସମଗ୍ର ରାଜ୍ୟର ଲୋକସଂଖ୍ୟାର ପ୍ରାୟ ଏକ ତୃତୀୟାଂଶ ଥିଲା ।

ମୋଗଲବନ୍ଦୀ ଅଞ୍ଚଳ, କଟକ, ପୁରୀ, ବାଲେଶ୍ୱର ଜିଲ୍ଲା, ଇଂରେଜ ସରକାରଙ୍କର ପ୍ରତ୍ୟକ୍ଷ ଶାସନରେ ଥିଲା । ସେମାନେ ଏ ଜିଲ୍ଲାମାନଙ୍କରୁ କର ଆଦାୟ କରୁଥିଲେ ଏବଂ ସେଥିରେ ଆଇନ ଶୃଙ୍ଖଳା ରକ୍ଷା କରିବା, ରାସ୍ତାଘାଟ ପ୍ରଭୃତି ଶାସନର ସମସ୍ତ ଆନୁସଙ୍ଗିକ ସୁବିଧା କରିବା ଏବଂ ପ୍ରଜାମାନଙ୍କର ଶିକ୍ଷା,

ସ୍ୱାସ୍ଥ୍ୟ ଏବଂ ଦୈନନ୍ଦିନ ଜୀବନଯାପନର ବ୍ୟବସ୍ଥା କରିବା ତାଙ୍କର ଦାୟିତ୍ୱ ଥିଲା, ଗଡ଼ଜାତ ଅଞ୍ଚଳରେ ଏସବୁ ଦାୟିତ୍ୱ ରାଜାମାନଙ୍କ ଉପରେ ନ୍ୟସ୍ତ ଥିଲା । ଶାସନ କାର୍ଯ୍ୟରେ ସମ୍ବଳ ସଂଗ୍ରହ, ଜନଯୋଗ ଓ ଦକ୍ଷତା ଅନୁସାରେ ବିଭିନ୍ନ ଅଞ୍ଚଳରେ ଲୋକମାନଙ୍କ ଅବସ୍ଥା ଭିନ୍ନ ହୋଇ ଯାଇଥିଲା । ମୋଗଲବନ୍ଦୀ ଅଞ୍ଚଳରେ ମଧ୍ୟ ଇଂରେଜ ଶାସନର ପ୍ରଥମ ଅବସ୍ଥାରେ ବିଭିନ୍ନ ଅଞ୍ଚଳକୁ ଯିବା ଆସିବା କରିବା ପାଇଁ ରାସ୍ତାଘାଟର ସୁବିଧା ନ ଥିଲା; ଶିକ୍ଷା, ସ୍ୱାସ୍ଥ୍ୟର ବ୍ୟବସ୍ଥା ନ ଥିଲା ଏବଂ ଆଇନ ଶୃଙ୍ଖଳା ବ୍ୟବସ୍ଥା ସୁଦୃଢ଼ ନ ଥିଲା । ଲୋକମାନଙ୍କର ଆର୍ଥିକ ଅବସ୍ଥା ଅତି ଅନୁନ୍ନତ ଥିଲା । ବଢ଼ି, ମରୁଡ଼ି, ଦୁର୍ଭିକ୍ଷ ଓ ମହାମାରୀ ରୋଗମାନଙ୍କରୁ ରକ୍ଷା କରିବାକୁ କୌଣସି ବ୍ୟବସ୍ଥା ନ ଥିଲା । ମାତ୍ର ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ-ଠାରୁ ବିଶେଷତଃ ୧୮୬୬ ମସିହା ନ'ଅଙ୍କ ଦୁର୍ଭିକ୍ଷ ପରେ, ସରକାର ବହୁ ଜନହିତକର କାର୍ଯ୍ୟ କରିବାକୁ ବାଧ୍ୟ ହୋଇଥିଲେ । ସରକାର ଆଇନ ଶୃଙ୍ଖଳା ରକ୍ଷାର ସୁଦୃଢ଼ ବ୍ୟବସ୍ଥା କରିଥିଲେ ଏବଂ କୋର୍ଟ କଚେରିମାନ ବିଧିବଦ୍ଧ ଭାବରେ ପରିଚାଳିତ କଲେ, ଜମିଜମା ଆଇନ ଏବଂ ବିଭିନ୍ନ ପ୍ରକାର କର ଆଦାୟର ବ୍ୟବସ୍ଥା କଲେ, ଶିକ୍ଷାଦାନ ପାଇଁ ନୂତନ ପ୍ରଣାଳୀରେ ପ୍ରାଥମିକ, ମାଧ୍ୟମିକ ଓ ଉଚ୍ଚ ଶିକ୍ଷା ଅନୁଷ୍ଠାନମାନ ସ୍ଥାପନ କଲେ ଏବଂ ସେଗୁଡ଼ିକର ପରିଚାଳନା ନିମିତ୍ତ ବ୍ୟବସ୍ଥା କଲେ । ସ୍ୱାସ୍ଥ୍ୟସେବା ପାଇଁ ପାଶ୍ଚାତ୍ୟ ରୀତିରେ ଡାକ୍ତରଖାନାମାନ ପ୍ରତିଷ୍ଠା କରିବାକୁ ଆରମ୍ଭ କଲେ । ବନ୍ୟା ପ୍ରତିରୋଧ ପାଇଁ ନଦୀବନ୍ଧମାନ ନିର୍ମାଣ, ଗମନାଗମନ ସୁବିଧା ପାଇଁ ରାସ୍ତା, ରେଲପଥ ନିର୍ମାଣ ଏବଂ ଜଳସେଚନ ପାଇଁ ନଦୀମାନଙ୍କରେ ଆଣିକଟ ଓ କେନାଲମାନ ନିର୍ମାଣ କଲେ । ଏସବୁ ବ୍ୟବସ୍ଥା ପ୍ରଥମ ସତୁରି ଷାଠିଏ ବର୍ଷ କାଳ ପ୍ରାରମ୍ଭିକ ଓ ଅନୁନ୍ନତ ଅବସ୍ଥାରେ ଥିଲା ସତ ମାତ୍ର ଏସବୁ ବ୍ୟବସ୍ଥା ହେତୁ ଆଧୁନିକ ପଦ୍ଧତିରେ ରାଜ୍ୟ ଶାସନ ପ୍ରଗତି ଲାଭକଲା । ଏସବୁ ବ୍ୟବସ୍ଥା ଦ୍ୱାରା ମୋଗଲବନ୍ଦୀ ଅଞ୍ଚଳରେ ୧୮୬୬ ମସିହା ପରେ ଲୋକମାନଙ୍କର ଆର୍ଥିକ ଅବସ୍ଥା କ୍ରମଶଃ ଉନ୍ନତହେଲା ଏବଂ ତାହା ପ୍ରଭାବ ମଧ୍ୟ ସେମାନଙ୍କ ସାମାଜିକ ଅବସ୍ଥା ଉପରେ ପଡ଼ିଥିଲା ।

ମାତ୍ର ଇଂରେଜ ରାଜତ୍ୱ ଶେଷ ପର୍ଯ୍ୟନ୍ତ ଗଡ଼ଜାତ ରାଜ୍ୟ ସବୁ ଊଣାଅଧିକ ପୂର୍ବପରି ଅନୁନ୍ନତ ରହିଗଲେ । ସେଥିରେ ଶାସନ ପ୍ରଣାଳୀ, ଶିକ୍ଷା ସ୍ୱାସ୍ଥ୍ୟ, ଗମନା-ଗମନ ପ୍ରଭୃତି ବ୍ୟବସ୍ଥାରେ ମୋଗଲବନ୍ଦୀ ଅଞ୍ଚଳପରି ଉନ୍ନତି ହୋଇ ପାରିଲା ନାହିଁ । ଫଳରେ ସେ ସବୁ ଅଞ୍ଚଳରେ ଲୋକମାନେ ଅନୁନ୍ନତ ଅବସ୍ଥାରେ ପ୍ରାୟ ଆଉ ଶହେବର୍ଷ ରହିଗଲେ । ଏହାର ପ୍ରଧାନ କାରଣ ହେଲା, ରାଜ୍ୟ ସବୁ ଅତ୍ୟନ୍ତ

ଶ୍ରେଷ୍ଟ ଥିଲା, କର ଆଦାୟ ଓ ଆଧୁନିକ ଶାସନ ପ୍ରଣାଳୀ ଚଳାଇବା ପାଇଁ ସମ୍ବଳ ସଂଗ୍ରହର ସୁବିଧା ନଥିଲା ଏବଂ ରାଜ୍ୟ ଶାସନର ସର୍ବମୟ କର୍ତ୍ତା ଅଧିକାଂଶ ରାଜାଙ୍କର ଆଧୁନିକ ଶାସନ ବିଷୟରେ ଧାରଣା, ବିଦ୍ୟାବୁଦ୍ଧି ଓ ଦକ୍ଷତା ନଥିଲା କିମ୍ବା ସେଥିପାଇଁ ବିଭିନ୍ନ ସଂଗଠନ ପ୍ରତିଷ୍ଠା କରିବା ପାଇଁ ସେମାନଙ୍କର ଶକ୍ତି ଓ ସମ୍ବଳ ନଥିଲା । ଅଧିକାଂଶ ରାଜ୍ୟ ଅତି ଶ୍ରେଷ୍ଟ ଥିବାରୁ ରାଜ୍ୟ ମଧ୍ୟରେ ଗମନାଗମନ ପାଇଁ ରାସ୍ତା ନଥିଲା କିମ୍ବା ବ୍ରିଟିଶ ଶାସିତ ଭାରତବର୍ଷର ଚଉଡ଼ା ଦୂରଗାମୀ ରାସ୍ତା ସଙ୍ଗରେ ସଂଯୋଗ ନଥିଲା । ବହୁ ଶ୍ରେଷ୍ଟ ଶ୍ରେଷ୍ଟ ରାଜ୍ୟ ବାହାର ଜଗତରୁ ପ୍ରାୟ ବିଚ୍ଛିନ୍ନ ହୋଇ ରହିଥିଲେ । ରାଜ୍ୟଗୁଡ଼ିକ ଜଙ୍ଗଲରେ ପୂର୍ଣ୍ଣ ଥିଲା, ମାତ୍ର ଜଙ୍ଗଲ ସମ୍ପଦର ଉପଯୁକ୍ତ ବିନିଯୋଗ ହେଉ ନଥିଲା । ଅଧିକାଂଶ ରାଜ୍ୟର ସଂଖ୍ୟାଧିକ ଲୋକ ବିଭିନ୍ନ ଆଦିବାସୀ ସମ୍ପ୍ରଦାୟର ଲୋକ ଥିଲେ । ସେମାନେ ଅଗମ୍ୟ, ବାହାର ଜଗତ ସହିତ ସଂଯୋଗ ବିହୀନ, ଅରଣ୍ୟ ପରିବେଷ୍ଟିତ ଗ୍ରାମମାନଙ୍କରେ ନିଜ ନିଜର ସଂସ୍କୃତି, ପରମ୍ପରା ଓ ରୀତି ଅନୁସାରେ ବାସ କରୁଥିଲେ । ସେମାନଙ୍କର ଶିକ୍ଷା ଦୀକ୍ଷା କିଛି ନଥିଲା ବା ଆଧୁନିକ ସଭ୍ୟତା, ବିଜ୍ଞାନ, କୃଷିପ୍ରଣାଳୀ ପ୍ରଭୃତି କୌଣସି ବିଷୟରେ ଜ୍ଞାନ ନଥିଲା । ସ୍ୱଳ୍ପ ଆବାଦୀ ଜମିରେ ଅତି ଅନୁନ୍ନତ ପ୍ରଣାଳୀରେ ଚାଷ ଏବଂ ଅରଣ୍ୟ ଜାତ ପଦାର୍ଥ ସଂଗ୍ରହ ଦ୍ୱାରା ସେମାନେ ନିର୍ବାହ କରୁଥିଲେ । ସେମାନେ ଏତେ ଗରିବ ଥିଲେ ଯେ, ସେମାନଙ୍କ ଉପରେ କର ବସାଇବା ଓ ଆଦାୟ କରିବାର ସମ୍ଭାବନା ସୀମିତ ଥିଲା । ରାଜ୍ୟ ବାହାରୁ ଆସିଥିବା ବେପାରୀ ଏବଂ ରାଜ୍ୟ ଭିତରେ ଥିବା ଅଣ ଆଦିବାସୀ ଲୋକ ସେମାନଙ୍କୁ ଶୋଷଣ କରୁଥିଲେ । ସମସ୍ତ ରାଜ କର୍ମଚାରୀ ରାଜ୍ୟ ଭିତରେ ଥିବା ଅଣଆଦିବାସୀ କିମ୍ବା ବାହାରୁ ଆସିଥିବା ବ୍ୟକ୍ତି ଥିଲେ । ରାଜ୍ୟର ପ୍ରାୟ ସମସ୍ତ ଆଦିବାସୀ ଓ ଅଣଆଦିବାସୀ ଲୋକ ଅଶିକ୍ଷିତ, ଅଜ୍ଞ ଓ ଅତି ଦରିଦ୍ର ଭାବରେ ବାସ କରୁଥିଲେ ।

ପ୍ରତି ରାଜ୍ୟର ରାସ୍ତା ଓ ଗମନାଗମନ ସୁବିଧା ସେହି ରାଜ୍ୟ ମଧ୍ୟରେ ସୀମିତ ଥିଲା । ପଡ଼ୋଶୀ ରାଜ୍ୟରେ ରାସ୍ତା ନହେଲେ ବାହାର ଜଗତ ସହ ସଂଯୋଗର ସମ୍ଭାବନା ନଥିଲା । ବ୍ରିଟିଶ ସରକାରଙ୍କ ଦ୍ୱାରା ନିର୍ମିତ, ଲମ୍ବା କଟକ ସମ୍ବଲପୁର ରାସ୍ତା, ଆଠଗଡ଼, ଢେଙ୍କାନାଳ, ହିନ୍ଦୋଳ, ତାଳଚେର, ଆଠମଲ୍ଲିକ, ରେଢ଼ାଖୋଲ ମଧ୍ୟଦେଇ ଯିବାରୁ ପୂର୍ବାଞ୍ଚଳ ଗଡ଼ଜାତମାନଙ୍କ ମଧ୍ୟରେ ଗୋଟିଏ ରାଜ୍ୟରୁ ଅନ୍ୟ ରାଜ୍ୟକୁ କିମ୍ବା ମୋଗଲବନ୍ଦୀ ଅଞ୍ଚଳମାନଙ୍କୁ ଯିବା ଆସିବା କରିବା ସୁବିଧା ହୋଇଥିଲା । ସେହିପରି ଯାଜପୁର ରୋଡ଼ଠାରୁ କେନ୍ଦୁଝର, ମୟୁରଭଞ୍ଜ ମଧ୍ୟଦେଇ ରାଞ୍ଚି ପର୍ଯ୍ୟନ୍ତ ଯାଇଥିବା ରାସ୍ତା ପଶ୍ଚିମାଞ୍ଚଳର କେତେକ ରାଜ୍ୟକୁ ସଂଯୋଗ କରିଥିଲା । ମାତ୍ର ପ୍ରତି ରାଜ୍ୟ ଭିତରେ ରାଜଧାନୀ, ଗ୍ରାମାଞ୍ଚଳ ଓ ଅରଣ୍ୟାଞ୍ଚଳ

ମଧ୍ୟରେ ସଂଯୋଗକାରୀ ରାସ୍ତା ଖୁବ୍ କମ୍ ଥିଲା । ଫଳରେ ପ୍ରତି ଅଞ୍ଚଳରେ ଲୋକମାନେ ଅନ୍ୟ ଅଞ୍ଚଳରୁ ବିଚ୍ଛିନ୍ନ ହୋଇ ବାସ କରୁଥିଲେ ।

ଗଡ଼ଜାତ ଅଞ୍ଚଳରେ ସହର ନଥିଲା କହିଲେ ଚଳେ । ରାଜ୍ୟର ରାଜଧାନୀ, ରାଜାଙ୍କ ଗଡ଼ ଓ ସଦର ମହକୁମାମାନ ଖଣ୍ଡିଏ ଖଣ୍ଡିଏ ବଡ଼ ଗାଁ ଥିଲା । ରାଜ୍ୟ ମଧ୍ୟରେ ସବୁ ଲୋକ ପ୍ରଧାନତଃ ଚାଷ ଉପରେ ନିର୍ଭର କରୁଥିଲେ । ଗାଁ ପ୍ରଧାନ ବା ମୁଖିଆମାନଙ୍କର ଅଧିକ ଜମି ଥିଲା । ମାତ୍ର ସାଧାରଣ ଚାଷୀ ପରିବାରମାନଙ୍କର ଜମି ସ୍ୱଳ୍ପ ଥିଲା । ଜଳସେଚନ ପ୍ରଭୃତିର ସୁବିଧା ନଥିବାରୁ ଚାଷ ପ୍ରଣାଳୀ ମଧ୍ୟ ଅନୁନ୍ନତ ଥିଲା ଏବଂ ଏକରପ୍ରତି ଉତ୍ପାଦନ କମ୍ ଥିଲା । ଗଡ଼ଜାତ ଅଞ୍ଚଳମାନଙ୍କରେ ମରୁଡ଼ି ଚାଷ ପାଇଁ ପ୍ରଧାନ ବିପଦ ଥିଲା । ସବୁ ରାଜ୍ୟରେ ଜଙ୍ଗଲ ଅଧିକ ପରିମାଣରେ ଥିବାରୁ ଲୋକମାନେ ଜାଳେଣି କାଠ, ଘର ଓ ଘରର ଉପକରଣ ଓ ଚାଷ ଉପକରଣ କରିବା ପାଇଁ ଆବଶ୍ୟକ କାଠର ସୁବିଧା ପାଉଥିଲେ ଏବଂ ମହୁଲ, ମହୁ, ଫଳ ମୂଳ ପ୍ରଭୃତି ବିଭିନ୍ନ ଛୋଟ, ଛୋଟ ଜଙ୍ଗଲଜାତ ପଦାର୍ଥରୁ ମଧ୍ୟ କିଛି ଆୟ କରୁଥିଲେ । ତଥାପି ଘରଦ୍ୱାର, ଗୋରୁ-ଗାଈ, କୃଷି, ବାଣିଜ୍ୟ ହାଟ ବଜାର ସବୁ ଆଦିମ ଧରଣର ଥିଲା ଏବଂ ସାଧାରଣ ଲୋକ ମୋଗଲବନ୍ଦୀ ଅଞ୍ଚଳର ଲୋକମାନଙ୍କଠାରୁ ଅଧିକ ଗରିବ ଓ ଅଶିକ୍ଷିତ ଥିଲେ ।

ବ୍ରିଟିଶ ସରକାର ତାଙ୍କର ପ୍ରତ୍ୟକ୍ଷ ଶାସନାଧୀନରେ ଥିବା ମୋଗଲବନ୍ଦୀ ଅଞ୍ଚଳର ଶାସନ ପଦ୍ଧତିରେ ଶାସନ କରିବାକୁ ରାଜାମାନଙ୍କ ପରାମର୍ଶ ଓ ନିର୍ଦ୍ଦେଶ ଦେଉଥିଲେ । ସାନବଡ଼ ପ୍ରତ୍ୟେକ ରାଜ୍ୟରେ ଶିକ୍ଷା, ସ୍ୱାସ୍ଥ୍ୟ, ପୁଲିସ୍, ଜଙ୍ଗଲ, ନିର୍ମାଣ ବିଭାଗ ପ୍ରଭୃତି ବିଭାଗମାନ ଥିଲା । ମାତ୍ର ରାଜ୍ୟର ମୋଟ ରାଜସ୍ୱ ଅତି ଅଳ୍ପ ଥିବାରୁ ଏବଂ ସଂଗୃହୀତ ରାଜସ୍ୱର ଅଧିକାଂଶ ଭାଗ ରାଜପରିବାର ଓ କର୍ମଚାରୀମାନଙ୍କ ଖର୍ଚ୍ଚରେ ଲାଗୁଥିବାରୁ ସବୁ ବିଭାଗର ଆୟ ବ୍ୟୟ ସ୍ୱଳ୍ପ ଥିଲା । ସ୍ୱଳ୍ପ ବେତନଭୋଗୀ କର୍ମଚାରୀମାନେ ନିମ୍ନମାନର ଥିଲେ । ସେମାନଙ୍କର ସଂଖ୍ୟା କମ୍ ଥିଲା ଏବଂ ତାଙ୍କ ଚାକିରି ରାଜାଙ୍କ ଅନୁଗ୍ରହ ଓ ଇଚ୍ଛା ଉପରେ ନିର୍ଭର କରୁଥିବାରୁ ତାହା ସ୍ଥାୟୀ ଓ ସ୍ଥିର ନଥିଲା । କର୍ମଚାରୀମାନେ ସର୍ବଦା ରାଜାଙ୍କ ଅନୁଗ୍ରହପ୍ରାର୍ଥୀ ଓ ତୋଷାମଦକାରୀ ଥିଲେ । ସେମାନେ ରାଜାମାନଙ୍କର ପ୍ରଜା ଶୋଷଣ ଓ ନିଷ୍ପେଷଣର ମାଧ୍ୟମ ଥିଲେ । ରାଜା ଓ ପ୍ରଜା ମଧ୍ୟରେ ସେମାନେ ମଧ୍ୟସ୍ଥ ଥିବାରୁ ନିଜ ସ୍ୱାର୍ଥରେ ମଧ୍ୟ ସେମାନେ ପ୍ରଜାମାନଙ୍କ ଶୋଷଣ କରୁଥିଲେ । ଏବଂ ସେମାନଙ୍କ ଉପରେ ବହୁପ୍ରକାର ଅତ୍ୟାଚାର କରୁଥିଲେ । ସାଧାରଣ

ପ୍ରଜାମାନେ ଅଶିକ୍ଷିତ ଓ ଦରିଦ୍ର ଥିବାରୁ, ରାଜପରିବାରର ଲୋକ ଏବଂ ରାଜକର୍ମଚାରୀଙ୍କ ପ୍ରତି ସେମାନଙ୍କର ଅତିମାତ୍ରାରେ ଭୟ ଥିଲା । ରାଜାଙ୍କ ପାଖରେ ଦ୍ୱାରସ୍ଥ ହେବାକୁ ସେମାନେ ଅତ୍ୟନ୍ତ ଭୟ କରୁଥିଲେ ଏବଂ ସେମାନଙ୍କଠାରୁ ଦୂରରେ ରହିବାକୁ ସବୁବେଳେ ଚେଷ୍ଟା କରୁଥିଲେ । ରାଜକର୍ମଚାରୀମାନେ ରାଜାଙ୍କର ପାଖଲୋକ ଥିବାରୁ ଏବଂ ତାଙ୍କୁ ସବୁବେଳେ ଖୁସାମତ କରି ସନ୍ତୁଷ୍ଟ କରିବାକୁ ଚେଷ୍ଟା କରୁଥିବାରୁ କର୍ମଚାରୀମାନଙ୍କ ବିରୋଧରେ ପ୍ରଜାମାନେ ରାଜାଙ୍କ ପାଖରେ ଆପତ୍ତି କରିବାକୁ ସାହସ କରୁ ନ ଥିଲେ । ଆପତ୍ତି କଲେ କର୍ମଚାରୀମାନେ ରାଜାଙ୍କୁ ଏପରି ଭାବରେ ବୁଝାଇଦେଉଥିଲେ ଯେ, ପ୍ରଜାମାନେ ଆହୁରି ଅଧିକ ଅସୁବିଧାରେ ପଡ଼ିବାର ସବୁବେଳେ ସମ୍ଭାବନା ଥାଏ । ସୁତରାଂ ରାଜଦରବାରରୁ ଯେତେଦୂର ସମ୍ଭବ ଦୂରରେ ରହିବାକୁ ପ୍ରଜାମାନେ ଚେଷ୍ଟା କରୁଥିଲେ ।

ସାଧାରଣ ପ୍ରଜା ଗରିବ ଥିବାରୁ ଏବଂ ସେମାନଙ୍କର ଉତ୍ପାଦନ ସେମାନଙ୍କ କୁଟୁମ୍ବ ପୋଷିବାକୁ ସବୁବେଳେ ଯଥେଷ୍ଟ ହେଉଥିବାରୁ, ରାଜାମାନେ ମଧ୍ୟ ବେଶି ରାଜସ୍ୱ ଆଦାୟ କରି ପାରୁ ନଥିଲେ । ଭୂରାଜସ୍ୱ ପ୍ରଧାନ କର ଥିଲା ଏବଂ ଉତ୍ପାଦନ କମ୍ ଥିବା ହେତୁ ଏକର ପିଛା ଖଜଣା ଅତି କମ୍ ଥିଲା । ତାହା ସାଧାରଣତଃ ଗାଁ ପ୍ରଧାନମାନଙ୍କ ମାଧ୍ୟମରେ ଆଦାୟ ହେଉଥିଲା । ସେହି ସ୍ୱଳ୍ପ ଖଜଣା ବି ପ୍ରଜାମାନେ ଦେବାକୁ ଅକ୍ଷମ ଥିଲେ । ଅଳ୍ପ ମାତ୍ରାରେ ଖଜଣା ବଢ଼ାଇଦେଲେ କରଭାର ଦୁର୍ବହ ହେଲାବୋଲି ସେମାନେ ଭାବୁଥିଲେ । ସେଥିପାଇଁ ପ୍ରଜାର ବ୍ୟକ୍ତିଗତ ଭାବରେ କିଛି କରିବାର ଶକ୍ତି ନଥିଲା । ଟିକସ ପ୍ରଭୃତି ବୃଦ୍ଧି ହେଉଥିଲାବେଳେ ଅନେକ ସମୟରେ ପ୍ରଜାମାନେ ମେଳବାନ୍ଧି ବିଦ୍ରୋହ କରୁଥିଲେ । ଏସବୁ ବିଦ୍ରୋହରେ ଗ୍ରାମ ପ୍ରଧାନମାନେ ପ୍ରଜାମାନଙ୍କୁ ନେତୃତ୍ୱ ଦେଉଥିଲେ । ବିଭିନ୍ନ ବିଷୟରେ ଟିକସ ବସାଇବାର ସମ୍ଭାବନା କମିଥିବାରୁ, ରାଜାମାନେ ଚୁଲି ଟିକସ, ରାସ୍ତା ବ୍ୟବହାର ଯୋଗୁଁ ଟୋଲ୍, ଜଙ୍ଗଲ କାଠ ପ୍ରଭୃତି ସଂଗ୍ରହ ଉପରେ ଅତ୍ୟନ୍ତ ଅପ୍ରୀତିକର ଟିକସମାନ ବସାଉଥିଲେ । ଜଙ୍ଗଲ ଜାତ ଦ୍ରବ୍ୟ ପ୍ରଭୃତି ଉପରେ ଟିକସ ଆଦାୟ କ୍ଷେତ୍ରରେ କର୍ମଚାରୀମାନଙ୍କର ଦୁର୍ନୀତି ନିମିତ୍ତ ବହୁ ବାଟ ଥିଲା । କର୍ମଚାରୀମାନଙ୍କ ଦୁର୍ନୀତି ହେତୁ ରାଜକୋଷକୁ ଟିକସ ଯାଏ ନାହିଁ, ଦୁର୍ନୀତିଗ୍ରସ୍ତ କର୍ମଚାରୀମାନେ ଉପକୃତ ହୁଅନ୍ତି ଏବଂ ପ୍ରଜାମାନେ ଅତ୍ୟାଚାର ଭୋଗନ୍ତି ।

ପ୍ରଜାର ପ୍ରଧାନ ସମ୍ବଳ ଥିଲା ତାର ଶ୍ରମ ଶକ୍ତି । ରାଜା ଓ ରାଜକର୍ମଚାରୀ-ମାନେ ସେହି ସମ୍ବଳକୁ ବହୁ ସମୟରେ ମାଗଣାରେ ନେଉଥିଲେ । ସବୁ ଗଡ଼ଜାତ

ରାଜ୍ୟରେ ବେଠି ଗୋଟିଏ ସାଧାରଣ ପ୍ରଥା ଥିଲା । ବେଠି ବସ୍ତୁତଃ ଶ୍ରମ ଆକାରରେ ଗୋଟିଏ ଟିକସ । ଗଡ଼ଜାତ ରାଜ୍ୟମାନଙ୍କରେ ବେଠି ରାସ୍ତା ନିର୍ମାଣ ପ୍ରଭୃତି ସାଧାରଣ କାର୍ଯ୍ୟରେ, ରାଜା ଓ ରାଜପରିବାରର ଲୋକଙ୍କ ବ୍ୟକ୍ତିଗତ କାର୍ଯ୍ୟରେ, ରାଜକର୍ମଚାରୀ ଏବଂ ଗାଁ ପ୍ରଧାନଙ୍କ ବ୍ୟକ୍ତିଗତ କାର୍ଯ୍ୟରେ ରାଜ୍ୟକୁ ଆସୁଥିବା ଇଂରେଜ ସରକାରଙ୍କର ଉପରିସ୍ଥ କର୍ମଚାରୀ ଏବଂ ଅତିଥି ଅଭ୍ୟାଗତଙ୍କ କାର୍ଯ୍ୟରେ ଆଦାୟ କରାଯାଉଥିଲା । ଘରୁ ଭାତଖାଇ ପ୍ରଜା ବିନା ମଜୁରିରେ ଏସବୁ କାର୍ଯ୍ୟ କରିବାକୁ ବାଧ୍ୟ ହେଉଥିଲେ । ଗାଁ ପ୍ରଧାନ ଏବଂ ରାଜକର୍ମଚାରୀଙ୍କ ମାଧ୍ୟମରେ ବେଠି କାମ ଆଦାୟ କରାଯାଉଥିଲା । ଏହା ବିରୋଧ ଆପତ୍ତି କରିବାକୁ କାହାରି ସାହସ ନ ଥିଲା । କୌଣସି ବ୍ୟକ୍ତି ଆପତ୍ତି କଲେ ବା ଅସନ୍ତୋଷ ପ୍ରକାଶ କଲେ, ତାକୁ ସଙ୍ଗେ ସଙ୍ଗେ ଶାସ୍ତି ଦିଆଯାଉଥିଲା । ଶାସ୍ତିଟା ସବୁବେଳେ ମାଡ଼ । ତା'ଛଡ଼ା ଗାଈ ଗୋରୁ ନେଇଯିବା, ଫସଲ କାଟିନେବା, ଘର ଭାଙ୍ଗିଦେବା, ଶେଷରେ ତାକୁ ରାଜ୍ୟରୁ ବାହାର କରିଦେବା ପ୍ରଭୃତି ଉପରକୁ ଉପରକୁ ବହୁତ ଶାସ୍ତି ଥାଏ । ଅତ୍ୟାଚାର ଅତି ଦୁର୍ବହ ହେଲେ ପ୍ରଜାମେଳି ଓ ବିଦ୍ରୋହ ହୁଏ । ମୋଗଲବନ୍ଦୀ ଅଞ୍ଚଳରେ ବେଠି ପ୍ରାୟ ନ ଥିଲା । କିନ୍ତୁ ସେ ଅଞ୍ଚଳରେ ଅନେକ ଜମିଦାର ରାଜାଙ୍କ ପରି ଅନେକ କାମରେ ବେଠି ଆଦାୟ କରୁଥିଲେ । ଜମି ବନ୍ଦୋବସ୍ତ କାମରେ ବ୍ରିଟିଶ ସରକାର ମଧ୍ୟ ବଳରେ ମାପ ପ୍ରଭୃତି କାମରେ ସାହାଯ୍ୟ କରିବା ପାଇଁ ଗ୍ରାମବାସୀଙ୍କଠାରୁ ବିନା ମଜୁରିରେ କେତେକ ଦିନ କାମ ଆଦାୟ କରୁଥିଲେ । ମାତ୍ର ଏ ବେଠି ଅତି ସାମାନ୍ୟ ଥିଲା ।

ଶ୍ରମ ବେଠି ବ୍ୟତୀତ ରାଜାମାନେ ଅନ୍ୟ ପ୍ରକାର ଶ୍ରମ ଓ ପଦାର୍ଥ ପ୍ରଜାମାନଙ୍କଠାରୁ ଆଦାୟ କରୁଥିଲେ । ରାଜପରିବାରର ବିବାହାଦି ଉତ୍ସବରେ ଦୁଧ, ଘିଅ, ପରିବା, ଚାଉଳ ଡାଲି ପ୍ରଭୃତି ସବୁ ମାଗଣାରେ ଆସୁଥିଲା । ବ୍ରିଟିଶ ସରକାରଙ୍କର କର୍ମଚାରୀମାନଙ୍କର ରାଜ୍ୟରେ କ୍ୟାମ୍ପ ପଡ଼ିଲେ କିମ୍ବା ରାଜ-କର୍ମଚାରୀମାନେ ଗ୍ରାମାଞ୍ଚଳରେ କୌଣସି କାର୍ଯ୍ୟ କରିବାକୁ ଗଲେ ସେମାନଙ୍କ ପାଇଁ ଦୁଧ, ଘିଅ, ଚାଉଳ, କାଠ ପ୍ରଭୃତି ସମସ୍ତ ରସଦ ପ୍ରଜାମାନେ ଯୋଗାଇ ଦେଉଥିଲେ ଏବଂ ମାଗଣାରେ ବିଭିନ୍ନ ପ୍ରକାର କାର୍ଯ୍ୟ କରିବାକୁ ଲୋକ ଯୋଗାଇ ଦେଉଥିଲେ ।

ସବୁଠାରୁ ମାରାତ୍ମକ ଗୃହୀତ ଆଇନ ଓ ପରମ୍ପରା ଥିଲା ଯେ, ରାଜା ରାଜ୍ୟର ସମସ୍ତ ସମ୍ପଳର ମାଲିକ । ରାଜ୍ୟର ଜମି, ନଦୀ, ପର୍ବତ, ଅରଣ୍ୟ ସବୁ ତାଙ୍କର । ପ୍ରଜାମାନେ ତାଙ୍କ ଅନୁମତିରେ ଏବଂ ତାଙ୍କୁ କର ଦେଇ ରାଜ୍ୟରେ ବାସ କରୁଛନ୍ତି ଏବଂ ଚାଷ-ବାସ ଓ ଜଙ୍ଗଲ ସମ୍ପଦ ବ୍ୟବହାର କରି ଜୀବିକା ନିର୍ବାହ କରୁଛନ୍ତି । ସମସ୍ତ ପ୍ରକାର ସମ୍ପତ୍ତି ଉପରେ ସେମାନଙ୍କର ଅଧିକାର ରାଜାଙ୍କ

ଅନୁମତି ଉପରେ ନିର୍ଭର କରେ । ରାଜା ଇଚ୍ଛା କଲେ ସେମାନଙ୍କର ସମ୍ପତ୍ତି ବାଜ୍ୟାପ୍ତ କରିନେବେ ଏବଂ ସେମାନଙ୍କୁ ରାଜ୍ୟରୁ ତଡ଼ିଦେଇ ପାରିବେ । ଅବଶ୍ୟ ପ୍ରଜାର ସ୍ୱତ୍ୱ ଏବଂ ମାନବିକ ଅଧିକାର ସାବ୍ୟସ୍ତ କରିବା ପାଇଁ ଆଇନ ଥିଲା । ମାତ୍ର ସର୍ବମୟ କର୍ତ୍ତା ରାଜାଙ୍କ ବିରୁଦ୍ଧରେ କୌଣସି ପ୍ରଜା ସେ ଅଧିକାର ସାବ୍ୟସ୍ତ କରିପାରୁ ନ ଥିଲେ । ବାସ୍ତବ କ୍ଷେତ୍ରରେ ରାଜକୋଷ ଓ ରାଜାଙ୍କର ବ୍ୟକ୍ତିଗତ ପାଣ୍ଠି ମଧ୍ୟରେ ତଫାତ୍ ନ ଥିଲା । ରାଜା ଇଚ୍ଛା ଅନୁସାରେ ପ୍ରଜାମାନଙ୍କଠାରୁ ଆଦାୟ କରାଯାଇଥିବା ରାଜକୋଷ ଧନ ନିଜର ବିଭିନ୍ନ ବ୍ୟକ୍ତିଗତ କାର୍ଯ୍ୟରେ ଖର୍ଚ୍ଚ କରି ପାରୁଥିଲେ । ରାଜ୍ୟର ସମସ୍ତ ଶାସନ ପ୍ରକ୍ରିୟା, ରାଜସ୍ୱ ଆଦାୟ ଏବଂ ଖର୍ଚ୍ଚ ରାଜକେନ୍ଦ୍ରିକ ଥିଲା । ରାଜପରିବାର ଓ ରାଜ୍ୟର ଶାସକ ମଧ୍ୟରେ କୌଣସି ପାର୍ଥକ୍ୟ ନ ଥିଲା । ରାଜକର୍ମଚାରୀମାନେ ସମସ୍ତେ ରାଜାଙ୍କର କର୍ମଚାରୀ ରୂପେ ରହିଥିଲେ । ରାଜା ଯେ, କୌଣସି ଆଳରେ ଯେ କୌଣସି ସମୟରେ ତାଙ୍କୁ ବାହାର କରିଦେଇ ପାରୁଥିଲେ । ଯଦିଓ ପୂର୍ବକାଳରୁ ପ୍ରଜାର ହିତସାଧନ ଓ ପ୍ରଜାରଞ୍ଜନ ରାଜାଙ୍କର ପ୍ରଧାନ କର୍ତ୍ତବ୍ୟ ବୋଲି ଶାସ୍ତ୍ରାନୁମୋଦିତ ଥିଲା, ଊନବିଂଶ ଓ ବିଂଶ ଶତାବ୍ଦୀରେ ଓଡ଼ିଶାର ଗଡ଼ଜାତ ରାଜାମାନେ ସେ ଶାସ୍ତ୍ରମତ ବିପରୀତ କାର୍ଯ୍ୟକଳାପ କରୁଥିଲେ । ଫଳରେ ପ୍ରଜାମାନେ ଦରିଦ୍ର ଓ ଶୋଷିତ ଭାବରେ ଅନ୍ଧକାରାଚ୍ଛନ୍ନ ସମାଜରେ ଜୀବନଯାପନ କରୁଥିଲେ । ଅତ୍ୟାଚାର ଦୁର୍ବିସହ ହେଲେ ମଝିରେ ମଝିରେ ପ୍ରଜାମେଳି ଓ ଆନ୍ଦୋଳନ ହେଉଥିଲା । ରାଜାମାନେ ବ୍ରିଟିଶ୍ ସରକାରଙ୍କ ସୈନ୍ୟ ଏବଂ ପୁଲିସ୍ ସାହାଯ୍ୟରେ ସେଗୁଡ଼ିକୁ ଦମନ କରୁଥିଲେ ।

ବିଂଶ ଶତାବ୍ଦୀର ତୃତୀୟ ଦଶନ୍ଧିର ଶେଷ ପର୍ଯ୍ୟନ୍ତ କୌଣସି ଗଡ଼ଜାତ ରାଜ୍ୟରେ ବିଧିବଦ୍ଧ ଭାବରେ ଆଧୁନିକ ଧରଣର ପ୍ରଜା ସଙ୍ଗଠନ ନ ଥିଲା । ବିଂଶ ଶତାବ୍ଦୀର ଆରମ୍ଭରୁ ବ୍ରିଟିଶ ସରକାର କ୍ରମେ କ୍ରମେ ଗଡ଼ଜାତ ରାଜ୍ୟ ଶାସନ ପାଇଁ ବହୁତ ନିୟମ ପ୍ରଣୟନ କରିଥିଲେ ଏବଂ ସେଗୁଡ଼ିକୁ ପାଳନ କରିବାକୁ ରାଜାମାନଙ୍କୁ ବାଧ୍ୟ କରୁଥିଲେ । କୌଣସି ରାଜା ଗୁରୁତର ଆଇନବିରୁଦ୍ଧ କାର୍ଯ୍ୟ କଲେ ଏବଂ ବ୍ରିଟିଶ ସରକାର ତାଙ୍କୁ ରାଜ୍ୟ ଶାସନ କରିବା ପାଇଁ ଅଯୋଗ୍ୟ ବୋଲି ବିବେଚନା କଲେ, ତାଙ୍କୁ କ୍ଷମତାଚ୍ୟୁତ କରୁଥିଲେ ଏବଂ ବ୍ରିଟିଶ ସରକାରଙ୍କ କର୍ମଚାରୀମାନଙ୍କୁ ରାଜ୍ୟମାନଙ୍କରେ ଦେବାନ ହିସାବରେ ନିଯୁକ୍ତ କରି ରାଜ୍ୟ ଶାସନର ବହୁ କ୍ଷମତା ତାଙ୍କୁ ଅର୍ପଣ କରୁଥିଲେ । ରାଜ୍ୟ ଶାସନ କ୍ଷମତା ହରାଇବା ଭୟରେ ରାଜାମାନେ ବ୍ରିଟିଶ ଶାସନ କର୍ମଚାରୀମାନଙ୍କୁ ସବୁବେଳେ ଭୟ କରୁଥିଲେ ଏବଂ ସେମାନଙ୍କୁ ସନ୍ତୁଷ୍ଟ କରିବାକୁ ଯତ୍ନ କରୁଥିଲେ ।

ମୋଗଲବନ୍ଦୀ ଅଞ୍ଚଳର ଲୋକମାନେ ଗଡ଼ଜାତ ଅଞ୍ଚଳକୁ ଅନ୍ଧକାର ମୂଳକ ବୋଲି ଭାବୁଥିଲେ । କାରଣ, ସେ ଅଞ୍ଚଳମାନଙ୍କରେ ରାସ୍ତାଘାଟ ନ ଥିବାରୁ ଯିବା ଆସିବା କରିବା କଷ୍ଟକର ଥିଲା । ଦ୍ୱିତୀୟରେ ଅଧିକାଂଶ ରାଜ୍ୟ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ତୃତୀୟରେ ରାଜାମାନଙ୍କର ମନମୁଖି ଶାସନ ଅଧୀନରେ ପ୍ରଜାମାନଙ୍କର ବ୍ୟକ୍ତିଗତ ସ୍ୱାଧୀନତା ଓ ଧନଜୀବନ ନିରାପଦ ନ ଥିଲା । ବ୍ରିଟିଶ ଶାସିତ ଅଞ୍ଚଳରେ ଯେପରି ଆଇନ୍ କାନୁନ୍ ଓ କୋର୍ଟ କଚେରୀ ପ୍ରଚଳିତ ହୋଇଯାଇଥିଲା ଗଡ଼ଜାତ ଅଞ୍ଚଳରେ ରାଜାମାନଙ୍କ ଶାସନ ଲୋପହେଲା ପର୍ଯ୍ୟନ୍ତ ତାହା ହୋଇପାରି ନ ଥିଲା । ତଥାପି ବ୍ରିଟିଶ ସରକାର ତାଙ୍କ ନିଜ ସ୍ୱାର୍ଥରେ ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରଚଳିତ ଶାସନ ପ୍ରଣାଳୀ ସ୍ଥିର ରଖିବାକୁ ଚାହୁଁଥିଲେ, କାରଣ ରାଜାମାନେ ଭାରତବର୍ଷରେ ଇଂରେଜ ଶାସନର ସ୍ଥାୟିତ୍ୱ ଚାହୁଁଥିଲେ ଏବଂ ସେମାନେ ନିଜ ସ୍ୱାର୍ଥରେ ଇଂରେଜ ସରକାରଙ୍କର ଦୃଢ଼ ସମର୍ଥକ ଥିଲେ ।

ଊନବିଂଶ ଓ ବିଂଶ ଶତାବ୍ଦୀରେ ଗଡ଼ଜାତ ରାଜ୍ୟମାନଙ୍କର ପ୍ରଜାମାନଙ୍କର ଏହିପରି ଅବସ୍ଥା ଏବଂ ଶାସନର ଏହିପରି ପଦ୍ଧତିର ପ୍ରତ୍ୟକ୍ଷଦର୍ଶୀ ଓ ଅନୁଭବୀ ଭାବରେ ଫକୀରମୋହନ, ପ୍ରଶାସକ ଭରତଚନ୍ଦ୍ର ନାୟକ, ସାମ୍ବାଦିକ ଓ ଲୋକସମ୍ପର୍କ ବିଭାଗର ପ୍ରଶାସକ ଚନ୍ଦ୍ରାମଣି ମିଶ୍ର, ଐତିହାସିକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରଭୃତି ବହୁ ଲେଖକ ବର୍ଣ୍ଣନା କରିଛନ୍ତି । ଫକୀରମୋହନ ସେନାପତି ୧୮୭୧ ମସିହାରୁ ୧୮୯୬ ମସିହା ପର୍ଯ୍ୟନ୍ତ ଦୀର୍ଘ ପଚିଶିବର୍ଷ କାଳ ନୀଳଗିରି ରାଜ୍ୟ, ଡୋମପଡ଼ା ଜମିଦାରୀ, ଢେଙ୍କାନାଳ, ଦଶପଲ୍ଲା, ପାଲଲହଡ଼ା ଏବଂ କେଉଁଝର ରାଜ୍ୟମାନଙ୍କରେ କାର୍ଯ୍ୟ କରିଥିଲେ । ଏହି ସମୟ ମଧ୍ୟରେ ସେ, ରାଜାମାନଙ୍କର ଶିକ୍ଷା ଦୀକ୍ଷା, ଶାସନ କରିବା ପଦ୍ଧତି ଓ ଦକ୍ଷତା, ରାଜପରିବାର-ମାନଙ୍କରେ କଳହ ଓ ଷଡ଼ଯନ୍ତ୍ର, ରାଜାମାନଙ୍କର ଇଂରେଜ ସରକାରଙ୍କ ସହ ସମ୍ପର୍କ, ରାଜ୍ୟମାନଙ୍କରେ ରାସ୍ତାଘାଟର ଅସୁବିଧା, ପ୍ରଜାମାନଙ୍କର ବେଠି ବେଗାରି, ରାଜକର୍ମଚାରୀମାନଙ୍କର ଅଦକ୍ଷ ଓ ତୋଷାମଦକାରୀ କାର୍ଯ୍ୟ, ପ୍ରଜାମେଳି ଓ ବିଦ୍ରୋହ ପ୍ରଭୃତି ବିଷୟ ପୁଙ୍ଖାନୁପୁଙ୍ଖ ଭାବରେ ତାଙ୍କ 'ଆତ୍ମଜୀବନ ଚରିତ' ବହିରେ ବର୍ଣ୍ଣନା କରିଛନ୍ତି । ନୀଳଗିରି ରାଜପରିବାର ମଧ୍ୟରେ ରାଜା ଓ ତାଙ୍କ ସାନଭାଇଙ୍କ ମଧ୍ୟରେ ବିବାଦ, ଡୋମପଡ଼ା ଜମିଦାରୀରେ ପ୍ରଜାମାନଙ୍କର ଖଜଣା ବନ୍ଦ ଆନ୍ଦୋଳନ ରାଜାଙ୍କର ଅତ୍ୟଧିକ ଋଣ ଏବଂ ରାଜପରିବାରରେ କଳହ, ଢେଙ୍କାନାଳ ରାଜ୍ୟରେ ରାଜ କର୍ମଚାରୀ ଓ ରାଜପରିବାର ଲୋକଙ୍କର ଚାକରମାନଙ୍କର ଅତ୍ୟଧିକ ସଙ୍ଖ୍ୟା, ଦଶପଲ୍ଲା ରାଜାଙ୍କର ନିରକ୍ଷରଣ ଓ ଅବିଚାରମଣା ଶାସନ, ପାଲଲହଡ଼ାରେ ପ୍ରଜାମେଳି ଓ ରାସ୍ତାଘାଟର ଅଭାବ

କେନ୍ଦୁଝରରେ ଭୂୟାଁ ପ୍ରଜାମାନଙ୍କର ବେଠି ପ୍ରଥା ବିରୋଧରେ ବିଦ୍ରୋହ ଏବଂ ବ୍ରିଟିଶ ଶାସିତ ଅଞ୍ଚଳର ପୁଲିସ୍ ଓ ସୈନ୍ୟମାନଙ୍କ ଦ୍ୱାରା ତାହା ଦମନ ବିଷୟ ସେ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରି ସେ ସମୟର ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରଜାମାନଙ୍କର ଅବସ୍ଥା ଓ ଶାସନ ପ୍ରଣାଳୀ ବିଷୟରେ ଗୋଟିଏ ସ୍ପଷ୍ଟ ଚିତ୍ର ଦେଇଛନ୍ତି । ତାଙ୍କ ଲେଖାରୁ ଜଣାଯାଏ ଯେ ଜଙ୍ଗଲରେ ପରିପୂର୍ଣ୍ଣ, ରାସ୍ତାଘାଟ ବିହୀନ ଅଧିକାଂଶ ଗଡ଼ଜାତ ରାଜ୍ୟରେ ବିଶେଷତଃ ପାଲଲହଡ଼ା, ଦଶପଲ୍ଲା, ହିନ୍ଦୋଳ, ନରସିଂହପୁର, ତିଗିରିଆ, ବଡ଼ମ୍ବା ପ୍ରଭୃତି ଛୋଟ ଛୋଟ ରାଜ୍ୟ-ମାନଙ୍କରେ ହାଟ ବଜାରର କୌଣସି ସୁବିଧା ନ ଥିଲା । ଅଧିକାଂଶ ରାଜ୍ୟ ଆଦିବାସୀ ବହୁଳ ଅଞ୍ଚଳ ଥିଲା । ସବୁ ଆଦିବାସୀ ଲୋକ ଏବଂ ଅଧିକାଂଶ ଅଣ-ଆଦିବାସୀ ଲୋକ ନିରକ୍ଷର ଥିଲେ । ଅନୁନ୍ନତ କୃଷି ଏବଂ ଜଙ୍ଗଲ ପଦାର୍ଥ ଉପରେ ନିର୍ଭର କରୁଥିବା ପ୍ରାୟ ସବୁଲୋକ ଊନବିଂଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଦରିଦ୍ର, ନିରକ୍ଷର ଓ କୁସଂସ୍କାର ପୂର୍ଣ୍ଣ ଥିଲେ ।

ଭରତ ନାୟକ ତାଙ୍କ "ମୋର ପୂର୍ବ ଅନୁଭୂତି" ବହିରେ ସୋନ୍‌ପୁର, ପାଟଣା, ବଣେଇ, ଢେଙ୍କାନାଳ ରାଜ୍ୟମାନଙ୍କରେ ଊନବିଂଶ ଶତାବ୍ଦୀର ଶେଷ ଭାଗ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ପ୍ରଜାମାନଙ୍କ ଅବସ୍ଥା ଏବଂ ରାଜ୍ୟ ଶାସନ ପ୍ରଣାଳୀ ବିଷୟ ବର୍ଣ୍ଣନା କରିଛନ୍ତି । ତାଙ୍କ ପରିବାର ପ୍ରଥମେ ସୋନ୍‌ପୁର ରାଜ୍ୟର ବାସିନ୍ଦା ଥିଲେ । ସେଠାରୁ ବିତାଡ଼ିତ ହୋଇ ସେମାନେ ପାଟଣା ରାଜ୍ୟର ଆଗଲପୁର ଗ୍ରାମରେ ବାସ କଲେ । ସେ ବଲାଙ୍ଗୀରରେ ମଧ୍ୟ-ଇଂରାଜୀ ସ୍କୁଲରେ ପଢ଼ୁଥିଲେ ଏବଂ ସମ୍ବଲପୁରଠାରେ ସ୍ଥାୟୀ ବାସିନ୍ଦା ହେବା ପୂର୍ବରୁ ପାଟଣା ରାଜ୍ୟରେ ତାଙ୍କ ଗାଁରେ ବାସ କରୁଥିଲେ । ପରେ ସେ ବଣାଇରେ ଦେବାନ ଏବଂ ଢେଙ୍କାନାଳରେ ଜଣେ ପ୍ରଶାସକ ରୂପେ କାର୍ଯ୍ୟ କରୁଥିଲେ । ସେ ବଣେଇ ରାଜ୍ୟର ୧୯୨୭ ମସିହା ପର୍ଯ୍ୟନ୍ତ ଲୋକଙ୍କ ଅନୁନ୍ନତ ଅବସ୍ଥା, ଜଙ୍ଗଲ ଓ ପୁଲିସ ବିଭାଗର କର୍ମଚାରୀମାନଙ୍କର ଦୁର୍ନୀତି ଓ ଅତ୍ୟାଚାର, ରାଜାଙ୍କର ଦେବାନଙ୍କୁ ତଡ଼ିବା ପାଇଁ ଷଡ଼ଯନ୍ତ୍ର, ଲୋକମାନଙ୍କର ପ୍ରାଥମିକ ସ୍କୁଲକୁ ପୁଆ ପିଲା ପଠାଇବାକୁ ଅନିଚ୍ଛା, ଢେଙ୍କାନାଳରେ ପ୍ରଜାମାନଙ୍କର ୧୯୨୧ ମସିହା ପର୍ଯ୍ୟନ୍ତ ଅନୁନ୍ନତ ଅବସ୍ଥା ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି ।

ଚନ୍ଦ୍ରାମଣି ମିଶ୍ର ତାଙ୍କ "ଅର୍ଦ୍ଧ ଶତାବ୍ଦୀର ଅନୁଭୂତି" ବହିରେ ୧୯୧୦ଠାରୁ ୧୯୬୦ ମସିହା ସମୟର ବୌଦ, ରଣପୁର, ନୟାଗଡ଼ ଓ ପାଟଣା ରାଜ୍ୟ ବିଷୟରେ ଅନେକ କଥା ଲେଖିଛନ୍ତି । ବୌଦରେ ତାଙ୍କ ପଣ୍ଡିତ ସାନବାପା ବହୁକାଳ ରାଜକୁମାରମାନଙ୍କର ଶିକ୍ଷକ ଥିଲେ । ଦୁଇ ପୁରୁଷ ଧରି ବୌଦର ରାଜାମାନେ

ତାଙ୍କୁ ଅତ୍ୟନ୍ତ ଭକ୍ତି କରୁଥିଲେ ଏବଂ ସେ ସବୁବେଳେ ରାଜଗୁରୁଭାବେ ସମ୍ମାନ ପାଉଥିଲେ । ଊନବିଂଶ ଶତାବ୍ଦୀରେ ରାଜାମାନଙ୍କର କାର୍ଯ୍ୟକଳାପ ବିଷୟରେ ଯେତେ ଲୋକ ଲେଖିଛନ୍ତି, ତାଙ୍କ ଲେଖାରୁ ଜଣାଯାଏ ଯେ ରାଜାମାନେ ବ୍ୟକ୍ତିଗତ ଭାବରେ ବ୍ରାହ୍ମଣମାନଙ୍କ ଉପରେ ଅତ୍ୟାଚାର କରୁ ନ ଥିଲେ । ପରମ୍ପରାଗତ ବ୍ୟବହାର ଅନୁସାରେ ରାଜା ଓ ରାଜପରିବାରର ଲୋକମାନେ ବ୍ରାହ୍ମଣ ଓ ଦେବତାମାନଙ୍କୁ ଅମାନ୍ୟ କରିବା ପାପ ବୋଲି ମନେ କରୁଥିଲେ ଏବଂ ଶିକ୍ଷିତ ରାଜାମାନେ ପଣ୍ଡିତମାନଙ୍କୁ ଯଥେଷ୍ଟ ଆଦର କରୁଥିଲେ ଓ ତାଙ୍କ ସଙ୍ଗରେ ଶାସ୍ତ୍ର ଓ ବିଦ୍ୟାଚର୍ଚ୍ଚା କରିବାକୁ ସୁଖ ପାଉଥିଲେ ।

ଚନ୍ଦ୍ରାମଣିବାବୁଙ୍କ ମାମୁଘର ରାଜ୍ୟ ରଣପୁର ଏବଂ ପାଖ ରାଜ୍ୟ ନୟାଗଡ଼ର ୧୯୧୦।୧୫ ଖ୍ରୀଷ୍ଟାବ୍ଦ ସମୟର ଅବସ୍ଥା ବିଷୟରେ ସେ ଲେଖିଛନ୍ତି ଯେ ଗାଁମାନଙ୍କ ଚାରିପାଖ ଜଙ୍ଗଲରେ ପରିପୂର୍ଣ୍ଣ ଥାଏ । ଜଙ୍ଗଲରେ ବହୁ ବାଘ ଭାଲୁ ଥାଆନ୍ତି । ତାଙ୍କ ମାମୁଘର ଗାଁରୁ ରାଜ ଯୁନାଖଲାକୁ ପଡ଼ିଥିବା ରାସ୍ତାରୁ କେତେଥର ବାଘ ଲୋକମାନଙ୍କୁ ନେଇ ଯାଇଥିବାର ସେ ଜାଣିଥିଲେ । ତାଙ୍କ ବୋଉଙ୍କୁ ଚାରି ପାଞ୍ଚ ବର୍ଷ ବୟସ ହୋଇଥିବା ବେଳେ ତାଙ୍କ ମା ବା ଚନ୍ଦ୍ରାମଣିବାବୁଙ୍କ ଆଈଙ୍କୁ ଦିନେ ରାତି ପାହାନ୍ତାରୁ ତାଙ୍କ ଘର ପାଖରୁ ବାଘ ନେଇ ଯାଇଥିଲା । ତାଙ୍କ ସାନଅଜା ଘରପାଖ ଜଙ୍ଗଲରୁ ବଣୁଆ ଗଛ୍ରେଇ ସଂଗ୍ରହ କରି, ସେଥିରେ ମୋଦକ କରି ପୁରୀର ଜଣେ ଦେବାସ୍ୱତଙ୍କୁ ଦେଉଥିଲେ ଏବଂ ସେଥିରୁ ଯେଉଁ ପାରିଶ୍ରମିକ ପାଉଥିଲେ, ତାହା ତାଙ୍କ ପରିବାରର ପ୍ରଧାନ ଆୟର ସୂତ୍ର ଥିଲା । ସେ ଜଣେ ଦକ୍ଷ କବିରାଜ ଥିଲେ, ମାତ୍ର ରୋଗୀମାନଙ୍କୁ ଚିକିତ୍ସା କରି ସେମାନଙ୍କଠାରୁ ପଇସା ଆଦାୟ କରୁ ନ ଥିଲେ । ତାଙ୍କୁ ଏବଂ ତାଙ୍କ ଗାଁର ବୈଦ୍ୟମାନଙ୍କୁ ରଣପୁର ଓ ନୟାଗଡ଼ର ରାଜାମାନେ ବଡ଼ ସମ୍ମାନ ଦେଖାଉଥିଲେ ।

ତାଙ୍କ ଗାଁର ଜଣେ ପ୍ରଖ୍ୟାତ କବିରାଜଙ୍କୁ ନୟାଗଡ଼ ରାଜା ଦରବାର ହାତୀ ପଠାଇ ନଅନ୍ତି ଏବଂ ପୁଣି ଗାଁରେ ଛାଡ଼ିଦେଇ ଯାଆନ୍ତି । ଥରେ ସେ ଜଣେ ଦରିଦ୍ର ରୋଗୀର ସେବାରେ ବ୍ୟସ୍ତ ଥିଲାବେଳେ, ରାଜାଙ୍କ ଲୋକ ହାତୀରେ ଆସି ସଙ୍ଗେ ସଙ୍ଗେ ଯିବାକୁ କହିଲା । ସେଥିରେ କବିରାଜ ରାଗିଯାଇ ସେ ଲୋକକୁ ଗାଳି ଦେବାରୁ ସେ ଫେରିଯାଇ ରାଜାଙ୍କ ଆଗରେ ଚୁଗୁଲି କଲା । ପରଦିନ ସେ ରାଜବାଟିକୁ ଯିବାବେଳକୁ ତାଙ୍କ ନାମରେ ଗୋଟିଏ ମିଥ୍ୟା ମକଦ୍ଦମା ହୋଇ ସାରିଥିଲା ଏବଂ ସେଥିରେ ସେ ତିନିମାସ ଜେଲ୍ ଭୋଗିଥିଲେ । ଜେଲ୍‌ରୁ ଫେରିଲା ପରେ ରାଜାଙ୍କ ବହୁ ଅନୁରୋଧ ସତ୍ତ୍ୱେ ସେ ସେଠାକୁ ଆଉ ଗଲେ ନାହିଁ ।

ରାଜାଙ୍କ ମନମୁଖି କାର୍ଯ୍ୟ, ହୁକୁମ ଓ ହୁକୁମ ଅମାନ୍ୟ କଲେ ରାଜବୈଦ୍ୟଙ୍କ ଘୁଞ୍ଚା ଜେଲ୍ ଭୋଗିବାକୁ ପଡ଼ୁଥିବାର ଏହା ଗୋଟିଏ ଦୃଷ୍ଟାନ୍ତ ।

ଚନ୍ଦ୍ରାମଣି ମିଶ୍ର ମଧ୍ୟ ୧୯୧୦।୧୫ ମସିହା ପର୍ଯ୍ୟନ୍ତ ବୌଦ, ସୋନପୁର ଓ ପାଟଣା ପ୍ରଭୃତି ରାଜ୍ୟମାନଙ୍କୁ ଯିବା ଆସିବା କରିବାରେ ଅସୁବିଧା ବିଷୟ ବର୍ଣ୍ଣନା କରିଛନ୍ତି । ତାଙ୍କ ସାନବାପାଙ୍କୁ ବାଙ୍କୀରୁ ବୌଦକୁ ମହାନଦୀରେ ଡଙ୍ଗାରେ ଯିବାକୁ ବା ସେଠାରୁ ଆସିବାକୁ ଛଅଦିନ ଲାଗି ଯାଉଥିଲା । ଚନ୍ଦ୍ରାମଣିବାବୁ ପିଲାଦିନେ ବଲାଙ୍ଗୀର ସ୍କୁଲରେ ପଢୁଥିଲା ବେଳେ ସମ୍ବଲପୁରଠାରୁ ସୋନପୁରକୁ ଡଙ୍ଗାରେ ଯିବା ଏବଂ ସେଠାରୁ ବଲାଙ୍ଗୀର ଯିବା କିପରି କଷ୍ଟକର ବ୍ୟାପାର ଥିଲା ତାହା ବର୍ଣ୍ଣନା କରିଛନ୍ତି ।

ଗଡ଼ଜାତ ରାଜ୍ୟମାନଙ୍କ ମଧ୍ୟରେ ମୟୂରଭଞ୍ଜ ଗୋଟିଏ ପ୍ରଗତିଶୀଳ ରାଜ୍ୟ ବୋଲି ଖ୍ୟାତି ଅର୍ଜନ କରିଥିଲା । ମୟୂରଭଞ୍ଜ ବ୍ରିଟିଶ ଶାସିତ ଜିଲ୍ଲା ସିଂହଭୂମି, ମେଦିନୀପୁର ଓ ବାଲେଶ୍ୱର ଜିଲ୍ଲାକୁ ଲାଗିଥିଲା । ରାଜ୍ୟର ମହାରାଜାଙ୍କ ଉଦ୍ୟମରେ ରୂପ୍‌ସାରୁ ବାଙ୍ଗିରିପୋଷି ପର୍ଯ୍ୟନ୍ତ ଗୋଟିଏ ଅଣଓସାରିଆ ରେଳପଥ ନିର୍ମିତ ହୋଇଥିଲା ଏବଂ ରାଜ୍ୟରେ ବିଭିନ୍ନ ଅଞ୍ଚଳକୁ ରାସ୍ତା ନିର୍ମିତ ହୋଇଥିଲା । ରାଜ୍ୟର ମହାରାଜାମାନଙ୍କର ଆଧୁନିକ ଆଭିମୁଖ୍ୟ ଥିଲା ଏବଂ ସେମାନେ ବ୍ରାହ୍ମଣ ଓ ପଣ୍ଡିତମାନଙ୍କୁ ଆଦର କରୁଥିଲେ । ବିଦ୍ୟାଚର୍ଚ୍ଚାରେ ସେମାନଙ୍କର ଅନୁରାଗ ପାଇଁ ସେମାନେ ଖ୍ୟାତି ଅର୍ଜନ କରିଥିଲେ । ତଥାପି ୧୯୨୦।୨୨ ମସିହା ପୂର୍ବରୁ ରାଜ୍ୟର ଅଧିକାଂଶ ଅଧିବାସୀମାନଙ୍କର ଅବସ୍ଥା କିପରି ଶୋଚନୀୟ ଥିଲା ଏବଂ ରାଜ୍ୟର ଗୋଟିଏ ଅଞ୍ଚଳରୁ ଅନ୍ୟ ଗୋଟିଏ ଅଞ୍ଚଳକୁ ଯିବା କିପରି କଷ୍ଟକର ଥିଲା ତାହା ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ତାଙ୍କର "ମୋ ସମୟର ଓଡ଼ିଶା" ବହିରେ ବର୍ଣ୍ଣନା କରିଛନ୍ତି ।

ତାଙ୍କ ଲେଖାରୁ ଜଣାଯାଏ ଯେ ପୁରା ମୟୂରଭଞ୍ଜ ରାଜ୍ୟର ଲୋକ-ସଂଖ୍ୟାର ପ୍ରାୟ ସରୁର ଭାଗ ଲୋକ ସାନ୍ତାଳ, କୋହ୍ଲ, ଭୂୟାଁ, ଗଣ୍ଡ, ସାଉଁତି ପ୍ରଭୃତି ଆଦିବାସୀ ସମ୍ପ୍ରଦାୟର ଲୋକ ଥିଲେ । ଆବହମାନ କାଳରୁ ସେମାନେ ଅତି ଦରିଦ୍ର ଥିଲେ ଏବଂ ବର୍ଷ ମଧ୍ୟରୁ ବହୁ ସମୟ ଅନାହାରରେ ରହୁଥିଲେ । ସେମାନେ ଉନ୍ନତ ଧରଣର କୃଷି ପଦ୍ଧତି କିମ୍ବା ଗୃହ ନିର୍ମାଣ ପଦ୍ଧତି ଜାଣି ନ ଥିଲେ । ଖାଦ୍ୟରେ ପୁଷ୍ଟିସାର ଅଭାବରୁ, ରୋଗ ସମ୍ମୁଖରେ ନିଃସହାୟ ହୋଇ ପଡ଼ୁଥିବାରୁ ଏବଂ ସେମାନଙ୍କ ମଧ୍ୟରେ ଶିକ୍ଷାର ନିତାନ୍ତ ଅଭାବ ଥିବାରୁ, ସେମାନଙ୍କର କର୍ମଶକ୍ତି ପଙ୍ଗୁ ହୋଇ ରହିଥିଲା । ସେ ରାଜ୍ୟରେ ବହୁଥର ଦୁର୍ଭିକ୍ଷ ଓ ଖଣ୍ଡ ଦୁର୍ଭିକ୍ଷ ଲାଗି ରହୁଥାଏ ଏବଂ ଲୋକମାନେ ଦୁର୍ଭିକ୍ଷ ସମୟରେ ବନ୍ୟ

ଫଳମୂଳ, ପକ୍ଷ ଓ ଗେଣ୍ଡା, କୋଚଆ, ଝିଣ୍ଟିପୋକ ଓ କାଇଡମ୍ବ ପ୍ରଭୃତି ଖାଇ କୌଣସିମତେ ବଞ୍ଚି ଯାଉଥିଲେ । ରାଜାମାନେ ଆଦିବାସୀମାନଙ୍କ ଅର୍ଥନୈତିକ ଓ ସାଂସ୍କୃତିକ ଜୀବନଯାପନ ପ୍ରଣାଳୀରେ ହସ୍ତକ୍ଷେପ କରୁ ନ ଥିଲେ କିମ୍ବା ସେମାନଙ୍କ ଶିକ୍ଷା, ସ୍ୱାସ୍ଥ୍ୟ ଓ ଆର୍ଥିକ ପରିସ୍ଥିତିର ଉନ୍ନତି ନିମିତ୍ତ ବିଶେଷ ଯତ୍ନବାନ ନ ଥିଲେ ।

ଅନ୍ୟ ପକ୍ଷରେ ରାଜପରିବାର ଏବଂ ରାଜକର୍ମଚାରୀମାନେ ଆଡ଼ମ୍ବର ଓ ସୁଖସ୍ୱାଚ୍ଛନ୍ଦ୍ୟରେ ରହିବାରେ ବ୍ୟସ୍ତ ଥିଲେ । କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଲେଖିଛନ୍ତି, "ଏ ସମୟରେ ରାଜାହିଁ କ୍ଷମତା ମଧୁଚକ୍ରର ମଧ୍ୟମଣି ଥିବାରୁ ରାଜା ଓ ରାଜବଂଶ ସହିତ ସଂଶ୍ଳିଷ୍ଟ ଘଟଣାବଳୀ ହିଁ ସ୍ମରଣୀୟ ହେଉଥିଲା । ଏ ସମୟରେ ପ୍ରଜାମାନେ ରାଜାଙ୍କୁ ଦେବତୁଲ୍ୟ ମନେ କରୁଥିଲେ ଏବଂ ରାଜଦର୍ଶନକୁ ଦେବ ଦର୍ଶନ ପରି ଗୋଟିଏ ପୁଣ୍ୟକର୍ମ ବୋଲି ମନେ କରିଥିଲେ ।" ୧୯୨୫ ମସିହାରେ ତତ୍କାଳୀନ ମୟୂରଭଞ୍ଜ ଷ୍ଟେଟରାଜ୍ୟ ଏବଂ ପରବର୍ତ୍ତୀ ମହାରାଜା ପ୍ରତାପଚନ୍ଦ୍ରଙ୍କ ବିବାହ ଉତ୍ସବର ବିରାଟ ଆଡ଼ମ୍ବର ବିଷୟ ସେ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ଏ ବିବାହ ଉତ୍ସବ ବହୁଦିନ ପର୍ଯ୍ୟନ୍ତ ଚାଲିଥିଲା । କଲିକତାରୁ ମିନର୍ଭା ଥିଏଟର ଏବଂ ନିର୍ବାକ ଚଳଚ୍ଚିତ୍ର ଆସିଥିଲା ଏବଂ ବହୁ ପ୍ରକାର ଆତସବାଜି ପ୍ରତ୍ୟହ ପ୍ରଦର୍ଶିତ ହେଉଥିଲା ।

କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମୟୂରଭଞ୍ଜ ରାଜ୍ୟଶାସନର ନିନ୍ଦୁକ ନ ଥିଲେ । ସେ ଲେଖିଛନ୍ତି ଯେ ତାଙ୍କ ସମୟ ବେଳକୁ ମୟୂରଭଞ୍ଜର ପ୍ରଶାସନିକ ବ୍ୟବସ୍ଥା ବ୍ରିଟିଶ ଶାସିତ ଅଞ୍ଚଳର ପ୍ରଶାସନିକ ବ୍ୟବସ୍ଥା ସହିତ ପ୍ରାୟ ସମାନ ହୋଇ ଯାଇଥିଲା । ପୁଲିସ, କୋର୍ଟ, ହାଇକୋର୍ଟ, ସେକ୍ରେଟାରିଆଟ୍, ଏସ୍. ଡି. ଓ.ମାନଙ୍କ କଚେରି ଇତ୍ୟାଦି ସବୁ ବ୍ରିଟିଶ ଶାସନ କଳର ଢାଞ୍ଚାରେ ଗଠିତ ହୋଇଥିଲା । ସର୍ବୋପରି ମହାରାଜାଙ୍କ ବ୍ୟକ୍ତିଗତ ପ୍ରଭାବ ଶାସନ କଳକୁ ସୁସଂଯତ କରିପାରୁଥିଲା । ରାଜ୍ୟର ସର୍ବୋଚ୍ଚ ଶାସକ ରାଜ୍ୟରେ ଲାଞ୍ଚମିଛ, ଅନ୍ୟାୟ ଅନୀତି ସହିତ ଜଡ଼ିତ ନ ଥିଲେ । ମୟୂରଭଞ୍ଜର ମହାରାଜାମାନେ ବିଦ୍ୟୋତ୍ସାହୀ ଏବଂ ଶିକ୍ଷା ସଂସ୍କୃତିର ପୃଷ୍ଠପୋଷକ ଥିଲେ । ତଥାପି ମୟୂରଭଞ୍ଜରେ ସ୍କୁଲସଂଖ୍ୟା ଅତି ଅଳ୍ପ ଥିଲା । ବାରିପଦାରେ ଗୋଟିଏ ହାଇସ୍କୁଲ ଥିଲା ଏବଂ କରଞ୍ଜିଆ, କପ୍ତିପଦା ପ୍ରଭୃତି ସ୍ଥାନରେ ମୋଟରେ ପାଞ୍ଚ ଛଅ ଗୋଟି ମଧ୍ୟ ଇଂରାଜୀ ବିଦ୍ୟାଳୟ ଏବଂ କେତେଗୁଡ଼ିଏ ଉଚ୍ଚପ୍ରାଥମିକ ଓ ନିମ୍ନପ୍ରାଥମିକ ସ୍କୁଲ ଷ୍ଟେଟ୍‌ର ବିଭିନ୍ନ ସ୍ଥାନରେ ବସିଥିଲା । ମୟୂରଭଞ୍ଜ ଗୋଟିଏ ଅରଣ୍ୟ ଓ ଗିରିସଙ୍କୁଳ ପାର୍ବତ୍ୟବହୁଳ ରାଜ୍ୟ ଥିଲା ଏବଂ ଏ ରାଜ୍ୟରେ ରାଜରାସ୍ତାର ବିଶେଷ ସୁବିଧା ନ ଥିଲା । ମହାରାଜାମାନେ ହସ୍ତୀ ପୃଷ୍ଠରେ ବିଭିନ୍ନ ଅଞ୍ଚଳକୁ ଯାଉଥିଲେ । ବାରିପଦାଠାରୁ କରଞ୍ଜିଆର ଦୂରତ୍ୱ ୭୫ ମାଇଲ ଥିଲା । ୧୯୨୦

ମସିହା ବେଳକୁ ରାଜ୍ୟ କୋର୍ଟ ଅଫ୍ ଓ୍ୱାର୍ଡସ୍ ଥିଲାବେଳେ ବାରିପଦା କରଞ୍ଜିଆ ରାସ୍ତା ସମ୍ପୂର୍ଣ୍ଣ ହୋଇଥିଲା । ୧୯୨୩।୨୪ ମସିହାରେ କରଞ୍ଜିଆଠାରୁ ଝିଟଙ୍ଗ ପର୍ଯ୍ୟନ୍ତ ଗୋଟିଏ କଚ୍ଚା ରାସ୍ତା ନିର୍ମିତ ହୋଇଥିଲା । କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ତାଙ୍କ ଗାଁ ଝିଟଙ୍ଗ ପାଖ ବରୁହାଁ ଉଚ୍ଚପ୍ରାଥମିକ ସ୍କୁଲରେ ପଢୁଥିଲାବେଳେ, ବରୁହାଁ ଉଚ୍ଚପ୍ରାଥମିକ ସ୍କୁଲ କରଞ୍ଜିଆ ସବ୍‌ଡିଭିଜନର ଏକମାତ୍ର ଉଚ୍ଚପ୍ରାଥମିକ ସ୍କୁଲ ଥିଲା ଏବଂ ଏହି ସ୍କୁଲର ପରୀକ୍ଷାର୍ଥୀମାନଙ୍କୁ ବାରିପଦା କେନ୍ଦ୍ରରେ ପରୀକ୍ଷା ଦେବାକୁ ପଡ଼ୁଥିଲା । ସେଠାରୁ କରଞ୍ଜିଆ ଦେଇ ସଡ଼କ ରାସ୍ତାରେ ଗଲେ ବାରିପଦାରେ ପହଞ୍ଚିବାକୁ ୯୨ ମାଇଲ ଅତିକ୍ରମ କରିବାକୁ ପଡ଼ୁଥିଲା । ଧନୀ ପିଲାମାନେ ବାଦାମ ପାହାଡ଼ରୁ ରେଲଗାଡ଼ି ଧରି ଟାଟାନଗର, ଖଡ଼ଗପୁର ଓ ରୂପ୍‌ସା ଦେଇ ବାରିପଦାରେ ପହଞ୍ଚୁଥିଲେ, କିନ୍ତୁ ଗରିବ ପିଲାଙ୍କୁ ଏହି ୯୨ ମାଇଲ ନିପଟ ଅରଣ୍ୟ ରାଜରାସ୍ତାରେ ପାଦରେ ଯିବାକୁ ପଡ଼ୁଥିଲା । ସେତେବେଳେ ସମୁଦାୟ କରଞ୍ଜିଆ ସବ୍‌ଡିଭିଜନରେ ଗୋଟିଏମାତ୍ର ପୋଷ୍ଟ ଅଫିସ୍ ଥିଲା । ୧୯୨୦।୨୫ ମସିହା ବେଳକୁ ଏହାହିଁ ଥିଲା ପ୍ରଗତିଶୀଳ ମୟୂରଭଞ୍ଜ ରାଜ୍ୟର ଚିତ୍ର ।

ସୁତରାଂ ମୋଟାମୋଟି ଭାବରେ ୧୯୩୦ ମସିହା ପର୍ଯ୍ୟନ୍ତ ଓଡ଼ିଶାର ସମସ୍ତ ଗଡ଼ଜାତ ରାଜ୍ୟମାନଙ୍କର ପ୍ରଶାସନ, ପ୍ରଜାମାନଙ୍କର ଆର୍ଥିକ ଅବସ୍ଥା, ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ବ୍ୟବସ୍ଥା ଅତ୍ୟନ୍ତ ଅନୁନ୍ନତ ଥିଲା । ସବୁ ରାଜ୍ୟରେ ରାଜାମାନଙ୍କର ମନମୁଖି ଶାସନ, ସ୍ୱଳ୍ପ ବେତନ ଭୋଗୀ ଅଦକ୍ଷ କର୍ମଚାରୀ ଥିଲେ ଏବଂ ରାଜାଙ୍କ ଗୁଣ, ଚରିତ୍ର ଓ ଶିକ୍ଷା ଅନୁସାରେ ପ୍ରଜାମାନଙ୍କ ଉପରେ ଅତ୍ୟାଚାରର ମାତ୍ରା ନିର୍ଭର କରୁଥିଲା । ଅଳ୍ପ କେତେକ ଧନୀ ପ୍ରଜାଙ୍କୁ ଛାଡ଼ିଦେଲେ ଅଧିକାଂଶ ପ୍ରଜା ଦରିଦ୍ର, ନିରକ୍ଷର, ଅଜ୍ଞ ଓ ବୁଭୁକ୍ଷୁ ଭାବରେ ଚଳୁଥିଲେ ଏବଂ ରାଜା ଓ ରାଜକର୍ମଚାରୀଙ୍କ ଆବଶ୍ୟକତା ଓ ଆଦେଶ ଅନୁସାରେ ବେଠି କାମ କରୁଥିଲେ । ରାଜ୍ୟମାନ ହିଂସ୍ରଜନ୍ତୁପୂର୍ଣ୍ଣ ଅରଣ୍ୟରେ ପୂର୍ଣ୍ଣ ଥିଲା ଏବଂ ରାଜ୍ୟ ମଧ୍ୟରେ ଏବଂ ବାହାର ଜଗତ ସହିତ ଯିବାଆସିବା କରିବା ପାଇଁ ସୁବିଧା ନ ଥିଲା । ୧୮୦୩ରୁ ୧୯୪୭ ମସିହା ପର୍ଯ୍ୟନ୍ତ ବ୍ରିଟିଶ ସରକାର ରାଜାମାନଙ୍କର ରକ୍ଷକ ଓ ସର୍ବମୟ କର୍ତ୍ତା ହିସାବରେ ସେମାନଙ୍କର ରାଜ୍ୟଶାସନ ନିୟନ୍ତ୍ରଣ କରୁଥିଲେ । କୌଣସି ରାଜ୍ୟରେ ଅତ୍ୟାଚାର ଅଧିକ ହେଲେ କିମ୍ବା ରାଜାଙ୍କର କୌଣସି କର ବା ନିଷ୍ପତ୍ତି ଗୋଷ୍ଠୀଗତ ଭାବରେ ପ୍ରଜାମାନଙ୍କୁ ଆଘାତ କଲେ ମଝିରେ ମଝିରେ ପ୍ରଜାମେଳି ଓ ବିଦ୍ରୋହ ହେଉଥିଲା । ରାଜାମାନେ ସେ ବିଦ୍ରୋହ ବ୍ରିଟିଶ ସରକାରଙ୍କ ପୁଲିସ ଓ ସୈନ୍ୟମାନଙ୍କ ଦ୍ୱାରା ଦମନ କରୁଥିଲେ । କିନ୍ତୁ ରାଜତନ୍ତ୍ର ଶାସନ ଲୋପ କରି ପ୍ରଜାଶାସନ ପ୍ରବର୍ତ୍ତନ କରିବାକୁ ସଂଗଠିତ ଉଦ୍ୟମ ନ ଥିଲା କିମ୍ବା ସେଥିନିମିତ୍ତ ପ୍ରଜାମାନଙ୍କ ମଧ୍ୟରେ ଚେତନା, ସଂଗଠନ ଓ ସାହସ ନ ଥିଲା ।

୧୯୨୧ ମସିହାରେ ଗାନ୍ଧିଜୀଙ୍କ ନେତୃତ୍ୱରେ ଭାରତର ସବୁ ବ୍ରିଟିଶ ଶାସିତ ଅଞ୍ଚଳରେ ଦେଶର ସ୍ୱାଧୀନତାପାଇଁ ଅସହଯୋଗ ସଂଗ୍ରାମ ଆରମ୍ଭ ହେଲା । ତାର ପ୍ରଭାବ ଗଡ଼ଜାତ ରାଜ୍ୟମାନଙ୍କର ପ୍ରଜାମାନଙ୍କ ଉପରେ ପଡ଼ିଲା । ସେତେବେଳକୁ ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରଜାମଣ୍ଡଳ ସବୁ ସଂଗଠିତ ହୋଇ ନ ଥିଲା । ମାତ୍ର ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା କ୍ରମେ କ୍ରମେ ଗଡ଼ଜାତ ଅଞ୍ଚଳରେ ପ୍ରବେଶ କରୁଥିଲା । ୧୯୩୦ ମସିହା ପରେ ଓଡ଼ିଶାର ଅଧିକାଂଶ ଗଡ଼ଜାତ ରାଜ୍ୟରେ ପ୍ରଜାମଣ୍ଡଳମାନ ଗଠିତ ହେଲା ଏବଂ ସେଗୁଡ଼ିକ ରାଜାମାନଙ୍କର ମନମୁଖି ଶାସନ ଏବଂ ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କଲେ । ସାରଙ୍ଗଧର ଦାସ, ପବିତ୍ରମୋହନ ପ୍ରଧାନ, ବନମାଳୀ ଦାସ ପ୍ରଭୃତିଙ୍କ ନେତୃତ୍ୱରେ ଢେଙ୍କାନାଳ, ତାଳଚେର ଓ ନୀଳଗିରି ପ୍ରଭୃତି ବିଭିନ୍ନ ଗଡ଼ଜାତ ରାଜ୍ୟରେ ବଳିଷ୍ଠ ପ୍ରଜା ଆନ୍ଦୋଳନ ଆରମ୍ଭ ହେଲା । ୧୯୩୭ରୁ ୧୯୩୯ ମସିହା ମଧ୍ୟରେ ଓଡ଼ିଶାର କଂଗ୍ରେସ ମନ୍ତ୍ରିମଣ୍ଡଳ ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରଜା ଆନ୍ଦୋଳନକୁ ସାହାଯ୍ୟ କଲେ । ସେ ସମୟରେ ବ୍ରିଟିଶ ସରକାର ଓ ରାଜାମାନଙ୍କର ଦମନମୂଳକ କାର୍ଯ୍ୟ ହେତୁ ଅନେକ ପ୍ରଜାମଣ୍ଡଳ କର୍ମୀ ଏବଂ ଅତ୍ୟାଚାରିତ ପ୍ରଜା ଅନୁଗୁଳ ଓ କଟକ ପ୍ରଭୃତି ଅଞ୍ଚଳକୁ ପଳାଇ ଆସିଥିଲେ । ଯୁଦ୍ଧ ସମୟରେ ନୀଳଗିରି, ରଣପୁର, ଢେଙ୍କାନାଳ ଓ ତାଳଚେର ପ୍ରଭୃତି ରାଜ୍ୟରେ ହିଂସାତ୍ମକ ଆନ୍ଦୋଳନ ହୋଇଥିଲା । ୧୯୩୯ରେ ନାବିକ ବାଳକ ବାଜିରାଉତର ମୃତ୍ୟୁ ଏବଂ ୧୯୪୦ ମସିହାରେ ରଣପୁରଠାରେ ପଲିଟିକାଲ ଏଜେଣ୍ଟ ବେଜେଲ୍‌ଗେଟ୍‌ଙ୍କର ହତ୍ୟା ଏହି ସମୟର ଘଟଣା । ୧୯୪୨ ମସିହାରେ ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ଭାରତ ଛାଡ଼ ଆନ୍ଦୋଳନ ହିଂସାତ୍ମକ ରୂପ ଧାରଣ କରିଥିଲା ଏବଂ ବିଭିନ୍ନ ଗଡ଼ଜାତ ରାଜ୍ୟରେ ମଧ୍ୟ ରାଜାମାନଙ୍କ ବିରୋଧରେ ହିଂସାତ୍ମକ ଆନ୍ଦୋଳନ ହୋଇଥିଲା । ସେ ସବୁ ଆନ୍ଦୋଳନ ରାଜାମାନେ ବ୍ରିଟିଶ ସରକାରଙ୍କର ସୈନ୍ୟ ସାହାଯ୍ୟରେ ଦମନ କରିଥିଲେ । ସେଥିରେ କେତେକ ପ୍ରଜାମଣ୍ଡଳ କର୍ମୀ ମୃତ୍ୟୁବରଣ କରିଥିଲେ ଏବଂ ଅନ୍ୟ ବହୁତ କର୍ମୀ ଜେଲ୍ ଯାଇଥିଲେ । ୧୯୪୨ ମସିହା ପରେ ସାମୟିକ ଭାବେ ଆନ୍ଦୋଳନ ଦବି ଯାଇଥିଲା, ମାତ୍ର ଉଭୟ ବ୍ରିଟିଶ ଶାସିତ ଅଞ୍ଚଳ ଓ ଗଡ଼ଜାତ ରାଜ୍ୟମାନଙ୍କର ଲୋକମାନେ ଭାରତର ସ୍ୱାଧୀନତା ଆନ୍ଦୋଳନର ଶେଷ ପରିଣାମ ଓ ସ୍ୱାଧୀନ ଭାରତର ରୂପରେଖ ଦେଖିବାପାଇଁ ଅପେକ୍ଷା କରିଥିଲେ । ସେଥିଜନିତ ଭାରତର ନେତାମାନଙ୍କର ବ୍ରିଟିଶ ସରକାରଙ୍କ ସହିତ କଥାବାର୍ତ୍ତା ଚାଲିଥାଏ ।

ଘଟଣା କ୍ରମେ ମୁଁ ଏହି ସମୟରେ ୧୯୪୨ ମସିହା ନଭେମ୍ବର ମାସଠାରୁ ୧୯୪୩ ମସିହା ଜୁଲାଇ ମାସ ପର୍ଯ୍ୟନ୍ତ ପ୍ରାୟ ଆଠମାସ ଗୋଟିଏ ଗଡ଼ଜାତ ରାଜ୍ୟ, ତାଳଚେରରେ ରହିଥିଲି । ଏମ୍. ଏ. ପାସ୍ କରି ଚାକିରି ଅପେକ୍ଷାରେ ଥିଲାବେଳେ

ତାଳଚେର ରାଜ୍ୟର ଯୁବରାଜ ତାଙ୍କ ବଡ଼ପୁଅ ଟିକାୟତ୍ ସାହେବଙ୍କୁ ପଢ଼ାଇବା-ପାଇଁ ମୋତେ ତାଳଚେର ନେଇଥିଲେ । ସେଠାରେ ମୁଁ ପ୍ରଥମେ କେତେମାସ ରାଜାଙ୍କ ନିର୍ମିତ ବ୍ରାହ୍ମଣୀ ନଦୀକୂଳ ଗୋଲ୍ ଘରେ ନିଜ ଖାଦ୍ୟପେୟର ବ୍ୟବସ୍ଥା କରି ରହିଥିଲି । ଆଉ କେତେମାସ ରାଜବାଟିରେ ଥିବା ଅତିଥିଭବନରେ ରହୁଥିଲି ଏବଂ ରାଜାଙ୍କ ରୋଷାଇଶାଳରୁ ପୂଝାରୀମାନେ ମୋତେ ଖାଇବାକୁ ଆଣି ଦେଉଥିଲେ । ଟିକାୟତ ସାହେବ ସେତେବେଳେ କଟକ ରେଭେନ୍ସା କଲେଜର ପ୍ରଥମବାର୍ଷିକ ଶ୍ରେଣୀରେ ପଢ଼ୁଥିଲେ । କଟକର ତାଳଚେର କୋଠିରେ ତାଙ୍କ ଦେହ ଭଲ ନ ରହିବାରୁ ସେ ତାଳଚେରରେ ରହିଲେ । ସେଠାରେ ମୁଁ ଏବଂ ଆଉଜଣେ ସେହି ତାଳଚେରର ସଂସ୍କୃତ ପଣ୍ଡିତ ତାଙ୍କୁ ପାଠ ପଢ଼ାଉଥିଲୁ । ଟିକାୟତଙ୍କର ପଢ଼ାରେ ମନ ଲାଗେ ନାହିଁ ଏବଂ ସେ ବେଶି ସମୟ ଆମ ପାଖରେ ବସି ପଢ଼ିବାକୁ ରାଜି ହୁଅନ୍ତି ନାହିଁ । ସେଥିପାଇଁ ଆମ ଦୁଇଜଣଙ୍କର କାମ ଲଘୁ ଥିଲା ଏବଂ ମୋତେ ତାଳଚେର ସହରର ବିଭିନ୍ନ ସ୍ଥାନ ଦେଖିବା ଏବଂ ରାଜାଙ୍କ ଲାଇବ୍ରେରୀରୁ ବହି ଆଣି ପଢ଼ିବାକୁ ଯଥେଷ୍ଟ ସମୟ ମିଳୁଥିଲା ।

ସେତେବେଳକୁ ରାଜ୍ୟ ପ୍ରଶାସନର ନୀତି ପୂର୍ବପରି ଥିଲା, ମାତ୍ର ୧୯୩୮ ମସିହାର ହିଂସାତ୍ମକ ପ୍ରଜାଆନ୍ଦୋଳନ ଏବଂ ତାର କଠୋର ଦମନ ରାଜ-ପରିବାରକୁ ସତର୍କ କରି ଦେଇଥିଲା । ମୁଁ ସେଠାରେ ଥିଲାବେଳେ କେତେକ ବନ୍ଧୁଙ୍କଠାରୁ ପୂର୍ବବର୍ଷର ଆନ୍ଦୋଳନ ଏବଂ ପୁଲିସ ଗୁଳିରେ କେତେକ ପ୍ରଜାମଣ୍ଡଳ କର୍ମୀଙ୍କ ମୃତ୍ୟୁବରଣ ଏବଂ ସେମାନଙ୍କର ଶବ ମୁଁ ରହୁଥିବା ଗୋଲ ଘରର ଅନତିଦୂରରେ ବ୍ରାହ୍ମଣୀ ନଦୀକୂଳରେ ଗୋଟିଏ ପରିସ ଗଛମୂଳେ ପୁଲିସଙ୍କ ଦ୍ୱାରା ଦାହ କାହାଣୀ ଶୁଣିଥିଲି । ସେତେବେଳକୁ କେତେକ ପ୍ରଜାମଣ୍ଡଳର ନେତା ଜେଲ୍‌ରେ ଥିଲେ କିନ୍ତୁ ତାଳଚେର ସହର କିମ୍ବା ଗାଁମାନଙ୍କରେ ଗଣ୍ଡଗୋଳର ଚିହ୍ନବର୍ଣ୍ଣ ବା ସମ୍ବାଦ ନ ଥିଲା । ସବୁଆଡ଼େ ପୂର୍ବପରି ଲୋକମାନେ ଶାନ୍ତିରେ ରହିଥିଲେ । ତାଳଚେର ସହର ଓ ରାଜବାଟୀରେ ଆଠମାସ ରହିବା ସମୟରେ ମଧ୍ୟ ରାଜାଙ୍କର କୌଣସି ମନମୁଖି କାର୍ଯ୍ୟ ଓ ଅତ୍ୟାଚାରର ନମୁନା ମୋ ଗୋଚରକୁ ଆସି ନ ଥିଲା । ମୁଁ କେବଳ ରାଜପରିବାର ଲୋକଙ୍କ ଜୀବନ ଯାପନ ପଦ୍ଧତି, ରାଜାଙ୍କ ପାର୍ଶ୍ୱଲୋକମାନଙ୍କ ବ୍ୟବହାର, ତାଳଚେର ସହରରେ ବିଶେଷତଃ ବ୍ରାହ୍ମଣ ଶାସନରେ ରହୁଥିବା ଲୋକମାନଙ୍କର ଆର୍ଥିକ ଅବସ୍ଥା ଓ ଚାଲିଚଳନ, ତାଳଚେର ସହରର ସ୍କୁଲ ଓ ଡାକ୍ତରଖାନା ଆଦିର କାର୍ଯ୍ୟ ଦେଖିଥିଲି ।

ମୁଁ ଯାଇଥିଲାବେଳେ ତାଳଚେର ରାଜ୍ୟ ଅନ୍ଧାରି ମୂଳକ ନ ଥିଲା । ସେଠାରେ କୋଇଲା ଖଣିମାନ କାର୍ଯ୍ୟ କରୁଥିଲା ଏବଂ ପୁଣି, କଟକରୁ ପ୍ରତିଦିନ ସେଠାକୁ ଥରେ ପାସେଞ୍ଜର ରେଳଗାଡ଼ି ଚାଲୁଥିଲା । ତାଳଚେର ରେଳଷ୍ଟେସନକୁ ଏବଂ ଅନ୍ୟସ୍ଥାନରେ କଟକ ସମ୍ବଲପୁର ରାସ୍ତାରୁ ତାଳଚେର ସହରକୁ ରାସ୍ତା ଥିଲା ଯଦିଓ ଷ୍ଟେସନରୁ ସହରକୁ ଯାଇଥିବା ରାସ୍ତା ପିଚୁ ହୋଇ ନ ଥିଲା । ସହରରୁ ମଫସଲ ଅଞ୍ଚଳକୁ ମଧ୍ୟ କେତେକ ନାଲିଗୋଡ଼ିର ରାଜରାସ୍ତା ଥିଲା ଏବଂ ରାଜ୍ୟଟି ହିଂସ୍ରଜନ୍ତୁପୂର୍ଣ୍ଣ ଅରଣ୍ୟମୟ ନ ଥିଲା । ସହରରେ କୌଣସି ବଡ଼ ବଜାର କିମ୍ବା ବଡ଼ ବଡ଼ ଦୋକାନ ନ ଥିଲା । ବିଭିନ୍ନ ସ୍ଥାନରେ କେତେକ ବଡ଼ ବ୍ୟବସାୟୀଙ୍କ ଦୋକାନ ଥିଲା ଏବଂ ସାପ୍ତାହିକ ହାଟ ଗୋଟିଏ ବଡ଼ ହାଟ ଥିଲା । ହାଟ ବଜାର ଓ ରାସ୍ତାଘାଟରେ ଆଦିବାସୀ ଓ ଅଣ ଆଦିବାସୀ ଲୋକମାନଙ୍କୁ ଦେଖିବାକୁ ମିଳୁଥିଲା । ସେ ରାଜ୍ୟର ଅଧିକାଂଶ ଲୋକ ଅଣ ଆଦିବାସୀ । କିନ୍ତୁ ସାଧାରଣ ଲୋକ କଟକ, ପୁରୀ ଜିଲ୍ଲାର ଗାଁ ଲୋକଙ୍କ ଠାରୁ ଅଧିକ ଗରିବ ଓ ଅନୁନ୍ନତ ବୋଲି ମନେ ହେଉଥିଲା ।

ରାଜବାଟୀରୁ ବାହାରିଥିବା ସହରର ପ୍ରଧାନ ରାସ୍ତାରେ ମୋର ଅନ୍ତରଙ୍ଗ ବନ୍ଧୁ ପ୍ରଫେସର ବ୍ରଜବନ୍ଧୁ ମିଶ୍ରଙ୍କ ପୈତୃକ ଘର । ସେ ରାସ୍ତା ଏବଂ ତା'ର ପଛପଟ ରାସ୍ତାମାନଙ୍କରେ ବ୍ରାହ୍ମଣମାନେ ବାସ କରୁଥିଲେ । ସେମାନଙ୍କ ମଧ୍ୟରୁ ଅନେକ ଆଧୁନିକ ସ୍କୁଲ, କଲେଜରେ ପଢ଼ି ଉଚ୍ଚଶିକ୍ଷିତ ଥିଲେ ଏବଂ ଅନେକ ସଂସ୍କୃତ ପଣ୍ଡିତ ମଧ୍ୟ ଥିଲେ । ସେମାନଙ୍କ ମଧ୍ୟରୁ ବହୁଲୋକ ରାଜଦରବାର ଏବଂ କଚେରି ପ୍ରଭୃତିରେ ଚାକିରି କରୁଥିଲେ ଏବଂ ରାଜଦରବାରରେ ପଣ୍ଡିତରୂପେ ପୂଜା ଅର୍ଚ୍ଚନାଦି କରୁଥିଲେ । ସେମାନେ ସମସ୍ତେ ପରିମାର୍ଜିତ ଜୀବନଯାପନ କରୁଥିଲେ, ମାତ୍ର ଚାକିରିବାକିରି କରୁ ନ ଥିବା ଲୋକମାନଙ୍କର ପରିବାର ସବୁ ଅତ୍ୟନ୍ତ ଦରିଦ୍ର ଥିଲେ । ମୁଁ ସେ ବ୍ରାହ୍ମଣ ଶାସନର ବହୁ ଲୋକଙ୍କ ଘରକୁ ଯାଇଛି ଏବଂ ସେମାନଙ୍କ ସହିତ ଆଳାପ କରିଛି । ମୋର ମନେ ହେଉଥିଲା, ସେମାନେ ପ୍ରତିଦିନ ରାଜା, ଯୁବରାଜ, ପଟ୍ଟାୟତ ଓ ଟିକାୟତ ପ୍ରଭୃତି ରାଜ ପରିବାରର ଲୋକମାନଙ୍କର ଗତିବିଧି ଓ କାର୍ଯ୍ୟକ୍ରମ ବିଷୟରେ ଖବର ରଖୁଥିଲେ ଏବଂ ସେମାନଙ୍କ ନିଜ ନିଜ ମଧ୍ୟରେ ଗପସପ ବି ରାଜବାଟୀର ଦୈନିକ ଘଟଣା ଉପରେ ଆଧାରିତ ଥିଲା । ଚରାଚରିତ ରୀତିରେ ରାଜବାଟୀ ହିଁ ରାଜ୍ୟର ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ଜୀବନର କେନ୍ଦ୍ର ଥିଲା ।

ରାଜପରିବାରର ବିଭିନ୍ନ ବ୍ୟକ୍ତି ବିରାଟ ରାଜପ୍ରାସାଦର ବିଭିନ୍ନ କୋଠରି-ମାନଙ୍କରେ ଭୃତ୍ୟ ଓ ପାଖଲୋକ ପରିବେଷ୍ଟିତ ହୋଇ ଚଳୁଥିଲେ । ମୋର

ଧାରଣା ହୋଇଥିଲା ଯେ ରାଜା ଯୁବରାଜଙ୍କ ଚାଲିଚଳନ ଓ କାର୍ଯ୍ୟକୁ ପସନ୍ଦ କରୁ ନ ଥିଲେ । ରାଜପ୍ରାସାଦରେ ମନୋମାଳିନ୍ୟ ହେତୁ ଯୁବରାଣୀ ବହୁକାଳ ତାଙ୍କ ବାପଘରେ ରହୁଥିଲେ । ରାଜା ପଞ୍ଚାୟତଙ୍କୁ ଅଧିକ ଭଲ ପାଉଥିଲେ । ସେ ସ୍କଟ୍‌ଲଣ୍ଡ-ପୁରଠାରେ ଗୋଟିଏ ସୁନ୍ଦର ରାଜପ୍ରାସାଦ ନିର୍ମାଣ କରି ସେଠାରେ ତାଙ୍କ ପରିବାର ସହ ବାସ କରୁଥିଲେ । ଯୁବରାଜ ରାଜ୍ୟର ସେସନ୍‌ସ ଜଲ୍ ହିସାବରେ ଦରମା ଓ ଭତ୍ତା ପାଉଥିଲେ ଏବଂ ତାଙ୍କର ଅନ୍ୟ ସମ୍ପତ୍ତି ସୂତ୍ରରୁ ଆୟ ଥିଲା । ମାତ୍ର ତାଙ୍କର ଗୁଡ଼ିଏ ପିଲା ଥିବାରୁ ତାଙ୍କର ଆୟ ତାଙ୍କ ପରିବାରର ଖର୍ଚ୍ଚ ପାଇଁ ଯଥେଷ୍ଟ ହେଉ ନ ଥିଲା ବୋଲି ଜଣା ପଡୁଥିଲା । ରାଜବାଟୀର ରୋଷେଇବାସ ଏବଂ ସମସ୍ତଙ୍କର ଖାଇବା ପିଇବା ବ୍ୟବସ୍ଥା ରାଣୀ ବୁଝୁଥିଲେ । ରାଜପରିବାରର ସ୍ତ୍ରୀ ଲୋକମାନେ ଭିତର ମହଲରେ ରହୁଥିବା ହେତୁ ରାଣୀ କିମ୍ବା ଯୁବରାଣୀ ପ୍ରଭୃତିଙ୍କୁ ମୁଁ କେବେ ଦେଖି ନାହିଁ । ଯୁବରାଜ ଅତ୍ୟନ୍ତ ଶିକାରପ୍ରିୟ ଥିଲେ । ଦକ୍ଷତାର ସହ ବହୁ ବାଘ ଶିକାର କରିଥିବାର ନିଦର୍ଶନ ସବୁ ତାଙ୍କ ବୈଠକ-ଖାନାରେ ରଖିଥିଲେ । ମୁଁ ମଧ୍ୟ ଥରେ ଦୁଇଥର ତାଙ୍କ ସାଥୀମାନଙ୍କ ଗହଣରେ ରାତିରେ ଶିକାର ଦେଖିବାକୁ ଯାଇଥିଲି । ଯୁବରାଜଙ୍କ ବୟସ ସେତେବେଳକୁ ପଚିଶ ବର୍ଷରୁ ଅଧିକ ହୋଇଥିଲା ଏବଂ ରାଜାଙ୍କ ବୟସ ସତୁରି ବର୍ଷ ଉପରେ ହୋଇଥିଲା । ଯୁବରାଜ ପ୍ରତିଦିନ ପାଖଲୋକଙ୍କ ସହିତ ଗପସପ କରି ପ୍ରାୟ ରାତି ତିନିଟା ବେଳକୁ ଶୟନ କରନ୍ତି ଏବଂ ପରଦିନ ଏଗାରଟାରୁ ବାରଟା ମଧ୍ୟରେ ଶଯ୍ୟାତ୍ୟାଗ କରନ୍ତି । ରାଜକୁମାରମାନଙ୍କର ପାଠରେ ମନ ନ ଥାଏ ଯଦିଓ ପ୍ରତ୍ୟେକଙ୍କ ପାଇଁ ବିଭିନ୍ନ ଶିକ୍ଷକ ନିଯୁକ୍ତ ଥାଆନ୍ତି । ସେମାନେ ଆମୋଦ ପ୍ରମୋଦ ପୂର୍ଣ୍ଣ ଜୀବନ ଜୀବନଯାପନ କରୁଥିଲେ ମାତ୍ର ରାଜପ୍ରାସାଦରେ କୌଣସି ବ୍ୟକ୍ତି ମଦ କିମ୍ବା ଅନ୍ୟ କୌଣସି ପ୍ରକାର ମାଦକ ଦ୍ରବ୍ୟ ସେବନ କରୁଥିବା କଥା ମୁଁ କେବେ ଶୁଣି ନାହିଁ ।

ରାଜା ବେଶି ପାଠ ପଢ଼ି ନ ଥିଲେ । ମାଟ୍ରିକୁଲେସନ୍ ପାସ୍ କରିଥିଲେ କି ନାହିଁ ତାହା ମୁଁ ଜାଣି ନାହିଁ । କିନ୍ତୁ ତାଙ୍କର ଗୋଟିଏ ସୁନ୍ଦର ଲାଇବ୍ରେରି ଥିଲା । ସେଥିରେ ଅନ୍ୟ ବହି ସହିତ ସେକ୍‌ସପିୟରଙ୍କ ସବୁ ନାଟକ ଏବଂ ଡିକେନ୍‌ସଙ୍କର ସବୁ ଉପନ୍ୟାସ ଥିବାର ମୁଁ ଦେଖିଲି । ଡିକେନ୍‌ସଙ୍କର ସବୁ ଉପନ୍ୟାସ ଆଣି ମୁଁ ପଢ଼ିଲି । ସେଥିପାଇଁ ମୋର ଖୁବ୍ ସମୟ ଥିଲା । ମୋ ପୂର୍ବରୁ ସେ ବହିସବୁ କିଏ ଖୋଲିଥିଲେକି ନାହିଁ, ସେ ବିଷୟରେ ମୋର ସନ୍ଦେହ । ରାଜପ୍ରାସାଦକୁ ଲାଗି ପ୍ରାଚୀର ପରିବେଷ୍ଟିତ ବହୁ ଏକରର ରାଣୀ ପାର୍କ ନାମରେ ହରିଣ, ସମ୍ବର, ଗଣ୍ଡିଲ ପରିପୂର୍ଣ୍ଣ ଗୋଟିଏ ପାର୍କ ଥିଲା । ରାଜା ନିଜେ ସେ ପାର୍କ ଏବଂ ବନ୍ୟ

ଜନ୍ତୁମାନଙ୍କ ସଂରକ୍ଷଣ ବିଷୟରେ ତତ୍ତ୍ୱ ନେଉଥିଲେ । ସେ ବିଷୟରେ ତାଙ୍କର ଖୁବ୍ ଆଗ୍ରହ ଥିଲା । ରାଜାଙ୍କ ଆଦେଶରେ କେତେକ ଲୋକ ମୋତେ ହାତୀରେ ନେଇ ପୁରା ପାର୍କ ଏବଂ ସେଥିରେ ଥିବା ପଲ ପଲ ହରିଣ, ଗୟଳମାନଙ୍କୁ ଦେଖାଇ-ଥିଲେ । ଥରେ ରାଜା ଦିନେ ତାଙ୍କର ଗୋଟିଏ ଶ୍ରେଷ୍ଠ ମଟର ଗାଡ଼ିରେ ମୋତେ ସଙ୍ଗରେ ନେଇ ପୁରା ପାର୍କଟି ଦେଖାଇଥିଲେ । ପାର୍କରେ ବିଭିନ୍ନ ସ୍ଥାନକୁ ମଟର-ଗାଡ଼ିରେ ଯିବାକୁ ରାସ୍ତା ଥିଲା । ରାଜା ତାଙ୍କର ବଡ଼ ନାତି ଟିକାୟତଙ୍କୁ ଭଲ ପାଉଥିଲେ ଏବଂ ତାଙ୍କର ଶିକ୍ଷକ ହୋଇ ବାହାରୁ ଯାଇଥିବାରୁ ଅନେକ ଥର ମୋ ସାଙ୍ଗରେ ଆଳାପ କରିଥିଲେ । ସେଥିରେ ମୋର ଗୋଟିଏ ଅସୁବିଧା ହେଉଥାଏ କାରଣ ତୁମ୍ଭ ଶବ୍ଦଟା ମୋର ପାଟିରେ ପଶେ ନାହିଁ । ମୁଁ ଆପଣ ଆରମ୍ଭ କରି ସଂଶୋଧନ କରି ତୁମ୍ଭ କହେ । ରାଜପରିବାରର ଲୋକମାନେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ଭୃତ୍ୟ ପରିବେଷ୍ଟିତ ହୋଇ ଜୀବନଯାପନ କରୁଥିଲେ । ମାତ୍ର ପରିବାରର କୌଣସି ବିଭିନ୍ନତା ବା ବିଶୃଙ୍ଖଳା ମୋ ଦୃଷ୍ଟିକୁ ଆସି ନ ଥିଲା ।

ମୋର ମନେହୁଏ ଓଡ଼ିଶାର ଗଡ଼ଜାତ ରାଜ୍ୟର ରାଜାମାନଙ୍କର ପାରମ୍ପରିକ ଜୀବନଯାପନ ପ୍ରଣାଳୀର ଧାରା ଏହି ପ୍ରକାର ଥିଲା । ଧନର ପ୍ରାଚୁର୍ଯ୍ୟ, ପ୍ରଜାମାନଙ୍କ ଉପରେ ଅଖଣ୍ଡ କ୍ଷମତା, ବଡ଼ ବଡ଼ ରାଜପ୍ରାସାଦ, ବହୁ ଭୃତ୍ୟ ଓ ପାଖଲୋକ, ବହୁ ହାତୀ, ଘୋଡ଼ା ଓ ଯାନବାହନ, ରାଜପରିବାରର ଛୋଟବଡ଼ର, ରାଜପରିବାର ଲୋକଙ୍କ ମଧ୍ୟରେ ମନୋମାଳିନ୍ୟ ଓ ମତଭେଦ ପରିସ୍ଥିତିରେ ଗୋଟିଏ ପରସ୍ପର ସ୍ନେହ ଆବଦ୍ଧ ଶ୍ରେଷ୍ଠ ବା ମଧ୍ୟମ ଆକାର ପରିବାର ସମ୍ଭବ ନ ଥିଲା । ରାଜପରିବାରର ଜୀବନଯାପନ ପ୍ରଣାଳୀ ଓ ସାଧାରଣ ଲୋକଙ୍କ ଜୀବନଯାପନ ପ୍ରଣାଳୀ ମଧ୍ୟରେ ଆକାଶ ପାତାଳ ପ୍ରଭେଦ ଥିଲା । ପୂର୍ବକାଳର ଇଂଲଣ୍ଡ ଓ ଫ୍ରାନ୍ସ ପ୍ରଭୃତି ୟୁରୋପର ସମସ୍ତ ଦେଶମାନଙ୍କଠାରୁ ଆରମ୍ଭ କରି ପ୍ରାଚ୍ୟଦେଶ ଚୀନ୍, ଜାପାନ, ଭାରତର ସମସ୍ତ ପ୍ରକାର ହିନ୍ଦୁ ଓ ମୁସଲମାନ ରାଜା ଏବଂ ପୃଥିବୀର ସବୁଦେଶରେ ଶାସନ କରୁଥିବା ରାଜାମାନଙ୍କର ଜୀବନ-ଯାପନ ପ୍ରଣାଳୀର ଧାରା ପ୍ରଜାମାନଙ୍କର ଜୀବନଯାପନ ପ୍ରଣାଳୀଠାରୁ ସମ୍ପୂର୍ଣ୍ଣ ଭିନ୍ନ ଥିଲା । ଓଡ଼ିଶାର ଶ୍ରେଷ୍ଠ ବଡ଼ କରଦ ରାଜ୍ୟର ରାଜପରିବାରର ଜୀବନଯାପନ ଧାରା ମଧ୍ୟ ସେହି ରାଜକୀୟ ଗ୍ରନ୍ଥରେ ପଡ଼ିଥିଲା । ଆଜିକାଲି ମଧ୍ୟ ଇଂଲଣ୍ଡ, ଯାପାନ ପ୍ରଭୃତି ଦେଶରେ, ଯେଉଁଠାରେ ସମ୍ରାଟ ଓ ମହାରାଜାମାନେ ଅଛନ୍ତି, ସେମାନେ ମଧ୍ୟ ସେହି ପାରମ୍ପରିକ ଧାରରେ ଚଳୁଛନ୍ତି । ରାଜାମାନେ ବଡ଼ ହୁଅନ୍ତୁ କିମ୍ବା ଅତି ଶ୍ରେଷ୍ଠ ହୁଅନ୍ତୁ, ସେମାନେ ଗୋଟିଏ ଶ୍ରେଣୀର ଲୋକ, ପ୍ରଜାମାନେ ଭିନ୍ନ

ଶ୍ରେଣୀର ଲୋକ ଥିଲେ । ସେ ପ୍ରଭେଦ ଲୋପ କରି ସବୁ ଲୋକଙ୍କୁ ଏକ ପରି ସ୍ୱବଦା ଗଣତାନ୍ତ୍ରିକ ଚିନ୍ତାଧାରା ।

ବିଂଶ ଶତାବ୍ଦୀର ମଧ୍ୟ ଭାଗରେ ମୁଁ ଯେଉଁ ଗଡ଼ଜାତ ରାଜ୍ୟଶାସନ ଦେଖିଥିଲି, ତାହା ଫକୀରମୋହନ ପ୍ରଭୃତି ଲେଖକମାନେ ଊନବିଂଶ ଶତାବ୍ଦୀ ଓ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଅନୁଭବ କରିଥିବା ରାଜ୍ୟଶାସନଠାରୁ ଭିନ୍ନ ଥିଲା । ଗଡ଼ଜାତ ରାଜ୍ୟ ଶାସନ ଶେଷ ପର୍ଯ୍ୟାୟରେ ଗୋଟିଏ ଷ୍ଟେଟ ଗମନାଗମନ ସୁବିଧା ଥିବା, ବହୁ ଶିକ୍ଷିତ ଲୋକ ଥିବା ଏବଂ ପ୍ରଶାସନ ବିଭିନ୍ନ ଅନୁଷ୍ଠାନ ବ୍ରିଟିଶ ଶାସିତ ଅଞ୍ଚଳର ଶାସନ ଢାଞ୍ଚାରେ ଗଢ଼ା ହୋଇଥିବା ରାଜ୍ୟ ଊନବିଂଶ ଶତାବ୍ଦୀର ନୀଳଗିରି, କେନ୍ଦୁଝର, ଦଶପଲ୍ଲା, ଢେଙ୍କାନାଳ ଓ ପାଲଲହଡ଼ା ପ୍ରଭୃତି ରାଜ୍ୟମାନଙ୍କର ଶାସନ ସଙ୍ଗେ ସମାନ ନ ଥିଲା । ସମୟ ବଦଳି ଯାଇଥିଲା ଏବଂ ମୋ ଦେଖିଲା ସମୟକୁ ରାଜାମାନଙ୍କ ଶାସନ ଲୋପ ପାଇ ଆସୁଥିଲା ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନ ହେଲା ଏବଂ କରଦରାଜ୍ୟମାନଙ୍କ ଉପରେ ଥିବା ବ୍ରିଟିଶ ସରକାରଙ୍କ ସାର୍ବଭୌମ କ୍ଷମତା ସ୍ୱାଧୀନ ଭାରତ ସରକାରଙ୍କ ହାତରେ ପଡ଼ିଲା । ତାହା ପରେ ଗଡ଼ଜାତ ରାଜାମାନଙ୍କର ମନମୁଖି ଶାସନ ଓ କ୍ଷମତା ଅଳ୍ପଦିନ ପରେ ଲୋପ ପାଇଯିବ ବୋଲି ସମସ୍ତେ ଆଶା କରିଥିଲେ । ଷ୍ଟରମାସ ପରେ ଭାରତର ଜନନାୟକ ସ୍ୱାଧୀନ ଭାରତ ସରକାରଙ୍କ ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କ ଦୂରଦର୍ଶୀ ଦକ୍ଷ କାର୍ଯ୍ୟାନୁଷ୍ଠାନରେ ସେ ଆଶା ସଫଳ ହେଲା । ୧୯୪୮ ମସିହା ଜାନୁଆରି ପହିଲାଠାରୁ ମୟୂରଭଞ୍ଜ ବ୍ୟତୀତ ଓଡ଼ିଶାର ସମସ୍ତ କରଦରାଜ୍ୟ ଓଡ଼ିଶା ରାଜ୍ୟ ସଙ୍ଗେ ମିଶିଗଲା । ବର୍ଷକ ପରେ ୧୯୪୯ ମସିହାରେ ମୟୂରଭଞ୍ଜ ଓଡ଼ିଶାରେ ମିଶିଲା । ମୋଗଲବନ୍ଦୀ ଓ ଗଡ଼ଜାତ ଅଞ୍ଚଳ ଶାସନ ମଧ୍ୟରେ କୌଣସି ପ୍ରଭେଦ ରହିଲା ନାହିଁ । ସମଗ୍ର ଓଡ଼ିଶାରାଜ୍ୟ ଏକ ପ୍ରକାର ଶାସିତ ରାଜ୍ୟ ରୂପେ ଭାରତର ରାଷ୍ଟ୍ରସଂଘରେ ଅନ୍ୟ ରାଜ୍ୟମାନଙ୍କ ପରି ଏକରାଜ୍ୟ ହୋଇ ଭାରତର ସମ୍ବିଧାନ ଅନୁସାରେ ଲୋକ ପ୍ରତିନିଧିମାନଙ୍କ ଦ୍ୱାରା ଶାସିତ ହେଲା । ମାତ୍ର ପୂର୍ବ ଦେଢ଼ଶହ ବର୍ଷର ଭିନ୍ନ ଭିନ୍ନ ମନମୁଖି ଶାସନ ହେତୁ ଓଡ଼ିଶାର ବ୍ରିଟିଶ ଶାସିତ ଅଞ୍ଚଳ ଓ ପୂର୍ବତନ ଗଡ଼ଜାତ ଅଞ୍ଚଳ ମଧ୍ୟରେ ଅର୍ଥନୈତିକ ଉନ୍ନୟନ, ଯୋଗାଯୋଗ, କୃଷି, ଶିକ୍ଷା ଓ ସ୍ୱାସ୍ଥ୍ୟ ସେବା ଆଦି ବିଭିନ୍ନ ବିଷୟରେ ବହୁ ପାର୍ଥକ୍ୟ ରହି ଯାଇଛି । ବିଗତ ପଚିଶ ବର୍ଷ ମଧ୍ୟରେ ତାହା ଦୂର ହୋଇପାରି ନାହିଁ । ଓଡ଼ିଶାର ପୂର୍ବତନ ଗଡ଼ଜାତ ଅଞ୍ଚଳମାନଙ୍କରେ ଉପକୂଳ ଅଞ୍ଚଳମାନଙ୍କ ପରି ଉର୍ବର ଜମି ନ ଥିଲା । କିନ୍ତୁ ଭୂମି ତଳେ ଖଣିଜ ସମ୍ପଦ ଏବଂ ଭୂମି ଉପରେ

ବନ୍ୟ ସମ୍ପଦ ସେଗୁଡ଼ିକରେ ପ୍ରଚୁର ଭାବରେ ଥିଲା । ସେଗୁଡ଼ିକର ସଦୁପଯୋଗ ହୋଇଥିଲେ, ସେ ସବୁ ଅଞ୍ଚଳ ଶିଳ୍ପସମୃଦ୍ଧ ଅଞ୍ଚଳ ହୋଇଥାନ୍ତା ଏବଂ ସେ ଅଞ୍ଚଳର ସାଧାରଣ ଲୋକଙ୍କ ଅବସ୍ଥା ସ୍ୱଚ୍ଛଳ ହୋଇଥାନ୍ତା । ବିଗତ ଚାଳିଶ ବର୍ଷରେ ଉଭୟ ମୋଗଲବନ୍ଦୀ ଓ ଗଡ଼ଜାତ ଅଞ୍ଚଳର ଲୋକଙ୍କ ଦ୍ୱାରା ବନ ସମ୍ପଦର ବହୁ ଅବକ୍ଷୟ ଘଟିଛି, ମାତ୍ର ଭୂମିତଳ ଖଣିଜ ପଦାର୍ଥର ସଦୁପଯୋଗ ହୋଇପାରି ନାହିଁ । ସମଗ୍ର ରାଜ୍ୟର ଭବିଷ୍ୟତ ସମୃଦ୍ଧି ଏହି ଦୁଇପ୍ରକାର ସମ୍ବଳର ସଦୁପଯୋଗ ଉପରେ ନିର୍ଭର କରେ ।

# ଜମିଦାର ଓ ରୟତ

## ( ୭ )

ଇଂରେଜମାନେ ୧୮୦୩ ମସିହାରେ ଓଡ଼ିଶା ଅଧିକାର କଲେ ଏବଂ ତାହା ବଙ୍ଗ ପ୍ରେସିଡେନ୍ସିର ଗୋଟିଏ ଅଂଶ ହେଲା । ତାହାର ମାତ୍ର ଦଶବର୍ଷ ପୂର୍ବରୁ ବଙ୍ଗ ପ୍ରେସିଡ଼େନ୍ସିରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରବର୍ତ୍ତିତ ହୋଇଥିଲା । ଚିରସ୍ଥାୟୀ ବନ୍ଦୋବସ୍ତର ଗୋଟିଏ ପ୍ରଧାନ ନୀତି ଥିଲା ଯେ, ଇଂରେଜ ସରକାର ପ୍ରତ୍ୟେକ ଜମି ମହାଲରେ ଜଣେ ବ୍ୟକ୍ତିଙ୍କୁ ମାଲିକ ବା ସ୍ୱତ୍ୱାଧିକାରୀ ବୋଲି ସ୍ୱୀକାର କରୁଥିଲେ । ସେ ମାଲିକାନା ବା ସ୍ୱତ୍ୱାଧିକାର ବିକ୍ରି ବା ବନ୍ଧକ ଦେବାକୁ ତାଙ୍କର ଅଧିକାର ଥିଲା । ସେ ଅଧିକାର ଭୋଗ କରିବାପାଇଁ ମାଲିକ ବା ଜମିଦାର ତାଙ୍କ ଜମିଦାରୀରେ ଥିବା ପ୍ରଜାମାନଙ୍କଠାରୁ ଖଜଣା ଆଦାୟ କରିବେ ଏବଂ ଆଦାୟ ଖଜଣାର ଏଗାର ଭାଗରୁ ଦଶଭାଗ ସରକାରଙ୍କ ପାଖରେ ଦାଖଲ କରିବେ ଏବଂ ତାଙ୍କର ପାଉଣା ବାବଦକୁ ଏକ ଭାଗ ରଖିବେ । ସରକାରଙ୍କର ଦଶଭାଗ ଖଜଣା ଚିରସ୍ଥାୟୀ ଭାବରେ ନିର୍ଦ୍ଧାରିତ ହେବ । ଦରଦାମ କମିଲେ ବା ବଢ଼ିଲେ ଏବଂ କୃଷି ଜମି ପରିମାଣ ବୃଦ୍ଧି ପାଇଲେ ନିର୍ଦ୍ଧାରିତ ଖଜଣାର ବୃଦ୍ଧି ବା ହ୍ରାସ କରାଯିବ ନାହିଁ । ଜମିଦାର ଖଜଣାକୁ କିସ୍ତି ଅନୁସାରେ, ନିର୍ଦ୍ଧାରିତ ତାରିଖରେ, ସରକାରଙ୍କ ଟ୍ରେଜେରୀରେ ଦାଖଲ କରିବେ । ନିର୍ଦ୍ଧାରିତ ତାରିଖର ସୂର୍ଯ୍ୟାସ୍ତ ପୂର୍ବରୁ ଖଜଣାର କିସ୍ତି ଦାଖଲ ନ କଲେ କିସ୍ତି ଖିଲାପ ହେତୁ ଜମିଦାରୀ ନିଲାମ ହୋଇଯିବ । କୃଷିଜମି ବୃଦ୍ଧି ହେତୁ ଜମିଦାରଙ୍କର ଲାଭ ହେଲେ କିମ୍ବା ବନ୍ୟା ଦାତ୍ୟା ଦୁର୍ଭିକ୍ଷ ହେତୁ ଖଜଣା ଆଦାୟ ନ କରିପାରି କ୍ଷତି ହେଲେ ସୁଦ୍ଧା ସେ ସରକାରଙ୍କ ପାଖରେ ନିର୍ଦ୍ଧାରିତ ଖଜଣା ନିର୍ଦ୍ଦିଷ୍ଟ ତାରିଖରେ ଦାଖଲ କରିବାକୁ ବାଧ୍ୟ ହେବେ । ଚୀରସ୍ଥାୟୀ ବନ୍ଦୋବସ୍ତ ରାଜିନାମାରେ ଗୋଟିଏ ସର୍ତ୍ତ ଥିଲା ଯେ ଜମିଦାର ପ୍ରଜାମାନଙ୍କର ପାରମ୍ପରିକ ଅଧିକାରକୁ ରକ୍ଷା କରିବେ । କିନ୍ତୁ ପାରମ୍ପରିକ ଅଧିକାର କଣ ତାହା ଠିକ୍ ଭାବରେ ଲେଖା ହୋଇ ନ ଥିଲା । ମାତ୍ର ତାହା ସ୍ଥିର କରିବାକୁ ସରକାରଙ୍କର ଅଧିକାର ରହିଥିଲା । ପରବର୍ତ୍ତୀ ଇତିହାସରୁ ଜଣାଗଲା ଯେ, ଜମିଦାରମାନେ

ପ୍ରଜାମାନଙ୍କର ପରମ୍ପରାଗତ ଅଧିକାର ମାନିଲେ ନାହିଁ ଏବଂ ସେଥିରେ ସରକାର ଧ୍ୟାନ ଦେଲେ ନାହିଁ କିମ୍ବା ତାଙ୍କୁ ଦଣ୍ଡ ଦେଲେ ନାହିଁ ।

ଇଂରେଜ ସରକାର ଚିରସ୍ଥାୟୀ ବନ୍ଦୋବସ୍ତ କାହିଁକି ପ୍ରବର୍ତ୍ତନ କଲେ, ସେ ବିଷୟରେ ବିଭିନ୍ନ କମିସନ୍ ଓ ଐତିହାସିକ ଆଲୋଚନା କରିଛନ୍ତି । ଏପରି ବନ୍ଦୋବସ୍ତର ପ୍ରଧାନତଃ ଦୁଇଗୋଟି କାରଣ ଥିଲା । ପ୍ରଥମରେ ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତର ବିଭିନ୍ନ ଅଞ୍ଚଳରେ ଯୁଦ୍ଧରେ ବ୍ୟାପୃତ ଥିବାରୁ ତାଙ୍କର ପ୍ରଭୂତ ପରିମାଣରେ ଅର୍ଥ ଦରକାର ଥିଲା । କମ୍ପାନୀ ଅଧିକାର କରିଥିବା ଅଞ୍ଚଳମାନଙ୍କରୁ ଖଜଣାରୁ ଏକ ନିର୍ଦ୍ଦିଷ୍ଟ ଓ ନିୟମିତ ପରିମାଣ ଅର୍ଥ ଆଦାୟ କରି ଅର୍ଥର ଆବଶ୍ୟକତା ପୂରଣ କରିବାପାଇଁ କମ୍ପାନୀ ଇଚ୍ଛା କରୁଥିଲେ । ୧୭୬୫ ମସିହାରେ ମୋଗଲ ସମ୍ରାଟଙ୍କଠାରୁ ବଙ୍ଗଳା, ବିହାର ଓ ଓଡ଼ିଶାର ଦେବାନି କ୍ଷମତା ପାଇଲା ଦିନଠାରୁ, ସେ ଅଞ୍ଚଳମାନଙ୍କରୁ ଯେତେଦୂର ସମ୍ଭବ ସର୍ବୋଚ୍ଚ ପରିମାଣ ଖଜଣା ଆଦାୟ କରିବାକୁ କମ୍ପାନୀର ଗଭର୍ଣ୍ଣର ଜେନେରାଲ ଓ୍ୱାରେନ୍ ହେଷ୍ଟିଙ୍ଗ୍‌ସ୍ ବହୁ ପ୍ରକାର ଉଦ୍ୟମ କରିଥିଲେ । ସେତେବେଳେ ବଙ୍ଗ ପ୍ରଦେଶର ବିଭିନ୍ନ ଅଞ୍ଚଳକୁ ଯିବାକୁ ରାସ୍ତାଘାଟର ସୁବିଧା ନ ଥିଲା, ଜମିଜମାର ରେକର୍ଡ ନ ଥିଲା କିମ୍ବା ଜମି ସର୍ଭେ କରି ଜମି ଚାଷ କରୁଥିବା କୃଷକମାନଙ୍କ ଉପରେ ଜମାଧାର୍ଯ୍ୟ କରିବାକୁ ସୁବିଧା ନ ଥିଲା । କମ୍ପାନୀଙ୍କର ବନ୍ଦୋବସ୍ତ ବିଷୟରେ ତାଲିମପ୍ରାପ୍ତ କର୍ମଚାରୀ ନ ଥିଲେ ଏବଂ ସେମାନେ ଗ୍ରାମଗୋଷ୍ଠୀ ମଧ୍ୟରେ କୃଷକ-ମାନଙ୍କର ପାରମ୍ପରିକ ଜମିଜମା ସ୍ୱତ୍ୱାଧିକାର ବିଷୟରେ ଅବଗତ ନ ଥିଲେ । ସୁତରାଂ ଠିକାଦାରମାନଙ୍କ ଦ୍ୱାରା ଯେତେଦୂର ସମ୍ଭବ ଖଜଣା ଆଦାୟ କରିବା କମ୍ପାନୀର ସବୁଠାରୁ ସହଜ ଏବଂ ଅଳ୍ପ ଖର୍ଚ୍ଚ ବିଶିଷ୍ଟ ଉପାୟ ଥିଲା ।

ତେଣୁ ଓ୍ୱାରେନ୍ ହେଷ୍ଟିଙ୍ଗସ୍ ମାହାଲମାନଙ୍କରୁ ଖଜଣା ଆଦାୟପାଇଁ ଠିକାଦାର ନିଯୁକ୍ତ କରିବାକୁ ମାହାଲମାନ ପ୍ରଥମେ ପାଞ୍ଚବର୍ଷିଆ, ପରେ ବର୍ଷିକିଆ ଏବଂ ଶେଷରେ ଦଶବର୍ଷିଆ ନିଲାମ କରାଇଥିଲେ । ଏ ସବୁ ପ୍ରକାର ବନ୍ଦୋବସ୍ତରେ ବହୁ ତ୍ରୁଟି ପରିଲକ୍ଷିତ ହେଲା । ଠିକାଦାରମାନେ ପ୍ରଜାମାନଙ୍କ ଉପରେ ଜୁଲମ କଲେ । ଖଜଣା ଠିକ୍ ସମୟରେ ଆଦାୟ କରିପାରିଲେ ନାହିଁ କିମ୍ବା ସରକାରଙ୍କଠାରେ ଦାଖଲ କରିପାରିଲେ ନାହିଁ । ତାହା ଦ୍ୱାରା କମ୍ପାନୀର ଖଜଣା ଆଦାୟରୁ ନିର୍ଦ୍ଦିଷ୍ଟ ଓ ନିୟମିତ ଭାବରେ ନିର୍ଦ୍ଦିଷ୍ଟ ଆୟ କରିବା ଉଦ୍ଦେଶ୍ୟ ବାଧାପ୍ରାପ୍ତ ହେଲା । ସେଥିଯୋଗୁଁ କମ୍ପାନୀ ତାଙ୍କ ଅଧିକୃତ ଅଞ୍ଚଳମାନଙ୍କରେ ଜମିର ସ୍ୱତ୍ୱାଧିକାରୀ ସ୍ଥିର କରି ସେମାନଙ୍କ ଉପରେ ସ୍ଥାୟୀ ଭାବରେ ଜମାଧାର୍ଯ୍ୟ କରିବାକୁ ଚାହୁଁଥିଲେ, ଯେଉଁ କାର୍ଯ୍ୟ କରିବାକୁ କମ୍ପାନୀ ଲର୍ଡ କର୍ଣ୍ଣୱାଲିସଙ୍କୁ

୧୭୮୬ ଖ୍ରୀଷ୍ଟାବ୍ଦରେ ଗଭର୍ଣ୍ଣର ଜେନେରାଲ୍ ଭାବରେ ନିଯୁକ୍ତ କରି ଭାରତବର୍ଷକୁ ପଠାଇଥିଲେ । କ୍ରିଷ୍ଟିଭ୍‌ରେ କମ୍ପାନୀ ଏ ଦେଶରେ ତାଙ୍କର ଶାସନ ଦୃଢ଼ କରିବା ପାଇଁ ସବୁ ଅଞ୍ଚଳରେ କେତେକ ପ୍ରଭୁଭକ୍ତ ଓ ନ୍ୟସ୍ତସ୍ୱାର୍ଥ ଲୋକଙ୍କର ଆନୁଗତ୍ୟ ଚାହୁଁଥିଲେ ।

କର୍ଣ୍ଣଓ୍ୱାଲିସ୍ ଏବଂ ତାଙ୍କ ଅଧୀନସ୍ଥ ଉଚ୍ଚ ଇଂରେଜ କର୍ମଚାରୀମାନେ ଇଂଲଣ୍ଡରେ ପ୍ରଚଳିତ ଜମିଜମା ପଦ୍ଧତି ବିଷୟରେ ଅଭିଜ୍ଞ ଓ ଅବଗତ ଥିଲେ । ସେଠାରେ ସବୁ ଅଞ୍ଚଳରେ ଜମିମାଲିକ ଏବଂ ଜମିଚାଷ କରୁଥିବା ଚାଷୀ ଏହି ଦୁଇ ଶ୍ରେଣୀର ଲୋକ ଥିଲେ । ସେହି ଦୁଇ ଶ୍ରେଣୀର ଲୋକମାନଙ୍କର ସ୍ୱତ୍ୱାଧିକାର ଏବଂ କୃଷି କ୍ଷେତ୍ରରେ କାର୍ଯ୍ୟ ପାଇଁ ସେ ଦେଶ ସରକାର ନିର୍ଦ୍ଦିଷ୍ଟ ଆଇନମାନ କରିଥିଲେ । ଇଷ୍ଟ ଇଣ୍ଡିଆ କମ୍ପାନୀ ସେହି ଢାଞ୍ଚାରେ ଭାରତରେ ତାଙ୍କ ଅଧିକୃତ ଅଞ୍ଚଳମାନଙ୍କରେ ଖଜଣା ଆଦାୟର ବନ୍ଦୋବସ୍ତ କରିବାକୁ ଚାହୁଁଥିଲେ । କିନ୍ତୁ ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ବହୁ ଶତାବ୍ଦୀ ଧରି ଗ୍ରାମଗୋଷ୍ଠୀମାନଙ୍କରେ କୃଷକମାନଙ୍କର ଜମି ଉପରେ ବିଭିନ୍ନ ସ୍ୱତ୍ୱାଧିକାର ସୃଷ୍ଟି ହୋଇଥିଲା ଏବଂ ରାଜସ୍ୱ ଆଦାୟ କରିବାର ଭିନ୍ନ ଭିନ୍ନ ପଦ୍ଧତି ଥିଲା । ସେ ବିଷୟରେ କମ୍ପାନୀଙ୍କ କର୍ମଚାରୀମାନେ କିଛି ଜାଣି ନ ଥିଲେ କିମ୍ବା ଜାଣିବାକୁ ବିଶେଷ ଉଦ୍ୟମ କରି ନ ଥିଲେ । ସେମାନେ ଅଧିକୃତ ଅଞ୍ଚଳମାନଙ୍କରେ ଜମି ମାଲିକ ବା ଜମିଦାର ଖୋଜି ବାହାର କରିବାପାଇଁ ଏବଂ ଯେଉଁ ଅଞ୍ଚଳରେ ଜମିମାଲିକ ନିର୍ଦ୍ଦିଷ୍ଟ ଭାବରେ ନ ଥିଲେ, ସେଠାରେ ଜମିମାଲିକ ସୃଷ୍ଟି କରିବାକୁ ଉଦ୍ୟମ କଲେ ଏବଂ ସେହି ଜମି ମାଲିକଙ୍କ ସଙ୍ଗରେ ଗୋଟିଏ ନିର୍ଦ୍ଦିଷ୍ଟ ପରିମାଣର ଖଜଣା ପ୍ରତିବର୍ଷ ସରକାରଙ୍କ ପାଖରେ ଦାଖଲ କରିବାକୁ ଚିରସ୍ଥାୟୀ ଭାବରେ ବନ୍ଦୋବସ୍ତ କଲେ । ବଙ୍ଗ ପ୍ରଦେଶରେ ବହୁ ଅଞ୍ଚଳରେ ପୂର୍ବ ସରକାରମାନଙ୍କ ଅମଳରେ ରାଜା ଓ ଜମିଦାର ଶ୍ରେଣୀର ଲୋକ ଥିଲେ । କମ୍ପାନୀ ସେ ଅଞ୍ଚଳରେ ସେମାନଙ୍କୁ ଜମିମାଲିକ ବୋଲି ସ୍ୱୀକାର କରି ତାଙ୍କ ସଙ୍ଗରେ ଖଜଣା ଆଦାୟପାଇଁ ଚିରସ୍ଥାୟୀ ବନ୍ଦୋବସ୍ତ କଲେ । ଯେଉଁ ଅଞ୍ଚଳରେ ରାଜା ଓ ଜମିଦାର ଶ୍ରେଣୀର ଲୋକ ନ ଥିଲେ ଏବଂ ଜମିମାଲିକଙ୍କ ନାମ ନିର୍ଦ୍ଦିଷ୍ଟ ଭାବରେ ଜାଣିପାରିଲେ ନାହିଁ, ସେଠାରେ ପୂର୍ବରୁ ଖଜଣା ଆଦାୟ କରିବାକୁ ନିଯୁକ୍ତ ହୋଇଥିବା ଠିକାଦାରମାନଙ୍କୁ ଜମିମାଲିକ ବୋଲି ସ୍ୱୀକାର କରି ତାଙ୍କ ସଙ୍ଗରେ ଖଜଣା ଆଦାୟପାଇଁ ଚିରସ୍ଥାୟୀ ବନ୍ଦୋବସ୍ତ କଲେ ।

କମ୍ପାନୀ ସରକାର ଓ କର୍ଣ୍ଣଓ୍ୱାଲିସ୍ ଆଶା କରିଥିଲେ ଯେ, ଜମି ର ଚିରସ୍ଥାୟୀ ସ୍ୱତ୍ୱାଧିକାର ପାଇଲେ ଜମିଦାରମାନେ ଇଂଲଣ୍ଡର ଜମିମାଲିକମାନଙ୍କ

ପଣ୍ଡ ଜମିର ଉନ୍ନତ କରିବେ ଏବଂ ପ୍ରଜାମାନଙ୍କୁ ଉତ୍ପୀଡ଼ନ କରିବେ ନାହିଁ । ଫଳରେ କୃଷି ଜମି ସଂପ୍ରସାରିତ ହେବ, କୃଷିର ଉନ୍ନତ ହେବ ଏବଂ ଦେଶ ସମୃଦ୍ଧିଶାଳୀ ହେବ । ସେଥି ସଙ୍ଗେ ସଙ୍ଗେ କମ୍ପାନୀ ଖଜଣା ଆଦାୟରୁ ପ୍ରତିବର୍ଷ ନିର୍ଦ୍ଦିଷ୍ଟ ପରିମାଣର ଆୟ ପାଇବେ । ପରବର୍ତ୍ତୀ ଦେଢ଼ଶହ ବର୍ଷର ଇତିହାସ ପ୍ରମାଣ କଲା ଯେ, ଚିରସ୍ଥାୟୀ ବନ୍ଦୋବସ୍ତ ବିଷୟରେ ଇଂରେଜ ସରକାରଙ୍କର ଏହି ସମସ୍ତ ଆଶା ସମ୍ପୂର୍ଣ୍ଣ ବିଫଳ ହୋଇଥିଲା । ପ୍ରଥମ ଚାଳିଶ ପଚାଶ ବର୍ଷ ମଧ୍ୟରେ ଜମିଦାରମାନେ ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରିବାକୁ ପ୍ରକୃଷ୍ଟ କ୍ଷେତ୍ର ପାଇ ନ ଥିଲେ, କାରଣ ଜମିଦାରୀ ଇଲାକାମାନଙ୍କରେ ବହୁ ଅନାବାଦୀ ଜମି ଥିଲା । ଜମି ତୁଳନାରେ କୃଷି କରିବା ଲୋକଙ୍କର ସଂଖ୍ୟା ଅଳ୍ପ ଥିଲା । କୃଷି ସମ୍ପ୍ରସାରିତ ହୋଇ ନ ପାରିବାରୁ ଓ କୃଷକମାନଙ୍କଠାରୁ ଆବଶ୍ୟକ ଖଜଣା ଆଦାୟ କରି ନ ପାରିବାରୁ ଅନେକ ଜମିଦାରୀ ନିଲାମ ହୋଇଗଲା । କିନ୍ତୁ ପରବର୍ତ୍ତୀ ଶହେ ବର୍ଷରେ ଅବସ୍ଥା ସମ୍ପୂର୍ଣ୍ଣ ରୂପେ ବଦଳିଗଲା । ଲୋକସଂଖ୍ୟା ବୃଦ୍ଧି ହେତୁ ଚାଷଜମିପାଇଁ ଚାହିଦା ବହୁଗୁଣରେ ବଢ଼ିଗଲା । ଜମିଦାରମାନଙ୍କର ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରିବାର କ୍ଷେତ୍ର ପ୍ରସ୍ତୁତ ହୋଇଗଲା । ସେମାନେ ପ୍ରଜାମାନଙ୍କଠାରୁ ବହୁ ପ୍ରକାର କର ଆଦାୟ କଲେ, ଖଜଣା ମନଇଚ୍ଛା ବୃଦ୍ଧି କଲେ ଏବଂ ପ୍ରଜାମାନଙ୍କୁ ଜମିରୁ ଉଚ୍ଛେଦ କଲେ । ପ୍ରଜାମାନେ ସେମାନଙ୍କର କୌଣସି ପାରମ୍ପରିକ ଅଧିକାର ସାବ୍ୟସ୍ତ କରିପାରିଲେ ନାହିଁ କିମ୍ବା ଜମିଦାରଙ୍କର ଶୋଷଣର ପ୍ରତିରୋଧ କରି ପାରିଲେ ନାହିଁ । ରୟତମାନଙ୍କର ସ୍ୱତ୍ୱ ସ୍ଥିର ନ ଥିଲା କିମ୍ବା ଖଜଣା ଅୟ ପରିମାଣ ସ୍ଥିର ବା ନ୍ୟାୟ ସଙ୍ଗତ ନ ଥିଲା । ଇଂରେଜ ସରକାର ମଧ୍ୟ ପ୍ରଜାମାନଙ୍କ ହିତ ସାଧନରେ ମନ ଦେଲେ ନାହିଁ ଏବଂ ସେମାନଙ୍କୁ ଜମିଦାରମାନଙ୍କର ଶୋଷଣରୁ ରକ୍ଷା କଲେ ନାହିଁ ।

ଚିରସ୍ଥାୟୀ ବନ୍ଦୋବସ୍ତ ହେବାର ପ୍ରାୟ ସତୁରି ବର୍ଷପରେ ୧୮୫୯ ମସିହାରେ ବଙ୍ଗଳା ପ୍ରଜାସ୍ୱତ୍ୱ ଆଇନ (Rent Art of Bengal) ପାସ୍ ହେଲା । ମାତ୍ର ତାହା ସଫଳ ଭାବରେ କାର୍ଯ୍ୟକାରୀ ହୋଇ ନ ପାରିବାରୁ ତାର ସଂଶୋଧନ ଆଇନ ପ୍ରାୟ ପଚିଶ ବର୍ଷ ପରେ ୧୮୮୫ ମସିହାରେ ପାସ୍ ହେଲା । ତଥାପି ସ୍ୱାଧୀନତା ପର୍ଯ୍ୟନ୍ତ ପ୍ରଜାମାନଙ୍କର ସ୍ୱତ୍ୱ ସୁରକ୍ଷିତ ହୋଇପାରି ନ ଥିଲା । ଅନ୍ୟ ପକ୍ଷରେ ଜମିଦାରମାନେ ବହୁ ଗୁଣରେ ଅଧିକ ଧନୀ ହୋଇଗଲେ । ଜମିଦାରୀମାନଙ୍କରୁ ବହୁ ପରିମାଣ ଖଜଣା ଆଦାୟ କରି ସେଥିରୁ ଚିରସ୍ଥାୟୀ ବନ୍ଦୋବସ୍ତ ହେତୁ ଅଳ୍ପ ପରିମାଣ ସରକାରଙ୍କୁ ଦେଇ, ବାକି ସବୁ ନିଜର ଆୟ ରୂପେ ଉପଭୋଗ କଲେ । ବଡ଼ ବଡ଼ ଜମିଦାର ଓ ସେମାନଙ୍କର ପରିବାରର ଲୋକମାନେ କଲିକତା, ଲଣ୍ଡନ, ପ୍ୟାରିସ୍ ପ୍ରଭୃତି ସହରରେ ବିଳାସପୂର୍ଣ୍ଣ

ଜୀବନଯାପନ କଲେ । ଜମିଦାର ଓ କୃଷକମାନଙ୍କ ମଧ୍ୟରେ ବହୁ ପ୍ରକାର ମଧ୍ୟ ସ୍ୱତ୍ୱାଧିକାରୀ ପଦ ସୃଷ୍ଟି ହୋଇଗଲା । ଜମିଦାରଙ୍କର କୃଷି ଓ କୃଷକମାନଙ୍କ ସହିତ କୌଣସି ସମ୍ପର୍କ ରହିଲା ନାହିଁ । ସେମାନେ ଜମିଦାରୀ ଅଞ୍ଚଳରେ ବାସ କରୁ ନ ଥିଲେ ବା କୃଷକମାନଙ୍କ ସଙ୍ଗରେ ସେମାନଙ୍କର ପ୍ରତ୍ୟକ୍ଷ ସମ୍ପର୍କ ନ ଥିଲା । ଜମିଦାରମାନେ କୃଷିର ଉନ୍ନତି କରିବାପାଇଁ କୌଣସି ଉଦ୍ୟମ କଲେ ନାହିଁ ଏବଂ ସେଥିପାଇଁ ଅର୍ଥ ବ୍ୟୟ କରିବାକୁ ସେମାନଙ୍କର କୌଣସି ପ୍ରବୃତ୍ତି ନ ଥିଲା । ଉତ୍ତରାଧିକାର ଆଇନ ଅନୁସାରେ ବହୁ ଜମିଦାରୀରେ ଜମିଦାର ପରିବାରର ବିଭିନ୍ନ ଲୋକଙ୍କର ଅଂଶ କମ୍ ହୋଇଗଲା । ସେମାନଙ୍କ ମଧ୍ୟରୁ ଅନେକ ଅଂଶୀଦାର ମଧ୍ୟ ସ୍ୱଳ୍ପ ଆୟସମ୍ପନ୍ନ ହେବାରୁ ଜମିଦାରୀ ପରିଚାଳନା କିମ୍ବା କୃଷି ଉନ୍ନତି କରିବା ପାଇଁ ସେମାନଙ୍କର ଇଚ୍ଛା ଓ ସାମର୍ଥ୍ୟ ନ ଥିଲା । ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଯେତେବେଳେ ବଙ୍ଗ ଦେଶରେ ଦୁର୍ଭିକ୍ଷ କମିଶନ୍ ଓ ଜମିଦାରୀ ଉଚ୍ଛେଦ କମିଶନ୍‌ମାନେ ଜମିଦାରମାନଙ୍କର କୃଷିର ଉନ୍ନତିପାଇଁ ଅବଦାନ ବିଷୟ ଅନୁଶୀଳନ କରୁଥିଲେ, ସେତେବେଳେ ସେମାନଙ୍କ ନିକଟରେ ସରକାର ଏବଂ ଜନସାଧାରଣ ସମସ୍ତେ ମତ ବ୍ୟକ୍ତ କରିଥିଲେ ଯେ ଜମିଦାରମାନଙ୍କର କୃଷିର ଉନ୍ନତିରେ କୌଣସି ଅବଦାନ ନ ଥିଲା ବରଂ ଜମିଦାରୀ ପଦ୍ଧତି କୃଷିର ଉନ୍ନତି ପଥରେ ପ୍ରତିବନ୍ଧକ ଥିଲା ।

ବଙ୍ଗ ପ୍ରଦେଶରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରବର୍ତ୍ତନ କଲାପରେ ଇଂରେଜ ସରକାର ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ମଧ୍ୟ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳନ କରିବାକୁ ଉଦ୍ୟମ କଲେ । ପ୍ରଥମେ ସେଠାରେ ଥିବା ଜିଲ୍ଲା କର୍ତ୍ତୃପକ୍ଷ ଜମିଦାରୀ ପଦ୍ଧତି ପ୍ରଚଳନ କରିବାର ବିରୋଧ କଲେ । ମାତ୍ର ୧୭୯୯ ମସିହାରେ ସେ ପ୍ରଦେଶରେ ଜମିଦାରୀ ପ୍ରଥା ପ୍ରଚଳନ କରିବାପାଇଁ କମ୍ପାନୀ ନିର୍ଦ୍ଦିଷ୍ଟ ଆଦେଶ ଦେଲେ । ପ୍ରଥମେ ମାନ୍ଦ୍ରାଜ ପ୍ରେସିଡେନ୍‌ସିର ଉତ୍ତର ସରକାର ଅଞ୍ଚଳରେ କମ୍ପାନୀ ଜମିଦାରୀ ପ୍ରଥା ପ୍ରଚଳନ ଆରମ୍ଭ କଲେ । ସେତେବେଳେ ଉତ୍ତର ସରକାର ଅଞ୍ଚଳରେ ଗଞ୍ଜାମ, ବିଶାଖାପାଟଣା, ଗୋଦାବରୀ, କୃଷ୍ଣା ଏବଂ ଗୁଣ୍ଟୁର ଜିଲ୍ଲାମାନ ଅନ୍ତର୍ଭୁକ୍ତ ଥିଲା । ୧୭୬୫ ମସିହାରେ ଦିଲ୍ଲୀ ସରକାର ସେ ଅଞ୍ଚଳ ଇଂରେଜମାନଙ୍କୁ ଦେଇଥିଲେ ଏବଂ ସେଥିପାଇଁ ହାଇଦରାବାଦ ନିଜାମଙ୍କ ଅନୁମତି ନିଆଯାଇଥିଲା । ବର୍ତ୍ତମାନ ଓଡ଼ିଶାର ଗଞ୍ଜାମ ଓ କୋରାପୁଟ ଜିଲ୍ଲା ସେତେବେଳେ ଏହି ଅଞ୍ଚଳର ଅନ୍ତର୍ଭୁକ୍ତ ଥିଲା । ସେଥିରେ ବହୁତ ଜମିଦାରୀ ମାହାଲ ଥିଲା । ସେ ଜମିଦାରୀ ମାହାଲମାନ ଓଡ଼ିଶାର ଗଜପତି ରାଜାମାନଙ୍କଠାରୁ ସେ କ୍ଷମତା ପାଇଥିଲେ । କେତେକ ଐତିହାସିକ ତଥ୍ୟରୁ ଜଣାଯାଏ ଯେ ଗଜପତି ରାଜା ପୁରୁଷୋତ୍ତମ

ଦେବ ୧୪୭୧ରୁ ୧୫୦୪ ମସିହା ପର୍ଯ୍ୟନ୍ତ ଓଡ଼ିଶାରେ ରାଜତ୍ୱ କରୁଥିବା ସମୟରେ ଏହିପରି ଅନେକ ଜମିଦାରୀ ମାହାଲ ସୃଷ୍ଟି କରାଯାଇଥିଲା । ଜମିଦାରମାନେ ରାଜାଙ୍କୁ ପାର୍ବତ୍ୟ ଅଞ୍ଚଳର ଲୋକମାନଙ୍କ ଉପରେ ଶାସନ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ଏହି କ୍ଷମତା ପାଇଥିଲେ । ବିଜୟନଗର ଅନ୍ତର୍ଭୁକ୍ତ ଜୟପୁର ଜମିଦାରୀ ଏବଂ ପାରଳାଖେମୁଣ୍ଡି ଜମିଦାରୀରେ ୧୮୦୨ ମସିହାରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳିତ ହୋଇଥିଲା । ଏହି ସମୟରେ ମଧ୍ୟ ଗଞ୍ଜାମ ଜିଲ୍ଲାର ଅନ୍ୟ ଜମିଦାରୀମାନଙ୍କରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳିତ ହୋଇଥିଲା ।

୧୯୩୬ ମସିହାରେ ଗଞ୍ଜାମ ଓ କୋରାପୁଟ ଜିଲ୍ଲା ଯେତେବେଳେ ଓଡ଼ିଶାରେ ମିଶିଲା, ସେତେବେଳେ ସେହି ଦୁଇ ଜିଲ୍ଲାରେ ଜୟପୁର, ପାରଳାଖେମୁଣ୍ଡି, ଖଲ୍ଲିକୋଟ, ଆଠଗଡ଼, ପାଲୁର, ବିରଡ଼ି, ହୁମ୍ମା, ଧାରାକୋଟ, ବଡ଼ୋଗୋଡ଼ା, ଶେରେଗୁଡ଼ା, ସାନଖେମୁଣ୍ଡି, ବଡ଼ଖେମୁଣ୍ଡି, ଚିକିଟି, ସୁରଙ୍ଗି ଏବଂ ଦାରଡ଼ା ପ୍ରଭୃତି ଚିରସ୍ଥାୟୀ ବନ୍ଦୋବସ୍ତ ଜମିଦାରୀ ଥିଲା । ସମଗ୍ର କୋରାପୁଟ ଜିଲ୍ଲାଟି ଜୟପୁର ଜମିଦାରୀରେ ଥିଲା ।

ଉତ୍ତର ସରକାରର ଯେଉଁ ଅଞ୍ଚଳରେ ପୂର୍ବରୁ ଜମିଦାରମାନେ ନ ଥିଲେ, ସେ ଅଞ୍ଚଳମାନଙ୍କରେ ଜମିଦାରୀମାନ ନିଲାମ ହେଲା । ଖଜଣା ଆଦାୟ କରୁଥିବା ଯେଉଁ ଠିକାଦାରମାନେ ସେ ନିଲାମରେ ଜିତିଲେ, ସରକାର ସେମାନଙ୍କୁ ଜମିଦାର ରୂପେ ସ୍ୱୀକାର କରି ସେମାନଙ୍କ ସହିତ ଚିରସ୍ଥାୟୀ ବନ୍ଦୋବସ୍ତ କଲେ । ଏପରି କୃତ୍ରିମ ଉପାୟରେ ଜମିଦାର ସୃଷ୍ଟି କରିବା ଅସ୍ୱାଭାବିକ ଥିଲା । ଏପରି କୃତ୍ରିମ ଜମିଦାରମାନେ ପୂର୍ବର ସ୍ୱାଭାବିକ ଜମିଦାରମାନଙ୍କ ଅପେକ୍ଷା ଅଧିକ ଅତ୍ୟାଚାରୀ ହେଲେ ଏବଂ ସେମାନଙ୍କ ମଧ୍ୟରୁ ମଧ୍ୟ ବହୁ ଜମିଦାର ନିର୍ଦ୍ଦିଷ୍ଟ ଖଜଣା ଆଦାୟ କରି ନ ପାରିବାରୁ ସେମାନଙ୍କର ଜମିଦାରୀ ହରାଇଲେ । ଉତ୍ତର ସରକାର ଅଞ୍ଚଳ ବ୍ୟତୀତ ମାନ୍ଦ୍ରାଜ ପ୍ରେସିଡେନ୍‌ସିର ଅନ୍ୟ ଅଞ୍ଚଳମାନଙ୍କରେ ଜମିଦାରୀ ପ୍ରଥା ଏବଂ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳିତ ହୋଇପାରିଲା ନାହିଁ ।

ଇଂରେଜମାନେ ୧୮୦୩ ମସିହାରେ ଓଡ଼ିଶା ଅଧିକାର କଲା ପୂର୍ବରୁ ଉପରଲିଖିତ ମତେ ବଙ୍ଗଳା, ବିହାର ଓ ମାନ୍ଦ୍ରାଜର ଉତ୍ତରାଞ୍ଚଳ ଜିଲ୍ଲାମାନଙ୍କରେ ଜମିଦାରୀ ପ୍ରଥା ଓ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳିତ ହୋଇ ସାରିଥିଲା । ଓଡ଼ିଶା ଅଧିକାରର ଦୁଇବର୍ଷ ପରେ ୧୮୦୫ ମସିହାରେ ବ୍ରିଟିଶ ସରକାର କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳନ କଲେ । ସେହିବର୍ଷ କଟକ ଜିଲ୍ଲାର କନିକା, କୁଜଙ୍ଗ, ଆଳି, ପଟିଆ, ଦର୍ପଣି, ସୁକିନ୍ଦା ପ୍ରଭୃତି ଜମିଦାରୀଗୁଡ଼ିକରେ ଚିରସ୍ଥାୟୀ ବନ୍ଦୋବସ୍ତ କରାଗଲା । ପରେ ପରେ କଟକର ଡୋମପଡ଼ା,

ବଲରାମପୁର, ହରପୁର, ପୁରୀର ମରଚପୁର ଜମିଦାରୀରେ ଏବଂ ବାଲେଶ୍ୱରରେ ଥିବା ପ୍ରାୟ ୧୬୦ଟି ଛୋଟ ଛୋଟ ଜମିଦାରୀରେ ଚିରସ୍ଥାୟୀ ବନ୍ଦୋବସ୍ତ କରାଗଲା । ଓଡ଼ିଶାର ଏହି ଜିଲ୍ଲାମାନଙ୍କରେ ଜମିଦାରୀ ଏବଂ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଥା ପ୍ରଚଳନ ଫଳରେ, ସେ ଜିଲ୍ଲାଗୁଡ଼ିକର ଚାଷୀମାନଙ୍କ ଜମିରେ ଥିବା ପାରମ୍ପରିକ ସ୍ୱତ୍ୱରେ ବୈପ୍ଳବିକ ପରିବର୍ତ୍ତନ ହେଲା । ବହୁ ଶତାବ୍ଦୀ ଧରି ଓଡ଼ିଶାରେ ପ୍ରଚଳିତ ଥିବା ରାଜସ୍ୱ ଆଦାୟ ପଦ୍ଧତି ଏବଂ ଗ୍ରାମଗୋଷ୍ଠୀ ଓ କୃଷକମାନଙ୍କର ଜମିରେ ଥିବା ସ୍ୱତ୍ୱ ବିଷୟରେ ୧୮୯୦ ଠାରୁ ୧୯୦୦ ମସିହା ମଧ୍ୟରେ ହୋଇଥିବା ମାଡକ୍ସ ବନ୍ଦୋବସ୍ତ ରିପୋର୍ଟରେ ବିଶଦ ଭାବରେ ବର୍ଣ୍ଣନା କରାଯାଇଛି । ସେ ରିପୋର୍ଟରେ ଲେଖାଯାଇଛି ଯେ ଓଡ଼ିଶାରେ ହିନ୍ଦୁରାଜାମାନଙ୍କ ରାଜତ୍ୱ କାଳରେ ରାଜ୍ୟଟି କେତେଗୁଡ଼ିଏ ଦଣ୍ଡପାଟ ବା ଡିଭିଜନରେ ବିଭକ୍ତ ହୋଇଥିଲା । ଦଣ୍ଡପାଟଗୁଡ଼ିକ ବିଶି ବା ଖଣ୍ଡ ବା ଜିଲ୍ଲାରେ ବିଭକ୍ତ ହୋଇଥିଲା । ପ୍ରତ୍ୟେକ ବିଶିରେ ଗୁଡ଼ିଏ ଗ୍ରାମ ଥିଲା । ପ୍ରତି ଗ୍ରାମର ପ୍ରଧାନମାନଙ୍କ ଦ୍ୱାରା ରାଜସ୍ୱ ଆଦାୟ ହେଉଥିଲା । ପ୍ରଧାନ ତାଙ୍କ କାର୍ଯ୍ୟପାଇଁ ନିଷ୍କର ଜମି ଭୋଗ କରୁଥିଲେ । ସେ ଜମିର ପରିମାଣ ଗ୍ରାମର ଆବାଦୀ ଜମିର କୋଡ଼ିଏ ଭାଗରୁ ଭାଗେବି ଅଧିକ ନ ଥିଲା । ଏ ପଦ୍ଧତିର ବ୍ରିଟିଶ ଅମଳରେ ଖାସ୍‌ମାହାଲ ଅଞ୍ଚଳରେ ପ୍ରଚଳିତ ସରବରାକାର ପଦ୍ଧତି ସହିତ ଅନେକ ସାମଞ୍ଜସ୍ୟ ଥିଲା । ପ୍ରତି ଗାଁରେ ଜଣେ ହିସାବ ରକ୍ଷକ, ଭୋଇ ଥିଲେ । ସେ ମଧ୍ୟ ତାଙ୍କ କାର୍ଯ୍ୟ ପାଇଁ ନିଷ୍କର ଜମି ଭୋଗ କରୁଥିଲେ ।

ପ୍ରତି ବିଶିର ଶାସନ ତିନିଜଣ ଉଚ୍ଚ କର୍ମଚାରୀଙ୍କ ଉପରେ ନ୍ୟସ୍ତ ଥିଲା । ସେମାନେ ହେଲେ, ବିଶୋଇ ବା ଖଣ୍ଡପତି, ଖଣ୍ଡାୟତ ଏବଂ ଭୋଇମୂଳ । ବିଶୋଇ ବା ଖଣ୍ଡପତି ସାଧାରଣ ଶାସନ, ଖଣ୍ଡାୟତ ପୁଲିସ ବିଭାଗ ଏବଂ ଭୋଇମୂଳ ରାଜସ୍ୱ ଶାସନର ଦାୟିତ୍ୱରେ ଥିଲେ । ଏ ସମସ୍ତ କର୍ମଚାରୀ ତାଙ୍କ କାର୍ଯ୍ୟପାଇଁ ନିଷ୍କର ଜମି ଭୋଗ କରୁଥିଲେ । ବ୍ରାହ୍ମଣ ଓ ମନ୍ଦିରମାନଙ୍କୁ ନିଷ୍କର ବ୍ରହ୍ମୋତ୍ତର ଓ ଦେବୋତ୍ତର ଜମି ଦିଆ ହେଉଥିଲା । ଏ ସବୁ କର୍ମଚାରୀ ରାଜା ଓ କୃଷକମାନଙ୍କ ମଧ୍ୟରେ ମଧ୍ୟ ସ୍ୱତ୍ୱାଧିକାରୀ ନ ଥିଲେ । ସେମାନେ କେବଳ ରାଜାଙ୍କ ଦ୍ୱାରା ନିଯୁକ୍ତ କର୍ମଚାରୀ ଥିଲେ । ସୁତରାଂ ମାକ୍‌ସେଙ୍କ ମତରେ ହିନ୍ଦୁରାଜାମାନେ ରାଜା ଓ ପ୍ରଜା ମଧ୍ୟରେ କୌଣସି ମଧ୍ୟସ୍ୱତ୍ୱାଧିକାରୀ ସୃଷ୍ଟି କରି ନ ଥିଲେ । ପ୍ରତି କୃଷକ କୃଷି ଉତ୍ପାଦନର ଚାରିଭାଗରୁ ଭାଗେ ଠାରୁ ବାର ଭାଗରୁ ଭାଗେ ରାଜଭାଗ ବା ରାଜସ୍ୱ ଦେବାକୁ ବାଧ୍ୟ ଥିଲେ । ଅନେକ ଗବେଷକ ଲେଖିଛନ୍ତି ଯେ ହିନ୍ଦୁ ସ୍ୱତ୍ୱ ପଦ୍ଧତି ହିନ୍ଦୁ ଶାସ୍ତ୍ରରେ ଲିଖିତ ମତ ଉପରେ ଆଧାରିତ ଥିଲା । ପୂର୍ବ ମୀମାଂସାରେ ଯାମିନୀ ଲେଖିଛନ୍ତି ଯେ ରାଜା କାହାକୁ ଭୂମି ଦେଇପାରିବେ ନାହିଁ କାରଣ ସେ ଭୂମିର ଏକମାତ୍ର ଅଧିକାରୀ ନୁହନ୍ତି । ରାଜ୍ୟରେ ବାସ କରୁଥିବା ସମସ୍ତ ମନୁଷ୍ୟଙ୍କର

ଭୂମିରେ କାର୍ଯ୍ୟକରି ତାର ଫଳ ଭୋଗ କରିବାର ଅଧିକାର ଅଛି । ଅନ୍ୟ ଶାସ୍ତ୍ର-ମାନଙ୍କରେ ମଧ୍ୟ ଉଲ୍ଲେଖ ଅଛି ଯେ ଭୂମି ରାଜାଙ୍କର ବ୍ୟକ୍ତିଗତ ସମ୍ପତ୍ତି ନୁହେଁ । ରାଜା ପ୍ରଜାମାନଙ୍କୁ ରକ୍ଷା କରୁଥିବାରୁ ଉତ୍ପାଦନରୁ ରାଜଭାଗ ବା ରାଜସ୍ୱ ପାଆନ୍ତି । ସୁତରାଂ ରାଜସ୍ୱ କେବଳ ଗୋଟିଏ କର ବା ଟିକସ । ଓଡ଼ିଶାରେ ହିନ୍ଦୁ ରାଜାମାନଙ୍କ ସମୟରେ ଏହି ଦର୍ଶନ ଅନୁସାରେ ରାଜସ୍ୱ ଆଦାୟ ହେଉଥିଲା ।

କିନ୍ତୁ ମୁସଲମାନ ଓ ମୋଗଲ ରାଜତ୍ୱ କାଳରେ ଏ ପଦ୍ଧତି ବଦଳି ଗଲା । ମୁସଲମାନମାନେ ୧୫୬୮ ମସିହାରେ ଓଡ଼ିଶା ଜୟ କରିଥିଲେ । ପ୍ରଥମରେ ସେମାନେ ପ୍ରଚଳିତ ହିନ୍ଦୁ ପଦ୍ଧତିର ରାଜସ୍ୱ ଆଦାୟ କଲେ । କେବଳ ଜିଲ୍ଲା ପ୍ରଭୃତିର ନାମ ବଦଳାଇ ଦେଇଥିଲେ । ଖଣ୍ଡ ନାମକୁ ସେମାନେ ପରଗନା କଲେ, ସାଧାରଣ ପ୍ରଶାସନ ଓ ପୁଲିସ୍ ଶାସନ ଦାୟିତ୍ୱରେ ଥିବା ଲୋକମାନେ ସେମାନଙ୍କ ଜମି ଭୋଗ କଲେ । ସାଧାରଣ ପ୍ରଶାସନ ଦାୟିତ୍ୱରେ ଥିବା ବ୍ୟକ୍ତିଙ୍କୁ ଚୌଧୁରୀ ଏବଂ ହିସାବ କିତାବ ଦାୟିତ୍ୱରେ ଥିବା ଲୋକଙ୍କୁ କାନୁନ୍‌ଗୋ ବୋଲି କୁହାଗଲା ।

କେତେ ବର୍ଷ ପରେ ୧୫୮୨ ମସିହାରେ ମୋଗଲ ସମ୍ରାଟ ଆକବରଙ୍କ ସମୟରେ ଜମିର ନିୟମିତ ବନ୍ଦୋବସ୍ତ ଆରମ୍ଭ ହେଲା । ପ୍ରଥମେ ତୋଡ଼ରମଲ୍ଲ ଏହାର ଦାୟିତ୍ୱରେ ଥିଲେ । ପରେ ମାନସିଂହ ତାର ଦାୟିତ୍ୱ ନେଲେ । ସେ ବନ୍ଦୋବସ୍ତରେ ହିନ୍ଦୁ ଓ ମୁସଲମାନ ସମୟର ଚୌଧୁରୀ ଓ କାନୁନ୍‌ଗୋ ରାଜସ୍ୱ ଆଦାୟ ଦାୟିତ୍ୱରେ ରହିଲେ । ପରଗନା ସବୁ ତାଲୁକରେ ବିଭକ୍ତ ହେଲା । ତାଲୁକରେ ରାଜସ୍ୱ ଆଦାୟ ଦାୟିତ୍ୱରେ ଥିବା ଚୌଧୁରୀ ଏବଂ କାନୁନ୍‌ଗୋ ଜମିଦାରର ଅଧିକାର ଓ ଦାୟିତ୍ୱ ପାଇଲେ । ଗ୍ରାମ ପ୍ରଧାନମାନଙ୍କୁ ମକଦମ୍ ବୋଲି କୁହାଗଲା ଏବଂ ତାଙ୍କୁ ନିର୍ଦ୍ଦିଷ୍ଟ ପରିମାଣର ଜମି ଭୋଗ କରିବାକୁ ଦିଆଗଲା । ତାଙ୍କୁ ତାଲୁକଦାରମାନେ ନିଯୁକ୍ତ କଲେ । ପ୍ରଥମେ ସେ ପଦବୀ ସବୁ ବଂଶାନୁକ୍ରମିକ ନ ଥିଲା । ପରେ ସେ ସବୁ ବଂଶାନୁକ୍ରମିକ ହୋଇଗଲା ଏବଂ ମକଦମମାନେ ଜମିରେ ସ୍ୱତ୍ୱାଧିକାରୀ ହେଲେ । ସେହିପରି ଚୌଧୁରୀ ଓ କାନୁନ୍‌ଗୋମାନେ ତାଲୁକଦାର ଓ ଜମିଦାର ହୋଇଗଲେ । ତାଙ୍କ କାର୍ଯ୍ୟପାଇଁ ସେମାନେ ନିର୍ଦ୍ଦିଷ୍ଟ ପରିମାଣର ନିଷ୍କର ଜମି ପାଇଲେ । ତାହା ବ୍ୟତୀତ ତାଙ୍କ ଅଧୀନରେ ଥିବା ଗ୍ରାମମାନଙ୍କରୁ ଆଦାୟ ହିସାବରୁ ଶତକଡ଼ା ପାଞ୍ଚଭାଗ କମିସନ୍ ରୂପେ ପାଇଲେ । ରାଜା ମାନସିଂହ ସବୁ ପରଗନାକୁ ମିଶାଇ କଟକ, ଭଦ୍ରକ ଏବଂ ଜଳେଶ୍ୱର, ଏହି ତିନଗୋଟି ସରକାରରେ ବିଭକ୍ତ କଲେ । ପ୍ରତି ସରକାର ଜଣେ ମୁଖ୍ୟ ପ୍ରଶାସକ, ଅମିଲ୍ ଏବଂ ଜଣେ ରାଜସ୍ୱ ଅଫିସର ସଦର କାନୁନ୍‌ଗୋଙ୍କ

ଅଧୀନରେ ରହିଲା । ସେମାନେ ଆଦାୟ ରାଜସ୍ୱର ଶତକଡ଼ା କେତେଭାଗ କମିଶନ୍ ଆକାରରେ ପାଇଲେ ।

ଏହି ଉଚ୍ଚ ଅଫିସରମାନେ ମୋଗଲ ସମ୍ରାଟଙ୍କର ପ୍ରତିନିଧିମାନଙ୍କ ଦ୍ୱାରା ନିଯୁକ୍ତ ହେଉଥିଲେ ଏବଂ ସେମାନଙ୍କ ଦ୍ୱାରା ମଧ୍ୟ ବରଖାସ୍ତ ହେଉଥିଲେ । ପରେ ଦୁର୍ବଳ ସମ୍ରାଟମାନଙ୍କ ଅମଳରେ ସେମାନେ ବଡ଼ ବଡ଼ ଜମିଦାରୀର ମାଲିକ ହୋଇ ପ୍ରଭୁତ କ୍ଷମତା ଭୋଗ କଲେ । ମରହଟ୍ଟାମାନେ ସେସବୁ ପଦବୀ ଉଠାଇ ଦେଇଥିଲେ । ସେମାନେ ଅଧିକ ରାଜସ୍ୱ ଆଦାୟ କରିବା ପାଇଁ କେବଳ ଆଗ୍ରହୀ ଥିଲେ ଏବଂ ଅଧିକାଂଶ ସ୍ଥଳରେ କୃଷକମାନଙ୍କଠାରୁ ପ୍ରତ୍ୟକ୍ଷ ଭାବରେ ରାଜସ୍ୱ ଆଦାୟ କରିବାକୁ ଅଧିକ ସୁବିଧାଜନକ ମନେ କରୁଥିଲେ । ମାକ୍‌ସେ ରିପୋର୍ଟରେ ଲେଖାଅଛି ଯେ ମରହଟ୍ଟାମାନେ କଟକ ଜିଲ୍ଲାରେ ମୋଗଲ ଅମଳରେ କେବଳ ୧୬ ଜଣ ଜମିଦାର ଏବଂ ପୁରୀ ଜିଲ୍ଲାରେ କେବଳ ଜଣେ ଜମିଦାରଙ୍କୁ ସ୍ୱୀକୃତି ଦେଇଥିଲେ । ଜମିଦାରମାନେ ଅଧିକାଂଶ ସ୍ଥଳରେ ହିନ୍ଦୁ ରାଜାଙ୍କ ସମୟର ବିଭିନ୍ନ ରାଜାଙ୍କର ବଂଶଧର ଥିଲେ । କନିକା, ହରିହରପୁର, ପଟିଆ, ସୁକିନ୍ଦା, ମଧୁପୁର ପ୍ରଭୃତି ଏପରି ଜମିଦାର ଥିଲେ । ସଂକ୍ଷେପରେ ଏତିକି କୁହାଯାଇପାରେ ଯେ, ଓଡ଼ିଶାରେ ସାଧାରଣତଃ ହିନ୍ଦୁ ରାଜାମାନଙ୍କ ଅମଳରେ କୃଷକ ଏବଂ ରାଜାଙ୍କ ମଧ୍ୟରେ ଜମିରେ କେହି ମଧ୍ୟସ୍ୱତ୍ୱାଧିକାରୀ ନ ଥିଲେ । ଓଡ଼ିଶାର କେନ୍ଦ୍ର ରାଜା-ମାନଙ୍କ ଅଧୀନରେ ବହୁ ଅଞ୍ଚଳରେ କରଦ ରାଜାମାନେ ଥିଲେ । ସେମାନେ ଗ୍ରାମ ପ୍ରଧାନଙ୍କ ମାଧ୍ୟମରେ କୃଷକମାନଙ୍କଠାରୁ ରାଜସ୍ୱ ଆଦାୟ କରୁଥିଲେ । କରଦ ରାଜା ନ ଥିବା ଅଞ୍ଚଳରେ କେନ୍ଦ୍ର ରାଜାମାନେ ପ୍ରଧାନମାନଙ୍କ ମାଧ୍ୟମରେ ରାଜସ୍ୱ ଆଦାୟ କରୁଥିଲେ । ମୁସଲମାନ ଓ ମୋଗଲ ରାଜତ୍ୱ କାଳରେ ଚୌଧୁରୀ, କାନୁନ୍‌ଗୋ, ଅମିଲ୍, ସଦର କାନୁନଗୋ ପ୍ରଭୃତି ରାଜସ୍ୱ ଆଦାୟ କରୁଥିବା କର୍ମଚାରୀମାନେ ଜମିରେ ମାଲିକ ରୂପେ କାର୍ଯ୍ୟ କଲେ । ମାତ୍ର ସେମାନେ ପ୍ରକୃତରେ ରାଜସ୍ୱ ଆଦାୟ କରିବାପାଇଁ ରାଜାମାନଙ୍କ ଦ୍ୱାରା ନିଯୁକ୍ତ କର୍ମଚାରୀ ଥିଲେ । ମୋଗଲ ଓ ମୁସଲମାନ ରାଜାମାନଙ୍କ ସମୟରେ ମଧ୍ୟ ଅନେକ ମଧ୍ୟସ୍ୱତ୍ୱାଧିକାର ପଦବୀ ସୃଷ୍ଟି ହୋଇଥିଲା । କିନ୍ତୁ ସେମାନେ ଜମିର ଅଧିକାରୀ ବୋଲି ରାଜାମାନେ ସ୍ପଷ୍ଟ ଭାବରେ ସ୍ୱୀକୃତି ଦେଇ ନ ଥିଲେ ।

ଇଂରେଜମାନେ କିନ୍ତୁ ପ୍ରଥମରୁ ବହୁ ଲୋକଙ୍କୁ ଜମିର ମାଲିକ ବା ଜମିଦାର ବୋଲି ସ୍ୱୀକାର କଲେ, କାରଣ ସେତେବେଳକୁ ସେମାନେ ଭାରତର ଅନ୍ୟ ପ୍ରଦେଶମାନଙ୍କରେ ଜମିଦାର ପଦ ସୃଷ୍ଟି କରି ତାଙ୍କ ସଙ୍ଗରେ ରାଜସ୍ୱ ଆଦାୟପାଇଁ ଚିରସ୍ଥାୟୀ ବନ୍ଦୋବସ୍ତ କରି ସାରିଥିଲେ । ଓଡ଼ିଶାରେ ଯେଉଁମାନେ

ଜମିଦାର ବୋଲି ସ୍ୱୀକୃତ ଲାଭକଲେ ସେମାନଙ୍କ ମଧ୍ୟରେ ଆଳି, କନକା, କୁଜଙ୍ଗ, ଖୋରଧା, ପଟିଆ, ସୁକନ୍ଦା, ମଧୁପୁର ପ୍ରଭୃତି ପ୍ରାୟ ୫୦ଟି ଜମିଦାର ପୂର୍ବ ରାଜାମାନଙ୍କର ବଂଶଧର ଥିଲେ । ମରହଟ୍ଟାମାନେ ମଧ୍ୟ ସେମାନଙ୍କଠାରୁ ସାହାଯ୍ୟ ପାଇବାପାଇଁ ସେମାନଙ୍କୁ ଜମିଦାର ବୋଲି ସ୍ୱୀକାର କରିଥିଲେ । ସୁତରାଂ ୧୮୦୫ ମସିହାରେ ବ୍ରିଟିଶ ସରକାର ପ୍ରଥମେ ସେମାନଙ୍କ ସହିତ ଚିରସ୍ଥାୟୀ ବନ୍ଦୋବସ୍ତ କଲେ । ସେତେବେଳେ ଜମିରେ ରୟତ ଓ ଗ୍ରାମଗୋଷ୍ଠୀମାନଙ୍କର କ'ଣ ସ୍ୱତ୍ୱ ଥିଲା ତାହା ବିଚାର କଲେ ନାହିଁ କିମ୍ବା ଜମିରେ କୌଣସି ସର୍ଭେ କଲେ ନାହିଁ । ସୁତରାଂ ସରକାର ସେ ଅଞ୍ଚଳର ରୟତମାନଙ୍କୁ ଜମିଦାରଙ୍କ କର୍ତ୍ତୃତ୍ୱକୁ ସମ୍ପୂର୍ଣ୍ଣ ଭାବେ ଛାଡ଼ିଦେଲେ । ଜମିଦାରମାନଙ୍କ ଦେୟ ରାଜସ୍ୱ ଚିରସ୍ଥାୟୀ ଭାବରେ ନିର୍ଦ୍ଧାରିତ ହୋଇଥିଲେ ମଧ୍ୟ ରୟତମାନଙ୍କର ଦେୟ ରାଜସ୍ୱ ଚିରସ୍ଥାୟୀ ଭାବରେ ନିର୍ଦ୍ଧାରିତ ହୋଇ ନ ଥିଲା ।

ପୂର୍ବ ରାଜାମାନଙ୍କର ବଂଶଧରମାନଙ୍କ ସଙ୍ଗେ ଚିରସ୍ଥାୟୀ ବନ୍ଦୋବସ୍ତ କରିସାରିଲା ପରେ, ବ୍ରିଟିଶ୍ କମିସନର ଓ କଲେକ୍ଟରମାନଙ୍କ ପାଖରେ ପୂର୍ବଶାସନ କାଳରେ ଥିବା ଚୌଧୁରୀ, କାନୁନ୍‌ଗୋ, ତାଲୁକଦାର, ମକଦମ୍, ସରବରାକାର ପ୍ରଭୃତି ତାଙ୍କ ଅଧୀନରେ ଥିବା ଜମିର ମାଲିକ ଥିଲେ ବୋଲି ଦାବି କଲେ । କିନ୍ତୁ ସେମାନେ ଜମିର ପ୍ରକୃତ ମାଲିକ ଥିଲେ ବୋଲି କୌଣସି ଠିକ୍ ପ୍ରମାଣ ଦେଖାଇ ପାରିଲେ ନାହିଁ । ବ୍ରିଟିଶ୍ ସରକାର ଅସ୍ଥାୟୀ ଭାବରେ ରାଜସ୍ୱ ଆଦାୟ କରିବାପାଇଁ ସେମାନଙ୍କୁ ନିଯୁକ୍ତ କଲେ ଏବଂ ପରେ ସେମାନଙ୍କ ସ୍ୱତ୍ୱ ଠିକ୍ ଭାବରେ ବୁଝି ସେମାନଙ୍କ ସହିତ ଚିରସ୍ଥାୟୀ ବନ୍ଦୋବସ୍ତ କରାଯିବ ବୋଲି ଇଚ୍ଛା ପ୍ରକାଶ କଲେ । କିନ୍ତୁ ସେମାନଙ୍କୁ ଅସ୍ଥାୟୀ ଭାବରେ ରାଜସ୍ୱ ଆଦାୟ କରିବାର କ୍ଷମତା ଦେବାରୁ ପ୍ରକୃତରେ ସେମାନଙ୍କୁ ମାଲିକ ଭାବରେ ସ୍ୱୀକାର କଲେ ବୋଲି ଧରି ନିଆଗଲା । ସେମାନେ ଜମି ମାଲିକଙ୍କର ସବୁ ଅଧିକାର ପାଇଲେ । କେବଳ ଠିକ୍ ସମୟରେ ଖଜଣା ଦାଖଲ ନ କଲେ କିମ୍ବା ଜମିଦାରୀରେ ଅତ୍ୟାଚାର କଲେ, ସେମାନଙ୍କୁ ଉଚ୍ଛେଦ କରାଯିବ ବୋଲି ସରକାର ସର୍ତ୍ତ ରଖିଲେ । ବ୍ରିଟିଶ ସରକାର କୃଷକ ଓ ସରକାରଙ୍କ ମଧ୍ୟରେ ସବୁଆଡ଼େ ଜଣେ ଜମିଦାର ରଖୁଥିଲେ, ସୁତରାଂ ଏ ସମସ୍ତ ପ୍ରକାର ସ୍ୱତ୍ୱାଧିକାରୀଙ୍କୁ ଜମି ମାଲିକ ବା ଜମିଦାର ବୋଲି ସ୍ୱୀକୃତି ମିଳିଲା । କେବଳ ସେମାନଙ୍କ ସହିତ ଚିରସ୍ଥାୟୀ ବନ୍ଦୋବସ୍ତ ହୋଇ ନ ଥିଲା । ୧୮୦୫ ମସିହାରୁ ୧୮୧୫ ମସିହା ମଧ୍ୟରେ ସେମାନଙ୍କ ସହିତ କେତେକଥର ବନ୍ଦୋବସ୍ତ ହେଲା । ୧୮୧୫ ମସିହାରେ ସେମାନଙ୍କ ସହିତ ବଙ୍ଗଦେଶ ପରି ଚିରସ୍ଥାୟୀ ବନ୍ଦୋବସ୍ତ ହେବ ବୋଲି ପ୍ରସ୍ତାବ ରହିଥିଲା । କିନ୍ତୁ ୧୮୧୫ ମସିହା ଜୁନ୍ ମାସରେ କମ୍ପାନୀର କୋର୍ଟ ଅଫ

ଡାଇରେକ୍ଟରସ ଗୋଟିଏ ବାର୍ତ୍ତା ·ପଠାଇଲେ, ଯେ ଜମିରେ ସଂପୃକ୍ତ ଥିବା ବ୍ୟକ୍ତିମାନଙ୍କର ଅଧିକାର ଏବଂ ସରକାରଙ୍କ ସ୍ୱାର୍ଥ ବିଷୟରେ ଠିକ୍ ଖବର ନ ଜାଣି ଚିରସ୍ଥାୟୀ ଭାବରେ କୌଣସି ନିଷ୍ପତ୍ତି କରିବା ଉଚିତ ନୁହେଁ ।

· ସେତେବେଳେ ମଧ୍ୟ ଓଡ଼ିଶାରେ କାମ କରୁଥିବା କମ୍ପାନୀ କର୍ମଚାରୀମାନେ ଜାଣିପାରିଥିଲେ ଯେ, ଓଡ଼ିଶାରେ ଅଧିକାଂଶ ଅଞ୍ଚଳରେ ନିର୍ଦ୍ଦିଷ୍ଟ ଭାବରେ ଜମିଦାର ଶ୍ରେଣୀର ଲୋକ ନ ଥିଲେ । ବହୁ ଲୋକ ଅସମ୍ପୂର୍ଣ୍ଣ ଓ ପରସ୍ପର ବିରୋଧୀ ଜମିରେ ସ୍ୱତ୍ୱ ଦାବି କରୁଥିଲେ । ସେତେବେଳକୁ ମଧ୍ୟ ଇଂରେଜ ସରକାର ଉପଲବ୍ଧି କରି ପାରିଥିଲେ ଯେ, ଚିରସ୍ଥାୟୀ ବନ୍ଦୋବସ୍ତ ଗୋଟିଏ ଭୁଲ୍ ପଦ୍ଧତି । କେତେଗୁଡ଼ିଏ ଲୋକଙ୍କୁ ଭୂମିରେ ଜମିଦାର ବୋଲି ସ୍ୱୀକାର କରିବା ଦ୍ୱାରା ବହୁ ଲୋକଙ୍କର ସ୍ୱାର୍ଥର ବିରୁଦ୍ଧାଚରଣ ହୋଇଥିଲା ଏବଂ ସେ ପଦ୍ଧତି ଭବିଷ୍ୟତରେ ବହୁ ଅସୁବିଧା ସୃଷ୍ଟି କରିବ । ଏହା ସତ୍ତ୍ୱେ ଓଡ଼ିଶାରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରସ୍ତାବ ଚୂଡ଼ାନ୍ତ ଭାବରେ ବନ୍ଦ କରି ଦିଆଯାଇ ନ ଥିଲା । ୧୮୩୭ ମସିହାରେ ଚିରସ୍ଥାୟୀ ବନ୍ଦୋବସ୍ତ ସବୁଦିନପାଇଁ ବନ୍ଦ କରିବାର ନିଷ୍ପତ୍ତି ହେଲା ଏବଂ ସେ ବର୍ଷ ୩୦ ବର୍ଷ ପାଇଁ ବନ୍ଦୋବସ୍ତ ହେଲା ।

୧୮୦୫ ରୁ ୧୮୧୫ ମଧ୍ୟରେ ଜମିଦାରମାନଙ୍କ ସହିତ ବନ୍ଦୋବସ୍ତ-ମାଧ୍ୟମରେ ଗାଁ ମାନଙ୍କରେ ଚାଷ ଜମି ପରିମାଣ ଏବଂ ତହିଁରୁ ଆୟ ଠିକ୍ ଭାବରେ କଳନା ନ କରି ଜମିଦାରମାନଙ୍କ ଉପରେ ଅତ୍ୟଧିକ ଜମା ସ୍ଥିର କରାହୋଇଥିଲା, ବଢ଼ି ମରୁଡ଼ିପାଇଁ କୌଣସି ରିହାତି ଦିଆହୋଇ ନ ଥିଲା । ଫଳରେ ଓଡ଼ିଆ-ଜମିଦାରମାନେ ନିର୍ଦ୍ଦିଷ୍ଟ ଖଜଣା ଆଦାୟ କରି ପାରିଲେ ନାହିଁ ଏବଂ ସେମାନଙ୍କର ଜମିଦାରୀ କଲିକତାରେ ଅଳ୍ପ ଦାମ୍‌ରେ ନିଲାମ ହୋଇ ବଙ୍ଗାଳୀ ଦଲାଲ୍ ଓ ଠିକାଦାରମାନଙ୍କ ହାତରେ ପଡ଼ିଲା । ପ୍ରଧାନତଃ ଏହି କାରଣରୁ ୧୮୧୭ ମସିହାରେ ଖୋର୍ଦ୍ଧାରେ ପାଇକ ବିଦ୍ରୋହ ହୋଇଥିଲା । ଏହି କାରଣ ଯୋଗୁଁ ୧୮୦୫ ଠାରୁ ୧୮୩୭ ଖ୍ରୀଷ୍ଟାବ୍ଦ ମଧ୍ୟରେ ପ୍ରାୟ ୧୫୦୦ ଓଡ଼ିଶାର ଅସ୍ଥାୟୀ ବନ୍ଦୋବସ୍ତ ଜମିଦାରଙ୍କ ମାହାଲ କଲିକତାରେ ନିଲାମ ହୋଇ ଯାଇଥିଲା । ଅସ୍ଥାୟୀ ବନ୍ଦୋବସ୍ତ ହୋଇଥିବା ଜମିଦାରମାନେ ମାହାଲ ବିକି ଓ ଖର୍ଦ୍ଦ କରିବା ଏବଂ ଉତ୍ତରାଧିକାରୀଙ୍କ ମଧ୍ୟରେ ଭାଗ ଭାଗ କରିବା ଅଧିକାର ପାଇଥିଲେ । ଏହା ଫଳରେ ବହୁ ଜମିଦାରୀଙ୍କ ବିକି ହୋଇ ଯାଇଥିଲା ଏବଂ ଉତ୍ତରାଧିକାରୀଙ୍କ ମଧ୍ୟରେ ଭାଗ ଭାଗ ହୋଇ ଯାଇଥିଲା । ଜମି ସଙ୍ଗରେ ସଂପୃକ୍ତ ନ ଥିବା ବହୁ ମହାଜନ, ବ୍ୟବସାୟୀ ଏବଂ ଧନୀଲୋକ ମଧ୍ୟ ଜମିଦାରୀ କିଣିଥିଲେ । ୧୮୯୭ ମସିହା ବନ୍ଦୋବସ୍ତ ବେଳକୁ ବଡ଼ ବଡ଼ ଜମିଦାରଙ୍କ ସଂଖ୍ୟା ଅଳ୍ପ ଥିବା

ସ୍ଥଳେ, ଶ୍ରେଷ୍ଠ ଶ୍ରେଷ୍ଠ ଜମିଦାରଙ୍କ ସଂଖ୍ୟା ବହୁତ ବେଶି ହୋଇ ଯାଇଥିଲା । ବହୁ ଜମିଦାର ଜମିଦାରୀରେ ନ ରହି କଲିକତା ପ୍ରଭୃତି ସହରରେ ରହୁଥିଲେ । ସେମାନଙ୍କର ତହସିଲଦାର ଗୁମାସ୍ତା ପ୍ରଭୃତି କର୍ମଚାରୀ ରୟତମାନଙ୍କଠାରୁ ଖଜଣା ଆଦାୟ କରୁଥିଲେ ଓ ସେମାନେ ରୟତ ଓ ପ୍ରଜାମାନଙ୍କ ଉପରେ ବହୁ ଅତ୍ୟାଚାର କରୁଥିଲେ । ଜମିଦାରୀମାନଙ୍କରେ ଜମିଦାରମାନଙ୍କର ବହୁ ପରିମାଣ ନିଜ ଚାଷଜମି ଥିଲା । ସେ ସବୁ ଜମି ପ୍ରଜାମାନଙ୍କ ଦ୍ୱାରା ଚାଷ କରାଇ ଜମିଦାରମାନଙ୍କର କର୍ମଚାରୀମାନେ ଧାନ ଓ ଟଙ୍କା ଆଦାୟ କରି ଜମିଦାରମାନଙ୍କୁ ଦେଉଥିଲେ ଏବଂ ସେଥିରୁ ସେମାନେ ନିଜେ ମଧ୍ୟ ବହୁ ଅର୍ଥ ଆତ୍ମସାତ୍ କରୁଥିଲେ । ନିଜ ଚାଷଜମିରେ ଚାଷୀଙ୍କର ରୟତି ସ୍ୱତ୍ୱ ସୃଷ୍ଟି ହୋଇପାରିବ ନାହିଁ ବୋଲି ବନ୍ଦୋବସ୍ତ ଆଇନରେ ଉଲ୍ଲେଖ ଥିଲା ।

୧୭୯୩ ମସିହାରେ ବଙ୍ଗଳାର ଚିରସ୍ଥାୟୀ ବନ୍ଦୋବସ୍ତ ଘୋଷଣାମାରେ ଲେଖାଥିଲା ଯେ, ଜମିଦାରମାନେ ରୟତମାନଙ୍କର ପାରମ୍ପରିକ ସ୍ୱତ୍ୱାଧିକାର ରକ୍ଷା କରିବେ । ମାତ୍ର ପାରମ୍ପରିକ ସ୍ୱତ୍ୱାଧିକାର ସବୁ କଅଣ ତାହା ଲେଖା ନ ଥିଲା । ତେଣୁ ଜମିଦାରମାନେ ରୟତମାନଙ୍କର ପାରମ୍ପରିକ ସ୍ୱତ୍ୱାଧିକାର ମାନିଲେ ନାହିଁ କିମ୍ବା ରୟତମାନେ ତାହା ଜମିଦାରମାନଙ୍କ ବିରୋଧରେ କଚେରିମାନଙ୍କରେ ସାବ୍ୟସ୍ତ କରିପାରିଲେ ନାହିଁ । ୧୮୫୯ ମସିହାରେ ରେଣ୍ଟଆକ୍ଟ ଅଫ୍ ବେଙ୍ଗଲ ବା ବଙ୍ଗଳା ଖଜଣା ଆଇନ୍ ପାସ ହେଲା । ତଥାପି ୧୮୮୩ ମସିହାରେ ବଙ୍ଗ-ଦେଶର ଗଭର୍ଣ୍ଣର ନିଜେ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରେ ବର୍ଣ୍ଣନା କରିଥିଲେ ଯେ, ୧୭୯୩ ମସିହାରୁ ୧୮୫୯ ମସିହା ପର୍ଯ୍ୟନ୍ତ ୬୬ ବର୍ଷ ମଧ୍ୟରେ ଜମିଦାରମାନଙ୍କର କ୍ଷମତା ଓ ଧାନ ବହୁଗୁଣରେ ବଢ଼ି ଯାଇଥିଲା । କିନ୍ତୁ ଗ୍ରାମଗୋଷ୍ଠୀମାନ ଲୋପ ପାଇ ଯାଇଥିଲା ଏବଂ ଚାଷୀମାନଙ୍କର ସମସ୍ତ ପାରମ୍ପରିକ ସ୍ୱତ୍ୱ ଲୋପ ପାଇ ଯାଇଥିଲା । ସେ ସବୁ ସ୍ୱତ୍ୱ ଜମିଦାରମାନେ ଅଧିକାର କରି ନେଇଥିଲେ । ୧୮୫୯ ମସିହା ଖଜଣା ଆଇନ୍ ସତ୍ତ୍ୱେ ମଧ୍ୟ ଜମିଦାରମାନେ ସହଜରେ ରୟତମାନଙ୍କୁ ଉଚ୍ଛେଦ କରି ପାରୁଥିଲେ, ୧୮୫୯ ଓ ୧୮୮୫ ଖଜଣା ଆଇନ୍ ଅନୁସାରେ ଜମିରେ ବାରବର୍ଷ ଧରି ଚାଷ କରିଥିବା ରୟତମାନଙ୍କୁ ରୀତିମତ ନ୍ୟାୟସଙ୍ଗତ ଖଜଣା ଦେଉଥିବା ପର୍ଯ୍ୟନ୍ତ ଜମିଦାରମାନେ ଜମିରୁ ଉଚ୍ଛେଦ କରିପାରିବେ ନାହିଁ ବୋଲି ଆଇନ ହେଲା । ମାତ୍ର ଅଧିକାଂଶ ରୟତ ସେ ଆଇନ୍ ଜାଣି ନ ଥିଲେ ଏବଂ କଚେରିମାନଙ୍କରେ ସେମାନଙ୍କର ସ୍ୱତ୍ୱ ସାବ୍ୟସ୍ତ କରିପାରି ନ ଥିଲେ । ଏହି ଅବସ୍ଥା କଟକ, ପୁରୀ, ବାଲେଶ୍ୱର ଜିଲ୍ଲାରେ ମଧ୍ୟ ଦେଖା ଯାଇଥିଲା । ମାକ୍‌ସେ-ବନ୍ଦୋବସ୍ତ ରିପୋର୍ଟରେ ଲେଖା ଅଛି ଯେ, ଜମିଦାରମାନେ ଜାଣିଶୁଣି ରୟତମାନଙ୍କୁ ବାରବର୍ଷ ପର୍ଯ୍ୟନ୍ତ କମାନ୍ୱୟରେ ଚାଷ କରିବାକୁ ଦେଉ ନ ଥିଲେ ।

ଦ୍ୱିତୀୟରେ ୧୮୫୯ ଏବଂ ୧୮୮୫ ଖଜଣା ଆଇନମାନଙ୍କରେ ନ୍ୟାୟ-ସଙ୍ଗତ ଖଜଣା କଅଣ ଉଲ୍ଲେଖ ନ ଥିଲା । ୧୯୧୩ ମସିହା ପ୍ରଜାସ୍ୱତ୍ୱ ଆଇନରେ ୧୮୮୫ ମସିହା ଆଇନର କେତେକ ତ୍ରୁଟି ଦୂର ହୋଇଥିଲା । ମାତ୍ର ଜମି ବିକ୍ରି କଲାବେଳେ ଜମି କିଣୁଥିବା ଲୋକଙ୍କୁ ଦାଖଲ ଖାରଜ କରିବା ପାଇଁ ଜମିଦାରଙ୍କୁ ଜମି ଦାମର ଶତକଡ଼ା ୨୫ ଭାଗ ପର୍ଯ୍ୟନ୍ତ ଦେବାକୁ ପଡ଼ୁଥିଲା । ୧୯୩୮ ପ୍ରଜାସ୍ୱତ୍ୱ ଆଇନରେ ଏହା ଉଠାଇ ଦିଆଯାଇଥିଲା ।

ଜମିଦାରମାନେ ଖଜଣା ବ୍ୟତୀତ ଅନ୍ୟ ପାଉଣା ନେଇ ପାରିବେ ନାହିଁ ବୋଲି ଯଦିଓ ଆଇନ୍ ପାସ୍ ହୋଇଥିଲା, ବାସ୍ତବ କ୍ଷେତ୍ରରେ ସେମାନେ ରୟତମାନଙ୍କଠାରୁ ବହୁ ପ୍ରକାର ବେଆଇନ୍ ପାଉଣା ଆଦାୟ କରୁଥିଲେ । ଏସବୁ ପାଉଣା ୩୦ ବର୍ଷିଆ ବନ୍ଦୋବସ୍ତ ଅଞ୍ଚଳ ଅପେକ୍ଷା ଚିରସ୍ଥାୟୀ ବନ୍ଦୋବସ୍ତ ଅଞ୍ଚଳମାନଙ୍କରେ ଅଧିକ ମାତ୍ରାରେ ଆଦାୟ ହେଉଥିଲା । ୩୦ ବର୍ଷିଆ ବନ୍ଦୋବସ୍ତ ଅଞ୍ଚଳରେ ଦୁଇ ତିନିଥର ବନ୍ଦୋବସ୍ତ ହେବାରୁ ଏବଂ ରୟତମାନଙ୍କୁ ଜମିରେ ସ୍ୱତ୍ୱଥିବା ପଟ୍ଟା ମିଳୁଥିବାରୁ, ସେମାନଙ୍କର ସ୍ୱତ୍ୱ ଅନେକ ପରିମାଣରେ ସୁରକ୍ଷିତ ହୋଇ ପାରିଥିଲା । ଉତ୍ତର ଓଡ଼ିଶାରେ ୧୮୩୭ ମସିହାରେ ବନ୍ଦୋବସ୍ତ ହୋଇଥିଲା । ଦ୍ୱିତୀୟ ବନ୍ଦୋବସ୍ତ ୧୮୬୭ ମସିହାରେ ହେବାର ଥିଲା । ମାତ୍ର ୧୮୬୬ ମସିହାରେ ନ'ଅଙ୍କ ଦୁର୍ଭିକ୍ଷ ହେବାରୁ ବନ୍ଦୋବସ୍ତ ତିରିଶ ବର୍ଷପାଇଁ ଘୁଞ୍ଚାଇ ଦିଆଯାଇଥିଲା । ୧୮୯୦ ଠାରୁ ୧୮୯୭ ମଧ୍ୟରେ ମାକ୍‌ସେ ସାହେବଙ୍କ ତତ୍ତ୍ୱାବଧାନରେ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାରେ ବିଧିବଦ୍ଧ ବନ୍ଦୋବସ୍ତ ହୋଇଥିଲା । ଆଳି, କନିକା, ସୁକିନ୍ଦା, ଡୋମପଡ଼ା, ଦର୍ପଣି, ପଟିଆ ପ୍ରଭୃତି ଚିରସ୍ଥାୟୀ ବନ୍ଦୋବସ୍ତ ଅଞ୍ଚଳରେ ବ୍ରିଟିଶ୍ ସରକାର ଚିରକାଳପାଇଁ ଜମା ଧାର୍ଯ୍ୟ କରିଥିଲେ ସୁଦ୍ଧା ଜମିଦାରମାନେ ଥରକୁଥର ବନ୍ଦୋବସ୍ତ କରି ରୟତମାନଙ୍କର ଖଜଣା ବଢ଼ାଉଥିଲେ । ଡୋମପଡ଼ା ଜମିଦାରୀରେ ସାନ ବନ୍ଦୋବସ୍ତ କରି ଖଜଣା ବଢ଼ାଇବାପାଇଁ ରାଜାଙ୍କ ଉଦ୍ୟମକୁ ପ୍ରଜାମାନେ କିପରି ବିରୋଧ କରିଥିଲେ ଏବଂ ବ୍ରିଟିଶ୍ ସରକାରଙ୍କ ସାହାଯ୍ୟରେ ଡୋମପଡ଼ା ରାଜା ତାହା ଦମନ କରିଥିଲେ ସେ ବିଷୟରେ ଫକୀରମୋହନ ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି ।

ଖଜଣା ବୃଦ୍ଧି ସଙ୍ଗେ ସଙ୍ଗେ ଚିରସ୍ଥାୟୀ ବନ୍ଦୋବସ୍ତ ମାହାଲମାନଙ୍କରେ ବହୁ ପ୍ରକାର ବେଆଇନ୍ ପାଉଣା ଆଦାୟ ହେଉଥିଲା । ସେ ମାହାଲମାନଙ୍କରେ ଜମିଦାରମାନେ ଗଡ଼ଜାତ ରାଜାମାନଙ୍କ ପରି କ୍ଷମତା ବିସ୍ତାର କରୁଥିଲେ । ହଣ୍ଟର ଓ ଷ୍ଟର୍ଲିଙ୍ଗ ଇତିହାସରେ ଏବଂ ୧୮୯୭ ମସିହା ମାକ୍‌ସେ ବନ୍ଦୋବସ୍ତ ରିପୋର୍ଟରେ, କନିକା, ଆଳି ପ୍ରଭୃତି ମାହାଲମାନଙ୍କରେ ପ୍ରଜାମାନଙ୍କ ଉପରେ

ଅତ୍ୟାଚାର, ବେଆଇନ୍ ପାଉଣା ଆଦାୟ ଏବଂ ବେଠି ପ୍ରଭୃତି ବିଷୟରେ ବିଶଦ ବିବରଣୀମାନ ଦିଆଯାଇଛି । ଉଦାହରଣ ସ୍ୱରୂପ କନିକା, ଆଳି ପ୍ରଭୃତି ଜମିଦାରୀରେ ଆଇନ ସମ୍ମତ ଖଜଣା ଓ ଦାଖଲ ଖାରଜ ପାଉଣା ବ୍ୟତୀତ ଭୁଲ ସଂଶୋଧନ ପାଉଣା, ଜମିର ରେକର୍ଡ ଖୋଜି ନକଲ କରିବା ପାଉଣା, ଦରଖାସ୍ତ ଫରମ ପାଇଁ ପଇସା, କାଠ କୋଇଲା ଟିକସ, ମହୁମାରିବା ଟିକସ, ଗୋବର-ଖାତ ଟିକସ, ଧାନଗଦା କରିବା ଟିକସ, ଚୁଲି ଟିକସ, ଝୁରକା ଟିକସ, ବାଜେ ଖରଚ ଟିକସ, ଘୁନିଆଁ ଭେଟି, ଦଶହରା ଭେଟି, ପିଆଦା ଖର୍ଚ୍ଚ, ହରିଶଂକରୀ, ପୂର୍ଣ୍ଣିମା ଖରଚ୍ଚ, ଡାକ୍‌ସେସ୍ ପ୍ରଭୃତି ବହୁ ପ୍ରକାର ଟିକସ ପ୍ରଚଳିତ ଥିଲା । ଏ ସବୁ ଟିକସ ବ୍ୟତୀତ ପ୍ରଜାମାନେ ଉତ୍ପାଦନ କରୁଥିବା ପଦାର୍ଥ ଜମିଦାର ଓ ତାଙ୍କ କର୍ମଚାରୀମାନଙ୍କୁ ଅଳ୍ପ ଦରରେ ବିକିବା, ଜମିଦାରଙ୍କ ନିଜ ଚାଷ ଜମିରେ ବର୍ଷକୁ କେତେ ଦିନ ବେଠି କରିବା ପ୍ରଭୃତି ବହୁ ପ୍ରକାର ବେଆଇନ୍ ପାଉଣା ଜମିଦାରମାନେ ଆଦାୟ କରୁଥିଲେ । ଏସବୁ ପାଉଣା ଆଦାୟର ମାତ୍ରା ୩୦ ବର୍ଷିଆ ବନ୍ଦୋବସ୍ତ ଜମିଦାରୀମାନଙ୍କରେ କମ୍ ଥିଲା । ତଥାପି ସେ ସବୁ ଜମିଦାରୀରେ ମଧ୍ୟ ଜମିଦାରମାନଙ୍କର କର୍ମଚାରୀମାନେ ବହୁ ପ୍ରକାର ପାଉଣା ରୟତମାନଙ୍କଠାରୁ ଆଦାୟ କରି ସେମାନଙ୍କୁ ଉତ୍ପୀଡ଼ନ କରୁଥିଲେ ।

ଉଭୟ ପ୍ରକାର ଜମିଦାରୀ ପରିଚାଳନାରେ ବହୁ ପ୍ରକାର ତ୍ରୁଟି ଥିଲା । ଅଧିକାଂଶ ଜମିଦାର ପରିବାରର ଲୋକ ଜମିଦାରୀରେ ରହୁ ନ ଥିଲେ କିମ୍ବା ପ୍ରଜାମାନଙ୍କ ସହିତ ସେମାନଙ୍କର ପ୍ରତ୍ୟକ୍ଷ ସମ୍ପର୍କ ନ ଥିଲା । ଅସ୍ଥାୟୀ ବନ୍ଦୋବସ୍ତ ଜମିଦାରୀ ସବୁ ଜମିଦାର ପରିବାରର ଲୋକଙ୍କ ମଧ୍ୟରେ ଭାଗ ଭାଗ ହୋଇ ଯାଉଥିଲା ଏବଂ ଜମିଦାରୀମାନଙ୍କରେ ବହୁ ଅଂଶୀଦାର ଥିଲେ । ଅଂଶୀଦାର-ମାନଙ୍କ ମଧ୍ୟରେ ବହୁ କଳହ ଓ ମାଲି ମକଦ୍ଦମା ହେଉଥିଲା । ବହୁ ଜମିଦାର ମଧ୍ୟ ଋଣଗ୍ରସ୍ତ ହେଉଥିଲେ । ଜମିଦାର ଅତ୍ୟନ୍ତ ଋଣଗ୍ରସ୍ତ ହେଲେ ବା ଜମିଦାରୀ ପରିଚାଳନାରେ ଅତ୍ୟନ୍ତ ବିଭ୍ରାଟ ହେଲେ କିମ୍ବା ଜମିଦାର ନାବାଳକ ହୋଇଥିଲେ, କୋର୍ଟ ଅଫ୍ ଓ୍ୱାର୍ଡସ୍ ଆଇନ ଅନୁସାରେ ବ୍ରିଟିଶ୍ ସରକାର ଜମିଦାରୀ ପରିଚାଳନା ଭାର ହାତକୁ ନେଉଥିଲେ । ଅନେକ ଜମିଦାରୀ ପାଞ୍ଚ କିମ୍ବା ସାତବର୍ଷ ଦୀର୍ଘକାଳ କୋର୍ଟ ଅଫ୍ ଓ୍ୱାର୍ଡ୍‌ସ୍ ଅଧୀନରେ ରହୁଥିଲା ।

ଏପରି ପରିସ୍ଥିତିରେ ଜମିଦାରମାନେ କୃଷିରେ କିଛି ଉନ୍ନତି କରି ପାରୁ ନ ଥିଲେ । ବରଂ ସେମାନେ ସବୁଆଡ଼େ କୃଷି ଉନ୍ନତିରେ ଅନ୍ତରାୟ ଥିଲେ । ଜମିଦାରମାନଙ୍କ ଯୋଗୁଁ ସରକାର ପ୍ରତ୍ୟକ୍ଷ ଭାବରେ କୃଷି ଉନ୍ନତି କରି ପାରୁ ନ ଥିଲେ କିମ୍ବା ବଢ଼ି ମରୁଡ଼ି ପରି ପ୍ରାକୃତିକ ବିପର୍ଯ୍ୟୟ ସମୟରେ ଖଜଣା ଛାଡ଼

କରି ପାରୁ ନ ଥିଲେ । ଉଭୟ ଚିରସ୍ଥାୟୀ ଓ ଅସ୍ଥାୟୀ ବନ୍ଦୋବସ୍ତ ମାହାଲ-ମାନଙ୍କରେ ଜମିଦାରମାନଙ୍କର ବହୁ ପରିମାଣ ନିଜ ଯୋତ ଏବଂ ନିଜ ଚାଷ ଜମି ଥିଲା । ସେଗୁଡ଼ିକ ଚାଷୀମାନେ ଭାଗ ବା ସଞ୍ଜା ପ୍ରଣାଳୀରେ ଚାଷ କରୁଥିଲେ । ସେ ସମ୍ପତ୍ତିରେ ରୟତି ସ୍ୱତ୍ୱ ହୋଇପାରିବ ନାହିଁ ବୋଲି ବନ୍ଦୋବସ୍ତ ଆଇନ-ମାନଙ୍କରେ ଲିପିବଦ୍ଧ ଥିଲା । ଭାଗଚାଷୀମାନେ ପରମ୍ପରା ଅନୁସାରେ ଉତ୍ପାଦନର ଅଧା ଭାଗ ଜମି ମାଲିକମାନଙ୍କୁ ଦେଉଥିଲେ । ସେମାନଙ୍କର ଜମିରେ କିଛି ସ୍ୱତ୍ୱ ନ ଥିଲା । ଜମି ମାଲିକମାନେ ମନ ଇଚ୍ଛାରେ ଯେ କୌଣସି ସମୟରେ ସେମାନଙ୍କଠାରୁ ଜମି ଛଡ଼ାଇ ନେଇ ପାରୁଥିଲେ । ଜମିଦାରମାନଙ୍କ ନିଜ ଚାଷ, ନିଜ ଯୋତ ଜମି ବ୍ୟତୀତ ମହାଜନ, ଜମିଚାଷ ନ କରୁଥିବା ବ୍ୟକ୍ତି ଏବଂ ବହୁ ରୟତିସ୍ୱତ୍ୱ ପାଇଥିବା ଜମିମାଲିକଙ୍କ ହାତରେ ବହୁ ପରିମାଣ ଜମି ଠୁଳ ହୋଇଥିଲା । ସେଗୁଡ଼ିକ ସେମାନେ ନିଜ ହାତରେ ଚାଷ କରି ନ ପାରି ଭାଗଚାଷୀମାନଙ୍କ ଦ୍ୱାରା ଚାଷ କରାଉଥିଲେ । କାଳକ୍ରମେ ଲୋକସଂଖ୍ୟା ବୃଦ୍ଧି ଓ ଧନୀ ଲୋକଙ୍କ ହାତରେ ବହୁ ଜମି ଠୁଳ ହେବା ହେତୁ ଭୂମିହୀନ ଓ ଅତି ଅଳ୍ପ ଜମି ଥିବା ପରିବାରଙ୍କ ସଂଖ୍ୟା ବୃଦ୍ଧି ପାଇବାରେ ଲାଗିଲା । ସେ ପରିବାରମାନେ ଅତି ଦରିଦ୍ର ଥିଲେ ଏବଂ ଜମିରେ ଚାଷ କାମ ବ୍ୟତୀତ ଅନ୍ୟ କୌଣସି ବୃତ୍ତିରେ କାମ କରିବାକୁ ସୁଯୋଗ ପାଉ ନ ଥିଲେ । ଅଥଚ ଚାଷକାମ ପାଇଁ ସେମାନଙ୍କ ହାତରେ ଜମି ନ ଥିଲା । ତେଣୁ ସେମାନେ ଭାଗଚାଷୀ ବା କୃଷି ଶ୍ରମିକ ଭାବରେ ଜୀବିକା ନିର୍ବାହ କରିବାକୁ ବାଧ୍ୟ ହେଉଥିଲେ । ଜମି ବର୍ଦ୍ଧି, ଖର୍ଦ୍ଦିରେ ଶତକଡ଼ା ୬୦ ରୁ ୭୫ ଭାଗ ଜମି ଚାଷ କରୁଥିବା ଲୋକଙ୍କ ଜମି ଚାଷ ନ କରୁଥିବା ଲୋକଙ୍କ ହାତକୁ ଚାଲି ଯାଉଥିଲା । ସେମାନେ ଜମି ଭାଗ ଲଗାଇ, ବିନା ଖର୍ଚ୍ଚ, ବିନା ପରିଶ୍ରମରେ ଜମିର ଉତ୍ପାଦନରୁ ଅଧା ଭାଗ ପାଉଥିଲେ । ଏହା ଗୋଟିଏ ଲାଭଜନକ ବ୍ୟବସାୟ ହୋଇଥିବାରୁ ବିଭିନ୍ନ ଅନ୍ୟ ବୃତ୍ତିରେ ରୋଜଗାର କରୁଥିବା ବ୍ୟକ୍ତିମାନେ ଗାଁମାନଙ୍କରେ ଜମି କିଣି ଭାଗ ଲଗାଇ ଦେଉଥିଲେ । ମହାଜନ ଓ ଜମିଦାର ମାନଙ୍କର କରଜ ଶୁଝି ନ ପାରି ମଧ୍ୟ ବହୁ ଚାଷୀ ତାଙ୍କ ଜମି ବିକ ଦେଉଥିଲେ କିମ୍ବା ମହାଜନମାନେ କୋର୍ଟରେ ମକଦମା କରି ନିଲମ କରାଇ ନେଉଥିଲେ । ବହୁ ସ୍ଥାନରେ ନିଜ ଜମି ବିକ୍ରି କିମ୍ବା ନିଲମ ହୋଇଗଲା ପରେ ସେହି ଜମିର ଚାଷୀ ଭାଗଚାଷୀ ରୂପେ ଚାଷ କରୁଥିଲେ ।

ଅଧିକାଂଶ ଭୂମିହୀନ ଲୋକ ସେମାନଙ୍କ ସାରା ଜୀବନ କୃଷି ମୂଲିଆ ଭାବରେ କାମ କରୁଥିଲେ । ଜମିର ମାଲିକାନା ଓ ଚାଷର ବରାଦ ଅନ୍ୟ ଲୋକଙ୍କ ହାତରେ ଥିଲା । ମୂଲିଆମାନେ କେବଳ ମଜୁରି ନେଇ କାମ କରିବାର ଲୋକ ଥିଲେ । ବର୍ଷର ଅନେକ ମାସରେ, ଯେତେବେଳେ ବିଲରେ କିଛି କାମ

ନ ଥାଏ, କୁଲିଅମାନେ କାମ ନ ପାଇ ଭୋକ ଉପବାସରେ ରହୁଥିଲେ । ବଢ଼ି, ମରୁଡ଼ି ପ୍ରଭୃତି ହେତୁ ଫସଲ ନଷ୍ଟ ହୋଇ ଜମି ପଡ଼ିଆ ପଡ଼ିଲେ, ଉଭୟ ଚାଷୀ ଓ ମଜୁରିଆ ବେକାର ହୋଇ ଯାଉଥିଲେ । ଅଧିକାଂଶ ଅଞ୍ଚଳରେ ଗାଁମାନଙ୍କରେ ଚାଷୀମାନେ କେବଳ ଗୋଟିଏ ଧାନ ଫସଲ ଉପରେ ନିର୍ଭର କରୁଥିଲେ । ଗାଁ ରେ କୁଟୀରଶିଳ୍ପରେ ରୋଜଗାର କରିବା ବା କାମ ପାଇବାର ବିଶେଷ କିଛି ସୁବିଧା ନ ଥିଲା । ଅଧିକାଂଶ ଚାଷୀ ‘ଦାରିଦ୍ର୍ୟ ଓ ବେକାରି ହେତୁ ଋଣ କରକରେ ବୁଡ଼ିଥିଲେ । ୧୯୪୭ ମସିହା ପୂର୍ବରୁ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାର ଗାଁମାନଙ୍କରେ ଜମିଜମା ବ୍ୟବସ୍ଥା ଓ ଚାଷୀ ମୂଲିଆମାନଙ୍କ ଅବସ୍ଥା ଊଣା ଅଧିକ ଏହିପରି ଥିଲା ।

ଦକ୍ଷିଣ ଓଡ଼ିଶାର ଗଞ୍ଜାମ ଓ କୋରାପୁଟ ଜିଲ୍ଲାର ଅନେକ ଅଞ୍ଚଳରେ ଇଂରେଜମାନେ ଓଡ଼ିଶା ଅଧିକାର କଲା ପୂର୍ବରୁ ୧୮୦୨ ମସିହାରୁ ଜମିମାଲିକ-ମାନଙ୍କ ସହିତ ଚିରସ୍ଥାୟୀ ବନ୍ଦୋବସ୍ତ କରି ସାରିଥିଲେ । ପୁରା କୋରାପୁଟ ଜିଲ୍ଲା ଚିରସ୍ଥାୟୀ ବନ୍ଦୋବସ୍ତ ଜୟପୁର ଜମିଦାରୀରେ ଥିଲା । ଗଞ୍ଜାମ ଜିଲ୍ଲାରେ ମଧ୍ୟ ଖଲ୍ଲିକୋଟ, ଧରାକୋଟ, ଚିକିଟି, ଜରଡ଼ା ପ୍ରଭୃତି ପ୍ରାୟ ୫୦ ଟି ଜମିଦାରୀରେ ଚିରସ୍ଥାୟୀ ବନ୍ଦୋବସ୍ତ ହୋଇଥିଲା । ଉତ୍ତର ଓଡ଼ିଶାର ଚିରସ୍ଥାୟୀ ବନ୍ଦୋବସ୍ତ ମାହାଲମାନଙ୍କରେ ଯେଉଁ ଦୋଷ ତ୍ରୁଟି ଥିଲା, ଗଞ୍ଜାମ ଓ କୋରାପୁଟ ଜିଲ୍ଲାର ଚିରସ୍ଥାୟୀ ବନ୍ଦୋବସ୍ତ ମାହାଲମାନଙ୍କରେ ମଧ୍ୟ ସେହି ଦୋଷତ୍ରୁଟି ଥିଲା । କିନ୍ତୁ ଦକ୍ଷିଣ ଓଡ଼ିଶାରେ ବହୁ ଜମିଦାରୀରେ ଜମିଦାରମାନେ ରୟତମାନଙ୍କଠାରୁ ଟଙ୍କା ଆକାରରେ ଦୀର୍ଘକାଳ ଖଜଣା ସ୍ଥିର ନ କରି ଶସ୍ୟ ଆକାରରେ ବର୍ଷକୁ ବର୍ଷ ସ୍ଥିର କରୁଥିଲେ । ବସ୍ତୁତଃ ଜମିଦାରଙ୍କ ଚକ୍ଷୁରେ ସବୁ ରୟତ ଭାଗଚାଷୀ ରୂପେ ଗଣ୍ୟ ହେଉଥିଲେ । ପ୍ରତିବର୍ଷ କରଣମାନେ ପ୍ରତି ଗାଁରେ ଫସଲ ଦେଖି ଜମିଦାରଙ୍କ ପ୍ରାପ୍ୟ ଫସଲର ଅଧା ପରିମାଣ କଳନା କରୁଥିଲେ । ସେହି ପ୍ରାପ୍ୟ ଫସଲର ଦାମ୍ ଅନୁସାରେ ଟଙ୍କାରେ ପରିଣତ ହୋଇ ରୟତମାନଙ୍କଠାରୁ ଆଦାୟ ହେଉଥିଲା । ଏହି ପଦ୍ଧତି ହେତୁ ଜମିର ଖଜଣା ପ୍ରତିବର୍ଷ ଭିନ୍ନ ହେଉଥିଲା ଏବଂ ରୟତମାନେ ଅତ୍ୟଧିକ ପରିମାଣ ଖଜଣା ଦେଉଥିଲେ ।

ଗଞ୍ଜାମ ଜିଲ୍ଲାରେ କେତେକ ଇନାମ ମାହାଲ ଥିଲା । ଇନାମ୍‌ଦାରମାନେ ଜମିଦାର ହୋଇ ଯାଇଥିଲେ ଏବଂ ଇନାମ ଇଷ୍ଟେଟରେ ଥିବା ପ୍ରଜାମାନଙ୍କର ରୟତି ସ୍ୱତ୍ୱ ନ ଥିଲା । ଇନାମଦାର ଇଚ୍ଛା ଅନୁସାରେ ରୟତମାନଙ୍କୁ ଜମିରୁ ଉଚ୍ଛେଦ କରି ପାରୁଥିଲେ ।

ଜମିଦାରୀ ଓ ଇନାମ୍ ଇଷ୍ଟେଟ ବ୍ୟତୀତ ଗଞ୍ଜାମରେ କେତେକ ରଯ୍ୟତଓ୍ୱାରୀ ଅଞ୍ଚଳ ଥିଲା । ରଯ୍ୟତଓ୍ୱାରୀ ଅଞ୍ଚଳରେ ମଧ୍ୟ ମଧ୍ୟସ୍ୱତ୍ୱାଧିକାରୀ ନ ଥିଲେ । ରଯ୍ୟତମାନେ ପ୍ରତ୍ୟକ୍ଷ ଭାବରେ ସରକାରଙ୍କୁ ଖଜଣା ଦେଉଥିଲେ । ସେମାନଙ୍କ ଜମି ରେକର୍ଡ କରଣମାନେ ରଖୁଥିଲେ । ଏ ପଦ୍ଧତିରେ ମଧ୍ୟ ରଯ୍ୟତମାନେ ଅତ୍ୟାଚାରିତ ହେଉଥିଲେ । ଖଜଣା ଜମିର ଉତ୍ପାଦନର ଅଧା ପରିମାଣ ଧାର୍ଯ୍ୟ ହେଉଥିଲା । ଖଜଣା ଧାର୍ଯ୍ୟ କରୁଥିବା ଏବଂ ଆଦାୟ କରୁଥିବା କରଣ ଓ ଅନ୍ୟ କର୍ମଚାରୀମାନେ ଦୁର୍ନୀତିଗ୍ରସ୍ତ ଓ ଅତ୍ୟାଚାରୀ ଥିଲେ । ଖଜଣା ଦେଇ ପାରୁ ନ ଥିବା ରଯ୍ୟତମାନେ ଶାରୀରିକ ଦଣ୍ଡ ମଧ୍ୟ ଭୋଗୁଥିଲେ ।

ଜୟପୁର ଜମିଦାରୀରେ ୧୮୦୨ ମସିହାରେ ଚିରସ୍ଥାୟୀ ବନ୍ଦୋବସ୍ତ ହୋଇଥିଲା । ସମଗ୍ର ଜମିଦାରୀ ଅଞ୍ଚଳ ଜଙ୍ଗଲ ଓ ପାହାଡ଼ ପରିପୂର୍ଣ୍ଣ ଥିଲା ଏବଂ ପ୍ରାୟ ସବୁ ଅଧିବାସୀ ଆଦିବାସୀ ଥିଲେ । କୌଣସି ବାହାରର ରାଜା ଏ ଅଞ୍ଚଳ କେବେ ଅଧିକାର କରି ନ ଥିଲେ । ସୁତରାଂ ଏ ଅଞ୍ଚଳର ସୀମା, ଅଧିବାସୀଙ୍କ ଅବସ୍ଥା ବିଷୟରେ ବାହାର ଜଗତର ଲୋକମାନଙ୍କର କୌଣସି ଜ୍ଞାନ ନ ଥିଲା । ୧୮୦୨ ମସିହାରେ ଏ ଅଞ୍ଚଳରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଚଳିତ ହେବା ପରେ ସରକାର ରାଜାଙ୍କ ଶାସନରେ କୌଣସି ହସ୍ତକ୍ଷେପ କରୁ ନ ଥିଲେ । ରାଜା ଓ ତାଙ୍କ କର୍ମଚାରୀମାନେ ପ୍ରଜାମାନଙ୍କ ଉପରେ ଯଥେଚ୍ଛାଚାର ଶାସନ କରୁଥିଲେ । ୧୮୪୮ ମସିହାରେ ପ୍ରଜାମାନେ ରାଜକର୍ମଚାରୀଙ୍କ ଅତ୍ୟାଚାର ବିରୋଧରେ ବିଶାଖାପାଟଣା କଲେକ୍ଟରଙ୍କ ପାଖରେ ବହୁ ଆପତ୍ତି କରିଥିଲେ । ୧୮୪୯ ମସିହାରେ ରାଜା ଓ ତାଙ୍କ ପୁତ୍ରଙ୍କ ମଧ୍ୟରେ ଭୀଷଣ କଳହ ଲାଗିଥିଲା । ୧୮୬୩ ମସିହାରେ ବ୍ରିଟିଶ ସରକାର ଜମିଦାରୀର ଶାସନ ହାତକୁ ନେଇଥିଲେ । ପୁଲିସ କର୍ମଚାରୀମାନେ ମଧ୍ୟ ପ୍ରଜାମନଙ୍କ ଉପରେ ବହୁ ଅତ୍ୟାଚାର କରୁଥିଲେ । ୧୮୭୯ ମସିହାରେ ପୁଲିସ ଜୁଲମ ହେତୁ ସମସ୍ତ ପୂର୍ବ ଗୋଦାବରୀ ଅଞ୍ଚଳ ଏବଂ ଜୟପୁରର ମାଲକାନ୍‌ଗିରି ତାଲୁକରେ କୋୟା ଆଦିବାସୀ ଲୋକମାନେ ବିଦ୍ରୋହ କରିଥିଲେ । ବ୍ରିଟିଶ ସରକାର ସେ ବିଦ୍ରୋହ ବଳପୂର୍ବକ ଦମନ କରିଥିଲେ । ରାସ୍ତାଘାଟର ଅଭାବ ଏବଂ ପାର୍ବତ୍ୟ ଓ ଅରଣ୍ୟସଂକୁଳ ଅବସ୍ଥା ହେତୁ ସେ ଅଞ୍ଚଳର ଆଦିବାସୀ ଲୋକମାନେ ସବୁବେଳେ ଜମିଦାରଙ୍କ କର୍ମଚାରୀ ଓ ପୁଲିସ କର୍ମଚାରୀଙ୍କ ଯଥେଚ୍ଛାଚାର କାର୍ଯ୍ୟ ଓ ଅତ୍ୟାଚାରର ଶିକାର ହୋଇଛନ୍ତି । ବିଂଶ ଶତାବ୍ଦୀର ଶେଷ ଭାଗରେ ମଧ୍ୟ ସେ ଅଞ୍ଚଳରେ ନକ୍ସାଲପନ୍ଥୀ ବିଦ୍ରୋହୀମାନେ ସକ୍ରିୟ ଭାବରେ ଆନ୍ଦୋଳନ କରୁଛନ୍ତି ।

ଉତ୍ତର ଓ ଦକ୍ଷିଣ ଓଡ଼ିଶା ଅପେକ୍ଷା ସମ୍ବଲପୁର ଜିଲ୍ଲାର ରଯ୍ୟତମାନଙ୍କର ଅବସ୍ଥା ତୁଳନାତ୍ମକ ଭାବରେ ଭଲ ଥିଲା । ସମ୍ବଲପୁର ଜିଲ୍ଲା ୧୮୪୯ ମସିହାରେ ବ୍ରିଟିଶ ସରକାରଙ୍କ ଅଧୀନକୁ ଆସିଲା ପରେ ୧୮୬୦ ପର୍ଯ୍ୟନ୍ତ ଛୋଟନାଗପୁର ଡିଭିଜନରେ ସାମିଲ ଥିଲା । ୧୮୬୦ରୁ ୧୮୬୨ ମସିହା ପର୍ଯ୍ୟନ୍ତ ବଙ୍ଗ ପ୍ରଦେଶର ଓଡ଼ିଶା ଡିଭିଜନରେ ରହିଲା ପରେ, ୧୮୬୨ ମସିହାରେ ମଧ୍ୟପ୍ରଦେଶର ଅନ୍ତର୍ଭୁକ୍ତ ହୋଇଥିଲା । ବଙ୍ଗ ଆନ୍ଦୋଳନ ପରେ ୧୯୦୫ ମସିହାରେ ପୁନର୍ବାର ଓଡ଼ିଶା ଡିଭିଜନର ଅନ୍ତର୍ଭୁକ୍ତ ହେଲା । ଏ ଜିଲ୍ଲାରେ ପ୍ରଧାନତଃ ଛଅ ପ୍ରକାର ଜମି ମାଲିକାନା ଓ ସ୍ୱତ୍ୱାଧିକାରୀ ଥିଲେ । ସେଗୁଡ଼ିକ ହେଲା, ଜମିଦାର, ମାଲଗୁଜାର ଗଉନ୍ତିଆ, ଭୋଗ୍ରାଭୋଗୀ, ମାଲିକ୍‌ମକ୍‌ବୁଜା ଏବଂ ବ୍ରହ୍ମୋତ୍ତର ଓ ଦେବୋତ୍ତର ସ୍ୱତ୍ୱାଧିକାରୀ । ଏହା ବ୍ୟତୀତ ଜିଲ୍ଲାରେ ୧୬ଟି ରଯ୍ୟତଓ୍ୱାରୀ ଗ୍ରାମ ମଧ୍ୟ ଥିଲା । ଭୋଗ୍ରାଭୋଗୀ ସ୍ୱତ୍ୱ ଗଉନ୍ତି ସୂତ୍ରରୁ ଉଦ୍‌ଭବ ଏବଂ ମାଲିକ୍ ମକ୍‌ବୁଜା ସ୍ୱତ୍ୱ ମାଲଗୁଜାରୀ ସୂତ୍ରରୁ ଉଦ୍‌ଭବ । ଜିଲ୍ଲାର ଅଧିକାଂଶ ଜମିର ମାଲିକ ଜମିଦାର ଓ ଗଉନ୍ତିଆମାନେ ଥିଲେ । ସମଗ୍ର ଜିଲ୍ଲାରେ ୧୭ଟି ଜମିଦାରୀ ଇଷ୍ଟେଟ୍ ଥିଲା । ସେଥିରୁ କେତେଗୋଟି ପୂର୍ବ ରାଜାଙ୍କ ଇଷ୍ଟେଟ୍ ଏବଂ ଆଉ କେତେଗୋଟି ସାଧାରଣ ଜମିଦାରୀ ଥିଲା । ଏ ଜମିଦାରୀଗୁଡ଼ିକ ଭାଗ ଭାଗ ହେଉ ନ ଥିଲା କିମ୍ବା ବିକ୍ରି ସୂତ୍ରେ ଅନ୍ୟମାନଙ୍କୁ ହସ୍ତାନ୍ତର ହେଉ ନ ଥିଲା । ଜମିଦାରମାନେ ଜମିଦାରୀର ମୋଟ ଆୟ କମିଲ୍ ଜମାର ଗୋଟିଏ ଭାଗ ସରକାରଙ୍କୁ ଦେଉଥିଲେ । ସରକାରଙ୍କର ଭାଗ ବନ୍ଦୋବସ୍ତରେ ସ୍ଥିର ହେଉଥିଲା । ତାହା ବ୍ୟତୀତ ଜମିଦାରମାନେ କମିଲ୍‌ଜମାର ୫ $\frac{୧}{୨}$ ଭାଗ ସେସ୍ ଦେଉଥିଲେ । ଜମିଦାରମାନେ ଠିକାଦାରଙ୍କ ଦ୍ୱାରା ଗାଁମାନଙ୍କରୁ ଭୂରାଜସ୍ୱ ଆଦାୟ କରୁଥିଲେ । ଠିକାଦାର ଆଦାୟ କରୁଥିବା ସମସ୍ତ ଖଜଣା ଜମିଦାରଙ୍କୁ ଦେଉଥିଲେ । ତାଙ୍କର ପାରିଶ୍ରମିକ ପାଇଁ ସେ ଗ୍ରାମରେ ଜମି ପାଉଥିଲେ । ଠିକାଦାରଙ୍କ ଜମି ଗ୍ରାମରେ ସର୍ବୋତ୍କୃଷ୍ଟ ଜମି ଥାଏ ଏବଂ ସେମାନେ ରଯ୍ୟତଙ୍କ ବେଠିରେ ସେ ଜମି ଚାଷ କରୁଥିଲେ । ଅନାବାଦୀ ଜମିରେ ନୂଆ କରି ରଯ୍ୟତ ଚାଷ କଲେ କିମ୍ବା ରଯ୍ୟତ ଅନ୍ୟ କାହାକୁ ଜମି ହସ୍ତାନ୍ତର କଲେ ଠିକାଦାରଙ୍କୁ ନଜରାନା ଦେବାକୁ ପଡ଼ୁଥିଲା ।

ଗଉନ୍ତିଆ ପ୍ରଥା ସମ୍ବଲପୁର ଜିଲ୍ଲାର ଗୋଟିଏ ସ୍ୱତନ୍ତ୍ର ପ୍ରଥା । ସେଠାରେ ପୂର୍ବ ରାଜାମାନଙ୍କ ଅମଳରୁ ଏ ପ୍ରଥା ପ୍ରଚଳିତ ଥିଲା । ଗଉନ୍ତିଆମାନେ ଗାଁ ପ୍ରଧାନ ଥିଲେ । ସେମାନେ ଗାଁରୁ ନିର୍ଦ୍ଧାରିତ ରାଜସ୍ୱ ଆଦାୟ କରୁଥିଲେ ଏବଂ ସେଥିପାଇଁ ଗାଁରେ ଜମି ପାଉଥିଲେ । ସେ ଜମି ରଯ୍ୟତମାନେ ତାଙ୍କପାଇଁ ବେଠିରେ ଚାଷ

କରୁଥିଲେ । ଗଉନ୍ତିଆମାନେ ଗାଁର ମାଲିକ ନ ଥିଲେ । ସେମାନେ ରାଜସ୍ୱ ଆଦାୟ କରିବା ପାଇଁ ନିଯୁକ୍ତ ହେଉଥିଲେ ଏବଂ ନଜରାନା ଦେଇ ଥରକୁ ଥରେ ପୁନର୍ନିଯୁକ୍ତ ପାଉଥିଲେ । ବ୍ରିଟିଶ ସରକାର ଉକ୍ତ ଅଧିକାର ହାତକୁ ନେଲାପରେ ଗଉନ୍ତିଆମାନେ ଗାଁର ମାଲିକାନା ଦାବିକଲେ । ମାତ୍ର ବ୍ରିଟିଶ ସରକାର ସେ ଦାବି ସ୍ୱୀକାର କଲେ ନାହିଁ । ସେମାନେ କେବଳ ଭୋଗରା ଜମିର ମାଲିକ ହେଲେ ଏବଂ ଗାଁରୁ ରାଜସ୍ୱ ଆଦାୟ କରିବା ଦାୟିତ୍ୱରେ ରହିଲେ । ଗଉନ୍ତିଆମାନେ ଗାଁରୁ ଆଦାୟ କରୁଥିବା ରାଜସ୍ୱରୁ ଶତକଡ଼ା ୭୫ ଭାଗ ସରକାରଙ୍କୁ ଦେଉଥିଲେ । କୌଣସି ଗାଁରେ ଏକାଧିକ ଗଉନ୍ତିଆ ଥିଲେ, ତାଙ୍କ ମଧ୍ୟରୁ ଜଣେ ଲମ୍ବରଦାର ଗଉନ୍ତିଆ ହେଉଥିଲେ ଏବଂ ସେ ଗାଁ ପରିଚାଳନା ଏବଂ ରାଜସ୍ୱ ଆଦାୟ ଦାୟିତ୍ୱ ବହନ କରୁଥିଲେ । କାଳକ୍ରମେ ଅନେକ ଗଉନ୍ତିଆ ଭୋଗରାଜମି ସହ ଗାଁର ରାଜସ୍ୱ ଆଦାୟ ଦାୟିତ୍ୱ ଅନ୍ୟମାନଙ୍କୁ ବିକ୍ରୟ କରି ଦେଉଥିଲେ ଏବଂ ଗଉନ୍ତି ସ୍ୱତ୍ୱରେ ବିଭିନ୍ନ ଅଂଶୀଦାରମାନଙ୍କ ମଧ୍ୟରେ ଅନେକ ସମୟରେ ମାଲିମକଦ୍ଦମା ଲାଗୁଥିଲା ।

ମଧ୍ୟପ୍ରଦେଶର ଶାସନାଧୀନ ଥିଲାବେଳେ ଉଭୟ ଜମିଦାରୀ ଓ ଗଉନ୍ତିଆ ପଦ୍ଧତି ପ୍ରଚଳିତ ଗାଁମାନଙ୍କରେ ରୟତମାନଙ୍କର ରୟତି ସ୍ୱତ୍ୱ ସ୍ୱୀକୃତ ହୋଇଥିଲା ଏବଂ ରୟତମାନଙ୍କୁ କ୍ୱଚିତ୍ ଜମିରୁ ଉଚ୍ଛେଦ କରାଯାଉଥିଲା । ମାତ୍ର ରୟତମାନଙ୍କର ଜମି ହସ୍ତାନ୍ତର କରିବା ଅଧିକାର ନ ଥିଲା । ହସ୍ତାନ୍ତର କରିବା ଅଧିକାର ନ ଥିବାରୁ ରୟତମାନେ ଅସୁବିଧା ଭୋଗ କରୁଥିଲେ । କୌଣସି ରୟତ ଜମି ବିକିବାକୁ ଚାହିଁଲେ ସେ ଜମିକୁ ଗଉନ୍ତିଆଙ୍କୁ ବା ଠିକାଦାରଙ୍କୁ ପ୍ରତ୍ୟର୍ପଣ କରି ଦେଉଥିଲା ଏବଂ ସେମାନେ କିଣିଲା ଲୋକଠାରୁ ନଜରାନା ନେଇ ତାକୁ ଜମିର ସ୍ୱତ୍ୱ ଦେଉଥିଲେ । ଏ ପ୍ରଥା ଗୋଟିଏ ଅପ୍ରତ୍ୟକ୍ଷ ବିକ୍ରି ପନ୍ଥା ଥିଲା । ଏଥିରେ ରୟତର ଜମିର ବିକ୍ରିମୂଲ୍ୟ କମି ଯାଉଥିଲା ଏବଂ ଗଉନ୍ତିଆ ବା ଠିକାଦାର ଲାଭବାନ୍ ହେଉଥିଲେ ।

ରୟତମାନଙ୍କର ଅନ୍ୟ ଏକ ବିଶେଷ ଅସୁବିଧା ଥିଲା, ବେଠି ପ୍ରଥା । ଉଭୟ ଜମିଦାରୀ ଓ ଗଉନ୍ତି ଗାଁମାନଙ୍କରେ ରୟତମାନେ ଗଉନ୍ତିଆ ଓ ଠିକାଦାରଙ୍କର ଜମି ବେଠିରେ ଚାଷ କରୁଥିଲେ । ଏ ପଦ୍ଧତି ସରକାରଙ୍କର ସ୍ୱୀକୃତି ଲାଭ କରିଥିବାରୁ ବେଆଇନ୍ ନ ଥିଲା । ଏ ପ୍ରଥା ବନ୍ଦ କରିବାପାଇଁ ରୟତମାନେ ବହୁ କାଳରୁ ଦାବି କରୁଥିଲେ । ୧୮୭୨ ମସିହାରେ ଭାରତ ସରକାର ବେଠି ବଦଳରେ କିଛି ମୂଲ୍ୟ ଦେଇ ବେଠି ପ୍ରଥା କ୍ରମେ ବନ୍ଦ କରିବାକୁ ଆଦେଶ ଦେଇଥିଲେ । ତଥାପି ୧୯୨୧ରୁ ୧୯୨୫ ମସିହା ମଧ୍ୟରେ ହମିଦ୍ ସାହେବଙ୍କ ତତ୍ତ୍ୱାବଧାନରେ ବନ୍ଦୋବସ୍ତ ହେଲାବେଳେ, ଗୋଟିଏ ହଳଥିବା ପ୍ରତି ରୟତ

ଗଉନ୍ତିଆଙ୍କ ଜମିରେ ହଳ କରିବା ସମୟରେ ଓଳିଏ ଏବଂ ଧାନ କଟା ସମୟରେ ଦିନେ ବେଠି କରିବା ବ୍ୟବସ୍ଥା ଥିଲା । ଅଧିକ ହଳଥିବା ରଯ୍ୟତମାନଙ୍କର ବେଠି ପରିମାଣ ଏହାର ଦୁଇଗୁଣ ଥିଲା । ବେଠି ପରିବର୍ତ୍ତେ ପଇସା ଦେବାକୁ ହେଲେ ହଳ ସମୟରେ ଦିନକୁ ବାରଅଣା ଏବଂ ଧାନକଟା ସମୟରେ ଦିନକୁ ଛଅଅଣା ଦେବାକୁ ହେଉଥିଲା । ଜମିଦାରଙ୍କ ନିଜ ଯୋଡ଼ ଜମି ଏବଂ ଗଉନ୍ତିଆଙ୍କ ଭୋଗ୍ରା ଜମି ମଧ୍ଯ ଜିଲ୍ଲାରେ ଚାଷ କରାଯାଉଥିବା ସମଗ୍ର ଜମିର ଶତକଡ଼ା ୧୮ ଭାଗ ଥିଲା । ହମିଦ୍ ବନ୍ଦୋବସ୍ତ ସମୟରେ ସବୁ ରଯ୍ୟତ ବେଠି ପ୍ରଥା ବିରୋଧରେ ଆପତ୍ତି କରୁଥିଲେ । ସମ୍ବଲପୁର ଜିଲ୍ଲାରେ କିନ୍ତୁ ରଯ୍ୟତମାନଙ୍କ ଉପରେ ଧାର୍ଯ୍ୟ ଖଜଣା ଉତ୍ତର ଓଡ଼ିଶା ଏବଂ ମଧ୍ଯପ୍ରଦେଶ ତୁଳନାରେ ଅତ୍ୟନ୍ତ କମ୍ ଥିଲା ।

ଓଡ଼ିଶାର ଅନ୍ୟ ସବୁ ଅଞ୍ଚଳ ତୁଳନାରେ ଗଡ଼ଜାତ ଅଞ୍ଚଳରେ ରଯ୍ୟତ-ମାନଙ୍କର ଅବସ୍ଥା ଅଧିକ ଶୋଚନୀୟ ଥିଲା । ଓଡ଼ିଶାର ଚିରସ୍ଥାୟୀ ବନ୍ଦୋବସ୍ତ ମାହାଲ ସବୁ ବ୍ରିଟିଶ ସରକାରଙ୍କ ଅଧୀନରେ ଥିବାରୁ, କାଳକ୍ରମେ ବ୍ରିଟିଶ ସରକାର ସେଥିରେ ଥିବା ରଯ୍ୟତମାନଙ୍କର ଖଜଣାର ଅତ୍ୟଧିକ ବୃଦ୍ଧି ବନ୍ଦ କରିବା ପାଇଁ ଏବଂ ଜମିରେ ରଯ୍ୟତମାନଙ୍କୁ ସ୍ଵତ୍ଵ ଦେବାପାଇଁ ଆଇନ୍‌ମାନ ପ୍ରଣୟନ କଲେ । କିନ୍ତୁ ଗଡ଼ଜାତ ରାଜ୍ୟମାନ ବିଭିନ୍ନ ରାଜାମାନଙ୍କର ପୂର୍ଣ୍ଣ କର୍ତ୍ତୃତ୍ୱରେ ଥିଲା । ହିନ୍ଦୁ, ମୋଗଲ ଏବଂ ମରହଟ୍ଟା ରାଜତ୍ୱ କାଳରେ କେନ୍ଦ୍ର ଶାସକମାନେ ଗଡ଼ଜାତ ରାଜ୍ୟମାନଙ୍କର ଆଭ୍ୟନ୍ତରୀଣ ଶାସନରେ ହସ୍ତକ୍ଷେପ କରୁ ନ ଥିଲେ । ଇଂରେଜ ସରକାର ୧୮୦୩ ଓ ୧୮୦୪ ମସିହାରେ ଓଡ଼ିଶା ଅଧିକାର କଲାପରେ, ଗଡ଼ଜାତ ରାଜାମାନଙ୍କ ସହିତ ସନ୍ଧିପତ୍ର ସ୍ୱାକ୍ଷର କଲେ । ରାଜାମାନେ ନିର୍ଦ୍ଦିଷ୍ଟ ପରିମାଣର ପେଶକସ୍ ବା କର ଦେଲେ ଏବଂ ଇଂରେଜ ଅଧିକୃତ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ପ୍ରଚଳିତ ଦେଓ୍ୱାନି ଓ ଫୌଜଦାରି ଆଇନ ସବୁ ସେ ରାଜ୍ୟମାନଙ୍କରେ ଲାଗୁ ହେଲା ନାହିଁ । ତାହାର କାରଣ ନୁହେଁ ଯେ ଇଂରେଜ ସରକାର ରାଜାମାନଙ୍କର ପାରମ୍ପରିକ ଅଧିକାର ସ୍ୱୀକାର କରି ରାଜ୍ୟର ଆଭ୍ୟନ୍ତରୀଣ ଶାସନ ସେମାନଙ୍କୁ ଛାଡ଼ି ଦେଲେ । ରାଜ୍ୟଗୁଡ଼ିକ ପାହାଡ଼ ଜଙ୍ଗଲରେ ପରିପୂର୍ଣ୍ଣ ଥିବାରୁ, ସେଥିରେ ବାଟଘାଟର ସୁବିଧା ନ ଥିବାରୁ ଏବଂ ପ୍ରଜାମାନେ ଅଧିକାଂଶ ସ୍ଥଳରେ ଅନୁନ୍ନତ ଆଦିବାସୀ ସଂପ୍ରଦାୟର ଲୋକ ଥିବାରୁ, ଇଂରେଜ ସରକାର ଶାସନର ସୁବିଧା ଦୃଷ୍ଟିରୁ ରାଜାମାନଙ୍କୁ ତାଙ୍କ ରାଜ୍ୟମାନଙ୍କର ଆଭ୍ୟନ୍ତରୀଣ ଶାସନ ଛାଡ଼ିଦେଇଥିଲେ । କିନ୍ତୁ ଇଂରେଜ ଶାସନ ପୂର୍ବରୁ ଆଳି, କନିକା, ଖଲ୍ଲିକୋଟ, ପାରଳାଖେମୁଣ୍ଡି ଏବଂ ଜୟପୁର ପ୍ରଭୃତିର ଜମିଦାର-ମାନଙ୍କର ଜମିରେ ଅଧିକାରଠାରୁ ଆଠଗଡ଼, ବଡ଼ମ୍ବା, ନରସିଂହପୁର, ତାଳଚେର, ପାଟଣା, କେଉଁଝର ଓ ମୟୂରଭଞ୍ଜ ପ୍ରଭୃତି ଗଡ଼ଜାତ ରଜାମାନଙ୍କର

ଅଧିକାର କୌଣସିମତେ ଭିନ୍ନ ନ ଥିଲା । କେବଳ ଘଟଣା ଚକ୍ରରେ ବହୁ କରଦ ରାଜ୍ୟ ଚିରସ୍ଥାୟୀ ବନ୍ଦୋବସ୍ତ ସୂତ୍ରରେ ଜମିଦାର ହୋଇଗଲେ, ଅନ୍ୟ ରାଜ୍ୟମାନେ କରଦ ରାଜ୍ୟ ରୂପେ ସ୍ୱୀକୃତ ପାଇ, ସେମାନଙ୍କ ରାଜ୍ୟଶାସନର ପୂର୍ଣ୍ଣ ଅଧିକାର ପାଇଲେ ।

କରଦ ରାଜ୍ୟମାନଙ୍କରେ ବ୍ରିଟିଶ ଶାସିତ ଜିଲ୍ଲାମାନଙ୍କର ଦେଓ୍ୱାନି ଓ ଫୌଜଦାରୀ ଆଇନ୍ ଲାଗୁ ନ ହେବାରୁ ଏବଂ ପ୍ରତି ରାଜ୍ୟ ସେ ରାଜ୍ୟର ରାଜାଙ୍କର ପୂର୍ଣ୍ଣ ଶାସନାଧୀନରେ ରହିବାରୁ, ବିଭିନ୍ନ ରାଜ୍ୟରେ ଶାସନ ଭିନ୍ନ ହୋଇଗଲା । ରାଜ୍ୟଶାସନର ରୂପରେଖ ରାଜାଙ୍କ ଗୁଣ ଓ ଶିକ୍ଷା ଦୀକ୍ଷା ଉପରେ ନିର୍ଭର କଲା । ରାଜ୍ୟରେ ରାଜାଙ୍କର ଅଖଣ୍ଡ କ୍ଷମତା ରହିବାରୁ, ସେ ବିଭିନ୍ନ ଆଇନ ପ୍ରଣୟନ କରିବାକୁ, ବିଭିନ୍ନ ପ୍ରକାର କର ବସାଇବାକୁ ଏବଂ ରାଜ୍ୟ ଶାସନରେ ଯଥେଚ୍ଛାଚାର ବ୍ୟବହାର କରି ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରିବାକୁ ସୁବିଧା ପାଇଲେ । ରାଜା ଓ ତାଙ୍କ ପରିବାର ଲୋକଙ୍କର ରାଜକୀୟ ଜୀବନଯାପନ ଏବଂ ରାଜାଙ୍କର ପଦମର୍ଯ୍ୟାଦା ରକ୍ଷା କରିବାପାଇଁ ରାଜ୍ୟର ଅଧିକାଂଶ ଆୟ ଖର୍ଚ୍ଚ ହେଲା । ସେ ଖର୍ଚ୍ଚ ତୁଲାଇବା ପାଇଁ ରାଜା ରାଜ୍ୟର ଚାଷଜମି, ଜଙ୍ଗଲ, ଖଣି, ବିଭିନ୍ନ ପ୍ରକାର ବ୍ୟବସାୟ ଓ ବିଭିନ୍ନ ପ୍ରକାର ପଦାର୍ଥର ଆମଦାନି ଓ ରପ୍ତାନି ପ୍ରଭୃତି ଉପରେ ବହୁପ୍ରକାର କର ବସାଇଲେ, ପ୍ରଜାମାନଙ୍କୁ ବିଭିନ୍ନ ରାଜକାର୍ଯ୍ୟରେ ବେଠିରେ କାମ କରାଇଲେ ଏବଂ ଆବଶ୍ୟକ ହେଲେ କ୍ଷତିପୂରଣ ନ ଦେଇ ପ୍ରଜାମାନଙ୍କର ଜମି ଅଧିକାର କଲେ । ପ୍ରଜାମାନେ ସେଥିନିମନ୍ତେ କାହାରି ପାଖରେ ହାରିଗୁହାରି କରି ପାରିଲେ ନାହିଁ । ରାଜାଙ୍କ କ୍ଷମତା ସୀମାବଦ୍ଧ କରିବାପାଇଁ ରାଜ୍ୟରେ କୌଣସି ବିଧିବଦ୍ଧ ରାଜସ୍ୱ ଆଇନ ରହିଲା ନାହିଁ ଏବଂ ଖଜଣା ବୃଦ୍ଧି କରିବାପାଇଁ ଅଳ୍ପ ବର୍ଷ ବ୍ୟବଧାନରେ ବନ୍ଦୋବସ୍ତମାନ ହେଲା । ଘନ ଘନ ଆଇନ ଓ ଆଦେଶ ପରିବର୍ତ୍ତନ ହେତୁ ରାଜକର୍ମଚାରୀ ଏବଂ ସାଧାରଣ କୃଷକମାନଙ୍କର ପ୍ରଚଳିତ ଆଇନ୍ ବିଷୟରେ କିଛି ଜ୍ଞାନ ନ ଥିଲା । ସମୟ ସମୟରେ ରାଜା ପ୍ରଜାମାନଙ୍କୁ କୌଣସି ସ୍ୱତନ୍ତ୍ର ସୁବିଧା ଦେଲେ ସୁଦ୍ଧା ପ୍ରଜାମାନେ ଭୟ ଓ ଅଜ୍ଞତା ହେତୁ ସେ ସୁବିଧା ଉପଭୋଗ କରି ପାରୁ ନ ଥିଲେ ।

ଅଧିକାଂଶ ରାଜ୍ୟରେ ଗାଁ ପ୍ରଧାନ, ସର୍ବରାକାର, ଠିକାଦାର ବା ଗଉନ୍ତିଆ ଗ୍ରାମବାସୀ ରୟତମାନଙ୍କଠାରୁ ଖଜଣା ଆଦାୟ କରି ରାଜକୋଷରେ ଜମା ଦେଉଥିଲେ । ସେଥିପାଇଁ ସେମାନେ ନିଷ୍କର ଜମି ଏବଂ ପରେ ଆଦାୟ ରାଜସ୍ୱର ଏକ ଅଂଶ ପାଉଥିଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଦୁର୍ନୀତିଗ୍ରସ୍ତ ଥିଲେ ଏବଂ ରୟତମାନଙ୍କ ଉପରେ ବିଭିନ୍ନ ପ୍ରଣାଳୀରେ ଅତ୍ୟାଚାର କରୁଥିଲେ ।

ଗାଙ୍ଗପୁର, କେନ୍ଦୁଝର, ପାଟଣା, କଳାହାଣ୍ଡି, ବାମଣ୍ଡା ଏବଂ ସୋନପୁର ପ୍ରଭୃତି କେତେକ ରାଜ୍ୟରେ ଜମିଦାରୀମାନ ଥିଲା । ମାତ୍ର ଜମିଦାରୀ ସବୁ ରାଜ୍ୟରେ ନ ଥିଲା କିମ୍ବା ଜମିଦାରୀ ଥିବା ରାଜ୍ୟମାନଙ୍କରେ ସବୁ ଅଞ୍ଚଳରେ ଜମିଦାର ନ ଥିଲେ । ରାଜବଂଶର ଲୋକ ବା ରାଜାଙ୍କୁ ଯୁଦ୍ଧରେ ସାହାଯ୍ୟ କରିବା ବ୍ୟକ୍ତିଙ୍କୁ ଜମିଦାରୀ ଦିଆଯାଉଥିଲା । ବନ ଜଙ୍ଗଲ ହେତୁ ଜମିଦାରୀ ଅଞ୍ଚଳ ସବୁ ଅଗମ୍ୟ ଥିଲା । ଜମିଦାରମାନେ ରାଜାଙ୍କୁ ଜମିଦାରୀରୁ ଆଦାୟ ରାଜସ୍ୱର ଶତକଡ଼ା ୬୦ରୁ ୫୦ ଭାଗ ପର୍ଯ୍ୟନ୍ତ ଟାକୋଲି ବା କର ହିସାବରେ ଦେଉଥିଲେ । ତାଙ୍କ ଜମିଦାରୀରେ ଜମିଦାରମାନେ ରାଜାଙ୍କଠାରୁ ଅଧିକ ଅତ୍ୟାଚାରୀ ଥିଲେ ।

ପ୍ରତି ରାଜ୍ୟରେ ରାଜାମାନଙ୍କର ବହୁ ପରିମାଣ ଖମାର ବା ନିଜ କୃଷି-ଜମି ଥିଲା । ରାଜାମାନେ ସେ ଜମି ଭାଗଚାଷ ପ୍ରଣାଳୀରେ ଚାଷ କରାଉଥିଲେ । ସେ ଜମିରେ କୃଷୀମାନଙ୍କର କୌଣସି ପ୍ରକାର ସ୍ୱତ୍ୱ ନ ଥିଲା । କୌଣସି ଅସୁବିଧା ହେଲେ ରାଜକର୍ମଚାରୀମାନେ କୃଷୀଠାରୁ ସହଜରେ ଜମି ଛଡ଼ାଇ ନେଇଯାଇ ପାରୁଥିଲେ । ଅନ୍ୟ ରୟତି ଜମିମାନଙ୍କରେ ମଧ୍ୟ ରୟତମାନଙ୍କର ରୟତି ସ୍ୱତ୍ୱ ନ ଥିଲା । ମାତ୍ର ସାଧାରଣତଃ ସେମାନଙ୍କୁ ଜମିରୁ ଉଚ୍ଛେଦ କରାଯାଉ ନ ଥିଲା । କେବଳ ସାଧାରଣ କାମରେ କିମ୍ବା ରାଜାଙ୍କର ଜମି ଦରକାର ହେଲେ ରାଜାମାନେ ରୟତମାନଙ୍କର ଜମି ବିନା କ୍ଷତିପୂରଣରେ ନେଇ ପାରୁଥିଲେ । ଜମି ହସ୍ତାନ୍ତର କରିବାପାଇଁ ମଧ୍ୟ ରୟତ ଉଭୟ ଗାଁ ପ୍ରଧାନ ଓ ରାଜାଙ୍କର ଅନୁମତି ଦରକାର କରୁଥିଲା । ସମ୍ବଲପୁର ଜିଲ୍ଲାରେ ପ୍ରଚଳିତ ପ୍ରଥାପରି ରୟତ ତା'ର ଜମି ପ୍ରଧାନଙ୍କୁ ପ୍ରତ୍ୟର୍ପଣ କରୁଥିଲା ଏବଂ ସେ କଣିଲା ଲୋକଙ୍କୁ ତାହା ଦଖଲ କରିବାପାଇଁ ଅଧିକାର ଦେଉଥିଲେ । ହେ କାରବାରରେ ସଲାମି ଏବଂ ଦାଖଲ ଖାରଜ ପାଇଁ ଜମିର ଦାମ୍‌ର ଶତକଡ଼ା ୩୦ ରୁ ୩୫ ଭାଗ ଦେବାକୁ ପଡ଼ୁଥିଲା । ତଦ୍ୱାରା ରୟତର ଜମି ବନ୍ଦିଦର କମି ଯାଉଥିଲା । ଖଜଣା ଗୋଟିଏ ବନ୍ଦୋବସ୍ତରୁ ଅନ୍ୟ ବନ୍ଦୋବସ୍ତ ପର୍ଯ୍ୟନ୍ତ ସ୍ଥିର ରହିବାର କିଛି ଅର୍ଥ ନ ଥିଲା । କାରଣ ରାଜାମାନେ ଯେ କୌଣସି ସମୟରେ ବିଭିନ୍ନ କର ବସାଉଥିଲେ । ସେଗୁଡ଼ିକ ରୟତର ସେହି ଜମିର ଉତ୍ପାଦନରୁ ଦେବାକୁ ହେଉଥିଲା । ବନ୍ୟଜନ୍ତୁ ଶସ୍ୟ ଖାଇଗଲେ ମଧ୍ୟ ରୟତମାନେ ତାଙ୍କୁ ମାରିପାରୁ ନ ଥିଲେ । ମାରିଲେ ପୁଲିସକୁ ଜଣାଇବାକୁ ପଡ଼ୁଥିଲା ଏବଂ ପୁଲିସ ଅତ୍ୟନ୍ତ ଅତ୍ୟାଚାରୀ ଥିବାରୁ ରୟତମାନେ ବନ୍ୟଜନ୍ତୁ ମାରି ତାଙ୍କୁ ଜଣାଇବାକୁ ସୁବିଧା ମନେ କରୁ ନ ଥିଲେ । ରାମଧାମୀ ତାଙ୍କ ଓଡ଼ିଶା ଓ ଛତିଶ ଗଡ଼ କରଦ ରାଜ୍ୟରେ ଜମିଜମା ବ୍ୟବସ୍ଥା (Land Tenwre and Revenue System of Orissa and chhatis Garh States) ରିପୋର୍ଟରେ ଲେଖିଛନ୍ତି ଯେ ଓଡ଼ିଶାର ପାଟଣା, ଝଣ୍ଡପଡ଼ା ପ୍ରଭୃତି

ବହୁ ରାଜ୍ୟରେ ଚାନ୍ଦକଦାରୀ ଓ ଜଙ୍ଗଲ କର ସହିତ ବହୁ ପ୍ରକାର ଟିକସ ପରିମାଣ ଖଜଣାର ଶତକଡ଼ା ୫୦ ଭାଗ ପର୍ଯ୍ୟନ୍ତ ହେଉଥିଲା । ରାଜ୍ୟ ବାହାରକୁ ଶସ୍ୟ ରପ୍ତାନି ଉପରେ ଟିକସ ବସୁଥିବାରୁ ରାଜ୍ୟରେ ଶସ୍ୟର ଦାମ ମଧ୍ୟ କମିଯାଉଥିଲା । ସର୍ବୋପରି ସବୁରାଜ୍ୟରେ ରୟତମାନେ ରାଜାଙ୍କ ଖମାର ଜମି ଚାଷରେ ଏବଂ ରାଜ୍ୟର ବିଭିନ୍ନ ସାଧାରଣ କାମରେ ବେଠି କରିବାକୁ ବାଧ୍ୟ ହେଉଥିଲେ । ଯଦିଓ କାଳକ୍ରମେ ଅନେକ ରାଜ୍ୟରେ ବେଠି ବଦଳରେ ପଇସା ଦେବା ବ୍ୟବସ୍ଥା ପ୍ରଚଳିତ ହେଉଥିଲା, ତଥାପି ରାଜ୍ୟଗୁଡ଼ିକ ୧୯୪୮ ମସିହାରେ ଓଡ଼ିଶା ରାଜ୍ୟରେ ମିଶିବା ପର୍ଯ୍ୟନ୍ତ ସବୁ ରାଜ୍ୟରେ ବେଠି ପ୍ରଥା ପ୍ରଚଳିତ ଥିଲା ।

୧୯୪୭ ମସିହାରେ ଭାରତ ସ୍ୱାଧୀନ ହେବା ପର୍ଯ୍ୟନ୍ତ ଉତ୍ତର ଓ ଦକ୍ଷିଣ ଓଡ଼ିଶା, ସମ୍ବଲପୁର ଜିଲ୍ଲା ଏବଂ କରଦ ରାଜ୍ୟମାନଙ୍କରେ ଉପରିଲିଖିତ ଚାରିପ୍ରକାର ଜମି ଜମା ବ୍ୟବସ୍ଥା ଥିଲା । ସବୁ ଅଞ୍ଚଳରେ ଜମିଦାର, ଅନ୍ୟ ମଧ୍ୟସ୍ୱତ୍ୱାଧିକାରୀ, ରାଜା ଓ ରାଜକର୍ମଚାରୀ, ସରକାରୀ କର୍ମଚାରୀ ଏବଂ ଚାଷ କରୁ ନ ଥିବା ଜମି ମାଲିକମାନେ ଜମି ଚାଷ କରୁଥିବା ଛୋଟ ଛୋଟ ରୟତ ଓ ଭାଗଚାଷୀଙ୍କ ଉପରେ ବିଭିନ୍ନ ପ୍ରକାର ଉତ୍ପୀଡ଼ନ୍ କରୁଥିଲେ । ଉତ୍ତର ଓଡ଼ିଶାର ବହୁ ଚିରସ୍ଥାୟୀ ଓ ବେ ତିରିଶବର୍ଷିଆ ବନ୍ଦୋବସ୍ତ ମାହାଲର ଜମିଦାରମାନେ କଲିକତାରେ ରହୁଥିଲେ । ଜମିଦାରୀ-ମାନଙ୍କର ବିଭିନ୍ନ ସ୍ଥାନରେ ସେମାନଙ୍କର କଚେରିଘର ଥିଲା ଏବଂ ତହସିଲ୍‌ଦାର ଓ ମୋହରିର ପ୍ରଭୃତି ଜମିଦାରଙ୍କର କର୍ମଚାରୀମାନେ ଖଜଣା ଆଦାୟ କରୁଥିଲେ । ଜମିଦାରମାନେ ଜମିଦାରୀକୁ କ୍ୱଚିତ୍ ଆସୁଥିଲେ ଏବଂ ରୟତମାନଙ୍କ ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ପର୍କ କିଛି ନ ଥିଲା । ସେମାନେ କୃଷିର ଉନ୍ନତି କିମ୍ବା ଲୋକଙ୍କ ହିତ ପାଇଁ କିଛି କରୁ ନ ଥିଲେ । ସବୁ ଅଞ୍ଚଳରେ ଉତ୍ପୀଡ଼ିତ ଚାଷୀମାନେ ରାଜା, ଜମିଦାର, ମଧ୍ୟସ୍ୱତ୍ୱାଧିକାରୀ, ରାଜକର୍ମଚାରୀ, ସରକାରୀ କର୍ମଚାରୀ ଓ ଜମିଦାରମାନଙ୍କ କର୍ମଚାରୀଙ୍କ ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ସାହସ କରୁ ନ ଥିଲେ । ଊନବିଂଶ ଶତାବ୍ଦୀରେ ବିଭିନ୍ନ କରଦ ରାଜ୍ୟମାନଙ୍କର ପ୍ରଜାମାନେ ସମୟେ ସମୟେ ରାଜାମାନଙ୍କର ମାତ୍ରାଧିକ ଅତ୍ୟାଚାର ବିରୋଧରେ ବିଦ୍ରୋହ କରୁଥିଲେ । କିନ୍ତୁ ରାଜାମାନେ ବ୍ରିଟିଶ ସରକାରଙ୍କ ପୁଲିସ ଓ ସୈନ୍ୟ ସାହାଯ୍ୟରେ ସେ ବିଦ୍ରୋହ ଦମନ କରୁଥିଲେ । ୧୯୨୦—୨୧ ମସିହାଠାରୁ ଗାନ୍ଧିଜୀଙ୍କ ନେତୃତ୍ୱରେ ସରକାରଙ୍କ ବିରୋଧରେ ଅସହଯୋଗ ଆନ୍ଦୋଳନ ଫଳରେ ସମଗ୍ର ଭାରତବର୍ଷରେ ଯୁଗାନ୍ତକାରୀ ପରିବର୍ତ୍ତନ ଘଟିଲା ଏବଂ ଅଭୂତପୂର୍ବ ଜନ ଚେତନା ଜାଗ୍ରତ ହେଲା । ସବୁ ଅଞ୍ଚଳରେ ଲୋକମାନେ ରାଜା, ଜମିଦାର, ମହାଜନ ଏବଂ ସରକାରୀ କର୍ମଚାରୀଙ୍କ ଅତ୍ୟାଚାର ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ସାହସ କଲେ । ୧୯୨୧ ମସିହା ପରେ ରାଜା ଓ ଜମିଦାରମାନେ ମଧ୍ୟ ପ୍ରଜାମାନଙ୍କ ବିରୋଧରେ

ବିଭିନ୍ନ କାର୍ଯ୍ୟାନୁଷ୍ଠାନରେ ସତର୍କତା ଅବଲମ୍ବନ କଲେ । ତଥାପି ୧୯୪୦ ମସିହା ପୂର୍ବରୁ ଅବସ୍ଥାରେ ବିଶେଷ କିଛି ପରିବର୍ତ୍ତନ ହୋଇ ନ ଥିଲା ।

୧୯୨୦ ମସିହାରୁ ୧୯୪୦ ମସିହା ମଧ୍ୟରେ ଆମ ଅଞ୍ଚଳରେ ଜମିଦାର ଏବଂ ସେମାନଙ୍କର କର୍ମଚାରୀମାନଙ୍କ କାର୍ଯ୍ୟକଳାପ ବିଷୟରେ ମୋର ପ୍ରତ୍ୟକ୍ଷ ଅନୁଭୂତି ଅଛି । ଆମ ଗାଁ ଏବଂ ପାଖ ଆଖ କେତେକ ଗାଁ ସେତେବେଳେ ରତନ ଇଷ୍ଟେଟ୍ ଅଧୀନରେ ଥିଲା । ରତନ ଇଷ୍ଟେଟ୍ ବଡ଼ ଜମିଦାରୀ ଥିଲା । ତାର ଜମିଦାର ଯୋଗେନ୍ଦ୍ରନାଥ ବୋଷ୍ ଏବଂ ତାଙ୍କ ପରେ ତାଙ୍କ ପୁଅ ସୁଧାଂଶୁମୋହନ ବୋଷଙ୍କ ପରିବାର କଲିକତାରେ ରହୁଥିଲେ । ସୁଧାଂଶୁମୋହନ ବୋଷ୍ ଜଣେ କଲିକତାର ଜଣେ ବଡ଼ ବାରିଷ୍ଟର ଥିଲେ । କଟକର ତୁଳସୀପୁରଠାରେ ଜମିଦାରଙ୍କ କୋଠି ଥିଲା ଏବଂ କଟକ ଜିଲ୍ଲାର ବିଭିନ୍ନ ସ୍ଥାନରେ ଜମିଦାରଙ୍କ କଚେରି ଥିଲା । ଆମ ଗାଁରେ ୧୯୨୭ ମସିହାରେ ଜମିଦାରଙ୍କର ଗୋଟିଏ ପକ୍କା କଚେରିଘର ନିର୍ମିତ ହୋଇଥିଲା । ଜମିଦାର କିମ୍ବା ତାଙ୍କ ପରିବାରର ଲୋକ ଜମିଦାରୀକୁ କେବେ ଆସନ୍ତି ନାହିଁ । ଆମ ଗାଁ ଲୋକ ଗାଁରେ ତାଙ୍କୁ କେବେ ଦେଖି ନାହାନ୍ତି । ସେମାନଙ୍କ ମଧ୍ୟରୁ କେହି କେହି ବର୍ଷକରେ ଥରେ ଅଧେ କଟକ କୋଠିକୁ ଆସିଥାଇ ପାରନ୍ତି । କିନ୍ତୁ ଜମିଦାରୀର ରୟତମାନଙ୍କ ସହିତ ତାଙ୍କର କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନ ଥିଲା । ବିଭିନ୍ନ ଅଞ୍ଚଳରେ ଜମିଦାରଙ୍କର ତହସିଲ୍‌ଦାର ଓ ମୋହରିରମାନେ ରୟତମାନଙ୍କଠାରୁ ଖଜଣା ଏବଂ ଦାଖଲ-ଖାରଜ ପାଉଣା ପ୍ରଭୃତି ଆଦାୟ କରନ୍ତି ଏବଂ ରୟତମାନଙ୍କର ଆପତ୍ତି ଅଭିଯୋଗ ଶୁଣନ୍ତି । ଯେଉଁଠିରୁ ବିଷୟରେ ଜମିଦାରଙ୍କର ଆଦେଶ ଦରକାର ସେମାନେ କଲିକତା ଯାଇ ସେ ବିଷୟରେ ତାଙ୍କର ଆଦେଶ ଆଣନ୍ତି । ଜମିଦାର ନିଜେ ପ୍ରଜାମାନଙ୍କର କୌଣସି ଆପତ୍ତି ଶୁଣିବାର ସୁବିଧା ନ ଥାଏ । ସାଧାରଣ ପ୍ରଜାଙ୍କର ସୁଦୂର କଲିକତାକୁ ଯାଇ ହୋଇଯାଇ ଜମିଦାରଙ୍କୁ ଭେଟିବା ପ୍ରଶ୍ନ ନ ଥାଏ । ସୁତରାଂ ଆମ ଗାଁ ଲୋକଙ୍କ ପାଇଁ ଆମ ଗାଁ ପାଖର ଲୋକ ତହସିଲ୍‌ଦାର ଆନନ୍ଦ ପଣ୍ଡା ଏବଂ ତାଙ୍କ ଅନ୍ତେ ତାଙ୍କ ପୁଅ କାଳନ୍ଦୀ ପଣ୍ଡା ଜମିଦାର କାର୍ଯ୍ୟ କରୁଥିଲେ । ଦରକାରୀ କାର୍ଯ୍ୟରେ ଆମ ଗାଁ ଲୋକ ଆନନ୍ଦ ପଣ୍ଡା ବା କାଳନ୍ଦୀ ପଣ୍ଡାଙ୍କ ଘରକୁ ଯାଉଥିଲେ । ସେମାନେ ମଧ୍ୟ ପ୍ରତିବର୍ଷ ସବାଶରେ ଆସି ଆମ ଗାଁ କଚେରିରେ କ୍ୟାମ୍ପ ପକାଉଥିଲେ । ସେଠାରେ ମୋହରିରମାନେ ଖଜଣା ଆଦାୟ କରୁଥିଲେ । ଜମିସ୍ୱିଷ କିମ୍ବା କୃଷିର ଉନ୍ନତି କରିବା ପ୍ରଶ୍ନ ଜମିଦାର କିମ୍ବା ତାଙ୍କ କର୍ମଚାରୀଙ୍କ ପାଖରେ ନ ଥିଲା । ତାଙ୍କର କର୍ତ୍ତବ୍ୟ କେବଳ ଖଜଣା ଆଦାୟ ବୋଲି ସେମାନେ ଧରି ନେଇଥିଲେ । ଗାଁ ଲୋକଙ୍କର ମଧ୍ୟ ଜମିଦାରଙ୍କର କୃଷି ସହିତ କିଛି ସମ୍ପର୍କ ଅଛି ବୋଲି ଧାରଣା ନ ଥିଲା ।

ସୁତରାଂ ଆମ ଗାଁର ଅନୁପସ୍ଥିତ ଜମିଦାର କଲିକତାରେ ରହୁଥିବା ଜଣେ ବଙ୍ଗାଳୀ ଜମିଦାର ଥିଲେ । ତାଙ୍କ କର୍ମଚାରୀଙ୍କୁ ଖଜଣା ଦେବା ବ୍ୟତୀତ ଆମ ଗାଁ ଚାଷୀମାନଙ୍କର ତାଙ୍କ ସହିତ କିଛି ସମ୍ପର୍କ ନ ଥିଲା । ତାଙ୍କ ସପକ୍ଷରେ ଏତିକି କୁହାଯାଇପାରେ ଯେ, ସେ କିମ୍ବା ତାଙ୍କ କର୍ମଚାରୀମାନେ ଜମିଦାରୀରେ ରୟତମାନଙ୍କ ଉପରେ କୌଣସି ଅତ୍ୟାଚାର କରୁ ନ ଥିଲେ । ଆମ ଗାଁରେ ଆମେ ୧୯୨୭ ମସିହାରେ ପ୍ରାଇମେରୀ ସ୍କୁଲରେ ପଢ଼ିଲାବେଳେ ବନ୍ଦୋବସ୍ତ ହୋଉଥାଏ । ତା' ପୂର୍ବରୁ ଦୁଇଥର ବନ୍ଦୋବସ୍ତ ହୋଇ ସାରିଥିଲା । ବନ୍ଦୋବସ୍ତରେ ରୟତମାନେ ଖଜଣା ପାଉତି ଦେଖାଇ ଜମିରେ ସ୍ୱତ୍ୱ ସାବ୍ୟସ୍ତ କରୁଥିଲେ କିମ୍ବା ଉତ୍ତରାଧିକାରୀ ସୂତ୍ରରେ ଜମିରେ ସ୍ୱତ୍ୱ କାହାର ତାହା ରେକର୍ଡ କରୁଥିଲେ । ସେଥିରେ ଜମିଦାରଙ୍କର କିଛି କରିବାର ନ ଥାଏ । ଜମିଦାରଙ୍କର କର୍ମଚାରୀମାନେ ପ୍ରଜାମାନଙ୍କୁ ବେଠିରେ କାମ କରାଇବା ପ୍ରଥା ସେତେବେଳେ ଆମଆଡ଼େ କିଛି ନ ଥିଲା ।

କିନ୍ତୁ ଆମ ଗାଁ ପାଖ ଗାଁ କଲ୍ୟାଣପୁରର ଜମିଦାର କଟକ ବକ୍ସିବଜାରର ଭଗତ ପରିବାର ଥିଲେ । ତାଙ୍କ କର୍ମଚାରୀମାନେ ସେ ଗାଁରେ ଅତ୍ୟାଚାର କରୁଥିଲେ ବୋଲି ସମସ୍ତେ ଜାଣିଥିଲେ । ସେ ଗାଁର ତହସିଲଦାର ଜଣେ ନରମା ବ୍ୟକ୍ତି ଥିଲେ । ତେଣୁ ତାଙ୍କ ତଳେ କାମ କରୁଥିବା ମୋହରିର ଗାଁର ଜମିଦାର ପରି କ୍ଷମତା ବିସ୍ତାର କରୁଥିଲେ । ଗାଁ ମଝିରେ ଗୋଟିଏ ବଡ଼ ଆମ୍ବତୋଟା ପାଖରେ ଗୋଟିଏ ଛପର ଘରେ ଜମିଦାରଙ୍କର କଚେରି ଥିଲା । ଗାଁରେ ଜମିଦାରଙ୍କର କେତେ ଏକର ନିଜଚାଷ ଜମି ଥିଲା । ଜମିଦାରଙ୍କର ତହସିଲ୍‌ଦାର ଏବଂ ମୋହରିର ସେ ଜମିକୁ ଭାଗଚାଷୀଙ୍କ ଦ୍ୱାରା ଚାଷ କରାଇ, ତହିଁରୁ ଲବ୍‌ଧ ଧାନକୁ ବିକ୍ରି କରି କିମ୍ବା କରଜ ଲଗାଇ ଜମିଦାରଙ୍କୁ ଟଙ୍କା ଦିଅନ୍ତି । ଜମିଦାର କିମ୍ବା ତାଙ୍କ ପରିବାରର କେହି ସେ ଗାଁକୁ ଆସନ୍ତି ନାହିଁ । ଚାଷ ବା ଚାଷୀଙ୍କ ସହ ତାଙ୍କର କିଛି ସମ୍ପର୍କ ନ ଥାଏ । ଜମିଦାରଙ୍କ ମୋହରିର ଓ ତହସିଲଦାର ଧାନ ଅମଳ ବେଳେ ସେ ଗାଁକୁ ଆସନ୍ତି । ଚାଷୀମାନଙ୍କଠାରୁ ଖଜଣା, ଭାଗଧାନ ଏବଂ ପୂର୍ବରୁ କରଜ ଦିଆଯାଇଥିବା ଧାନ ଓ ଟଙ୍କାର ସୁଧ ଓ ମୂଳ ଆଦାୟ କରନ୍ତି । ତାହାରି ଜରିଆରେ ସେମାନେ ରୟତ ଓ ଖାତକଙ୍କ ଉପରେ ଜୁଲମ କରନ୍ତି ଏବଂ ଆଦାୟ ଧାନ ଓ ଟଙ୍କାରୁ ସେମାନେ କିଛି ଆତ୍ମସାତ୍ କରନ୍ତି । ଆଦାୟ ହୋଇଥିବା ଧାନକୁ କଚେରି ବାଡ଼ରେ ଗଣି ପକାଇ, ଖଜଣା ଓ କରଜରୁ ଆଦାୟ ହୋଇଥିବା ଟଙ୍କା ଧରି ସେମାନେ ଚାଲିଯାନ୍ତି । ଉଜପରେ ବର୍ଷା ଦିନ ଆରମ୍ଭରେ ସେମାନେ ଆଉଥରେ ଗାଁକୁ ଆସନ୍ତି । ସେତେବେଳକୁ ଧାନ ଦର ବଢ଼ି ଯାଇଥାଏ । ବର୍ଷା ଦିନେ ଧାନ

ଖଣିରେ ରହିଲେ ସେଥିରେ ପାଣି ପଶି ଧାନ ନଷ୍ଟ ହୋଇଯିବ । ତେଣୁ ସେମାନେ ଧାନ ଖଣିରୁ ବାହାର କରି ବର୍ଷି କରନ୍ତି । ସବୁ ଧାନ ବର୍ଷି ନ ହେଲେ ବଳକା ଧାନ ଗାଁ ଲୋକଙ୍କୁ ରହୁବୃଦ୍ଧି ସୁଧରେ କରଜ ଦଅନ୍ତି । କେତେକ ଗରିବ ଲୋକ ଅଭାବ ହେତୁ ସ୍ୱ ଇଚ୍ଛାରେ ଧାନ କରଜ ନିଅନ୍ତି । ଆଉ କେତେକଙ୍କୁ ବାଧ କରି କରଜ ଦିଆଯାଏ । ସେ ଧାନ ସୁଧ ସହି ପରବର୍ଷ ଆଦାୟ କରାଯାଏ । କଚେରିରେ ଜମିଦାରଙ୍କ କର୍ମଚାରୀମାନେ କ୍ୟାମ୍ପ ପକାଇଥିଲାବେଳେ ସେମାନଙ୍କର ରୋଷେଇବାସ, ଖାଇବା ପିଇବା ଆଦି ସବୁ କାମ ଏବଂ ଧାନ ଖଣି ପକାଇବା ଓ ଖଣିରୁ କାଢ଼ିବା ଏବଂ ଖାତକମାନଙ୍କୁ ଧାନ ମାପିକରି ଦେବା ଏବଂ ସେମାନଙ୍କଠାରୁ ମାପିକରି ଆଦାୟ କରିବା ସବୁକାମ ଗାଁ ଲୋକମାନେ ବେଠିରେ କରନ୍ତି । ତହସିଲଦାର ବା ମୋହରିର ବିରୋଧରେ ଆପତ୍ତି କରିବାକୁ କେହି ଲୋକ ସାହସ କରନ୍ତି ନାହିଁ । କଟକ ଗାଁରୁ ମାତ୍ର ୩୦ ମାଇଲ ଦୂର ହୋଇଥିବାରୁ ବେଳେ ବେଳେ କେତେକ ରଯ୍ୟତ ସେଠାକୁ ଯାଇ ତାଙ୍କଠାରୁ ବେଆଇନ ପାଉଣା ବା ଅତ୍ୟଧିକ ସୁଧ ଆଦାୟ ହୋଇଥିବା ବିରୋଧରେ ଆପତ୍ତି କରନ୍ତି । ମାତ୍ର ଜମିଦାରଙ୍କର ମୋହରିର ଏବଂ ତହସିଲଦାର ତାଙ୍କୁ ଏପରି ଭାବରେ ବୁଝାଇ ଦଅନ୍ତି ଯେ, ଆପତ୍ତି କରିଥିବା ଲୋକ ଅପଦସ୍ତ ହୋଇ ବା ସମୟେ ସମୟେ ମାଡ଼ ଖାଇ ଗାଁ କୁ ଫେରିଆସନ୍ତି ।

ଭଗତ ପରିବାରର ଆମ ଅଞ୍ଚଳରେ ଆଉ ଅନେକ ଗ୍ରାମରେ ଜମିଦାରୀ ଥିଲା । ସେ ଗା ମାନଙ୍କରେ ମଧ୍ୟ ଜମିଦାରଙ୍କ କର୍ମଚାରୀମାନଙ୍କର ଏହିପରି ବ୍ୟବହାର ଥିଲା । ଆମ ସମସ୍ତଙ୍କ ଜାଣିବାରେ ଭଗତ ପରିବାର କଟକରେ ବଡ଼ ଧନୀ ପରିବାର ଥିଲେ । ବକ୍ସିବଜାରରେ ସେମାନଙ୍କର ବିରାଟ କୋଠାଘର ଥିଲା । ସୁନାରୁପା ବନ୍ଧକ ରଖି କଟକର ବହୁ ମାରୁଆଡ଼ି ବ୍ୟବସାୟୀଙ୍କୁ ସେମାନେ ବହୁ ଟଙ୍କା କରଜ ଦେଉଥିଲେ । ଜମିଦାରୀ ଓ ମହାଜନୀରୁ ସେମାନଙ୍କର ପ୍ରଚୁର ଆୟ ହେଉଥିଲା । ଆମ ଅଞ୍ଚଳରେ ତାଙ୍କ ଜମିଦାରୀରେ ତାଙ୍କ ତହସିଲଦାର ସାଧୁ ମହାନ୍ତି ଏବଂ ମୋହରିର ଲକ୍ଷ୍ମୀଧର ପାତ୍ର ଧନୀ ହୋଇ ବହୁ ଜମିବାଡ଼ି ଓ ଘର ଦ୍ୱାର କରିଥିଲେ । ୧୯୩୦ ମସିହା ପରେ ଯେତେବେଳେ ବହୁ ଅଞ୍ଚଳରେ ପ୍ରଜାମାନେ ଜମିଦାରମାନଙ୍କ ଅତ୍ୟାଚାର ବିରୋଧରେ ଆନ୍ଦୋଳନ କଲେ ଏବଂ ଜମିଦାରୀ ପ୍ରଭୃତି ପ୍ରଥା ଲୋପ କରିବାକୁ ଦାବି କଲେ, ସେତେବେଳେ ସାଧୁ ମହାନ୍ତି ଓ ଲକ୍ଷ୍ମୀଧର ପାତ୍ରଙ୍କ ଅବସ୍ଥା ଶୋଚନୀୟ ହେଲା । ଲୋକମାନେ ତାଙ୍କୁ ସମାଜରୁ ବାସନ୍ଦ କଲେ, ତାଙ୍କ ଜମିରେ ହଳ କଲେ ନାହିଁ, ତାଙ୍କର ଘର ଛପର କଲେ ନାହିଁ ଏବଂ ସେମାନଙ୍କ ପରିବାରମାନଙ୍କୁ ବହୁ ପ୍ରକାର କ୍ଲେଶ ଦେଲେ ।

୧୯୨୦ ମସିହା ବେଳକୁ ବ୍ରିଟିଶ ସରକାର ମଧ୍ୟ ଜାଣି ପାରିଥିଲେ ଯେ, ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ତାଙ୍କ ଅମଳରେ ଗଢ଼ି ଉଠିଥିବା ଜମିଦାରୀ ଏବଂ ଅନ୍ୟ ମଧ୍ୟସ୍ୱତ୍ୱାଧିକାରୀ ପ୍ରଥା ଯୁଗୋପଯୋଗୀ ଏବଂ ଜନହିତକର ପ୍ରଥା ନୁହେଁ । ସେମାନେ କୃଷିର ଉନ୍ନତି କରିବା ପରିବର୍ତ୍ତେ କୃଷି ଉନ୍ନତିର ପ୍ରତିବନ୍ଧକ ଥିଲେ । ତଥାପି ବ୍ରିଟିଶ ସରକାର ସେହି ଶ୍ରେଣୀର ଲୋକମାନଙ୍କର ପୃଷ୍ଠପୋଷକ ଥିଲେ । କାରଣ ସେମାନେ ନିହିତସ୍ୱାର୍ଥ ଶ୍ରେଣୀର ଲୋକଥିବାରୁ, ସର୍ବଦା ଜନ-ଆନ୍ଦୋଳନ ବିରୋଧରେ ସରକାରଙ୍କର ସମର୍ଥକ ଥିଲେ । କିନ୍ତୁ ୧୯୨୧ ମସିହାରେ ଯେତେବେଳେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା, ସେତେବେଳେ ଭାରତବର୍ଷର ସବୁ ପ୍ରଦେଶରେ ଚାଷୀ ମୂଲିଆମାନେ ଜମିଦାର ଓ ସବୁ ପ୍ରକାର ମଧ୍ୟସ୍ୱତ୍ୱାଧିକାରୀଙ୍କ ବିରୋଧରେ ସ୍ୱର ଉତ୍ତୋଳନ କଲେ ଏବଂ ସେ ସବୁ ପ୍ରଥା ଲୋପ କରିବାକୁ ଦାବି କଲେ । ୧୯୨୧ ମସିହା ପରେ ଜାତୀୟ କଂଗ୍ରେସ ମଧ୍ୟ ସେ ପ୍ରଥା ସବୁ ଲୋପ କରି ଚାଷୀ ମୂଲିଆମାନଙ୍କ ଉପରେ ହେଉଥିବା ଅତ୍ୟାଚାରକୁ ବନ୍ଦ କରିବାକୁ ସବୁବେଳେ ଦାବି କଲା । ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଦ୍ୱିତୀୟ ମହାଯୁଦ୍ଧ ସମୟରେ ବଙ୍ଗ ପ୍ରଦେଶରେ ସାର୍ ଫ୍ରାନ୍‌ସିସ୍ ଫ୍ଲାଉଡ଼ଙ୍କ ଅଧ୍ୟକ୍ଷତାରେ ଜମିଦାରୀ ଲୋପ ବିଷୟରେ ବସିଥିବା କମିସନ୍ ଜମିଦାରୀ ଏବଂ ଅନ୍ୟ ମଧ୍ୟସ୍ୱତ୍ୱାଧିକାର ଲୋପ ପାଇଁ ସୁପାରିସ୍ କରିଥିଲେ । ୧୯୪୬ ମସିହା ନିର୍ବାଚନରେ ମଧ୍ୟସ୍ୱତ୍ୱାଧିକାର ଲୋପ କଂଗ୍ରେସ ପାର୍ଟିର ନିର୍ବାଚନ ଇସ୍ତାହାରରେ ଗୋଟିଏ ପ୍ରଧାନ କାର୍ଯ୍ୟକ୍ରମ ରୂପେ ସ୍ଥାନ ପାଇଥିଲା । ସ୍ୱାଧୀନତା ପ୍ରାପ୍ତିର ବର୍ଷେ ଦୁଇବର୍ଷ ମଧ୍ୟରେ ଭାରତର ପ୍ରାୟ ସବୁ ପ୍ରଦେଶରେ ଜମିଦାରୀ ଆଦି ମଧ୍ୟସ୍ୱତ୍ୱାଧିକାର ଲୋପ ବିଷୟରେ କମିସନ୍‌ମାନ ବସିଥିଲା ।

ଓଡ଼ିଶାରେ ୧୯୪୯ ମସିହାରେ ଜମିଜମା କମିଟି (Land Revenue and Land Tenure Commitee) ରାଜ୍ୟରେ ସମସ୍ତ ପ୍ରକାର ମଧ୍ୟସ୍ୱତ୍ୱାଧିକାର ଲୋପ ପାଇଁ ସୁପାରିସ୍ କଲା । ସେହି କମିଟିର ସୁପାରିସ୍ ଅନୁସାରେ ୧୯୫୧ ମସିହାରେ ବିଧାନସଭାରେ ଜମିଦାରୀ ଓ ମଧ୍ୟସ୍ୱତ୍ୱାଧିକାର ଲୋପ ଆଇନ (Orissa Estates Abolition Act) ପାସ୍ ହେଲା ଏବଂ ୧୯୫୨ ମସିହା ଜାନୁଆରୀ ମାସ ୨୩ ତାରିଖରେ ଭାରତର ରାଷ୍ଟ୍ରପତି ସେ ଆଇନକୁ ସ୍ୱୀକୃତି ପ୍ରଦାନ କଲେ । ସେ ଆଇନ୍‌ରେ ଉଲ୍ଲେଖ ଥିଲା ଯେ ସ୍ୱାଧୀନ ଭାରତର ସମ୍ବିଧାନର ଉଦ୍ଦେଶ୍ୟ ଅନୁସାରେ ଜନସାଧାରଣଙ୍କୁ ଅର୍ଥନୈତିକ ନ୍ୟାୟ ଦେବା-ପାଇଁ ଏବଂ ଅଳ୍ପ ଲୋକଙ୍କ ହାତରେ ସମ୍ପତ୍ତି ଠୁଳ କରିବା ବନ୍ଦ କରିବା ପାଇଁ, ଓଡ଼ିଶା ସରକାର ଭୂସମ୍ପତ୍ତିରେ ସମସ୍ତ ପ୍ରକାର ମଧ୍ୟସ୍ୱତ୍ୱାଧିକାର ଲୋପ କଲେ ।

ମଧ୍ୟସ୍ୱତ୍ୱାଧିକାରୀ ମଧ୍ୟରେ ଜମିଦାର, ମାଲ୍‌ଗୁଜାର, ଠିକାଦାର, ଗଉନ୍ତିଆ, ଜାଗିରଦାର, ମାଫିଦାର, ଇନାମଦାର, ଇଲାକାଦାର, ଖରପୋଷ୍‌ଦାର ପ୍ରଭୃତି ରୟତ ଓ ସରକାରଙ୍କ ମଧ୍ୟରେ ଥିବା ସମସ୍ତ ପ୍ରକାର ମଧ୍ୟସ୍ୱତ୍ୱାଧିକାରୀ ଅନ୍ତର୍ଭୁକ୍ତ ଥିଲେ । ଏହି ଆଇନ୍ ବଳରେ ସରକାର ବିଭିନ୍ନ ପରିମାଣରେ କ୍ଷତି ପୂରଣ ଦେଇ ସମସ୍ତ ପ୍ରକାର ମଧ୍ୟସ୍ୱତ୍ୱାଧିକାରୀଙ୍କ ସ୍ୱତ୍ୱ ନିଜ ହାତକୁ ନେଲେ ଏବଂ ସରକାର ଓ ରୟତମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପିତ ହେଲା । ମଧ୍ୟସ୍ୱତ୍ୱାଧିକାରୀଙ୍କ ପରିବର୍ତ୍ତେ ସରକାରୀ କର୍ମଚାରୀମାନେ ରୟତମାନଙ୍କଠାରୁ ଖଜଣା ଆଦାୟ କଲେ ।

ମାତ୍ର ଜମିମାଲିକ ଓ ରୟତି ପ୍ରଥା ଏବଂ ଜମିମାଲିକମାନଙ୍କର ଜମିଚାଷ କରୁଥିବା ପ୍ରଜା ଉପରେ ଜୁଲମ ଏହିଠାରୁ ପରିସମାପ୍ତି ହେଲା ନାହିଁ । ମଧ୍ୟସ୍ୱତ୍ୱାଧିକାର ଲୋପ ପରେ ଭାରତବର୍ଷର ସବୁ ରାଜ୍ୟରେ ଦେଖାଗଲା ଯେ, ରୟତି ସୂତ୍ରରେ ଯେଉଁମାନେ ଜମିମାଲିକାନା ପାଇଲେ, ସେମାନଙ୍କ ମଧ୍ୟରୁ ଅନେକ ଲୋକ ବହୁ ପରିମାଣ ଜମିର ମାଲିକ ହେଲେ । ପୂର୍ବତନ ରାଜା, ଜମିଦାର ଓ ଗଉନ୍ତିଆ ପ୍ରଭୃତି ମଧ୍ୟସ୍ୱତ୍ୱାଧିକାରୀମାନେ ମଧ୍ୟ ବହୁ ପରିମାଣ ନିଜ ଚାଷ ଜମିର ମାଲିକ ହେଲେ । ସେମାନେ ସେ ଜମି ନିଜେ ଚାଷ ନ କରି ଭୂମିହୀନ ବା ଅତି ଅଳ୍ପ ଜମି ଥିବା ଚାଷୀଙ୍କ ଦ୍ୱାରା ଭାଗ ବା ସଞ୍ଜା ସୂତ୍ରରେ ଚାଷ କରାଇଲେ । ଭାଗଚାଷୀଙ୍କର ଜମିରେ କିଛି ସ୍ୱତ୍ୱ ନ ଥିଲା ଏବଂ ଜମି ମାଲିକମାନେ ସେମାନଙ୍କଠାରୁ ଇଚ୍ଛା ଅନୁସାରେ ଜମି ଛଡ଼ାଇ ଆଣି ପାରୁଥିଲେ । ପରମ୍ପରା ଅନୁସାରେ ଭାଗଚାଷୀମାନେ ଜମିରୁ ଉତ୍ପାଦନର ଶତକଡ଼ା ୫୦ ଭାଗ ବା ଅଧା ଭାଗ ଜମିମାଲିକକୁ ଦେଉଥିଲେ । ଖଜଣା ବ୍ୟତୀତ ଚାଷର ସବୁ ଖରଚ ଭାଗଚାଷୀ ବହନ କରୁଥିଲା । ଜମି ମାଲିକମାନେ ଚାଷରେ କିଛି ଖର୍ଚ୍ଚ ନ କରି ଫସଲର ଅଧା ଅଂଶ ଆଦାୟ କରୁଥିଲେ । ଭାଗ ଦିଆଯାଉଥିବା ଜମିର ମାଲିକମାନେ ଜମିର ଉନ୍ନତି ଏବଂ ଉନ୍ନତ ଚାଷପାଇଁ କୌଣସି ପୁଞ୍ଜି ଖଟାଇଲେ ନାହିଁ । ଭାଗଚାଷୀଙ୍କର ମଧ୍ୟ ଜମିର ଉନ୍ନତି କରିବା ବା ଉନ୍ନତ ଧରଣର ଚାଷ କରିବାପାଇଁ ଉତ୍ସାହ ନ ଥିଲା, କାରଣ ତାଙ୍କ ଖର୍ଚ୍ଚରେ ଅଧିକ ଫସଲ ହେଲେ ଜମି ମାଲିକ ତାର ଅଧା ଅଂଶ ନେବ । ତା'ପରେ ତା'ଠାରୁ ଜମି ମାଲିକ କେତେବେଳେ ଜମି ଛଡ଼ାଇ ନେବ ତାର ସ୍ଥିରତା ନ ଥିଲା । ଜମି ଛଡ଼ାଇ ନେଲାବେଳେ, ଜମିର ଉନ୍ନତିପାଇଁ ଖର୍ଚ୍ଚର କ୍ଷତି ପୂରଣ ଦେବା ବ୍ୟବସ୍ଥା ନ ଥିଲା । ଏପରି ପରିସ୍ଥିତିରେ ଜମିମାଲିକମାନେ ପୂର୍ବତନ ଜମିଦାର ବା ମଧ୍ୟସ୍ୱତ୍ୱାଧିକାରୀଙ୍କ ପରି ବ୍ୟବହାର କଲେ । ଭାଗଚାଷୀମାନେ ପୂର୍ବତନ ଶୋଷିତ ରୟତଙ୍କ ଅବସ୍ଥା ଭୋଗିଲେ । ଜମି ଭାଗ ଲଗାଇବା ଗୋଟିଏ

ଲାଭଜନକ ବ୍ୟବସାୟ ହୋଇଥିଲା । ମହାଜନ ଏବଂ ଅନ୍ୟ ଉପାୟରେ ଧନୀ ହୋଇଥିବା ଲୋକମାନେ ଜମି କିଣି ଚାଷ ନ କରି ଜମି ଭାଗ ଲଗାଇଲେ । ଏହି ପ୍ରକ୍ରିୟାରେ ଅଳ୍ପ ଲୋକଙ୍କ ହାତରେ ବହୁ ଜମି ଠୁଳ ହେଲା । ପ୍ରକୃତରେ ଚାଷ କରୁଥିବା ଲୋକ ଭାଗଚାଷୀ କିମ୍ବା କୃଷି ଶ୍ରମିକ ହୋଇଗଲେ । ଏ ଅବସ୍ଥା ସୁଧାରିବାପାଇଁ ଭୂସଂସ୍କାର କାର୍ଯ୍ୟକ୍ରମର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ ହେଲା । ୧୯୫୬ ମସିହାଠାରୁ ୧୯୬୦ ମସିହା ମଧ୍ୟରେ ସବୁ ରାଜ୍ୟରେ ପ୍ରଜାସ୍ୱତ୍ୱ ଆଇନ-ମାନ ପ୍ରଣୀତ ହେଲା ।

ପ୍ରଜାସ୍ୱତ୍ୱ ଆଇନମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା, ଭାଗଚାଷୀମାନଙ୍କୁ କୃଷି କରୁଥିବା ଜମିରେ ସ୍ଥାୟିତ୍ୱ ଦେବା ଏବଂ ଯଥେଷ୍ଟ କାରଣ ନ ଥାଇ ଚାଷୀଙ୍କୁ ଜମିରୁ ଘନ ଘନ ଉଚ୍ଛେଦ ବନ୍ଦ କରିବା । ଦ୍ୱିତୀୟରେ ଭାଗ ଜମିରୁ ଉତ୍ପନ୍ନ ଶସ୍ୟରୁ ମାଲିକର ଭାଗ ନ୍ୟାୟୋଚିତ ଭାବରେ ସ୍ଥିର କରିବା, ତୃତୀୟରେ ମାଲିକ ପ୍ରଜାଙ୍କୁ ଜମିରୁ ଉଚ୍ଛେଦ କଲାବେଳେ ପ୍ରଜା କରିଥିବା ଜମିର ଉନ୍ନତିପାଇଁ ଉଚିତ କ୍ଷତିପୂରଣ ଦେବା । ଏହି କାର୍ଯ୍ୟକ୍ରମରେ ଓଡ଼ିଶାରେ ୧୯୪୮ ଏବଂ ୧୯୫୫ ମସିହାରେ ଭାଗଚାଷୀଙ୍କର ସ୍ୱାର୍ଥରକ୍ଷା ପାଇଁ ଆଇନ ପାସ୍ ହେଲା (Orissa Tenants Protection Act. 1948 and Orissa Tenants Relief Act. 1955) ୧୯୪୮ ମସିହା ଆଇନରେ ଧାର୍ଯ୍ୟ ହେଲା ଯେ ୩୩ ଏକରରୁ ଅଧିକ ଥିବା ଜମି ମାଲିକମାନେ ନିଜ ଚାଷପାଇଁ ଭାଗଚାଷୀଠାରୁ ଜମି ଛଡ଼ାଇ ନେଇ ପାରିବେ ନାହିଁ । ଦ୍ୱିତୀୟରେ ଜମି ମାଲିକମାନଙ୍କର ଭାଗ ଉତ୍ପନ୍ନ ଶସ୍ୟର ପାଞ୍ଚ ଭାଗରୁ ଦୁଇଭାଗ ଅଧିକ ହେବ ନାହିଁ । ୧୯୫୫ ମସିହାରେ ଏ ଆଇନର ସଂଶୋଧନ ହୋଇ ଧାର୍ଯ୍ୟ ହେଲା ଯେ ସାତ ଏକରରୁ ଅଧିକ ଜମି ଥିବା ମାଲିକମାନେ ନିଜ ଚାଷ ପାଇଁ ଭାଗଚାଷୀଠାରୁ ଜମି ଛଡ଼ାଇ ନେଇପାରିବେ ନାହିଁ ଏବଂ ଭାଗ ଜମିରୁ ମାଲିକ ଉତ୍ପନ୍ନ ଶସ୍ୟର ଏକ ଚତୁର୍ଥାଂଶରୁ ଅଧିକ ନେଇପାରିବ ନାହିଁ ।

ପୂର୍ଣ୍ଣ ଭୂସଂସ୍କାର ଆଇନ ପାସ୍ ହେବା ପୂର୍ବରୁ ଏ ଦୁଇଟିଯାକ ଆଇନ ଅସ୍ଥାୟୀ ଭାବରେ ପାସ୍ ହୋଇଥିଲା । କେତେକ ବର୍ଷ କାର୍ଯ୍ୟକାରୀ ହେଲା ପରେ ୧୯୬୦—୬୧ ମସିହାରେ ଆମେ ଏ ବିଷୟରେ କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ ଓ ସମ୍ବଲପୁର ଜିଲ୍ଲାରେ ଏ ଆଇନମାନଙ୍କର କାର୍ଯ୍ୟକାରିତା ବିଷୟରେ ଗୋଟିଏ ଗବେଷଣାମୂଳକ ଅନୁସନ୍ଧାନ କରିଥିଲୁ । ଏ ଅନୁସନ୍ଧାନରୁ ଏବଂ ଆମର ପ୍ରତ୍ୟକ୍ଷ ଅଭିଜ୍ଞତାରୁ ଜଣାଯାଇଥିଲା ଯେ ଏ ଆଇନ ଦୁଇଟି ପ୍ରକୃତରେ କାର୍ଯ୍ୟକାରୀ ହୋଇ ନ ଥିଲା । କେବଳ କେତେକ ଅପ୍ରତ୍ୟକ୍ଷ ପ୍ରଭାବ ବ୍ୟତୀତ, ଏ ଆଇନ ଦୁଇଟି ଭାଗଚାଷ ପ୍ରଥାରେ କୌଣସି ପରିବର୍ତ୍ତନ ଆଣି ନ ଥିଲା । ଜମିମାଲିକମାନେ

ପୂର୍ବପରି ଭାଗ ଜମିର ଫସଲରୁ ଅଧା ଭାଗ ନେଉଥିଲେ ଏବଂ ଇଚ୍ଛା ଅନୁସାରେ ଭାଗଚାଷୀମାନଙ୍କଠାରୁ ଜମି ଛଡ଼ାଇ ନେଇ ପାରୁଥିଲେ । ଜମି ଭାଗ ଦେଲାବେଳେ କୌଣସି ଲିଖିତ ଚୁକ୍ତି ପତ୍ର ନ ଥିଲା ଏବଂ ଭାଗଚାଷୀମାନେ କଚେରିରେ ମକଦ୍ଦମା କରି ନୂତନ ଆଇନ ଅନୁସାରେ ସେମାନଙ୍କର ଦାବି ସାବ୍ୟସ୍ତ କରି ପାରୁ ନ ଥିଲେ । ଉଭୟ ଜମି ମାଲିକ ଏବଂ ଭାଗଚାଷୀ ଯେତେବେଳେ ରାଜି ହୋଇ ପାରମ୍ପରିକ ରୀତିରେ ଭାଗଚାଷ କରୁଥିଲେ, ସେତେବେଳେ ସରକାରୀ କର୍ମଚାରୀ-ମାନଙ୍କର ଆଇନ କାର୍ଯ୍ୟକାରୀ କରିବାପାଇଁ ସେଥିରେ ହସ୍ତକ୍ଷେପ କରିବାର ସୁଯୋଗ ନ ଥିଲା ।

ଏହି ପରିପ୍ରେକ୍ଷୀରେ ୧୯୬୦ ମସିହାରେ ସମ୍ପୂର୍ଣ୍ଣ ଭୂସଂସ୍କାର ଆଇନ ପାସ୍ ହେଲା । ସେ ଆଇନ୍‌ରେ ନାବାଳକ ଶାରୀରିକ ଅକ୍ଷମ ପ୍ରଭୃତି ଅଳ୍ପ କେତେକ ଜମି ମାଲିକଙ୍କ ବ୍ୟତୀତ ଅନ୍ୟ ଜମିମାଲିକଙ୍କର ଭାଗରେ ଜମି ଚାଷ କରିବା ନିଷେଧ ହେଲା । ଜମି ମାଲିକାନାର ସର୍ବୋଚ୍ଚ ସୀମା ପରିବାରର ଲୋକସଂଖ୍ୟା ଏବଂ ଜମିର କିସମ ଅନୁସାରେ ନିର୍ଦ୍ଧାରିତ ହେଲା । ସର୍ବୋଚ୍ଚ ସୀମା ଉପରେ ଜମିମାଲିକମାନଙ୍କର ବଳକାଜମି ଭୂମିହୀନ ଲୋକମାନଙ୍କ ମଧ୍ୟରେ ବାଣ୍ଟି ଦିଆଯିବାର ବ୍ୟବସ୍ଥା ହେଲା ଏବଂ ଆଗରୁ ଭାଗ ଚାଷରେ ଲାଗିଥିବା ବଳକା ଜମି ସବୁ ଭାଗଚାଷୀମାନେ ନିର୍ଦ୍ଧାରିତ ଦରରେ ଜମିମାଲିକମାନଙ୍କଠାରୁ କିଣି ନେବାର ବ୍ୟବସ୍ଥା ହେଲା । ଏ ଆଇନର ପ୍ରଧାନ ଉଦ୍ଦେଶ୍ୟ ହେଲା ଯେ ଜମି ଚାଷ କରୁଥିବା ଲୋକ ଜମିର ମାଲିକ ହେବ । କୌଣସି କୃଷକ ପାଖରେ ବହୁତ ପରିମାଣରେ ଜମି ରହିବ ନାହିଁ । ସର୍ବୋଚ୍ଚସୀମା ଉପର ବଳକା ଜମି ଭୂମିହୀନ ଏବଂ ଅତି ଅଳ୍ପ ଜମି ଥିବା ଲୋକମାନଙ୍କ ମଧ୍ୟରେ ବାଣ୍ଟିଦେବା ଦ୍ୱାରା ଜମିର ସୁଷମ ବଣ୍ଟନ ହେବ ଏବଂ ଜମି ମାଲିକମାନେ ଜମିର ଉନ୍ନତି ଓ ଉନ୍ନତ ଚାଷ କରିବାକୁ ଆଗ୍ରହୀ ହେବେ । ଓଡ଼ିଶାରେ ଗୋଟିଏ ମୌଳିକ ପରିବାରର ଜମିସୀମା ସବୁ ଋତୁରେ ଜଳସେଚନର ସୁବିଧା ଥିବା ଉର୍ବର ଦଶ ଏକର ଜମି ବୋଲି ସ୍ଥିର ହୋଇଥିଲା । ସେ ଅନୁସାରେ ପରିବାରର ଲୋକସଂଖ୍ୟା ଏବଂ ଜମିର କିସମ ବିଚାରକୁ ନେଇ ବିଭିନ୍ନ ଅଞ୍ଚଳରେ ପରିବାରର ସର୍ବୋଚ୍ଚ ଜମିସୀମା ନିର୍ଦ୍ଧାରିତ ହୋଇଥିଲା ।

ଏହି ଆଇନ ପ୍ରାୟ ତିରିଶ ବର୍ଷ ତଳେ ପାସ୍ ହୋଇଥିଲା । ଏଥିମଧ୍ୟରେ ଥରେ ଦୁଇଥର ଏହାର କେତେକ ଅଂଶ ସଂଶୋଧିତ ହୋଇଛି । ମାତ୍ର ଏଥିମଧ୍ୟରେ ଏ ଆଇନର ସର୍ତ୍ତସବୁ କାର୍ଯ୍ୟକାରୀ କରିବାରେ ବହୁତ ବାଧାବିଘ୍ନ ଉପୁଜିଛି ଏବଂ ଆଇନ କାର୍ଯ୍ୟକାରୀ ହୋଇପାରି ନାହିଁ । ଆମ ଦେଶପରି

ପୁରାତନ କୃଷିପ୍ରଧାନ ଦେଶରେ କୃଷକମାନଙ୍କର ଜମିର ମୋହ ଅତ୍ୟନ୍ତ ଅଧିକ, ବେଶି ଜମିଥିବା ପରିବାରମାନେ ସିଲିଂ ଆଇନରୁ ରକ୍ଷା ପାଇବା ନିମନ୍ତେ ସେମାନଙ୍କର ଜମି ପରିବାରର ବିଭିନ୍ନ ଲୋକଙ୍କ ମଧ୍ୟରେ ବାଣ୍ଟି ଦେଉଛନ୍ତି । ଏକାନ୍ନବର୍ତ୍ତୀ ପରିବାରସବୁ ଭାଗ ଭାଗ ହୋଇଯାଉଛି । ଅନେକ ପରିବାର ଜମି ବେନାମୀରେ ରଖୁଛନ୍ତି । ଏ ସବୁ ଉପାୟ ଦ୍ୱାରା ସେମାନେ ସର୍ବୋଚ୍ଚସୀମା ଉପରେ ବଳକା ଜମି ଦେଖାଉ ନାହାନ୍ତି । ଯେତିକ ବଳକା ଜମି ଦେଖାଯାଉଛି ତାକୁ ମଧ୍ୟ ସରକାରୀ କର୍ମଚାରୀମାନେ ଭୂମିହୀନ ଲୋକଙ୍କ ମଧ୍ୟରେ ସୁଚାରୁରୂପେ ବାଣ୍ଟିପାରୁ ନାହାନ୍ତି । ବଳକା ଜମି ବିଷୟରେ ବହୁ ମାଲିମକଦମା ଚାଲିଛି । ଜମି ମାଲିକମାନେ ପୂର୍ବପରି ଜମି ଭାଗ ଦେଉଛନ୍ତି ଏବଂ ଫସଲର ଅଧାଭାଗ ନେଉଛନ୍ତି । ମୌଖିକ ଭାବରେ ଜମି ଭାଗ ଦିଆଯାଉଛି । ଭାଗଚାଷୀମାନଙ୍କର ଅସହାୟ ଅବସ୍ଥା ଏବଂ ଅଧିକାଂଶ ଜମି ମାଲିକମାନଙ୍କର ବଳିଷ୍ଠ ସ୍ଥିତି ଓ କ୍ଷମତା ଯୋଗୁଁ ଉଭୟପକ୍ଷ ରାଜି ହୋଇ ଭାଗଚାଷ କରୁଥିବାରୁ ସରକାର ସେଥିରେ ହସ୍ତକ୍ଷେପ କରିପାରୁ ନାହାନ୍ତି । ପଶ୍ଚିମବଙ୍ଗ ପରି ଯେଉଁ ରାଜ୍ୟମାନଙ୍କରେ ବଳିଷ୍ଠ ପ୍ରଜାସଙ୍ଗଠନମାନ କାର୍ଯ୍ୟ କରୁଛି, ସେଠାରେ ଭୂସଂସ୍କାର ଆଇନମାନ ତୁରନ୍ତ କାର୍ଯ୍ୟକାରୀ ହୋଇ ପାରୁଛି । ମାତ୍ର ଓଡ଼ିଶାରେ କୌଣସି ରାଜନୈତିକ ଦଳ ମାଧ୍ୟମରେ ଭାଗଚାଷୀ ଓ ଭୂମିହୀନ କୃଷକମାନେ ସଂଗଠିତ ହୋଇପାରି ନାହାନ୍ତି । ୧୯୫୦ ମସିହାରୁ ୧୯୬୦ ମସିହା ମଧ୍ୟରେ ଓଡ଼ିଶାର କେତେକ ଅଞ୍ଚଳରେ ବିନୋବାଜୀଙ୍କ ନେତୃତ୍ୱରେ ପରିଚାଳିତ ଭୂଦାନ ଓ ଗ୍ରାମଦାନ କାର୍ଯ୍ୟକ୍ରମ ସଂଗଠିତ ହୋଇଥିଲା । ୧୯୫୭ ମସିହାରେ ଭଦ୍ରକ ସବଡିଭିଜନର ଶ୍ରୀରାମପୁର ଗ୍ରାମରେ ଗ୍ରାମଦାନ ସଂଗଠନ ଓ କାର୍ଯ୍ୟକ୍ରମ ମୁଁ ଅନୁସନ୍ଧାନ କରିବାକୁ ଯାଇଥିଲି ଏବଂ ଗ୍ରାମବାସୀମାନଙ୍କର ଉତ୍ସାହ ଓ ସାଂଗଠନିକ କାର୍ଯ୍ୟ ପ୍ରତ୍ୟକ୍ଷରେ ଦେଖିଥିଲି । ମାତ୍ର ଅଳ୍ପ କେତେକ ବର୍ଷ ପରେ ଭୂଦାନ ଓ ଗ୍ରାମଦାନ କାର୍ଯ୍ୟକ୍ରମ ଓଡ଼ିଶାରେ ନିଷ୍କ୍ରିୟ ହୋଇଗଲା ଏବଂ ଭୂଦାନ ଆନ୍ଦୋଳନ ମାଧ୍ୟମରେ ଭୂମିର ସମବଣ୍ଟନ କାର୍ଯ୍ୟକ୍ରମ ସଫଳ ହେଲା ନାହିଁ । ବିଗତ କେତେବର୍ଷ ହେଲା ଜମିମାଲିକମାନଙ୍କର ଜମି ଚକବନ୍ଦୀ କରିବାପାଇଁ ଓଡ଼ିଶା ସରକାରଙ୍କର ରାଜସ୍ୱ ବିଭାଗ ବିଭିନ୍ନ ଜିଲ୍ଲାରେ କାର୍ଯ୍ୟ କରୁଛନ୍ତି । ସେ କାର୍ଯ୍ୟକ୍ରମ ମଧ୍ୟ ଅତି ଧୀର ମନ୍ଥର ଗତିରେ ଚାଲିଛି ।

ବିଂଶ ଶତାବ୍ଦୀ ଶେଷ ହେବାକୁ ଆଉ ମାତ୍ର ପାଞ୍ଚ ସାତ ବର୍ଷ ଅଛି । ଆଜିଯାଏ ଭୂମିରୁ ମଧ୍ୟସ୍ୱତ୍ୱାଧିକାର ଏବଂ ଭାଗଚାଷ ପ୍ରଭୃତି ପ୍ରଥା ଲୋପକରି ପ୍ରକୃତ ଚାଷ କରୁଥିବା ଚାଷୀ ମୂଲିଆମାନଙ୍କୁ ଭୂମିର ସ୍ୱତ୍ୱ ଆଜିଯାଏ ଦିଆଯାଇ ପାରି

ନାହିଁ । ଏ ଦେଶ ପରି ୟୁରୋପର ବହୁ ଦେଶରେ ଏପରି ସମସ୍ୟା ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଥିଲା । ଚୀନ୍ ଓ ଜାପାନ ଦେଶରେ ମଧ୍ୟ ଏପରି ସମସ୍ୟା ୧୯୫୦—୬୦ ମସିହା ପର୍ଯ୍ୟନ୍ତ ଥିଲା । ମାତ୍ର ପ୍ରତିଷେଧକ ଆଇନ ପ୍ରଣୟନ ଏବଂ ତା'ର ତ୍ୱରାନ୍ୱିତ କାର୍ଯ୍ୟକାରିତା ଦ୍ୱାରା ସମସ୍ୟାର ସମାଧାନ ହୋଇପାରିଛି । ମାତ୍ର ଓଡ଼ିଶା ସମେତ ଭାରତର ବହୁ ରାଜ୍ୟରେ ବିଂଶ ଶତାବ୍ଦୀ ମଧ୍ୟରେ ଏ ସମସ୍ୟାର ସମାଧାନ ହୋଇପାରି ନାହିଁ । ପ୍ରାୟ ଦୁଇଶହ ବର୍ଷ ତଳେ ୧୮୦୫ ମସିହାରେ ଓଡ଼ିଶାରେ ବ୍ରିଟିଶ ଶାସନ ଆରମ୍ଭରେ ଚିରସ୍ଥାୟୀ ବନ୍ଦୋବସ୍ତ ଓ ଜମିଦାରୀ ପ୍ରଥା ଆରମ୍ଭ ହୋଇଥିଲା । ଶହେ ବର୍ଷ ମଧ୍ୟରେ ଏ ରାଜ୍ୟରେ ଜମିଦାର ଓ ବିଭିନ୍ନ ମଧ୍ୟସ୍ୱତ୍ୱାଧିକାରୀଙ୍କ ଶାଖା ପ୍ରଶାଖା ମେଲିଗଲା । ଆମ ଜନ୍ମ ସମୟ ୧୯୬୦ ମସିହା ପର୍ଯ୍ୟନ୍ତ ସବୁ ପ୍ରକାର ମଧ୍ୟସ୍ୱତ୍ୱାଧିକାରୀଙ୍କ ସ୍ଥିତି ଦୃଢ଼ ଥିଲା । ସ୍ୱାଧୀନତା ପରେ ସେମାନଙ୍କର ସ୍ୱତ୍ୱ ଲୋପ ପାଇଗଲା ମାତ୍ର ଆଉ ଅନେକ ପ୍ରକାର ଭୂମି ସମସ୍ୟା ଦେଖାଦେଲା । ଗୋଟିଏ ଚିରନ୍ତନ ସମସ୍ୟା ପରି ସେ ସମସ୍ୟା ସବୁ ଏକବିଂଶ ଶତାବ୍ଦୀକୁ ଗଡ଼ିଯାଉଛି ।

# ମହାଜନ ଓ ଖାତକ

## ୮

ଭାରତବର୍ଷର ସବୁଆଡ଼େ ଗୋଟିଏ ପ୍ରବାଦ ଅଛି ଯେ ଯେଉଁ ଗାଁରେ ନଈ ନାହିଁ, ବୈଦ୍ୟ ନାହିଁ ଓ ମହାଜନ ନାହିଁ, ସେ ଗାଁ ବାସଯୋଗ୍ୟ ନୁହେଁ । ରାଜ୍ୟର ରାଜାପରି ଗାଁର ମହାଜନ ଗୋଟିଏ ପ୍ରାଚୀନ ଅନୁଷ୍ଠାନ ଏବଂ ଗ୍ରାମ୍ୟ ସମାଜରେ ତାଙ୍କର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଭୂମିକା ଅଛି । ଜମିଦାର ଓ ବିଭିନ୍ନ ପ୍ରକାର ମଧ୍ୟସ୍ୱତ୍ୱାଧିକାରୀଙ୍କ ପରି ପରାଙ୍ଗପୁଷ୍ଟ ବ୍ୟକ୍ତି ବା ଅନୁଷ୍ଠାନମାନଙ୍କର ଉଦ୍‌ଭବ ଅଳ୍ପ କେତେ ଶହ ବର୍ଷ ହେଲା ହୋଇଥିଲା । ସେମାନଙ୍କର କାର୍ଯ୍ୟ ଅନ୍ୟ ବ୍ୟକ୍ତି ବା ଅନୁଷ୍ଠାନ ମାଧ୍ୟମରେ କରିବା କଷ୍ଟକର ନ ଥିଲା ଏବଂ ସେମାନଙ୍କୁ ସହଜରେ ଲୋପ କରି ହେଲା । କିନ୍ତୁ ମହାଜନଙ୍କର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ମହାଜନ ସବୁବେଳେ ସବୁ ଦେଶରେ ଥିଲେ । ସେମାନଙ୍କ କାର୍ଯ୍ୟ ଅନ୍ୟମାନେ କରିବା ସହଜ ନୁହେଁ । ତେଣୁ ସେମାନଙ୍କୁ ସମ୍ପୂର୍ଣ୍ଣ ଲୋପ କରିବା ସହଜ ନୁହେଁ ।

ବ୍ରିଟିଶ ରାଜତ୍ୱ ବେଳକୁ ଭାରତବର୍ଷର ସବୁ ପ୍ରଦେଶରେ ମହାଜନୀ କାରବାର ଚିରାଚରିତ ପ୍ରଥା ଅନୁସାରେ ଚାଲିଥିଲା । ବହୁକାଳ ପ୍ରଚଳିତ ସେ ପ୍ରଥାରେ କାଳକ୍ରମେ ବହୁ କଳଙ୍କ ଲାଗିଯାଇଥିଲା । ମାତ୍ର ସବୁଆଡ଼େ ପଲ୍ଲୀ ଅଞ୍ଚଳରେ ମହାଜନମାନଙ୍କର ସ୍ଥିତି ଓ କ୍ଷମତା ସୁଦୃଢ଼ ଥିଲା । ବ୍ରିଟିଶ ସରକାରଙ୍କ ଅମଳରେ କୋର୍ଟ କଚେରି ମାଧ୍ୟମରେ ଋଣ ଆଦାୟ ଓ ଜମି ହସ୍ତାନ୍ତର ପ୍ରଭୃତି ସୁଗମ ହେବାରୁ ସେମାନଙ୍କର ସ୍ଥିତି ଓ କ୍ଷମତା ଆହୁରି ସୁଦୃଢ଼ ହୋଇଥିଲା ଏବଂ ସମାଜରେ ସେମାନଙ୍କର ପ୍ରତିପତ୍ତି ବୃଦ୍ଧି ପାଇଥିଲା । ଗ୍ରାମାଞ୍ଚଳରେ ସେହି ଶ୍ରେଣୀର ଲୋକମାନେ ଅଧିକ ଧନୀ ହୋଇ ଯାଇଥିଲେ ଏବଂ ବହୁ ପରିମାଣ ଜମିବାଡ଼ିର ମାଲିକ ହୋଇଗଲେ । ସେମାନଙ୍କର ବର୍ଦ୍ଧିତ ଧନସମ୍ପତ୍ତି ଗାଁମାନଙ୍କରେ ଅନ୍ୟମାନଙ୍କ ଶୋଷଣରୁ ଉଦ୍‌ଭବ ହୋଇଥିଲା ଏବଂ ଅନ୍ୟମାନଙ୍କୁ ଶୋଷଣ କରିବାର ଅସ୍ତ୍ର ହୋଇଥିଲା ।

ବ୍ରିଟିଶ ଶାସନ କାଳରେ ଅନେକ କମିଟି ଓ ପ୍ରଶାସକ ମହାଜନଙ୍କ ଭୂମିକାର ଭୂୟସୀ ପ୍ରଶଂସା କରିଥିଲେ । ଅବିଭକ୍ତ ପଞ୍ଜାବ ପ୍ରଦେଶର ସମବାୟ

ବଙ୍ଗଳର ରେଜିଷ୍ଟ୍ରାର ସାର୍ ମାଲକମ ଡାର୍ଲିଂ ଲେଖିଛନ୍ତି, ଗାଁର କୃଷିଜାତ ପଦାର୍ଥ ବିକ୍ରି କରିବାରେ, ଗାଁ ଲୋକଙ୍କର ଦରକାରୀ ପଦାର୍ଥ ଗାଁକୁ ଆଣି ବିକ୍ରି କରିବାରେ, ସୁଖ ଦୁଃଖରେ ଗାଁ ଲୋକମାନଙ୍କୁ ଋଣ ଦେବାରେ ମହାଜନ ଗାଁ ଲୋକମାନଙ୍କର ପରମ ଉପକାରୀ ରୂପେ କାର୍ଯ୍ୟ କରନ୍ତି । ତାଙ୍କର ସାହାଯ୍ୟ ବିନା ଗାଁର ଦରିଦ୍ର ଲୋକମାନେ ବଢ଼ି, ମରୁଡ଼ି, ଦୁର୍ଭିକ୍ଷ ଦୁର୍ଦ୍ଦିନରେ ବଞ୍ଚି ପାରନ୍ତେ ନାହିଁ । ଐତିହାସିକ ଉଇଲିଅମ୍ ହଣ୍ଟର ଲେଖିଛନ୍ତି ଯେ, ସଞ୍ଚୟହୀନ ଅଭାବଗ୍ରସ୍ତ ଜନତା ମଧ୍ୟରେ ମହାଜନହିଁ କେବଳ ଜଣେ ବ୍ୟକ୍ତି, ଯେ କି ସଞ୍ଚୟ କରନ୍ତି । ତାଙ୍କର ସାହାଯ୍ୟ ବିନା ସମଗ୍ର ଗ୍ରାମବାସୀ ଗୋଟିଏ ବର୍ଷର ଶସ୍ୟ ଉପରେ ନିର୍ଭର କରିବାକୁ ବାଧ୍ୟ ହୁଅନ୍ତେ । ମହାଜନମାନଙ୍କୁ ନିନ୍ଦା କରିବାବେଳେ ମନେ ରଖିବାକୁ ହେବ ଯେ ହଜାର ହଜାର ବର୍ଷ ହେଲା ସେମାନଙ୍କ ସାହାଯ୍ୟରେ ଲକ୍ଷ ଲକ୍ଷ ଲୋକ ବଞ୍ଚି ରହିବାକୁ ସମର୍ଥ ହୋଇଛନ୍ତି ।

ଘରେ ଖାଦ୍ୟ ନ ଥିଲାବେଳେ କୁଟୁମ୍ବ ବଞ୍ଚାଇବାପାଇଁ, ପରିବାରରେ କେହି ରୋଗରେ ପଡ଼ିଲେ ବା ମରିଗଲେ, ବଢ଼ି ବତାସରେ ଘର ଭାଙ୍ଗିଗଲେ, କୃଷି ପାଇଁ ଅତ୍ୟାବଶ୍ୟକ ବଳଦ ମରିଗଲେ, ପରିବାରରେ ଶ୍ରାଦ୍ଧକ୍ରିୟା, ବିବାହ, ବ୍ରତ ପ୍ରଭୃତି ଅପରିହାର୍ଯ୍ୟ ସାମାଜିକ କାର୍ଯ୍ୟ କରିବାକୁ ହେଲେ ସଞ୍ଚୟହୀନ, ଅଭାବଗ୍ରସ୍ତ ଲୋକଙ୍କର ସମସ୍ତ ଅସମୟରେ ମହାଜନ ଦୁଆରେ ଠିଆ ହେବା ବ୍ୟତୀତ ଅନ୍ୟ ଗତି ନାହିଁ । ମହାଜନ ହିଁ ଏକମାତ୍ର ବ୍ୟକ୍ତି ଯାହାଙ୍କ ଘରକୁ ଦିନର ଯେ କୌଣସି ସମୟରେ କିମ୍ବା ଅସମୟ ରାତିରେ ଯାଇହେବ ଏବଂ ତାଙ୍କଠାରୁ ସଙ୍ଗେ ସଙ୍ଗେ ଋଣ ମିଳି ପାରିବ । ମହାଜନ ମଧ୍ୟ ଗାଁର ଓ ପାଖଆଖ ଗାଁର ସବୁ ଲୋକଙ୍କୁ ଜାଣନ୍ତି । କିଏ ଗାଲୁଆ ଠକ, କିଏ ସଚ୍ଚା, କାହାର ସମ୍ପତ୍ତି କେତେ ଓ ଆୟର ସୂତ୍ର କଅଣ, କାହାଠାରୁ ସହଜରେ ଋଣ ଆଦାୟ ହୋଇପାରିବ ଏବଂ ଆଉ କାହାଠାରୁ ଋଣ ଆଦାୟ କରିବାପାଇଁ କୋର୍ଟ କଚେରିକୁ ଯିବାକୁ ପଡ଼ିବ, ଏ ସବୁ କଥା ମହାଜନଙ୍କୁ ଜଣା । ସୁତରାଂ ସେ ସେହି ଅନୁସାରେ ସୁଧ ହାର ସ୍ଥିର କରନ୍ତି, କାଗଜପତ୍ର କରାଇ ନିଅନ୍ତି ଏବଂ ଋଣ ପରିଶୋଧର କିସ୍ତି ଓ ସମୟ ସ୍ଥିର କରନ୍ତି । ମହାଜନଙ୍କର ଲୋଭର ମଧ୍ୟ ସୀମା ନ ଥାଏ । କାହାର ଭଲ ଜମି ଖଣ୍ଡେ ତାଙ୍କ ଜମିକୁ ଲାଗିଛି, କାହାର ଲୋଭନୀୟ ଉହ୍ୱବାଡ଼ି ଅଛି, କାହାଘରେ ମଧ୍ୟ ଦୁଧିଆଳୀ ଗାଈ ଅଛି, ସେ ସବୁ ଉପରେ ମହାଜନଙ୍କର ଆଖି ଥାଏ । ଖାତକ ମଧ୍ୟ ଜାଣେ ଯେ ମହାଜନଙ୍କ ଜାଲ ବଡ଼ ଟାଣ, ଥରେ ସେ ଜାଲରେ ପଡ଼ିଲେ ଜମି ବା ଉହ୍ୱ ବାଡ଼ି ବିକ୍ରି ହୋଇଯାଇ ପାରେ, ଋଣର ସୁଧମୂଳ ସହ ବହୁଗୁଣ ଦେବାକୁ ପଡ଼ିବ । କେଉଁ ମହାଜନଙ୍କର

ଧର୍ମକୁ ଭୟ ଅଛୁ, ଆଉ କାହାର ହୃଦୟ ପଥର ଠାରୁ ଟାଣ, ସେଥିରେ ଦୟାମାୟାର ସମ୍ଭାବନା ନାହିଁ । ଇଚ୍ଛା କଲେ ସେ ହଜାର ପ୍ରକାର ଜାଲ୍ ଫିସାଦ କରି ପାରିବେ ଏବଂ କୋର୍ଟ କଚେରିରେ ମିଛ ସତ କହିପାରିବେ । ଏ ସବୁ କଥା ଉଭୟ ପକ୍ଷଙ୍କୁ ଭଲ ରୂପେ ଜଣା । ତଥାପି ଅବସ୍ଥାର ତାଡ଼ନାରେ ଖାତକ ମହାଜନଙ୍କର ଜାଲ ଭିତରକୁ ଆସେ ଏବଂ ମହାଜନ ସବୁ ଲୋକଙ୍କ ସଙ୍ଗେ କାରବାର କରନ୍ତି । ଏହିପରି ପରିସ୍ଥିତିରେ ଶହ ଶହ ବର୍ଷ ଧରି ଆମ ଦେଶରେ ମହାଜନ କାରବାର ଚାଲି ଆସିଥିଲା ।

ବ୍ରିଟିଶ ରାଜତ୍ୱ ପୂର୍ବରୁ କୋର୍ଟ କଚେରି ସଙ୍ଗଠିତ ନ ଥିଲା । ଜମିବାଡ଼ିର ନିଲାମ ମଧ୍ୟ ସହଜସାଧ୍ୟ ନ ଥିଲା କାରଣ ପରିବାର ସବୁ ଏକାନ୍ନବର୍ତ୍ତୀ ଥିଲା ଏବଂ ଜମିବାଡ଼ିରେ ବ୍ୟକ୍ତିଗତ ସ୍ୱତ୍ୱ ସ୍ପଷ୍ଟ ନ ଥିଲା । ମହାଜନ ଓ ଖାତକମାନେ ଦୃଢ଼ ଗ୍ରାମଗୋଷ୍ଠୀ ସଂଗଠନ ଏବଂ ସାମାଜିକ ପରମ୍ପରା ମଧ୍ୟରେ କାରବାର କରୁଥିଲେ । ସେକାଳେ ମଧ୍ୟ ଧନୀ ମହାଜନମାନେ ସାମାଜିକ ବାସନ୍ଦ ଓ ପରମ୍ପରାର ଅଧିକ ସୁଯୋଗ ନେଉଥିଲେ । କିନ୍ତୁ ବ୍ରିଟିଶ ରାଜତ୍ୱ କାଳରେ ଏକାନ୍ନବର୍ତ୍ତୀ ପରିବାର ସବୁ ଭାଙ୍ଗିବାକୁ ଲାଗିଲା । ଆଇନ ଅନୁସାରେ ଭୂସମ୍ପତ୍ତିରେ ବ୍ୟକ୍ତିଗତ ସ୍ୱତ୍ୱ କ୍ରମେ ସ୍ପଷ୍ଟ ହୋଇଗଲା । ମହାଜନମାନେ ଓକିଲ ଓ ମୋହରିରଙ୍କ ସହ ପରିଚିତ ହୋଇଗଲେ, ଆଇନ କାନୁନ ମକଦ୍ଦମାର ରୀତି ଏବଂ ହାକିମମାନଙ୍କ ରହସ୍ୟ ବିଷୟ ଜାଣିଲେ । କିପରି ଖାତାପତ୍ର ଓ କାଗଜ କଲେ କଚେରି ମାଧ୍ୟମରେ ଖାତକର ଜମି ନିଲାମ କରିହେବ କିମ୍ବା ତାର ଘର କୋରକ୍ କରିହେବ ତାହା ଜାଣିଲେ ଏବଂ ସେହି ଅନୁସାରେ ଖାତାପତ୍ର କଲେ ଏବଂ ଖାତାରେ ଓ କାଗଜରେ ଖାତକର ଟିପଚିହ୍ନ ବା ସ୍ୱାକ୍ଷର ସଂଗ୍ରହ କଲେ । ଭାରତବର୍ଷର ସବୁଆଡ଼େ ବ୍ରିଟିଶ ସରକାରଙ୍କର ଆଇନ, ସଂଗଠିତ ଅଦାଲତ, ଭୂସମ୍ପତ୍ତି ରେକର୍ଡ ଏବଂ ସେଥିରେ ବ୍ୟକ୍ତିଗତ ସ୍ୱତ୍ୱ ସାବ୍ୟସ୍ତ ହେବାରୁ ମହାଜନ କାରବାର ଅଧିକ ସୁଗମ ହେଲା ଏବଂ ସେ ପ୍ରକ୍ରିୟାରେ ମଧ୍ୟ ଖାତକର ଜମି ମହାଜନ ହାତକୁ ଯିବା ସହଜ ହେଲା । ଏ ପ୍ରକ୍ରିୟା ମଧ୍ୟ ବ୍ରିଟିଶ ଶାସନ ଅଧୀନରେ ଥିବା ସୁଦୂର ବ୍ରହ୍ମଦେଶ ଓ ସିଂହଳକୁ ବିସ୍ତାରିତ ହୋଇଥିଲା । ତାମିଲନାଡ଼ୁ ରାଜ୍ୟର ମଦୁରାଇ ଅଞ୍ଚଳର ମହାଜନ ଚେଟିଆରମାନେ ବ୍ରହ୍ମଦେଶ ଯାଇ ସେ ଦେଶର କୃଷକମାନଙ୍କୁ ଋଣ ଦେଉଥିଲେ । ବହୁ କୃଷକ ଋଣ ପରିଶୋଧ କରି ନ ପାରିବାରୁ ସେମାନଙ୍କର ଜମି ସବୁ ଚେଟିଆରମାନଙ୍କ ଅଧୀନକୁ ଆସିଥିଲା । ଜମି ହରାଇ କୃଷକମାନେ ଚେଟିଆରମାନଙ୍କର ଭାଗଚାଷୀ ହୋଇଥିଲେ । ଚେଟିଆରମାନେ ମଧ୍ୟ ସେତେବେଳେ ମାନ୍ଦ୍ରାଜ ପ୍ରେସିଡେନ୍ସିରେ ଥିବା ଆନ୍ଧ୍ର, ଦକ୍ଷିଣ ଓଡ଼ିଶା ଏବଂ ତାମିଲ୍

ଅଞ୍ଚଳରୁ ବହୁ ଲୋକଙ୍କୁ ବ୍ରହ୍ମଦେଶ ନେଇ ସେଠାରେ ସେମାନଙ୍କୁ ଭାଗଚାଷୀ ରୂପେ ଚାଷ କରାଉଥିଲେ । ଗୋଟିଏ ହିସାବରୁ ଜଣାଯାଏ ଯେ, ୧୯୩୦—୩୧ ମସିହା ବେଳକୁ ବ୍ରହ୍ମଦେଶର ସମୁଦାୟ ଚାଷଜମିର ଅଧାରୁ ବେଶି ଜମି ଚେଟିଆରଙ୍କ ଅଧୀନରେ ଥିଲା ।

ସୁତରାଂ ବ୍ରିଟିଶ ରାଜତ୍ୱ କାଳରେ ତାଙ୍କ ଆଇନ ଏବଂ ଆଇନ କାର୍ଯ୍ୟକାରୀ କରାଇବା କୋର୍ଟ କଚେରି ସୁବିଧା ହେତୁ ଓଡ଼ିଶା ସମେତ ଭାରତବର୍ଷର ସବୁ ପ୍ରଦେଶରେ ମହାଜନମାନେ କୃଷକମାନଙ୍କୁ ଶୋଷଣ କରିବାକୁ ଅଧିକ ସୁଯୋଗ ପାଇଲେ ଏବଂ କୃଷକମାନଙ୍କର ଭୂସମ୍ପତ୍ତି ବହୁ ପରିମାଣରେ ମହାଜନମାନଙ୍କ ହାତକୁ ଗଲା । ତାହା ଫଳରେ ମଧ୍ୟ ମହାଜନ କାରବାର, ଭାଗଚାଷ ପ୍ରଥା ବିସ୍ତାରିତ ହୋଇଗଲା ଏବଂ କୋର୍ଟ କଚେରିରେ, ଋଣଦାନ ଓ ଆଦାୟ, ସମ୍ପତ୍ତି ନିଲାମ ଓ ଘର କୋରକ୍, ଜାଲ୍ କାରବାର ବିଷୟରେ ମକଦ୍ଦମା ପ୍ରଭୃତି ବହୁ ଗୁଣରେ ବଢ଼ିଗଲା । ମହାଜନମାନେ ଅନେକ ସମୟରେ ଋଣ ଦେଲାବେଳେ, ସାଦା କାଗଜରେ ଋଣର ପରିମାଣ ନ ଲେଖି ଖାତକଠାରୁ ଟିପଚିହ୍ନ ନେଇଯାନ୍ତି । ଖାତକ ଋଣ ପରିଶୋଧ କରିବାରେ ଅସୁବିଧା କଲେ, ତାଙ୍କ ମନ-ମୁତାବକ ଋଣ ପରିମାଣ ସେ କାଗଜରେ ଲେଖି ଦେଉଥିଲେ । ଋଣଦାନ ଏବଂ ଋଣ ଓ ସୁଧ ଆଦାୟ ପ୍ରଭୃତି ଲେଖା ହେଉଥିବା ଖାତାରେ ସେମାନେ ବହୁ ଜାଲ୍ ହିସାବପତ୍ର ଲେଖି ଦେଉଥିଲେ । ଖାତକ ସାଧାରଣତଃ ନିରକ୍ଷର ଥିବାରୁ ପ୍ରକୃତ ହିସାବ ଜାଣିପାରୁ ନ ଥିଲେ । ମହାଜନମାନେ ସାଧାରଣତଃ ବର୍ଷକୁ ଟଙ୍କାକରେ ଚାରିଅଣାରୁ ଛଅ ଅଣା ସୁଧ ନେଉଥିଲେ । ସ୍ଥଳ ବିଶେଷରେ ଟଙ୍କାକରେ ବାରଅଣା ସୁଧ ମଧ୍ୟ ଆଦାୟ କରୁଥିଲେ । ସାଦା କାଗଜରେ ଖାତକ ଟିପଚିହ୍ନ ଦେଉଥିବାରୁ, ଅନେକ ସମୟରେ ମହାଜନମାନେ ଋଣଦାନ ତାରିଖରୁ ପିଛିଲା ତାରିଖ ପକାଇ ଦେଉଥିଲେ । ସୁନା, ରୁପା ବନ୍ଧକ ନେଲେ ତାର ରସିଦ୍ ଦେଉ ନ ଥିଲେ । ଋଣ ଦେଲାବେଳେ ଅନେକ ମହାଜନ ଶହେ ଟଙ୍କାରେ ପାଞ୍ଚସାତ ଟଙ୍କା ସଲାମି ବା ମିଠାଇ ଖିଆ ନେଉଥିଲେ । ଧାନ କରଜ ଉପରେ ସାଧାରଣତଃ ଚକ୍ରବୃଦ୍ଧି ସୁଧହାର ଲାଗୁ ହେଉଥିଲା, ବହୁ ମହାଜନ ଧାନ, ଚାଉଳ ଏବଂ ତେଜରାତି ଜିନିଷରେ ବ୍ୟବସାୟ କରୁଥିଲେ । ଖାତକ ବାକିରେ ଦୋକାନରୁ ଜିନିଷ ନେଲେ ନଗଦ କାରବାର ଅପେକ୍ଷା ଅଧିକ ଦର ଖାତାରେ ଲେଖା ହେଉଥିଲା । ଆଗରୁ ଅଗ୍ରିମ ଦେଇ ଖାତକଠାରୁ ଧାନ ଚାଉଳ କିଣିଲେ, ମହାଜନ କମି ଦରରେ ଧାନ ଚାଉଳ କିଣୁଥିଲେ ।

ସଙ୍କଟବେଳେ ଖାତକର ଋଣ କରିବା ଅପରିହାର୍ଯ୍ୟ ହୋଇଥାଏ । ମହାଜନ ବ୍ୟତୀତ ଋଣ ଦେବାପାଇଁ ବିକଳ୍ପ ଅନୁଷ୍ଠାନ ବା ବ୍ୟକ୍ତି ନ ଥାଏ ।

ଋଣ କାରବାର ମହାଜନଙ୍କର 'ଏକଚାଟିଆ କାରବାର ଥାଏ । ମହାଜନମାନେ ମଧ୍ୟ ସମାଜର କ୍ଷମତାଶାଳୀ' ବ୍ୟକ୍ତି ଥିଲେ । ଖାତକ ଋଣ ପରିଶୋଧ କରିବାରେ ଅସୁବିଧା କଲେ, ସାମାଜିକ ଓ ଅର୍ଥନୈତିକ ବାସନ୍ଦ ପ୍ରଭୃତି ନାନା ଉପାୟରେ ସେମାନେ ଖାତକଙ୍କୁ ହଇରାଣ କରିପାରୁଥିଲେ । ଋଣ ପରିଶୋଧରେ ଅସୁବିଧା କଲେ ଗାଁର ବିଭିନ୍ନ ପ୍ରକାର ସାମାଜିକ କାର୍ଯ୍ୟରେ ଖାତକ ମୁହଁ ଦେଖାଇ ପାରୁ ନ ଥିଲା । ତା' ପରେ ଖାତକର ଆର୍ଥିକ ପରିସ୍ଥିତି ହେତୁ ସେହି ମହାଜନ ଦୁଆରକୁ ତାକୁ ବାରମ୍ବାର ଯିବାକୁ ପଡ଼ୁଥିଲା । ସୁତରାଂ ମହାଜନଙ୍କୁ ଅସନ୍ତୁଷ୍ଟ କରିବା ତା'ପକ୍ଷରେ ମୋଟେ ସମ୍ଭବ ନ ଥିଲା । ତାଙ୍କର ସମସ୍ତ ଜୁଲମ ମୁଣ୍ଡପାତି ସହିବା ବ୍ୟତୀତ ତାର ଅନ୍ୟ ଗତି ନ ଥିଲା ।

ଊନବିଂଶ ଶତାବ୍ଦୀର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଭାରତବର୍ଷର ସବୁ ପ୍ରଦେଶରେ ଏହି ରୀତିରେ ମହାଜନ କାରବାର ଅବାଧରେ ଚାଲିଥିଲା । ଏହି ସମୟରେ ଖାତକମାନଙ୍କ ଅବସ୍ଥା ମହାଜନମାନଙ୍କର ଖାତକମାନଙ୍କୁ ଶୋଷଣ ଏବଂ ଅତ୍ୟାଚାର କରିବାର ରୀତି ବିଷୟରେ ବହୁ ତଥ୍ୟ ପରେ ପୁସ୍ତକ ଓ ବିଭିନ୍ନ କମିଟି ରିପୋର୍ଟରେ ପ୍ରକାଶିତ ହେଲା । ମାତ୍ର ଊନବିଂଶ ଶତାବ୍ଦୀରେ ସରକାର ମହାଜନ କାରବାର ଉପରେ କୌଣସି ହସ୍ତକ୍ଷେପ କରି ନ ଥିଲେ କିମ୍ବା ଅନ୍ୟ ସଙ୍ଗଠନମାନଙ୍କ ମାଧ୍ୟମରେ କୃଷକମାନଙ୍କୁ ଋଣ ଯୋଗାଇ ସେମାନଙ୍କୁ ମହାଜନ-ମାନଙ୍କ ଶୋଷଣରୁ ରକ୍ଷା କରିବାର କୌଣସି ବ୍ୟବସ୍ଥା କରି ନ ଥିଲେ ।

ମାତ୍ର ଅତ୍ୟାଚାର ମାତ୍ରାଧିକ ହେଲେ ସବୁକାଳେ ତାର ପ୍ରତିରୋଧ ଆପଣାଛାଏଁ ହୁଏ । ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଦାକ୍ଷିଣାତ୍ୟର ଅନେକ ଅଞ୍ଚଳରେ ଋଣଗ୍ରସ୍ତ ସର୍ବସ୍ୱାନ୍ତ ଖାତକମାନେ ମହାଜନଙ୍କ ବିରୋଧରେ ବିଦ୍ରୋହ କରି ମାରପିଟ୍ ଆରମ୍ଭ କରିଥିଲେ । ଆଜିକାଲିର ଅନ୍ଧ୍ରପ୍ରଦେଶର କେତେକ ଅଞ୍ଚଳରେ ଏବଂ ଓଡ଼ିଶାର କୋରାପୁଟ ଜିଲ୍ଲାର କେତେକ ଆଦିବାସୀ ଅଞ୍ଚଳରେ ନକ୍ସଲପନ୍ଥୀ ଲୋକଙ୍କ କାର୍ଯ୍ୟକଳାପ ଦେଖିଲେ ସେକାଳ କଥା ମନେପଡ଼େ । ସବୁ ପ୍ରଦେଶରେ ସରକାର ମହାଜନମାନଙ୍କର ଶୋଷଣ ନୀତି, ଖାତକମାନଙ୍କର ଆର୍ଥିକ ଦୁର୍ଗତି ଏବଂ ଅସହାୟତା ବିଷୟ ଜାଣିପାରିଥିଲେ । କିନ୍ତୁ କୃଷକମାନଙ୍କୁ ଋଣ ଦେବାକୁ ବିକଳ୍ପ ପନ୍ଥା ନ ଥିବାରୁ ଏବଂ ମହାଜନମାନେ ସମାଜର ଏକ ଅତ୍ୟାବଶ୍ୟକ କାର୍ଯ୍ୟ କରୁଥିବାରୁ ମହାଜନ ପ୍ରଥା ବନ୍ଦ କରିବା ସରକାରଙ୍କ ପକ୍ଷରେ ସମ୍ଭବ ନ ଥିଲା । ମହାଜନମାନଙ୍କର ବିଭିନ୍ନ ଅତ୍ୟାଚାରୀ କାର୍ଯ୍ୟପନ୍ଥା ବନ୍ଦ କରି ମହାଜନ ପ୍ରଥା ନିୟନ୍ତ୍ରଣ କରିବା ଏବଂ କ୍ରମେ କୃଷକ-ମାନଙ୍କୁ ଋଣଦେବାପାଇଁ ବିକଳ୍ପ ଅନୁଷ୍ଠାନମାନ ବାହାର କରିବା ସରକାରଙ୍କର ବିଚାର ଥିଲା ।

ଏହି ପରିପ୍ରେକ୍ଷୀରେ ଭାରତବର୍ଷରେ ସମବାୟ ଆନ୍ଦୋଳନ ଆରମ୍ଭ ହୋଇଥିଲା । ଊନବିଂଶ ଶତାବ୍ଦୀର ଶେଷରେ ୧୮୯୯ ମସିହାରେ, ମାନ୍ଦ୍ରାଜ-ସରକାରଙ୍କ ଅଧୀନରେ କାର୍ଯ୍ୟ କରୁଥିବା ଆଇ. ସି. ଏସ୍ ଅଫିସର ନିକୋଲସନ୍ ପ୍ରଥମେ ଜର୍ମାନୀରେ ପ୍ରଚଳିତ ଥିବା ସମବାୟ ଋଣ ସମିତିମାନଙ୍କ ପରି ସମିତି ଭାରତବର୍ଷରେ ପ୍ରଚଳନ କରିବାକୁ ସୁପାରିସ୍ କରିଥିଲେ । ପରେ ୧୯୦୪ ମସିହାରେ ଭାରତ ସରକାର ସମବାୟ ଋଣ ସମିତିମାନ ଗଠନ କରିବାପାଇଁ ଆଇନ୍ ପାସ୍ କଲେ । ୧୯୦୪ ମସିହାରୁ ଆଜି ପର୍ଯ୍ୟନ୍ତ ପ୍ରାୟ ନବେ ବର୍ଷ କାଳ ସରକାର ସମବାୟ ଆନ୍ଦୋଳନ ଦୃଢ଼ କରିବାକୁ ଏବଂ ବିଭିନ୍ନ ପ୍ରକାର ସମବାୟ ସମିତିମାନଙ୍କ ମାଧ୍ୟମରେ କୃଷକମାନଙ୍କୁ ଋଣଦେବା, କୃଷକ ଓ କୁଟୀର ଶିଳ୍ପୀମାନଙ୍କୁ ଉତ୍ପାଦନରେ ସାହାଯ୍ୟ କରିବା ଏବଂ ସେମାନଙ୍କର ବିଭିନ୍ନ ଆର୍ଥିକ ଆବଶ୍ୟକତା ପୂରଣ କରିବାପାଇଁ ସେମାନଙ୍କୁ ସୁଲଭ ମୂଲ୍ୟରେ ବିଭିନ୍ନ ପଦାର୍ଥ ଯୋଗାଇଦେବା ଏବଂ ସେମାନଙ୍କ ଦ୍ୱାରା ଉତ୍ପାଦିତ ପଦାର୍ଥ ଉଚିତ ମୂଲ୍ୟରେ ବିକାଇଦେବା ପାଇଁ ବହୁ ଯତ୍ନ କରିଛନ୍ତି ଏବଂ ବିଭିନ୍ନ ସମୟରେ ଆଇନ୍ ପ୍ରଣୟନ କରି ବହୁ ପଦକ୍ଷେପ ନେଇଛନ୍ତି । କୃଷକମାନଙ୍କୁ ସୁଲଭ ସୁଧ ହାରରେ ଋଣ ଯୋଗାଇଦେବା ଆଜିଯାଏ ମୁଖ୍ୟ ସମବାୟ ସମିତିଗୁଡ଼ିକର ପ୍ରଧାନ କାର୍ଯ୍ୟ ହୋଇଛି ଏବଂ ସେଥିପାଇଁ ରାଜ୍ୟ ସମବାୟ ବ୍ୟାଙ୍କ୍‌ଠାରୁ ଆରମ୍ଭ କରି ଗ୍ରାମ ସ୍ତରରେ ପ୍ରାଥମିକ ସମବାୟ ସମିତି ପର୍ଯ୍ୟନ୍ତ ବହୁ ସଙ୍ଗଠନ କାର୍ଯ୍ୟକାରୀ ହୋଇଛି । ମାତ୍ର ବିଂଶ ଶତାବ୍ଦୀର ପ୍ରଥମ ଷାଠିଏ ସତୁରି ବର୍ଷରେ ବହୁ ଚେଷ୍ଟା ସତ୍ତ୍ୱେ ସମବାୟ ସମିତିଗୁଡ଼ିକ ବିଶେଷ ପ୍ରଗତି କରି ପାରି ନ ଥିଲେ । ଗାଁ ଲୋକମାନେ ବିଭିନ୍ନ ପ୍ରକାର ଋଣପାଇଁ ମହାଜନମାନଙ୍କ ଉପରେ ନିର୍ଭର କରୁଥିଲେ ।

ସମବାୟ ସମିତି ମାଧ୍ୟମରେ ଋଣଦେବା ବ୍ୟବସ୍ଥା କରିବା ସଙ୍ଗେ ସଙ୍ଗେ ମହାଜନମାନଙ୍କର ଅତ୍ୟାଚାର ପନ୍ଥା ବନ୍ଦ କରିବାକୁ ବହୁ ବିଳମ୍ବରେ ସରକାର କେତେକ ଆଇନ ପ୍ରଣୟନ କରିଥିଲେ । ୧୯୧୮ ମସିହାରେ ଭାରତ ସରକାରଙ୍କର Uswrious Loans Act ଏ ଦିଗରେ ପ୍ରଥମ ଆଇନ୍ ଥିଲା । ଏ ଆଇନ୍ ଅନୁସାରେ ଯଦି ଜଣେ ମହାଜନ ଋଣ ଆଦାୟ କରିବାକୁ କୋର୍ଟରେ ମକଦ୍ଦମା କରେ ଏବଂ କୋର୍ଟ ମହାଜନ ଏବଂ ଖାତକ ମଧ୍ୟରେ କାରବାର ଅନ୍ୟାୟ ବୋଲି ବିଚାର କରେ, ତେବେ କୋର୍ଟ ସେ ସମସ୍ତ କାରବାର ପୁନର୍ବିଚାର କରି ଖାତକକୁ ସୁଧରେ ରିହାତି ଦେଇପାରେ ଏବଂ ଯଦି ମହାଜନ ଅତ୍ୟଧିକ ସୁଧ ନେଇଥାଏ, ତେବେ ତାହା ଫେରାଇବାପାଇଁ କୋର୍ଟ ରାୟ ଦେଇପାରେ । ସୁଧ ଅତ୍ୟଧିକ ହୋଇଛି ବୋଲି ବିଚାର କଲାବେଳେ, ମହାଜନର ମୂଳ

ବୃଦ୍ଧିପାଇବା ଆଶଙ୍କା ଋଣ କାରବାରରେ ତାଙ୍କର ଖର୍ଚ୍ଚ ଏବଂ ମହାଜନ ଖାତକଠାରୁ ନେଉଥିବା ବିଭିନ୍ନ ପାଉଣା ପ୍ରଭୃତିକୁ ବିଗ୍ଭରକୁ ନେବେ । ମାତ୍ର ବାସ୍ତବରେ ଏହି ଆଇନ କେଉଁ ଅଞ୍ଚଳରେ କାର୍ଯ୍ୟକାରୀ ହୋଇ ନ ଥିଲା । ୧୯୨୮ ମସିହାରେ କୃଷି କମିସନ୍ (Royal Commission on Agriculture) ବିଭିନ୍ନ ପ୍ରଦେଶରେ ଅନୁସନ୍ଧାନ କରି ଜାଣିପାରିଥିଲେ ଯେ କୌଣସି ପ୍ରଦେଶରେ ଏ ଆଇନ୍ ମୋଟେ କାର୍ଯ୍ୟକାରୀ ହୋଇ ନ ଥିଲା । କୌଣସି ଅଞ୍ଚଳରେ ଖାତକମାନେ ସୁଧ ଅତ୍ୟଧିକ ଏବଂ ଅନ୍ୟାୟ ବୋଲି କଚେରିରେ ପ୍ରମାଣ କରିପାରି ନ ଥିଲେ । କୋର୍ଟର ସୁଧ ଅତ୍ୟଧିକ ବୋଲି ତଥ୍ୟ ବାହାର କରିବାପାଇଁ ସମସ୍ତ ନ ଥିଲା କିମ୍ବା ସେଥିପାଇଁ ନିର୍ଦ୍ଦିଷ୍ଟ ସୂତ୍ର ବା ପନ୍ଥା ନ ଥିଲା । ବିହାର ଓଡ଼ିଶାରେ ମଧ୍ୟ ଏ ଆଇନ କାର୍ଯ୍ୟକାରୀ ହୋଇ ନ ଥିଲା । କେବଳ ଏଥିରୁ ଗୋଟିଏ ସୁବିଧା ଖାତକକୁ ମିଳୁଥିଲା ଯେ କୋର୍ଟ ଚକ୍ରବୃଦ୍ଧି ସୁଧ ଆଦାୟକୁ ସ୍ୱୀକୃତି ଦେଉ ନ ଥିଲେ । ଓଡ଼ିଶାରେ ସବୁଆଡ଼େ ଟଙ୍କା ଋଣ ଉପରେ ସାଧାରଣତଃ ଟଙ୍କାକରେ ଗ୍ଭରିଅଣାରୁ ଛଅ ଅଣା ଏବଂ ଧାନ ଋଣ ଉପରେ ଶତକଡ଼ା ପଚ୍ଚିଶ ଭାଗ ସୁଧ ଆଦାୟ ହେଉଥିଲା । ଋଣ କାରବାରରେ ମହାଜନମାନେ ପୁର୍ବପରି ସାଦା କାଗଜରେ ଟିପଚିହ୍ନ ନେଉଥିଲେ ଏବଂ ଋଣ ଖାତାରେ ହିସାବ ଏପାଖ ସେପାଖ କରୁଥିଲେ ।

୧୯୨୯ ମସିହାଠାରୁ ୧୯୩୯ ମସିହା ମଧ୍ୟରେ କୃଷିଜାତ ପଦାର୍ଥର ଦରଦାମ୍ ଦ୍ରୁତ ଗତିରେ କମିବା ହେତୁ, ସବୁ ପ୍ରଦେଶରେ ଗ୍ଭଷୀମାନେ ସର୍ବସ୍ୱାନ୍ତ ହୋଇ ଯାଇଥିଲେ । ସେମାନେ ମହାଜନମାନଙ୍କ ଋଣ ପରିଶୋଧ କରି ନ ପାରିବାରୁ ମହାଜନମାନଙ୍କୁ ତାଙ୍କର ଜମି ବନ୍ଧକ କରି ଦେଇଥିଲେ କିମ୍ବା ମହାଜନମାନେ ତାହା ନିଲାମ କରାଇ ନେଇଯାଇଥିଲେ । ଗ୍ଭଷୀମାନଙ୍କ ଦୁର୍ଦ୍ଦଶା ହେତୁ ଏହି ସମୟ ମଧ୍ୟରେ ପଞ୍ଜାବ, ମାଡ୍ରାଜ, ମଧ୍ୟପ୍ରଦେଶ ପ୍ରଭୃତି ଅଧିକାଂଶ ପ୍ରଦେଶରେ ମହାଜନ ଆଇନ୍‌ମାନ ପାସ ହୋଇଥିଲା । ମହାଜନ କରୁଥିବା ଲୋକମାନେ ସେଥିପାଇଁ ଲାଇସେନ୍‌ସ କରିବା, ଋଣ ଟଙ୍କା ଉପରେ ସୁଧହାର କମାଇ ଶତକଡ଼ା ଦଶ ଭାଗରୁ କୋଡ଼ିଏ ଭାଗ ମଧ୍ୟରେ ସୀମାବଦ୍ଧ କରିବା, ଚକ୍ରବୃଦ୍ଧି ସୁଧ ପ୍ରଥା ବନ୍ଦ କରିବା, ସୁଧ ମୂଳ ମିଶି ମହାଜନମାନଙ୍କର ସର୍ବୋଚ୍ଚ ପାଉଣା ଧାର୍ଯ୍ୟ କରିବା, ମହାଜନମାନେ ପାଉଣା ନେଇ ଖାତକମାନଙ୍କୁ ବାଧ୍ୟବାଦ୍ଧ ରସିଦ୍ ଦେବା ଏବଂ ହିସାବ ଏପାଖ ସେପାଖ କରିବା ଏବଂ ଅନ୍ୟ ବିଭିନ୍ନ ପାଉଣା ନେବା ବନ୍ଦ କରିବା ପ୍ରଭୃତି ବ୍ୟବସ୍ଥା ମହାଜନ ଆଇନ୍‌ମାନଙ୍କର ଅନ୍ତର୍ଭୁକ୍ତ ଥିଲା ।

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ୧୯୩୯ ମସିହାରେ ଓଡ଼ିଶା ମହାଜନ ଆଇନ ପାସ୍ ହୋଇଥିଲା । ଏହି ଆଇନ୍ ଅନୁସାରେ ହଜାର ଟଙ୍କାରୁ ଅଧିକ ମୂଳଧନ ଥିବା ମହାଜନମାନେ ସେମାନଙ୍କର ନାମ ସବ୍‌ରେଜିଷ୍ଟ୍ରାରଙ୍କ ଅଫିସ୍‌ରେ ରେଜିଷ୍ଟ୍ରି କରିବେ, ଋଣ କାରବାରର ବିଧିବଦ୍ଧ ହିସାବ ରଖିବେ, ଖାତକମାନଙ୍କଠାରୁ କୌଣସି ପାଉଣା ଆଦାୟ କଲାବେଳେ ସେମାନଙ୍କୁ ବିଧିବଦ୍ଧ ରସିଦ୍ ଦେବେ ବୋଲି ବ୍ୟବସ୍ଥା ହେଲା । ସୁଧହାର ରେଜିଷ୍ଟ୍ରି ଋଣ ଉପରେ ଶତକଡ଼ା ୯ ଭାଗ ଓ ବେ ରେଜିଷ୍ଟ୍ରି ଋଣ ଉପରେ ଶତକଡ଼ା ୧୨ ଭାଗରୁ ଅଧିକ ହେବ ନାହିଁ, ଚକ୍ରବୃଦ୍ଧି ସୁଧହାର ବନ୍ଦ ହେବ ଏବଂ ସୁଧମୂଳ ମିଶାଇ ମହାଜନ ଖାତକମାନଙ୍କଠାରୁ ମୂଳଋଣର ଦୁଇଗୁଣରୁ ଅଧିକ ନେଇପାରିବେ ନାହିଁ ବୋଲି ଆଇନରେ ଉଲ୍ଲେଖ ହେଲା । କୋର୍ଟ ଖାତକଙ୍କୁ କେତେକ କିସ୍ତିରେ ଋଣ ଶୁଝିବାକୁ ସୁବିଧା ଦେବେ । ମହାଜନ କାରବାରରେ ଠକେଇ କାମ କରିଛନ୍ତି ବୋଲି ପ୍ରମାଣ ହେଲେ, ମହାଜନଙ୍କର ରେଜିଷ୍ଟ୍ରି ରଦ୍ଦ ହେବ ବୋଲି ମଧ୍ୟ ଆଇନରେ ବ୍ୟବସ୍ଥା ହେଲା ।

ଆମ ପରିବାର ଗୋଟିଏ ମଧ୍ୟମ ଧରଣର ମହାଜନ ପରିବାର ଥିଲା ଏବଂ ଆମର ଅଧିକାଂଶ ବନ୍ଧୁବାନ୍ଧବ ଶ୍ରେଷ୍ଠ ବଡ଼ ମହାଜନ ପରିବାର ଥିଲେ । ମୋର ଶ୍ୱଶୁର, ମୋ' ବଡ଼ ଭାଇଙ୍କ ଶ୍ୱଶୁର ଏବଂ ମୋର ପୁରୁଭାଇର ଶ୍ୱଶୁର ବଡ଼ ମହାଜନ ଘର ଥିଲେ । ବିବାହ ସମ୍ବନ୍ଧ ସାଧାରଣତଃ ସମାନସ୍କନ୍ଧ ପରିବାର ମଧ୍ୟରେ ହୁଏ । ସୁତରାଂ ଆମର ଅଧିକାଂଶ ବନ୍ଧୁବାନ୍ଧବ ମହାଜନ ପରିବାର ହେବା ବିଚିତ୍ର ନୁହେଁ । ଆମ ପିଲାଦିନ ଓ ସ୍କୁଲ କଲେଜରେ ପଢ଼ିବା ସମୟ ୧୯୨୦ ମସିହାଠାରୁ ୧୯୪୦ ମସିହା ମଧ୍ୟରେ, ଆମର, ଆମ ବନ୍ଧୁବାନ୍ଧବ ଓ ଆମ ଅଞ୍ଚଳର ଅନ୍ୟ ବଡ଼ ବଡ଼ ମହାଜନଙ୍କ କାରବାର ଓ ପ୍ରଭାବ ବିଷୟରେ ମୋର ସ୍ପଷ୍ଟ ଧାରଣା ଓ ଅନୁଭୂତ ଅଛି । ସେହି ସମୟରେ ବିଶେଷତଃ ୧୯୩୬-୩୭ ମସିହା ପର୍ଯ୍ୟନ୍ତ ମହାଜନମାନଙ୍କର କାରବାର ଓ ପ୍ରଭାବ, ସାଧାରଣ କୃଷୀମାନଙ୍କର ଦୁର୍ଦ୍ଦଶା, ଜମି ବିକ୍ରି ଓ ହସ୍ତାନ୍ତର ସର୍ବାଧିକ ଥିଲା । ଫକୀରମୋହନଙ୍କ ଉପନ୍ୟାସ 'ଛ' ମାଣ ଆଠଗୁଣ୍ଠ' ୧୯୦୨ ମସିହାରେ ପ୍ରକାଶିତ ହୋଇଥିଲା । ତାହା ପୂର୍ବରୁ ଏହାର ବିଭିନ୍ନ ପରିଚ୍ଛେଦ ଗଳ୍ପ ଆକାରରେ ଉତ୍କଳ ସାହିତ୍ୟ ପତ୍ରିକାରେ ପ୍ରକାଶିତ ହେଉଥିଲା । ଫକୀରମୋହନ ତାଙ୍କ 'ଆତ୍ମଜୀବନ ଚରିତ'ରେ ଲେଖିଛନ୍ତି ଯେ, ଏହି ଉପନ୍ୟାସରେ ଲିଖିତ ରାମଚନ୍ଦ୍ର ମଙ୍ଗରାଜର ମକଦ୍ଦମାର ବିବରଣ ଯେତେବେଳେ ଉତ୍କଳ ସାହିତ୍ୟରେ ପ୍ରକାଶିତ ହୋଇଥିଲା, ସେତେବେଳେ ମଫସଲରୁ କେତେକ ଅଜ୍ଞଲୋକ ମକଦ୍ଦମା ବିଚାର ଦେଖିବାପାଇଁ କଟକ

ଅସିଥିଲେ । ବସ୍ତୁତଃ ମହାଜନ ମଙ୍ଗରାଜଙ୍କ କାର୍ଯ୍ୟକଳାପ ଏବଂ ଋଷୀମାନଙ୍କ ଜମି ନେଇଯିବା ଘଟଣା ଫକୀରମୋହନ ଏପରି ଜୀବନ୍ତ ଭାବରେ ବର୍ଣ୍ଣନା କରିଥିଲେ ଯେ, ମଫସଲର କେତେକ ଲୋକ ଏହା ଅଭିଜ୍ଞତାରୁ କାଳ୍ପନିକ ଗଳ୍ପକୁ ବାସ୍ତବ ଘଟଣା ବୋଲି ମନେ କରିଥିଲେ ।

ଆମ ପିଲାଦିନରେ ମହାଜନମାନଙ୍କର କାରବାର ଓ ଚାଲିଚଳନ ଫକୀରମୋହନଙ୍କ ବର୍ଣ୍ଣିତ ରାମଚନ୍ଦ୍ର ମଙ୍ଗରାଜଙ୍କ କାରବାରଠାରୁ ଭିନ୍ନ ନ ଥିଲା । ସେ ସମୟରେ ଆମ ଅଞ୍ଚଳରେ ଈଶ୍ୱର ମହାପାତ୍ର, ଯୋଗୀ ନନ୍ଦ, ବରଜୁ ବିଶ୍ୱାଳ, ଅଗଣି ସ୍ୱାଇଁ, ଭଜ ମହାପାତ୍ର, ଅଗଣି ଦାସ, ଦନେଇ ରଥ ପ୍ରଭୃତି ଗାଁକୁ ଗାଁ ନାମଜାଦା ମହାଜନମାନେ ମହାଜନି କାରବାର କରୁଥିଲେ । ସମସ୍ତଙ୍କର କାରବାର ପ୍ରାୟ ଏକା ଢଙ୍ଗର ଥିଲା । ମହାଜନି କାରବାରଟା ବିଶେଷ ଲାଭଜନକ ବୋଲି ସମସ୍ତଙ୍କ ମନେ ହେଉଥିଲା । ଏପରିକି ଅଳ୍ପ ବିତ୍ତବାନ୍ ଲୋକ ଯାହା ପାଖରେ କି ଦୁଇ ଚାରି ଶହ ଟଙ୍କା ସଞ୍ଚୟ ହୋଇ ଯାଉଥିଲା, ସେ ମହାଜନି କାରବାରରେ ଲିପ୍ତ ହୋଇ ଯାଉଥିଲା । ସେତେବେଳେ ଟଙ୍କା ଋଣ ଉପରେ ସରଳ ସୁଧ ବର୍ଷକୁ ସାଧାରଣତଃ ଚାରିଅଣା ଏବଂ ସ୍ଥଳ ବିଶେଷରେ ଛଅଅଣା ଥିଲା । ଧାନ ଉପରେ ସୁଧ ଅଧା ଏବଂ ଚକ୍ରବୃଦ୍ଧି ହାରର ଥିଲା । ଗ୍ରେଟକାଟିଆ ମହାଜନମାନେ ଧାନ ଋଣ କାରବାର କରୁ ନ ଥିଲେ, କାରଣ ସେମାନଙ୍କ ପାଖରେ ଋଣ ଦେବାପାଇଁ ବଳକା ଧାନ ନ ଥାଏ । ସେମାନେ ଟଙ୍କା ଋଣ ସବୁବେଳେ ହାତ ଉଧାରି ଦଅନ୍ତି । ତାଙ୍କର ବାର୍ଷିକ ସୁଧ ସାଧାରଣତଃ ଟଙ୍କାକେ ଛଅଅଣା, ସ୍ଥଳ ବିଶେଷରେ ବାରଅଣା ଥାଏ । ସେମାନେ ରେଜିଷ୍ଟ୍ରି କାଗଜ ବା ହାଣ୍ଡନୋଟ ପ୍ରଭୃତି ସାଧାରଣତଃ କରନ୍ତି ନାହିଁ । କିନ୍ତୁ ଋଣ ଆଦାୟରେ ସେମାନଙ୍କର ଜୁଲମ ଓ ଗାଳିଗୁଲଜ ଖୁବ୍ ବେଶୀ ଥାଏ । ଋଣ ନେଇଥିବା ଲୋକ ଠିକ୍ ସମୟରେ ଟଙ୍କା ଶୁଝିପାରେ ନାହିଁ । ଋଣ ଦେଇଥିବା ଲୋକ ତାର ଟଙ୍କା ଆଦାୟପାଇଁ ଗାଳିଗୁଲଜ କରି ଖାତକ ଦୁଆରେ ଗାମୁଛା ପକାଇ ବସିବା ପର୍ଯ୍ୟନ୍ତ କଥା ଯାଏ । ଆମ ଗାଁର ବିଦଥା ଖଣ୍ଟୁଆର ଏହିପରି କାରବାର ଆମ ଗାଁ ଲୋକ ସମସ୍ତେ ଜାଣିଥିଲେ । ତାର ବିତ୍ତ ଅଳ୍ପ । ତାକୁ କେହି ମହାଜନ କହେ ନାହିଁ । କିନ୍ତୁ ତାର ଋଣ କାରବାର ଏହି ପ୍ରକାରର । ଏହିପରି ମହାଜନଙ୍କ ମଧ୍ୟରେ ମଧ୍ୟ ଅନେକ ଭଲ ଲୋକ ଥାଆନ୍ତି । ମୋର ୯୧ ଗ୍ରେଟକାଟିଆ ମହାଜନି କରୁଥିଲା । ତାର ମହାଜନି ଖାତା ନ ଥିଲା କାହାଠାରୁ ହାଣ୍ଡନୋଟ୍ ନେଉ ନ ଥିଲା । କିନ୍ତୁ ଖାତକମାନେ ଧ ବିଶ୍ୱାସୀ ଲୋକ ଥିଲେ । ସେ ଋଣ ଆଦାୟପାଇଁ ଖାତକମାନଙ୍କ ଉପର

କରୁ ନ ଥିଲ କିମ୍ବା ଖାତକମାନେ ତାଙ୍କୁ ଠକୁ ନ ଥିଲେ । ତାର ଋଣ ଖାତକ-ମାନଙ୍କ ଉପରେ ମୋଟେ ବୃଡ଼ିଯାଇ ନାହିଁ ।

ବଡ଼ ବା ମଧ୍ୟମ ଧରଣର ମହାଜନଙ୍କର କାରବାର ଭିନ୍ନ ପ୍ରକାରର ଥିଲ । ସେମାନେ ମହାଜନ ପରିବାର ବୋଲି ପାଖ ଆଖ ଗାଁ ଲୋକ ସମସ୍ତେ ଜାଣିଥାନ୍ତି । ସେମାନେ ନିୟମିତ ଭାବରେ ଧାନ ଓ ଟଙ୍କା କରଜ ଦେଇ ସୁଧ ସହ ଆଦାୟ କରୁଥିଲେ । ସେମାନଙ୍କର ବିଧିବଦ୍ଧ ମହାଜନ ଖାତା ଥିଲ ଏବଂ ସେମାନେ ଖାତକମାନଙ୍କଠାରୁ ପୋଲ ହାଣ୍ଡନୋଟ ବା ରେଜିଷ୍ଟ୍ରି କାଗଜ କରେଇ ନେଉଥିଲେ । ଋଣ ଆଦାୟ ହୋଇ ନ ପାରିଲେ ସେମାନେ କଚେରିରେ ନାଲିସ୍ କରି ଋଣ ଆଦାୟ କରୁଥିଲେ । କଚେରିର ଓକିଲ ଓ ମୋହରିରଙ୍କ ସହ ସେମାନଙ୍କର ପରିଚୟ ଥିଲ ଏବଂ ନିୟମିତ କାରବାର ଥିଲ । ବଡ଼ ବଡ଼ ମହାଜନଙ୍କର ନିୟମିତ ମହାଜନ ସିରସ୍ତା ଥିଲ ଏବଂ ସେଥିରେ ଏକାଧିକ ମୋହରିର ଓ ବରକନ୍ଦାଜ କାମ କରୁଥିଲେ । ମହାଜନମାନଙ୍କର ଯେଉଁ ଶୋଷଣ ଓ ଅତ୍ୟାଚାର କଥା ଉପରେ ବର୍ଣ୍ଣନା କରାଯାଇଛି ତାହା ସବୁ ଏହି ପ୍ରକାର ମହାଜନମାନେ କରୁଥିଲେ ।

ମୋର ଭାଇନାଙ୍କ ଶ୍ୱଶୁର ଜଣେ ବଡ଼ ମହାଜନ ଥିଲେ । ତାଙ୍କର ବହୁ ଖାତକ ଥିଲେ ଏବଂ ତାଙ୍କ ସିରସ୍ତାରେ ଦୁଇ ତିନିଜଣ ମୋହରିର କାମ କରୁଥିଲେ । କଟକରେ ତାଙ୍କର ବନ୍ଧା ଓକିଲ ଓ ମୋହରିର ଥିଲେ ଏବଂ କଚେରି କାମପାଇଁ ତାଙ୍କର ଜଣେ ସ୍ୱତନ୍ତ୍ର ମୋହରିର ଥିଲେ । ସବୁ ମାସରେ ତାଙ୍କର ଦଶବାର ମକଦମା କଚେରିରେ ବିଚାରପାଇଁ ପଡ଼ୁଥିଲ । ସେ ଟଙ୍କାକେ ଛ' ଅଣା ବା ଚାରିଅଣା ସୁଧରେ ଟଙ୍କା କରଜ ଦେଉଥିଲେ ଏବଂ କରଜ ଦେଲବେଳେ ଶହେ ଟଙ୍କାରେ ପାଞ୍ଚଟଙ୍କା ମିଠାଇଖିଆ ଆଗରୁବି କାଟି ନେଉଥିଲେ । ପାଲଗଦାମାନଙ୍କରେ ତାଙ୍କର ବହୁ ଧାନ ମହଜୁଦ୍ ଥାଏ ଏବଂ ସେ ଦେଢ଼ି ଚକ୍ରବୃଦ୍ଧି ସୁଧରେ ଧାନ କରଜ ଦେଉଥିଲେ । ତାଙ୍କର ବହୁ ପରିମାଣର ଚାଷ ଜମି ଥିଲ । ସବୁ ଜମି ଭାଗଚାଷ ପ୍ରଣାଳୀରେ ଚାଷ ହେଉଥିଲ । ନିଜ ହାତରେ ତାଙ୍କର କିଛି ଜମି ଚାଷ ହେଉ ନ ଥିଲ । ମହାଜନଙ୍କର ଘରବାଡ଼ି, ମାଛ ପୋଖରୀ ପ୍ରଭୃତି ମିଶି ବହୁ ଉଦବାଡ଼ି ଥିଲ । ତାଙ୍କ ଗାଁରେ ଏବଂ ପାଖ ଗାଁମାନଙ୍କରେ ତାଙ୍କର ବହୁ ଆମ୍ବ, ପଣସ, ନଡ଼ିଆ ଗଛଥିବା ବଗିଚା ଥିଲ । ଏହିସବୁ ଜମି ସବୁ ପ୍ରଥମେ ଅନ୍ୟମାନଙ୍କର ଥିଲ ମାତ୍ର, ସମୟକ୍ରମେ ମହାଜନ ... ବନ୍ଧକ, ନିଲମ ଓ ବିକ୍ରୟ ଦ୍ୱାରା ସେଗୁଡ଼ିକ ଖାତକମାନଙ୍କଠାରୁ ... ତକୁ ଆସି ଯାଉଥାଏ । ମହାଜନ ବ୍ୟବସାୟରେ ଖାତକମାନଙ୍କ

ବ୍ୟତୀତ ପାର୍ଶ୍ୱବର୍ତ୍ତୀ ଗାଁ ମାନଙ୍କର ଅନ୍ୟ ମହାଜନମାନଙ୍କ ସହିତ ମଧ୍ୟ ତାଙ୍କର ବହୁ ମାଲିମକଦ୍ଦମା ସର୍ବଦା ଲାଗିଥାଏ । ମହାଜନ ମହାଜନଙ୍କ ମଧ୍ୟରେ ମକଦ୍ଦମାକୁ ଲୋକମାନେ ଷଣ୍ଢ ଲଢେଇ ବୋଲି କହୁଥିଲେ । ଜାତି ଓ ଧନ ହେତୁ ମହାଜନଙ୍କର ସବୁ ସାମାଜିକ ଓ ଧର୍ମଗତ କାର୍ଯ୍ୟମାନଙ୍କରେ ବିଶେଷ ପ୍ରଭାବ ଓ ପ୍ରତିପତ୍ତି ଥିଲା । ମାତ୍ର ବହୁ ଧନ ସମ୍ପତ୍ତି ସତ୍ତ୍ୱେ ମହାଜନ ପରିବାର ଖର୍ଚ୍ଚରେ ଅତି କୃପଣ ଥିଲେ । ଲୋକେ କହୁଥିଲେ ତାଙ୍କ ନାଁ ଧରିଲେ ଭଜନ ଖାଇବାକୁ ମିଳିବ ନାହିଁ ।

ମୋର ଶ୍ୱଶୁର ମଧ୍ୟ ଜଣେ ବଡ଼ ମହାଜନ ଥିଲେ । ସେ ତିନିଗୋଟି ସୂତ୍ରରୁ ଆୟ କରୁଥିଲେ । ତାଙ୍କର ଶହେ ଏକରରୁ ଅଧିକ ଜମି ଥିଲା । ଅଳ୍ପ କେତେକ ଜମି ହାତରେ ଚାଷ କରି ଅନ୍ୟ ଜମି ସବୁ ଭାଗ ଲାଗିଥିଲା । ତାଙ୍କର ମଧ୍ୟ ଅନେକ ଭରଣ ଧାନ ପାଳଗଦାମାନଙ୍କରେ ଗଚ୍ଛିତ ଥାଏ ଏବଂ ପ୍ରଚଳିତ ଚକ୍ରବୃଦ୍ଧି ହାରରେ ଧାନ କରଜ ଲାଗେ ଏବଂ ଆଦାୟ ହୁଏ । ଅନ୍ୟ ମହାଜନଙ୍କ ପରି ସେ ରେଜିଷ୍ଟ୍ରି ବା ବେ ରେଜିଷ୍ଟ୍ରି କାଗଜ କରି ଖାତକମାନଙ୍କୁ ଟଙ୍କା କରଜ ଦେଉଥିଲେ । ସେ କରଜ କାରବାର ସବୁ ମହାଜନଙ୍କର ପ୍ରାୟ ସମାନ ଥିଲା । ଏ ଦୁଇପ୍ରକାର କାରବାର ବ୍ୟତୀତ ଭାଗଦାର ଭାବରେ ତାଙ୍କର ଦୁଇ ଜାଗାରେ ବଡ଼ ତେଜରାତି ଓ ଲୁଗା ପ୍ରଭୃତିର ଗୋଦାମ ଥିଲା । ସେ ଗୋଦାମରେ ଜିନିଷପତ୍ର ଯୋଗାଣପାଇଁ ତାଙ୍କର କଟକ ମାଲଗୋଦାମ ସହିତ ନିଯ୍ମିତ କାରବାର ଥାଏ । ଦୋକାନମାନଙ୍କରେ ଉଭୟ ପାଇକାରି ଓ ଖୁଚୁରା କାରବାର ହେଉଥିଲା ଏବଂ ବହୁ ବେପାରି ଏବଂ ଖାଉଟି କରଜ ସୂତ୍ରରେ ବିଧିବଦ୍ଧ କାଗଜ କରି ବାକିରେ ଜିନିଷ ନେଉଥିଲେ । ଏହି ତିନି ପ୍ରକାର କାରବାରରୁ ତାଙ୍କର ଯଥେଷ୍ଟ ଆୟ ହେଉଥିଲା ଏବଂ ତାଙ୍କର ଜମିବାଡ଼ି, ଟଙ୍କାପଇସା ବଢ଼ି ଚାଲିଥିଲା । ମହାଜନ କାରବାର, ଗୋଦାମ କାର୍ଯ୍ୟ ଏବଂ ଚାଷକାର୍ଯ୍ୟ ପ୍ରଭୃତି ପାଇଁ ତାଙ୍କର ପାଞ୍ଚ ସାତ ମୋହରିର ଏବଂ ଦରିବାର ଚାକର ଥାଆନ୍ତି । ମାଲଗୋଦାମ କାରବାର ଓ କଚେରିରେ ମକଦ୍ଦମା କାର୍ଯ୍ୟପାଇଁ ଜଣେ ଲେଖାଏଁ ମୋହରିରଙ୍କୁ ଦାୟିତ୍ୱ ଦିଆଯାଇଥାଏ । ସେମାନେ ମାଲଗୋଦାମର ଗୋଦାମ ମାଲିକ ଏବଂ କଚେରିର ଓକିଲ ମୋହରିରଙ୍କ ସହ ବରାବର ସମ୍ପର୍କ ରଖିଥାଆନ୍ତି । ଦୋକାନ ବାକୀ ଓ କରଜ ଦିଆଯାଇଥିବା ଧାନ ଓ ଟଙ୍କା ଆଦାୟ ପାଇଁ ବରାବର ବହୁ ମାଲିମକଦ୍ଦମା ଲାଗିଥାଏ । ଜାତି ଓ ଧନ ହେତୁ ତାଙ୍କର ମଧ୍ୟ ସେ ଅଞ୍ଚଳରେ ଖୁବ୍ ପ୍ରତିପତ୍ତି ଥିଲା । ତାଙ୍କ ଅଧୀନସ୍ଥ ବହୁ ଖାତକ ତାଙ୍କୁ ଭୟ କରୁଥିଲେ । ଖାତକମାନଙ୍କର ଜମିବାଡ଼ି ନିଲାମ ଓ ଘର କୋରିକ୍ ସାଧାରଣ କଥା ଥିଲା । ସେଥିଯୋଗୁଁ ସେ ବହୁ ଖାତକଙ୍କର ଅପ୍ରିୟ ମଧ୍ୟ ହୋଇଥିଲେ ।

ଆମର ବନ୍ଧୁବାନ୍ଧବଙ୍କ ମଧ୍ୟରେ ଅନେକ କେତେକ ପରିବାର ମଧ୍ୟ ବଡ଼ ମହାଜନ ଥିଲେ । ସମସ୍ତଙ୍କର କାରବାର ପ୍ରାୟ ଏକ ପ୍ରକାର ଥିଲା । ଲୋକେ ମହାଜନଙ୍କ ନାମରେ ଗୀତ ବାନ୍ଧି ଥାଆନ୍ତି—

ଯାହା ମହାଜନ ଅମୁକ ନନ୍ଦ,
ତାହାର ଜାଣିବ କରମ ମନ୍ଦ;
ଯାହା ମହାଜନ ଅମୁକ ପେଟା
ତାହାର ଜାଣିବ କପାଳ ଫଟା ।

୧୯୪୩ ମସିହାରେ ବଙ୍ଗଳା ଦୁର୍ଭିକ୍ଷ ସମୟରେ ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ମଧ୍ୟ ଅତ୍ୟନ୍ତ ଖାଦ୍ୟାଭାବ ହୋଇଥିଲା । ମୁଁ ସେ ବର୍ଷ ଯାଜପୁର ସବ୍‌ଡିଭିଜନରେ ଯୋଗାଣ ବିଭାଗର ସୁପରଭାଇଜର ରୂପେ କାର୍ଯ୍ୟ କରୁଥିଲି । ସାଧାରଣ ଲୋକମାନେ ଧାନ କିଣିବାକୁ ପାଉ ନ ଥିବାରୁ ଆମେ ଗାଁ ଗାଁ ବୁଲି ଧାନ ମହଜୁଦ୍ ରଖିଥିବା ଲୋକଙ୍କୁ ନିର୍ଦ୍ଧାରିତ ଦରରେ ଆମ ତତ୍ତ୍ୱାବଧାନରେ ଗରିବ ଲୋକଙ୍କୁ ଧାନ ବିକ୍ରି କରିଦେବାକୁ ବାଧ୍ୟ କରୁଥିଲୁ । ଆମେ ଦେଖିଲୁ ଯେ ଅଧିକାଂଶ ଗାଁରେ ଧାନ ମହଜୁଦ୍ ରଖିଥିବା ଲୋକମାନେ ଗାଁ ମହାଜନ ଥିଲେ । ସେମାନେ ଧାନ ଓ ଟଙ୍କାରେ ମହାଜନୀ କାରବାର କରୁଥିବା ହେତୁ ନିର୍ଦ୍ଧାରିତ ଦରରେ ସାଧାରଣ ଲୋକଙ୍କୁ ଧାନ ବିକିବାକୁ ଅନିଚ୍ଛୁକ ଥିଲେ । ସମସ୍ତଙ୍କର ମହାଜନୀ କାରବାରର ରୀତି ପ୍ରାୟ ଏକ ପ୍ରକାର ଥିଲା । ମହାଜନଙ୍କ ପ୍ରକୃତି ଅନୁସାରେ ଖାତକମାନଙ୍କୁ କିଏ ବେଶି ବା କିଏ ଅପେକ୍ଷାକୃତ କମ୍ ଉତ୍ପୀଡ଼ନ କରୁଥିଲେ । କଟକ ଜିଲ୍ଲାର ବିଭିନ୍ନ ଅଞ୍ଚଳର ଅଭିଜ୍ଞତାରୁ ଆମେ ଜାଣିଥିଲୁ ଯେ, ପ୍ରତି ଗାଁରେ ଖୁବ୍ ବେଶି ହେଲେ ଗୋଟିଏ ବା ଦୁଇଟି ମହାଜନ ପରିବାର ଥାଆନ୍ତି । ଅନେକ ଗାଁରେ କୌଣସି ମହାଜନ ପରିବାର ନ ଥାନ୍ତି । ଦୁଇତିନି ଗାଁରେ ଜଣେ ବଡ଼ ମହାଜନ ଥାଆନ୍ତି । ସମସ୍ତଙ୍କ କାରବାର ପ୍ରାୟ ଏକା ପ୍ରକାର ଥିଲା । ମହାଜନୀ କାରବାର ବିଷୟରେ ଅନୁସଂଧାନ ରିପୋର୍ଟମାନଙ୍କରୁ ମଧ୍ୟ ଜଣାଯାଏ ଯେ ଭାରତବର୍ଷର ସବୁ ଅଞ୍ଚଳରେ ମହାଜନୀ କାରବାର ରୀତି ପ୍ରାୟ ଏକ ପ୍ରକାର ଥିଲା । ଏହା ଏକ ବିଚିତ୍ର କଥା । ସବୁ ଅଞ୍ଚଳରେ ମହାଜନମାନଙ୍କ ମଧ୍ୟରେ ତୀବ୍ର ପ୍ରତିଯୋଗିତା ଥାଏ ଏବଂ ଏକ ଜାତିର ବହୁ ମହାଜନଙ୍କ ମଧ୍ୟରେ ବନ୍ଧୁବାନ୍ଧବ ସମ୍ପର୍କ ଥାଏ । ଆମ ଅଞ୍ଚଳରେ ଯୋଗୀ ନନ୍ଦଙ୍କର ଦନେଇ ରଥ ଘରେ ବନ୍ଧୁ, ଦନେଇ ରଥଙ୍କ ନାରାୟଣ ମିଶ୍ରଙ୍କ ଘରେ ବନ୍ଧୁ, ନାରାୟଣ ମିଶ୍ରଙ୍କର ଯୋଗୀ ନନ୍ଦ ଘରେ ବନ୍ଧୁ, ବରଜୁ ବଣ୍ଟାଲଙ୍କର ଅଗଣି ସ୍ୱାଇଁ ଘରେ ବନ୍ଧୁ । ଏହିପରି ମହାଜନମାନଙ୍କ ମଧ୍ୟରେ ବୁଢ଼ିଆଣୀ ଜାଲ ପରି ବନ୍ଧୁବାନ୍ଧବ ସମ୍ପର୍କ ଥିଲା ।

ସବୁକାଳ କଲୁ ସମାନ ଯାଏ ନାହିଁ । ୧୯୨୯—୩୦ ମସିହାଠାରୁ ୧୯୩୭—୩୮ ମସିହା ମଧ୍ୟବର୍ତ୍ତୀ ସମୟ ଖାତକମାନଙ୍କ ପାଇଁ ସବୁଠାରୁ ଅଧିକ କଷ୍ଟକର ସମୟ ଥିଲ । ପୃଥିବୀର ସବୁ ଦେଶରେ କୃଷିଜାତ ଦ୍ରବ୍ୟର ଦର କମି ଯାଉଥାଏ । ଆମ ଦେଶରେ ମଧ୍ୟ ଧାନ ଚାଉଳର ଦାମ୍ କମି କମି ସର୍ବନିମ୍ନ ସ୍ତରକୁ ଚାଲିଗଲ । ଗରିବ ଚାଷୀଙ୍କର ଚାଷ ବ୍ୟତୀତ କର୍ମସଂସ୍ଥାନର ଅନ୍ୟ ଉପାୟ ନ ଥାଏ । ମୂଲିଆମାନଙ୍କର ଦିନ ମଜୁରି ଚାରିଅଣାରୁ କମିଥିଲେ ସୁଦ୍ଧା କାମ ମିଳେ ନାହିଁ । ଚାଷୀଙ୍କର ଋଣ ଆହୁରି ବଢ଼ିଲ । ମହାଜନଙ୍କ ଋଣ ଶୁଝିବାର ଉପାୟ ନ ଥାଏ । ବହୁ ଋଣଗ୍ରସ୍ତ ଶ୍ରେଷ୍ଠ ଚାଷୀଙ୍କର ଘର, ବାଡ଼ି ଓ ଜମି ବିକ୍ରି ଓ ନିଲମ ସୂତ୍ରରେ ମହାଜନମାନଙ୍କ ହାତକୁ ଚାଲିଗଲ । ସାଧାରଣ ଚାଷୀକୁଳ ସର୍ବସ୍ୱାନ୍ତ ହୋଇଗଲେ । ମହାଜନମାନଙ୍କର ସମ୍ପତ୍ତି ଓ ପ୍ରତିପତ୍ତି ବଢ଼ିଲ ।

ଏହାର ପ୍ରତିକ୍ରିୟା କିଛି ବର୍ଷ ପରେ ଆରମ୍ଭ ହେଲ । ସ୍ୱାଧୀନତା ଆନ୍ଦୋଳନର ପ୍ରଭାବରେ ଧୀରେ କରଜରେ ବୁଡ଼ି ରହିଥିବା ଅନେକ ଲୋକ ମହାଜନମାନଙ୍କ ବିରୋଧରେ କଥା କହିବାକୁ ଆରମ୍ଭ କଲେ ଏବଂ ଘର କୋରକ ପ୍ରଭୃତି ସମୟରେ ଗୋଳମାଳ କଲେ । ୧୯୩୭—୩୮ ମସିହା ସମୟ କଥା । ମୋର ବଡ଼ଭାଇ ଦିନେ ଜଣେ ଖାତକର ହାଣ୍ଡନୋଟ୍ ଧରି ତା'ଠାରୁ ଅନ୍ତତଃ କିଛି ଟଙ୍କା ଅସୁଲ୍ କରିବାପାଇଁ ତା ଘରକୁ ଯାଇଥିଲେ । ହାଣ୍ଡନୋଟ୍‌ରେ କିଛି ଅସୁଲ୍ ନ ପଡ଼ିଲେ ଅଳ୍ପଦିନ ମଧ୍ୟରେ ହାଣ୍ଡନୋଟ୍‌ଟି ତମାଦି ହୋଇଯିବାର ଥିଲ । କିଛି ସମୟ କଳିକଜିଆ ହେଲପରେ ଖାତକ ତାଙ୍କ ହାତରୁ ହାଣ୍ଡନୋଟ୍‌ଟି ଛଡ଼େଇ ନେଇ ଚିକି ଚିକି କରି ଚିରି ଫୋପାଡ଼ି ଦେଲ । ଭାଇନା ଅପଦସ୍ତ ହୋଇ ତରତର ହୋଇ ଘରକୁ ଚାଲିଆସିଲେ । ମୋ ବଦେଇ ତାଙ୍କୁ ଅଭୟ ଦେଇ କହିଲେ ଯେ ସେ ଖାତକକୁ ବୁଦ୍ଧି ଶିଖାଇ ଦେବେ । ହାଣ୍ଡନୋଟ୍ ଚିରିଗଲେ ସୁଦ୍ଧା ମହାଜନ ଖାତା ଉପରେ କଚେରିରେ ନାଲିସ୍ ହୋଇପାରିବ । ସେହି ଅନୁସାରେ ଖାତକ ଉପରେ ଦୁଇଗୋଟି ମକଦ୍ଦମା କରିବାର ବିଚାର ହେଲ । ଗୋଟିଏ ଋଣ ଅନାଦାୟ ପାଇଁ ନାଲିସ୍ ଏବଂ ଅନ୍ୟଟି ହାଣ୍ଡନୋଟ୍ ଛଡ଼ାଇ ଚିରିବା ହେତୁ ଫୌଜଦାରୀ ମକଦ୍ଦମା । ଖାତକ ଏ କଥା ଶୁଣି ଡରିଗଲ । ରାଗ ମଥାରେ ଏପରି କାଣ୍ଡ କରିଥିଲ । ଦୁଇ ଦୁଇଟା ମକଦ୍ଦମା କଟକରେ ଲଢ଼ିବାକୁ ତାର ବଳ ନ ଥିଲ । ସେ ଆମ ଘରକୁ ଆସି ବଦେଇଙ୍କ ଗୋଡ଼ହାତ ଧରିଲ ଏବଂ କଥାଟାର ସମାଧାନ ହେଲ । ମାତ୍ର ହାଣ୍ଡନୋଟ୍ ଛଡ଼ାଇନେଇ ଚିରିବାକୁ ଯେ ତା'ର ସାହସ ହେଲ ସେହି କଥାଟା ବଡ଼ କଥା ।

ସେହି ସମୟରେ ଅନେକ ସ୍ଥାନରେ ଖାତକର ଘର କୋରକ୍ ବେଳେ ଘରର ଯୁବକମାନେ ମାଡ଼ଗୋଳ ଆରମ୍ଭ କରିଦିଅନ୍ତି । ସେହି ୧୯୩୮ ମସିହାରେ

କେତେକ ଦୁର୍ବୃତ୍ତ ମୋର ଶ୍ୱଶୁରଙ୍କର ଗୋଦାମରେ ନିଆଁ ଲଗାଇଦେଲେ । ସେଥିରେ ତାଙ୍କର ପଚିଶହଜାରରୁ ଅଧିକ ଟଙ୍କାର ଜିନିଷ ପୋଡ଼ିଗଲା । ସେ ସମୟରେ ଅଧଲକ୍ଷ ଟଙ୍କା ବର୍ତ୍ତମାନ ପ୍ରାୟ କୋଡ଼ିଏ ଲକ୍ଷ ଟଙ୍କା ହେବ । କହିବାକୁ ଗଲେ ସେହିଦିନଠାରୁ ତାଙ୍କର ଗୋଦାମ ଏବଂ ମହାଜନି କାରବାର ବନ୍ଦ ହୋଇଗଲା । ଗୋଦାମ ପୋଡ଼ି ପରେ ସେ ଗୋଦାମ ପୁଣି ଆରମ୍ଭ କରିବାକୁ ଚେଷ୍ଟା କରିଥିଲେ । ମାତ୍ର ବ୍ୟବସାୟ ଆଉ ଚାଲିପାରିଲା ନାହିଁ । ସେ ଘଟଣାର ଦୁଇବର୍ଷ ପରେ ସେ ମରିଗଲେ । ମୋର ପୁରୁଣାର ଶ୍ୱଶୁର ଜଣେ ବଡ଼ ମହାଜନ ଥିଲେ । ସେହି ସମୟରେ କେତେକ ଲୋକ ତାଙ୍କ ଘରେ ପଶି ତାଙ୍କୁ ମାଡ଼ ଦେଲେ ଏବଂ ତାଙ୍କ ପୁଅର ଅନେକ ଅଙ୍ଗ ହାଣି ପକାଇ ତାଙ୍କୁ ଗୁରୁତର ଭାବରେ ଆହତ କଲେ । ଏହିପରି ଅନେକ ଘଟଣା ସେହି ସମୟରେ ଆମ ଗୋଚରକୁ ଆସିଥିଲା । ୧୯୩୯ ମସିହାରେ ଓଡ଼ିଆ ମହାଜନି ଆଇନ୍ ପାସ୍ ହେଲା । ବଡ଼ ମହାଜନମାନଙ୍କୁ ନାମ ରେଜିଷ୍ଟ୍ରି କରିବାକୁ ପଡ଼ିଲା । କଚେରିରେ ହାକିମମାନେ ଟଙ୍କାକେ ବର୍ଷରେ ଦୁଇଅଣାରୁ ଅଧିକ ସୁଧ ମଞ୍ଜୁର କଲେ ନାହିଁ । ଏ ସବୁ କାରଣ ହେଉ ଅବଶ୍ୟ ମହାଜନି କାରବାର ବନ୍ଦ ହେଲା ନାହିଁ କିମ୍ବା ମହାଜନ-ମାନଙ୍କର ପୂର୍ବ ଅଭ୍ୟାସ ବଦଳିଗଲା ନାହିଁ । କିନ୍ତୁ ମହାଜନି କାରବାର କମିଗଲା ।

୧୯୪୦ ମସିହା ପରେ ଦେଶର ରାଜନୈତିକ ଏବଂ ଅର୍ଥନୈତିକ କ୍ଷେତ୍ରରେ ବିରାଟ ପରିବର୍ତ୍ତନ ହେଲା । ମହାଜନି କାରବାର ଉପରେ ସେଗୁଡ଼ିକ ବିଶେଷ ପ୍ରଭାବ ପକାଇଲା । ୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । ୧୯୪୧ ମସିହା ଶେଷ ଭାଗରୁ ଦରଦାମ ଦ୍ରୁତ ଗତିରେ ବଢ଼ିବାକୁ ଲାଗିଲା । କୃଷିଜାତ ପଦାର୍ଥମାନଙ୍କର ଦରଦାମ୍ କ୍ରମାଗତ ଭାବରେ ବଢ଼ିବାରୁ ଚାଷୀମାନଙ୍କର ଦୁର୍ଦ୍ଦଶା ଏବଂ ଋଣ ଭାର କ୍ରମେ ଲାଘବ ହୋଇଗଲା । ୧୯୪୦ ମସିହାଠାରୁ ୧୯୪୭ ମସିହା ପର୍ଯ୍ୟନ୍ତ ସାରାଦେଶରେ ସବୁ ବିଷୟରେ ଅନିଶ୍ଚିତତା ଥିଲା ଏବଂ ବହୁପ୍ରକାର ବଦଳ ଲାଗିବାର ଆଶଙ୍କା ଥାଏ । ସ୍ୱାଧୀନତାପାଇଁ ଆନ୍ଦୋଳନ ଚାଲିଥାଏ । ରାଜା, ଜମିଦାର ଓ ମହାଜନମାନଙ୍କ ବିରୋଧରେ ସ୍ୱାଧୀନତା ସଂଗ୍ରାମୀମାନେ ସବୁଆଡ଼େ ସ୍ୱର ଉତ୍ତୋଳନ କରୁଥାନ୍ତି । ଦେଶ ସ୍ୱାଧୀନ ହେଲା ପରେ ଲୋକମାନଙ୍କର ସାମାଜିକ ଓ ଅର୍ଥନୈତିକ ଅବସ୍ଥା କିପରି ହେବ ସେ ବିଷୟରେ ଲୋକମାନେ ନିଶ୍ଚିତ ନ ଥାନ୍ତି । ଏହି ଅନିଶ୍ଚିତ ବାତାବରଣ ମଧ୍ୟରେ ମହାଜନି କାରବାର ମାନ୍ଦା ହୋଇ ଯାଇଥିଲା ଏବଂ ମହାଜନମାନଙ୍କର ଖାତକମାନଙ୍କ ଉପରେ ଜୁଲମ କମି ଯାଇଥିଲା ।

ସ୍ୱାଧୀନତା ପରେ ସାଧାରଣ ଲୋକମାନଙ୍କର ଆର୍ଥିକ ଉନ୍ନତିପାଇଁ ପାଞ୍ଚବର୍ଷିଆ ଯୋଜନାମାନ ଆରମ୍ଭ ହେଲା । ଜମିଦାରୀ ଏବଂ ଅନ୍ୟ ମଧ୍ୟସ୍ୱତ୍ୱାଧିକାର ଲୋପ, ଭାଗଚାଷ ଓ ଭୂସଂସ୍କାର ଆଇନ୍ ପ୍ରଣୟନ, ଗ୍ରାମ ପଞ୍ଚାୟତମାନ ଗଠନ ଏବଂ ପଞ୍ଚାୟତ ମାଧ୍ୟମରେ ଉନ୍ନୟନ କାର୍ଯ୍ୟ ସମ୍ପାଦନ, ଗୋଷ୍ଠୀ ଉନ୍ନୟନ ଯୋଜନା, ସମବାୟ ସମିତିଗୁଡ଼ିକର ପୁନରୁଦ୍ଧାର, ଚାଷୀମାନଙ୍କୁ ବିଭିନ୍ନପ୍ରକାର ସାହାଯ୍ୟ ଦେବା କାର୍ଯ୍ୟକ୍ରମ, ଗ୍ରାମାଞ୍ଚଳରେ ସ୍କୁଲ୍ କଲେଜ ପ୍ରତିଷ୍ଠା ଦ୍ୱାରା ଶିକ୍ଷା ପ୍ରସାର, ଗାଁ ଲୋକଙ୍କର ଅଧିକମାତ୍ରାରେ ସହର ଓ ସରକାରୀ ଅଫିସରଙ୍କ ସହ ସମ୍ପର୍କ ପ୍ରଭୃତି ଦ୍ୱାରା ଗ୍ରାମ୍ୟ ସମାଜ ଯୁଦ୍ଧ ପୂର୍ବର ସମାଜଠାରୁ ଭିନ୍ନ ହୋଇଗଲା । ରକ୍ଷଣଶୀଳ ମହାଜନମାନଙ୍କ ସାମାଜିକ ନେତୃତ୍ୱ ଏବଂ କର୍ତ୍ତୃତ୍ୱ ମଧ୍ୟ ରହିଲା ନାହିଁ । ମହାଜନ ପରିବାରମାନଙ୍କର ଲୋକମାନେ ସେମାନଙ୍କର ଧନ ବିଭିନ୍ନ ବ୍ୟବସାୟ, କଣ୍ଟ୍ରୋଲ ଦୋକାନ, ଧାନକଲ, ସହରରେ ବିଭିନ୍ନ ବ୍ୟବସାୟ ପ୍ରଭୃତିରେ ଖଟାଇଲେ । ଯୁଦ୍ଧ ପୂର୍ବର ମହାଜନ କାରବାରର ରୀତି ଓ ବାତାବରଣ ବଦଳିଗଲା ।

ତାହାପରେ ୧୯୭୦ ମସିହାଠାରୁ ଶତାବ୍ଦୀର ଶେଷ ଦଶନ୍ଧି ପର୍ଯ୍ୟନ୍ତ ଜାତୀୟକୃତ ବ୍ୟାଙ୍କମାନେ ଚାଷୀମାନଙ୍କୁ ବହୁ ପ୍ରକାର ଋଣ ଦେଲେ । ସମନ୍ୱିତ ଗ୍ରାମ୍ୟଉନ୍ନୟନ ଯୋଜନା କାର୍ଯ୍ୟକ୍ରମରେ ବ୍ୟାଙ୍କମାନେ ସେମାନଙ୍କର ଶାଖା ମାଧ୍ୟମରେ ଏବଂ ସମବାୟ ସମିତିମାନଙ୍କର ମାଧ୍ୟମରେ ବହୁ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଶିହାତି ସୁଧହାରରେ ଚାଷ ଏବଂ ବିଭିନ୍ନ ଶ୍ରେଣୀ ଶ୍ରେଣୀ ବ୍ୟବସାୟପାଇଁ ଋଣ ଦେଲେ । ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ ଗାଁ ଲୋକଙ୍କର ଅଭାବ ଓ ଅସୁବିଧା ସମୟରେ ଋଣ କରିବାପାଇଁ ମହାଜନଙ୍କ ବ୍ୟତୀତ ବିକଳ୍ପ ସୂତ୍ର ନ ଥିଲା । ସୁତରାଂ ଏକମାତ୍ର ଋଣ ଯୋଗାଉଥିବା ସଂସ୍ଥା ରୂପେ ମହାଜନମାନେ ଖାତକମାନଙ୍କୁ ଶୋଷଣ କରିବାପାଇଁ ସବୁ ପ୍ରକାର ସୁଯୋଗ ପାଉଥିଲେ । ୧୯୭୦ ମସିହା ପରେ ଗାଁ ଲୋକମାନେ ଶତକଡ଼ା ପ୍ରାୟ ଷାଠିଏ ଭାଗ ଋଣ, ସରକାର, ବିଭିନ୍ନ ପ୍ରକାର ବ୍ୟାଙ୍କ୍ ଓ ସମବାୟ ସମିତିମାନଙ୍କଠାରୁ ପାଇପାରୁଛନ୍ତି । ସେ ଋଣରେ ସୁଧ ଅଳ୍ପ, ଆଦାୟରେ ଜୁଲମ ନାହିଁ ଏବଂ ଜମି ଓ ଘରବାଡ଼ି ନିଲମ ହେବାର ଭୟ ନାହିଁ କହିଲେ ଚଳେ । ରାଜନୈତିକ ବ୍ୟକ୍ତିମାନଙ୍କୁ ଧରାଧରି କଲେ, ବହୁ କ୍ଷେତ୍ରରେ ଋଣ ପରିଶୋଧର ସମସ୍ୟା ରହୁଯାଉଛି ଏବଂ ରାଜନୈତିକ ଦଳମାନେ ମଧ୍ୟ ଜନ ଭିତରେ ଓ ଭୋଟ୍ ଆଶାରେ ଋଣ ଛାଡ଼ କରି ଦେଉଛନ୍ତି । ଋଣମେଳା ସାହାଯ୍ୟରେ ଯେତେ-ବେଳେ ଋଣ ମିଳୁଛି ଏବଂ ରାଜନୈତିକ ଦଳ ସାହାଯ୍ୟରେ ଋଣ ଛାଡ଼ ହୋଇ ଯାଉଛି, ସେତେବେଳେ ଦେଶର ଆର୍ଥିକ ଅବସ୍ଥା ଯାହାହେଉ ପଛକେ ବହୁଲୋକଙ୍କର

ଋଣପାଇଁ ମହାଜନଙ୍କ ଦ୍ୱାରକୁ ଯିବାକୁ ପଡ଼ୁ ନାହିଁ । ପଚିଶ ବର୍ଷ ପୂର୍ବେ ଯେପରି ମହାଜନ କାରବାର ଚାଲିଥିଲା ସେପରି କାରବାର ଆଉ ନାହିଁ । ଆମର ବନ୍ଧୁବାନ୍ଧବ ମହାଜନ ଏବଂ ଆମ ଅଞ୍ଚଳର ବିଭିନ୍ନ ଗ୍ରାମରେ ଆଗେ ମହାଜନ କରୁଥିବା ପରିବାରମାନେ ସେ ବ୍ୟବସାୟ ପ୍ରାୟ ବନ୍ଦ କରିଛନ୍ତି ବୋଲି ମୁଁ ଜାଣି ପାରୁଛି । ଆଜିକାଲି ଗାଁମାନଙ୍କରେ ମହାଜନ କାରବାର୍ ଅତି ଲାଭଜନକ ବୋଲି ଧନୀ ଲୋକମାନେ ମନେ କରୁ ନାହାନ୍ତି ।

କିନ୍ତୁ ଏହାଦ୍ୱାରା ମହାଜନ ପରିବାରମାନେ ନିର୍ଦ୍ଧନ କିମ୍ବା ସର୍ବସ୍ୱାନ୍ତ ହୋଇଯାଇ ନାହାନ୍ତି । ଧନୀ ଲୋକର ଧନ ବିଭିନ୍ନ ଉପାୟରେ ବଢ଼ିବାର ବାଟ ପାଏ । ଧନ ସମାଜରେ କ୍ଷମତା ଅଧିକାର କରିବାପାଇଁ ସର୍ବପ୍ରଧାନ ଆୟୁଧ । ସରକାର ଭାଗଚାଷ ପ୍ରଥା ବନ୍ଦ କରିବା, ଜମି ମାଲିକାନାର ସୀମା ନିର୍ଦ୍ଧାରଣ କରିବା, ମହାଜନମାନଙ୍କର ନାମ ରେଜିଷ୍ଟ୍ରି କରିବା, ସୁଧହାର କମାଇବା ପ୍ରଭୃତି ପାଇଁ ବହୁ ପ୍ରକାର ଆଇନ୍ କଲେ । କିନ୍ତୁ ଗ୍ରାମାଞ୍ଚଳର ଧନୀ ପରିବାରମାନେ ସେମାନଙ୍କର ଜମି, ଧନ ଏବଂ ସାମାଜିକ ସ୍ଥିତି ବଜାୟ ରଖିବାପାଇଁ ବିଭିନ୍ନ ଆଇନ୍‌କୁ ଆଡ଼େଇ ଦେଇ ଅନ୍ୟ ଉପାୟରେ ଧନ ନିବେଶ କଲେ । ଅନେକ ମହାଜନ ପରିବାରର ଲୋକମାନେ ପାଠ ପଢ଼ି ବଡ଼ ବଡ଼ ସରକାରୀ ଚାକିରି କଲେ । ସେହି ପରିବାରର ଲୋକମାନେ ସହରରେ ଓକିଲ, ଡାକ୍ତର ପ୍ରଭୃତି ହେଲେ । ଅନେକ ଲୋକ ଗାଁରେ ଓ ସହରରେ ବିଭିନ୍ନ ଲାଭଜନକ ବ୍ୟବସାୟ କଲେ । ମହାଜନ ପରିବାରର ଲୋକମାନେ ସହର ଓ ଗାଁରେ ଶ୍ରେଷ୍ଠ ବଡ଼ ଦୋକାନ କଲେ, ଗାଁରେ ଓ ସହରରେ ଶ୍ରେଷ୍ଠ ବଡ଼ କଣ୍ଟ୍ରାକ୍ଟର ହେଲେ, ସହରରେ ଘର କରି ଭଡ଼ା ଦେଲେ । ଗାଁରେ ଓ ସହରରେ ଧାନକଳ, ସିନେମା ଘର, କଣ୍ଟ୍ରୋଲ ଦୋକାନ, ଇଟାଭାଟି, କୋଇଲା ଗୋଦାମ, ପେଟ୍ରୋଲ ପମ୍ପ ଏବଂ ବସ୍ ଓ ଟ୍ରକ୍ ଚଳାଇବା ପ୍ରଭୃତି ବହୁ ବ୍ୟବସାୟରେ ଟଙ୍କା ଲଗାଇଲେ ଏବଂ ପୂର୍ବ ଅପେକ୍ଷା ଅନେକ ଗୁଣରେ ଅଧିକ ଧନୀ ହୋଇଗଲେ । ସେମାନେ ଧନ ବଳରେ ସାମାଜିକ ଓ ରାଜନୈତିକ କ୍ଷମତାମାନ ମଧ୍ୟ ଅଧିକାର କଲେ । ସେମାନେ ଗାଁରେ ସରପଞ୍ଚ, ପଞ୍ଚାୟତ ସମିତି ସଭ୍ୟ ଓ ସଭାପତି, ସମବାୟ ସଙ୍ଗଠନମାନଙ୍କରେ ସମ୍ପାଦକ ଓ ସଭାପତି ହେଲେ ଏବଂ କେତେକ ବିଧାନସଭାରେ ସଭ୍ୟ ଓ ମନ୍ତ୍ରୀ ମଧ୍ୟ ହୋଇଗଲେ । ଯେଉଁମାନେ ନିଜେ ଏସବୁ ହୋଇପାରି ନାହାନ୍ତି ସେମାନେ ଧନ ବଳରେ ରାଜନୈତିକ କ୍ଷମତା ଆଶାୟୀ ବ୍ୟକ୍ତିମାନଙ୍କ ଉପରେ ବିଶେଷ ପ୍ରଭାବ ପକାଇଲେ । ସେମାନେ ଏ ଯୁଗରେ ଗ୍ରାମବାସୀଙ୍କର ନେତା ସେମାନଙ୍କୁ ନ ଧରିଲେ ଗାଁ ଲୋକଙ୍କଠାରୁ ଭୋଟ୍ ମିଳିବା ସହଜ ନୁହେଁ ବୋଲି ସମସ୍ତ ରାଜନୈତିକ ବ୍ୟକ୍ତି ଜାଣନ୍ତି ।

ସୁତରାଂ ଜମିମାଲିକାନା ଏବଂ ମହାଜନ କାରବାରରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଯେଉଁ ଧନର ଉତ୍ପତ୍ତି ହୋଇଥିଲା ସ୍ୱାଧୀନତା ପରେ ସେହି ଧନ ଉପରୋକ୍ତ ଦଗରେ ଉତ୍ତରୋତ୍ତର ବୃଦ୍ଧି ପାଉଛି । କ୍ଷୁଦ୍ରକୃଷୀ ଓ ମୂଲିଆ ବିଭିନ୍ନ ସୂତ୍ରରୁ କିଛି କିଛି ଋଣ ପାଇ, ମୂଲଲାଗି, ଗୃହକର୍ମ କୌଣସି ପ୍ରକାରେ ଚଳି ଯାଉଛନ୍ତି । କିନ୍ତୁ ସେମାନଙ୍କର ଧନୀ ହେବାର ସୁଯୋଗ ଖୁବ୍ କମ୍ । ଅନ୍ୟ ଦଗରେ ଧନ ଥିଲା ଲୋକଙ୍କର ଅଧିକ ଧନୀ ହେବାର ସୁଯୋଗ ବହୁଗୁଣରେ ବୃଦ୍ଧି ପାଇଛି । ଶତାବ୍ଦୀର ଶେଷ ବେଳକୁ ସମାଜ ବଦଳି ଯାଇଛି ଏବଂ ଧନ ଅର୍ଜନର ପନ୍ଥା ମଧ୍ୟ ବଦଳି ଯାଇଛି ।

## ଶସ୍ତା ଓ ମହଙ୍ଗା କାଳ

( ୯ )

ଗତ କେତେବର୍ଷ ହେଲା ଓଡ଼ିଶା ସମେତ ଭାରତବର୍ଷର ସବୁ ଅଞ୍ଚଳରେ ଲୋକମାନେ ସବୁ ପ୍ରକାର ଜିନିଷପତ୍ରର ଦ୍ରୁତ ଗତିରେ ଦରବୃଦ୍ଧି ହେବାରୁ ଅତି ବ୍ୟସ୍ତ ହେଉଛନ୍ତି । ରାଜନୈତିକ ବ୍ୟକ୍ତିମାନେ ଲୋକଙ୍କ ଦୁଃଖରେ ବିଗଳିତ ହୋଇ କିମ୍ବା ନିଜ ସ୍ୱାର୍ଥସାଧନ ଅଭିଳାଷରେ ଦରଦାମ ବୃଦ୍ଧି ବିରୋଧରେ ପାଟିତୁଣ୍ଡ କରୁଛନ୍ତି । ବହୁ ଅଭିଜ୍ଞ ବ୍ୟକ୍ତି ଅନୁଭବ କରୁଛନ୍ତି ଯେ, ଲୋକମାନଙ୍କର ଏପରି ଦୁଃଖ କଷ୍ଟ, ନେତାମାନଙ୍କର ପାଟିତୁଣ୍ଡ ଏବଂ ସରକାରୀ କଳର ଦରବୃଦ୍ଧି ବିରୋଧରେ ସଂଗ୍ରାମ ଅନ୍ତତଃପକ୍ଷେ ଗତ ପଚାଶ ବର୍ଷ ହେଲା ଗଡ଼ି ଚାଲିଛି । ଅର୍ଥଶାସ୍ତ୍ର ପଢ଼ିଥିବା ଲୋକମାନେ ଦରଦାମ ବୃଦ୍ଧି ହ୍ରାସ ତୁଳନା କରି ଲୋକମାନଙ୍କୁ ବୁଝାଇବାପାଇଁ ସାଧାରଣତଃ ପରିସଂଖ୍ୟାନ ଦ୍ୱାରା ଦରଦାମ ସୂଚୀ ବା ଇଣ୍ଡେକ୍ସ ନମ୍ବର ଗଠନ କରନ୍ତି ଏବଂ ସୂଚୀରେଖା ବା ଗ୍ରାଫ୍ ଟାଣନ୍ତି । ସେ ସୂଚୀରେଖା ଆମ ଦେଶରେ ସବୁବେଳେ ଉପରକୁ ଗତି କରିବାର ଦେଖାଯାଏ । ବର୍ଷେ ବର୍ଷେ ଟିକିଏ ତଳକୁ ଖସିଆସେ ମାତ୍ର ପୁଣି ବଢ଼ିଯାଏ । କିନ୍ତୁ ବିଗତ ଶହେ କିମ୍ବା ଦେଢ଼ଶହ ବର୍ଷ ଦୀର୍ଘକାଳର ଚିତ୍ର ଦେଖିଲେ ଜଣାଯାଏ ଯେ ସୂଚୀରେଖାର ଗତି ସବୁବେଳେ ଊର୍ଦ୍ଧ୍ୱକୁ ଏବଂ ସେ ଗତି ଅଣଲେଉଟା । ପରିସଂଖ୍ୟାନ ଏବଂ ସୂଚୀ ରେଖାଙ୍କନ ସାଧାରଣ ଲୋକଙ୍କ ପାଇଁ ସୁଖପାଠ୍ୟ ନୁହେଁ । ଏଠାରେ କେବଳ ଆମ ଜୀବନ କାଳର ଏବଂ ପୂର୍ବପୁରୁଷମାନଙ୍କର ଦରବୃଦ୍ଧି ସମ୍ବନ୍ଧରେ ଅନୁଭୂତି ବର୍ଣ୍ଣନା କରାଯାଇଛି ।

ଫକୀରମୋହନ ସେନାପତି ତାଙ୍କ ଆତ୍ମଜୀବନ ଚରିତ ବହିରେ ପ୍ରାୟ ୧୩୦ ବର୍ଷ ତଳେ, ୧୮୬୨ ମସିହାରୁ ୧୮୬୪ ମସିହା ସମୟରେ ବାଲେଶ୍ୱର ଜିଲ୍ଲାରେ କେତେକ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟର ମୂଲ୍ୟର ସୂଚନା ଦେଇଛନ୍ତି । ସେ ଲେଖିଛନ୍ତି, "ସେତେବେଳେ ସଂସାରର ବ୍ୟବହାର୍ଯ୍ୟ ଦ୍ରବ୍ୟ ଖୁବ୍ ସୁଲଭ ଥିଲା ଯଥା :—

| | | |
|---|---|---|
| ଚାଉଳ | ଟଙ୍କାକୁ | ଦେଢ଼ ମହଣ |
| ବଣ | ମହଣ | ଆଠଅଣା (ଆଧୁନିକ ପଚାଶ ପଇସା) |
| ମୁଗ | ମହଣ | ଦଶଅଣା (ବାଷଠି ପଇସା) |
| ହରଡ଼ | ମହଣ | ଦଶଅଣା (ବାଷଠି ପଇସା) |
| ସୋରିଷ ତେଲ | ଟଙ୍କାକୁ | ସାତସେର |
| ଘିଅ | ଟଙ୍କାକୁ | ଉଣାସେର |
| ମାଛ | ପଇସାକୁ | ସେରେ ଦୁଇସେର ପର୍ଯ୍ୟନ୍ତ |

ଫକୀରମୋହନଙ୍କ ସମୟଠାରୁ ଆମ ସମୟର ୧୯୫୫ ମସିହା ପୂର୍ବ ଟଙ୍କାକ ଷୋହଳ ଅଣା, ଚଉଷଠି ପଇସା, ଶହେ ଅଠେଇଶ ଅଧଲା ଏବଂ ୧୯୨ ପାହୁଲା ଥିଲା । ଫକୀରମୋହନ ଲେଖିଥିବା ସମୟ ୧୮୭୦ ବେଳକୁ କଉଡ଼ିର କାରବାର ନ ଥିଲା ଯଦିଓ ଆମେ ପ୍ରାଇମେରୀ ସ୍କୁଲରେ ପଢ଼ିବା ସମୟ ୧୯୨୫—୨୬ ମସିହା ଯାଏ ପିଲାମାନେ ପ୍ରାଥମିକ ସ୍କୁଲରେ କଉଡ଼ା ଗଣ୍ଡା ହିସାବ ଘୋଷୁଥିଲେ । ଆମେ ବି ପ୍ରାଥମିକ ସ୍କୁଲରେ ଘୋଷୁଥିଲୁ ଗଣ୍ଡାକ ଚାରିକଉଡ଼ା, ପଇସାକ ପାଞ୍ଚଗଣ୍ଡା । ସେ ହିସାବ କଉଡ଼ି ଏବଂ ପଇସାର ବିନିମୟ ହାରର ସୂଚନା ଦେଉଥିଲା । ଓଜନର ମାପ ମହଣ, ସେର ଓ ଛଟାଙ୍କିରେ ହେଉଥିଲା । ମହଣକ ୪୦ ସେର, ସେରକ ଷୋହଳ ଛଟାଙ୍କି ଥିଲା । ବାଲେଶ୍ୱରୀ ସେରର ଓଜନ ୮୦ ତୋଳା ଏବଂ କଟକୀ ସେର ଓଜନ ୧୦୫ ତୋଳା ଥିଲା ।

୧୮୭୦ ମସିହା ବେଳକୁ ରୁପାର ଟଙ୍କା, ଅଠଣି, ଚାରଣି, ଦୋଣି, ସୀସାର ଦୋଣି, ଅଣି, ତମ୍ବାର ଦୋ' ପଇସି, ପଇସା, ଅଧଲା ଓ ପାହୁଲା ସାଧାରଣତଃ ପ୍ରଚଳିତ ମୁଦ୍ରା ଥିଲା । ଆମ ପିଲାଦିନଯାଏ ମଧ୍ୟ ଲୋକମାନେ ଅଧଲା, ପାହୁଲାକର ତେଲ, ଲୁଣ, ମସଲା, ଚିନି, ଗୁଡ଼, କିରାସିନ ପ୍ରଭୃତି କିଣୁଥିଲେ । ମୋର ମନେ ଅଛି ଯେ ୧୯୩୩ ମସିହାରେ ମୁଁ ହାଇସ୍କୁଲରେ ପଢ଼ୁଥିବାବେଳେ ଆମ ଗାଁର ଉଚ୍ଛବ ସେଠୀ ଦିନେ ଅଧସେରିଆ ବୋତଲରେ ଇଞ୍ଚେ ଉଚ୍ଚର ଅଧଲାକର କିରାସିନ ଆଣି ହାଟରୁ ଫେରୁଥିଲା । କିରାସିନ ଅଧସେରକୁ ସେତେବେଳେ ଦୁଇଅଣା ଥିଲା । ମୁଁ ପଚାରିବାରୁ ସେ କହିଲା ଅଧଲାକର କିରାସିନରେ ତାର ଆଠଦିନ ଚଳିଯାଏ । କେବଳ ଚୁଲି ଲଗାଇଲାବେଳେ, ଖଟ ବାଢ଼ିଲାବେଳେ ଏବଂ ଶେଯ ପକାଇଲାବେଳେ ତା' ଘରେ ଡିବିଟିଏ ଜଳା ହେଉଥିଲା । ଦ୍ୱିତୀୟ ମହାଯୁଦ୍ଧ ବେଳକୁ ଯେତେବେଳେ ଦରଦାମ୍ ବଢ଼ିଗଲା, ଅଧଲା ଓ ପାହୁଲା ମୂଲ୍ୟହୀନ ହୋଇଗଲା । କିନ୍ତୁ ସ୍ୱାଧୀନତା ପର୍ଯ୍ୟନ୍ତ ପଇସାର ପ୍ରଚଳନ ଥିଲା । ୧୯୩୩-୩୪ ମସିହାରେ ଶୀତଦିନେ ଥରେ ଅନ୍ୟ

ଆମ ଗାଁ ହାଟରେ ଧୋଇଆ ଅଞ୍ଚଳରୁ ଆସିଥିବା ପାଳୁଆ ବାଇଗଣ ବଶା (ଦେଢ଼ସେର) ପଇସାଏ ହୋଇ ଯାଉଥିବା ମୋର ମନେଅଛି । ଦଶମିକ ମୁଦ୍ରା ୧୯୫୫ ମସିହା ବେଳକୁ ଆରମ୍ଭ ହୋଇଗଲା । ଦଶମିକ ମୁଦ୍ରା ଗଣନାର ଉପକାରିତା ବିଷୟରେ ମୁଁ ମଧ୍ୟ ଦୁଇ ତିନିଥର ଓଡ଼ିଆରେ କଟକ ରେଡ଼ିଓ ଷ୍ଟେସନରୁ କହିଥିଲି ।

ବିଂଶ ଶତାବ୍ଦୀର ଶେଷ ଭାଗରେ ୧୯୯୩ ମସିହାରେ ବର୍ତ୍ତମାନ କଟକ ଭୁବନେଶ୍ୱରରେ ଯେତେବେଳେ ଚାଉଳ କିଲୋକୁ ୫ ଟଙ୍କାରୁ ୯ ଟଙ୍କା, ଡାଲି (ହରଡ଼, ମୁଗ, ବିରି), କିଲୋକୁ ୧୫ରୁ ୨୨ ଟଙ୍କା, ସୋରିଷତେଲ ଲିଟର ୩୬ ଟଙ୍କା, ନଡ଼ିଆ ତେଲ ଲିଟର ୧୦୦ ଟଙ୍କା, ଘିଅ ଲିଟର ୧୨୦ ଟଙ୍କା, ବଡ଼ ଭାକୁଡ଼ି ଓ ରୋହିମାଛ କିଲୋ ୪୦ ଟଙ୍କା, ନଈ ଚିଙ୍ଗୁଡ଼ି ମାଛ କିଲୋ ୬୦ ଟଙ୍କା ମହୁରାଳି ମାଛ କିଲୋ ୨୫ ଟଙ୍କା, ମାଂସ କିଲୋ ୬୦ ଟଙ୍କା, ଦୁଗ୍ଧ ଲିଟର ଆଠ ଟଙ୍କା, ଭଲ ମିଲ୍ ଲୁଗା ଖଣ୍ଡକୁ ୬୦ ରୁ ୮୦ ଟଙ୍କା, ଅତି ସାଧାରଣ ମିଲ୍‌ଲୁଗା ୩୫ ରୁ ୪୦ ଟଙ୍କା, ଉତ୍କୃଷ୍ଟ ଡିଜାଇନ୍‌ର ସମ୍ବଲପୁରୀ ଶାଢ଼ୀ ୧୦୦୦ ଟଙ୍କାରୁ ୫୦୦ ଟଙ୍କା, ଫକୀରମୋହନଙ୍କ ବର୍ଣ୍ଣିତ ୧୮୬୨ ମସିହାର ବିଭିନ୍ନ ଦ୍ରବ୍ୟର ମୂଲ୍ୟ ସ୍ୱପ୍ନରାଜ୍ୟର ମୂଲ୍ୟପରି ମନେହେଉଛି । ସେ ସମୟରେ ଦେଓ୍ୱାନି ଅଦାଲତରେ ଅମଲାମାନଙ୍କ ଦରମା ଥିଲା ମାସିକ ତିନି ଟଙ୍କା ଠାରୁ ଦଶଟଙ୍କା ପର୍ଯ୍ୟନ୍ତ । କେବଳ ସିରସ୍ତାଦାରଙ୍କ ଦରମା ମାସିକ ଦଶଟଙ୍କା ଥିଲା । ଏହି ସ୍ୱଳ୍ପ ବେତନରେ ଲୋକେ ସୁଖ ସ୍ୱାଚ୍ଛନ୍ଦ୍ୟରେ ଚଳୁଥିଲେ ବୋଲି ସେ ଲେଖିଛନ୍ତି । ସେ ନିଜେ ସେ ସମୟରେ ଦୁଇମାସ ମାସିକ ମାତ୍ର ଅଢ଼େଇ ଟଙ୍କାରେ ସ୍କୁଲ ଶିକ୍ଷକ କାମ କରିଥିଲେ । ତୃତୀୟ ମାସଠାରୁ ମାସିକ ଚାରିଟଙ୍କା ବେତନ ପାଉଥିଲେ ।

ଯେତେବେଳେ ମୁଷ୍ଟିମେୟ ଲୋକ ଚାକିରିରେ ନିଯୁକ୍ତି ପାଉଥିଲେ । ଚାକିରି ମଧ୍ୟରେ କଚେରିମାନଙ୍କରେ ହାକିମ, କଲେକ୍ଟର, ଡେପୁଟି କଲେକ୍ଟର, ଜଜ୍, ମୁନସିଫ୍, ପୁଲିସ୍ ବିଭାଗରେ ଗ୍ରେଟ ବଡ଼ ଅଫିସର ଓ କନେଷ୍ଟବଳ, କଚେରିମାନଙ୍କରେ ପେସ୍କାର କିରାଣି ଓ ଚପରାଶି । ଅଳ୍ପ କେତେକ ସ୍କୁଲ୍‌ର ଶିକ୍ଷକ, ଅଳ୍ପ କେତେକ ଡାକ୍ତରଖାନାରେ ଡାକ୍ତର ଓ କମ୍ପାଉଣ୍ଡର, ନିର୍ମାଣ ବିଭାଗରେ ଇଞ୍ଜିନିଅର, ଓଭରସିଅର କିରାଣି ଚପରାଶୀ ଇତ୍ୟାଦି ସବୁଯାକ ମିଶାଇଲେ, ପ୍ରତି ଜିଲ୍ଲାରେ ପାଞ୍ଚଶହରୁ ବେଶି ହେବ ନାହିଁ । ସବୁ ବିଭାଗରେ ବଡ଼ ଅଫିସର ଗୋରା ସାହେବ ଏବଂ ତଳିଆ ମଧ୍ୟମ ପ୍ରକାର ଚାକିରିରେ ବଙ୍ଗାଳିମାନେ ଥିଲେ । ଓଡ଼ିଆମାନେ କେବଳ ଚପରାସୀ, କନଷ୍ଟେବଳ ପ୍ରଭୃତି ଆଜିକାଲିର ଚତୁର୍ଥ ଶ୍ରେଣୀ କର୍ମଚାରୀ ଭାବରେ ଥାଆନ୍ତି । ସବୁ ଚାକିରିରେ ଦରମା କମ୍ ଥିଲା ।

କଗଣି ଗ୍ଭକର ଦୁର୍ଲଭ । ଚପଗ୍ରାସୀ ଗ୍ଭକରଟିଏ ପାଇବା ଗ୍ଭଗ୍ୟର କଥା । ତାହାବା କେତେ ଲୋକଙ୍କୁ ମିଳୁଥିଲା ? ସାଧାରଣ ଲୋକ ସମସ୍ତେ ଥିଲେ ଗ୍ଭଷୀ ମୂଲିଆ ସେମାନଙ୍କ ମଧ୍ୟରେ ଟଙ୍କା ପଇସାର କାରବାର ଖୁବ୍ କମ୍ ଥିଲା ।

୧୮୭୦ ମସିହାରୁ ୧୯୪୬ ମସିହା ପର୍ଯ୍ୟନ୍ତ ପ୍ରାୟ ଅଶୀ ବର୍ଷ ମଧ୍ୟରେ ଦରଦାମ ଦ୍ରୁତ ଗତିରେ ନ ବଢ଼ି ଧୀରେ ବା ଅତି ଧୀରେ ବଢ଼ିଥିଲା । ୧୯୦୦ଠାରୁ ୧୯୧୦ ମସିହା ମଧ୍ୟ ସମୟର ଦରଦାମର ସୂଚନା ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ଭରତ ନାୟକ ପ୍ରଭୃତି ଲେଖକମାନଙ୍କର ଆତ୍ମଜୀବନୀମାନଙ୍କରୁ ମିଳେ । ୧୯୬୦ ମସିହାଠାରୁ ୧୯୧୩ ମସିହା ମଧ୍ୟ ସମୟ ପ୍ରାୟ ତେସ୍ତର ବର୍ଷ ସମୟର ଦରଦାମର ଗତି ମୋର ଏବଂ ଆମ ସମୟର ଲୋକମାନଙ୍କର ଅନୁଭୂତିର କଥା । ୧୮୯୯ ମସିହାରେ ନୀଳକଣ୍ଠ ଦାସ ଯେତେବେଳେ ଗାଁ ଗ୍ଭହାଲି ପାଠ ଶେଷ କରି ପୁରୀ ଜିଲ୍ଲାସ୍କୁଲରେ ନାମ ଲେଖାଇଲେ, ସେତେବେଳର ଦରଦାମ୍ ବିଷୟ ତାଙ୍କ ଆତ୍ମଜୀବନୀ ବହିରେ ଲେଖିଛନ୍ତି । ସେ ଲେଖିଛନ୍ତି ଯେ "ମେସ୍‌ରେ ଖର୍ଚ୍ଚ ପଡ଼େ ଗ୍ଭଉଳ ସହିତ ମାସକୁ ଦେଢ଼ଟଙ୍କା । ଗ୍ଭଉଳ ଥାଏ ଟଙ୍କାରେ କଟକୀ ୧୬ ସେରଠାରୁ ୧୮ ସେର । ମାଛ ବଜାରରେ ବଡ଼ ବଡ଼ ବାଲିଆ ଚିଲିକା ବା ସମୁଦ୍ରର ଚିଙ୍ଗୁଡ଼ି ସାଧାରଣତଃ ପଇସାକୁ ଦଶଟା କି ପନ୍ଦରଟା । ଦଶଟାରେ ପ୍ରାୟ ଅଧସେରରୁ ବେଶୀ ହେବ । ବାଇଗଣ ଓଜନ ହୋଇ ବିକ୍ରି ହେଉ ନ ଥିଲା । ବଜାରରେ ସଡ଼କ କଡ଼ରେ ବାଡ଼ିବାଲାମାନେ ଗ୍ଭଗ ବସାଇଥାନ୍ତି । ପଇସାକୁ ଗ୍ଭଗେ । ପ୍ରାୟ ଅଧସେର ହେବ । ଆମେ ଖାଉ ଖାଲି ଗ୍ଭତ ଓ ଡାଲି । ଡାଲିରେ କେବେ କେବେ ବାଇଗଣ ପଡ଼ୁଥାଏ । ଯେଉଁ-ଦିନ ମାଛ ଆସେ, ସେ ଦିନ ଆଉ ଡାଲି କି ବାଇଗଣ ଦରକାର ହୁଏ ନାହିଁ । ମନେ ଅଛି ଥରେ ହିସାବରେ ମାସକୁ ଜଣକେ ଟଙ୍କାଏ ନ'ଅଣା ପଡ଼ିଯିବାରୁ ଆମ ଭିତରେ ଗୋଟିଏ ବଡ଼ ଆନ୍ଦୋଳନ ପଡ଼ିଯାଇଥିଲା ଓ ଆମ ସେ ମାସ ମେନେଜର ବଡ଼ ନିନ୍ଦିତ ଓ ଲଜ୍ଜିତ ହୋଇଥିଲେ ।"

୧୯୦୧—୦୨ ମସିହା କଥା, ଗୋଦାବରୀଶବାବୁ ତାଙ୍କ "ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ" ବହିରେ ଲେଖିଛନ୍ତି । "ସେ ସମୟରେ ସ୍କୁଲ ଛାତ୍ରାବାସରେ କେବଳ ଖାଇବା ଖର୍ଚ୍ଚ ମାସକୁ ହାରାହାରି ତିନଟଙ୍କା ଗ୍ଭରିଅଣା ପଡ଼ୁଥିଲା । ଗ୍ଭଉଳ ଟଙ୍କାରେ ମିଳୁଥିଲା, କଟକୀ ୧୬।୧୭ ସେର । ଘିଅ ପଇସାକୁ ଗୋଟିଏ । ତାଙ୍କ ବାପା ଏକରକରୁ ବେଶୀ ଜମି କେବଳ ଷାଠିଏ ଟଙ୍କାରେ କିଣିଥିଲେ ।

ପାଖାପାଖି ସେହି ସମୟ ୧୮୯୬ ମସିହା କଥା ଭରତ ନାୟକ ପାଟଣା ରାଜ୍ୟରେ ଦରଦାମ୍ ବିଷୟ ଲେଖିଛନ୍ତି । ସେ ସମୟର ଗ୍ରାମବୃତ୍ତିର ପରିମାଣ ଥିଲି ଅଢ଼େଇ ଟଙ୍କା । ଦେଢ଼ଟଙ୍କା ମଧ୍ୟ ଦଶ ବର୍ଷର ଦରିଦ୍ର ବାଳକ ସକାଶେ ଯଥେଷ୍ଟ ଥିଲି । ସମସ୍ତ ଜିନିଷ ଶସ୍ତା । ଟଙ୍କାକୁ ଚାଉଳ କୋଡ଼ିଏ (ଏକମହଣ) ଏବଂ ସେହି ଅନୁସାରେ ଅନ୍ୟାନ୍ୟ ଜିନିଷର ମୂଲ୍ୟ । ତା'ର ତେର ଚଉଦ ବର୍ଷ ପରେ ୧୯୧୦—୧୧ ମସିହା ବେଳକୁ ଅନୁଗୁଳରେ ଦରଦାମ କଥା ମଧ୍ୟ ଭରତ ନାୟକ ଲେଖିଛନ୍ତି । ସେତେବେଳେ ଅନୁଗୁଳ ହାଟରେ ଚାଉଳ, ମୁଗ ଟଙ୍କାକୁ ୩୨ ସେର, ଦୁଧ ସେର ଦୁଇଅଣା, ବିଶୁଦ୍ଧ ଘିଅ ସେର ଆ୦, ଦଶଅଣା । ଚନ୍ଦ୍ରମଣି ମିଶ୍ର ତାଙ୍କ ଆତ୍ମଜୀବନୀ 'ଅର୍ଦ୍ଧ ଶତାବ୍ଦୀର ଅନୁଭୂତି' ବହିରେ ସେହି ୧୯୧୧—୧୨ ମସିହା କଥା ଲେଖିଛନ୍ତି । ସେତେବେଳେ ଖୋର୍ଦ୍ଧା ଅଞ୍ଚଳରେ ତାଙ୍କ ଗାଁରେ ଧାନ ଟଙ୍କାକୁ ୩୨ ସେର, ସୋରିଷ ତେଲ ଟଙ୍କାକୁ ତିନିସେର, ସାରୁ ସେର ଅଧଲାଏ ଥିଲି । ସେ ଲେଖିଛନ୍ତି ୧୯୧୬ ମସିହାରେ ସତ୍ୟବାଦୀ ସ୍କୁଲ ହଷ୍ଟେଲରେ ଗୋଟିଏ ପିଲା ଚଳିବାକୁ ମାସକୁ ୧୫ ସେର ଚାଉଳ ଏବଂ ଚାରିଗୋଟି ଟଙ୍କା ଆବଶ୍ୟକ ହେଉଥିଲା । ସେହି ୧୯୧୬ ମସିହାରେ ସେ ବଲାଙ୍ଗୀର ମାଇନର ସ୍କୁଲରେ ନାମ ଲେଖାଇଥିଲେ । ସେତେବେଳେ ସେଠାରେ ସ୍କୁଲ ହଷ୍ଟେଲରେ ମଧ୍ୟ ଜଣେ ପିଲାର ମାସିକ ଖର୍ଚ୍ଚ ପାଇଁ ୩ ଟଙ୍କା ଯଥେଷ୍ଟ ହେଉଥିଲା । ଅଧଲାରେ ବାଲେଶ୍ୱରୀ ଡବାରେ ଡବାଏ ମୁଢ଼ି ମିଳୁଥିଲା । ଗୋଟିଏ ପିଲାର ସକାଳଓଳି ଜଳଖିଆ ପାଇଁ ତାହା ଯଥେଷ୍ଟ ହେଉଥିଲା । ସେତେବେଳେ ବଲାଙ୍ଗୀରରେ ଅଟା ସେରକୁ ପାଞ୍ଚ ପଇସା, ଘିଅ ବାଲେଶ୍ୱରୀ ସେରକୁ ବାରଅଣା ହୋଇଥିଲା । ମୋଟାମୋଟି ଫକୀରମୋହନ ଲେଖିଥିବା ସମୟ ୧୮୬୨—୬୩ ମସିହାରୁ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ଓ ଭରତ ନାୟକ ପ୍ରଭୃତି ଲେଖିଥିବା ସମୟ ୧୯୦୧—୦୨ ମସିହା ପ୍ରାୟ ଚାଳିଶ ବର୍ଷ ମଧ୍ୟରେ ଦରଦାମ୍ ପ୍ରାୟ ତିନିଗୁଣ ହୋଇ ଯାଇଥିଲା । ମାତ୍ର ଆଜିକାଲି ତୁଳନାରେ ୧୯୦୧—୦୨ ମସିହା ସମୟ ଅତି ଶସ୍ତା କାଳ ଥିଲି ବୋଲି ମନେ ହେଉଛି ।

ସେ ସମୟରେ ସବୁ ଅଞ୍ଚଳରେ ଦରଦାମ ପାଖାପାଖି ସମାନ ନ ଥିଲା । ଉପକୂଳ ଜିଲ୍ଲାମାନଙ୍କ ଅପେକ୍ଷା ଗଡ଼ଜାତ ଅଞ୍ଚଳମାନଙ୍କରେ ଜିନିଷପତ୍ରର ଦାମ୍ ଅଧିକ ଶସ୍ତା ଥିଲା । ୧୯୦୦ ମସିହାଠାରୁ ୧୯୨୦ ମସିହା ପର୍ଯ୍ୟନ୍ତ ଦରଦାମ ଅଳ୍ପ ମାତ୍ରାରେ ବୃଦ୍ଧି ପାଇଥିଲା । ୧୯୨୦ ମସିହାରେ ମଧ୍ୟ ଚାରିଆଡ଼େ ଟଙ୍କାକୁ ଚାଉଳ ୧୫—୧୬ ସେର, ଡାଲି ତିନିସେର, ଘିଅ ପ୍ରାୟ ଏକସେର ମିଳୁଥିଲା । ୧୮୬୦ ମସିହାରୁ ୧୯୨୦ ମସିହା ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଇତିହାସରୁ ଦରଦାମର ଅତ୍ୟଧିକ ବୃଦ୍ଧି ଏବଂ ସେଥିନିମିତ୍ତ ଲୋକମାନଙ୍କର ଦୈନନ୍ଦିନ

ଜୀବନଯାପନରେ ଅସୁବିଧା ବିଷୟରେ ସୂଚନା ମିଳେ ନାହିଁ । ଧୀର ମନ୍ଥର ଗତିରେ ପଚିଶ ତିରିଶ ବର୍ଷରେ ଦରଦାମ ବଢ଼ିଥିବାରୁ ଲୋକମାନେ କ୍ରମେ କ୍ରମେ ବର୍ଦ୍ଧିତ ଦରରେ ଅଭ୍ୟସ୍ତ ହୋଇଯାଇଥିଲେ । ଦରଦାମ ବୃଦ୍ଧି ଲୋକମାନଙ୍କୁ ବାଧୁ ନ ଥିଲା ।

୧୯୨୯ ମସିହା ବେଳକୁ ମୋର ବୟସ ତେର ବର୍ଷ ହୋଇଥିଲା । ସେତେବେଳଯାଏ ଆମ ଗାଁରେ ବିଭିନ୍ନ ପଦାର୍ଥର ଦରଦାମ ବିଷୟରେ ଆମର କିଛି ଜ୍ଞାନ ନ ଥିଲା । ଚାଉଳ, ଡାଲି, ଚିନି, କିରାସିନି, ପନିପରିବା ପ୍ରଭୃତିର ଦାମ୍ ସେ ସମୟ ପୂର୍ବରୁ କ'ଣ ଥିଲା ଏବଂ ଆମ ସମୟରେ ତା ବଢ଼ୁଥିଲା କି କମୁଥିଲା, ସେ ବିଷୟରେ ମୋ ବୟସର ପିଲାମାନଙ୍କର କିଛି ଧାରଣା ନ ଥିଲା । କିନ୍ତୁ ୧୯୨୯ ମସିହା ବେଳକୁ ଆମେ ମାଇନର ସ୍କୁଲ ହଷ୍ଟେଲରେ ମେସ୍ ଖର୍ଚ୍ଚପାଇଁ ତିନିଟଙ୍କା ଆଠଅଣାଠାରୁ ଚାରିଟଙ୍କା ଦେଉଥିଲୁ । ତାହା ବ୍ୟତୀତ ଚାଉଳ ପ୍ରଭୃତି ଆଉ କିଛି ଦେଉ ନ ଥିଲୁ । ସକାଳେ ଓ ବେଳବୁଡ଼େ ଜଳଖିଆ ମୁଢ଼ି ଖାଉଥିଲୁ । ପଇସାକର ମୁଢ଼ି ଜଣେ ପିଲା ଖାଇପାରୁ ନ ଥିଲା । କିରାସିନି ପ୍ରତିଦିନ ପଇସାକର ଆସେ । ଚାରିଜଣ ପିଲା ଗୋଟିଏ ଲଣ୍ଠନ ପାଖରେ ବସି ପଢ଼ନ୍ତି ଏବଂ ପାଳିକରି କିରାସିନି ପଇସା ଦିଅନ୍ତି । ମେସ୍ ଖର୍ଚ୍ଚ, ଜଳଖିଆ, କିରାସିନି ପ୍ରଭୃତି ସମସ୍ତ ଖର୍ଚ୍ଚ ମିଶାଇ ଜଣେ ପିଲା ପ୍ରାୟ ପାଞ୍ଚଟଙ୍କା ଖର୍ଚ୍ଚ କରୁଥିଲା । ନଇକୂଳିଆ ଗାଁଟାରେ ମାଛ ସବୁବେଳେ ଶସ୍ତା ଥିଲା । ଦୁଇ ତିନି ସେରିଆ ପୋଟେଇ ମାଛ ଗାଁ ଲୋକ ବର୍ଷରେ ଅନେକ ଦିନ ବନସିରେ ଧରନ୍ତି । ସ୍କୁଲ ହଷ୍ଟେଲ ମେସ୍ ଦେଢ଼ ଟଙ୍କା ବା ଦୁଇଟଙ୍କା ଦେଇ ତାହା କିଣି ଆଣନ୍ତି । ଗାଁ ଲୋକ କହନ୍ତି ସ୍କୁଲ ମେସ୍ ଗାଁରେ ମାଛ ଦର ବଢ଼େଇଦେଲେ ।

୧୯୩୨ ମସିହା ଜାନୁଆରୀ ମାସରେ ମୁଁ କଟକ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଲି । ପ୍ରଥମ ଦୁଇବର୍ଷ ଗୋଟିଏ ଘରୋଇ ମେସ୍‌ରେ ରହିଥିଲି । ମେସ୍‌ରେ ଖାଇବା ଖର୍ଚ୍ଚ ମାସକୁ ପାଞ୍ଚ ଟଙ୍କାରୁ ବେଶି ପଡ଼ୁ ନ ଥିଲା । ସେଥିରେ ଦୁଇଓଳି ଭାତ, ଡାଲି, ତରକାରି ଖାଇବାକୁ ମିଳୁଥିଲା । ତାହା ବ୍ୟତୀତ ସିଟ୍‌ରେଣ୍ଟ ମାସକୁ ଦେଢ଼ଟଙ୍କା ଦେବାକୁ ପଡ଼ୁଥିଲା । ସକାଳେ ଏବଂ ସନ୍ଧ୍ୟାବେଳେ ଜଳଖିଆପାଇଁ ଯେ ଯାହା ଖର୍ଚ୍ଚ କରିପାରିଲା । ସେତେବେଳେ ପଇସାକୁ ଦୁଇଟି ବରବରା ଏବଂ ବରଚାଉଳ ଗୁଡ଼ ମିଶା ଗୁଲୁଗୁଲା ଚାରିଟା ମିଳୁଥିଲା । ପଇସାକର ମୁଢ଼ି ଆଣିଲେ ମଧ୍ୟ ପେଟ ପୂରି ଯାଉଥିଲା । ଦୁଇଓଳି ଜଳଖିଆ ଦିନକୁ ଦୁଇ ତିନି ପଇସାରେ ଚଳି ଯାଉଥିଲା । ପୁଣି ଗୋଟାକ ପଇସାଏ ଏବଂ ମଧ୍ୟମ ଆକାରର ରସଗୋଲା ଗୋଟାକ ଦୁଇ ପଇସା ଥିଲା । ପୁରି

ତରକାରି ଓ ରସଗୋଲା ଜଳଖିଆ ଆମେ କ୍ୱଚିତ୍ ଖାଉଥିଲୁ । ପ୍ରାୟ ସବୁଦିନେ ଜଳଖିଆ ମୁଢ଼ି ହୁଡୁଡ଼ା ବା ବରିଗୁଲୁଗୁଲା ଥିଲା; ଯେଉଁ ବରି ଗୋଟାକୁ ସେତେବେଳେ ଆମେ ଅଧଲାକୁ କିଣୁଥିଲୁ, ବର୍ତ୍ତମାନ ତାହା ପଚିଶ ପଇସା ହୋଇଛି । ଅର୍ଥାତ୍ ଟଙ୍କାକୁ ୧୨୮ ଟା ସ୍ଥାନରେ ଦୁଇଟା ହୋଇଛି । ସ୍ଥଳ ବିଶେଷରେ ଭୁବନେଶ୍ୱରରେ ବର୍ତ୍ତମାନ ବରିଗୋଟାକ ଟଙ୍କାଏ ବିକି ହେଉଛି ।

ସ୍କୁଲ ଶେଷବର୍ଷ ୧୯୩୫ ମସିହାରେ ମୁଁ କଟକ କାଠଯୋଡ଼ି ହଷ୍ଟେଲରେ ଥିଲି । ସେତେବେଳେ ସେ ହଷ୍ଟେଲରେ କଟକର ବିଭିନ୍ନ ହାଇସ୍କୁଲର ପିଲା ରହିବାପାଇଁ ନିୟମ ଥିଲା । ବିଶେଷତଃ ସେଥିରେ କଲେଜିଏଟ୍ ଓ ଭିକ୍ଟୋରିଆ ସ୍କୁଲ ଓ ପ୍ୟାରୀମୋହନ ଏକାଡେମିର ପିଲାମାନେ ରହୁଥିଲେ । ସମୁଦାୟ ପ୍ରାୟ ଷାଠିଏ, ସତୁରି ପିଲା ସେଥିରେ ରହୁଥିଲେ । ଆମ ଗାଁର ବୈଦ୍ୟନାଥ ତ୍ରିପାଠୀ ସେତେବେଳେ କଲେଜିଏଟ୍ ସ୍କୁଲର ଓଡ଼ିଆ ଶିକ୍ଷକ ଥିଲେ । ସେ କାଠଯୋଡ଼ି ହଷ୍ଟେଲର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଥିଆନ୍ତି । ସେ ହଷ୍ଟେଲରେ ସ୍କୁଲ ଦରମା, ହଷ୍ଟେଲ ସିଟ୍‌ରେଣ୍ଟ, ମେସ୍ ଖର୍ଚ୍ଚ ପ୍ରଭୃତି ମିଶାଇ ପ୍ରତି ପିଲାର ମାସକୁ ଦଶଟଙ୍କାରୁ ଅଧିକ ହେଉ ନ ଥିଲା । ଜଳଖିଆ ସେହି ବରିଗୁଲୁଗୁଲା ବା ମୁଢ଼ି ହୁଡୁଡ଼ା । ମେସ୍‌ରେ ସକାଳେ ଓ ରାତିରେ ଭାତ, ଡାଲି, ତରକାରି, ଭଜା, ଖଟା, ଆଳୁ ଭରତା ଦିଆ ଯାଉଥିଲା । ମାଂସର ଦାମ୍ ମୁଁ ଜାଣି ନ ଥିଲି । ତାହା ମଧ୍ୟ ମେସ୍‌ରେ ମାସକୁ ଦୁଇ ତିନି ଥରରୁ ବେଶୀ ଦିଆ ହେଉ ନ ଥିଲା । ବଡ଼ ରୋହି, ଭାକୁଡ଼ି ମାଛ କଟକ ସେରକୁ ଟଙ୍କାଏ ଥିଲାବୋଲି ଆମେ ଜାଣିଥିଲୁ । ଦୁଧ ଦହି ସାଧାରଣତଃ ହଷ୍ଟେଲରେ ଆମେ ଖାଉ ନ ଥିଲୁ । ତେବେ ଘୋଳଦହି ଓ ବସାଦହି ବିକିବା ଲୋକ ହଷ୍ଟେଲ ମେସ୍‌ମାନଙ୍କୁ ଆସନ୍ତି । ଖାଇବାକୁ ଇଚ୍ଛା କରୁଥିବା ପିଲାମାନେ ପଇସାଏ କିମ୍ବା ଦୁଇପଇସାର ଦହି କିଣନ୍ତି । ତୁଳନା କରି ଦେଖିଲେ ଆମ ହାଇସ୍କୁଲ ସମୟ ୧୯୩୨ ମସିହାରୁ ୧୯୩୫ ମସିହା, ୧୯୧୬—୧୭ ମସିହାଠାରୁ ବିଶେଷ ଅଧିକ ମହରଗ ନ ଥିଲା ।

୧୯୩୭ ମସିହା ଅକ୍ଟୋବର ମାସଠାରୁ ୧୯୪୦ ମସିହା ଫେବ୍ରୁଆରୀମାସ ଶେଷ ଯାଏ ମୁଁ ରେଭେନ୍‌ସା କଲେଜର ପୂର୍ବ ଛାତ୍ରାବାସରେ ରହିଥିଲି । ୧୯୩୬ରୁ ୧୯୩୮ ଦୁଇବର୍ଷ ଆଇ. ଏ. କ୍ଲାସରେ ମୁଁ ମାସକୁ ଓଡ଼ିଶା ଡିଭିଜନାଲ୍ ସ୍କଲାରସିପ୍ ୧୫ ଟଙ୍କା ଏବଂ ୧୯୩୮ ଠାରୁ ୧୯୪୦ ଦୁଇବର୍ଷ ପ୍ରାଦେଶିକ ସ୍କଲାରସିପ୍ ମାସକୁ ୨୦ ଟଙ୍କା ପାଉଥିଲି । କଲେଜ ହଷ୍ଟେଲରେ ଚଳିବା ସ୍କୁଲ ହଷ୍ଟେଲଠାରୁ ଖୁବ୍ ଉଚ୍ଚମାନର ଥିଲା । ବସ୍ତୁତଃ ଆମେ କଲେଜ ହଷ୍ଟେଲରେ ବାବୁଆନାରେ ଚଳୁଥିଲୁ । ଆମର ଲୁଗାପଟା, ଜାମା ଉଚ୍ଚମାନର ହେଲା । ଆମ୍ଭେମାନେ ଗୋଡ଼ରେ ଚପଲ

ପିଉଥିଲୁ । ସ୍କୁଲପାଠ ଶେଷଯାଏ ଆମେ ଖାଲି ପାଦରେ ଚାଲୁଥିଲୁ । ଖାଇବା, ପିଇବା, ଚାକର ବାକର ଧୋବା ଭଣ୍ଡାରୀଙ୍କ ସେବାପାଇଁ ଯଥେଷ୍ଟ ସୁବିଧା କରା-ଯାଇଥାଏ । ହଷ୍ଟେଲର ପ୍ରତିଗୋଟି ଓ୍ୱାର୍ଡ଼ପାଇଁ ପ୍ରତିଜଣ ଓ୍ୱାର୍ଡ଼ ସର୍ଭାଣ୍ଟ ବା ଚାକର ଥାଆନ୍ତି । ସେମାନେ ରୁମ୍ ସଫା କରନ୍ତି, ପିଲଙ୍କୁ ଜଳଖିଆ ଆଣି ଦିଅନ୍ତି, ତାଙ୍କର ଲୁଗା ଶୁଖାଇଦିଅନ୍ତି ଏବଂ ବଜାର ବୋଲହାକ କରନ୍ତି । ପ୍ରତି ଓ୍ୱାର୍ଡ଼ରେ ଛଅଟା ଲେଖାଏଁ ଜଣକିଆ କୋଠରି ବ୍ୟତୀତ ଅନେକ ବଡ଼ ରୁମ୍ ଥାଏ । ଆମ ସମୟରେ ବଡ଼ ରୁମମାନଙ୍କରେ ତିନିଜଣ ଲେଖାଏଁ ପିଲ ରହୁଥିଲେ । ଜଣକିଆ ରୁମ୍ ଭଲ ପିଲମାନଙ୍କୁ ରହିବାକୁ ଦିଆଯାଉଥାଏ । ବଡ଼ ରୁମ୍‌ମାନଙ୍କରେ ବର୍ତ୍ତମାନ ପାଞ୍ଚ କମ୍ବା ତତୋଽଧିକ ପିଲ ରହୁଛନ୍ତି । ଖାଇବାପାଇଁ ମେସ୍‌ଗୁଡ଼ିକ 'ଏ' ଏବଂ 'ବି' ଏହି ଦୁଇ ଭାଗରେ ବିଭକ୍ତ ହୋଇଥିଲା । 'ଏ' ମେସ୍‌ର ପିଲମାନେ ଟିକିଏ ଉଚ୍ଚମାନର ମିଲ୍ ଖାଆନ୍ତି ଏବଂ ମାସକୁ ଦେଢ଼ଟଙ୍କା ଅଧିକ ମେସ୍ ଖର୍ଚ୍ଚ ଦିଅନ୍ତି । ମେସ୍‌ର ରୁମ୍ ସବୁ ହଷ୍ଟେଲ ଅଗରେ ଲମ୍ବା ଧାଡ଼ିରେ ଥାଏ । ପ୍ରତି ମେସ୍‌ପାଇଁ ଗୋଟିଏ ରନ୍ଧାଘର ଏବଂ ତାକୁ ଲାଗି ଗୋଟିଏ ଖାଇବା ଘର । ଖାଇବାପାଇଁ ସେତେବେଳେ ଚଉକି ଟେବୁଲ୍ ନ ଥାଏ । ପିଲମାନେ ତଳେ ଆସନ ଉପରେ ବସି ଖାଆନ୍ତି ।

ପ୍ରତି ମେସ୍‌ରେ ଜଣେ ସୁପ୍ରୀଟ୍ ଓ ଜଣେ ମେସ୍ ଚାକର ଖାଇବାକୁ ପ୍ରତି ଓଳି ଭାତ, ଡାଲି, ମାଛ ତରକାରି, ସନ୍ତୁଳା ଓ ଭଜା ଦିଆହୁଏ । ବେଳବୁଡ଼େ ଜଳଖିଆପାଇଁ ପାଞ୍ଚଖଣ୍ଡ ପୁରି ଓ ତରକାରି ଦିଆଯାଏ । ରାତିରେ ପିଲମାନେ ଇଚ୍ଛା କଲେ ଭାତ ବଦଳରେ ରୁଟି ଖାଆନ୍ତି କମ୍ବା ଭାତ ରୁଟି ମିଶାମିଶି କରି ଖାଆନ୍ତି । ଶନିବାର ରାତିରେ ସାପ୍ତାହିକ ଭୋଜି ହୁଏ । ସେଥିରେ ମାଂସ ତରକାରି, ଖଟା ଏବଂ ଅନ୍ୟ ତରକାରି ପ୍ରସ୍ତୁତ ହୁଏ । ମାସକୁ ଗୋଟିଏ ମାସିକିଆ ଭୋଜି ହୁଏ । ସେଥିରେ ପଲଉ, ମାଂସ ତରକାରି, ଖଟା, ଅନ୍ୟ ତରକାରି ପ୍ରସ୍ତୁତ ହୁଏ । ମୋଟ ଉପରେ ପିଲମାନଙ୍କୁ ମେସ୍‌ରେ ଯଥେଷ୍ଟ ଖାଇବାକୁ ମିଳୁଥିଲା । ଦୁଇଓଳି ଖାଇବା, ବେଳବୁଡ଼ ଜଳଖିଆ, ସାପ୍ତାହିକ ଓ ମାସିକିଆ ଭୋଜି, ସୁପ୍ରୀଟ୍, ଚାକର, ଓ୍ୱାର୍ଡ଼ ସର୍ଭାଣ୍ଟ ପ୍ରଭୃତିପାଇଁ ଏଷ୍ଟାବ୍ଲିସ୍‌ମେଣ୍ଟ ଖର୍ଚ୍ଚ ମିଶି ବି ମେସ୍ ପିଲ ମାସକୁ ୧୧ ଟଙ୍କା ଏବଂ 'ଏ' ମେସ୍‌ପିଲ ଆଉ ଦେଢ଼ଟଙ୍କା ଅଧିକ ଦେଉଥିଲେ । ହଷ୍ଟେଲ ସିଟ୍‌ରେଣ୍ଟ ଦୁଇ ଟଙ୍କା ଏବଂ ଆଇ. ଏ. କ୍ଲାସର କଲେଜ ଦରମା ମାସକୁ ୭ ଟଙ୍କା, ବି. ଏ. କ୍ଲାସର ୭ ଟଙ୍କା । ଧୋବା ଲୁଗା ସଫା କରିବାପାଇଁ ୨୦ ଖଣ୍ଡକୁ ଆଠଅଣା, ଭଣ୍ଡାରି ଥରେ ବାଳ କାଟିବାକୁ ଦୁଇଅଣା । ସକାଳେ ଜଳଖିଆପାଇଁ ଦୁଇପଟ ପୁରି ଓ କିଛି ବୁନ୍ଦିଆପାଇଁ ଦୁଇ ପଇସା । ଏ ସବୁ ମିଶି ଅତି କମ୍‌ରେ

ଜଣେ ପିଲ କଲେଜ ହଷ୍ଟେଲରେ ରହିବାକୁ ମାସକୁ ୨୫ ଟଙ୍କା ଦରକାର କରୁଥିଲ । ବଡ଼ଲୋକ ଘରର ପିଲମାନେ ମାସକୁ ଆଉ ଦଶବାର ଟଙ୍କା ଅଧିକ ଖର୍ଚ୍ଚ କରିଦଥିନ୍ତି । ମାତ୍ର ମାସକୁ ୨୫ ଟଙ୍କାରେ ଜଣେ ପିଲ ସ୍ୱଚ୍ଛନ୍ଦରେ ଛାତ୍ରାବାସରେ ଚଳି ଯାଉଥିଲ । ତାର ଚଳିବା ଢଙ୍ଗ ଦରିଦ୍ର ବା ଅଭାବଗ୍ରସ୍ତ ବୋଲି ବୁଝାଯାଇ ପାରୁ ନ ଥିଲ । କଲେଜ ହଷ୍ଟେଲରେ ଆମେ କେବେ ବରା, ଗୁଲୁଗୁଲା ବା ମୁଢ଼ି ଜଳଖିଆ ଖାଉ ନାହିଁ । ଜଳଖିଆ ସବୁବେଳେ ପୁରି, ବୁନ୍ଦିଆ ଓ ରସଗୋଲା । ବାହାରୁ ମଧ୍ୟ ଅନେକ ସମୟରେ ଗୁଜୁରାଟୀ ହୋଟେଲରୁ ଚୁଡ଼ାଭଜା, ଗାଣ୍ଠିଆ, ବରଫି ଓ ମହୀଶୂରପାକ ଅଣା ହେଉଥିଲ । ସ୍କୁଲ ହଷ୍ଟେଲରେ ଆମେ ଏସବୁ ଖାଉ ନ ଥିଲୁ । ସବୁଦିନେ ବରା, ଗୁଲୁଗୁଲା ବା ମୁଢ଼ି ଉଖୁଡ଼ା ଖାଉଥିଲୁ ।

ମାସକୁ ୨୫।୩୦ ଟଙ୍କା ଦେବାର ଶକ୍ତି ନ ଥିଲେ ସେତେବେଳେ କଲେଜ ହଷ୍ଟେଲରେ ରହିବା ସମ୍ଭବ ହେଉ ନ ଥିଲ । ଲୁଗାପଟାର ଦାମ୍ ଖୁବ୍ ଶସ୍ତା ଥିଲ । ସେନ୍‌ଗୁପ୍ତ ମିଲ୍‌ର ଭଲ ଧୋତି ଖଣ୍ଡିକୁ ଦେଢ଼ଟଙ୍କା ଦେବାକୁ ହେଉଥିଲ । ଗଞ୍ଜି ଖଣ୍ଡିକୁ ଆଠ ଦଶ ଅଣା, କମ୍ବଳ ଖଣ୍ଡିକୁ ଛଅ ଟଙ୍କା ଦେବାକୁ ହେଉଥିଲ । ବାହାର ଦୋକାନମାନଙ୍କରେ ମଧ୍ୟ ଖାଇବା ପଦାର୍ଥ ଶସ୍ତା ଥିଲ । କଲେଜ ଛକ ଓ ଷ୍ଟେସନ ବଜାର ହୋଟେଲମାନଙ୍କରେ ଦୁଇ ଅଣା କମ୍ବା ଦଶ ପଇସାରେ ଭାତ ମିଲ୍ ଗୋଟିଏ ମିଳୁଥିଲ । ସବୁଆଡ଼େ ପୁରି ଖଣ୍ଡିକୁ ପଇସାଏ ଏବଂ ମଧ୍ୟଭଲଆ ରସଗୋଲା ଗୋଟାକୁ ଦୁଇ ପଇସା ଥିଲ । ୧୯୩୬ ମସିହାଠାରୁ ୧୯୪୦ ମସିହା ମଧ୍ୟରେ ଆମେ ରେଭେନ୍‌ସା କଲେଜରେ ଆଇ. ଏ., ବି. ଏ. ପଢ଼ିଲବେଳେ ଜିନିଷପତ୍ରର ଦାମ ଏହିପରି ଥିଲ ।

ସେ ସମୟର ପନ୍ଦରବର୍ଷ ପୂର୍ବ ୧୯୨୧—୨୨ ମସିହାରେ ସେହି ହଷ୍ଟେଲ ମେସ୍‌ରେ ଖର୍ଚ୍ଚ କଥା ଜଷ୍ଟିସ୍ ହରିହର ମହାପାତ୍ର ତାଙ୍କ 'ଜୀବନ ଓ ଜୀବିକା' ବହିରେ ଲେଖିଛନ୍ତି । ୧୯୨୧ ମସିହାରେ କଲେଜ ପୂର୍ବରୁ ଥିବା ରେଭେନ୍‌ସା କଲେଜିଏଟ୍ ସ୍କୁଲ ଘରୁ ଷ୍ଟୁଆର୍ଟ ପାଟଣାର ନୂତନ କୋଠାକୁ ଉଠି ଆସିଥାଏ । ସେତେବେଳଯାଏ ମେସ୍ ସରକାରୀ ବ୍ୟବସ୍ଥାପରି ପରିଚାଳିତ ହୋଇ ନ ଥାଏ । ସେତେବେଳେ ମେସ୍‌ର ହାରାହାରି ମାସିକ ଖର୍ଚ୍ଚ ବାରଟଙ୍କା ପଡ଼ୁଥାଏ ବୋଲି ସେ ଲେଖିଛନ୍ତି । ୧୯୩୧ ମସିହାଠାରୁ ୧୯୩୫ ମସିହା ମଧ୍ୟରେ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସେହି ରେଭେନ୍‌ସା କଲେଜ ପୂର୍ବ ଛାତ୍ରାବାସରେ ଥିଲେ । ସେ ଲେଖିଛନ୍ତି ଯେ "ମେସ୍‌ଖର୍ଚ୍ଚ ମାସିକ ଦଶ ବାର ଟଙ୍କା ଦେବା ପରେ ଆମ୍ଭମାନଙ୍କୁ ପ୍ରତିଦିନ ଦୁଇଓଳି ଭାତ, ଡାଲି, ତରକାରି, ସନ୍ତୁଳା, ଭଜା, ଖଟା ଓ ମାଛ ଖାଇବାକୁ ମିଳୁଥିଲ । ତା' ଛଡ଼ା ପ୍ରତି ଶନିବାରରେ ଥରେ ମାଂସ ପଡ଼ୁଥିଲା

ଭୋଜ ଏବଂ ପ୍ରତିମାସରେ ଥରେ ମାଂସ, ପଲାଉ ଇତ୍ୟାଦି ସହିତ ଗୋଟିଏ ବଡ଼ ଧରଣର ଭୋଜ ଖାଇବାକୁ ମିଳୁଥିଲା । ···ହଷ୍ଟେଲର ମିଷ୍ଟାନ୍ନ ଭଣ୍ଡାରରେ ଗୋଟିଏ ବଡ଼ ପୁରିର ଦାମ୍ 'ଏକ ପଇସା ଏବଂ ଗୋଟିଏ ବଡ଼ ରସଗୋଲାର ଦାମ୍ ଥିଲା ତିନି ପଇସା ବା ଗୁଣ୍ଡ ପଇସା । ଟଙ୍କାରେ କଟକୀ ସେରରେ ଦଶ ବା ବାର ସେର ସରୁ ଚାଉଳ ମିଳୁଥିଲା । ମାଛ ଦର ଥିଲା ସେର ପ୍ରତି ଚାରିଅଣାରୁ ଆଠ ଅଣା ଏବଂ ପରିବା ଦର ଥିଲା ଦୁଇ ଅଣାରୁ ଆଠ ଅଣା । ଆମ୍ଭେମାନେ ମାତ୍ର ୧୦—୧୨ ଟଙ୍କା ଦେଇ ଯେଉଁ ଖାଦ୍ୟ ଖାଉଥିଲୁ, ତାହା ଆଜ ରାଜକୀୟ ଖାଦ୍ୟ ବୋଲି ବିବେଚିତ ହେବ ।"

ତୁଳନା କରି ମୁଁ ଦେଖୁଛୁ ଯେ, ୧୯୩୧ ମସିହାଠାରୁ ୧୯୩୫ ମସିହା ମଧ୍ୟରେ ହଷ୍ଟେଲରେ ଖାଇବା ପିଇବା ଯାହା ଥିଲା ଏବଂ ସେଥିପାଇଁ ଯାହା ଖର୍ଚ୍ଚ ଦେବାକୁ ପଡ଼ୁଥିଲା, ଆମ ସମୟ ୧୯୩୭ ମସିହାଠାରୁ ୧୯୪୦ ମସିହା ମଧ୍ୟରେ ସେଇଆ ଥିଲା । ୧୯୨୧ ମସିହାଠାରୁ ୧୯୪୦ ମସିହା ମଧ୍ୟରେ ଖାଇବା ଖର୍ଚ୍ଚ ବଢ଼ି ନ ଥିଲା । ବରଂ ଆମ ସମୟରେ ହଷ୍ଟେଲ ମେସ୍ ସବୁ ସଙ୍ଗଠିତ ଓ ସୁପରିଚାଳିତ ହେଉଥିବାରୁ, ୧୯୨୧ ମସିହାଠାରୁ ସେହି ପଇସାରେ ଆହୁରି ଭଲ ଖାଇବାକୁ ମିଳୁଥିଲା ।

୧୯୪୦ ମସିହାରେ ମୁଁ ଏମ୍. ଏ. ପଢ଼ିବାକୁ ପାଟନା ଗଲି ଏବଂ ସେଠାରେ ୧୯୪୨ ମସିହା ଅଗଷ୍ଟମାସ ଯାଏ ଦୁଇ ବର୍ଷ ରହିଥିଲି । ପ୍ରଥମ ବର୍ଷ ଗଙ୍ଗାକୂଳ ରାଣୀଘାଟ ପ୍ଲାଡକୋଲ୍ଡର ଛାତ୍ରାବାସ ପାଖରେ ଜଣେ ପଣ୍ଡିତଙ୍କ ଘରେ ଗୋଟିଏ କୋଠରି ଭଡ଼ା ନେଇ ରହିଥିଲି । କିନ୍ତୁ ଛାତ୍ରାବାସ ମେସ୍‌ରେ ଖାଇବା ପିଇବା କରୁଥିଲି । ଦ୍ୱିତୀୟବର୍ଷ ଛାତ୍ରାବାସର ଗୋଟିଏ ଜଣକିଆ କୋଠରିରେ ରହିଥିଲି । ଆମେ ପାଟନାରେ ପହଞ୍ଚି ଦେଖିଲୁ ଯେ, ପାଟନାରେ କଟକଠାରୁ ଜିନିଷପତ୍ର ଓ ଖାଇବା ପିଇବା ଅଧିକ ଶସ୍ତା । ରାଣୀଘାଟ ହଷ୍ଟେଲଟା ଛୋଟ ଥିଲା ଏବଂ ସେଥିରେ ମୋଟେ ୪୮ ଜଣ ଛାତ୍ର ରହୁଥିଲେ । ହଷ୍ଟେଲରେ ବିହାରୀମେସ୍, ଓଡ଼ିଆ ମେସ୍ ଓ ବଙ୍ଗାଳୀ ମେସ୍ ନାମରେ ତିନିଗୋଟି ମେସ୍‌ଥିଲା । ବଙ୍ଗାଳୀ ଓ ଓଡ଼ିଆ ମେସ୍‌ରେ ମାଛମାଂସ ତରକାରି ହୁଏ । ବିହାରୀ ମେସ୍‌ରେ ମାଛମାଂସ ତରକାରି ହୁଏ ନାହିଁ । ବଙ୍ଗାଳୀ, ଓଡ଼ିଆ କିମ୍ବା ବିହାରୀ ପିଲା ଯେ କୌଣସି ମେସ୍‌ରେ ଖାଇପାରନ୍ତି । ରେଭେନ୍‌ସା କଲେଜ ହଷ୍ଟେଲ ପରି ମେସ୍‌ଗୁଡ଼ିକ ହଷ୍ଟେଲ କର୍ତ୍ତୃପକ୍ଷ ଚଳାଉ ନ ଥିଲେ । ରନ୍ଧନଶାଳା ଓ ଖାଇବା ଘର ସହିତ ତିନିଗୋଟି ମେସ୍ ପିଲାମାନଙ୍କୁ ଦିଆହୋଇଥାଏ । ପିଲାମାନେ ଜଣେ ବାବାଜିଙ୍କୁ (ସାଧାରଣତଃ ଦ୍ୱାରଭଙ୍ଗା ଜିଲ୍ଲାର ଜଣେ ବ୍ରାହ୍ମଣ ପୂଜାରୀ) ମେସ୍

ଚଳାଇବାକୁ ଠିକା ଦିଅନ୍ତି । ବାବାଜି ତାଙ୍କ ସ୍କୁଲ ରଖି, ରନ୍ଧାବଢ଼ାର ଯୋଗାଡ଼ କରି ପିଲାମାନଙ୍କୁ ଖାଇବାକୁ ଦିଏ । ପ୍ରତି ପିଲା ବାବାଜିଙ୍କୁ ମୋଟେ ମାସକୁ ସାତଟଙ୍କା ଆଠ ଅଣା ଦେଉଥିଲେ । ସେଥିରେ ବାବାଜି ପ୍ରତିଦିନ ଦୁଇଟି ମିଲ୍ ଏବଂ ସନ୍ଧ୍ୟାବେଳେ ଜଳଖିଆ ସାଧାରଣତଃ ପୁରିତରକାରି ଦେଉଥିଲେ । ତାହା ବ୍ୟତୀତ ବାବାଜି ପିଲାମାନଙ୍କୁ ଗାଧୋଇବାପାଇଁ ତେଲ ଦିଏ । ମେସ୍‌ର ସ୍ୱକର ପିଲାମାନଙ୍କ ରୁମ୍ ସଫା କରେ ଏବଂ ଲୁଗା ଧୋଇଦିଏ । ପାଟନାରେ ପରିବାପତ୍ର କଟକ ଅପେକ୍ଷା ଅଧିକ ଶସ୍ତା ଥିଲା । ହାଟରେ ଆଳୁ, ପିଆଜ, ପୋଟଳ, ଭେଣ୍ଡି ବାଇଗଣ ପ୍ରଭୃତି ପରିବା ସେରଦାଣିଆ ବିକ୍ରି ନ ହୋଇ ପଶୁରି (ପାଞ୍ଚସେର) ଦାରିଆ ବିକ୍ରି ହେଉଥିଲା । ବାବାଜି ପିଲାମାନଙ୍କୁ ଯଥେଷ୍ଟ ପରିମାଣ ତରକାରି ଦିଅନ୍ତି । ବର୍ଷାଦିନେ ତଟକା ଗଙ୍ଗା ଇଲିଶ ମାଛ ଅତି ଶସ୍ତାରେ ମିଳୁଥିଲା । ମାଛମାଂସ ଖାଉଥିବା ପିଲା ପ୍ରତିଦିନ ମାଛ ତରକାରି ଖାଇବାକୁ ପାଉଥିଲେ ଏବଂ ସପ୍ତାହରେ ଥରେ ଦୁଇଥର ମାଂସ ତରକାରି ଖାଇବାକୁ ପାଉଥିଲେ । ବାହାରୁ ଗୋଆଲମାନେ ଆସି ମିଠା ଦହି ମେସ୍‌ରେ ବିକ୍ରି କରନ୍ତି । ଦହି ଭଲଭାବରେ ବସିଥାଏ ଏବଂ ଅତ୍ୟନ୍ତ ସୁସ୍ୱାଦୁ ଥାଏ । ସାନସରା ଦହି ଦୁଇ ପଇସା ଏବଂ ବଡ଼ସରା ଦହି ଚାରି ପଇସାରେ ବିକ୍ରି ହେଉଥିଲା । ଖାଇଲାବେଳେ ଗୋଟିଏ ବଡ଼ସରା ଦହି ଖାଇଲେ ପେଟ ଭର୍ତ୍ତି ହୋଇଯାଏ । ରାତିରେ ମଧ୍ୟ ଗୋଆଲମାନେ ଆସି ହଷ୍ଟେଲ ରୁମ୍‌ମାନଙ୍କରେ ପେଡ଼ା, ମଲାଇ କୁଲ୍‌ଫି ବରଫ ପ୍ରଭୃତି ବିକ୍ରି କରନ୍ତି । ସେଗୁଡ଼ିକ ମଧ୍ୟ ଦୁଇ ଚାରି ପଇସାରେ ମିଳୁଥିଲା । ସକାଳେ ଗୋଆଲମାନେ ବଡ଼ ବଡ଼ ଗାଈ ଆଣି ବଡ଼ ବଡ଼ ପିତ୍ତଳ ଗରାରେ ହଷ୍ଟେଲ ହତାରେ ଦୁଧ ଦୁହଁନ୍ତି । ଖାଣ୍ଟି ଦୁଧ ସେରକ ସେତେବେଳେ ଦୁଇ ଅଣା ଥିଲା । ପିଲାମାନଙ୍କ ଦରଦ ଅନୁସାରେ ବାବାଜି ଦୁଧ ଗରମ କରି କଟରାରେ ରୁମ୍‌ମାନଙ୍କୁ ପଠାଇ ଦିଅନ୍ତି । ପିଲାମାନେ ଇଚ୍ଛା ଅନୁସାରେ ପିଅନ୍ତି ।

ମୋଟ ଉପରେ ଆମେ ଦେଖିଲୁ କଟକ ଅପେକ୍ଷା ପାଟନାରେ ଦୁଧ, ଘିଅ, ରସ୍‌ମଲାଇ, ପରିବା, ମାଛ, ମାଂସ, ଗୁଡ଼ଲ, ଡାଲି ପ୍ରଭୃତି ଖାଇବା ପଦାର୍ଥ ଅଧିକ ଶସ୍ତା ଥିଲା ଏବଂ ପ୍ରଚୁର ପରିମାଣରେ ମିଳୁଥିଲା । ସନ୍ଧ୍ୟାବେଳେ ଆମେ ଦେଖୁ ଯେ, ସାଇନ୍‌ସ କଲେଜ ଓ ପାଟନା କଲେଜଠାରୁ ମଇଦାନ୍ ପର୍ଯ୍ୟନ୍ତ ରାସ୍ତାର ଫୁଟ୍‌ପାଥ୍‌ରେ କଞ୍ଚା ମକା ବିକାଳିବାଲା ନିଆଁ ଉହ୍ମେଇରେ ମକା ପୋଡ଼ି ବିକୁଥାନ୍ତି । ପଇସାକୁ ଦୁଇ ତିନୋଟି ଦିଅନ୍ତି । ବହୁ ଲୋକ କିଣି ଖାଆନ୍ତି । କଞ୍ଚାବୁଟ ମଧ୍ୟ ରାସ୍ତା କଡ଼ରେ ଟୋକେଇ ଟୋକେଇ ହୋଇ ବିକ୍ରି ହେଉଥାଏ । ଖାଇବାକୁ ଇଚ୍ଛା କରୁଥିବା ବ୍ୟକ୍ତିମାନେ ପଇସାଏ କିମ୍ବା ଦୁଇ ପଇସା ଦେଇ ପୁଳାଏ ପୁଳାଏ ଆଣି ଖାଆନ୍ତି । ରେଲ ଲାଇନ୍ କଡ଼ରେ ପିଜୁଳି ବଗିଚା ମାଇଲ ମାଇଲ

ଧର ଲମ୍ବିଥାଏ । ଜଣେ ପିଲା ବଗିଚା ଜଗିଥିବା ଲୋକକୁ ଦୁଇଅଣା ଦେଲେ ଗଛରେ ଚଢ଼ି ଯେତେ ଇଚ୍ଛା ସେତେ ପିଜୁଳି ଖାଇ ପାରୁଥିଲା । ପିଜୁଳି ପ୍ରଭୃତି ଫଳ ମଧ୍ୟ ଗ୍ରାମାଞ୍ଚଳରେ ଅତି ଶସ୍ତାରେ ବିକ୍ରି ହେଉଥିଲା । ଗଙ୍ଗାକୂଳ ମାଟି ଅତି ଉର୍ବର । ସେଥିରେ ଗହମ, ବୁଟ, ହରଡ଼, ଧାନ ପ୍ରଭୃତି ଶସ୍ୟ, ବିଭିନ୍ନ ପନିପରିବା, ଆମ୍ବ, ପଣସ, ପିଜୁଳି, ଲିଚୁ ପ୍ରଭୃତି ଫଳ ପ୍ରଚୁର ପରିମାଣରେ ଉତ୍ପନ୍ନ ହୁଏ । ସେ ସବୁ ବଜାରରେ ଅତି ଶସ୍ତାରେ ବିକ୍ରି ହେଉଥିଲା ଏବଂ ସବୁ ପ୍ରକାର ଖାଦ୍ୟ ଅଳ୍ପ ପଇସାରେ ପ୍ରଚୁର ପରିମାଣରେ ମିଳୁଥିଲା । ପରେ ୧୯୬୦ ମସିହା ବେଳକୁ କେତେଥର ମୁଁ ପାଟନା ସହରକୁ ଯାଇଥିଲି ଏବଂ ହୋଟେଲମାନଙ୍କରେ ରହିଥିଲି । କିନ୍ତୁ ସେତେବେଳକୁ ଜିନିଷପତ୍ର ସବୁ ମହର୍ଗ ହୋଇଯାଇଥିଲା । ୧୯୪୦ ମସିହା ପୂର୍ବରୁ ଓଡ଼ିଶା ଓ ବିହାରର ବିଭିନ୍ନ ଅଞ୍ଚଳରେ ସବୁ ଜିନିଷ ଶସ୍ତା ଥିଲା । ମାତ୍ର ଓଡ଼ିଶା ଅପେକ୍ଷା ବିହାରରେ ଅଧିକ ପୁଷ୍ଟିକାରକ ଖାଦ୍ୟ ଶସ୍ତାରେ ମିଳୁଥିଲା ।

ପାଟନାରେ ପଢ଼ିବା ସମୟରେ ଆମ୍ଭେମାନେ କଟକରୁ ପାଟନା ଗଲାବେଳେ ଥରେ ଥରେ କଲିକତାରେ ଦିନେ ଦୁଇଦିନ ରହି ଯାଉଥିଲୁ । ସେତେବେଳେ ଓଡ଼ିଶାରୁ ଅନେକ ପୂଝାରୀ କଲିକତାର ବିଭିନ୍ନ ଗଳିକନ୍ଦିରେ ଛୋଟ ଛୋଟ ଖାଇବାର ହୋଟେଲ କରିଥିଲେ । ସେଠାରେ ମଧ୍ୟ ମିଲ୍‌ସବୁ ଅତି ଶସ୍ତା ଥିଲା । ତିନିଅଣା କିମ୍ବା ଚଉଦ ପଇସାରେ ଭାତ, ଡାଲି, ସାଦା ତରକାରି, ମାଛ ତରକାରି, ଭଜା ପ୍ରଭୃତି ମିଳୁଥିଲା । ବିହାରରୁ ବହୁ ପରିମାଣରେ ପରିବାପତ୍ର କଲିକତାକୁ ଆସେ । ସେ ସମୟରେ କଲିକତାରେ ମଧ୍ୟ ଦୁଧ, ଦହି, ମାଛ, ମାଂସ, ପନିପରିବା ପ୍ରଭୃତି ଶସ୍ତା ଥିଲା । ପାଟନାରେ ପଢ଼ିବା ବେଳେ ମୁଁ ଆଲହାବାଦ୍ ଓ ବନାରସରେ ପଢ଼ୁଥିବା ସାଙ୍ଗମାନଙ୍କ ପାଖକୁବୁଲିବାକୁ ଯାଇ ତାଙ୍କ ହଷ୍ଟେଲ ମେସ୍‌ମାନଙ୍କରେ ଖାଇଥିଲି । ସେଠାରେ ମଧ୍ୟ ଖାଇବା ପିଇବା ଶସ୍ତା ଥିଲା । କିନ୍ତୁ ସେ ସ୍ଥାନମାନଙ୍କ ଅପେକ୍ଷା ପାଟନାରେ ଏକା ଖର୍ଚ୍ଚରେ ଅଧିକ ଅଧିକ ଖାଇବାକୁ ମିଳୁଥିଲା । ସୁତରାଂ ବିଂଶ ଶତାବ୍ଦୀ ଆରମ୍ଭରୁ ୧୯୪୦ ମସିହା ପର୍ଯ୍ୟନ୍ତ ଚାଳିଶ ବର୍ଷ ଭାରତବର୍ଷର ସୁବର୍ଣ୍ଣ ଶସ୍ତାଯୁଗ ଥିଲା । ଆମ ବୟସର ଲୋକମାନେ ତାଙ୍କ ଜୀବନର ପ୍ରାୟ ପଚିଶ୍ ବର୍ଷ ଏ ଶସ୍ତା ଯୁଗରେ ଚଳିଥିଲେ । ୧୯୫୦ ମସିହା ପରେ ଯେଉଁମାନେ ଜନ୍ମ ହୋଇଛନ୍ତି ସେମାନେ ସେ ଶସ୍ତାଯୁଗର ଅବସ୍ଥା କଳ୍ପନା କରିପାରିବେ ନାହିଁ ।

ସେ ଶସ୍ତାଯୁଗର ପରିବର୍ତ୍ତନ ଆରମ୍ଭ ହେଲା ବିଶେଷତଃ ୧୯୪୨ ମସିହା ଆରମ୍ଭରୁ । ଦ୍ୱିତୀୟ ବିଶ୍ୱଯୁଦ୍ଧ ୧୯୩୯ ମସିହା ସେପ୍ଟେମ୍ବରମାସରେ ଆରମ୍ଭ

ହୋଇଥିଲା । ୧୯୪୦ ଏବଂ ୧୯୪୧ ମସିହାରେ ଦରଦାମ୍ ପୂର୍ବ ଅପେକ୍ଷା ଅଧିକ ହୋଇଥିଲେ ସୁଦ୍ଧା, ୧୯୪୧ ମସିହା ଡିସେମ୍ବର ମାସରେ ଜାପାନୀମାନେ ଯୁଦ୍ଧରେ ଯୋଗଦେବା ପର୍ଯ୍ୟନ୍ତ ଦରଦାମ୍ ବିଶେଷ ବୃଦ୍ଧି ପାଇ ନ ଥିଲା । କିନ୍ତୁ ୧୯୪୨ ମସିହା ଆରମ୍ଭରୁ ଦେଶରେ ସବୁଆଡ଼େ ପରିସ୍ଥିତି ବଦଳିଗଲା । ସବୁଆଡ଼େ ସହରମାନଙ୍କରେ ଗୋରା ଏବଂ କଳା ସୈନ୍ୟ ଭର୍ତ୍ତି ହୋଇଗଲେ । ସୈନ୍ୟ-ବିଭାଗରେ ବହୁ ଟଙ୍କା ଖର୍ଚ୍ଚ ହେଲା । ସୈନ୍ୟବିଭାଗପାଇଁ ବହୁ ପରିମାଣର ଖାଦ୍ୟଶସ୍ୟ କିଣାହୋଇ ଦକ୍ଷିଣପୂର୍ବ ଏସିଆ ଦେଶମାନଙ୍କରେ ବିଭିନ୍ନ ରଣକ୍ଷେତ୍ରକୁ ପଠାଗଲା । ଦକ୍ଷିଣ ପୂର୍ବ ଏସିଆ ଦେଶମାନଙ୍କରେ ମିତ୍ରଶକ୍ତିମାନଙ୍କର ଯୁଦ୍ଧ ପରିଚାଳନାପାଇଁ ଭାରତର କଲିକତା ପ୍ରଭୃତି ବଡ଼ ବଡ଼ ସହରମାନ କେନ୍ଦ୍ର ହୋଇଗଲା । ଅନ୍ୟ ଦିଗରେ ଦେଶରେ କୋଡ଼ିଏ ବର୍ଷରୁ ଅଧିକକାଳ ଚାଲିଥିବା ଆନ୍ଦୋଳନ ତେଜି ଉଠିଲା । ଦେଶ ଶାସନର ସମସ୍ତ କ୍ଷମତା ଭାରତୀୟଙ୍କ ହାତକୁ ଛାଡ଼ିଦେବାପାଇଁ ଭାରତୀୟମାନେ ଦୃଢ଼ ଦାବି କଲେ । ବ୍ରିଟିଶ ସରକାର ସେଥିରେ ଟାଳଟୁଳ ନୀତି ଅବଲମ୍ବନ କରୁଥିଲେ । ସେମାନେ ଯୁଦ୍ଧକାର୍ଯ୍ୟରେ ଭାରତୀୟମାନଙ୍କ ସହଯୋଗ ଚାହୁଁଥିଲେ, ମାତ୍ର ଭାରତକୁ ପୂର୍ଣ୍ଣ ସ୍ୱାଧୀନତା ଦେବାକୁ ପ୍ରସ୍ତୁତ ନ ଥିଲେ । ସେଥିପାଇଁ ବାଦାନୁବାଦ ଲାଗିଥାଏ । ଯୁଦ୍ଧ ପରେ ଭାରତ ଶାସନର ରୂପରେଖ କ'ଣ ହେବ ସେଥିପାଇଁ ଭାରତର ରାଜନୈତିକ ନେତାମାନଙ୍କ ସହିତ କଥାବାର୍ତ୍ତା କରିବାକୁ ବ୍ରିଟିଶ ସରକାର ଏକାଧିକ କମିସନ୍ ପଠାଇବା ସତ୍ତ୍ୱେ କୌଣସି ନିଷ୍ପତ୍ତି ହୋଇ ନ ଥାଏ । ୧୯୪୨ ମସିହାରେ ଭାରତ ଛାଡ଼ ଆନ୍ଦୋଳନ ଅହିଂସା ଆନ୍ଦୋଳନ ପରିବର୍ତ୍ତେ ହିଂସାତ୍ମକ ହେଲା । ୧୯୪୩ ମସିହାରେ ବଙ୍ଗଳା, ବିହାର ଓ ଓଡ଼ିଶାରେ ଦୁର୍ଭିକ୍ଷ ହେଲା । ୧୯୪୫ ମସିହାରେ ବିଶ୍ୱଯୁଦ୍ଧ ଶେଷ ହେଲା, ମାତ୍ର ୧୯୪୬ ମସିହାରେ ଦେଶ ବିଭାଜନ ପାଇଁ ବହୁ ଅଞ୍ଚଳରେ ବିଶେଷତଃ କଲିକତା, ପୂର୍ବବଙ୍ଗ, ବିହାର ଓ ଉତ୍ତରପ୍ରଦେଶ ପ୍ରଭୃତିରେ ଭୀଷଣ ସାଂପ୍ରଦାୟିକ ଦଙ୍ଗା ଏବଂ ହାଣକାଟ ହେଲା । ଶେଷରେ ୧୯୪୭ ମସିହା ଅଗଷ୍ଟମାସରେ ଭାରତବର୍ଷ ଦୁଇଭାଗ ହୋଇ ଭାରତ ଓ ପାକିସ୍ଥାନ ରୂପେ ଦୁଇଟି ସ୍ୱାଧୀନ ରାଷ୍ଟ୍ର ପ୍ରତିଷ୍ଠିତ ହେଲା । ବିଭାଜନ ପ୍ରକ୍ରିୟାରେ କୋଟି କୋଟି ଲୋକ ଭାରତରୁ ପାକିସ୍ଥାନକୁ ଏବଂ ପାକିସ୍ଥାନରୁ ଭାରତକୁ ସ୍ଥାନାନ୍ତରିତ ହେଲେ । ଏପରି ଗଣ ସ୍ଥାନାନ୍ତର ପୃଥିବୀ ଇତିହାସରେ ବିରଳ । ସ୍ଥାନାନ୍ତରିତ ଲୋକମାନଙ୍କର ଥଇଥାନ, ସେମାନଙ୍କୁ ଖାଦ୍ୟ ଓ ବାସସ୍ଥାନ ପ୍ରଭୃତି ଯୋଗାଇବା ବିରାଟ ସମସ୍ୟା ହେଲା । ୧୯୪୮ରେ କାଶ୍ମୀର ବିବାଦ ହେତୁ ଭାରତ ଓ ପାକିସ୍ଥାନ ମଧ୍ୟରେ ଯୁଦ୍ଧ ଲାଗିଗଲା । ସୁତରାଂ ୧୯୪୨ ମସିହାରୁ ୧୯୫୧ ମସିହା ପର୍ଯ୍ୟନ୍ତ ଭାରତବର୍ଷର ସବୁଆଡ଼େ ବିଶେଷତଃ ପଶ୍ଚିମ ଉତ୍ତର

ଏବଂ ପୂର୍ବ ଭାରତରେ ଅଶାନ୍ତି, ହିଂସାକାଣ୍ଡ, ଯୁଦ୍ଧ, ଅନିଶ୍ଚୟତା, ଦୁର୍ଭିକ୍ଷ, କୋଟି କୋଟି ଶରଣାର୍ଥୀଙ୍କର ଆଗମନ ଏବଂ ସେମାନଙ୍କର ଥଇଥାନ ପ୍ରଭୃତି ବହୁ ଜଟିଳ ସମସ୍ୟା ଲାଗି ରହିଥିଲା । ଏପରି ପରିସ୍ଥିତିରେ ଦରଦାମ୍ କେବେ ସ୍ଥିର ରହିପାରି ନ ଥାନ୍ତା । ୧୯୪୨ ମସିହାରୁ ୧୯୫୧ ମସିହା ମଧ୍ୟରେ ଭାରତବର୍ଷର ଚାରିଆଡ଼େ ଦରଦାମ୍ ବଢ଼ିଗଲା । ୧୯୪୦ ମସିହା ପୂର୍ବ ଅବସ୍ଥା ଆଉ ଫେରିବା ସମ୍ଭବ ନ ଥିଲା ।

ଦେଶର ଏହିପରି ଘଡ଼ିସନ୍ଧି ସମୟରେ ଆମର ଛାତ୍ରଜୀବନ ଶେଷ ହେଲା ଏବଂ ଚାକିରି ଜୀବନ ଆରମ୍ଭ ହେଲା । ପ୍ରଥମେ ୧୯୪୨ ମସିହାରୁ ଚାରିଆଡ଼େ ଚିନି ଓ କିରାସିନିର ଘୋର ଅଭାବ ହେଲା । କିରାସିନିର ଅଧିକାଂଶ ଭାଗ ବ୍ରହ୍ମଦେଶରୁ ଆସୁଥିଲା । ଚିନି ମଧ୍ୟ ବହୁ ପରିମାଣରେ ବାହାରୁ ଆମଦାନି ହେଉଥିଲା । ଏ ଦୁଇ ଅତ୍ୟାବଶ୍ୟକ ପଦାର୍ଥ ଗାଁମାନଙ୍କରେ ମୋଟେ ମିଳିଲା ନାହିଁ ଏବଂ ସେଗୁଡ଼ିକର ଦର ଅତିମାତ୍ରାରେ ବଢ଼ିଗଲା । ତାପରେ ୧୯୪୩ ମସିହାରେ ବଙ୍ଗ ଦେଶରେ ଭୀଷଣ ଦୁର୍ଭିକ୍ଷ ହେବାରୁ ଚାରିଆଡ଼େ ଧାନଚାଉଳର ଅଭାବ ଦେଖାଗଲା । ଚିନି, କିରାସିନି, ଧାନ, ଚାଉଳ ଓ ଗହମ ପ୍ରଭୃତିର ଦର ଓ ଯୋଗାଣ ନିୟନ୍ତ୍ରଣ ପାଇଁ ସରକାର ଯୋଗାଣ ବିଭାଗ ପ୍ରତିଷ୍ଠା କଲେ ଏବଂ ପ୍ରତି ଜିଲ୍ଲା ଏବଂ ସବ୍‌ଡିଭିଜନରେ ଯୋଗାଣ ଅଫିସର ନିଯୁକ୍ତ କଲେ । ଦର ନିୟନ୍ତ୍ରଣ ହେବା ସଙ୍ଗେ ସଙ୍ଗେ ବ୍ୟବସାୟୀମାନେ ମାଲ୍ ଲୁଚାଇଲେ ଏବଂ ତାହା କଳାବଜାରରେ ଅଧିକ ଦାମ୍‌ରେ ବିକଲେ । ୧୯୪୩ ମସିହାରୁ ସରକାର କ୍ରମେ ଚିନି, କିରାସିନି, ଚାଉଳ, ଗହମ ପ୍ରଭୃତିର ଦର ନିୟନ୍ତ୍ରଣ କଲେ ଏବଂ ସହର ଓ ଗ୍ରାମାଞ୍ଚଳରେ ପଡ଼ିକାର୍ଡ଼ର ବ୍ୟବସ୍ଥା କଲେ । ପଡ଼ିକାର୍ଡ଼ ଓ ଦର ନିୟନ୍ତ୍ରଣ ବ୍ୟବସ୍ଥା ସଙ୍ଗେ ସଙ୍ଗେ ଆରମ୍ଭ ହେଲା ବ୍ୟବସାୟୀଙ୍କ କଳାବଜାର ଏବଂ ଯୋଗାଣ ଓ ଦରଦାମ ନିୟନ୍ତ୍ରଣର ଦାୟିତ୍ୱରେ ଥିବା ସରକାରୀ କର୍ମଚାରୀ ଏବଂ ବେସରକାରୀ ବ୍ୟକ୍ତିଙ୍କ ଦୁର୍ନୀତି । ୧୯୪୩ ମସିହାରୁ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଏହି ତିନିକଥା ଏ ଦେଶରେ ସାଧାରଣ ଭାବେ ଚାଲିଛି । ଆମ ପୁରୁଷର ଲୋକମାନଙ୍କର ଏହା ଦେହସୁହା ହୋଇଯାଇଛି ।

ଯୁଦ୍ଧ ସମୟ ୧୯୪୨ ରୁ ୧୯୪୫ ମସିହା ମଧ୍ୟରେ ଚିନି, କିରାସିନି, ଚାଉଳ, ଗହମ, ଲୁଗାପଟା ପ୍ରଭୃତି ଅତ୍ୟାବଶ୍ୟକ ପଦାର୍ଥ ବଜାରରେ ସହଜରେ କିଣିବାକୁ ମିଳୁ ନ ଥିଲା । ୧୯୪୫ ମସିହାରେ ଯୁଦ୍ଧ ଶେଷ ହେବା ପରେ ଜିନିଷପତ୍ର ଆସ୍ତେ ଆସ୍ତେ କିଣିବାକୁ ମିଳିଲା । ମାତ୍ର ଯୁଦ୍ଧ ପୂର୍ବ ତୁଳନାରେ ସାଧାରଣ ଭାବେ ଦରଦାମ୍ ଅଢ଼େଇଗୁଣ ହୋଇ ଯାଇଥିଲା । ୧୯୪୫ ମସିହାରୁ ୧୯୫୨ ମସିହା

ପର୍ଯ୍ୟନ୍ତ ମୁଁ ସମ୍ବଲପୁର କଲେଜରେ ଚାକିରି କରୁଥିଲାବେଳେ ଭଲ ଉଷୁନା ଚାଉଳ ଟଙ୍କାକୁ ବାଲେଶ୍ୱରି ପାଞ୍ଚସେର ମିଳୁଥିଲା । ଯୁଦ୍ଧ ଶେଷଅଡ଼କୁ ସରକାର ଦରଦାମ୍ ନିୟନ୍ତ୍ରଣ, ଅତ୍ୟାବଶ୍ୟକ ପଦାର୍ଥମାନଙ୍କପାଇଁ ପଞ୍ଜି ପ୍ରଥା, ମୁଦ୍ରା ପ୍ରଚଳନ ପରିମାଣ କମାଇବା ସେଥିପାଇଁ ଲୋକମାନଙ୍କଠାରୁ ସରକାରୀ ଋଣ ସଂଗ୍ରହ କରିବା ପ୍ରଭୃତି ବ୍ୟବସ୍ଥା ଆରମ୍ଭ କରିଥିଲେ । କିନ୍ତୁ ୧୯୪୫ଠାରୁ ୧୯୫୧ ମସିହା ମଧ୍ୟରେ ଦେଶର ରାଜନୈତିକ ଓ ଅର୍ଥନୈତିକ ପରିସ୍ଥିତି ଏପରି ଥିଲା ଯେ, ସେ ସମସ୍ତ ମଧ୍ୟରେ ଦରଦାମ୍ ସ୍ଥିର ରଖିବା ଅସମ୍ଭବ ହୋଇଥିଲା । ଏହି ସମସ୍ତ ମଧ୍ୟରେ କାଶ୍ମୀର ସମସ୍ୟା ନେଇ ଭାରତ ଓ ପାକିସ୍ଥାନ ମଧ୍ୟରେ ଯୁଦ୍ଧ ହେଲା । ଆନ୍ତର୍ଜାତୀୟ ସ୍ତରରେ କୋରିଆରେ ଯୁଦ୍ଧ ହେଲା । ଲୋକମାନଙ୍କର ଭୟ ହେଉଥିଲା ଯେ ପୁଣି ବିଶ୍ୱଯୁଦ୍ଧ ଲାଗିଯିବ । ଏ ସମସ୍ତ ମଧ୍ୟରେ ପାକିସ୍ଥାନରୁ ଆସିଥିବା ଶରଣାର୍ଥୀଙ୍କ ଥଇଥାନପାଇଁ ସରକାରଙ୍କୁ ବହୁ ଖର୍ଚ୍ଚ କରିବାକୁ ପଡ଼ିଲା । ୧୯୪୯ ମସିହାରେ ଭାରତୀୟ ମୁଦ୍ରାର ବୈଦେଶିକ ବିନିମୟ ହାର ହ୍ରାସ କରିବାକୁ ପଡ଼ିଲା । ଏହିସବୁ ବହୁ କାରଣ ହେତୁ ୧୯୩୯ ମସିହା ତୁଳନାରେ ୧୯୫୧ ମସିହାରେ ଦରଦାମ୍ ପ୍ରାୟ ଚାରିଗୁଣ ହୋଇଯାଇଥିଲା ।

୧୯୫୧ ମସିହାରେ ପ୍ରଥମ ପାଞ୍ଚବର୍ଷିଆ ଯୋଜନା ଆରମ୍ଭ ହେଲା । ଉକ୍ତ ଚାରିବର୍ଷ ଅନୁକୂଳ ମୌସୁମୀ ବର୍ଷା ହେତୁ ଭାରତର ଚାରିଆଡ଼େ କୃଷି ଉତ୍ପାଦନ ଭଲ ହେଲା । ଆନ୍ତର୍ଜାତିକ କ୍ଷେତ୍ରରେ କୋରିଆ ଯୁଦ୍ଧ ବନ୍ଦ ହେଲା ଏବଂ ତୃତୀୟ ବିଶ୍ୱଯୁଦ୍ଧ ଭୟ ଦୂର ହୋଇଗଲା । ଏସବୁର ପ୍ରଭାବରେ ଭାରତବର୍ଷରେ ୧୯୫୩ ମସିହାଠାରୁ ୧୯୫୫ ମସିହା ମଧ୍ୟରେ ଦରଦାମ୍ ପ୍ରାୟ ଶତକଡ଼ା ୧୫ ଭାଗ କମି ଯାଇଥିଲା । ମାତ୍ର ୧୯୫୫ ମସିହା ମଧ୍ୟଭାଗଠାରୁ ଦରଦାମ୍ ପୁଣି କ୍ରମାଗତ ଭାବେ ବୃଦ୍ଧି ପାଇଲା । ୧୯୫୬ ମସିହାଠାରୁ ଆରମ୍ଭ ହୋଇଥିବା ଦ୍ୱିତୀୟ ପଞ୍ଚବାର୍ଷିକ ଯୋଜନା କାଳରେ ଇସ୍ପାତ ଓ ଅନ୍ୟାନ୍ୟ ବହୁ ବୃହତ୍ ଶିଳ୍ପ ପ୍ରତିଷ୍ଠା କାର୍ଯ୍ୟ ଆରମ୍ଭ ହେଲା । ସେଗୁଡ଼ିକପାଇଁ ବିଦେଶରୁ ଯନ୍ତ୍ରପାତି ଆମଦାନି କରିବା ବହୁ ପରିମାଣର ବୈଦେଶିକ ମୁଦ୍ରା ଦରକାର ହେଲା । ପ୍ରଥମ ଯୋଜନା କାଳରେ ଦେଶ ଖାଦ୍ୟ-ଶସ୍ୟରେ ସ୍ୱାବଲମ୍ବୀ ହୋଇଗଲା ବୋଲି ଯାହା ମନେ ହେଉଥିଲା, ତାହା ପ୍ରକୃତରେ ଠିକ୍ ନ ଥିଲା । ୧୯୫୯—୬୦ ମସିହା ବେଳକୁ ପୁଣି ଖାଦ୍ୟାଭାବ ଅନୁଭୂତ ହେଲା ଏବଂ ଖାଉଟି ପଦାର୍ଥମାନଙ୍କର ଦର ବଢ଼ିବାକୁ ଲାଗିଲା ।

ତା'ପରେ ୧୯୬୨ ମସିହାରେ ଚୀନ୍ ଦେଶ ସହ ଏବଂ ୧୯୬୫ ମସିହାରେ ପାକିସ୍ଥାନ ସହ ଯୁଦ୍ଧ ହେଲା । ଖାଦ୍ୟଶସ୍ୟର ଅଭାବ ହେତୁ ବିଦେଶରୁ ବହୁ ପରିମାଣରେ ଗହମ ଆମଦାନି କରିବାକୁ ପଡ଼ିଲା । ବିଦେଶରୁ ଖାଦ୍ୟଶସ୍ୟ ଓ

ସକ୍ଷପାତ ଆମଦାନ ହେତୁ ବୈଦେଶିକ ମୁଦ୍ରାର ଅଭାବ ହେଲା ଏବଂ ୧୯୬୬ ମସିହାରେ ପୁଣି ଭାରତୀୟ ମୁଦ୍ରାର ବୈଦେଶିକ ମୂଲ୍ୟ ହ୍ରାସ କରିବାକୁ ପଡ଼ିଲା । ୧୯୬୬—୬୭ ମସିହାରେ ମରୁଡ଼ି ହେତୁ ବିହାର ପ୍ରଭୃତି ରାଜ୍ୟରେ ଦୁର୍ଭିକ୍ଷ ପରିସ୍ଥିତି ଉପୁଜିଲା । ଖାଦ୍ୟଶସ୍ୟର ଅଭାବ, ଦରଦାମ୍ ବୃଦ୍ଧି ଏବଂ ବୈଦେଶିକ ମୁଦ୍ରାର ଅଭାବ ପ୍ରଭୃତି ହେତୁ ଦେଶର ଆର୍ଥିକ ପରିସ୍ଥିତି ବିପର୍ଯ୍ୟସ୍ତ ହେଲା ।

୧୯୬୯ ମସିହାରୁ ୧୯୭୪ ମସିହା ମଧ୍ୟରେ ଚତୁର୍ଥ ଯୋଜନା କାଳରେ ଦରଦାମ ବୃଦ୍ଧି ସବୁଠାରୁ ଅଧିକ ହେଲା । ୧୯୭୩—୭୪ ମସିହା ଗୋଟିଏ ବର୍ଷ ମଧ୍ୟରେ ଦରଦାମ୍ ପ୍ରାୟ ଶତକଡ଼ା ୨୩ ଭାଗ ବଢ଼ିଗଲା । ଏପରି ବିପଦଜନକ ଦରଦାମ୍ ବୃଦ୍ଧିହେତୁ, ରେଳବାଇ ଏବଂ ଅନେକ ବୃହତ୍ ଶିଳ୍ପର ଶ୍ରମିକମାନେ ମଜୁରି ବୃଦ୍ଧି କରିବାକୁ ଆନ୍ଦୋଳନ କଲେ । ଦରଦାମ୍‌ର ବିପଦଜନକ ବୃଦ୍ଧି କମ୍ କରିବାପାଇଁ ୧୯୭୪ ମସିହାରେ ସମସ୍ତ ପ୍ରକାର ଶିଳ୍ପରେ ମଜୁରି ନ ବଢ଼ାଇବାପାଇଁ ସରକାର ସ୍ଥିର କଲେ । ସେଥି ସଙ୍ଗେ ସଙ୍ଗେ ନିଅଣ୍ଟିଆ ବଜେଟ୍ କମ୍ କରିବା, ବାଧ୍ୟତାମୂଳକ ସଞ୍ଚୟ ଯୋଜନା କାର୍ଯ୍ୟକାରୀ କରିବା, ଖାଦ୍ୟ ଓ ଅନ୍ୟ ବହୁ ଅତ୍ୟାବଶ୍ୟକ ପଦାର୍ଥ ସରକାରୀ ବଣ୍ଟନ ପ୍ରଣାଳୀ ମାଧ୍ୟମରେ ଲୋକମାନଙ୍କୁ ଯୋଗାଇବା ପ୍ରଭୃତି ପଦକ୍ଷେପ ନେବାପାଇଁ ସ୍ଥିର ହେଲା । ଫଳରେ ୧୯୭୫ ମସିହାଠାରୁ ୧୯୭୭ ମସିହା ପର୍ଯ୍ୟନ୍ତ, ଜରୁରୀ ପରିସ୍ଥିତି ଘୋଷଣା କରାଯାଇଥିବା ସମୟରେ, ଦରଦାମ୍ ବୃଦ୍ଧି କେତେକ ପରିମାଣରେ କମାଇ ଦିଆଯାଇଥିଲା । ୧୯୭୭ ମସିହାଠାରୁ ୧୯୭୯ ମସିହା ମଧ୍ୟରେ ଜନତା ସରକାର ବେଳେ, ଦରଦାମ୍ ମଧ୍ୟ ଦ୍ରୁତ ଗତିରେ ବଢ଼ି ନ ଥିଲା ।

୧୯୭୯ ମସିହାରେ ଉତ୍ତର ଭାରତର ବ୍ୟାପକ ଅଞ୍ଚଳରେ ପୁଣି ମରୁଡ଼ି ହେବା ହେତୁ କୃଷି ଉତ୍ପାଦନ ବହୁ ପରିମାଣରେ କମି ଯାଇଥିଲା । ତାହାର ପ୍ରଭାବରେ ଦ୍ରୁତ ଦରଦାମ୍ ବୃଦ୍ଧି ପୁଣି ଆରମ୍ଭ ହେଲା । ୧୯୮୦ ମସିହାଠାରୁ ୧୯୯୦ ମସିହା ପର୍ଯ୍ୟନ୍ତ କଂଗ୍ରେସ ସରକାର ଷଷ୍ଠ ଓ ସପ୍ତମ ଯୋଜନା କାର୍ଯ୍ୟକାରୀ କଲେ । ଏହି ଦୁଇଯୋଜନାରେ ମୋଟ ବ୍ୟୟ ପରିମାଣ ଖୁବ୍ ଅଧିକ ହେଲା । ପ୍ରତିରକ୍ଷା ଖର୍ଚ୍ଚ ବହୁ ପରିମାଣରେ ବୃଦ୍ଧି ପାଇଲା । ଗ୍ରାମାଞ୍ଚଳରେ ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମମାନଙ୍କରେ ବହୁ ଅର୍ଥ ବ୍ୟୟ ହେଲା । ସରକାରଙ୍କର ନିଅଣ୍ଟିଆ ବଜେଟ ପ୍ରତିବର୍ଷ ଅଧିକରୁ ଅଧିକ ହେଲା । ଯେଉଁ ବଜେଟ ନିଅଣ୍ଟ ପରିମାଣ ୧୯୫୬ଠାରୁ ୧୯୬୧ ମସିହା ମଧ୍ୟରେ ମାତ୍ର ୧୨୦୦ କୋଟି ଥିଲା, ୧୯୯୦ ମସିହା ବେଳକୁ ତାହା ପ୍ରାୟ ବର୍ଷକୁ ପ୍ରାୟ ୧୩୦୦୦ କୋଟି ହେଲା । ବିଭିନ୍ନ ବିଭାଗରେ ସରକାରୀ ବ୍ୟୟ ଅତ ମାତ୍ରାରେ ବଢ଼ିଲା ଏବଂ ତାହା ଉପରେ

ନିୟନ୍ତ୍ରଣ ରହିଲା ନାହିଁ । ସରକାର ରିଜର୍ଭ ବ୍ୟାଙ୍କ୍‌ରୁ ଋଣ ଆଣି ତାହା ଭିତ୍ତିରେ ଅଧିକରୁ ଅଧିକ ନୋଟ୍ ଛପାଇଲେ । ଫଳରେ ମୁଦ୍ରା ପରିମାଣ ଅତିମାତ୍ରାରେ ବଢ଼ିଲା । ତାହା ଉପରେ ପୁଣି ଋଣମେଳା ପ୍ରଭୃତି କରି, ଗାଁମାନଙ୍କରେ ବ୍ୟାଙ୍କ୍‌ମାନଙ୍କରୁ ଚାଷୀମାନଙ୍କୁ ବହୁ ପରିମାଣରେ ଋଣ ଦେଲେ । ବହୁଳ ମୁଦ୍ରା ପ୍ରଚଳନ ସହିତ ଖାଦ୍ୟ ପ୍ରଭୃତି ସମସ୍ତ ପ୍ରକାର ଜିନିଷପତ୍ରର ପରିମାଣ ସମାନ ସ୍ତରରେ ବୃଦ୍ଧି ନ ପାଇବାରୁ, ସବୁ ପ୍ରକାର ଦ୍ରବ୍ୟର ଦର ବଢ଼ି ବଢ଼ି ଚାଲିଲା । ୧୯୮୦ ମସିହାରୁ ୧୯୯୦ ମସିହା ପର୍ଯ୍ୟନ୍ତ ଦରଦାମ୍ ପ୍ରତିବର୍ଷ ଶତକଡ଼ା ପ୍ରାୟ ନଅ ଦଶ ଭାଗ ବଢ଼ୁଥିଲା । ୧୯୯୦ ମସିହାରେ ପାରସ୍ୟ ଉପସାଗରରେ ଇରାକ୍ କୁଏଟ ଦେଶ ଉପରେ ଆକ୍ରମଣ କଲା । ପାଶ୍ଚାତ୍ୟ ଦେଶମାନ କୁଏଟ ଦେଶକୁ ରକ୍ଷା କରିବା ନିମିତ୍ତ ଇରାକ ସଙ୍ଗରେ ଯୁଦ୍ଧ କଲେ । ଫଳରେ ପାରସ୍ୟ ଉପସାଗର ଅଞ୍ଚଳର ଦେଶମାନଙ୍କରୁ ପେଟ୍ରୋଲିୟମ ଏବଂ ତତ୍‌ଜନିତ ପଦାର୍ଥମାନ ଭାରତକୁ ଆସିପାରିଲା ନାହିଁ । ଭାରତରେ ପେଟ୍ରୋଲ ଜାତୀୟ ପଦାର୍ଥର ଦର ଅତିମାତ୍ରାରେ ବଢ଼ିଗଲା । ପେଟ୍ରୋଲଜାତ ପଦାର୍ଥମାନଙ୍କର ଆମଦାନିପାଇଁ ବହୁ ପରିମାଣର ବୈଦେଶିକ ମୁଦ୍ରା ଦେବାକୁ ହେଲା । ତାହା ସଙ୍ଗେ ସଙ୍ଗେ, ଉପସାଗରୀୟ ଦେଶମାନଙ୍କରେ କାମ କରୁଥିବା ବହୁ ଭାରତୀୟ ଦେଶକୁ ଫେରିଆସିଲେ । ଫଳରେ ଦେଶର ବୈଦେଶିକ ମୁଦ୍ରାପାଣ୍ଠି ସର୍ବନିମ୍ନ ସ୍ତରକୁ ଚାଲି ଆସିଲା । ଆମଦାନି ଖର୍ଚ୍ଚ ଚଳାଇବାପାଇଁ ଏବଂ ବିଦେଶୀ ଋଣର ସୁଧମୂଳ ପରିଶୋଧ କରିବାପାଇଁ ଇଂଲଣ୍ଡରେ ରିଜର୍ଭ ବ୍ୟାଙ୍କ୍‌ର ସୁନା ବନ୍ଧକ ଦେବାକୁ ପଡ଼ିଲା । ଏ ସବୁ ପରିସ୍ଥିତିରେ ଦେଶର ଆର୍ଥିକ ଅବସ୍ଥା ଏପରି ହେଲା ଯେ, ଯେ କୌଣସି ସର୍ତ୍ତରେ ବିଶ୍ୱବ୍ୟାଙ୍କ୍ ଓ ଆନ୍ତର୍ଜାତିକ ମୁଦ୍ରା ପାଣ୍ଠିରୁ ଋଣ ଆଣିବାକୁ ସରକାର ବାଧ୍ୟ ହେଲେ । ସରକାର ଭାରତୀୟ ମୁଦ୍ରାର ବୈଦେଶିକ ମୂଲ୍ୟ ପ୍ରାୟ ଶତକଡ଼ା ୨୩ ଭାଗ କମାଇ ଦେବାକୁ ବାଧ୍ୟ ହେଲେ । ଫଳରେ ୧୯୯୧—୯୨ ମସିହାରେ ଦରଦାମ୍ ବୃଦ୍ଧି ହାର ଶତକଡ଼ା ପ୍ରାୟ ୨୪ ଭାଗ ହେଲା ଏବଂ ୧୯୯୨ ମସିହାରେ ଦରଦାମ୍ ବୃଦ୍ଧି ଚରମ ସୀମାରେ ପହଞ୍ଚିଲା । ବିଶ୍ୱବ୍ୟାଙ୍କ୍ ଓ ଆନ୍ତର୍ଜାତୀୟ ମୁଦ୍ରାପାଣ୍ଠିରୁ ପ୍ରଚୁର ପରିମାଣରେ ଋଣ ନ ଆଣିଲେ ଦେଶର ଆର୍ଥିକ ଅବସ୍ଥା ଭୁଷୁଡ଼ି ପଡ଼ିବାର ଆଶଙ୍କା ହେଲା । ଋଣ ଦେବାପାଇଁ ଉପରୋକ୍ତ ଆନ୍ତର୍ଜାତୀୟ ସଂସ୍ଥାମାନେ ବଜେଟ୍ ନିଅଣ୍ଟ ପରିମାଣ ଏବଂ ମୁଦ୍ରା ପ୍ରଚଳନ ପରିମାଣ କମାଇ ମୁଦ୍ରାସ୍ଫିତି ନ କମାଇଲେ ଏବଂ ଭାରତୀୟ ମୁଦ୍ରାର ବୈଦେଶିକ ମୂଲ୍ୟ ହ୍ରାସ ନ କଲେ ଋଣ ଦେବେ ନାହିଁ ବୋଲି ସର୍ତ୍ତ ବାଢ଼ିଲେ । ସେଥି ସଙ୍ଗେ ସଙ୍ଗେ ପାଶ୍ଚାତ୍ୟ ଦେଶମାନଙ୍କର ବ୍ୟବସାୟୀମାନେ ଭାରତବର୍ଷରେ ପୁଞ୍ଜି ଖଟାଇବାପାଇଁ ଭାରତରେ ଅର୍ଥନୈତିକ କ୍ଷେତ୍ରରେ ସବୁ ସ୍ତରରେ ସରକାରୀ ନିୟନ୍ତ୍ରଣ କମାଇବା

ହୋଇବାର ବୋଲି ପରାମର୍ଶ ଦେଲେ । ସେହି ପରାମର୍ଶ ଅନୁସାରେ ୧୯୯୧—୯୨ ମସିହା ବଜେଟ୍‌ଠାରୁ ଭାରତର ଅର୍ଥମନ୍ତ୍ରୀ ମନମୋହନ ସିଂହ କେନ୍ଦ୍ରସରକାରଙ୍କ ବଜେଟ୍ ପ୍ରସ୍ତୁତ କରୁଛନ୍ତି । ବଜେଟ୍‌ର ନିଅଣ୍ଟ ପରିମାଣ ଓ ମୁଦ୍ରା ପ୍ରଚଳନ ପରିମାଣ କମାଇବା ହେତୁ ୧୯୯୨—୯୩ ମସିହାଠାରୁ ଦରଦାମ୍ ବୃଦ୍ଧି ହାର କମିଯାଇ ଶତକଡ଼ା ପ୍ରାୟ ସାତଭାଗ ହୋଇଛି । ତଥାପି ଶତାବ୍ଦୀର ଶେଷ ଦଶନ୍ଧିରେ ସବୁ ପଦାର୍ଥର ଦରଦାମ୍ ଊର୍ଦ୍ଧ୍ୱମୁଖୀ ରହିଛି ।

ଦରଦାମ ବୃଦ୍ଧି ସବୁବେଳେ ଗୋଟିଏ ମୂଳ ବର୍ଷ ସହିତ ତୁଳନା କରାଯାଏ, ଆମ ଦେଶରେ ୧୯୫୦ ମସିହା ପର୍ଯ୍ୟନ୍ତ ଦରଦାମ୍ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ବର୍ଷ ୧୯୩୯ ମସିହାର ଦରଦାମ୍ ସହିତ ତୁଳନା କରାଯାଉଥିଲା । ୧୯୫୦—୫୧ ମସିହାରେ ୧୯୩୯ ମସିହା ତୁଳନାରେ ଦରଦାମ୍ ସେତେବେଳେ ତ୍ରିଗୁଣ ହେଲା, ସେତେବେଳେ ଆଉ ୧୯୩୯ ମସିହା ଦର ସଙ୍ଗରେ ତୁଳନା କରିବା ନିରର୍ଥକ ହେଲା । ସେଥିଯୋଗୁଁ ପାଇକାରି ମୂଲ୍ୟ ତୁଳନା ପାଇଁ ୧୯୪୯—୫୦ ମସିହା ଏବଂ ଖାଉଟି ମୂଲ୍ୟ ତୁଳନାପାଇଁ ୧୯୫୨—୫୩ ମସିହା ମୂଳବର୍ଷ ରୂପେ ଧରାଗଲା । ତାପରେ ପ୍ରତି ଦଶନ୍ଧିରେ ଦରଦାମ୍ ଯେତେବେଳେ ଚକ୍ରବୃଦ୍ଧି ଭାବରେ ବଢ଼ିଗଲା ତୁଳନାର ମୂଳବର୍ଷ ୧୯୬୧—୬୨, ୧୯୭୧—୭୨, ୧୯୮୦—୮୧ ବୋଲି ଧରାଗଲା । ଶତାବ୍ଦୀର ଶେଷ ଦଶକରେ ବର୍ତ୍ତମାନ ପାଇକାରି ମୂଲ୍ୟପାଇଁ ୧୯୮୦—୮୧ ଏବଂ ଖାଉଟି ଦରପାଇଁ ୧୯୮୨—୮୩ ମସିହାକୁ ମୂଳ ବର୍ଷ ବୋଲି ଧରାଯାଉଛି । ୧୯୮୨—୮୩ ତୁଳନାରେ ମଧ୍ୟ ଖାଉଟି ଦରଦାମ୍ ବର୍ତ୍ତମାନ ଅଢ଼େଇଗୁଣରୁ ଅଧିକ ହୋଇଛି ।

ବର୍ତ୍ତମାନର ଦରଦାମ୍ ୧୯୩୯ ମସିହା ଦରଦାମ୍ ସହିତ ତୁଳନା କରିବା ନିରର୍ଥକ । ତେବେ ହିସାବ କରି ଦେଖିଲେ ଜଣାଯାଏ ଯେ ଆମେ ରେଭେନ୍‌ସା କଲେଜରେ ପଢ଼ିବା ସମୟ ୧୯୩୯ ମସିହା ତୁଳନାରେ ବର୍ତ୍ତମାନର ଦରଦାମ୍ ୫୦ ଗୁଣରୁ ଅଧିକ । ୧୯୩୯ରୁ ୧୯୫୧ ମଧ୍ୟରେ ବୃଦ୍ଧି ହେଲା ୪ ଗୁଣ, ୧୯୬୦ ମସିହା ବେଳକୁ ବୃଦ୍ଧି ହେଲା ତାର ଦେଢ଼ଗୁଣ, ୧୯୬୦ରୁ ୧୯୭୧ ମସିହା ମଧ୍ୟରେ ବୃଦ୍ଧି ହେଲା ତାର ଅଢ଼େଇଗୁଣ, ୧୯୭୧ରୁ ୧୯୯୨ ମସିହା ମଧ୍ୟରେ ବୃଦ୍ଧି ହେଲା ତାର ତ୍ରିଗୁଣରୁ ଅଧିକ । ପୂର୍ବ ସ୍ମୃତି ଉଦ୍ଧାରଣ କରି ଦେଖିଲେ କେତେକ ଅତ୍ୟାବଶ୍ୟକ ଜିନିଷର ଦର ୧୯୩୫।୩୬ ମସିହା ତୁଳନାରେ ଶହେଗୁଣରୁ ଅଧିକ ବଢ଼ିଛି । ୧୯୩୫ ମସିହାରେ ଏକ ପଇସାରେ ପାନ ତ୍ରିଶଖଣ୍ଡ ବା ଏକଟଙ୍କାରେ ୨୫୬ ଖଣ୍ଡ ମିଳୁଥିଲା । ବର୍ତ୍ତମାନ ୧୯୯୩ ମସିହାରେ ସାଧାରଣ ପାନ ଟଙ୍କାରେ ଦୁଇଖଣ୍ଡ । ସେତେ- ବେଳେ ବିଶବର ପଇସାକୁ ଦୁଇଟା ବା ଟଙ୍କାକୁ ୧୨୮,

ଗୁଲୁଗୁଲା ପଇସାକୁ ସୁକିଟା ବା ଟଙ୍କାକୁ ୨୫୬ ଥିଲାବେଳେ ବର୍ତ୍ତମାନ ବଡ଼ ଟଙ୍କାକୁ ଦୁଇଟା ଓ ଗୁଲୁଗୁଲା ସୁକିଟା । ଯେଉଁ ମାଛ ସେତେବେଳେ ସେର ଟଙ୍କାଏ ଥିଲା, ବର୍ତ୍ତମାନ ତାହା ସେର ୪୦ ଟଙ୍କା । ମାଂସ ସେର ସେତେବେଳେ ଆଠଅଣା ଥିଲାବେଳେ ବର୍ତ୍ତମାନ ମାଂସ କିଲୋ (ସେରକରୁ ଟିକିଏ କମ୍) ୬୦ ଟଙ୍କା । ସୁନା ଭରି ସେତେବେଳେ ୩୫ ଟଙ୍କା ଥିଲାବେଳେ ବର୍ତ୍ତମାନ ତାହା ୪୫୦୦ ଟଙ୍କା । ଆମ ଜୀବନକାଳ ପ୍ରାୟ ଅଶୀ ବର୍ଷ ମଧ୍ୟରେ ଆମେ ଏ ପରିବର୍ତ୍ତନ ଅଙ୍ଗେ ନିଭାଇଲୁ । ୧୯୮୦ ମସିହା ପରେ ଜନ୍ମ ହୋଇଥିବା ପିଲାମାନେ ମାଂସ କିଲୋ ୬୦ ଟଙ୍କା ବା ପାନ ଖଣ୍ଡିକ ପଚିଶ ପଇସା ଦେଖି ମୋଟେ ବିସ୍ମିତ ହେବେ ନାହିଁ, କାରଣ ୬୦ ବର୍ଷ କିମ୍ବା ୨୦ ବର୍ଷ ତଳେ ଦର କଣ ଥିଲା ସେ ଜାଣନ୍ତି ନାହିଁ କିମ୍ବା ତୁଳନା କରନ୍ତି ନାହିଁ । କିନ୍ତୁ ଆମ ମନରେ ସେ ତୁଳନାଟା ଆପେ ଆପେ ଆସିଯାଉଛି ।

୧୯୫୩ ମସିହାରେ ମୁଁ ଲଣ୍ଡନରେ ପଢ଼ୁଥିଲାବେଳେ ଆଠ ଦଶ ଦିନପାଇଁ ଫ୍ରାନ୍ସ ବୁଲି ଯାଇଥିଲି । ଇଂଲଣ୍ଡରେ ସେତେବେଳେ ଦରଦାମ୍ ସ୍ଥିର ଥିଲା । ପାଉଣ୍ଡକରେ ବେଶ୍ କିଛି ଜିନିଷ ମିଳୁଥିଲା । ଦୁଇ ଅଢ଼େଇ ସିଲିଙ୍ଗରେ ବା ପାଉଣ୍ଡକର ଆଠ କିମ୍ବା ଦଶ ଭାଗରୁ ଭାଗେକରେ ଆମ୍ଭେମାନେ ଖିଆବେଳେ ଗୋଟିଏ ମିଲ୍ ଖାଇ ପାରୁଥିଲୁ । ରୁମ୍ ଭଡ଼ା ସହିତ ସକାଳେ ଭଲ ଜଳଖିଆ, ରାତ୍ରରେ ମିଲ୍ ଖାଇବାପାଇଁ ଆମେ ଘରମାଲିକଙ୍କୁ କେବଳ ସପ୍ତାହକୁ ୩ ପାଉଣ୍ଡ ବା ଚାଳିଶ ଟଙ୍କା ଦେଉଥିଲୁ । ପାରିସ୍‌କୁ ଯାଇ ଆମେ ଦେଖିଲୁ ଯେ ସେଠାରେ ପାଉଣ୍ଡକର ବିନିମୟ ହାର ୯୬୦ ଫ୍ରାଙ୍କ୍ । ଆମ ଗୋଟିଏ ଟଙ୍କାର ମୂଲ୍ୟ ପ୍ରାୟ ୭୫ ଫ୍ରାଙ୍କ୍ ଥିଲା । ଖିଆବେଳେ ଯେ କୌଣସି ରେସ୍ତୋରାଁରେ ଗୋଟିଏ ସାଧାରଣ ମିଲ୍ (ଯାହାକି ଲଣ୍ଡନରେ ଦିଆଯାଉଥିବା ମିଲ୍‌ଠାରୁ ଯଥେଷ୍ଟ କମ୍) ପାଇଁ ସାତ ଶହ କିମ୍ବା ଯଠଶହ ଫ୍ରାଙ୍କ୍ ଦେବାକୁ ପଡ଼ୁଥିଲା । ଫ୍ରାନ୍ସର ଲୋକେ ସେଥିରେ ଅଭ୍ୟସ୍ତ ହୋଇଥିବାରୁ ଜିନିଷପତ୍ରର ଅତ୍ୟଧିକ ଦରପାଇଁ ବ୍ୟସ୍ତ ହେଉ ନ ଥିଲେ । ଅଳ୍ପ ବର୍ଷ ପରେ ଫ୍ରାନ୍ସର ପ୍ରେସିଡେଣ୍ଟ ଜେନେରାଲ୍ ଡିଗଲ ନୂତନ ମୁଦ୍ରା ପ୍ରଚଳନ କଲେ । ସେ ଗୋଟିଏ ନୂଆ ଫ୍ରାଙ୍କ୍‌ର ମୂଲ୍ୟ ପୁରୁଣା ଏକଶହ ଫ୍ରାଙ୍କ୍ ସହ ସମାନ କରିଦେଲେ । ୧୯୭୧ ମସିହାରେ ମୁଁ ପୁଣିଥରେ ପାରିସ୍ ଯାଇଥିବା ବେଳେ ଦେଖିଲି ଯେ ଆମ ପଚିଶ ପଇସା ଆକାରର ରୂପା ଫ୍ରାଙ୍କ୍ ମୁଦ୍ରା ସବୁ ପ୍ରଚଳିତ ଥିଲା । ଲୋକମାନେ ଗୋଟିଏ ବା ଦୁଇଟି ଫ୍ରାଙ୍କ୍ ଦେଇ ଫଳ, ପରିବା ପ୍ରଭୃତି କିଣୁଥିଲେ । ସେତେବେଳେ ଫ୍ରାଙ୍କ୍‌ର ମୂଲ୍ୟ ଆମ ଦେଶର ଦୁଇଟଙ୍କା ସହିତ ସମାନ ଥିଲା । ୧୯୫୩ ମସିହାରେ ପାଞ୍ଚ ବା ଦଶ ଫ୍ରାଙ୍କ୍‌ରେ କିଛି ମିଳୁ ନ ଥିଲା ।

ସେହି ୧୯୭୧ ମସିହାରେ ମୁଁ ରୋମ୍ ଯାଇଥିଲି । ଇଟାଲିର ମୁଦ୍ରା ଲିରା । ସେତେବେଳେ ଆମ ଟଙ୍କାକର ମୂଲ୍ୟ ୮୮ ଲିରା ଥିଲା । ଶହେ ଲିରା ତଳେ କିଛି କିଣିବାକୁ ମିଳୁ ନ ଥିଲା । ବଜାରରେ କାରବାର ସବୁ ଶହେ, ଦୁଇଶହ, ପାଞ୍ଚଶହ, ଏକ ହଜାର ପ୍ରଭୃତି ଲିରା ନୋଟରେ କାରବାର ହେଉଥିଲା । ହୋଟେଲରେ ଏକ କପ୍ ସୁପ୍, ଦେଢ଼ଇଞ୍ଚରେ ଇଞ୍ଚେ ଖଣ୍ଡେ ମାଂସ ଏବଂ ଦୁଇଖଣ୍ଡ ବ୍ରେଡ ପାଉଁରୁଟିକୁ ୧୫୦୦ରୁ ୧୭୦୦ ଲିରା ଦେବାକୁ ପଡ଼ୁଥିଲା । ଲୋକେ ଅଳ୍ପ ଜିନିଷପାଇଁ ହଜାର ହଜାର ଲିରା ଦେଉଥିଲେ । ବର୍ତ୍ତମାନ ମୋର ମନେ ହେଉଛି ଯେ ଆମ ନାତିନାତୁଣୀମାନେ ଲିରା ପରି ଟଙ୍କାପଇସା କାରବାର କରିବେ । ବର୍ତ୍ତମାନ ୨୫ ପଇସାରେ କିଛି ମିଳୁ ନାହିଁ । ପାନ ଖଣ୍ଡିକୁ ପଚାଶ ପଇସା । କଞ୍ଚା କଦଳୀ ଗୋଟାକୁ ଟଙ୍କାକରୁ ଦେଢ଼ଟଙ୍କା । ମୁଦ୍ରାସ୍ଫୀତି ଯଦି ଏହିପରି ବଢ଼ିଚାଲେ କିଛି କାଳ ପରେ ଟଙ୍କାକରେ ଆଉ କିଛି ମିଳିବ ନାହିଁ । ଆମ ଶହୀଦ ନଗର ହାଟରେ ଥରେ ଥରେ ବାଇଗଣ କିଲେ ୨୫ ଟଙ୍କା ହେଉଛି । ଅଳ୍ପକାଳ ପରେ ପରିବାପତ୍ର କିଣିବାପାଇଁ କେବଳ ପାଞ୍ଚଟଙ୍କିଆ ଓ ଦଶଟଙ୍କିଆ ନୋଟ୍‌ର କାରବାର ହେବ । ଦୋକାନରେ ବର୍ତ୍ତମାନ ସାବୁନ୍ ଖଣ୍ଡିକୁ ଆଠ ଟଙ୍କା, ଟାଟା କମ୍ପାନୀର ମୁଣ୍ଡରେ ଲଗାଇବା ନଡ଼ିଆତେଲ ୪୦୦ ମିଲିଲିଟରକୁ ୪୭ ଟଙ୍କା । ବଜାରରେ ବର୍ତ୍ତମାନ ଦଶଟଙ୍କିଆ, ପଚାଶ ଟଙ୍କିଆ ଓ ଶହେ ଟଙ୍କିଆ ନୋଟ୍‌ର ବେଶି କାରବାର ହେଉଛି । ଆମେ କଲେଜରେ ପଢ଼ିଲା ପର୍ଯ୍ୟନ୍ତ ଶହେ ଟଙ୍କିଆ ନୋଟ୍ ଦେଖି ନ ଥିଲୁ ।

ଦରଦାମ୍ ବୃଦ୍ଧି ସହିତ ଦରମା ଓ ମଜୁରି ସେହିପରି ବଢ଼ୁଛି । ମାତ୍ର ଜିନିଷପତ୍ରର ଦର, ମଜୁରି ଓ ଦରମାର ଆଗେ ଆଗେ ଦଉଡ଼ୁଛି । ଦରଦାମ୍ ବୃଦ୍ଧି ସହିତ ମଜୁରି ଓ ଦରମାକୁ ସମାନଭାବରେ ବୃଦ୍ଧି କରିବାକୁ ସବୁବେଳେ ଧର୍ମଘଟ ଓ ବାଦାନୁବାଦ ଚାଲିଛି । ପ୍ରାୟ ୧୩୦ ବର୍ଷ ପୂର୍ବେ ଫକୀରମୋହନ ମାସକୁ ଅଢ଼େଇ ଟଙ୍କାରେ ଚାକିରି ଆରମ୍ଭ କରିଥିଲେ । ସତୁରି ବର୍ଷ ତଳେ ଆମ ପିଲାଦିନେ ପ୍ରାଥମିକ ବିଦ୍ୟାଳୟର ଶିକ୍ଷକମାନେ ମାସକୁ ପାଞ୍ଚଟଙ୍କାରୁ ଦଶଟଙ୍କା ମଧ୍ୟରେ ଦରମା ପାଉଥିଲେ । ସରକାରୀ ପିଅନମାନେ ମଧ୍ୟ ମାସକୁ ଦଶଟଙ୍କା ଦରମା ପାଉଥିଲେ । ୧୯୪୩—୪୪ ମସିହାରେ ଆମ୍ଭେମାନେ ଚାକିରି ଆରମ୍ଭ କଲାବେଳେ, ସବ୍‌ଡେପୁଟିଙ୍କ ଦରମା ମାସକୁ ୧୦୦ ଟଙ୍କା, ସବ୍‌ରେଜିଷ୍ଟ୍ରାରଙ୍କ ଦରମା ୭୫ ଟଙ୍କା ଓ କଲେଜ ଲେକ୍‌ଚରରଙ୍କ ଦରମା ୧୨୫ ଟଙ୍କା ଥିଲା । ଏଗୁଡ଼ିକ ସବୁ ପ୍ରାଦେଶିକ ସ୍ତରରେ ଗେଜେଟେଡ୍ ବଡ଼ ଚାକିରି ଥିଲା । ବର୍ତ୍ତମାନ ପ୍ରାଥମିକ ସ୍କୁଲ ଶିକ୍ଷକ ୧୦୦୦ ଟଙ୍କା, ସବୁ ପିଅନ, ମେହେନ୍ତର ପ୍ରଭୃତି ଚତୁର୍ଥ ଶ୍ରେଣୀ କର୍ମଚାରୀ ଚାକିରି ଆରମ୍ଭରୁ ମାସକୁ ୮୦୦।୯୦୦ ଟଙ୍କା ପାଉଛନ୍ତି । ଏବୁ ହାକିମ

ମାସକୁ ସାଢ଼େ ତିନିହଜାର ଟଙ୍କାରୁ ଅଧିକ ଦରମା ପାଉଛନ୍ତି । ପ୍ରଫେସରମାନେ ଚାରିହଜାର ପାଞ୍ଚଶହରୁ ଛଅହଜାର, ଜଜ ଓ ସେକ୍ରେଟାରୀମାନେ ମାସକୁ ଆଠହଜାରରୁ ଅଧିକ ଦରମା ପାଉଛନ୍ତି । ଦିନମଜୁରିଆମାନେ ୧୯୩୫ ମସିହାରେ ଦିନକୁ ତିନି ଚାରିଅଣା ପାଉଥିଲେ । ବର୍ତ୍ତମାନ ଗାଁମାନଙ୍କରେ ସେମାନେ ଦିନକୁ ୨୦ ଟଙ୍କା ପାଉଛନ୍ତି । ସରକାର ସର୍ବନିମ୍ନ ମଜୁରି ଦିନକୁ ୨୫ ଟଙ୍କା ଧାର୍ଯ୍ୟ କରିଛନ୍ତି । ଆମେ ପଢ଼ିଲାବେଳେ ୧୯୩୯ ମସିହାରେ ଧୋବା ୨୦ ଖଣ୍ଡ ଲୁଗା ଧୋଇବା ଏବଂ ଇସ୍ତ୍ରିକରିବା ପାଇଁ ଆଠଅଣା ପଇସା ନେଉଥିଲା । ବର୍ତ୍ତମାନ ଠିକ ସେହି କାମପାଇଁ ଖଣ୍ଡକୁ ଦୁଇ ଟଙ୍କା ହୋଇଛି । ଭଣ୍ଡାରି ବାଳ କାଟିବାପାଇଁ ଥରକୁ ଛଅପଇସା ବା ଦୁଇଅଣା ନେଉଥିଲା । ବର୍ତ୍ତମାନ ଠିକ୍ ସେହି କାମପାଇଁ ପାଞ୍ଚଟଙ୍କା । ଆମର ବୁଝିବାର କଥା ଯେ ଟଙ୍କାର ପରିମାଣ ଅନ୍ୟ ଜିନିଷ ତୁଳନାରେ ବେଶି ହୋଇଗଲା । ଟଙ୍କାର ମୂଲ୍ୟ କମିଗଲା ଏବଂ ଅନ୍ୟ ଜିନିଷପତ୍ରର ଦାମ୍ ବଢ଼ିଗଲା । ୧୯୩୬ ମସିହାରେ ଚାଉଳ, ଡାଲି, ଲୁଗା, ମସଲାମସଲି ପ୍ରଭୃତି ଅତ୍ୟାବଶ୍ୟକ ପଦାର୍ଥ ଯାହା ଶହେଟଙ୍କାରେ ମିଳୁଥିଲା, ସେଥିପାଇଁ ବର୍ତ୍ତମାନ ପ୍ରାୟ ପାଞ୍ଚହଜାର ଟଙ୍କା ଦେବାକୁ ପଡ଼ୁଛି । ଉଦାହରଣ ସ୍ୱରୂପ ୧୯୩୬ ମସିହାରେ ଶହେଟଙ୍କାରେ ସାଧାରଣ ଉଷୁନା ଚାଉଳ କଟକୀ ୧୨୦୦ ସେର ମିଳୁଥିଲା । ବର୍ତ୍ତମାନ ତାର ଦାମ୍ ସରକାରୀ କଣ୍ଟ୍ରୋଲ ଦୋକାନରେ ଚାରିହଜାର ଆଠଶହରୁ ପାଞ୍ଚହଜାର ଟଙ୍କା । ସାଧାରଣ ଲୁଗା ଖଣ୍ଡେ ସେତେବେଳେ ଦଶ ବାରଅଣା ଥିଲା । ଶହେଟଙ୍କାରେ ୧୪୦ରୁ ୧୫୦ ଖଣ୍ଡ ଲୁଗା ମିଳୁଥିଲା, ବର୍ତ୍ତମାନ ତାର ଦାମ୍ ପ୍ରାୟ ପାଞ୍ଚହଜାର ପାଞ୍ଚଶହ । ଇଟାଲି ଦେଶରେ ଲିରା ଗଣିବା ଭଳି ବର୍ତ୍ତମାନ ଆମେ ବଜାରରେ ଜିନିଷ କିଣିଲାବେଳେ ଟଙ୍କା ଗଣୁଛୁ ।

ଆମ ଜୀବନର ବିଗତ ଅଶୀ ବର୍ଷ ମଧ୍ୟରେ ଆମ୍ଭେମାନେ ଦରଦାମ୍ କ୍ଷେତ୍ରରେ ଏହି ପରିବର୍ତ୍ତନ ଦେଖିଲୁ । ଏହାର ମୂଳ କାରଣ ଅର୍ଥଶାସ୍ତ୍ର ପଢ଼ିଥିବା ବା ନ ପଢ଼ିଥିବା ବୁଦ୍ଧିଜୀବୀମାନେ ସହଜରେ ଜାଣିପାରୁଛନ୍ତି । ଏ ଦେଶରେ ଜନସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଉଛି । ଗତ ପଚିଶ ବର୍ଷ ମଧ୍ୟରେ ଏହା ଦୁଇଗୁଣରୁ ଅଧିକ ହୋଇଗଲାଣି । ବିଭିନ୍ନ ଯୋଜନା ପ୍ରକଳ୍ପ ଓ ସରକାରୀ ବିଭାଗମାନଙ୍କପାଇଁ ବହୁ ଅର୍ଥ ବ୍ୟୟ କରାଯାଉଛି । ସେହି ଅନୁସାରେ ବିଭିନ୍ନ ଜିନିଷପତ୍ରର ଉତ୍ପାଦନ ବୃଦ୍ଧି ପାଉ ନାହିଁ । ସରକାରୀ ବଜେଟରେ ନିଅଣ୍ଟ ପରିମାଣ ବହୁମାତ୍ରାରେ ବର୍ଷକୁ ବର୍ଷ ବୃଦ୍ଧି ପାଉଛି । ସରକାର ଟିକସ ଆଦାୟ ବୃଦ୍ଧି କରି ନ ପାରି ରିଜର୍ଭ ବ୍ୟାଙ୍କରୁ ଋଣ ଆଣୁଛନ୍ତି । ସେହି ଋଣଭିତ୍ତିରେ ରିଜର୍ଭ ବ୍ୟାଙ୍କ୍ ଅଧିକରୁ ଅଧିକ କାଗଜ ନୋଟ୍ ଛପାଉଛି ଏବଂ ମୁଦ୍ରା ପ୍ରଚଳନ ପରିମାଣ ସବୁବେଳେ ବଢ଼ୁଛି । ଅନ୍ୟ ସବୁ ବ୍ୟାଙ୍କ୍ ଶିଳ୍ପ, ବ୍ୟବସାୟ ଓ କୃଷି ପ୍ରଭୃତିପାଇଁ

ଅଧିକରୁ ଅଧିକ ଋଣ ଦେଉଛନ୍ତି । ଋଣମେଳା ପ୍ରଭୃତି ଦ୍ୱାରା ଅତି ସହଜରେ ଗ୍ରାମ ଓ ସହରାଞ୍ଚଳ ଲୋକମାନଙ୍କ ପାଖରେ ଋଣ ପହଞ୍ଚିଯାଉଛି । ଯେଉଁ ପରିମାଣରେ ମୁଦ୍ରା ପ୍ରଚଳନ ଓ ସରକାରୀ ଓ ବେସରକାରୀ ବ୍ୟୟ ବୃଦ୍ଧି ପାଉଛି, ସେହି ଅନୁପାତରେ ଜିନିଷପତ୍ର ଉତ୍ପାଦନ ବୃଦ୍ଧି ପାଉ ନାହିଁ । ସରକାରୀ ନିଗମ ଓ ଅଫିସ୍‌ମାନଙ୍କରେ ମଜୁରି ଓ ଦରମା ହାର ବୃଦ୍ଧି କରାଯାଉଛି । ସେହି ଅନୁପାତରେ ଜିନିଷପତ୍ରର ଉତ୍ପାଦନ ବୃଦ୍ଧି କରାଯାଇ ପାରୁ ନାହିଁ । ଅଧିକ ଲୋକ ନିଯୁକ୍ତି ଓ ଅଧିକ ମଜୁରି ଖର୍ଚ୍ଚ ହେବାରୁ ସରକାରୀ ନିଗମମାନଙ୍କରେ ଉତ୍ପାଦିତ ହେଉଥିବା ଲୁହା, ସିମେଣ୍ଟ ଓ କୋଇଲା ପ୍ରଭୃତି ମୌଳିକ ପଦାର୍ଥମାନଙ୍କର ଦାମ୍ ବଢ଼ି ଯାଉଛି । ସେ ସବୁ ଦ୍ରବ୍ୟ ବ୍ୟବହାର କରୁଥିବା ଅନ୍ୟ ଶିଳ୍ପପଦାର୍ଥମାନଙ୍କର ଦାମ୍ ବୃଦ୍ଧି ପାଉଛି । ଯୋଜନାର ଅପବ୍ୟୟ, ଦୁର୍ନୀତିଗ୍ରସ୍ତ ସରକାରୀ କର୍ମଚାରୀ, ବ୍ୟବସାୟୀ ଓ ଶିଳ୍ପପତିମାନଙ୍କ ହାତରେ ହଜାର ହଜାର କୋଟି ଟଙ୍କା କଳାବଜାରରେ ଠୁଳ ହୋଇଯାଉଛି । ଜିନିଷପତ୍ର କିଣିବାପାଇଁ ବଜାରରେ ସବୁବେଳେ ଟଙ୍କା ଉଡ଼ୁଛି । ଅନ୍ୟ ପଟରେ ଜିନିଷପତ୍ରର ଉତ୍ପାଦନ ସମପରିମାଣରେ ବଢ଼ୁ ନ ଥିବାରୁ ବଜାରରେ ସେଗୁଡ଼ିକର ଅଭାବ ହେଉଛି । ଫଳରେ ଦରଦାମ୍ ସବୁବେଳେ ବଢ଼ୁଛି । ଦରଦାମ୍‌ର ବୃଦ୍ଧି ବିଷୟରେ ଗୋଟିଏ ସାଧାରଣ ଜାଣିବା କଥା ଯେ ଦୀର୍ଘ କାଳରେ ଦରଦାମ୍ ସବୁବେଳେ ଊର୍ଦ୍ଧ୍ୱମୁଖୀ ଓ ଅଟଳେଉଟା । ଶତାବ୍ଦୀର ଶେଷରେ ଆଉ ୧୯୩୦ ମସିହା ବା ୧୯୬୦ ମସିହା ଦର ଫେରିବା ଅସମ୍ଭବ । ଫ୍ରାନ୍ସ ରାଷ୍ଟ୍ରପତି ଡଗଲ କଲାପରି ପୁରୁଣା ଟଙ୍କା ବଦଳାଇ ନୂଆଟଙ୍କା ପ୍ରଚଳନ କରାଯାଇପାରେ । ମାତ୍ର ସେହି ଟଙ୍କା ଥାଇ ସେହି ପନ୍ଥାରେ ଚାଲୁଥିବା ବେଳେ ପଛକୁ ଫେରିବା ଅସମ୍ଭବ ।

ଦରଦାମ୍‌ର ଏପରି ଗତିର ପରିଣାମ ସବୁ ଲୋକ ଏବଂ ସବୁ ଶ୍ରେଣୀର ଲୋକଙ୍କପାଇଁ ସମାନ ନୁହେଁ । ଏହାଦ୍ୱାରା କେତେକଙ୍କର ପୁଷମାସ ଏବଂ ଆଉ କେତେକଙ୍କର ସର୍ବନାଶ ହୁଏ । ଦରଦାମ୍ ଧୀରେ ଧୀରେ ବଢ଼ିଲେ ଦେଶର ଆର୍ଥିକ ପ୍ରଗତିରେ କୌଣସି ବାଧା ଉପୁଜେ ନାହିଁ । ବରଂ ଆର୍ଥିକ ପ୍ରଗତିପାଇଁ ଦରଦାମ୍‌ର କ୍ରମାଗତ ଧୀର ବୃଦ୍ଧି ଆବଶ୍ୟକ । ଦରଦାମ୍ ଧୀରେ ଧୀରେ ବଢ଼ୁଥିବା ବେଳେ ଉତ୍ପାଦନକାରୀମାନେ କଞ୍ଚାମାଲ ପ୍ରଭୃତି ଅଳ୍ପ ଦାମ୍‌ରେ କିଣି ଉତ୍ପାଦିତ ପଦାର୍ଥ ବେଶି ମୂଲ୍ୟରେ ବିକିବାକୁ ସମର୍ଥ ହୁଅନ୍ତି । ସେଥିଯୋଗୁଁ ଲାଭ ବେଶି ହେଉଥିବାରୁ ସେମାନେ ଅଧିକ ଉତ୍ପାଦନ କରିବାକୁ ଉତ୍ସାହିତ ହୁଅନ୍ତି । ଫଳରେ ଦେଶର ସମୂହ ଉତ୍ପାଦନ ବଢ଼େ, ଲୋକମାନଙ୍କୁ କାମଧନ୍ଦା ମିଳେ, ବାଣିଜ୍ୟ ବ୍ୟବସାୟ ଅଧିକ ହୁଏ ଏବଂ ଦେଶର ଆର୍ଥିକ ଅଭିବୃଦ୍ଧି ହୁଏ । ଦରଦାମ୍ ଧୀରେ ଧୀରେ କମିଲେ ବିପରୀତ ପରିସ୍ଥିତି ଉପୁଜେ । ମୋଟ ଉତ୍ପାଦନ

କମିଯାଏ, ବାଣିଜ୍ୟ ବ୍ୟବସାୟ ମାନ୍ଦା ହୋଇଯାଏ, ଲୋକମାନଙ୍କୁ କାମଧନ୍ଦା ମିଳେ ନାହିଁ । ଦେଶରେ ଆର୍ଥିକ ଦୁର୍ଗତି ହୁଏ ।

ଦରଦାମ୍ ବୃଦ୍ଧି ପାଉଥିଲା ବେଳେ ବିଭିନ୍ନ ପ୍ରକାର ପଦାର୍ଥର ଉତ୍ପାଦନକାରୀ ଏବଂ ବ୍ୟବସାୟୀଙ୍କ ପରି ଯେଉଁ ଶ୍ରେଣୀର ଲୋକଙ୍କର ଆୟ ସହଜରେ ବୃଦ୍ଧି କରିହୁଏ, ସେମାନଙ୍କର ଅଧିକ ସୁବିଧା ହୁଏ । ସେମାନେ ଅଧିକରୁ ଅଧିକ ସ୍ୱଚ୍ଛଳ ହୋଇଯା'ନ୍ତି । ମାତ୍ର କଲକାରଖାନା, କୃଷି ଓ ଅନ୍ୟାନ୍ୟ ଉତ୍ପାଦନ ସଂସ୍ଥାରେ କାମ କରୁଥିବା ଶ୍ରମିକ, ବେତନଭୋଗୀ ସରକାରୀ ଓ ବେସରକାରୀ କର୍ମଚାରୀ, ପେନସନ୍ ଭୋଗୀ, ଘରଭଡ଼ା, ଓ ବ୍ୟାଙ୍କ୍ ଜମା ଉପରେ ମିଳୁଥିବା ସୁଧରେ ଚଳୁଥିବା ଲୋକ, ଯେଉଁମାନଙ୍କର ଆୟ ସହଜରେ ଶୀଘ୍ର ବୃଦ୍ଧି କରି ହୁଏ ନାହିଁ, ସେମାନଙ୍କର ଆର୍ଥିକ ଅବସ୍ଥା ଦରଦାମ୍ ବଢ଼ୁଥିବା ସମୟରେ ଖରାପ ହୁଏ । ଦରଦାମ୍ ବଢ଼ୁଥିବାବେଳେ ଯେଉଁମାନେ ଋଣ ଦିଅନ୍ତି ସେମାନଙ୍କର ଅସୁବିଧା ହୁଏ ଏବଂ ଋଣ କରୁଥିବା ଲୋକଙ୍କର ସୁବିଧା ହୁଏ । ଶିଳ୍ପପତି ଓ ବ୍ୟବସାୟୀମାନେ ସବୁବେଳେ ପୁଞ୍ଜି ଋଣକରି ନିଅନ୍ତି । ତେଣୁ ଦର ବଢ଼ୁଥିବା ବଜାରରେ ସେମାନଙ୍କର ସୁବିଧା ହୁଏ ଏବଂ ଦର କମୁଥିବା ବଜାରରେ ସେମାନଙ୍କର ସବୁବେଳେ କ୍ଷତି ହୁଏ । ସୁତରାଂ ଦରଦାମ୍ ଧୀରେ ଧୀରେ ବଢ଼ୁଥିବା ବେଳେ ଦେଶର ଆର୍ଥିକ ପ୍ରଗତି ହୁଏ ।

ମାତ୍ର ଦରଦାମ୍ ଅତିମାତ୍ରାରେ ବୃଦ୍ଧି ପାଇଲେ ଏବଂ ତାହା କର୍ତ୍ତୃପକ୍ଷଙ୍କ ନିୟନ୍ତ୍ରଣ ବାହାରକୁ ଗଲେ ଉତ୍ପାଦନ କର୍ମନିଯୁକ୍ତି, ଅନ୍ତର୍ଦେଶୀୟ ଓ ବହିର୍ବାଣିଜ୍ୟ ସବୁ କ୍ଷେତ୍ରରେ ବିଭ୍ରାଟ ସୃଷ୍ଟି ହୁଏ । ଅନ୍ତର୍ଜାତିକ ମୁଦ୍ରା ବଜାରରେ ମୁଦ୍ରାର ମୂଲ୍ୟ ନିମ୍ନ ସ୍ତରକୁ ଚାଲିଆସେ । ଲୋକମାନଙ୍କର ମୁଦ୍ରା ଉପରେ ବିଶ୍ୱାସ ତୁଟିଯାଏ । ବହୁଲୋକ ସର୍ବସ୍ୱାନ୍ତ ହୋଇଯାନ୍ତି । ସର୍ବଶେଷରେ ଦେଶରେ ବିପ୍ଳବ ହୁଏ, ସରକାରଙ୍କର ପତନ ହୁଏ ଏବଂ ନୂତନ ମୁଦ୍ରା ପ୍ରଚଳନ କରିବାପାଇଁ ଦେଶବାସୀ ବାଧ୍ୟ ହୁଅନ୍ତି । ଏହି ଶତାବ୍ଦୀରେ ପୃଥିବୀର ବହୁଦେଶରେ ଏପରି ଅବସ୍ଥା ଘଟିଛି । ପ୍ରଥମ ମହାଯୁଦ୍ଧ ପରେ ଜର୍ମାନୀ ଓ ଫ୍ରାନ୍ସ ପ୍ରଭୃତି ଦେଶରେ ଏବଂ ଦ୍ୱିତୀୟ ମହାଯୁଦ୍ଧ ପରେ ଚୀନ୍‌ଦେଶରେ ଏପରି ଅବସ୍ଥା ଘଟିଥିଲା । ବର୍ତ୍ତମାନ ମଧ୍ୟ ଦକ୍ଷିଣ ଆମେରିକାର ବୋଲିଭିଆ ପ୍ରଭୃତି ଦେଶରେ ଏପରି ଅବସ୍ଥା ଘଟୁଛି ।

ଆମ ଦେଶରେ ବିଗତ କୋଡ଼ିଏ ବର୍ଷ ହେଲା ମୁଦ୍ରାସ୍ଫୀତି ଓ ଅତ୍ୟଧିକ ଦରବୃଦ୍ଧି ଚାଲିଛି । ଦରବୃଦ୍ଧି ନିୟନ୍ତ୍ରଣାଧୀନ ରହିଛି ବୋଲି ସରକାରଙ୍କର ବିବୃତି ଠିକ୍ ନୁହେଁ ବୋଲି ପ୍ରମାଣିତ ହେଉଛି । ଏହି କ୍ରମାଗତ ଦର ବୃଦ୍ଧି ହେତୁ କେବଳ ଅଳ୍ପସଂଖ୍ୟକ ଶିଳ୍ପପତି, ବ୍ୟବସାୟୀ ଏବଂ ବଡ଼ ବଡ଼ ଚାଷୀ ଧନୀ ହୋଇ ଯାଉଛନ୍ତି । ମାତ୍ର ଅଧିକାଂଶ ଛୋଟ ଚାଷୀ, ମୂଲିଆ, ଦରମାରେ ଚଳୁଥିବା

ସରକାରୀ ଓ ବେସରକାରୀ କର୍ମଚାରୀ ସବୁବେଳେ ଅଭାବ ଅନଟନ ଓ ଦୁଃଖରେ ଚଳୁଛନ୍ତି । କୃଷି ଓ ଶିଳ୍ପ ଶ୍ରମିକ, କ୍ଷୁଦ୍ର ଓ ନାମମାତ୍ର ଚାଷୀ ଆମ ଦେଶ ଲୋକସଂଖ୍ୟାର ପ୍ରାୟ ଶତକଡ଼ା ନବେ ଭାଗ । ସେମାନେ ସମସ୍ତେ କିଣିଖିଆ ଲୋକ । ଦରବୃଦ୍ଧି ସଙ୍ଗେ ସଙ୍ଗେ ସେମାନଙ୍କର ଆୟ ସମାନ ଭାବରେ ବଢ଼ୁନାହିଁ, ତେଣୁ ସେମାନଙ୍କର ଆର୍ଥିକ ଅବସ୍ଥା କ୍ରମାନ୍ୱୟରେ ଖରାପ ହୋଇ ଯାଉଛି । ଭବିଷ୍ୟତରେ ଦର ଆହୁରି ଅଧିକ ହେବ ବୋଲି ବ୍ୟବସାୟୀମାନେ ଅନେକ ସମୟରେ ଅତ୍ୟାବଶ୍ୟକ ପଦାର୍ଥମାନ ଲୁଚାଇ ଦେଉଛନ୍ତି । ତେଣୁ କଳାବଜାର ଓ ଦୁର୍ନୀତି ବଢ଼ୁଛି । ଧନୀ ଓ ଦରିଦ୍ର ଲୋକମାନଙ୍କ ମଧ୍ୟରେ ବୈଷମ୍ୟ ଅଧିକରୁ ଅଧିକ ହେଉଛି । ଆମ ଜୀବନର ଶେଷକାଳ ବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ କୁଶାସନ, ଦୁର୍ନୀତି, ଦରବୃଦ୍ଧି ପ୍ରଭୃତି ବହୁ କଳୁଷିତ କାର୍ଯ୍ୟ ହେତୁ ଆମ ରାଜ୍ୟ ସମେତ ଭାରତର ସବୁ ରାଜ୍ୟରେ ଅଧିକାଂଶ ଲୋକ ହତାଶ ହେଉଛନ୍ତି । ଦୀର୍ଘକାଳ ବଞ୍ଚିଥିବା ଲୋକମାନେ ସର୍ବଦା ପୂର୍ବ ଏବଂ ପର ଅବସ୍ଥା ତୁଳନାତ୍ମକ ଭାବରେ ଚିନ୍ତା କରୁଛନ୍ତି । କିନ୍ତୁ ଭବିଷ୍ୟତର ସ୍ପଷ୍ଟ ଚିତ୍ର ସେମାନଙ୍କ ସମ୍ମୁଖରେ ନାହିଁ ।

## ଗଣ ଦାରିଦ୍ର୍ୟର ଅନ୍ତ ନାହିଁ

### ( ୧୦ )

ସବୁ ଯୁଗରେ ଏବଂ ସବୁ ଦେଶରେ କେତେକ ଲୋକ ଧନୀ ଏବଂ ଆଉ କେତେକ ଦରିଦ୍ର ବୋଲି ପରିଗଣିତ ହୁଅନ୍ତି । କେତେକ ସାଧାରଣ ଭିତ୍ତିରେ ଧନୀ ଦରିଦ୍ର ମଧ୍ୟରେ ବିଭାଗ କରାଯାଏ । ସବୁ ଯୁଗରେ ଏବଂ ସବୁ ଦେଶରେ ସେ ଭିତ୍ତି ସମାନ ନୁହେଁ । ସବୁ ସମୟରେ ମଧ୍ୟ ନିର୍ଦ୍ଦିଷ୍ଟ ଭାବରେ ଧନୀ ଓ ଦରିଦ୍ରମାନଙ୍କୁ ଶ୍ରେଣୀଭୁକ୍ତ କରିହୁଏ ନାହିଁ । ଧନୀଙ୍କଠାରୁ ଦରିଦ୍ରଯାଏ ଗୋଟିଏ ଲମ୍ବାରେଖା । ମଝି ଲୋକମାନେ ମଧ୍ୟବିତ୍ତ ଶ୍ରେଣୀଭୁକ୍ତ ହୋଇଯାନ୍ତି । ଧନୀଙ୍କ ମଧ୍ୟରେ ଅତି ଧନୀ ଓ ସାଧାରଣ ଧନୀ, ମଧ୍ୟବିତ୍ତଙ୍କ ମଧ୍ୟରେ ଉଚ୍ଚ ମଧ୍ୟବିତ୍ତ ଓ ନିମ୍ନ ମଧ୍ୟବିତ୍ତ ଏବଂ ଦରିଦ୍ରଙ୍କ ମଧ୍ୟରେ ଅତି ଗରିବ ଏବଂ ସାଧାରଣ ଭାବରେ ଗରିବ ଶ୍ରେଣୀ ବିଭାଗ କରାଯାଏ । ଗୋଟିଏ ଶ୍ରେଣୀ କେଉଁଠି ଶେଷ ହୋଇ ଅନ୍ୟ ଗୋଟିଏ ଶ୍ରେଣୀ ଆରମ୍ଭ ହୁଏ, ତାହା ମଧ୍ୟ ସହଜରେ ନିର୍ଣ୍ଣୟ କରିହୁଏ ନାହିଁ । ଗୋଟିଏ ସମାଜରେ କିଏ ଧନୀ ଓ କିଏ ଗରିବ, ସେହି ସମାଜରେ ଚଳୁଥିବା ଲୋକମାନେ ସହଜରେ ଅନୁମାନ କରିନିଅନ୍ତି । ଶ୍ରେଣୀଭୁକ୍ତ କରିବାର ଭିତ୍ତି ଲୋକମାନେ ସାଧାରଣ ଭାବେ ନିଜେ ସ୍ଥିର କରନ୍ତି । ବହୁ ପୂର୍ବକାଳରୁ ଭୂମି ମାଲିକାନା ବହୁ ଦେଶରେ ଧନାଢ଼୍ୟତାର ଗୋଟିଏ ସାଧାରଣ ମାପକାଠି ରୂପେ ବ୍ୟବହୃତ ହୋଇଛି । ଯାହାର ଜମି ବେଶି, ତାହା ଘରେ ଧାନ, ଚାଉଳ ପ୍ରଭୃତି ଖାଦ୍ୟ ଶସ୍ୟର ପ୍ରାଚୁର୍ଯ୍ୟ ବେଶି । ତା' ପରିବାରରେ ପିନ୍ଧିବାପାଇଁ ଲୁଗାପଟା ବେଶି ହୋଇଯାଏ, ତା' ଘରେ ଟଙ୍କାପଇସା ଠୁଳ ହୁଏ, ତାର ଘରଦ୍ୱାର ଭଲ ହୁଏ ଏବଂ ସେ ମହାଜନ, ଜମିଦାର ହୋଇଯାଏ । ତା' ଘରେ ବହୁ ଚାକର ବାକର ଓ ହଳିଆ ମୂଲିଆ ଖଟନ୍ତି । ଏ ଥିଲା କୃଷିପ୍ରଧାନ ସାମନ୍ତ ଯୁଗର କଥା ।

ଆଜିକାଲି ଯୁଗରେ ଜମିମାଲିକାନା କେବଳ ଧନାଢ଼୍ୟତାର ମାପକାଠି ନୁହେଁ । ବର୍ତ୍ତମାନ ଶିଳ୍ପ ବାଣିଜ୍ୟର ଯୁଗ । ଧନ ଅର୍ଜନର ସୂତ୍ର ବହୁମୁଖୀ । ଧନ ଜମାକରି ରଖିବାର ସଂସ୍ଥା ମଧ୍ୟ ବହୁ ପ୍ରକାର । ବ୍ୟାଙ୍କ୍ ପ୍ରଭୃତି ଆର୍ଥିକ ଅନୁଷ୍ଠାନରେ ମୁଦ୍ରା ଆକାରରେ ଜମା, ଶିଳ୍ପ ବ୍ୟବସାୟ ସଂସ୍ଥାମାନଙ୍କରେ ଅଂଶ, ବିଭିନ୍ନ

ସହର ଓ ଗ୍ରାମାଞ୍ଚଳରେ ଘର, ଉଡ଼ାଜାହାଜ ଓ ଜାହାଜଠାରୁ ଆରମ୍ଭ କରି ବସ୍ ପ୍ରଭୃତି ଯାନବାହାନ, ସୁହା, କଫି, ଆଖୁଠାରୁ ଆରମ୍ଭ କରି ବିଭିନ୍ନ ପ୍ରକାର କୃଷି ଇଷ୍ଟେଟ୍ ପ୍ରଭୃତି ହଜାର ହଜାର ପ୍ରକାର ଅର୍ଥ ଉପାର୍ଜନ ସୂତ୍ରର ମାଲିକାନା, ବିଭିନ୍ନ ଶିଳ୍ପ ବାଣିଜ୍ୟରେ ଅର୍ଥ ନିବେଶ କରି ଲାଭ ଗ୍ରହଣ କିମ୍ବା କାର୍ଯ୍ୟକରି ଆୟ କରିବା, ଆଇନ୍, ଚିକିତ୍ସା ଓ ଶିକ୍ଷାଦେବା ପ୍ରଭୃତି ବୃତ୍ତି ଅବଲମ୍ବନ କରି ଆୟ କରିବା ପ୍ରଭୃତି ବହୁ ପ୍ରକାର ଧନାଗମରେ ଉପାୟ ପ୍ରଚଳିତ ହୋଇଛି । ସବୁ ପ୍ରକାର ଆୟ ଓ ପୁଞ୍ଜିକୁ ମୁଦ୍ରା ମାଧ୍ୟମରେ ଗଣା ଯାଉଛି । ସେହି ଆୟ ଓ ପୁଞ୍ଜି ହୋଇଛି ଆଜିକାଲି ଧନର ମାପକାଠି ଏବଂ ତାହାର ପରିମାଣ ଅନୁସାରେ ଧନୀ ଦରିଦ୍ରଙ୍କ ମଧ୍ୟରେ ପ୍ରଭେଦ ଗଣାଯାଉଛି । ଆୟର ପରିମାଣ ଅନୁସାରେ ମଧ୍ୟ ଜୀବନଧାରଣର ମାନ ଏବଂ ବିଭିନ୍ନ ପ୍ରକାର ପଦାର୍ଥର ବ୍ୟବହାର ନିର୍ଭର କରୁଛି । ସବୁ ପ୍ରକାର ଆୟ ଗୋଟିଏ ପ୍ରବାହ ବା ସ୍ରୋତ । ଶ୍ରମ କରି ହେଉ ବା ପୂର୍ବ ପୁଞ୍ଜିରୁ ନିର୍ଗତ ହେଉ, ଏହି ଧନ ଆଗମ ଗୋଟିଏ ସମୟ ପରିସୀମାରେ ଗଣନା କରାଯାଏ । ସବୁକାଳେ ଏହାକୁ ବର୍ଷ, ମାସ, ସପ୍ତାହ ଓ ଦିନରେ ଗଣନା କରାଯାଇଛି । ସମୟସୀମା ଓ ପରିମାଣ ଆୟର ଦୁଇଟି ସୀମା । ବିଭିନ୍ନ ଯୁଗରେ ଲୋକମାନେ ତାଙ୍କ ଜୀବନକାଳକୁ ବର୍ଷ, ମାସ, ଦିନ ପ୍ରଭୃତିରେ ଗଣନା କରିଛନ୍ତି ଏବଂ ସେହି ସମୟସୀମା ମଧ୍ୟରେ ସେମାନଙ୍କ ହସ୍ତଗତ ହେଉଥିବା ଧନର ପରିମାଣ ମଧ୍ୟ ଗଣନା କରୁଛନ୍ତି ।

ମୁଦ୍ରା ଆକାରରେ ହେଉ ବା ଦ୍ରବ୍ୟ ଆକାରରେ ହେଉ, ଗୋଟିଏ ସମୟସୀମା ମଧ୍ୟରେ ଲବ୍ଧ ଅର୍ଥ ଜୀବନ ଧାରଣ ଓ ଯାପନ ପାଇଁ ଉପଭୋଗରେ ନିୟୋଜିତ ହୁଏ । ତାହା ହୋଇ ସେହି ସମୟସୀମାରେ ବ୍ୟୟ । ଆୟଠାରୁ ବ୍ୟୟ ଅଧିକ ହେଲେ ଅଧିକ ପରିମାଣଟା ଋଣ କିମ୍ବା ନିଜର ପୂର୍ବ ସଞ୍ଚୟରୁ ଆସେ । ଋଣ ନ ମିଳିଲେ ଓ ପୂର୍ବ ସଞ୍ଚୟ ନ ଥିଲେ ବ୍ୟୟ ଆୟ ପରିମାଣ ମଧ୍ୟରେ ସୀମାବଦ୍ଧ ରହିବାକୁ ବାଧ୍ୟ । ଜୀବନଧାରଣପାଇଁ କେତେଗୁଡ଼ିଏ ସର୍ବନିମ୍ନ ପଦାର୍ଥ ଓ ସେବା ଦରକାର । ଉଚ୍ଚମାନର ସୁସ୍ଥ ଜୀବନପାଇଁ ଅଧିକ ପଦାର୍ଥ ଓ ସେବା ଆବଶ୍ୟକ ହୁଏ । ଯେତେ ନିମ୍ନମାନ ହେଉ ପଛକେ ସବୁ ସମାଜରେ ଜୀବନଧାରଣ ପାଇଁ କେତେଗୁଡ଼ିଏ ଅତ୍ୟାବଶ୍ୟକ ପଦାର୍ଥ ଦରକାର । ଖାଇବା, ପିନ୍ଧିବା ଓ ବାସଗୃହ ନ ହେଲେ ଜୀବନ ଧାରଣ ସମ୍ଭବ ନୁହେଁ । ଏହି ଖାଦ୍ୟ, ବସ୍ତ୍ର ଓ ବାସଗୃହ ଅତି ନିମ୍ନମାନର ବା ଅତି ଉଚ୍ଚମାନର ହୋଇପାରେ । ଧନ ଆୟ ଉପରେ ଏଗୁଡ଼ିକର ମାନ ନିର୍ଭର କରେ । ସୁସ୍ଥ ଓ ମାର୍ଜିତ ଜୀବନ ଯାପନପାଇଁ ସ୍ୱାସ୍ଥ୍ୟ ସେବା ଓ ଶିକ୍ଷା ଦରକାର । ବ୍ୟକ୍ତି ଓ ସମାଜର ଆୟ ଅନୁସାରେ ଏ ସବୁର ମାନ ଅତି ଉନ୍ନତ ବା ଅତି ଅନୁନ୍ନତ ହୋଇପାରେ । ସେହି ଭିତ୍ତିରେ ଧନୀ ବା ନିର୍ଦ୍ଧନ ବ୍ୟକ୍ତି ବା

ଧନୀ ସମାଜ ଓ ନିର୍ଦ୍ଧନ ସମାଜ ମଧ୍ୟରେ ପ୍ରଭେଦ ଦେଖାଯାଏ । ଅତ୍ୟାବଶ୍ୟକ ପଦାର୍ଥ ପରେ ଜୀବନର ଉପଭୋଗପାଇଁ ହଜାର ହଜାର ପ୍ରକାର ବିଳାସ ବ୍ୟସନର ପଦାର୍ଥ ଓ ସେବା ବିଭିନ୍ନ ଯୁଗରେ ବିଭିନ୍ନ ସମାଜରେ ବ୍ୟବହାର କରାଯାଇଛି । ଏସବୁ ବିଷୟରେ ଜ୍ଞାନ ଓ ଉତ୍ପାଦନ କୌଶଳ ମଧ୍ୟ ଯୁଗରୁ ଯୁଗ ବୃଦ୍ଧି ପାଇଛି । କାଳକ୍ରମେ ବିଭିନ୍ନ ପ୍ରକାର ଅତ୍ୟାବଶ୍ୟକ ଓ ବିଳାସବ୍ୟସନ ପଦାର୍ଥମାନଙ୍କର ରୂପରେଖ ବଦଳି ଯାଇଛି । ଗୋଟିଏ ଯୁଗର ବିଳାସ ବ୍ୟସନ ପଦାର୍ଥ ଅନ୍ୟ ଯୁଗରେ ଅତ୍ୟାବଶ୍ୟକ ପଦାର୍ଥ ରୂପେ ପରିଗଣିତ ହୋଇଛି କିମ୍ବା ସେଗୁଡ଼ିକ ଅନାବଶ୍ୟକ ପଦାର୍ଥ ବୋଲି ବିବେଚନା କରାଯାଇଛି । ଏ ବିଷୟରେ ବହୁ ତାତ୍ତ୍ୱିକ ଆଲୋଚନା ଅର୍ଥଶାସ୍ତ୍ରରେ କରାଯାଏ । ସେ ସବୁର ଅବତାରଣା ଏଠାରେ ସମୀଚୀନ ନୁହେଁ ।

ସବୁ ଯୁଗରେ ପ୍ରତି ସମାଜରେ ଧନୀ ଦରିଦ୍ରଙ୍କ ମଧ୍ୟରେ ପ୍ରଭେଦ ଖାଇବା, ପିଇବା ଓ ବିଳାସ ବ୍ୟସନ ପଦାର୍ଥ ବ୍ୟବହାର ଭିତ୍ତିରେ ଗଣନା କରାଯାଇଛି ଏବଂ ବିଭିନ୍ନ ସମାଜରେ ବି ବ୍ୟବହୃତ ପଦାର୍ଥ ଉପରେ ଧନୀ ଓ ଉନ୍ନତ ସମାଜ ଏବଂ ଦରିଦ୍ର ଓ ଅନୁନ୍ନତ ସମାଜ ବିଷୟ ବିଚାର କରାଯାଇଛି । ଆଦିମକାଳ କଥା ଛାଡ଼ିଦେଲେ ମଧ୍ୟ ତିନି ଚାରି ହଜାର ବର୍ଷ ତଳେ ଗ୍ରୀସ୍, ଇଜିପ୍ଟ, ରୋମ୍, ଚୀନ ଓ ଭାରତ ବର୍ଷରେ ସାଧାରଣ ଲୋକମାନଙ୍କ ଦ୍ୱାରା ବ୍ୟବହୃତ ପଦାର୍ଥ ଆଫ୍ରିକା ଓ ଏସିଆର ଅନେକ ଆଦିମ ଅଧିବାସୀ ଅଧ୍ୟୁଷିତ ଅଞ୍ଚଳରେ ଜଣା ନ ଥିଲା । ଚାରିହଜାର ବର୍ଷ ପରେ ଆଜିକାଲି ମଧ୍ୟ ଭାରତବର୍ଷରେ ବିଭିନ୍ନ ସହର ଓ ଗ୍ରାମରେ ଅଣ ଆଦିବାସୀ ସମାଜର ଲୋକମାନେ ଯେଉଁସବୁ ପଦାର୍ଥ ବ୍ୟବହାର କରୁଛନ୍ତି, ସେଗୁଡ଼ିକ ବିଷୟରେ ଅନେକ ଆଦିବାସୀ ଅଞ୍ଚଳର ଲୋକମାନଙ୍କର ଧାରଣା ନାହିଁ ବା ସେ ସବୁ ଜିନିଷ ସେମାନେ ବ୍ୟବହାର କରିପାରୁ ନାହାନ୍ତି ।

ବିଂଶ ଶତାବ୍ଦୀରେ ଗମନାଗମନ ସୁବିଧା, ପ୍ରଚାର ଓ ବିଜ୍ଞାପନ ପ୍ରସାର ହେବାରୁ ପୃଥିବୀର ବିଭିନ୍ନ ଦେଶରେ ଲୋକମାନେ କିପରି ଚଳୁଛନ୍ତି ତାହା ପ୍ରତି ଦେଶର ବହୁ ଲୋକ ଜାଣି ପାରୁଛନ୍ତି । ସେମାନେ ବିଭିନ୍ନ ଦେଶର ଜୀବନଧାରଣ-ମାନ ତୁଳନା କରି, କେଉଁ ଦେଶ ଗରିବ ଓ କେଉଁ ଦେଶ ଧନୀ ତାହା ବିଚାର କରି ପାରୁଛନ୍ତି । ବର୍ତ୍ତମାନ ଯୁକ୍ତରାଷ୍ଟ୍ର ଆମେରିକା, ଇଂଲଣ୍ଡ, ଫ୍ରାନ୍ସ ପ୍ରଭୃତି ପାଶ୍ଚାତ୍ୟ ଦେଶମାନଙ୍କରେ ସାଧାରଣ ଲୋକମାନଙ୍କର ଖାଇବା, ପିଇବା, ବେଶ, ପୋଷାକ, ଘରଦ୍ୱାର, ଆମ ଦେଶ ଓ ଏସିଆ ଓ ଆଫ୍ରିକା ମହାଦେଶର ସାଧାରଣ ଲୋକମାନଙ୍କ ଖାଇବା ପିଇବା, ପିନ୍ଧିବା ଓ ଘରଦ୍ୱାର ସହିତ ତୁଳନା କଲେ, ଯେକୌଣସି ଲୋକ ଜାଣିପାରିବ ଯେ ପାଶ୍ଚାତ୍ୟ ଦେଶର ଲୋକମାନଙ୍କ ତୁଳନାରେ ଆମ ଦେଶର ସାଧାରଣ ଲୋକମାନେ ଅତି ଗରିବ ଏବଂ ଅନୁନ୍ନତ ।

ବ୍ୟକ୍ତିଗତ ଜୀବନଧାରଣ ପଦ୍ଧତି ବ୍ୟତୀତ ସର୍ବସାଧାରଣ ସମ୍ପତ୍ତି ଏବଂ ଲୋକମାନଙ୍କର ଜୀବନଧାରଣ ଓ ସୁଖ ସ୍ୱାଚ୍ଛନ୍ଦ୍ୟପାଇଁ ସାମାଜିକ ବ୍ୟବସ୍ଥା ଦେଖିଲେ ମଧ୍ୟ କେଉଁ ଦେଶ ସମୃଦ୍ଧ ଅଛି ଗରିବ ଓ କେଉଁ ଦେଶ ଧନୀ ତାହା ସହଜରେ ବୁଝିହୁଏ । ଆମେରିକା, ଇଂଲଣ୍ଡ, ଫ୍ରାନ୍ସ, ଜାପାନ ପ୍ରଭୃତି ଦେଶରେ ଉଡ଼ାଜାହାଜ, ରେଲଗାଡ଼ି, ବସ୍, ଭୂଇଁତଳ ରେଲଗାଡ଼ି, ରେଲ୍‌ଷ୍ଟେସନ, ରାସ୍ତାଘାଟ, ବିମାନ ଓ ଜାହାଜ ବନ୍ଦର, ଦୋକାନ ବଜାର; କିଣାବିକା ହେଉଥିବା କିଓସ୍କ, ସ୍କୁଲ, କଲେଜ, ହାସପାତାଳ, ସରକାରୀ ଓ ବେସରକାରୀ ଅଫିସ୍, ହୋଟେଲ, ରେସ୍ତୋରାଁ, ପାର୍କ ପ୍ରଭୃତି ସମସ୍ତ ପ୍ରକାର ସର୍ବସାଧାରଣ ଚଳିବା ବ୍ୟବସ୍ଥା, ଆମଦେଶର ସେ ସବୁ ସଙ୍ଗେ ତୁଳନା କଲେ, ଆମ ଦେଶ ସେ ସବୁ ଦେଶମାନଙ୍କ ଅପେକ୍ଷା କେତେ ଗରିବ ତାହା ଆପେ ଆପେ ଜଣାପଡ଼େ । ଧନୀ ଓ ଦରିଦ୍ର ଦେଶ ମଧ୍ୟରେ ପାର୍ଥକ୍ୟ ଦେଖାଇବାପାଇଁ ସାଧାରଣତଃ ମୁଣ୍ଡପିଛା ଆୟ, ସମ୍ପତ୍ତି ଏବଂ ସ୍ୱାସ୍ଥ୍ୟ ଶିକ୍ଷା ସେବାପରି ସେବା ବ୍ୟବସ୍ଥା, ଗମନାଗମନ ସୁବିଧା ପ୍ରଭୃତି ମାପକାଠି ବ୍ୟବହାର କରାଯାଏ । ସେସବୁ ମାପକାଠି ଦ୍ୱାରା ପାଶ୍ଚାତ୍ୟ ଦେଶମାନଙ୍କ ତୁଳନାରେ ଆମ ଦେଶ ଗରିବ ବୋଲି ସମସ୍ତେ ଜାଣିପାରୁଛନ୍ତି ।

ଯେକୌଣସି ଦେଶ ମଧ୍ୟରେ ମଧ୍ୟ ମୁଣ୍ଡପିଛା ଆୟ ଓ ସମ୍ପତ୍ତି ମାପକାଠି ଦ୍ୱାରା ଧନୀ ଦରିଦ୍ର ମଧ୍ୟରେ ପାର୍ଥକ୍ୟ ଦେଖାଯାଉଛି । ପ୍ରାୟ ତିରିଶ ବର୍ଷ ତଳେ ଆମ ଦେଶର କେତେଜଣ ଅର୍ଥଶାସ୍ତ୍ରୀ କଳନା କରିଥିଲେ ଯେ, ୧୯୬୦-୬୧ ମସିହା ଦରଦାମ ଭିତ୍ତିରେ ଯେଉଁ ଲୋକ ମାସକୁ ୨୦ ଟଙ୍କା ଆୟ କରିପାରୁ ନାହିଁ ସେ ଗରିବ । ସେହି ଭିତ୍ତିରେ ଗୋଟିଏ ପାଞ୍ଚଜଣ ବ୍ୟକ୍ତି ବିଶିଷ୍ଟ ପରିବାର ଯଦି ମାସକୁ ୧୦୦ ଟଙ୍କା ରୋଜଗାର କରିପାରୁ ନାହିଁ ସେ ପରିବାର ଗରିବ । ୧୯୬୦ ମସିହାଠାରୁ ବର୍ତ୍ତମାନ ଦରଦାମ୍ ପ୍ରାୟ ଛଅଗୁଣ ବଢ଼ିଗଲାଣି । ସେହି ହିସାବରେ ବର୍ତ୍ତମାନ ଯଦି ଗୋଟିଏ ପାଞ୍ଚଜଣିଆ ପରିବାର ମାସକୁ ୬୦୦ ଟଙ୍କା ଆୟ କରି ପାରୁ ନାହିଁ ତାହାହେଲେ ସେ ପରିବାର ଗରିବ । ଗରିବ ଅର୍ଥ ତାର ଅତ୍ୟାବଶ୍ୟକ ଖାଇବା, ପିନ୍ଧିବା ଓ ବାସଗୃହର ଅଭାବ । ତାହାପରେ କେତେକ ବିଶେଷଜ୍ଞ କହିଲେ ଯେ, ପିନ୍ଧିବା ଓ ବାସଗୃହ ଆବଶ୍ୟକତା ବାଦଦେଇ କେବଳ ଖାଦ୍ୟ ଆବଶ୍ୟକତାକୁ ବିଚାରକୁ ନିଆଯାଉ ଏବଂ ଖାଦ୍ୟ ପଦାର୍ଥକୁ ମଧ୍ୟ ଗୋଟିଏ ସାଧାରଣ ପୁଷ୍ଟିସାର ମାପକାଠିରେ ମାପ କରାଯାଉ । ସେହି ହିସାବରେ ଗ୍ରାମାଞ୍ଚଳରେ ଯେଉଁ ବ୍ୟକ୍ତି ଦିନକୁ ୨୪୦୦ କାଲୋରି ଖାଦ୍ୟ ପାଉ ନାହିଁ କିମ୍ବା ସହରାଞ୍ଚଳରେ ଯେଉଁ ବ୍ୟକ୍ତି ଦିନକୁ ୨୧୦୦ କାଲୋରି ଖାଦ୍ୟ ପାଉ ନାହିଁ ସେ ଗରିବ । କାରଣ ସାଧାରଣ ଜୀବନଧାରଣପାଇଁ ଜଣେ ବ୍ୟକ୍ତିର ଦିନକୁ ସର୍ବନିମ୍ନ ୩୦୦୦ କାଲୋରି ଖାଦ୍ୟ ଦରକାର । ଏହି ମାପକାଠି ମଧ୍ୟ ଆୟ ମାପକାଠିରେ

ପରିଣତ ହୋଇପାରିବ । ଅର୍ଥାତ୍ ଯେଉଁ ବ୍ୟକ୍ତିର ଅତ୍ୟାବଶ୍ୟକ କାଳେରି ଖାଦ୍ୟ ସଂଗ୍ରହ କରିବାକୁ ଆୟ ନାହିଁ ସେ ଗରିବ ଏବଂ ଯେଉଁ ଲୋକମାନଙ୍କର ଏହି ଅତ୍ୟାବଶ୍ୟକ ଆୟ ନାହିଁ ସେମାନେ ଦାରିଦ୍ର୍ୟ ସୀମାରେଖା ତଳେ ରହିଛନ୍ତି । ଯାହାଙ୍କର ସେ ଆୟ ବା ତତୋଽଧିକ ଆୟ ଅଛି ସେମାନେ ଦାରିଦ୍ର୍ୟ ସୀମାରେଖା ଉପରେ ଅଛନ୍ତି ।

ସାଧାରଣ ଲୋକମାନଙ୍କର ଧନୀ ଦରିଦ୍ର ମଧ୍ୟରେ ପ୍ରଭେଦ ଜାଣିବାପାଇଁ ଏପରି ତାତ୍ତ୍ୱିକ ଆଲୋଚନା ଉପରେ ନିର୍ଭର କରିବାକୁ ଧୈର୍ଯ୍ୟ ନାହିଁ । ସେମାନେ କହନ୍ତି ଯେ ସେମାନଙ୍କ ସମାଜରେ ବାସ କରୁଥିବା ବ୍ୟକ୍ତିଙ୍କ ମଧ୍ୟରେ କିଏ ଗରିବ, କିଏ ଡାଲବର ଏବଂ କିଏ ମଧ୍ୟବିତ୍ତ ଲୋକ, ତାହା ସେମାନେ ନିଜେ ଦେଖି କରି ବୁଝିପାରୁ ନାହାନ୍ତି ଯେ ସେଥିପାଇଁ ଏତେ ତାତ୍ତ୍ୱିକ ମାପକାଠି ଆବଶ୍ୟକ ହେଉଛି ? ଚିରକାଳ ତ ଖାଇବା, ପିନ୍ଧିବା ଓ ମୁଣ୍ଡ ଗୁଞ୍ଜିବାକୁ ବାସସ୍ଥଳ ନ ଥିବା ଲୋକଙ୍କୁ ସମସ୍ତେ ଗରିବ ବୋଲି ବୁଝୁଥିଲେ । ଆଜି ମଧ୍ୟ ତାହା ହିଁ ବୁଝୁଛନ୍ତି । ଖାଇବା, ପିନ୍ଧିବା, ବାସଗୃହର ପ୍ରକାର ଓ ମାନ ଦ୍ୱାରା ଧନୀ ଦରିଦ୍ରଙ୍କ ମଧ୍ୟରେ ପ୍ରଭେଦ ଜାଣୁଛନ୍ତି । ତେବେ ସାଧାରଣ ଲୋକମାନଙ୍କ ଧାରଣା ଓ ବିଶେଷଜ୍ଞ-ମାନଙ୍କର ଗଣନା ମଧ୍ୟରେ କୌଣସି ବିରୋଧାତ୍ମକ ଭାବ ନାହିଁ । ସାଧାରଣ ଲୋକମାନେ ମୋଟାମୋଟି ଭାବରେ ଯାହା ବୁଝୁଛନ୍ତି, ବିଶେଷଜ୍ଞମାନେ କେବଳ ତାତ୍ତ୍ୱିକ ମାପକାଠି ଦ୍ୱାରା ତାହା କଳନା କରୁଛନ୍ତି । ଦାରିଦ୍ର୍ୟ କଳନାପାଇଁ ଏଠାରେ ଏହି ଉଭୟ ଭାବ ମନରେ ରଖାଯାଇଛି ।

୧୯୫୭ ମସିହା ଜାନୁଆରୀମାସରୁ ୧୯୫୮ ମସିହା ମଇମାସ ପର୍ଯ୍ୟନ୍ତ ଅଢ଼େଇବର୍ଷ ମୁଁ ଲଣ୍ଡନରେ ଥିଲି । ସେତେବେଳେ ଇଂଲଣ୍ଡରେ ସାଧାରଣ ଲୋକ ଓ ଧନୀଲୋକମାନଙ୍କ ଚଳିବା ପଦ୍ଧତି ଆମେ ଭଲଭାବେ ଦେଖି ପାରୁଥିଲୁ । ଇଂଲଣ୍ଡର ଅଧିକାଂଶ ସାଧାରଣ ଲୋକ ଶ୍ରମିକ ଶ୍ରେଣୀର ଲୋକ । ସେମାନେ ବିଭିନ୍ନ ଶିଳ୍ପ କାରଖାନା, ବ୍ୟବସାୟ ସଂସ୍ଥା, କୋଇଲା ଖଣି, ରେଳ, ବସ୍, ଜାହାଜ ଓ ଉଡ଼ାଜାହାଜ ପ୍ରଭୃତି ଗମନାଗମନ ଓ ପରିବହନ ସଂସ୍ଥା, ଦୋକାନ, ବଜାର, ହୋଟେଲ, ରେସ୍ତୋରାଁ ପ୍ରଭୃତିରେ ଶ୍ରମିକ ଭାବେ କାମ କରନ୍ତି । ତାଙ୍କର ଉପରସ୍ତରର ମଧ୍ୟବିତ୍ତ ଶ୍ରେଣୀର ଲୋକମାନେ ସରକାରୀ ଅଫିସ୍, ଶିଳ୍ପ କାରଖାନା, ବ୍ୟାଙ୍କ୍ ଓ ବିଭିନ୍ନ ବ୍ୟବସାୟ ପ୍ରତିଷ୍ଠାନମାନଙ୍କରେ କିରାଣି, ଅଫିସର ପ୍ରଭୃତି ଭାବେ ଏବଂ ସ୍କୁଲ, କଲେଜ ପ୍ରଭୃତିରେ ଶିକ୍ଷକ ଭାବେ କାମ କରନ୍ତି । କୃଷକ ଓ କୃଷି ଶ୍ରମିକ ଉଭୟ ମିଶି ଦେଶର ମୋଟ ଲୋକସଂଖ୍ୟାର ଶତକଡ଼ା ମୋଟେ ପାଞ୍ଚଭାଗ । ସେଥିରୁ କୃଷି ଶ୍ରମିକମାନେ ଲୋକସଂଖ୍ୟାର ମୋଟେ ଦୁଇ ଭାଗ ।

ପୁଞ୍ଜିପତି, ଶିଳ୍ପ ଓ ବ୍ୟବସାୟ ପ୍ରତିଷ୍ଠାନମାନଙ୍କର ମାଲିକ, ଲର୍ଡ ପରିବାର ପ୍ରଭୃତିର ଲୋକଙ୍କର ସଂଖ୍ୟା ଅତି ଅଳ୍ପ । ଶ୍ରମିକ ଏବଂ ମଧ୍ୟବିତ୍ତ ଶ୍ରେଣୀର ଅଫିସ୍ କର୍ମଚାରୀମାନେ ସାପ୍ତାହିକ ହିସାବରେ ଦରମା ପାଆନ୍ତି । ଶ୍ରମିକମାନେ ହିଁ ସେ ଦେଶର ତଳ ଶ୍ରେଣୀ ବା ଦରିଦ୍ର ଶ୍ରେଣୀର ଲୋକ । ଆମ୍ଭେମାନେ ସେହିମାନଙ୍କ ଘରେ ଘରଭଡ଼ା ଓ ଖାଇବା ପିଇବାପାଇଁ ପଇସା ଦେଇ ରହୁଥିଲୁ । ସେମାନଙ୍କର ଖାଇବା ପିଇବା, ଲୁଗାପଟା, ଘରଦ୍ୱାର ଆମ ଦେଶର ଉଚ୍ଚମଧ୍ୟବିତ୍ତ ପରିବାରଙ୍କ ଚଳିବାଠାରୁ ଅଧିକ ସ୍ୱଚ୍ଛଳ । ସେମାନଙ୍କ ଘରେ ସୁନା, ରୁପା, ଅଳଙ୍କାର, ବାସନକୁସନ, ଆଲମାରି କିମ୍ବା ମୂଲ୍ୟବାନ୍ ଫର୍ନିଚର ନ ଥାଏ । ଛୋଟ ଛୋଟ ଘର ସେମାନେ ସରକାରୀ ସୂତ୍ରରୁ କିସ୍ତିଓ୍ୱାରିରେ ପଇସା ଦେଇ କିଣିଥାନ୍ତି । ବହୁ ପରିବାର ମଧ୍ୟ ଚଉକି ଟେବୁଲ୍ ଖଟ ପ୍ରଭୃତି ଦୋକାନମାନଙ୍କରୁ ଭଡ଼ା-ସୂତ୍ରରେ ଆଣିଥାନ୍ତି । ମାତ୍ର ଛୋଟ ଘରଟିକୁ ଭଲଭାବରେ ପରିଷ୍କାର କରି ସଜାଇଥାନ୍ତି । ଘରେ ସୁନ୍ଦର ପରଦା ଲଗାଇଥାନ୍ତି, ଚଟାଣରେ ଗାଲିଚା ବା ଲିଇନୋଲିଅମ୍ ପକାଇଥାନ୍ତି । ଘରେ ରେଡ଼ିଓ ଓ ଟେଲିଭିଜନ ରଖିଥାନ୍ତି । ଘର ଭିତରେ ଗ୍ୟାସ ବା ଇଲେକ୍‌ଟ୍ରିକ୍ ହିଟର ଥାଏ ଏବଂ ଲୁଗାପଟା ରଖିବାକୁ ଓ୍ୱାର୍ଡରୋବ୍ ଥାଏ । ଗାଧୁଆଘରମାନଙ୍କରେ ଗାଧୁଆ ଟବ୍ ଓ ପାଣି ଗରମ କରିବାପାଇଁ ହିଟର୍ ଥାଏ ।

ସମସ୍ତଙ୍କର ପରିବାର ଛୋଟ । ଗୋଟିଏ ଦୁଇଟି ପିଲାରୁ ବେଶି ନ ଥାନ୍ତି । ସ୍କୁଲ ବୟସର ପିଲାମାନେ ସମସ୍ତେ ସ୍କୁଲରେ ପଢ଼ୁଥାନ୍ତି । ଘରର ସମସ୍ତେ ପ୍ରତିଦିନ ମାଂସ, ମାଛ, ଅଣ୍ଡା, କୋବି, ମଟର, ଟମାଟୋ ପ୍ରଭୃତି ପରିବା, ଦୁଧ, ଲହୁଣି, ପାଉଁରୁଟି ଜାମ୍ ପ୍ରଭୃତି ପୁଷ୍ଟିକର ଖାଦ୍ୟ ଖାଆନ୍ତି । ଚାହା, କଫି, ମଦ ପ୍ରଭୃତି ପାନୀୟ ବ୍ୟବହାର କରନ୍ତି । ଘର ସଫା କଲାବେଳେ କଲକାରଖାନା କିମ୍ବା ରାସ୍ତାଘାଟରେ କାମକଲାବେଳେ ଶ୍ରମିକ ପୋଷାକ ପିନ୍ଧନ୍ତି, କିନ୍ତୁ ବାହାରକୁ ବୁଲିଯିବାବେଳେ କିମ୍ବା ଦୋକାନ ବଜାର ଅଫିସ୍ ପ୍ରଭୃତିକୁ ଗଲାବେଳେ ସେମାନେ ଇସ୍ତ୍ରି ହୋଇଥିବା ଉଲ୍ ବା ରେଶମ ପୋଷାକ, ମୋଜା, ଜୋତା, ଓଭରକୋଟ୍, ଟୋପି ପ୍ରଭୃତି ବ୍ୟବହାର କରନ୍ତି । ଆୟରୁ କିଛି କିଛି ସଞ୍ଚୟ କରି ବ୍ୟାଙ୍କ୍ ବା ପୋଷ୍ଟଅଫିସରେ ଜମା ରଖନ୍ତି । ପ୍ରତି ପରିବାରର ସଞ୍ଚୟ ଖୁବ୍ ବେଶି ବୋଲି ମନେହୁଏ ନାହିଁ । ପରିବାରର ଲୋକମାନେ ଶନିବାର ଓ ରବିବାର ଦିନ ବିଭିନ୍ନ ପାର୍କ, ମ୍ୟୁଜିଅମ୍, ସିନେମା, ଥିଏଟର ପ୍ରଭୃତିକୁ ଯାଆନ୍ତି ଏବଂ ଗ୍ରୀଷ୍ମ କାଳରେ ଅନ୍ତତଃପକ୍ଷେ ଦଶ ପନ୍ଦର ଦିନପାଇଁ ୟୁରୋପର ବିଭିନ୍ନ ଦେଶରେ ଛୁଟି କଟାଇବାକୁ ଯାଆନ୍ତି । ରୋଗରେ ପଡ଼ିଲେ ସେମାନେ ଅସୁବିଧା ଭୋଗନ୍ତି ନାହିଁ, କାରଣ ଚିକିତ୍ସାପାଇଁ ସରକାରୀ ବ୍ୟବସ୍ଥା ଅତି ଭଲ । ଯିବା

ଆସିବା କରିବା, ଘସ୍ତାଘାଟ ପରିଷ୍କାର କରିବାପାଇଁ ସରକାରୀ ବ୍ୟବସ୍ଥା ଅତି ଭଲ । କେବଳ କେହି କାମ ନ ପାଇ ବେକାର ହୋଇଗଲେ, ତାଙ୍କ ପରିବାରର ଜୀବନ ଅତି ଦୁର୍ବିସହ ହୋଇଯାଏ । ସରକାରୀ ବୀମାରୁ ବେକାରି ଭତ୍ତା ଅବଶ୍ୟ ମିଳେ । କିନ୍ତୁ ତାହା ଅତି ଅଳ୍ପ ଥିବାରୁ ସେଥିରେ ପରିବାର ଚଳିପାରେ ନାହିଁ । ଏହା ହେଲି ସେ ଦେଶର ସାଧାରଣ ଗରିବ ଶ୍ରମିକ ଶ୍ରେଣୀ ଲୋକଙ୍କ ଜୀବନଯାପନ ପଦ୍ଧତି । ଆମ ମାପକାଠି ଅନୁସାରେ ବିଚାର କଲେ ସେମାନେ ସମସ୍ତେ ଦାରିଦ୍ର୍ୟ ସୀମାରେଖା ଉପରେ । ତାଙ୍କ ଦେଶରେ ମଧ୍ୟ ଧନୀ ଦରିଦ୍ରଙ୍କ ମଧ୍ୟରେ ତଫାତ୍ ଖୁବ୍ ବେଶି । ଧନୀ ଲୋକମାନଙ୍କର ଖାଇବା, ପିଇବା, ବେଶ ପୋଷାକ, ରହିବା ଘର ଓ ବିଳାସବ୍ୟସନର ସୀମା ନ ଥାଏ ।

ଇଂଲଣ୍ଡରେ ଆମ ଦେଶପରି ଗାଁ ନାହିଁ । ଚାଷୀମାନେ ନିଜ ନିଜ ଚାଷ ଜମିରେ ଘରକରି ରହିଥାନ୍ତି । ଚାଷଜମି ସବୁ ଗୋଟିଏ ଚକରେ ଥାଏ । କୃଷି କ୍ଷେତ୍ର ନିଜର ହେଉ ବା ଭଡ଼ାରେ ନିଆହୋଇଥାଉ, ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା ବା ଅଷ୍ଟ୍ରେଲିଆ ପ୍ରଭୃତି ଦେଶରେ କୃଷି ଫାରମ ପରି ଅତି ବଡ଼ ନୁହେଁ । କିନ୍ତୁ ଇଂଲଣ୍ଡର ଫାରମମାନଙ୍କର ହାରାହାରି ଆୟତନ ନବେରୁ ଶହେ ଏକର ମଧ୍ୟରେ । କୃଷକ ନିଜେ ବିଭିନ୍ନ ଯନ୍ତ୍ର ସାହାଯ୍ୟରେ ଅଧିକାଂଶ ଚାଷ କାମ କରେ । ଦରକାରବେଳେ ଜଣେ ଅଧେ ମୂଲିଆର ସାହାଯ୍ୟ ନେଇଥାଏ । କୃଷକମାନେ ସମସ୍ତେ ସ୍ୱଚ୍ଛଳ । ସହରର ଶିଳ୍ପଶ୍ରମିକମାନଙ୍କଠାରୁ କୃଷକମାନଙ୍କର ଆୟ ଏବଂ ଜୀବନ ଧାରଣର ମାନ ଅଧିକ ସ୍ୱଚ୍ଛଳ । କୃଷିଶ୍ରମିକମାନଙ୍କର ଜୀବନଧାରଣ ମାନ ସହରର ଶ୍ରମିକମାନଙ୍କଠାରୁ କୌଣସି ଗୁଣରେ କମ୍ ନୁହେଁ । ସୁତରାଂ ଇଂଲଣ୍ଡରେ କୃଷକ ଓ କୃଷି ଏବଂ ଶିଳ୍ପ ଶ୍ରମିକ କେହି ଖାଇବା ପିଇବାକୁ ନ ପାଇ ଦାରିଦ୍ର୍ୟର କଷାଘାତ ଭୋଗନ୍ତି ନାହିଁ । ସେ ଦେଶର ସବୁ ଲୋକ ଆମ ଦେଶର ଦାରିଦ୍ର୍ୟ ସୀମାରେଖା ଉପରେ । ସେ ଦେଶର ପରିସ୍ଥିତିରେ ଦାରିଦ୍ର୍ୟ ସୀମାରେଖା ଆଲୋଚନା ନିରର୍ଥକ ।

୧୯୫୭ ମସିହାରେ ମୁଁ ଲଣ୍ଡନରେ ଥିଲାବେଳେ, ଆଠ ଦଶଦିନପାଇଁ ଫ୍ରାନ୍‌ସ ବୁଲି ଯାଇଥିଲି । ୧୯୭୧ ମସିହାରେ ମଧ୍ୟ ମାସେ ଖଣ୍ଡେ ଗ୍ରୀସ୍, ଇଟାଲି, ଫ୍ରାନ୍‌ସ, ସୁଇଜରଲଣ୍ଡ ପ୍ରଭୃତି ଦେଶକୁ ବୁଲି ଯାଇଥିଲି । ମୁଁ ଦେଖିଲି ଯେ ସୁଇଜରଲଣ୍ଡ ଓ ଫ୍ରାନ୍‌ସ ଦେଶର ଲୋକମାନଙ୍କ ଚଳିବା ପଦ୍ଧତି ଇଂଲଣ୍ଡର ଲୋକମାନଙ୍କ ଚଳିବା ପରି ସ୍ୱଚ୍ଛଳ । ଗ୍ରୀସ୍, ଇଟାଲି ପ୍ରଭୃତି ଦେଶର ଲୋକମାନଙ୍କର ଜୀବନଧାରଣ ମାନ ଇଂଲଣ୍ଡର ଲୋକମାନଙ୍କଠାରୁ କମ୍ । ମାତ୍ର ସେ ସମସ୍ତ ଦେଶରେ ଲୋକମାନେ ଖାଇବା, ପିଇବା, ବାସଗୃହ ପରି ଅତ୍ୟାବଶ୍ୟକ

ପଦାର୍ଥର ଅଭାବରେ ଦାରିଦ୍ର୍ୟର କଷ୍ଟ ଭୋଗନ୍ତି ନାହିଁ । ୧୯୭୮ ମସିହାରେ ମୁଁ ଏ ମାସ ଯୁକ୍ତରାଷ୍ଟ୍ର ଆମେରିକା ଓ କାନାଡ଼ାରେ ରହିଥିଲି । ମୁଁ ଦେଖିଲି ଯୁକ୍ତରାଷ୍ଟ୍ର ଆମେରିକା ଓ କାନାଡ଼ାରେ ସାଧାରଣ କୃଷକ ଓ ଶ୍ରମିକମାନଙ୍କର ଅବସ୍ଥା ୟୁରୋପର ବିଭିନ୍ନ ଦେଶର ସେହି ଶ୍ରେଣୀର ଲୋକଙ୍କ ଅବସ୍ଥାଠାରୁ ଅଧିକ ସ୍ୱଚ୍ଛଳ । ଆମେରିକା ର ନିଗ୍ରୋମାନେ ଶ୍ୱେତାଙ୍ଗ ଲୋକମାନଙ୍କଠାରୁ ଯଥେଷ୍ଟ ଗରିବ । ମାତ୍ର ଆମ ଦେଶର ଲୋକମାନଙ୍କ ଆର୍ଥିକ ଅବସ୍ଥା ତୁଳନାରେ ସେମାନଙ୍କ ଅବସ୍ଥା ବହୁଗୁଣରେ ଅଧିକ ସ୍ୱଚ୍ଛଳ । ଆମ ଦେଶର ଦାରିଦ୍ର୍ୟ ସୀମାରେଖା ଆଲୋଚନା ସେ ଦେଶମାନଙ୍କ ପ୍ରତି ମଧ୍ୟ ପ୍ରଯୁଜ୍ୟ ନୁହେଁ । ସେ ଦେଶମାନଙ୍କରେ ଧନବାନ୍ ଓ ଧନହୀନ ଲୋକମାନଙ୍କ ମଧ୍ୟରେ ପ୍ରଭେଦ କେବଳ ତୁଳନାତ୍ମକ । ଅତ୍ୟାବଶ୍ୟକ ଖାଦ୍ୟ, ବସ୍ତ୍ର, ବାସଗୃହ ଅଭାବ ଜନିତ ଉତ୍କଟ ଦାରିଦ୍ର୍ୟ ବିଶେଷତଃ ଏସିଆ ଓ ଆଫ୍ରିକାର ବହୁ ଦରିଦ୍ର ଦେଶର ଲୋକମାନଙ୍କର ସମସ୍ୟା ।

ଆମ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଗାଁ ଓ ସହରମାନଙ୍କର ଧନୀ ଓ ଦରିଦ୍ର ଲୋକଙ୍କ ଅବସ୍ଥା ମୁଁ ୧୯୨୦ ମସିହାରୁ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ପ୍ରାୟ ୭୫ ବର୍ଷରୁ ଅଧିକକାଳ ନିରୀକ୍ଷଣ କରିଛି । ଆମ ଗାଁ ଓ ଅଞ୍ଚଳର ହରିଜନମାନଙ୍କଠାରୁ ଆରମ୍ଭ କରି ଉଚ୍ଚଜାତି ବ୍ରାହ୍ମଣ, କରଣ, ଖଣ୍ଡାୟତ ମଧ୍ୟରେ ଅତି ଦରିଦ୍ର ଏବଂ ଧନୀମାନଙ୍କର ଘରଦ୍ୱାର, ଖାଇବା, ପିନ୍ଧିବା, ଘରର ଆସବାବପତ୍ର ପ୍ରଭୃତି ମୁଁ ଦେଖିଛି । କୋରାପୁଟ, କେନ୍ଦୁଝର, ସମ୍ବଲପୁର ଅଞ୍ଚଳର କେତେକ ଆଦିବାସୀ ପରିବାରର ଖାଇବା, ପିଇବା, ଘରଦ୍ୱାର ମଧ୍ୟ ମୁଁ ଦେଖିଛି । ବିଭିନ୍ନ ସମୟରେ ଭୁବନେଶ୍ୱର, କଟକ, ସମ୍ବଲପୁର, ବ୍ରହ୍ମପୁର, ପୁରୀ, ବାଲେଶ୍ୱର ପ୍ରଭୃତି ଓଡ଼ିଶାର ବିଭିନ୍ନ ସହରମାନଙ୍କରେ ରହୁଥିବା ଧନୀଲୋକ, ମଧ୍ୟ ବିତ୍ତ ଲୋକ ଏବଂ ବସ୍ତିବାସିନ୍ଦା ଗରିବ ଲୋକମାନଙ୍କର ଅବସ୍ଥା ଦେଖିଛି । କଲିକତା, ବମ୍ବେ ପ୍ରଭୃତି ସହର-ମାନଙ୍କରେ ରହୁଥିବା ବଡ଼ଲୋକମାନଙ୍କର ସ୍ୱଚ୍ଛଳତା ଏବଂ ବସ୍ତି ଓ ରାସ୍ତାକଡ଼ରେ ରହୁଥିବା ଦରିଦ୍ର ଲୋକ ଏବଂ ଭିକାରିଙ୍କ ଅବସ୍ଥା ନିରୀକ୍ଷଣ କରିଛି । ଏ ଅଭିଜ୍ଞତାତ ଆମ ଦେଶରେ ଏବଂ ଆମ କାଳରେ ରହୁଥିବା ସବୁଲୋକଙ୍କର ଅଛି । ମୋ ଜୀବନରେ ମୁଁ ଜର୍ମାନୀରେ ବିଭିନ୍ନ ପଞ୍ଚତାରକା ହୋଟେଲ, ଦିଲ୍ଲୀର ଅଶୋକା ଓ ଇମ୍ପିରିଆଲ ପ୍ରଭୃତି ହୋଟେଲ, କଲିକତାର ଗ୍ରାଣ୍ଡ, କେନିଲୱାର୍ଥ ପ୍ରଭୃତି ହୋଟେଲମାନଙ୍କରେ ଅନେକଥର ରହିଛି, କାନାଡ଼ାର ଅଣ୍ଟାରିଓ ପ୍ରଦେଶ ଗଭର୍ଣ୍ଣରଙ୍କର ଭୋଜିସଭାଠାରୁ ଆରମ୍ଭ କରି ଭାରତବର୍ଷର ଅନେକ ରାଜ୍ୟର ରାଜଭବନମାନଙ୍କରେ ଆୟୋଜିତ ଭୋଜି ଓ ଗୃହାଭୋଜ ସଭାମାନଙ୍କରେ ଯୋଗ ଦେଇଛି । ସେଥିସଙ୍ଗେ ସଙ୍ଗେ ପିଲାଦିନେ ସାଧାରଣ ଗୃହୀ ପରିବାରରେ ବ୍ରାହ୍ମଣମାନଙ୍କୁ ଦିଆଯାଉଥିବା ଚୂଡ଼ାଦହି ଖାଇବାରେ ଯୋଗ ଦେଇଛି ଏବଂ

ଓଡ଼ିଶାର ବିଭିନ୍ନ ଗାଁ ଓ ସହରମାନଙ୍କରେ ଧନୀ, ଉଚ୍ଚମଧ୍ୟବିତ୍ତ ଓ ଦରିଦ୍ର ଲୋକମାନଙ୍କ ବିବାହ ଓ ଉପନୟନ ପ୍ରଭୃତି ଜମିଲି ପର୍ବରେ ଯୋଗ ଦେଇଛି ଏବଂ ସେମାନଙ୍କ ସହ ଚଳିଛି । ୟୁରୋପ, ଆମେରିକାର ଧନୀ ଓ ସାଧାରଣ ଲୋକଙ୍କଠାରୁ ଆରମ୍ଭ କରି ଆମ ଓଡ଼ିଶାର ଧନୀ ଓ ଆଦିବାସୀ ଏବଂ ଅଣଆଦିବାସୀ ଗରିବ ଲୋକଙ୍କ ସହିତ ଚଳିବା ଅଭିଜ୍ଞତାରୁ ମୋଟାମୋଟି ଭାବେ ଏତିକି ବୁଝିହେବ ଯାଇପାରେ ଯେ, ଆମ ଦେଶରେ ଦାରିଦ୍ର୍ୟର ବ୍ୟାପକତା ଏବଂ ଗଭୀରତା ପୃଥିବୀରେ ସବୁଠାରୁ ଅଧିକ । ଆମ ଦେଶରେ ଅତି ଗରିବ ପରିବାରର ଅର୍ଥ ବଞ୍ଚିରହିବାପାଇଁ ଆବଶ୍ୟକ ଖାଦ୍ୟବସ୍ତୁର ଅଭାବଗ୍ରସ୍ତ ବୁଭୁକ୍ଷୁ ନିବସ୍ତ୍ର ଲୋକ । ଆଉ ଧନୀଙ୍କ ମଧ୍ୟରେ ତ ଆମ ଦେଶରେ ରାଜା ମହାରାଜାଙ୍କଠାରୁ ଆରମ୍ଭ କରି ସହରମାନଙ୍କରେ ବୃହତ୍ତ ଶିଳ୍ପପତି, ବ୍ୟବସାୟୀ ଏବଂ ଅନ୍ୟ ବହୁବିତ୍ତ ଆସ୍ଥାକାଂକ୍ଷୀ ବ୍ୟକ୍ତି ଅଛନ୍ତି । ଦାରିଦ୍ର୍ୟର ଗଭୀରତା ଓ ବ୍ୟାପକତା ସଙ୍ଗେ ସଙ୍ଗେ, ଧନୀ ଦରିଦ୍ରଙ୍କ ମଧ୍ୟରେ ବ୍ୟବଧାନ ଆମ ଦେଶରେ ପୃଥିବୀରେ ସବୁଠାରୁ ଅଧିକ ।

ଦେଢ଼ଶହ ବର୍ଷ ତଳେ ଆଜିକାଲି ତୁଳନାରେ ପୃଥିବୀର ସବୁ ଦେଶର ସାଧାରଣ ଲୋକମାନେ ଅତି ଗରିବ ଥିଲେ । ଆଜିକାଲିର ବହୁ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ଓ ବିଳାସବ୍ୟସନ ସାମଗ୍ରୀ, ସେ କାଳରେ ଲୋକମାନଙ୍କୁ ଜଣା ନ ଥିଲା । ଆଜିକାଲି ଆମେରିକାରେ ବହୁ ସାଧାରଣ ଭାବେ ଧନୀ ପରିବାର ଚଞ୍ଚଳ ଯିବା ଆସିବା କରିବା ପାଇଁ ନିଜର ଉଡ଼ାଜାହାଜ ରଖିଛନ୍ତି । ଅତି ସାଧାରଣ ପରିବାର ମଧ୍ୟ ଘରେ ଦୁଇ ତିନି ଗୋଟି ମଟରଗାଡ଼ି ରଖିଛନ୍ତି । ମଟରଗାଡ଼ି, ଟେଲିଭିଜନ, ରେଡିଓ, କାମେରା, ଟେପ୍‌ରେକର୍ଡର, ଶୀତତାପ ନିୟନ୍ତ୍ରଣ ଯନ୍ତ୍ର, ରେଫ୍ରିଜରେଟର ପ୍ରଭୃତି ବହୁପ୍ରକାର ଯାନ୍ତ୍ରିକ ଓ ଇଲେକ୍‌ଟ୍ରୋନିକ୍ ପଦାର୍ଥ ଯେଉଁଗୁଡ଼ିକ ଆଜିକାଲି ସାଧାରଣ ବ୍ୟବହାର୍ଯ୍ୟ ପଦାର୍ଥ ହୋଇଛି, ଷାଠିଏ ସତୁରି ବର୍ଷ ତଳେ ମଧ୍ୟ ଲୋକମାନେ ସେଗୁଡ଼ିକ ଜାଣି ନ ଥିଲେ । ଘର କରିବା ପ୍ରଣାଳୀ ଓ ଘରମାନଙ୍କର ବିଭିନ୍ନ ସାଜସଜା ନିମ୍ନ ମାନର ଥିଲା । ଆଜିକାଲିର ରାସ୍ତାଘାଟ, ଯାନବାହାନର ସୁବିଧା ହୋଟେଲ ଏବଂ ବିଭିନ୍ନ ସ୍ଥାନରେ ରହିବାର ସୁବିଧା, ଦେଢ଼ଶହ ବର୍ଷ ତଳେ ଲୋକମାନେ ଚିନ୍ତା ସୁଦ୍ଧା କରିପାରୁ ନ ଥିଲେ । ପାଶ୍ଚାତ୍ୟ ଦେଶମାନଙ୍କରେ ଏହି ବିଳାସବ୍ୟସନ ସାମଗ୍ରୀ ସାଧାରଣ ଭାବେ ବ୍ୟବହୃତ ହେବା ପରେ ପୃଥିବୀର ସବୁ ଦେଶରେ ସେଗୁଡ଼ିକ ପ୍ରସାରଲାଭ କରିଛି । ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍‌ସ ଘର କଡ଼ରେ, ଦେଢ଼ଶହ ବର୍ଷ ତଳ ଔପନ୍ୟାସିକ ଡିକେନ୍‌ସଙ୍କ ସମୟର, ଗୋଟିଏ ଛୋଟ ପୁରୁଣାକାଳିଆ ଜିନିଷ ବିକ୍ରି କରୁଥିବା ଦୋକାନ ରହିଛି । ଚାରିପାଖରେ ଅତି ଉଚ୍ଚ ଆଧୁନିକ ଘର ମଝିରେ ଊନବିଂଶ ଶତାବ୍ଦୀର ଏହି କ୍ଷୁଦ୍ର ଘରଟି ସଂରକ୍ଷିତ ହୋଇଛି । ଏହି ଘରଟି ଗୋଟିଏ ଅତି ଛୋଟ ଖପର ଘର ଏବଂ ଏହା ଦେଢ଼ଶହ ବର୍ଷ ତଳର ଦୋକାନ ବଜାରର ଧାରଣା ଦିଏ । ଚତୁର୍ଦ୍ଦଶ ଓ

ପଞ୍ଚଦଶ ଶତାବ୍ଦୀର ଅଷ୍ଟମ ହେନେରୀଙ୍କ ସମସ୍ତର ରାଜପ୍ରାସାଦ ଲଣ୍ଡନ ଟାଓ୍ୱାର ଦେଖିଲେ, ସେ ସମସ୍ତର ରାଜପ୍ରାସାଦମାନ ଏବଂ ସେଥିରେ ରହିବା ପ୍ରଣାଳୀର ସୂଚନା ମିଳେ, ଲଣ୍ଡନର ପାର୍ଲିଆମେଣ୍ଟ ଘର ପାଖରେ ଓ୍ୱେଷ୍ଟ ମିନଷ୍ଟର ଆବେ ମ୍ୟୁଜିୟମ୍‌ରେ ଚତୁର୍ଦ୍ଦଶ ଓ ପଞ୍ଚଦଶ ଶତାବ୍ଦୀରେ ଇଂଲଣ୍ଡର ରାଣୀମାନେ ଯେଉଁ ସିନ୍ଦୁକମାନଙ୍କରେ ସେମାନଙ୍କର ଅଳଙ୍କାର ରଖୁଥିଲେ ତାହା ସଂରକ୍ଷିତ ହୋଇଛି । ସେ ସିନ୍ଦୁକ ସବୁ ଆମ ଦେଶର ଧନୀ ଘରମାନଙ୍କରେ ଅଳଙ୍କାର ଓ ଟଙ୍କା ପଇସା ରଖା ଯାଉଥିବା ସିନ୍ଦୁକ ପରି । ଆମେରିକାରେ ଦୁଇ ତିନିଶହ ବର୍ଷ ତଳେ ସାଧାରଣ ଲୋକମାନେ ଯେଉଁ ବାସନକୁସନ, ରାନ୍ଧିବାପାଇଁ ଡେକ୍‌ଚି, କରଚୁଲି ଏବଂ ଖାଇବାପାଇଁ କାଠଗ୍ଲାସ ବ୍ୟବହାର କରୁଥିଲେ ତାର ନମୁନା ସବୁ ମ୍ୟୁଜିଅମମାନଙ୍କରେ ରହିଛି । ଏ ସବୁ ଦେଖିଲେ, ଗତ ଦୁଇ ତିନିଶହ ବର୍ଷ ମଧ୍ୟରେ ଜୀବନଧାରଣର ମାନ ଯେ କଳ୍ପନାତୀତ ଭାବରେ ବଢ଼ିଯାଇଛି ତାହା ସହଜରେ ଅନୁମେୟ । ପାଶ୍ଚାତ୍ୟଦେଶମାନଙ୍କରେ ପୁରୁଣା କାଳର ନମୁନାମାନର ଚଳିବା ପଦାର୍ଥ ସବୁ ସମ୍ପୂର୍ଣ୍ଣ ଭାବେ ଲୋପ ପାଇ, ଅତି ସାଧାରଣ ଲୋକ ମଧ୍ୟ ଆଧୁନିକ ଜୀବନଯାପନ କରୁଛନ୍ତି । କିନ୍ତୁ ଆମ ଦେଶରେ ଅତି ଅଳ୍ପସଂଖ୍ୟକ ଲୋକ ସହରମାନଙ୍କରେ ଆଧୁନିକ ପ୍ରଣାଳୀରେ ଚଳୁଛନ୍ତି । ସାଧାରଣ ଲୋକଙ୍କର ଆଧୁନିକ ପଦାର୍ଥ ବ୍ୟବହାର କରିବା ଓ ପାଶ୍ଚାତ୍ୟ ଢଙ୍ଗରେ ଚଳିବାପାଇଁ ସମ୍ବଳ ଓ ସୁବିଧା ନାହିଁ ।

ଅତି ସାଧାରଣ ତଥ୍ୟ ଦ୍ୱାରା ବିଶ୍ଳେଷଣ କଲେ ଓଡ଼ିଶାରେ ଦାରିଦ୍ର୍ୟର ବ୍ୟାପକତା ସହଜରେ ଜଣାପଡ଼େ । ଓଡ଼ିଶାର ଲୋକସଂଖ୍ୟାର ଶତକଡ଼ା ପ୍ରାୟ ୨୩ ଭାଗ ଆଦିବାସୀ । ସେମାନେ ରାଜ୍ୟର ବିଭିନ୍ନ ଜିଲ୍ଲା, ବିଶେଷତଃ ପଶ୍ଚିମ ଓ ଦକ୍ଷିଣାଞ୍ଚଳ ଜିଲ୍ଲାମାନଙ୍କରେ ବଣଜଙ୍ଗଲ ପରିବେଶ ମଧ୍ୟରେ ବାସ କରନ୍ତି । ଅଧିକାଂଶ ଆଦିବାସୀଲୋକ ଛଅଗୋଟି ଜିଲ୍ଲାରେ ବାସ କରନ୍ତି । ସେଗୁଡ଼ିକ ହେଲା ଉତ୍ତରରେ ମୟୂରଭଞ୍ଜ, କେନ୍ଦୁଝର, ସୁନ୍ଦରଗଡ଼ ଏବଂ ଦକ୍ଷିଣରେ କଳାହାଣ୍ଡି, କୋରାପୁଟ ଓ ଫୁଲବାଣୀ । ୧୯୮୧ ମସିହା ଜନଗଣନା ଅନୁସାରେ ମୟୂରଭଞ୍ଜ ଜିଲ୍ଲାର ଲୋକସଂଖ୍ୟାର ଶତକଡ଼ା ପ୍ରାୟ ୫୮ ଭାଗ, କେନ୍ଦୁଝରରେ ୪୫ ଭାଗ, ସୁନ୍ଦରଗଡ଼ରେ ୫୧ ଭାଗ ଲୋକ ଆଦିବାସୀ । ସେହିପରି ଦକ୍ଷିଣରେ କଳାହାଣ୍ଡି ଜିଲ୍ଲାର ଲୋକସଂଖ୍ୟାର ଶତକଡ଼ା ପ୍ରାୟ ୩୧ ଭାଗ, କୋରାପୁଟରେ ୫୫ ଭାଗ, ଫୁଲବାଣୀରେ ୩୯ ଭାଗ ଲୋକ ଆଦିବାସୀ । ଏହି ଛଅଗୋଟି ଜିଲ୍ଲାରେ ଓଡ଼ିଶାର ଆଦିବାସୀ ଲୋକଙ୍କ ମଧ୍ୟରୁ ଶତକଡ଼ା ପ୍ରାୟ ୯୦ ଭାଗ ବାସ କରନ୍ତି । ବାକି ଦଶଭାଗ ଅନ୍ୟ ଜିଲ୍ଲାମାନଙ୍କରେ ବାସ କରନ୍ତି ।

ଆଦିମ କାଳରୁ ଆଜିପର୍ଯ୍ୟନ୍ତ ଆଦିବାସୀମାନେ ଦରିଦ୍ର, ନିରକ୍ଷର ଏବଂ ଅନୁନ୍ନତ ଭାବରେ ବନ, ଜଙ୍ଗଲ ଓ ପାହାଡ଼ ଅଞ୍ଚଳରେ ବାସକରି ଆସୁଛନ୍ତି । ନୃତ୍ୟ, ଗୀତ, ସରଳ ପ୍ରାକୃତିକ ଜୀବନ ସହିତ ସେମାନଙ୍କର ସଂସ୍କୃତିର ମାନ ଉଚ୍ଚ ହୋଇପାରେ, କିନ୍ତୁ ଖାଦ୍ୟ, ବସ୍ତ୍ର, ବାସଗୃହ ପ୍ରଭୃତି ଜୀବନଧାରଣପାଇଁ ଆର୍ଥିକ ସମ୍ବଳ ଅଭାବରେ ଯେ ସେମାନେ ଅତି ଗରିବ ଏ ବିଷୟରେ ଦ୍ୱିମତ ନାହିଁ । ଆଜିକାଲି ଯେଉଁସବୁ ମାପକାଠିରେ ଦାରିଦ୍ର୍ୟ ମାପ କରାଯାଉଛି, ସେ ସବୁ ମାପକାଠି ଅନୁସାରେ ସେମାନେ ସମସ୍ତେ ଦରିଦ୍ର । ସେମାନେ ହେଲେ ଓଡ଼ିଶାର ଲୋକସଂଖ୍ୟାର ପ୍ରାୟ ଶତକଡ଼ା ୨୩ ଭାଗ । ଆଦିମକାଳରୁ ବିଂଶ ଶତାବ୍ଦୀ ଆରମ୍ଭ ପର୍ଯ୍ୟନ୍ତ ସେମାନେ ଦରିଦ୍ର ଥିଲେ; ବିଂଶ ଶତାବ୍ଦୀ ଶେଷରେ ମଧ୍ୟ ସେମାନେ ସମସ୍ତେ ଦରିଦ୍ର ଅଛନ୍ତି । ସେମାନଙ୍କ ଅବସ୍ଥାରେ ବିଶେଷ ଉନ୍ନତି ହୋଇ ନାହିଁ ।

କଟକ ଜିଲ୍ଲାର ଆମ ଜଗତସିଂହପୁର ଅଞ୍ଚଳରେ ଆଦିବାସୀ ଲୋକ ନାହାନ୍ତି । ବସ୍ତୁତଃ ୧୯୪୮ ମସିହାରେ ମୁଁ ସମ୍ବଲପୁର କଲେଜରେ ଚାକିରି ଆରମ୍ଭ କଲାପର୍ଯ୍ୟନ୍ତ ଆଦିବାସୀ ଲୋକଙ୍କର ଘରଦ୍ୱାର, ଚଳିବା ପଦ୍ଧତି ଦେଖି ନ ଥିଲି । ସମ୍ବଲପୁରରେ ଦେଖିଲି ଯେ ସେମାନେ ସହରର ଉପକଣ୍ଠରେ ଥିବା କେତେ-ଗୋଟି ଆଦିବାସୀ ପଲ୍ଲୀରେ ଗୋଟିକିଆ ଗ୍ଲେଟ ଗ୍ଲେଟ ପାଳ ଛପର ଘରେ ରହୁଥାନ୍ତି । ଘର ଭିତର ଓ ବାହାର ଲିପାପୋଛା କରି ପରିଷ୍କାର ରଖିଥାନ୍ତି । ସ୍ତ୍ରୀଲୋକମାନେ ଯେଉଁ ଲୁଗାପଟା ପିନ୍ଧିଥାନ୍ତି ତାହା ମଧ୍ୟ ପରିଷ୍କାର । ଘର ଭିତରେ ଗୋଟାଏ ଦୁଇଟା ଦଉଡ଼ିଆ ଖଟ, ମାଟିହାଣ୍ଡି, ଗୋଟାଏ ଦୁଇଟା କଂସା ଓ ଆଲୁମିନିଅମ୍ ବାସନ ଏବଂ ଗୋଟାଏ ଖଣ୍ଡେ ଢୋଲ୍ ବ୍ୟତୀତ ଅନ୍ୟ କିଛି ଆସବାବପତ୍ର ନ ଥାଏ । ଅଧିକାଂଶ ପରିବାର କୁକୁଡ଼ା ରଖିଥାନ୍ତି ଏବଂ କେତେକ ପରିବାର ଦୁଇ ତିନିଟା ଲେଖାଏଁ ଛେଳି ରଖିଥାଆନ୍ତି । ଘର ଉଣ୍ଡି ବ୍ୟତୀତ ଅନ୍ୟ ସମ୍ପତ୍ତି ତାଙ୍କର କିଛି ନ ଥାଏ । ଉଭୟ ପୁରୁଷ ଓ ସ୍ତ୍ରୀଲୋକମାନଙ୍କର ଦେଶୀ ମଦ ପିଇବା ଅଭ୍ୟାସ ଥାଏ । ଉଭୟ ସ୍ତ୍ରୀ ଓ ପୁରୁଷ ଲୋକ ପାଖ ଗାଁମାନଙ୍କରେ କୃଷକାମ ଓ ସମ୍ବଲପୁର ସହରରେ ମଜୁରିଆ କାମ କରୁଥାନ୍ତି । ପରିବାରର ସ୍ତ୍ରୀ, ପିଲା ଓ ପୁରୁଷ ସମସ୍ତେ ସୁସ୍ଥ ଓ ସବଳ ଥିବାର ଜଣା ଯାଉଥିଲା । ମାତ୍ର ସେମାନେ ସମସ୍ତେ ନିରକ୍ଷର ଥିଲେ । ଆଦିବାସୀ ପରିବାରମାନଙ୍କ ମଧ୍ୟରୁ କେତେକ ଖ୍ରୀଷ୍ଟିଆନ ହୋଇ ଯାଇଥାନ୍ତି । ସେମାନେ ଖ୍ରୀଷ୍ଟିଆନ ହୋଇ ନ ଥିବା ପରିବାରମାନଙ୍କଠାରୁ ଅଧିକ ପରିମାର୍ଜିତ ହୋଇଥାନ୍ତି ଏବଂ ସେମାନେ ସମୟେ ସମୟେ ରବିବାର ଦିନ ପାଖରେ ଥିବା ଗୀର୍ଜାରେ ପ୍ରାର୍ଥନା ସଭାରେ ଯୋଗ ଦିଅନ୍ତି । ମୋଟ ଉପରେ ମୋ ଧାରଣା ଥିଲା ଯେ ଆଦିବାସୀମାନେ ସୁସ୍ଥ ସବଳ ଲୋକ ଏବଂ ବିଭିନ୍ନ ପ୍ରକାର ଶ୍ରମିକ ଭାବରେ କାମ କରି ଜୀବିକା ନିର୍ବାହ କରନ୍ତି । ମଦ ଖାଇବାଟା ସେମାନଙ୍କର

ସବୁଠାରୁ ବଡ଼ କୁ ଅଭ୍ୟାସ । ମାତ୍ର ପରେ କୋରାପୁଟ ଜିଲ୍ଲାର କେତେକ ଆଦିବାସୀ ଗ୍ରାମର ଲୋକମାନଙ୍କୁ ଦେଖି ମୋର ସେ ଧାରଣା ଠିକ୍ ନୁହେଁ ବୋଲି ଜାଣିଲି ।

୧୯୭୨ ମସିହାରେ ମୁଁ ପ୍ରାୟ ସାତଦିନ କୋରାପୁଟ ସହରରେ ରହିଥିଲି । କୋରାପୁଟ ଓ ଜୟପୁର ସହରରେ ଶ୍ରମିକ କାମ କରୁଥିବା ଅଧିକାଂଶ ଲୋକ ଆଦିବାସୀ । ସେମାନେ ସମ୍ବଲପୁର ଅଞ୍ଚଳରେ ଥିବା ଆଦିବାସୀଙ୍କ ପରି ବିଶେଷ ଲୁଗାପଟା ପିନ୍ଧି ନ ଥାନ୍ତି । ତଥାପି ସେମାନଙ୍କର ଶରୀର ମଧ୍ୟ ସୁସ୍ଥ ବୋଲି ଜଣା ପଡୁଥିଲା । କିନ୍ତୁ କୋରାପୁଟ ସହରଠାରୁ ପ୍ରାୟ ବାର ମାଇଲ ଦୂରରେ ଗୋଟିଏ ଗ୍ରେଟ ଜଳପ୍ରପାତ ଦେଖିବାକୁ ଯାଇଥିଲି । ସେଠାରେ ଗୋଟିଏ ଆଦିବାସୀ ଗାଁ ଥାଏ । ଆମେ ସେଠାରେ ପହଞ୍ଚିବାକ୍ଷଣି ସେ ଗାଁର ପିଲା, ଝିଅ, ବୁଢ଼ା ସମେତ ବିଭିନ୍ନ ବୟସର ଅନେକ ଲୋକ ଆମ ଗାଡ଼ିପାଖରେ ଜମା ହୋଇଗଲେ । ମୁଁ ଦେଖିଲି ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଦେହ ସୁସ୍ଥ ସବଳ ନ ଥିଲା । ପିଲାମାନଙ୍କର ଗୋଡ଼ ସରୁ ଏବଂ ପେଟ ବାହାରି ପଡ଼ିଥିଲା । ପିଲାଗୁଡ଼ାକ ଅଧିକାଂଶ ଲଙ୍ଗଳା ଏବଂ ବୟସ୍କ ଲୋକମାନେ କେବଳ କଉପୁନି ପିନ୍ଧିଥିଲେ । ଆମକୁ ସେଠାକୁ ଗାଡ଼ିରେ ନେଇଥିବା ଲୋକମାନେ ଜାଣିଥିଲେ ଯେ ଆମେ ପହଞ୍ଚିଲାକ୍ଷଣି ସେ ଗାଁର ଲୋକମାନେ ଆମ ଗାଡ଼ି ପାଖରେ ଘେରିଯିବେ ଏବଂ ଖାଇବାକୁ ମାଗିବେ । ସେଥିଯୋଗୁଁ ସେମାନେ କେତେଟା ପାଚିଲା କଦଳୀ କାନ୍ଧି ସଙ୍ଗରେ ନେଇଥିଲେ । ସେ କଦଳୀ କାନ୍ଧି ଗାଡ଼ିରୁ ଓହ୍ଲାଇଦେବା କ୍ଷଣି ସେ ଲୋକମାନେ କଦଳୀ ସବୁ କାନ୍ଧିରୁ ମାଙ୍କଡ଼ ପରି ଝାମ୍ପି ନେଇଗଲେ । ମୁଁ ସେମାନଙ୍କର ବେଶ, ସ୍ୱାସ୍ଥ୍ୟ, ବ୍ୟବହାର ଏବଂ ପାଖରେ ଥିବା ସେମାନଙ୍କର ଗାଁ ଓ ଘରଦ୍ୱାର ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ଆଖି ଆଗରେ ଦେଖିଲି ଜଣେ ବୁଢ଼ାଲୋକ ବଡ଼ ଝିଅଟିଏ ଧରିଥିଲା । ଗୋଟିଏ ଦାର ତେର ବର୍ଷର ପିଲା ବଡ଼ଟା ତା ପାଟିରୁ ଛଡ଼ାଇ ନେଇ ଖାଇ ପକାଇଲା । ଦେଖି ମନେହେଲା ଦାରିଦ୍ର୍ୟର ଯେଉଁଟା ଶେଷ ସୀମା । ଭାରତର ବିଭିନ୍ନ ସହରର ଭିକାରିମାନଙ୍କଠାରୁ ସେମାନେ ଅଧିକ ଗରିବ ବୋଲି ମନେହେଲା ।

ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ବାସ କରୁଥିବା ଆଦିବାସୀମାନଙ୍କର ଜୀବନ-ଧାରଣ ପଦ୍ଧତି, ଦାରିଦ୍ର୍ୟ, ଶିକ୍ଷା, ସଂସ୍କୃତି ବିଷୟରେ ବହୁ ବହି ଓ ଅନୁସନ୍ଧାନ ରିପୋର୍ଟ ବାହାରିଛି । ସେଥିରୁ ଗୋଟିଏ କଥା ସ୍ପଷ୍ଟ ଯେ ସବୁ ଜିଲ୍ଲାରେ ଆଦିବାସୀ-ମାନେ ସବୁଠାରୁ ଅଧିକ ଦରିଦ୍ର ଶ୍ରେଣୀର ଲୋକ । ସେମାନଙ୍କ ମଧ୍ୟରେ ସାକ୍ଷରତା ଶତକଡ଼ା ଦଶ ବାର ଭାଗରୁ କମ୍ । ଆଦିବାସୀ ସ୍ତ୍ରୀଲୋକମାନଙ୍କ ମଧ୍ୟରେ

ସାକ୍ଷରତା ଶତକଡ଼ା ମାତ୍ର ଦୁଇ ଜଣ ଥିବ । ପ୍ରାୟ ସବୁ ଜିଲ୍ଲାରେ ସେମାନଙ୍କ କୃଷି ପ୍ରଣାଳୀ ଅତି ଅନୁନ୍ନତ । କୋରାପୁଟ, ଫୁଲବାଣୀ ପ୍ରଭୃତି ଜିଲ୍ଲାର ଅନେକ ଅଞ୍ଚଳରେ ଆଜି ସୁଦ୍ଧା ପୋଡୁଚାଷ ପଦ୍ଧତି ପ୍ରଚଳିତ ଅଛି । ସବୁ ଜିଲ୍ଲାରେ ଆଦିବାସୀମାନେ ବଣଜଙ୍ଗଲ ଅଞ୍ଚଳରେ ସାଧାରଣତଃ ମଜୁରି ଲାଗି ଏବଂ ଜଙ୍ଗଲ ପଦାର୍ଥ ସଂଗ୍ରହ କରି ଜୀବନଯାପନ କରନ୍ତି । ସେମାନେ ଉତ୍ପାଦନ କରୁଥିବା ଧାନ ଚାଉଳ ଓ ଡାଲିଜାତୀୟ ପଦାର୍ଥ ବର୍ଷକୁ ଖର୍ଚ୍ଚପାଇଁ ଛଅ ସାତ ମାସରୁ ଅଧିକ ଯାଏ ନାହିଁ । ଅବଶେଷ ସମୟରେ ସେମାନେ ଚେରମୂଳ, ପଣସ ମଞ୍ଜି, ଆମ୍ବ କୋଇଲି ପ୍ରଭୃତି ଖାଇ ବଞ୍ଚି ରହନ୍ତି । ହାଣ୍ଡିଆ, ମହୁଲି ଓ ସଲପ ପ୍ରଭୃତି ମଦ ସବୁ ଆଦିବାସୀ ସଂପ୍ରଦାୟ ଲୋକମାନଙ୍କ ମଧ୍ୟରେ ପ୍ରଚଳିତ ।

କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମୟୂରଭଞ୍ଜ ଜିଲ୍ଲା କରଞ୍ଜିଆ ସବ୍‌ଡିଭିଜନର ଆଦିବାସୀମାନଙ୍କର ୧୯୧୦ଠାରୁ ୧୯୬୦ ମସିହା ମଧ୍ୟରେ ଜୀବନଧାରଣ ମାନ ବିଷୟରେ ତାଙ୍କ 'ମୋ ସମୟର ଓଡ଼ିଶା' ବହିରେ ଲେଖିଛନ୍ତି, ଏମାନଙ୍କ ଦାରିଦ୍ର୍ୟ ହିଁ ଏମାନଙ୍କ ସର୍ବପ୍ରଧାନ ଦୁର୍ବଳତା ଏବଂ ଏହି ଦାରିଦ୍ର୍ୟ ହିଁ ଅନେକ ସମୟରେ ଏମାନଙ୍କ ଗୁଣରାଶିକୁ ନାଶ କରିଥାଏ । ଏମାନେ ଯେଉଁ ଅଞ୍ଚଳରେ ବାସ କରନ୍ତି, ତାହା ଟାଙ୍କିଲ, ଅନୁର୍ବର ଏବଂ ସମ୍ପୂର୍ଣ୍ଣରୂପେ ବର୍ଷା ଉପରେ ନିର୍ଭରଶୀଳ । ଏମାନେ ଉନ୍ନତ ଧରଣର କୃଷି ପଦ୍ଧତି ଜାଣନ୍ତି ନାହିଁ । ଅଞ୍ଚଳଟି ବିସ୍ତୀର୍ଣ୍ଣ ହୋଇଥିଲେ ହେଁ, ଚାଷୋପଯୋଗୀ ଜମିର ପରିମାଣ ଅତ୍ୟଳ୍ପ । ଏଣୁ ଏ ଅଞ୍ଚଳ ଜନବହୁଳ ନ ହେଲେ ମଧ୍ୟ କୃଷିଜାତ ଦ୍ରବ୍ୟ ଜନସଂଖ୍ୟା ତୁଳନାରେ ପର୍ଯ୍ୟାପ୍ତ ନୁହେଁ । ଅଧିବାସୀମାନେ ଉଦ୍ୟମଶୀଳ ନୁହନ୍ତି । ଆବହମାନ କାଳରୁ ଏମାନେ ସ୍ୱଳ୍ପ କୃଷି ଜାତ ଦ୍ରବ୍ୟ ଉପରେ ନିର୍ଭର କରି ଉଦର ପୋଷଣ କରିଆସିଛନ୍ତି । ·· ୧ ବର୍ଷ ମଧ୍ୟରୁ ବହୁ ସମୟ ଅନାହାରରେ ରହୁଥିବାରୁ, ଖାଦ୍ୟ ମଧ୍ୟରେ ପୁଷ୍ଟିସାରର ନିତାନ୍ତ ଅଭାବ ଥିବାରୁ ରୋଗ ସମ୍ପର୍କରେ ନିତାନ୍ତ ନିଃସହାୟ ହୋଇ ପଡୁଥିବାରୁ ଏବଂ ଏମାନଙ୍କ ମଧ୍ୟରେ ଶିକ୍ଷାର ନିତାନ୍ତ ଅଭାବ ଥିବାରୁ ଏମାନଙ୍କ କର୍ମ ଶକ୍ତି ପଙ୍ଗୁ ହୋଇପଡ଼ିଛି ।

ଏମାନଙ୍କ ବାସଗୃହ ନିତାନ୍ତ କ୍ଷୁଦ୍ର । ପରସ୍ପରଠାରୁ ବିଚ୍ଛିନ୍ନ କେତୋଟି କୁଟୀର ହିଁ ଗୋଟିଏ ପରିବାରର ବାସଗୃହ ହୋଇଥାଏ । ଏମାନେ ପୂର୍ବବର୍ତ୍ତୀ ଘର ତିଆରି କରିବାର କୌଶଳ ଜାଣନ୍ତି ନାହିଁ । କାଠର ଅଭାବ ନ ଥିଲେ ମଧ୍ୟ କୌଣସି ବ୍ୟକ୍ତି କାଠ ସାହାଯ୍ୟରେ ବଡ଼ ମଜଭୁତ ଘର ତିଆରି କରୁ ନ ଥିଲେ । ବର୍ତ୍ତମାନ ଅନେକ କୁଟାରେ ଘର ଛାଉଣି କରୁଥିଲେ ହେଁ, ମୋ ପିଲାକାଳରେ ସମସ୍ତେ ଛାତପାଇଁ କୁଶ ଘାସ ବ୍ୟବହାର କରୁଥିଲେ । ଆସବାବ ମଧ୍ୟରେ କାହାର କାହାରି ଘରେ ଗୋଟିଏ ଯୋଡ଼ିଏ ଦଉଡ଼ିଆ ଖଟ ରହୁଥିଲା । ବିଛଣାପାଇଁ କେହି

କେନ୍ଦୁ ବନ୍ୟ ବାସନ ଖଜୁରୀ ପତ୍ରରେ ନିର୍ମିତ ପାଲ ବ୍ୟବହାର କରୁଥିଲେ । ଅନ୍ୟଥା ଅଧିକାଂଶଙ୍କର ଭୂମି ଶଯ୍ୟନ ହିଁ ଅନିବାର୍ଯ୍ୟ ଥିଲା ।

ଅଧିକାଂଶ ପରିବାରଙ୍କ ଘରେ ଆଷାଢ଼, ଶ୍ରାବଣ ବେଳକୁ ଧାନ ଶେଷ ହୋଇ ଯାଇଥାଏ । ଏମାନେ ନୂଆ ଧାନକୁ ଗୃହିଁ ରହିଥାନ୍ତି । କିନ୍ତୁ ବର୍ଷା ଅଭାବରୁ ଧାନ ଫସଲ ଯଦି ନଷ୍ଟ ହୋଇଯାଏ, ତେବେ ଅଧିବାସୀମାନେ ନିଶ୍ଚିତ ଅନାହାରର ସମ୍ମୁଖୀନ ହୁଅନ୍ତି । ମୋ ସମୟରେ ମୁଁ ଏ ଅଞ୍ଚଳରେ ଏକାଧିକ ଥର ଖଣ୍ଡ ଦୁର୍ଭିକ୍ଷ ବା ପୂର୍ଣ୍ଣ ଦୁର୍ଭିକ୍ଷ ସ୍ୱଚକ୍ଷୁରେ ଦେଖିଛି । ଲୋକମାନେ ଭାତ ଅଭାବରେ ଗୁଣ୍ଡୁଲୁ ଓ ପୁଆଁ ଗୃଉଳ, ଧାନକୁଣ୍ଡା ଓ ଖୁଦ, ମହୁଲ ଓ ମହୁଲ ଫଳର ଚ୍ଛେପା, ଶାଳଫଳ, ତେନ୍ତୁଳ ମଞ୍ଜି, ଆମ୍ବ, ଆମ୍ବଡ଼ା, କେନ୍ଦୁ, ବଟଫଳ, ଅଶ୍ୱତ୍ଥଫଳ, ଡିମ୍ବିରି ପ୍ରଭୃତି ନାନା ପ୍ରକାର ବନ ଫଳ ଏବଂ କାଇଁସିନା, ମନ୍ଦାରଙ୍ଗା, ସଜନାପତ୍ର, କାଞ୍ଚନପତ୍ର, ଅଶ୍ୱତ୍ଥପତ୍ର, ତେନ୍ତୁଳିପତ୍ର ପ୍ରଭୃତି ନାନା ପ୍ରକାର ବନ୍ୟ ଶାଗ ଓ ଗଛର ପତ୍ର ଖାଇ କୌଣସିମତେ ବଞ୍ଚି ରହନ୍ତି । ଏ ଅଞ୍ଚଳରେ ଆଦିବାସୀ-ମାନେ ସବୁ ସମୟରେ ଗେଣ୍ଡା, କୋଚଆ, ଝିଡ଼ିପୋକ, କାଇଡିମ୍ବ ଇତ୍ୟାଦି ଖାଇଥାନ୍ତି । ଦୁର୍ଭିକ୍ଷ ସମୟରେ ଏମାନେ ଏସବୁ ଖାଦ୍ୟର ପୂର୍ଣ୍ଣ ସଦ୍‌ବ୍ୟବହାର କରିଥାନ୍ତି । "···ଦୁର୍ଭିକ୍ଷ ବା ଖଣ୍ଡ ଦୁର୍ଭିକ୍ଷ ଚାଲିଯାଏ ଏବଂ ସେଥିରେ ଅନେକ ବ୍ୟକ୍ତି ଅଳ୍ପାହାର ବା ଅନାହାରରେ ପ୍ରାଣ ହରାନ୍ତି । ଯେଉଁମାନେ ବଞ୍ଚିରହନ୍ତି, ସେମାନଙ୍କର ରୋଗ ସହିତ ଯୁଦ୍ଧ କରିବାର ଶକ୍ତି ରହେ ନାହିଁ ।"

ମୋଟ ଉପରେ ସ୍ୱାଧୀନତା ପୂର୍ବରୁ ମୟୂରଭଞ୍ଜ ରାଜ୍ୟର ଆଦିବାସୀ-ମାନଙ୍କର ଏହି ଅବସ୍ଥା ବର୍ଣ୍ଣନା ଓଡ଼ିଶାର ବିଭିନ୍ନ ଗଡ଼ଜାତ ରାଜ୍ୟରେ ଏବଂ କୋରାପୁଟ ଜିଲ୍ଲା ଏବଂ ଗଞ୍ଜାମ ମାଳ ଅଞ୍ଚଳରେ ବାସ କରୁଥିବା ସବୁ ଆଦିବାସୀ ଲୋକମାନଙ୍କପାଇଁ ପ୍ରଯୁଜ୍ୟ । କୋରାପୁଟ, କଳାହାଣ୍ଡି, ଫୁଲବାଣୀ ଓ କେନ୍ଦୁଝର ପ୍ରଭୃତି ଜିଲ୍ଲାମାନଙ୍କରେ ଆଭ୍ୟନ୍ତରୀଣ ଅଞ୍ଚଳରେ ବାସ କରୁଥିବା ଆଦିବାସୀମାନଙ୍କର ଅବସ୍ଥା ଏହାଠାରୁ ଆହୁରି ଖରାପ ବୋଲି ବିଭିନ୍ନ ଅନୁସନ୍ଧାନ ରିପୋର୍ଟରୁ ଜଣାଯାଏ ।

ସ୍ୱାଧୀନତା ପରେ ଭାରତର ନୂତନ ସମ୍ବିଧାନ ଅନୁସାରେ ଅନୁସୂଚୀତ ବିଭିନ୍ନ ଆଦିବାସୀ ସମ୍ପ୍ରଦାୟର ଲୋକମାନଙ୍କ ମଧ୍ୟରେ ଶିକ୍ଷା ପ୍ରସାରପାଇଁ, ସ୍କୁଲ କଲେଜମାନଙ୍କରେ ସ୍ଥାନ ସଂରକ୍ଷଣ କରାଯାଇଛି, ଦରମା ଛାଡ଼ କରାଯାଇଛି ଏବଂ ବିଭିନ୍ନ ପ୍ରକାର ଛାତ୍ର ବୃତ୍ତି ଦିଆଯାଇଛି । ଶିକ୍ଷିତ ଓ ଅଳ୍ପଶିକ୍ଷିତ ଆଦିବାସୀମାନଙ୍କ କର୍ମସଂସ୍ଥାନପାଇଁ ସରକାରୀ ଏବଂ ସରକାରୀ ସାହାଯ୍ୟପ୍ରାପ୍ତ ସଂସ୍ଥାମାନଙ୍କରେ,

ସ୍ତ୍ରକଭରମାନଙ୍କରେ ସ୍ଥାନ ସଂରକ୍ଷଣ କରାଯାଇଛି । ପାର୍ଲିଆମେଣ୍ଟ ଏବଂ ବିଧାନସଭା-ମାନଙ୍କରେ ସେମାନଙ୍କପାଇଁ ମଧ୍ୟ ସ୍ଥାନ ସଂରକ୍ଷଣ କରାଯାଇଛି । ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମମାନଙ୍କରେ ସେମାନଙ୍କୁ ବିଭିନ୍ନ ଧନ୍ଦାରେ ନିୟୋଜିତ କରିବାପାଇଁ, ଅଳ୍ପସୁଧରେ ବ୍ୟାଙ୍କ୍ ଓ ସମବାୟ ସମିତି ମାଧ୍ୟମରେ ଋଣ ଯୋଗାଇ ଦିଆଯାଉଛି । ସମବାୟ ସମିତିମାନଙ୍କ ମାଧ୍ୟମରେ ସେମାନଙ୍କ ଉତ୍ପାଦିତ ପଦାର୍ଥ କିଣିବା ଏବଂ ସେମାନଙ୍କର ବିଭିନ୍ନ ଧନ୍ଦାପାଇଁ କଞ୍ଚାମାଲ ଓ ଋଣ ପ୍ରଭୃତି ଯୋଗାଇ ଦେବାପାଇଁ ଉଦ୍ୟମ ହୋଇଛି । ଆଦିବାସୀ ଅଞ୍ଚଳମାନଙ୍କରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ଶିଳ୍ପ ଓ ଖଣିମାନଙ୍କରେ ଆଦିବାସୀ ଲୋକମାନେ କାମ ପାଇ ପାରୁଛନ୍ତି । କୃଷି, ପଶୁପାଳନ, ରେଶମଚାଷ, ସବାଇଘାସ ଶିଳ୍ପ ଏବଂ ଅନ୍ୟ ବହୁ ପ୍ରକାର କୁଟୀର ଶିଳ୍ପ ଦ୍ୱାରା ସେମାନଙ୍କର ଆର୍ଥିକ ଅବସ୍ଥା ଉନ୍ନତିପାଇଁ ବହୁ ଲକାର ଉଦ୍ୟମ କରାଯାଇଛି । ଆଦିବାସୀମାନେ ରାଜ୍ୟର ବିଭିନ୍ନ ସହରକୁ ଯାଇ ଗୃହ ନିର୍ମାଣ, ରାସ୍ତାଘାଟ ନିର୍ମାଣ ପ୍ରଭୃତି କାର୍ଯ୍ୟରେ ଶ୍ରମିକ ଭାବରେ କାମ କରୁଛନ୍ତି । ତଥାପି ସେମାନଙ୍କର ଦାରିଦ୍ର୍ୟ କାଳ କାଳ ଧରି ଏତେ ଉତ୍କଟ ଥିଲା ଯେ ଶତାବ୍ଦୀ ଶେଷରେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକଙ୍କର ଅବସ୍ଥାରେ ବିଶେଷ ଉନ୍ନତି ହୋଇପାରି ନାହିଁ ।

୧୯୮୯ ମସିହାରେ ଆମ୍ଭେମାନେ ଭୁବନେଶ୍ୱରରେ ଥିବା ଉନ୍ନୟନ ଗବେଷଣା କେନ୍ଦ୍ର ତରଫରୁ ଓଡ଼ିଶାର ଆଦିବାସୀ ବହୁଳ ଛଅଗୋଟି ଜିଲ୍ଲା, ମୟୂରଭଞ୍ଜ, କେନ୍ଦୁଝର, ସୁନ୍ଦରଗଡ଼, କୋରାପୁଟ, କଳାହାଣ୍ଡି ଓ ଫୁଲବାଣୀ ଜିଲ୍ଲାର ଆଦିବାସୀମାନଙ୍କର ଆର୍ଥିକ ଅବସ୍ଥା ଉପରେ ଗୋଟିଏ ସର୍ବେକ୍ଷଣ କରାଇଥିଲୁ । ସେହି ସର୍ବେକ୍ଷଣରୁ ବିଂଶ ଶତାବ୍ଦୀର ଶେଷ ଦଶକରେ ଓଡ଼ିଶାର ଆଦିବାସୀମାନଙ୍କର ଆର୍ଥିକ ଅବସ୍ଥା ଓ ଜୀବନଯାପନ ପ୍ରଣାଳୀ ବିଷୟରେ ଅନେକ ତଥ୍ୟ ମିଳିଥିଲା । ସର୍ବେକ୍ଷଣରୁ ଜଣାଯାଇଥିଲା ଯେ, ଶତକଡ଼ା ୨୨ ଭାଗ ଆଦିବାସୀ ପରିବାର ଭୂମିହୀନ ଥିଲେ । କଳାହାଣ୍ଡି ଏବଂ ସୁନ୍ଦରଗଡ଼ ଜିଲ୍ଲାର ଆଦିବାସୀ-ମାନଙ୍କ ମଧ୍ୟରେ ଅଧିକ ସଂଖ୍ୟକ ଭୂମିହୀନ ପରିବାର ଥିଲେ; ମାତ୍ର ଫୁଲବାଣୀ ଜିଲ୍ଲାରେ ସେମାନଙ୍କ ସଂଖ୍ୟା କମ୍ । ଜମିଥିବା ଆଦିବାସୀଙ୍କର ସାଧାରଣତଃ ଅଢ଼େଇ ଏକରରୁ ତିନି ଏକର ପର୍ଯ୍ୟନ୍ତ ଜଳସେଚନ ସୁବିଧା ବିହୀନ ନିମ୍ନମାନର ଜମି ଥିଲା ।

ଶତକଡ଼ା ୯୯ ଭାଗ ଆଦିବାସୀଙ୍କର ଘରେ ମାଟି କମ୍ବା ଝାଟିମାଟି କାନ୍ଥ ଏବଂ ୭୦ ଭାଗ ଗୃହ ପାଳ, ଜୁଣ କମ୍ବା ପତର ଛପର ଘର ଥିଲା । ଶତକଡ଼ା ୩୦ ଭାଗ ମାଟି ଘରେ ଖପର ଛପର ହୋଇଥିଲା । ଘର ମଧ୍ୟରେ ସାଧାରଣତଃ

ଦୁଇଟି ଶ୍ରେଷ୍ଠ କୋଠରି ଥାଏ । ଏହି ଦୁଇଟି କୋଠରିରେ ଶୋଇବା, ରୋଷେଇ କରିବା, ପୂଜା କରିବା, ଛେଳି, କୁକୁଡ଼ା, ବଳଦ ପ୍ରଭୃତି ରଖିବା ସବୁ କାମ ଚଳେ । ପଶୁ ସମ୍ପଦ ମଧ୍ୟରେ ବଳଦ ଦୁଇଟି, କେତେକ ଛେଳି, ମେଣ୍ଢା, ଘୁଷୁରି ଏବଂ କୁକୁଡ଼ା । ଘରର ଆସବାବ ମଧ୍ୟରେ କେତେ ଖଣ୍ଡ ଆଲୁମିନିୟମ୍ ବାସନ ଓ ଦଉଡ଼ିଆ ଖଟ ଏବଂ କୃଷି ଉପକରଣ ଲଙ୍ଗଳ, ଟାଙ୍ଗିଆ, କୋଡ଼, କୋଦାଳ, ଦାଆ ପ୍ରଭୃତି ।

ଆଦିବାସୀ ପରିବାରରଁ ଉଭୟ ପୁରୁଷ ଓ ନାରୀ କୃଷି ଓ ମଜୁରିରେ କାମ କରନ୍ତି । କୃଷିକାମ, ଦିନମଜୁରି, ଜଙ୍ଗଲ ଜାତ ଦ୍ରବ୍ୟ ସଂଗ୍ରହ ଏବଂ ଛେଳି, ମେଣ୍ଢା ଓ କୁକୁଡ଼ା ପ୍ରଭୃତି ପାଳି ଜୀବିକା ନିର୍ବାହ କରନ୍ତି । ବର୍ଷକ ମଧ୍ୟରେ ହାରାହାରି ୨୦୫ ଦିନ ଏ ସବୁ କାର୍ଯ୍ୟରେ ଲାଗିଥାନ୍ତି ଏବଂ ବର୍ଷରେ ପ୍ରାୟ ସାଢ଼େ ଛଅମାସ ହାତରେ କିଛି କାମ ନ ଥାଏ । ଯଦିଓ ସରକାର ସର୍ବନିମ୍ନ ମଜୁରି ହାର ଦିନକୁ ୨୫ ଟଙ୍କା ଘୋଷଣା କରିଛନ୍ତି, ଆଦିବାସୀ ଜିଲ୍ଲାମାନଙ୍କରେ ମଜୁରି ହାର ଦିନକୁ ଆଠ ଟଙ୍କା ଥିଲା । ସାଧାରଣ ପାଞ୍ଚଜଣିଆ ଆଦିବାସୀ ପରିବାରମାନଙ୍କର ବାର୍ଷିକ ଆୟ ହାରାହାରି ୪୦୦୦ ଟଙ୍କା ଥିଲା । ଅର୍ଥାତ୍ ଦିନକୁ ଦଶ ଏଗାର ଟଙ୍କାରୁ ବେଶୀ ନ ଥିଲା । ତେଣୁ ଅଧିକାଂଶ ଆଦିବାସୀ ପରିବାର ଦାରିଦ୍ର୍ୟ ସୀମାରେଖା ତଳେ ରହିଥିଲେ । ଆୟ ଠାରୁ ବ୍ୟୟ ସବୁବେଳେ ଅଧିକ ଥିବାରୁ, ପ୍ରତି ପରିବାରର କିଛି କିଛି ଋଣ ସବୁବେଳେ ଥାଏ । ମୋଟ ଖର୍ଚ୍ଚର ଶତକଡ଼ା ପ୍ରାୟ ୪୦ ଭାଗ ସେମାନେ ଖାଦ୍ୟ ଉପରେ ଖର୍ଚ୍ଚ କରନ୍ତି । ଓଡ଼ିଶାରେ ହାରାହାରି ଭାବରେ ଜଣେ ସାବାଳକ ଲୋକ ଚାଉଳ, ଗହମ, ମାଣ୍ଡିଆ ପ୍ରଭୃତି ଖାଦ୍ୟ ଦିନକୁ ୭୨୦ ଗ୍ରାମ୍ ବ୍ୟବହାର କରୁଥିବା ସ୍ଥଳେ, ଜଣେ ସାଧାରଣ ଆଦିବାସୀ ଲୋକର ଏପରି ଖାଦ୍ୟର ପରିମାଣ ହାରାହାରି ୩୨୫ ଗ୍ରାମ୍‌ରୁ ୪୭୦ ଗ୍ରାମ୍ ଥିଲା । ଦୈନିକ ଖାଦ୍ୟ ପରିମାଣ ତାଙ୍କ ଶରୀର ରକ୍ଷାପାଇଁ ଯଥେଷ୍ଟ ନ ଥିଲା । ନିଜ ଜମିରୁ ଉତ୍ପାଦିତ ଖାଦ୍ୟରେ ଜାନୁଆରୀଠାରୁ ମାର୍ଚ୍ଚମାସ ଶେଷ ପର୍ଯ୍ୟନ୍ତ ମାତ୍ର ଚଳିଯାଏ । ଅପ୍ରେଲଠାରୁ କଣା ଚାଉଳ ସହିତ ଜଙ୍ଗଲଜାତ ଫଳମୂଳ ଉପରେ ନିର୍ଭର କରିବାକୁ ପଡ଼େ । ପ୍ରାୟ ସବୁ ପରିବାର ଅଭ୍ୟାସଗତ ଭାବରେ ସଲପ, ମହୁଲି ଏବଂ ଖଜୁରୀରସ ମଦ ବ୍ୟବହାର କରନ୍ତି । ଲୁଗାପଟା ଉପରେ ମୋଟ ଖର୍ଚ୍ଚର ଶତକଡ଼ା ୭ ଭାଗ ଏବଂ ବିଭିନ୍ନ ପ୍ରକାର ପୂଜା, ପୁନିଅଁ, ପରବ ଉପରେ ମଧ୍ୟ ସେହି ସାତ ଭାଗ ଖର୍ଚ୍ଚ ହୁଏ । ଆଦିବାସୀ ଲୋକମାନଙ୍କ ମଧ୍ୟରେ ମାତ୍ର ଶତକଡ଼ା ୫ରୁ ୧୫ ଜଣ ସାକ୍ଷର ଥିଲେ । ଶିକ୍ଷା ଓ ସ୍ୱାସ୍ଥ୍ୟ ଉପରେ ସେମାନଙ୍କର ବାର୍ଷିକ ଖର୍ଚ୍ଚ ନଗଣ୍ୟ ଥିଲା ଏବଂ ଏ ସବୁ ବିଷୟରେ ସେମାନେ ମୋଟେ ସଚେତନ

ନ ଥିଲେ । ଏହା ହେଉଛି ୧୯୯୦ ମସିହାବେ ଅର୍ଥାତ୍ ଶତାବ୍ଦୀର ଶେଷରେ ଓଡ଼ିଶାର ଆଦିବାସୀ ଲୋକମାନଙ୍କ ଜୀବନଯାପନ ପ୍ରଣାଳୀର ଚିତ୍ର । ସେମାନଙ୍କର ସଂଖ୍ୟା ଆମ ରାଜ୍ୟ ଲୋକସଂଖ୍ୟାର ଶତକଡ଼ା ପ୍ରାୟ ୨୩ ଭାଗ । କିଁ ଭିଁ କେତେକ ଆଦିବାସୀ ପରିବାରକୁ ଛାଡ଼ିଦେଲେ ସେମାନେ ପ୍ରାୟ ସମସ୍ତେ ଗରିବ ।

ଆଦିବାସୀଙ୍କ ବ୍ୟତୀତ ଓଡ଼ିଶାର ଲୋକସଂଖ୍ୟାର ଶତକଡ଼ା ଆଉ ପ୍ରାୟ ପନ୍ଦର ଭାଗ ଧୋବା, ବାଉରି, କଣ୍ଡରା, ଡମ, ପାଣ, ଚମାର ପ୍ରଭୃତି ବିଭିନ୍ନ ହରିଜନ ଓ ଅନୁସୂଚିତ ଜାତିର ଲୋକ । ମୟୂରଭଞ୍ଜ, କେନ୍ଦୁଝର, ସୁନ୍ଦରଗଡ଼, କୋରାପୁଟ ଏହି ଚାରିଗୋଟି ଜିଲ୍ଲାକୁ ଛାଡ଼ିଦେଲେ ଆଉ ସବୁ ଜିଲ୍ଲାରେ ଅନୁସୂଚିତ ଜାତିର ଲୋକଙ୍କର ସଂଖ୍ୟା ଶତକଡ଼ା ୧୬½ ୧୯ ଭାଗ ମଧ୍ୟରେ । କଟକ, ବାଲେଶ୍ୱର, କଳାହାଣ୍ଡି ପ୍ରଭୃତି ଜିଲ୍ଲାରେ ଅନୁସୂଚିତ ହରିଜନ ସମ୍ପ୍ରଦାୟର ଲୋକମାନଙ୍କର ଅନୁପାତ ଅଧିକ । ସଂଖ୍ୟା ହିସାବରେ କଟକ, ପୁରୀ, ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ ସେମାନଙ୍କ ସଂଖ୍ୟା ଅଧିକ । ଆଦିବାସୀଙ୍କ ପରି ପୃଥକ ଭାବରେ ଅନୁସୂଚିତ ଜାତିର ଲୋକମାନଙ୍କର ଆର୍ଥିକ ଅବସ୍ଥା ବିଷୟରେ ପରିସଂଖ୍ୟାନଗତ ତଥ୍ୟ ମିଳେ ନାହିଁ । କିନ୍ତୁ ପିଲାକାଳରୁ ଆଜଯାଏ ମୁଁ ଆମ ଅଞ୍ଚଳରେ ଏବଂ ଅନ୍ୟ ଜିଲ୍ଲାମାନଙ୍କରେ ସେମାନଙ୍କ ଅବସ୍ଥା ଦେଖୁଛି । ସେମାନଙ୍କର ଜମିବାଡ଼ି, ଘରଦ୍ୱାର, ଘରର ଆସବାବପତ୍ର, ଖାଦ୍ୟପେୟ, ଶିକ୍ଷା, ସ୍ୱାସ୍ଥ୍ୟ ଏବଂ ଆୟବ୍ୟୟ ପ୍ରଭୃତି ବିଷୟରେ ସାଧାରଣ ଲୋକମାନଙ୍କର ମଧ୍ୟ ଧାରଣା ଅଛି । ମୋଟାମୋଟି ଭାବରେ ମୋର ଧାରଣା ଯେ, ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ହରିଜନମାନଙ୍କ ଅବସ୍ଥା ଆଦିବାସୀମାନଙ୍କଠାରୁ ଟିକିଏ ଉନ୍ନତ । ସେମାନେ ଅନ୍ୟ ଜାତିମାନଙ୍କ ସହି ଚଳି ଉଚ୍ଚ ଜାତିମାନଙ୍କ ଜୀବନଯାପନ ପ୍ରଣାଳୀ ଅନୁକରଣ କରନ୍ତି । କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କର ଜମିବାଡ଼ି ନାହିଁ । ଖୁବ୍ ବେଶି ହେଲେ ସେମାନଙ୍କ ମଧ୍ୟରୁ ଅଳ୍ପସଂଖ୍ୟକ ପରିବାରଙ୍କର ଅଧ ଏକରରୁ ଦୁଇ ବା ଅଢ଼େଇ ଏକର ଜମି ଅଛି । ଆଜିକାଲି ଅଧିକାଂଶଙ୍କର ଗୁଣ୍ଠେ ଦୁଇଗୁଣ୍ଠ ଘର ଜାଗା ଉପରେ ସ୍ୱତ୍ୱ ବା ସିକମି ସ୍ୱତ୍ୱ ଅଛି । ଆଗେ ସେ ସ୍ୱତ୍ୱ ନ ଥିଲା । ସେମାନେ ଅନ୍ୟମାନଙ୍କ ବାଡ଼ିବଗିଚାରେ ପ୍ରଜା ହୋଇ ଛୋଟ ଛୋଟ ଘର କରି ବାସ କରୁଥିଲେ । ସେମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ କୃଷି ଶ୍ରମିକ । ଅନ୍ୟମାନଙ୍କ ଚାଷ ଜମିର ହଳିଆ, ମୂଲିଆ ହୋଇ କାମ କରନ୍ତି । ଏହି କାମ ସେମାନେ ପୁରୁଷାନୁକ୍ରମେ ଆଜିଯାଏ କରି ଆସୁଛନ୍ତି । ଅନେକ ପରିବାର ମଧ୍ୟ ଆଜିକାଲି ହଳବଳଦ ରଖି ଅନ୍ୟମାନଙ୍କ ଠାରୁ ଦୁଇ ତିନି ଏକର ଜମି ଆଣି ଭାଗଚାଷ କରୁଛନ୍ତି ।

ଭାଗଚାଷ ଜମିର ଉତ୍ପାଦନରୁ ଜମିମାଲିକ ଅଧେ ନିଏ ଏବଂ ଚାଷୀ ଅଧେ ନିଏ । ଭାଗଚାଷ ଆଇନ ସବୁ ଗ୍ରାମରେ ପଚିଶବର୍ଷ ହେଲା ପାସ୍ ହୋଇଥିଲେ

ସୁଦ୍ଧା ଆଜଯାଏ ଏହି ବ୍ୟବସ୍ଥା ଚାଲିଛି । ଅନ୍ୟମାନଙ୍କ ଚାଷ ଜମିରେ ମଜୁରି କରିବା, ଏମାନଙ୍କର ଜୀବିକା ଅର୍ଜନ କରିବାର ପ୍ରଧାନ ପନ୍ଥା । ଚାଷକାମ ନ ଥିବା ଋତୁରେ ଏମାନଙ୍କ ହାତରେ କାମ ନ ଥାଏ । ବର୍ଷରେ ପ୍ରାୟ ଦୁଇ ତିନିମାସ ଏମାନେ ନିକମା ରହିଯାନ୍ତି । ବଢ଼ି, ମରୁଡ଼ି ଓ ଖାଦ୍ୟାଭାବ ପରିସ୍ଥିତିର ଏମାନେ ପ୍ରଥମ ଶିକାର ହୁଅନ୍ତି । ଘରେ ପିଲାଛୁଆ ଅଧିକ । ବର୍ଷରେ ସବୁଦିନେ ପେଟ ପୂରାଇ ଖାଇବାକୁ ମିଳେ ନାହିଁ । ଘରର ଆସବାବ ମଧ୍ୟରେ କଂସା ବାସନ କେତେଖଣ୍ଡ, ଛେଳି, ମେଣ୍ଢା, ଘୁଷୁରି, କୁକୁଡ଼ା ପ୍ରଭୃତି କେତେକ ଜୀବ ଏବଂ ଅନେକ ପରିବାରରେ ଚାଷ କରିବା ପାଇଁ ସାଧାରଣତଃ ଏକହଳ ବଳଦ । ଦିନ ମଜୁରିରୁ କୁଟୁମ୍ବ ଚଳିବା କଥା । ହାତରେ ସଞ୍ଚିତ ଧାନ କିମ୍ବା ଟଙ୍କା କିଛି ନ ଥାଏ, ଅଧିକାଂଶ ପରିବାରଙ୍କର କିଛିନା କିଛି ଧାର କରଜ ଥାଏ । ହରିଜନମାନେ ସାଧାରଣତଃ ମଦ୍ୟପାନ କରନ୍ତି ନାହିଁ । ସମୟେ ସମୟେ ପୁରୁଷ ଲୋକମାନେ ଖଜୁରିରସ ମଦ ବ୍ୟବହାର କରନ୍ତି, ସ୍ତ୍ରୀ ଲୋକମାନେ ସାଧାରଣତଃ କୌଣସି ପ୍ରକାର ମଦ୍ୟପାନ କରନ୍ତି ନାହିଁ । ଆମ୍ଭମାନଙ୍କ ଦେଖିବାରେ, ଆଜିପର୍ଯ୍ୟନ୍ତ ଏମାନେ ପ୍ରାୟ ସମସ୍ତେ ଗରିବ ଏବଂ ଅଧିକାଂଶ ଲୋକ ନିରକ୍ଷର । ସ୍ତ୍ରୀଲୋକମାନଙ୍କ ମଧ୍ୟରେ ସାକ୍ଷରତା ଅନୁପାତ ଅତି ଅଳ୍ପ । ଏବେ ସେମାନଙ୍କପାଇଁ ସ୍କୁଲ କଲେଜରେ ସ୍ଥାନ ସଂରକ୍ଷଣ ହୋଇଛି ଏବଂ ସବୁ ପ୍ରକାର ଚାକିରିରେ ମଧ୍ୟ ସ୍ଥାନ ସଂରକ୍ଷଣ ହୋଇଛି । ମାତ୍ର ସେମାନଙ୍କର ପରିବାରର ପରିସ୍ଥିତି ଏପରି ଯେ, ସେମାନେ ଏ ସବୁ ସୁବିଧାର ଆଶାଜନକ ସୁଯୋଗ ନେଇ ପାରୁନାହାନ୍ତି । ବିଂଶ ଶତାବ୍ଦୀର ଶେଷ ଦଶକରେ ପୁଣି ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ହରିଜନ ପରିବାରଙ୍କ ଆର୍ଥିକ ଅବସ୍ଥା ଅନୁଧ୍ୟାନ କଲେ ଜଣାଯାଏ ଯେ, ଅଳ୍ପ କେତେକ ପରିବାରଙ୍କୁ ଛାଡ଼ିଦେଲେ, ଏ ଜାତିମାନଙ୍କର ଲୋକମାନେ ପ୍ରାୟ ସମସ୍ତେ ଦାରିଦ୍ର୍ୟ ସୀମାରେଖା ତଳେ ଅଛନ୍ତି । ଦାରିଦ୍ର୍ୟ ସୀମା ଅର୍ଥ ସାଧାରଣ ଖାଇବା ପିଇବାର ଅଭାବ ।

ପ୍ରାୟ ପଚାଶ ବର୍ଷ ତଳେ ଦେଖୁଥିଲି ଯେ, ଆମ ଗାଁ ଓ ଆଖପାଖ ଗାଁ ମାନଙ୍କରେ ହରିଜନ ପରିବାରର ଲୋକମାନେ ଆମ୍ଭମାନଙ୍କ ଘରେ କୋଠିଆ, ଚାକର, ମୂଲିଆ ହୋଇ ଚଳୁଥିଲେ ଏବଂ ଗାଁର ସ୍ୱଚ୍ଛଳ ପରିବାରମାନଙ୍କର ଦାଢ଼ି ବଗିଚାରେ ପ୍ରଜା ଭାବରେ ଘରକରି ରହୁଥିଲେ । ଆଜି ମଧ୍ୟ ସେହି କଥା ଦେଖୁଛି । ତେବେ ଏତିକି ଉନ୍ନତି ଦେଖୁଛି ଯେ, ଘର ଭିହ ଉପରେ ସେମାନଙ୍କର ସ୍ୱତ୍ୱ ସାବ୍ୟସ୍ତ ହୋଇଛି । ଏହାର ମଧ୍ୟ ଦେଖୁଛି ଯେ, ସ୍କୁଲ କଲେଜରେ ସ୍ଥାନ ସଂରକ୍ଷଣ ହେତୁ ଅନେକ ହରିଜନ ଘରର ପିଲା ସ୍କୁଲ କଲେଜରେ ପଢୁଛନ୍ତି । କେତେକ

ମଧ୍ୟ ସହରରେ ସରକାରୀ ଓ ବେସରକାରୀ ସଂସ୍ଥାମାନଙ୍କରେ ଚାକିରି କରୁଛନ୍ତି । ଆମ ଗାଁ ପାଖରେ ଧୋବା, ବାଉରି, କଣ୍ଡରା ପ୍ରାୟ ପଚାଶ ପରିବାର ମଧ୍ୟରୁ ପ୍ରାୟ ଚାରି ପାଞ୍ଚଜଣ ତଳସ୍ତର ତୃତୀୟ ଚତୁର୍ଥ ଶ୍ରେଣୀ ଚାକିରିରେ ନିଯୁକ୍ତ ଅଛନ୍ତି । ଏଇଟା ବର୍ତ୍ତମାନ କଳାମେଘର ଚାରିପାଖରେ ଧଳାରେଖା ପରି । ପଚାଶ ବର୍ଷ ତଳେ ମେଘଟା ପୁରା କଳା ଥିଲା, ଧଳାରେଖା ମୋଟେ ନ ଥିଲା । ସେତେବେଳେ ସେମାନଙ୍କ ମଧ୍ୟରେ ପୁରୁଷ, ସ୍ତ୍ରୀ, ପିଲା ପ୍ରାୟ ସମସ୍ତେ ନିରକ୍ଷର ଥିଲେ । ଆମେ ପ୍ରାଥମିକ ସ୍କୁଲରେ ପଢୁଥିଲାବେଳେ ସ୍କୁଲର ପ୍ରଥମ ଶ୍ରେଣୀରେ ଗୋଟିଏ ପାଣପିଲା ପଢୁଥିଲା । ସେ ଆମ ସଙ୍ଗରେ ସ୍କୁଲଘର ଭିତରେ ନ ବସି ବାରଣ୍ଡାରେ ଏକାକିଆ ବସେ । ମାଷ୍ଟର ବେଳେବେଳେ ତାକୁ ଅକ୍ଷର ଶିଖାଇ ଦଅନ୍ତି । ସେ ଭୁଲକଲେ ତା' ଉପରକୁ ବେତ ଫୋପାଡ଼ନ୍ତି, କାରଣ ବେତ ହାତରେ ଧରି ମାରିଲେ ଛୁଆଁ ହୋଇଯିବେ । ବର୍ତ୍ତମାନ ସେ ଅବସ୍ଥା ନିଶ୍ଚିତ ଭାବେ ବଦଳିଯାଇଛି । ବିଭିନ୍ନ ସ୍କୁଲ କଲେଜରେ ବହୁ ହରିଜନ ପିଲା ଉଚ୍ଚଜାତିର ପିଲାମାନଙ୍କ ସଙ୍ଗରେ ଏକାଠି ବସି ପାଠ ପଢୁଛନ୍ତି । କିନ୍ତୁ ଗାଁରେ ହରିଜନ ଓ ଉଚ୍ଚଜାତିର ଲୋକମାନଙ୍କ ମଧ୍ୟରେ ସମାନ ଭାବରେ ବସା ଉଠା, ଖାଇବା ପିଇବା ଇତ୍ୟାଦି ନାହିଁ । ସମସ୍ତ ବଦଳୁଛି, କିନ୍ତୁ ଅତି ଧୀର ଗତିରେ । କେବଳ ଆଶା ଭବିଷ୍ୟତରେ ଅବସ୍ଥା କ୍ଷିପ୍ରଗତିରେ ବଦଳିବ । ମାତ୍ର ବିଂଶ ଶତାବ୍ଦୀର ଶେଷରେ ମଧ୍ୟ ଅଧିକାଂଶ ହରିଜନ ପରିବାର ଗରିବ ଓ ନିରକ୍ଷର ।

ଆଦିବାସୀ ଓ ହରିଜନ ଉଭୟ ମିଶି ଓଡ଼ିଶାର ଜନସଂଖ୍ୟାର ୩୮ ଶତାଂଶ । ଉଭୟ ସଂପ୍ରଦାୟରୁ ଯେଉଁ ଅଳ୍ପ କେତେକ ଲୋକ ପାଠ ପଢ଼ି ସାନ ବଡ଼ ଚାକିରି କରୁଛନ୍ତି କିମ୍ବା ମନ୍ତ୍ରୀ କିମ୍ବା ବିଧାନସଭାର ସଭ୍ୟ ହୋଇଯାଉଛନ୍ତି, ସେମାନେ ଉଚ୍ଚ ଜାତିର ଲୋକମାନଙ୍କ ପରି ଘରଦ୍ୱାର ଏବଂ ଧନ ସମ୍ପତ୍ତି କରି ପାରୁଛନ୍ତି । ବଡ଼ ଚାକିରି କରୁଥିବା ଲୋକ ସହରମାନଙ୍କରେ ଘରଦ୍ୱାର କରି ରହୁଛନ୍ତି । ସେମାନେ କିନ୍ତୁ ନିଜ ସଂପ୍ରଦାୟର ଲୋକମାନଙ୍କ ସହିତ ସମଭାବରେ ମିଶିବାକୁ ସଙ୍କୋଚ ବୋଧ କରୁଛନ୍ତି । ସେମାନଙ୍କ ଗରିବ ଭାଇ ବିରାଦର ଲୋକଙ୍କ ଚଳଣି ଏତେ ଅନୁନ୍ନତ ଯେ, ଶିକ୍ଷିତ ଓ ଧନୀ ହେଲା ପରେ ଶିକ୍ଷିତ ଲୋକମାନେ ତାଙ୍କ ସହିତ ନିଃସଙ୍କୋଚ ଭାବରେ ମିଶି ପାରୁନାହାନ୍ତି କିମ୍ବା ତାଙ୍କ ପାଇଁ କିଛି କରି ପାରୁନାହାନ୍ତି । ଥରେ ମୁଁ ଭୁବନେଶ୍ୱରସ୍ଥିତ ଠକ୍କରବାପା ଛାତ୍ରାବାସର ଗୋଟିଏ ଉତ୍ସବରେ ଯୋଗ ଦେବାକୁ ଯାଇଥିଲି । ଉତ୍ସବ ଶେଷରେ ସେଥିରେ ଥିବା ପିଲାମାନେ ଏହି ଭାବ ପ୍ରକାଶ କରୁଥିଲେ ।

ଆଦିବାସୀ ଓ ହରିଜନ ଲୋକଙ୍କ ପରେ, ଓଡ଼ିଶାର ଲୋକ ସଂଖ୍ୟାର ଆଉ ୨୮ ଶତାଂଶ ଭାଗ ଅନ୍ୟ ଅନୁନ୍ନତ ଜାତିର ଲୋକ । ଏମାନଙ୍କ ମଧ୍ୟରେ ତେଲି,

ତାମ୍ବୁଲି, ଗୁଡ଼ିଆ, ବଣିଆ, ଗୋପାଳ, ବାରିକ, ବଢ଼େଇ, କମାର, କୁମ୍ଭାର, ଦରଜି, ଶୁଣ୍ଢି ପ୍ରଭୃତି ବହୁ ସାମାଜିକ ଅନୁନ୍ନତ ଜାତିର ଲୋକ ଅଛନ୍ତି । ଏମାନେ ଆମ ସମାଜର ସାଧାରଣ ଜନତା ଲୋକ । ଏମାନଙ୍କ ମଧ୍ୟରେ ଅନେକ ଜାତିର ଲୋକ ବେପାର, ବାଣିଜ୍ୟ, କାରିଗରି ପ୍ରଭୃତି କାର୍ଯ୍ୟକରି ଜୀବିକା ନିର୍ବାହ କରନ୍ତି । ଏମାନଙ୍କ ମଧ୍ୟରୁ ଅନେକ ଜାତିର ଲୋକଙ୍କୁ ହାଣ୍ଡିଆ ଜାତିର ଲୋକ ବୋଲି ଲୋକେ କହନ୍ତି । ଏମାନଙ୍କ ମଧ୍ୟରୁ କେତେକ ଜାତିର ଲୋକ ସାଧାରଣତଃ ସ୍ୱଚ୍ଛଳ ଏବଂ ଅନେକ ଉଚ୍ଚ ଜାତିର ଲୋକଙ୍କଠାରୁ ମଧ୍ୟ ଅଧିକ ସ୍ୱଚ୍ଛଳ । ସେମାନଙ୍କ ମଧ୍ୟରେ ଅନେକ ଧନୀ ଲୋକ ଅଛନ୍ତି । ତେଲି, ଗୁଡ଼ିଆ, ବଣିଆ, ଶୁଣ୍ଢି ପ୍ରଭୃତି ଜାତିର ଲୋକମାନେ ବ୍ୟବସାୟ ବାଣିଜ୍ୟରେ ରତ ଥିବାରୁ ସେମାନେ ସାଧାରଣତଃ ସ୍ୱଚ୍ଛଳ । ଅନ୍ୟ ଅନୁନ୍ନତ ଜାତିର ଲୋକମାନେ ନିଜ ନିଜର କୌଳିକ ବୃତ୍ତି ଅବଲମ୍ବନ କରି ଜୀବିକା ନିର୍ବାହ କରନ୍ତି । ସେମାନଙ୍କର ଜମିବାଡ଼ି କମ୍ ଏବଂ ସେମାନଙ୍କ ମଧ୍ୟରେ ସାଧାରଣତଃ ଧନୀ ପରିବାରମାନ ଦେଖାଯାଏ ନାହିଁ । ଅଳ୍ପ ଜମିରେ ଚାଷ ଏବଂ କୌଳିକ ବ୍ୟବସାୟ ଦ୍ୱାରା ଏମାନେ ଜୀବିକା ନିର୍ବାହ କରନ୍ତି । ହାତରେ ଧାନ ଟଙ୍କା ସଞ୍ଚୟ ନ ଥାଏ । ଅଧିକାଂଶ କରିଖିଆ ଲୋକ । ହାତରେ କାମ ନ ଥିଲାବେଳେ ଧାର କରଜ କରନ୍ତି ଏବଂ ଭୋକ ଉପବାସ ମଧ୍ୟ ସହ୍ୟ କରନ୍ତି । ଏମାନଙ୍କ ମଧ୍ୟରେ ନିରକ୍ଷରତା ପରିମାଣ ଅଧିକ ଏବଂ ପାଠ ପଢ଼ି ଚାକିରି କରିଥିବା ଲୋକଙ୍କ ସଂଖ୍ୟା କମ୍ । ମାତ୍ର ହରିଜନ ଆଦିବାସୀ ସମ୍ପ୍ରଦାୟର ଲୋକଙ୍କଠାରୁ ଯଥେଷ୍ଟ ବେଶି । ଆଦିବାସୀ, ହରିଜନ ଏବଂ ଅନ୍ୟ ଅନୁନ୍ନତ ଶ୍ରେଣୀର ଲୋକ ମିଶି ଓଡ଼ିଶାର ଲୋକସଂଖ୍ୟାର ପ୍ରାୟ ଶତକଡ଼ା ୬୬ ଭାଗ । ବାକି ପ୍ରାୟ ଶତକଡ଼ା ୩୪ ଭାଗ ଲୋକ ଉଚ୍ଚଜାତିର ଲୋକ ।

ଉଚ୍ଚଜାତିର ଲୋକଙ୍କ ମଧ୍ୟରେ ବ୍ରାହ୍ମଣ, କରଣ, କ୍ଷତ୍ରିୟ, ଖଣ୍ଡାୟତ ପ୍ରଭୃତି ପରିବାରର ଲୋକ ଅନ୍ତର୍ଭୁକ୍ତ । ସାମାଜିକ ସ୍ଥିତି ହିସାବରେ ଏ ଜାତିମାନଙ୍କର ସ୍ଥାନ ଉପରେ । ମାତ୍ର ଆର୍ଥିକ ଦୃଷ୍ଟିକୋଣରୁ ଦେଖିଲେ ଏମାନଙ୍କ ମଧ୍ୟରେ ବହୁ ଦରିଦ୍ର ଲୋକ ଅଛନ୍ତି । ଜାତି ଉଚ୍ଚ ହେଲେ ମଧ୍ୟ ଆର୍ଥିକ ଦୃଷ୍ଟିରୁ ବହୁଲୋକ ଦୁର୍ବଳ । ଏ ଜାତିର ଲୋକମାନଙ୍କ ମଧ୍ୟରୁ ଅଧିକାଂଶ କୌଣସି ନିର୍ଦ୍ଦିଷ୍ଟ କୌଳିକ ବୃତ୍ତି ଦ୍ୱାରା ଜୀବିକା ନିର୍ବାହ କରନ୍ତି ନାହିଁ । ମାତ୍ର କୃଷି ଦେଶର ସବ ପ୍ରଧାନ ବ୍ୟବସାୟ ଓ ଆୟର ପନ୍ଥା ହୋଇଥିବାରୁ ଏବଂ କୌଣସି ଗୋଟିଏ ଜାତିର ନିର୍ଦ୍ଦିଷ୍ଟ କୌଳିକ ବୃତ୍ତି ହୋଇ ନ ଥିବାରୁ, ଏ ଜାତିର ଲୋକମାନେ ଅଧିକାଂଶ କୃଷି ଉପରେ ନିର୍ଭର କରନ୍ତି । ସାମାଜିକ କ୍ଷେତ୍ରରେ

ଅଗ୍ରଗାମୀ ହୋଇଥିବାରୁ ଏମାନଙ୍କ ମଧ୍ୟରେ ସାକ୍ଷରତା ମାତ୍ରା ଏବଂ ଉଚ୍ଚ ଶିକ୍ଷିତ ଲୋକମାନଙ୍କର ସଂଖ୍ୟା ଅଧିକ । ବସ୍ତୁତଃ କୃଷି, ବ୍ୟବସାୟ, ବାଣିଜ୍ୟ କରି, ପାଠ ପଢ଼ି, ସରକାରୀ ଓ ବେସରକାରୀ ଚାକିରି କରି, ଓକିଲ, ମୋକ୍ତାର, ଡାକ୍ତର, ଇଞ୍ଜିନିଅର, ଶିକ୍ଷକ ପ୍ରଭୃତି ଆଧୁନିକ ବୃତ୍ତି ଅବଲମ୍ବନ କରି ଯେଉଁମାନେ ପ୍ରତିଷ୍ଠା ଲାଭ କରିଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଏହି ଜାତିମାନଙ୍କ ମଧ୍ୟରେ ଅଛନ୍ତି । ବଡ଼ ଜମିମାଲିକ, ବଡ଼ଚାଷୀ, ଜମିଦାର, ମହାଜନ, କଣ୍ଟ୍ରାକ୍ଟର, ବଡ଼ ସରକାରୀ କର୍ମଚାରୀ, ଓକିଲ, ଡାକ୍ତର, ଇଞ୍ଜିନିଅର ପ୍ରଭୃତି ଅଧିକାଂଶ ମଧ୍ୟ ଏହି ଜାତିମାନଙ୍କ ମଧ୍ୟରେ ଅଛନ୍ତି । ଅନ୍ୟ ଦିଗରେ ଏହି ଜାତିମାନଙ୍କ ମଧ୍ୟରେ ମଧ୍ୟ ବହୁ ଭୂମିହୀନ ଓ ନାମମାତ୍ର ଚାଷୀ କର୍ମହୀନ ବେକାର ଓ ଗରିବ ଲୋକ ଅଛନ୍ତି । ଜାତି ଉଚ୍ଚ ହେଲେ ଯେ, ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ହେବ, ଏପରି ଧାରଣା କରିବା ସମୀଚୀନ ନୁହେଁ । ବହୁ ଉଚ୍ଚଜାତି, ବ୍ରାହ୍ମଣ, କରଣ, ଖଣ୍ଡାୟତ ପରିବାରର ଲୋକ ଅତି ଦରିଦ୍ର ଭାବରେ ଜୀବନଯାପନ କରନ୍ତି ।

ଊନବିଂଶ ଶତାବ୍ଦୀରୁ ଆରମ୍ଭ କରି ବିଂଶ ଶତାବ୍ଦୀର ମଧ୍ୟ ଭାଗରେ ବ୍ରିଟିଶ ଶାସନର ଅବସାନ ପର୍ଯ୍ୟନ୍ତ ଓଡ଼ିଶାର ଅଣଆଦିବାସୀ ଲୋକମାନଙ୍କ ମଧ୍ୟରେ ଥିବା ଦାରିଦ୍ର୍ୟର କରୁଣ ଚିତ୍ର ସମସାମୟିକ ଲେଖକମାନଙ୍କ ଲେଖାରୁ ମିଳେ, ପଣ୍ଡିତ ଗୋଦାବରୀଶ ମିଶ୍ର ନିଜ ପରିବାରର ଉତ୍କଟ ଦାରିଦ୍ର୍ୟର କରୁଣ ଚିତ୍ର ତାଙ୍କ 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା' ବହିରେ ବର୍ଣ୍ଣନା କରିଛନ୍ତି । ତାହା ୧୮୯୦ରୁ ୧୯୧୦ ମସିହା ମଧ୍ୟ ସମୟର କଥା । ସେ ଲେଖିଛନ୍ତି, 'ପରିବାରର ସ୍ତ୍ରୀଲୋକମାନେ ସବୁଦିନେ ଭାତ ଖାଇବାକୁ ନ ପାଇ ମାଣ୍ଡିଆ ଯାଉ ଖାଉଥିଲେ । ମାସକରେ କେତେଦିନ ଚାଉଳ ନ ଥିବାରୁ ଚୂଲି ଜଳେ ନାହିଁ ଏବଂ ପଡ଼ୋଶୀ ଘରୁ ଚାଉଳ ଧାର ଆଣିଲେ ଚଳିଯାଇ ହୁଏ । ଘରକୁ ଦୁଇଗୋଟି ପାଚିଲା କଦଳୀ କେଣାହୋଇ ଆସିଲେ ତାଙ୍କ ବୁଢ଼ୀମା କଦଳୀ ଦୁଇଗୋଟି ତାଙ୍କୁ ଖାଇବାକୁ ଦେଇ କଦଳୀ ଚୋପା ରାନ୍ଧିଦେଉ ଥିଲେ । ମାଳକଣ୍ଠ ଦାସ ତାଙ୍କ ଆତ୍ମଜୀବନୀ ବହିରେ ଲେଖିଛନ୍ତି ଯେ, ତାଙ୍କ ବୁଢ଼ୀମା ନନେ ପେଜ ପିଇ ପିଲମାନଙ୍କୁ ବଞ୍ଚାଇ ରଖିଥିଲେ । ତାହା ଊନବିଂଶ ଶତାବ୍ଦୀର ଶେଷ ଭାଗର ଘଟଣା । ସେ ମଧ୍ୟ ଲେଖିଛନ୍ତି ଯେ ପ୍ରଚାରକ ଅନନ୍ତ ମିଶ୍ର ଭାତ ଗଣ୍ଡିଏ ଖାଇବାକୁ ନ ପାଇ ମଧ୍ୟ ଜୀବନ ତ୍ୟାଗ କରିଥିଲେ । ୧୯୨୦ ମସିହାଠାରୁ ୧୯୪୦ ମସିହା ମଧ୍ୟରେ ଆମ ଗାଁ ଓ ପାଖଆଖ ଗାଁମାନଙ୍କରେ ଉଚ୍ଚ ଜାତିମାନଙ୍କ ମଧ୍ୟରେ ଥିବା ଦାରିଦ୍ର୍ୟ ମୁଁ ନିଜ ଆଖିରେ ଦେଖିଛି । ୧୯୪୩ ମସିହାରେ ଯୋଗାଣ ବିଭାଗରେ ଚାକିରି କରୁଥିବା ବେଳେ ସାଧାରଣ ଲୋକଙ୍କ ମଧ୍ୟରେ ଥିବା ଦାରିଦ୍ର୍ୟ ମଧ୍ୟ ମୁଁ ଦେଖିଛି । ଦାରିଦ୍ର୍ୟ ଅର୍ଥ ଘରଦ୍ୱାର ଆସବାବପତ୍ର ଓ ଗଚ୍ଛିତ ଧାନ ଓ ଟଙ୍କା ଅଭାବ ନୁହେଁ । ଦାରିଦ୍ର୍ୟମାନେ ଦୁଇଓଳି ଖାଇବାକୁ ନ

ପାଇବା ଓ ପିନ୍ଧିବାକୁ ଲୁଗା ଖଣ୍ଡେ ନ ପାଇବା । ୧୯୪୭ ମସିହା ପୂର୍ବରୁ ଆମ ଗାଁର ଚାଳିଶରୁ ଅଧିକ ପରିବାରଙ୍କ ମଧ୍ୟରେ ଗୋଟିଏ ହେଲେ ପକାଘର ନ ଥିଲା । ଚାଳିଶ ପରିବାରଙ୍କ ମଧ୍ୟରେ କେବଳ ତିନି ଚାରି ପରିବାରଙ୍କର ଦଶ ଏକରରୁ ଅଧିକ ଜମି ଥିଲା, ଅନ୍ୟ ସମସ୍ତ ଜମି ଥିଲା ପରିବାରଙ୍କର ପାଞ୍ଚ ଏକରରୁ କମ୍ ଜମି ଥିଲା । ଅନେକ ପରିବାରଙ୍କର ଏକ ଏକରରୁ କମ୍ ଜମି ଥାଏ ବା କିଛି ଜମି ନ ଥାଏ । ସେମାନେ ମୂଲଲାଗି ଭଗଚାଷ କରି ଚଳନ୍ତି ।

କେବଳ ପାଞ୍ଚ ସାତ ଲୋକଙ୍କ ଘରେ ଖଣ୍ଡେ ବା ଦୁଇଖଣ୍ଡ ଖଟ ଥାଏ । ଅନ୍ୟ ସବୁ ପରିବାରରେ ସମସ୍ତେ ମଶିଣା ବା ମୁନ୍ଦୁରି ଉପରେ କନ୍ଥା ପକାଇ ଶୁଅନ୍ତି । ଆମର ସ୍ୱଚ୍ଛଳ ଓ ବଡ଼ ପରିବାରରେ କେବଳ ଦୁଇଖଣ୍ଡ ସାଧାରଣ ଧରଣର ପଲଙ୍କ ଥାଏ । ବୟସ୍କ ଲୋକମାନେ ଖଟ ଉପରେ ଶୋଉଥିଲେ । ଆମେ ସମସ୍ତେ ସ୍ତ୍ରୀଲୋକ ଓ ପିଲା ତଳେ ମଶିଣା ଓ କନ୍ଥା ପକାଇ ଶୋଉଥିଲୁ । ମଶାରି ପ୍ରାୟ କେହି ଟାଙ୍ଗୁ ନ ଥିଲୁ । ଚଉକି ଟେବୁଲ୍ କାହାଘରେ ନ ଥିଲା । ଲଣ୍ଠନ ମଧ୍ୟ ପାଞ୍ଚ ସାତ ପରିବାରଙ୍କୁ ଛାଡ଼ିଦେଲେ କାହା ଘରେ ନାହିଁ । ଦୁଇ ତିନି ପରିବାର ଯାହାଙ୍କର କୋଡ଼ିଏ ଏକରରୁ ଅଧିକ ଜମି ଥିଲା ତାଙ୍କ ଘରେ ସୁଆରି, ପାଲଙ୍କି ଏବଂ ସିନ୍ଦୁକ ଥିଲା । ଅନ୍ୟ ସବୁ ପରିବାରରେ ଟଙ୍କା ପଇସା ଓ ଭଲ ଲୁଗା ରଖିବାପାଇଁ ବେତ ପେଡ଼ି ବା ପେଟରା ଥିଲା । ପିନ୍ଧିବା ଲୁଗା ରଖିବା ପାଇଁ ଅଳଗୁଣି, ରେଡିଓ, ଟେଲିଭିଜନ କଥା ସେ କାଳେ ଶୁଣା ନ ଥିଲା । ଲୁହା ଆଲମାରି ଆଜିଯାଏ ସୁଦ୍ଧା ଦୁଇ ଚାରି ଜଣଙ୍କ ଘରେ ଥିବ । ଦୁଇ ଚାରି ଭଲ ଚଳନ୍ତିବାଲାଙ୍କ ଘରେ କାଠ ଆଲମାରି ଥିଲା । ତାହା ମଧ୍ୟ ୧୯୩୦ ମସିହା ପରେ, କାରଣ ପୁରୁଣାକାଳିଆ ସ୍ୱଚ୍ଛଳ ଲୋକଙ୍କ ଘରେ ପଲଙ୍କ, ସିନ୍ଦୁକ, ସବାରି, ପାଲଙ୍କି, ପିତ୍ତଳ ହଣ୍ଡା, ଗରା, କୁଣ୍ଡ ପ୍ରଭୃତି ଆସବାବ ଥାଏ । ଚଉକି, ଟେବୁଲ, ଆଲଣା, ଆଲମାରି ପ୍ରଭୃତି ରଖିବା ଚଳଣି ନ ଥିଲା । ସାଧାରଣ ପରିବାରଙ୍କର ଆସବାବ ମଧ୍ୟରେ କୃଷି ଯନ୍ତ୍ରପାତି, ଲଙ୍ଗଳ, ଜୁଆଳି, କୋଡ଼ି କୋଦାଳ, ଦାଆ, କଟୁରି ଆଦି, ହଳବଳଦ ଗୋଟିଏ ଦୁଇଟି ଗାଈ ବାଛୁରି ଏବଂ ଖାଇବା ପିଇବାପାଇଁ କଂସା ବାସନ । ଆଲୁମିନିଅମ ବାସନ ସେ କାଳେ ପ୍ରଚଳିତ ନ ଥିଲା । ଗରିବ ଏବଂ ଧନୀ ସବୁ ଲୋକଙ୍କ ଘରେ କଂସା ଓ ପିତ୍ତଳ ବାସନ ଥିଲା । ବଡ଼ଲୋକଙ୍କ ଘରେ ବେଶି ଓ ଦାମିକା କଂସା ବାସନ ଏବଂ ଗରିବ ଲୋକଙ୍କ ଘରେ ଅଳ୍ପ ପରିମାଣ ଏବଂ ଅଳ୍ପ ଦାମର ବାସନ ଥାଏ ।

ଜମି ପରିମାଣ ଅନୁସାରେ ଗରିବ ଓ ଧନୀ ଲୋକ ଗଣା ହେଉଥିଲେ । ଗରିବ ଲୋକ କହିଲେ ଜମିବାଡ଼ି ନ ଥିବା ବା ଅଳ୍ପ ଜମିଥିବା, ଘରେ ଦୁଇଓଳି

ଖାଇ ଖାଇପାରୁ ନ ଥିବା ଏବଂ ପିଲାଙ୍କୁ ମୁଢ଼ି, ଚୂଡ଼ା ଗଣ୍ଡାଏ ମୁଦ୍ଧା ଦେଇ ପାରୁ ନ ଥିବା ଲୋକଙ୍କୁ ବୁଝାଉଥିଲା । ପ୍ରାୟ ସବୁ ସାଧାରଣ ପରିବାରଙ୍କର ଟଙ୍କା ପଇସା, ଧାନ ଚାଉଳ ବେଶି ସଞ୍ଚୟ ନ ଥାଏ । ବ୍ୟାଙ୍କ୍ କାରବାର କ'ଣ ତାହା ଲୋକମାନେ ଜାଣି ନ ଥିଲେ । ପୋଷ୍ଟ ଅଫିସରେ ମଧ୍ୟ ସାଧାରଣ ଲୋକ କେହି ପଇସା ରଖୁ ନ ଥିଲେ । ଯାହା ପାଖରେ କିଛି ବଳକା ଧାନ କି ଟଙ୍କା ହେଲା, ସେ ମହାଜନି କାରବାର କରୁଥିଲା । ଗାଁମାନଙ୍କରେ ମହାଜନି କାରବାରଟା ଖୁବ୍ ପ୍ରଚଳିତ ଥିଲା । ମହାଜନ ବୋଲି ପ୍ରତି ଗାଁରେ ଗୋଟିଏ ବା ଦୁଇଟି ପରିବାର ଥାଆନ୍ତି । ସବୁ ସାଧାରଣ ପରିବାରଙ୍କର ଊଣାଅଧିକେ ସବୁବେଳେ କିଛି ଧାର କରଜ ଥାଏ । ଅକାଳରେ ମହାଜନ ଦୁଆରକୁ ଯାଇ କରଜ କରିବା ଛଡ଼ା ଅନ୍ୟ ଗତି ନ ଥାଏ । ଅକାଳ ମାନେ ବଢ଼ି, ମରୁଡ଼ି, ଫସଲ ନଷ୍ଟ ଏବଂ ଦୁର୍ଭିକ୍ଷ ସମୟ । ସେ ସମୟରେ ଅବସ୍ଥା ସମ୍ଭାଳି ନେବାକୁ ସାଧାରଣ ଲୋକଙ୍କ ପାଖରେ ସମ୍ବଳ ନ ଥାଏ । ସେହି ସମୟମାନଙ୍କରେ ଲୋକଙ୍କ ଅବସ୍ଥା ଫକୀରମୋହନ, ଗୋପବନ୍ଧୁବାବୁ, ନୀଳକଣ୍ଠ ଦାସ ଓ ଗୋଦାବରୀଶ ମିଶ୍ରଙ୍କଠାରୁ ଆରମ୍ଭ କରି ବହୁ ଲେଖକ ଓ ଦେଶସେବକ ଲେଖିଛନ୍ତି । ପ୍ରାକୃତିକ ବିପତ୍ତି ବ୍ୟତୀତ ସାଧାରଣ ପରିବାରଙ୍କର ଅନ୍ୟ ଦରକାର ସମୟ ପଡ଼େ । ଝିଅ, ପୁଅ ବାହାଘର, ରୋଗ ବଇରାଗ, ଶୁଦ୍ଧିକ୍ରିୟା ପ୍ରଭୃତି ବହୁ ଦରକାର ସମୟରେ ଟଙ୍କା ଦରକାର ପଡ଼େ । ସଞ୍ଚୟ ଓ ସମ୍ବଳହୀନ ହୋଇଥିବାରୁ ସାଧାରଣ ପରିବାରମାନେ କୌଣସି ଧକ୍କା ସମ୍ଭାଳି ନେବାକୁ କ୍ଷମ ହୁଅନ୍ତି ନାହିଁ ।

୧୯୪୭ ମସିହା ପୂର୍ବରୁ ସାଧାରଣ ସମୟରେ ମଧ୍ୟ ବହୁ ଉଚ୍ଚ ଜାତିର ପରିବାର ଆମ ଗାଁରେ ଦ୍ୱୋକ ଉପବାସରେ ରହିବା ମୁଁ ଦେଖିଛି । ଖଣ୍ଡାୟତ ପରିବାରମାନଙ୍କରୁ ଅନେକ ବିଧବା ସ୍ତ୍ରୀଲୋକ ଆମ ଘରେ ଧାନ କୁଟୁଣୀ କାମ କରୁଥିଲେ । ଢିଙ୍କିଟା ଟିକିଏ ବଡ଼ ଓ ଓଜନିଆ । ତିନିଜଣ କୁଟନ୍ତି ଏବଂ ଜଣେ ଶୁଖାଇ ଦିଏ । ଅନେକ ସମୟରେ ମୋ ବୋଉ ନିଜେ ଶୁଖାଇ ଦିଏ । ନଚେତ୍ ସେହି କୁଟୁଣୀମାନଙ୍କ ମଧ୍ୟରୁ ଜଣେ ଶୁଖାଇ ଦିଏ । କୁଟିବା ଓ ପାଛୁଡ଼ିବା ପ୍ରଭୃତି କାର୍ଯ୍ୟ କରି ସେମାନେ କୁଟିଥିବା ଚାଉଳର ଦଶ ମାଉଣିରେ ମାଉଣିଏ ମଜୁରି ବାବଦକୁ ନିଅନ୍ତି । ସେ ଚାଉଳ ସେମାନେ ବାଣ୍ଟିକରି ନିଅନ୍ତି । ସାଧାରଣ ପରିବାରର ଲୋକମାନେ କୁଟୁଣୀ ଲଗାଇ ପାରନ୍ତି ନାହିଁ । ନିଜ ଧାନ ନିଜେ କୁଟନ୍ତି । ସେହି କୁଟୁଣୀ ଶ୍ରେଣୀର ଆଉ ଜଣେ ଦୁଇ ଜଣ ମଧ୍ୟ ଆମ ଘରେ ଧାନ ଉଷାଇବା, ଦାଣ୍ଡ ବାଡ଼ିଆଡ଼ ଓଳାଇବା, ଗୋଷାଇଶାଳକୁ ଜାଳ ଓ ପାଣି ଆଣି ଦେବା ପ୍ରଭୃତି କାମ କରନ୍ତି । ସେମାନେ ନିଜର ସମ୍ମାନ ରଖି ଆମର ବାସନ

ମାଜନ୍ତି ନାହିଁ ବା ଆମ ଘରେ ଖାଆନ୍ତି ନାହିଁ । ଦିନଯାକ କାମ କରି ବେଳବୁଡ଼ିକୁ ଅଧସେରିଆ ମାଉଣିରେ ମାଉଣିଏ ଚାଉଳ ନିଅନ୍ତି । ଏହି ଶ୍ରେଣୀର ସ୍ତ୍ରୀଲୋକମାନେ ଅତି ଗରିବ ଓ ଦୁଃଖୀ ଥିଲେ । ଅନେକ ଖଣ୍ଡାୟତ ପରିବାରର ଭୂମିହୀନ ପୁରୁଷ ଲୋକ ମଧ୍ୟ ଅନ୍ୟମାନଙ୍କ ଘରେ କୋଠିଆ ବା ଚାକର ଭାବରେ କାମ କରୁଥିଲେ । ସେମାନଙ୍କର ମୁଖ୍ୟକାମ ଚାଷ ଓ ଗୋରୁଗାଈ ରଖିବା କାମ । ଚାକରମାନେ ଖାମିନ୍ଦଙ୍କ ଘରେ ରହନ୍ତି ଓ ଖାଆନ୍ତି । ମଜୁରି ବର୍ଷକପାଇଁ ସ୍ଥିର ହୋଇଥାଏ । ବାର୍ଷିକ ମଜୁରି ଟଙ୍କା ବ୍ୟତୀତ ଲୁଗା, ଗାମୁଛା ଓ ଚଦର ନିଅନ୍ତି । କୋଠିଆମାନେ ଦିନମଜୁରି ବାବଦକୁ ଛ ମାଉଣି ପ୍ରାୟ ଦୁଇସେର ଧାନ ନିଅନ୍ତି । ବର୍ଷକୁ ଖଣ୍ଡେ ଦୁଇଖଣ୍ଡ ଗାମୁଛା ନିଅନ୍ତି ଏବଂ [illegible] ଚାରିଗୁଣ୍ଠ ଜମି ହେତା ବା ମାଲିକର ବଳଦ ସାହାଯ୍ୟରେ ଚାଷ କରିବାକୁ ନିଅନ୍ତି । ସେ ଜମିର ଉତ୍ପାଦନ ସବୁ ସେମାନେ ନିଅନ୍ତି । ମାଲିକକୁ ଭାଗ ଦିଅନ୍ତି ନାହିଁ । ଏ ପ୍ରଥା ସବୁ ବର୍ତ୍ତମାନ ସୁଦ୍ଧା ଚାଲୁ ରହିଛି । ଏପରି କାମ କରୁଥିବା ଅଧିକାଂଶ ଲୋକ ହରିଜନ ସମ୍ପ୍ରଦାୟର । କିନ୍ତୁ ଅନେକ ଗରିବ ଖଣ୍ଡାୟତ ପରିବାରର ଲୋକ ମଧ୍ୟ ଏପରି ଭାବରେ କାମ କରି କୁଟୁମ୍ବ ପୋଷୁଥିଲେ ।

ଆହୁରି ମଧ୍ୟ ମୁଁ ପିଲାଦିନେ ଦେଖିଛି ଯେ ଅନେକ ଉଚ୍ଚଜାତି ପରିବାରଙ୍କ ଘରେ ବୈଶାଖ ମାସଠାରୁ କାର୍ତ୍ତିକ ମାସଯାଏ ଧାନ ଚାଉଳ ନ ଥାଏ । ଅନେକ ଦିନ ଜଣେ ଦୁଇଜଣ ଚାରି ଆଠ ଅଣା ପଇସା ଆଣି, ମୋ ବୋଉ ପାଖରୁ ଚାଉଳ କିଣିବାକୁ ଆସନ୍ତି । ଅନେକ ଲୋକଙ୍କର ମଧ୍ୟ କିଛି ପଇସା ନ ଥାଏ । ବାକିରେ ଚାଉଳ ନେବାକୁ ଆସନ୍ତି । ବୋଉକୁ କିଏ ଖୁଡ଼ୀ, ମାଉସୀ ବା ଆଈ ଡାକନ୍ତି । ଦୈନ୍ୟ ଭାବରେ କହନ୍ତି, "ମାଉସୀ, ପିଲାଏ କାଲିଠାରୁ ଉପାସରେ ଅଛନ୍ତି । ଆଠଣା ଟଙ୍କାକର ଚାଉଳ ଦେଇଥାଅ । ଅଳ୍ପ ଦିନ ପରେ ପଇସା ଦେଇଦେବି ।" ବୋଉ କାହାରିକି ଫେରାଇ ଦିଏ ନାହିଁ । ଏପରି ଧାରରେ ସୁଧ ନ ଥାଏ । ସାଧାରଣତଃ ଏପରି ଧାର ଲୋକମାନେ ବିଳମ୍ବରେ ହେଲେ ସୁଦ୍ଧା ପରିଶୋଧ କରି ଦିଅନ୍ତି । ଏପରି ଅଭାବଗ୍ରସ୍ତ ଲୋକ ବହୁତ ଥିଲେ । ସେମାନେ ଧାର କରଜ କରି ବର୍ଷର ଢବ୍ୱେଟ କେତେମାସ ଚଳିଯାଆନ୍ତି ।

ପ୍ରାୟ ୧୯୪୦ —୪୧ ମସିହା କଥା । ଆମ୍ଭେମାନେ କେତେକ ଯୁବକ ଗୋଟିଏ ଯୁବକ ସମିତି ଗଢ଼ିଥିଲୁ । ଗ୍ରୀଷ୍ମ ଛୁଟିରେ ଦିନେ ସକାଳଓଳି ଗାଁ ଠାକୁର ଘର ପାଖରେ ସମିତିର ଗୋଟିଏ ସଭା ହେଉଥିଲା । କିଏ ଜଣେ ଆସି ଖବର ଦେଲା ଯେ, ଆମ ଗାଁରେ ପୁରୋହିତ କାମ କରି ଏକାଠି ଚଳୁଥିବା ଦୁଇଭାଇଙ୍କ ମଧ୍ୟରୁ ବଡ଼ଭାଇ ମରିଗଲେ । ଆମେ ସମସ୍ତେ ସଙ୍ଗେ ସଙ୍ଗେ ସଭାରୁ ଉଠି ତାଙ୍କ ଘରକୁ ଗଲୁ ।

ତାଙ୍କ ଘରେ ଅବସ୍ଥା ଦେଖିଲୁ ଯେ ଶବ ସତ୍କାର କରିବାକୁ ତାଙ୍କ ଘରେ ଚାରିମାଣ ଧାନ ନ ଥିଲା । ଧାର କରଜ କରି ସେମାନେ ଶ୍ରାଦ୍ଧକାର୍ଯ୍ୟ କଲେ । ସେମାନେ ଏତେ ଗରିବ ବୋଲି ଆମର ଧାରଣା ନ ଥିଲା । ଦୁଇଭାଇ ପୁରୋହିତ କାମ କରୁଥିଲେ । ସେମାନେ ଉଚ୍ଚଜାତି ବ୍ରାହ୍ମଣ ପରିବାରର ଲୋକ । ବାହାରେ ସବୁବେଳେ ପରିଷ୍କାର ପରିଚ୍ଛନ୍ନ ଧୋତି ଚଦର ପିନ୍ଧିଥାଆନ୍ତି । ତାଙ୍କର ଉତ୍କଟ ଦାରିଦ୍ର୍ୟ ଅନ୍ୟମାନଙ୍କ ଆଗରେ ପ୍ରକାଶ କରନ୍ତି ନାହିଁ । ଆମ ଗାଁର ଅନେକ ବ୍ରାହ୍ମଣ ପରିବାରଙ୍କର ଅବସ୍ଥା ସେହିପରି ଥିଲା । ସେହି ୧୯୩୯—୪୦ ମସିହା କଥା ମୁଁ ସେତେବେଳେ ରେଭେନ୍‌ସା କଲେଜରେ ବି.ଏ. ପଢ଼ୁଥିଲି ଏବଂ ରେଭେନ୍‌ସା କଲେଜ ହଷ୍ଟେଲରେ ଥିଲି । ଆମ ଗାଁର ଜଣେ ଖଣ୍ଡାୟତ ପରିବାରର ଲୋକ କଟକ ବଡ଼ ଡାକ୍ତରଖାନାରେ ରୋଗଶଯ୍ୟାରେ ପଡ଼ିଥିଲା । ମୁଁ ତାକୁ ଦେଖିବାକୁ ଯାଇଥିଲି । ଦେଖିଲି ତାର ପ୍ରାୟ ଶେଷ ସମୟ । କିନ୍ତୁ ତା ପାଖରେ ତାଙ୍କ ପରିବାରର ବା ଗାଁର କୌଣସି ଲୋକ ସେବା କରିବାକୁ ନ ଥିଲେ । ଡାକ୍ତରଖାନାର ନର୍ସ ଓ ଡାକ୍ତର ନିୟମ ଅନୁସାରେ ତାର ସେବା କରୁଥିଲେ । ମତେ ଦେଖି ସେ ବହୁତ କାନ୍ଦିଲା, କହିଲା ଯେ ଡାକ୍ତର କହିଥିବା ପଥ୍ୟ ଖାଇବା ପାଇଁ ତା ପାଖରେ ଚାରିଅଣା ସୁଦ୍ଧା ପଇସା ନ ଥିଲା । କଟକରେ ରହିବା ଖର୍ଚ୍ଚ କରିବାକୁ ପଇସା ନ ଥିବାରୁ ତା ପାଖରେ ତାଙ୍କ ପରିବାରର ଲୋକ କେହି ନ ଥିଲେ । ମୁଁ କିଛି ପଇସା ନେଇ ପରଦିନ ତାକୁ ଦେବାକୁ ଯାଇ ଦେଖିଲି ଯେ ତାର ଊର୍ଦ୍ଧ୍ୱଶ୍ୱାସ ବୋହୁଥିଲା । ଅଳ୍ପ ସମୟ ପରେ ମୋର ଆଗରେ ସେ ମରିଗଲା । ଡାକ୍ତରଖାନାର ଶବସତ୍କାର କଲାଲୋକ ତାର ଶବକୁ ନେଇ ଶ୍ମଶାନରେ ପୋଡ଼ିପକାଇ ଦେଇଥିଲେ । ପରେ ଗାଁକୁ ଫେରିଲା ପରେ ତାର ସ୍ତ୍ରୀ ଆମ ଘରକୁ ଆସିଥିଲା । ବହୁତ କାନ୍ଦି କହୁଥିଲା ଯେ ପଇସା ନ ଥିବାରୁ ସେ ତାର ସ୍ୱାମୀ ପାଖକୁ ଯାଇପାରି ନ ଥିଲା କିମ୍ବା ମୃତ୍ୟୁକାଳରେ ତାକୁ ଦେଖି ପାରି ନ ଥିଲା । ୧୯୩୦ ମସିହାଠାରୁ ୧୯୪୦ ମସିହା ମଧ୍ୟରେ ମୁଁ ଏପରି ଉତ୍କଟ ଦାରିଦ୍ର୍ୟ ଉଚ୍ଚଜାତି ବହୁ ବ୍ରାହ୍ମଣ ଓ ଖଣ୍ଡାୟତ ଲୋକମାନଙ୍କ ମଧ୍ୟରେ ଦେଖିଛି । ଆମ ଗାଁ ଓ ପାଖ ଆଖ ଗାଁର ଚଷୀ, ମୂଲିଆ, ଭାଗଚଷୀ, କୋଠିଆ, ଗୁଡ଼ିଆ, ଧାନ କୁଟୁଣୀ ପ୍ରଭୃତି ସାଧାରଣ ଲୋକଙ୍କ ଉତ୍କଟ ଦାରିଦ୍ର୍ୟ ନିରୀକ୍ଷଣ କରିଛି । ସେମାନଙ୍କର ଦାରିଦ୍ର୍ୟ ଅର୍ଥ ପରିବାରର ଲୋକଙ୍କପାଇଁ ପେଷାଇ କରିବାପାଇଁ ଘରେ ମାଣେ ସୁଦ୍ଧା ଚାଉଳ ନ ଥାଏ କିମ୍ବା କିଣିବାକୁ ପଇସା ନ ଥାଏ ।

ଆଦିବାସୀ, ହରିଜନ ଏବଂ ଅନ୍ୟ ଉଚ୍ଚ ନୀଚ ଜାତିର ଲୋକମାନଙ୍କ ମଧ୍ୟରେ ଥିବା ଏପରି ଘୋର ଦାରିଦ୍ର୍ୟ ଆମ ପୁରୁଷର ପ୍ରାୟ ସବୁ ଲୋକ ଜାଣିଥିଲେ । ବହୁ ଲେଖକ ଓ ସମାଜସେବୀ ସେ ଅବସ୍ଥା, ବିଶେଷତଃ ବଢ଼ି, ମରୁଡ଼ି ଓ ଦୁର୍ଭିକ୍ଷ

କାଳରେ ଉତ୍କଟ ଅବସ୍ଥା ପତ୍ରପତ୍ରିକା, ସଭାସମିତି ଓ ବିଧାନସଭା ପ୍ରଭୃତିରେ ବର୍ଣ୍ଣନା କରିଛନ୍ତି । ଆମ ରାଜ୍ୟରେ ଗଣ ଦାରିଦ୍ର୍ୟ କେବଳ ଆମରି ସମୟର କଥା ନୁହେଁ କିମ୍ବା ବ୍ରିଟିଶ ଶାସନ ସମୟର କଥା ନୁହେଁ । ମୋର ଧାରଣା, ସବୁ ଐତିହାସିକ କାଳରେ ବନ୍ୟ ପରିବେଶ ମଧ୍ୟରେ ରହୁଥିବା ଆଦିବାସୀ ଏବଂ ମୌସୁମୀବାୟୁ ପ୍ରବାହିତ ବଢ଼ି, ମରୁଡ଼ି, ବାତ୍ୟା ପୂର୍ଣ୍ଣ ଜଳବାୟୁରେ କୃଷି ଉପରେ ପ୍ରଧାନତଃ ନିର୍ଭର କରୁଥିବା ସାଧାରଣ ଲୋକ ହିନ୍ଦୁ, ମୁସଲମାନ ଏବଂ ମୋଗଲ ରାଜତ୍ୱ ସମୟରେ ମଧ୍ୟ ଗରିବ ଥିଲେ । ବ୍ରିଟିଶ ରାଜତ୍ୱ ପୂର୍ବ ଚାରି ପାଞ୍ଚ ଶହ ବର୍ଷ କାଳର ଯେଉଁ ଜନଜୀବନ ଚିତ୍ର ଆମ ଗୋଚରକୁ ଆସୁଛି ସେଥିରେ ସାଧାରଣ ଲୋକଙ୍କ ମଧ୍ୟରେ ଥିବା ଗଣ ଦାରିଦ୍ର୍ୟ ପ୍ରତୀୟମାନ ହେଉଛି । ଆମ ଦେଶର ଇତିହାସ ସବୁବେଳେ ଜନସାଧାରଣଙ୍କ ଅବସ୍ଥା ବର୍ଣ୍ଣନା ନ କରି ରାଜା ମହାରାଜାଙ୍କ ରାଜତ୍ୱ ଏବଂ ଯୁଦ୍ଧ ବିଦ୍ରୋହର ଚିତ୍ର ବର୍ଣ୍ଣନା କରିଥାଏ ।

ବ୍ରିଟିଶ ରାଜତ୍ୱ କାଳରେ ସାଧାରଣ ଲୋକଙ୍କ ଅବସ୍ଥାରେ ଅବନତି ହୋଇଥିଲା ଏବଂ ଦାରିଦ୍ର୍ୟ ଅତିମାତ୍ରାରେ ବୃଦ୍ଧି ପାଇଥିଲା । ବ୍ରିଟିଶ ରାଜତ୍ୱର ପ୍ରଥମ ଷାଠିଏ ବର୍ଷ ମଧ୍ୟରେ ଚିରକାଳ ପରି ବଢ଼ି, ମରୁଡ଼ି ଓ ବାତ୍ୟା ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟ ଘନ ଘନ ଘଟୁଥିଲା । ସେଗୁଡ଼ିକର ନିରାକରଣପାଇଁ ସରକାର କିଛି କରୁ ନ ଥିଲେ ବା ଲୋକମାନଙ୍କର ଆର୍ଥିକ ଅବସ୍ଥା ପ୍ରତି ଦୃଷ୍ଟି ଦେଉ ନ ଥିଲେ । ବହୁବର୍ଷ ଦୁର୍ଭିକ୍ଷ ପଡ଼ୁଥିଲା ଏବଂ ଶେଷରେ ୧୮୬୬ ମସିହାରେ ଭୟଙ୍କର ନ'ଅଙ୍କ ଦୁର୍ଭିକ୍ଷ ହେଲା । ରାଜ୍ୟରେ ରାସ୍ତାଘାଟର ସୁବିଧା ନ ଥିଲା କିମ୍ବା ଜଳସେଚନର ବ୍ୟବସ୍ଥା ନ ଥିଲା । ଲୋକମାନେ ଦିନକୁଦିନ ଅଧିକ ଗରିବ ହୋଇ ଯାଉଥିଲେ ଏବଂ ଋଣ କରଜ ଓ ରୋଗ ଶୋକ ମଧ୍ୟରେ ବନ୍ଦୀ ରହୁଥିଲେ । ଇଂରେଜ ସରକାର ଜମିଦାରୀ ବ୍ୟବସ୍ଥା ବିଧିବଦ୍ଧ ଭାବରେ ପ୍ରବର୍ତ୍ତନ କଲେ ଏବଂ ତାଙ୍କ ସମୟରେ କୋର୍ଟ କଚେରିରେ ମହାଜନମାନଙ୍କର ଋଣ ଆଦାୟର ଅଧିକ ସୁବିଧା ହେଲା ଓ ମହାଜନମାନଙ୍କର ପ୍ରତିପତ୍ତି ବଢ଼ିଲା । ଜମିଜମା ଆଇନ ଅନୁସାରେ ଲୋକମାନେ ସେମାନଙ୍କ ଜମିବାଡ଼ି ବିକ୍ରି କିମ୍ବା ବନ୍ଧକ କରିପାରିଲେ ଏବଂ ଗରିବ ଋଣଗ୍ରସ୍ତ ଲୋକଙ୍କ ଜମି ମହାଜନମାନଙ୍କ ହାତକୁ ଯିବାକୁ ଲାଗିଲା । କ୍ଷୁଦ୍ର କ୍ଷୁଦ୍ର ଜମି ମାଲିକମାନେ ଜମିବାଡ଼ି ହରାଇ ମହାଜନ ଓ ବଡ଼ ଚାଷୀମାନଙ୍କ ଜମିରେ ଭାଗଚାଷୀ ହୋଇଗଲେ । ବ୍ରିଟିଶ ଅମଳରେ ଜମି ବିକ୍ରି ଖରିଦ୍ ହେଉ ଶତକଡ଼ା ଏକଭାଗ ଜମିମାଲିକ ଶତକଡ଼ା ୧୫ ଭାଗ ଜମିର ମାଲିକ ଏବଂ ଶତକଡ଼ା ୧୦ ଭାଗ ଜମି ମାଲିକ ଶତକଡ଼ା ୫୭ ଭାଗ ଜମିର ମାଲିକ ହୋଇ-ଗଲେ । ତଳସ୍ତରର ଶତକଡ଼ା ୫୦ ଭାଗ ଜମିମାଲିକମାନେ କେବଳ ଶତକଡ଼ା ୪ ଭାଗ ଜମିର ମାଲିକ ହୋଇଥିଲେ ।

ଅନ୍ୟ ପକ୍ଷରେ ବିଲାତରୁ ଆମଦାନି କରାଯାଉଥିବା ଲୁଗା ଏବଂ ଛୁରିଠାରୁ ଆରମ୍ଭ କରି, ଛତା, ଲଣ୍ଠନ ପର୍ଯ୍ୟନ୍ତ ବହୁ ଦୈନନ୍ଦିନ ବ୍ୟବହାର୍ଯ୍ୟ ପଦାର୍ଥ ଗାଁମାନଙ୍କରେ ଶସ୍ତାରେ ବିକ୍ରି ହେବା ହେତୁ, ଗାଁମାନଙ୍କରେ ତନ୍ତି ଏବଂ ଶ୍ରେଷ୍ଠ ଶ୍ରେଷ୍ଠ କାରିଗର ଲୋକ ସେମାନଙ୍କର କୌଳିକ ବ୍ୟବସାୟ ହରାଇଲେ । ଲୁଣ ସୁଦ୍ଧା ବିଦେଶରୁ ଆସି ବିକ୍ରି ହେଲା । ବହୁ କୁଟୀର ଶିଳ୍ପ ଲୋପ ପାଇଗଲା ଏବଂ ଗ୍ରାମ୍ୟ ସବୁଲୋକ କୃଷି ଉପରେ ନିର୍ଭର କଲେ । ଜମିସବୁ ଖଣ୍ଡ ଖଣ୍ଡ ହୋଇଗଲା ଏବଂ ଜମିଦାର ଓ ମହାଜନ ପ୍ରପୀଡ଼ିତ ସମାଜରେ କୃଷିର କୌଣସି ଉନ୍ନତି ହୋଇ ନ ଥିଲା । ବର୍ଷା ଉପରେ ନିର୍ଭର କରି ପ୍ରାକୃତିକ ବଢ଼ି, ମରୁଡ଼ି ଓ ବାତ୍ୟା ମଧ୍ୟଦେଇ କୃଷିକାର୍ଯ୍ୟ ଚାଲିଥିଲା । ଖଜଣା ଆଦାୟ ଜନ୍ମ ବାଧ୍ୟବାଧକ ଭାବରେ ହେଉ-ଥିଲା ଏବଂ ଠିକ୍ ସମୟରେ ଖଜଣା ନ ଦେଲେ ଜମି ନିଲାମ ହୋଇ ଯାଉଥିଲା । ଅତି ଅଳ୍ପ ଲୋକ ଲେଖିପଢ଼ି ଜାଣିଥିଲେ । ସହର, ବଜାର ଓ ସରକାରୀ ଅଫିସ-ମାନଙ୍କରେ ଚାକରି କରିବାର କୌଣସି ସୁବିଧା ନ ଥିଲା । ସହରରେ ସରକାରୀ ଅଫିସ୍‌ରେ ଯେ କେତେଗୋଟି ଭଲଆ ଚାକିରିରେ ଚାକରି କରିବାର ସମ୍ଭାବନା ଥିଲା, ସେଥିରେ ବଙ୍ଗପ୍ରଦେଶରୁ ଲୋକମାନେ ଆସି ଚାକରି କରୁଥିଲେ । ସାଧାରଣ ଲୋକମାନେ ବେକାର, ସମ୍ବଲହୀନ, ଋଣଗ୍ରସ୍ତ ଏବଂ ରୋଗାକ୍ରାନ୍ତ ହୋଇ ଭିକାରି ପରି ଗରିବ ହୋଇଗଲେ । ଏହି ଅବସ୍ଥା ଊନବିଂଶ ଶତାବ୍ଦୀର ଆରମ୍ଭରୁ ୧୯୪୦ ମସିହା ପର୍ଯ୍ୟନ୍ତ ଚାଲିଥିଲା । ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ, ସେହି ସମୟଠାରୁ ୧୯୩୦ ମସିହା ପର୍ଯ୍ୟନ୍ତ ଜନ-ସାଧାରଣଙ୍କ ଦାରିଦ୍ର୍ୟ ବଢ଼ି, ମରୁଡ଼ି, ଖାଦ୍ୟାଭାବ, ମହାଜନ ଓ ଜମିଦାରମାନଙ୍କ ଉତ୍ପୀଡନ ଏବଂ ସରକାରଙ୍କର ଉଦାସୀନତା, ଫକୀରମୋହନ, ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶଙ୍କ ସମେତ ବହୁ ଲେଖକ ଓ ସମାଜ ସେବକ ବ୍ୟଥିତ ଚିତ୍ତରେ ବର୍ଣ୍ଣନା କରିଛନ୍ତି । ଏ ଅବସ୍ଥାର ଶେଷ ପର୍ଯ୍ୟାୟ, ୧୯୨୦ ମସିହାଠାରୁ ୧୯୪୦ ମସିହା ପର୍ଯ୍ୟନ୍ତ ଅବସ୍ଥା ଆମ୍ଭମାନଙ୍କର ସମସାମୟିକ ଲୋକମାନଙ୍କର ଅଙ୍ଗେ ନିଭାଇବା କଥା । ୧୯୪୦ ମସିହା ପରେ ରାଜ୍ୟବାସୀଙ୍କ ଆର୍ଥିକ ଅବସ୍ଥାରେ ଭିନ୍ନ ଅଧ୍ୟାୟ ଆରମ୍ଭ ହେଲା ।

# ପ୍ରଗତର ଗୀତ

( ୧୧ )

୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ଓଡ଼ିଶାରେ ଯେଉଁ ଆର୍ଥିକ ଓ ସାମାଜିକ ବ୍ୟବସ୍ଥା ସବୁ ଆରମ୍ଭ ହୋଇଥିଲା ତାହା କ୍ରମେ ଦୃଢ଼ ଓ ପ୍ରତିଷ୍ଠିତ ହୋଇ ୧୯୧୪ ମସିହାରେ ପ୍ରଥମ ମହାଯୁଦ୍ଧ ଆରମ୍ଭ ବେଳକୁ ପରିଣତ ଏବଂ ଶେଷ ପର୍ଯ୍ୟାୟରେ ପହଞ୍ଚିଥିଲା । ସୁପ୍ରତିଷ୍ଠିତ ବ୍ରିଟିଶ ରାଜତ୍ୱରେ କୋର୍ଟ, କଚେରି, ହାକିମ ହୁକୁମା, ସବୁ ପ୍ରକାର ଚାକିରିରେ ବଙ୍ଗବାସୀଙ୍କର ପ୍ରାଧାନ୍ୟ, ସୁପ୍ରତିଷ୍ଠିତ ଜମିଦାରି ଓ ମହାଜନି କାରବାର, ଗଡ଼ଜାତ ରାଜ୍ୟମାନଙ୍କରେ ଇଂରେଜ ସରକାରଙ୍କର ବାହୁଚ୍ଛାୟା ତଳେ ରାଜା-ମାନଙ୍କର ଅଖଣ୍ଡ କ୍ଷମତା ଓ ସ୍ୱେଚ୍ଛାଚାରୀ ଶାସନ, ଗଡ଼ଜାତ ଓ ମୋଗଲବନ୍ଦୀ ସବୁ ଅଞ୍ଚଳରେ ଲୋକମାନଙ୍କର ରସାତଳ ପ୍ରାପ୍ତ ଦାରିଦ୍ର୍ୟ, ନିରକ୍ଷରତା, କୁସଂସ୍କାରପୂର୍ଣ୍ଣ ସମାଜ ଓ ଜାତିଭେଦ ସୁସଙ୍ଗଠିତ ଭାବରେ ପ୍ରଚଳିତ ହୋଇ ଯାଇଥିଲା । ଇଂଲଣ୍ଡର ମହାମାନ୍ୟ ସମ୍ରାଟଙ୍କ ଅଧୀନରେ ଇଂରେଜମାନେ ପୃଥିବୀର ଅର୍ଦ୍ଧରୁ ଅଧିକ ଦେଶ ଶାସନ କରୁଥିଲେ । ବ୍ରିଟିଶ ସାମ୍ରାଜ୍ୟରେ ସୂର୍ଯ୍ୟ ଅସ୍ତ ହେଉ ନ ଥିଲେ ଏବଂ ବ୍ରିଟିଶ ଶାସିତ ଦେଶମାନଙ୍କରେ ଲୋକମାନେ ବ୍ରିଟିଶ ସାମ୍ରାଜ୍ୟର ପ୍ରଜା ବୋଲି ଗର୍ବ ଅନୁଭବ କରୁଥିଲେ ଏବଂ କେତେକ କବିଙ୍କ ମତରେ ମହୋଦଧି ସୁଦ୍ଧା ବ୍ରିଟିଶ ସମ୍ରାଟ ଓ ସାମ୍ରାଜ୍ଞୀଙ୍କର ଜୟଗାନ କରୁଥିଲେ । ନିଷ୍ପେଷିତ ପ୍ରଜାମାନେ ଦୁଃଖ ଦାରିଦ୍ର୍ୟର କାରଣ ହୃଦୟଙ୍ଗମ କରି ପାରୁ ନ ଥିଲେ ଏବଂ ଶାସକ ଓ ସମାଜପତିମାନଙ୍କ ବିରୋଧରେ ବିଦ୍ରୋହର ସ୍ୱପ୍ନ ଦେଖୁ ନ ଥିଲେ । ସିପାହୀ ବିଦ୍ରୋହ ସମୟରେ ଯେଉଁ ବିଦ୍ରୋହର ବହ୍ନି ପ୍ରଜ୍ୱଳିତ ହୋଇଥିଲା, ତାହା ଊନବିଂଶ ଶତାବ୍ଦୀର ଶେଷ ବେଳକୁ ନିର୍ବାପିତ ହୋଇ ଯାଇଥିଲା । ବିଂଶ ଶତାବ୍ଦୀର ଆରମ୍ଭରେ, ଓଡ଼ିଶା ସମେତ ଭାରତର ସବୁ ପ୍ରଦେଶର ପ୍ରଜାମାନେ ସ୍ୱପ୍ନରେ ସୁଦ୍ଧା ଭାବି ପାରୁ ନ ଥିଲେ ଯେ ମାତ୍ର ଚାଳିଶ ପଚାଶ ବର୍ଷ ମଧ୍ୟରେ ଏ ସାମ୍ରାଜ୍ୟ ଭୁଷୁଡ଼ି ପଡ଼ିବ ଏବଂ ପୃଥିବୀର ସବୁ ଦେଶରେ ବୈପ୍ଳବିକ ରାଜନୈତିକ ଓ ସାମାଜିକ ପରିବର୍ତ୍ତନ ଘଟିବ ।

୧୯୦୫ ମସିହାରେ ବଙ୍ଗ ବିଚ୍ଛେଦ ହେବାରୁ ବଙ୍ଗ ଦେଶରେ ବ୍ରିଟିଶ ଶାସକଙ୍କ ବିରୋଧରେ ବିଦ୍ରୋହ ଆରମ୍ଭ ହେଲା ଏବଂ ସ୍ୱଦେଶୀ ଆନ୍ଦୋଳନର ସ୍ୱର ଭାରତର ବିଭିନ୍ନ ପ୍ରାନ୍ତରେ ଶୁଭିଲା । ତଥାପି ଓଡ଼ିଶାରେ ପ୍ରଚଳିତ ବ୍ରିଟିଶ ଶାସନ ଓ ସାମାଜିକ ବ୍ୟବସ୍ଥା ଦୃଢ଼ ଥିଲା । ବଙ୍ଗ ବିଚ୍ଛେଦ ବିଦ୍ରୋହ ଓ ସ୍ୱଦେଶୀ ଆନ୍ଦୋଳନ ଓଡ଼ିଶାର ପୁରପଲ୍ଲୀରେ ବିଶେଷ ପ୍ରଭାବ ପକାଇ ପାରି ନ ଥିଲା । ସେତେବେଳେ ଭାରତର ସ୍ୱାଧୀନତାପାଇଁ ସଭାସମିତି ମାଧ୍ୟମରେ ଦାବି ସାଧାରଣ ଲୋକମାନଙ୍କ ମଧ୍ୟରେ ଜନଜାଗରଣ ସୃଷ୍ଟି କରି ପାରି ନ ଥିଲା । ଏହିପରି ଭାରତର ସବୁ ଅଞ୍ଚଳରେ ଇଂରେଜ ସରକାରଙ୍କ ସ୍ଥିତି ସୁଦୃଢ଼ ଥିବା ବେଳେ, ୧୯୧୪ ମସିହା ଅଗଷ୍ଟମାସରେ ୟୁରୋପରେ ପ୍ରଥମ ମହାଯୁଦ୍ଧ ଆରମ୍ଭ ହୋଇଗଲା ଏବଂ ୧୯୧୮ ମସିହା ନଭେମ୍ବର ମାସଯାଏ ଚାରିବର୍ଷ ଚାଲିଲା । ଏହି ଚାରିବର୍ଷ ଯୁଦ୍ଧ ସମୟରେ ମଧ୍ୟ ଭାରତରେ ବିଶେଷ ଗଣ୍ଡଗୋଳ ନ ଥିଲା । ଭାରତର ଦେଶପ୍ରେମୀ ବୁଦ୍ଧିଜୀବୀମାନେ ସେତେବେଳେ କେବଳ ବ୍ରିଟିଶ ସାମ୍ରାଜ୍ୟ ଅଧୀନରେ ସ୍ୱାୟତ୍ତଶାସନ ଦାବି କରୁଥିଲେ । ଯୁଦ୍ଧପରେ କିନ୍ତୁ ପରିସ୍ଥିତି ବଦଳିଗଲା । ୧୯୧୯ ମସିହାରେ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ ଖିଲାପତ୍ ଆନ୍ଦୋଳନ ହେଲା । ଜାଲିଆନାବାଗ୍ ଗୁଳିକାଣ୍ଡରେ ଶହ ଶହ ନିରୀହ ଲୋକ ପ୍ରାଣ ହରାଇଲେ । ସାରା ଭାରତବର୍ଷରେ ଜନସାଧାରଣଙ୍କ ମଧ୍ୟରେ ଉତ୍ତେଜନା ସୃଷ୍ଟି ହେଲା ଏବଂ ଲୋକମାନଙ୍କର ବ୍ରିଟିଶ ସରକାରଙ୍କ ଉପରେ କ୍ରୋଧ ବଢ଼ିଲା ଓ ଲୋକମାନେ ଚାରିଆଡ଼େ ସରକାରଙ୍କ ବିରୋଧରେ ବିକ୍ଷୋଭ ପ୍ରଦର୍ଶନ କଲେ । ୧୯୨୦ ମସିହାରୁ ମହାତ୍ମାଗାନ୍ଧି ସ୍ୱାଧୀନତା ଆନ୍ଦୋଳନର କର୍ଣ୍ଣଧାର ହେଲେ । ତାଙ୍କ ନେତୃତ୍ୱରେ ୧୯୨୧ ମସିହାଠାରୁ ସମଗ୍ର ଦେଶରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହେଲା । ସେ ଆନ୍ଦୋଳନ ଆଉ ଦେଶପ୍ରେମୀ ବୁଦ୍ଧିଜୀବୀ-ମାନଙ୍କର ଜାତୀୟ କଂଗ୍ରେସରେ ପ୍ରସ୍ତାବ ଗୃହୀତ କରାଇ ସରକାରଙ୍କ ନିକଟରେ ଦାବି ଉପସ୍ଥାପନ କରିବା ମଧ୍ୟରେ ସୀମାବଦ୍ଧ ରହିଲା ନାହିଁ । ତାହା ଭାରତର ସ୍ୱାଧୀନତାପାଇଁ ସମଗ୍ର ଦେଶରେ ଗଣ ଆନ୍ଦୋଳନରେ ପରିଣତ ହେଲା ।

ଅହିଂସା ଅସହଯୋଗ ଆନ୍ଦୋଳନ ହିଂସାତ୍ମକ ରୂପ ଧାରଣ କରିବାରୁ, ଦେଢ଼ବର୍ଷ ପରେ ଗାନ୍ଧିଜୀ ତାହା ବନ୍ଦ କରିଦେଲେ ଏବଂ ପୁଣି ପାଞ୍ଚ ଛଅ ବର୍ଷ କାଳ ଭାରତବାସୀ ସେମାନଙ୍କର ଦାବି କେନ୍ଦ୍ର ଓ ପ୍ରାଦେଶିକ ବିଧାନସଭାମାନଙ୍କ ମାଧ୍ୟମରେ ଉପସ୍ଥାପିତ କଲେ ଏବଂ ଗାନ୍ଧିଜୀ ରଚନାତ୍ମକ କାର୍ଯ୍ୟକ୍ରମ ମାଧ୍ୟମରେ ଭାରତୀୟ ସମାଜର ବହୁ ଆବିଳତା ବିରୋଧରେ ସଂଗ୍ରାମ କଲେ । କିନ୍ତୁ ଅସହଯୋଗ ଆନ୍ଦୋଳନ ବେଳେ ଯେଉଁ ଜନ ଜାଗରଣ ଆରମ୍ଭ ହେଲା ତାହା ଆଉ ନିର୍ବାପିତ ହେଲା ନାହିଁ । ୧୯୨୯ ମସିହାରୁ ପୁଣି ଗଣଆନ୍ଦୋଳନ ଆରମ୍ଭ

ହୋଇ ୧୯୪୭ ମସିହାରେ ଦେଶ ବିଭାଜନ ଏବଂ ଦେଶ ସ୍ୱାଧୀନ ହେବା ପର୍ଯ୍ୟନ୍ତ ଗ୍ୱଲିଲା । ୧୯୩୦ ମସିହାରୁ ଆଇନ ଅମାନ୍ୟ, ଲବଣ ସତ୍ୟାଗ୍ରହ, ବିଲାତରେ ଗୋଲଟେବୁଲ୍ ବୈଠକ, ୧୯୩୫ ମସିହାରେ ଭାରତ ଶାସନ ଆଇନ୍ ପ୍ରଣୟନ, ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ୧୯୩୭ ମସିହାରେ ପ୍ରାଦେଶିକ ବିଧାନସଭାମାନଙ୍କର ନିର୍ବାଚନ, ପ୍ରାଦେଶିକ ସ୍ୱାୟତ୍ତଶାସନ ପ୍ରବର୍ତ୍ତନ, ୧୯୩୯ ମସିହାରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ, ପ୍ରାଦେଶିକ କଂଗ୍ରେସ ସରକାରମାନଙ୍କର ଇସ୍ତଫା, ଯୁଦ୍ଧ ପରେ ଭାରତୀୟମାନଙ୍କୁ ଶାସନ କ୍ଷମତା ହସ୍ତାନ୍ତର କରିବାପାଇଁ ବିଭିନ୍ନ ପ୍ରସ୍ତାବ ଭାରତୀୟ ନେତା ଓ ବ୍ରିଟିଶ ସରକାରଙ୍କର ପ୍ରତିନିଧିମାନଙ୍କ ମଧ୍ୟରେ ଆଲୋଚନା, ୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନ, ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରଜା ଆନ୍ଦୋଳନ, ଦେଶ ବିଭାଜନପାଇଁ ଦାବି ସାଂପ୍ରଦାୟିକ ଗଣ୍ଡଗୋଳ ଓ ଶେଷରେ ଦେଶ ବିଭାଜନ ଏବଂ ଭାରତର ସ୍ୱାଧୀନତା ପ୍ରାପ୍ତି ପ୍ରଭୃତି ପ୍ରାୟ କୋଡ଼ିଏ ବର୍ଷ ମଧ୍ୟରେ ଘଟିଥିବା ସମସ୍ତ ଘଟଣା ଆମ ପୂରୁଷର ସମସ୍ତ ଭାରତବାସୀଙ୍କର ଅଙ୍ଗେ ନିଭାଇବା କଥା । ବସ୍ତୁତଃ ୧୯୨୦ ମସିହାଠାରୁ ୧୯୫୦ ମସିହା ପର୍ଯ୍ୟନ୍ତ ସମୟ ଯାହାକି ଆମ ସମସାମୟିକ ଲୋକ-ମାନଙ୍କର ବାଲ୍ୟ ଓ ଯୌବନ ସମୟ । ତାହା ଭାରତ ତଥା ପୃଥିବୀ ଇତିହାସରେ ସବୁଠାରୁ ଯୁଗାନ୍ତକାରୀ ଘଟଣାବହୁଳ ସମୟ ଥିଲା । ସେ ସମୟର ଘଟଣାମାନ ପୃଥିବୀ ଇତିହାସରେ କେବଳ ବିଂଶ ଶତାବ୍ଦୀ ନୁହେଁ, ବିଗତ ତିନି ଚାରି ଶତାବ୍ଦୀ ମଧ୍ୟରେ ଘଟିଥିବା ଘଟଣାମାନଙ୍କ ମଧ୍ୟରେ ସର୍ବ ବୃହତ୍ତମ ଘଟଣା ।

୧୯୨୦ ମସିହାଠାରୁ ୧୯୪୭ ମସିହା ପର୍ଯ୍ୟନ୍ତ ସମୟ ମଧ୍ୟରେ କେବଳ ଓଡ଼ିଶାରେ ନୁହେଁ, ଭାରତର ସବୁ ଅଞ୍ଚଳର ଲୋକମାନଙ୍କ ମଧ୍ୟରେ ବିରାଟ ଉତ୍ତେଜନା ସହିତ ଭବିଷ୍ୟତ ଜୀବନ, ସମାଜ ଓ ଦେଶ ଶାସନ ସମ୍ବନ୍ଧରେ ଅନିଶ୍ଚୟତା ଅନୁଭୂତ ହେଉଥିଲା । ୧୯୧୪ ମସିହାରେ ପ୍ରଥମ ମହାଯୁଦ୍ଧ ଆରମ୍ଭ-ଠାରୁ ୧୯୫୦ ମସିହା ପର୍ଯ୍ୟନ୍ତ ଆର୍ଥିକ ପ୍ରଗତି ଏବଂ ବିଭିନ୍ନ ବିକାଶ ଓ ଉନ୍ନୟନ ମୂଳକ କାର୍ଯ୍ୟ ବସ୍ତୁତଃ ସ୍ଥାଣୁ ହୋଇ ରହିଥିଲା । ସମାଜରେ ରାଜା, ମହାରାଜା, ଜମିଦାର, ମହାଜନମାନଙ୍କର ପ୍ରତିପତ୍ତି ବଜାୟ ରହିଥିଲା ଏବଂ ଲୋକମାନେ ପୂର୍ବପରି ଦାରିଦ୍ର୍ୟ ପ୍ରପୀଡ଼ିତ ଥିଲେ, ମାତ୍ର ଦେଶରେ ଜନଜାଗରଣ ହେତୁ ସବୁ ପ୍ରକାର ଶୋଷଣ ବିରୋଧରେ ଲୋକମାନେ ଆନ୍ଦୋଳନ କରୁଥିଲେ । ବ୍ରିଟିଶ ଶାସନର ଅବସାନ ଓ ସ୍ୱାଧୀନତା ପ୍ରାପ୍ତି ପରେ ଶୋଷଣକାରୀ ସଂସ୍ଥାମାନଙ୍କର ଲୋପ ହୋଇ ସମାଜରେ ଆର୍ଥିକ ପ୍ରଗତି ଏବଂ ସାମାଜିକ ଓ ଅର୍ଥନୈତିକ ନ୍ୟାୟ ପ୍ରତିଷ୍ଠିତ ହେବ ବୋଲି ଲୋକମାନେ ଆଶା କରୁଥିଲେ ।

ତୃତୀୟ ଅଧ୍ୟାୟରେ ବର୍ଣ୍ଣନା କରାଯାଇଛି ଯେ ଓଡ଼ିଶାରେ ନ'ଅଙ୍କ ଦୁର୍ଭିକ୍ଷ ପରେ ସେପରି ଭୟାବହ ଦୁର୍ଭିକ୍ଷର ପୁନରାବୃତ୍ତି ନ ହେବାପାଇଁ ସରକାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଜଳସେଚନ, ବନ୍ୟାନିୟନ୍ତ୍ରଣ ଏବଂ ପରିବହନର ଉନ୍ନତିପାଇଁ କେତେକ ସ୍ଥାୟୀ ପ୍ରକଳ୍ପ କାର୍ଯ୍ୟକାରୀ କରିଥିଲେ । ଏହି କାର୍ଯ୍ୟକ୍ରମରେ ମହାନଦୀ ଓ ବିରୂପା ଉପରେ ଆନିକଟ, ମହାନଦୀ ଓ ବ୍ରାହ୍ମଣୀକୁ ଯୋଗ କରୁଥିବା ହାଇଲେଭେଲ କେନାଲ, କଟକରୁ ମହାନଦୀ ମୁହାଣ ପର୍ଯ୍ୟନ୍ତ କେନ୍ଦ୍ରାପଡ଼ା କେନାଲ, କଟକରୁ ସମୁଦ୍ରକୂଳ ପର୍ଯ୍ୟନ୍ତ ତାଳଦଣ୍ଡା, ମାଛଗାଁ, ପଟାମୁଣ୍ଡାଇ, ଗୋବରୀ ପ୍ରଭୃତି କେନାଲ ଏବଂ ସେମାନଙ୍କର ଶାଖା କେନାଲମାନ ନିର୍ମିତ ହୋଇଥିଲା । ସେଥି ସଙ୍ଗେ ସଙ୍ଗେ ବନ୍ୟା ନିୟନ୍ତ୍ରଣପାଇଁ କଟକ ଜିଲ୍ଲାରେ ପ୍ରାୟ ୧୦୦୦ ମାଇଲ, ପୁରୀ ଜିଲ୍ଲାରେ ୬୨୦ ମାଇଲ ଏବଂ ବାଲେଶ୍ୱର ଜିଲ୍ଲାରେ ୮୫ ମାଇଲ ନଦୀବନ୍ଧ ନିର୍ମିତ ହୋଇଥିଲା । ୧୮୬୬ ମସିହା ପରେ ସରକାର ରାସ୍ତା ନିର୍ମାଣ ଓ ମରାମତି ଉପରେ ବିଶେଷ ଧ୍ୟାନ ଦେଇଥିଲେ । ଏହି କାର୍ଯ୍ୟକ୍ରମରେ ମାନ୍ଦ୍ରାଜ, କଲିକତା ଗ୍ରାଣ୍ଡ ଟ୍ରଙ୍କ ରୋଡ଼ ପର୍ଯ୍ୟାୟକ୍ରମେ ନିର୍ମିତ ହୋଇଥିଲା । ଓଡ଼ିଶାରେ ଏହି ରାସ୍ତାର ଅଂଶ ୩୩୮ ମାଇଲ ୧୮୭୫ ମସିହାରେ ସମ୍ପୂର୍ଣ୍ଣ ହୋଇଥିଲା । ଏହି ସମୟରେ କଟକରୁ ପୁରୀ ପର୍ଯ୍ୟନ୍ତ ରାସ୍ତା ପକ୍କା କରାଯାଇଥିଲା । ୧୮୬୬ ମସିହାଠାରୁ ୧୯୦୦ ମସିହା ମଧ୍ୟରେ ମାନ୍ଦ୍ରାଜ, କଲିକତା ଗ୍ରାଣ୍ଡ ଟ୍ରଙ୍କ ରୋଡ଼, ଗଞ୍ଜାମ ରୋଡ଼, କେନ୍ଦୁଝର ରୋଡ଼, ମାଛଗାଁ ରୋଡ଼, ତାଳଦଣ୍ଡା ରୋଡ଼, ଚାନ୍ଦବାଲି ରୋଡ଼, ଯାଜପୁର ରୋଡ଼, ସମ୍ବଲପୁର ପାଟଣା ରୋଡ଼, ସମ୍ବଲପୁର ରାୟପୁର ରୋଡ଼ ପ୍ରଭୃତି ୧୦ ଗୋଟି ସୁଦୀର୍ଘ ପକ୍କା ରାସ୍ତା ନିର୍ମିତ ହୋଇଥିଲା ଏବଂ ତାହା ବ୍ୟତୀତ ବହୁ କଚ୍ଚା ରାସ୍ତା ମଧ୍ୟ ନିର୍ମିତ ହୋଇଥିଲା ।

ରେଲପଥ ନିର୍ମାଣ କ୍ଷେତ୍ରରେ କଲିକତାଠାରୁ ନାଗପୁର ରେଲପଥ ଏବଂ ଝାରସୁଗୁଡ଼ା ସମ୍ବଲପୁର ରେଲପଥ ୧୮୮୯ ମସିହା ସୁଦ୍ଧା ସମ୍ପୂର୍ଣ୍ଣ ହୋଇଥିଲା । ପୂର୍ବ ଉପକୂଳରେ କଲିକତାଠାରୁ ମାନ୍ଦ୍ରାଜ ରେଲପଥ ୧୮୯୫ ମସିହାରେ ସମ୍ପୂର୍ଣ୍ଣ ହୋଇଥିଲା ଏବଂ ଏହାର ଗୋଟିଏ ଶାଖା ରେଲପଥ ଖୋର୍ଦ୍ଧାଠାରୁ ପୁରୀ ପର୍ଯ୍ୟନ୍ତ ନିର୍ମିତ ହୋଇଥିଲା । ୧୯୦୪ ମସିହାରେ ରୂପ୍‌ସାରୁ ବାରିପଦା ପର୍ଯ୍ୟନ୍ତ ଅଣଓସାରିଆ ରେଲପଥ ନିର୍ମିତ ହୋଇଥିଲା । କେତେକ ବର୍ଷ ପରେ କଟକରୁ ତାଳଚେର ପର୍ଯ୍ୟନ୍ତ ରେଲପଥ ଏବଂ କେସିଙ୍ଗା ଟିଟିଲାଗଡ଼ ପ୍ରଭୃତି ଦେଇ ରାୟପୁର ଭିଜୟନଗର ରେଲପଥ ନିର୍ମିତ ହୋଇଥିଲା । ୧୮୬୬ଠାରୁ ୧୯୦୦ ମସିହା ମଧ୍ୟରେ ମଧ୍ୟ ବାଲେଶ୍ୱର, ଧାମରା, ଚାନ୍ଦବାଲି, ପୁରୀ ଓ ମହାନଦୀ ମୁହାଣ ବନ୍ଦର-ମାନଙ୍କର ଉନ୍ନତି ନିମିତ୍ତ କେତେକ ପଦକ୍ଷେପ ନିଆ ହୋଇଥିଲା । ମୋଟ ଉପରେ

୧୮୭୦ଠାରୁ ୧୯୧୦ ମସିହା ପର୍ଯ୍ୟନ୍ତ ଚାଳିଶ ବର୍ଷ ଓଡ଼ିଶାରେ ଗୋଟିଏ ନିର୍ମାଣ ଯୁଗ ଥିଲା । ଏହି ଚାଳିଶ ବର୍ଷ ମଧ୍ୟରେ ବହୁ ରାସ୍ତା, ରେଳପଥ, କେନାଲ ଓ ନଦୀବନ୍ଧ ନିର୍ମିତ ହୋଇଥିଲା । କିନ୍ତୁ ୧୯୧୦ ମସିହା ବେଳକୁ ଏହିସବୁ ନିର୍ମାଣ କାର୍ଯ୍ୟରେ ପୂର୍ଣ୍ଣଚ୍ଛେଦ ପଡ଼ିଥିଲା ।

୧୯୧୦ ମସିହାରୁ ୧୯୪୭ ମସିହା ମଧ୍ୟରେ ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଏବଂ ଗଡ଼ଜାତ ରାଜ୍ୟମାନଙ୍କରେ କୌଣସି ବଡ଼ ନିର୍ମାଣ କାର୍ଯ୍ୟ ହୋଇ ନ ଥିଲା । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଯୁଦ୍ଧକାର୍ଯ୍ୟର ଆବଶ୍ୟକତା ହେତୁ ଝାରସୁଗୁଡ଼ା, ଅମରଦା ରୋଡ଼, ଚାରବାଟିଆ ପ୍ରଭୃତି ସ୍ଥାନରେ କେତେକ ଅସ୍ଥାୟୀ ଉଡ଼ାଜାହାଜ ଘାଟି ନିର୍ମିତ ହୋଇଥିଲା । ଯୁଦ୍ଧ ପରେ ସେଥିରୁ କେତେଗୋଟି ଅକାମୀ ହୋଇଯାଇଥିଲା । ପ୍ରଥମ ମହାଯୁଦ୍ଧଠାରୁ ଦ୍ୱିତୀୟ ମହାଯୁଦ୍ଧ ପର୍ଯ୍ୟନ୍ତ ଓଡ଼ିଶାର ଚାରିଆଡ଼େ ଲୋକମାନେ ଦରିଦ୍ର, ବେକାର ଓ ଋଣଗ୍ରସ୍ତ ଭାବରେ ଦୁଃଖରେ କାଳ କାଟୁଥିଲେ ମାତ୍ର ସାଧାରଣ ନିର୍ମାଣ କ୍ଷେତ୍ରରେ କୌଣସି କାମଧନ୍ଦା ସୃଷ୍ଟି ହେଉ ନ ଥିଲା । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଯୁଦ୍ଧର ଆନୁଷଙ୍ଗିକ କାର୍ଯ୍ୟପାଇଁ ବହୁ କାମଧନ୍ଦା ସୃଷ୍ଟି ହୋଇଥିଲା କିନ୍ତୁ ଲୋକହିତକର ରାସ୍ତା, ରେଳପଥ, ଜଳସେଚନ, ବନ୍ୟା ନିୟନ୍ତ୍ରଣ ପ୍ରଭୃତି ନିର୍ମାଣ କାମ ହେଉ ନ ଥିଲା । ୧୯୪୩ ମସିହାଠାରୁ ୧୯୪୮ ମସିହା ପର୍ଯ୍ୟନ୍ତ ମୁଁ କଟକ, ପୁରୀ, ଗଞ୍ଜାମ, ସମ୍ବଲପୁର ଜିଲ୍ଲା ଏବଂ କେତେକ ଗଡ଼ଜାତ ରାଜ୍ୟର ବିଭିନ୍ନ ଅଞ୍ଚଳ ବୁଲି ଦେଖିବାର ସୁଯୋଗ ପାଇଥିଲି । ସେ ସମୟରେ କୌଣସି ଅଞ୍ଚଳରେ ବଡ଼ ନିର୍ମାଣ କାମ ହେଉଥିବାର ମୁଁ ଦେଖି ନ ଥିଲି । ଏପରିକି ଆମ ଅଞ୍ଚଳରେ ୧୯୨୦ ମସିହାଠାରୁ ୧୯୪୦ ମସିହା ମଧ୍ୟରେ ନୂଆ ବ୍ୟକ୍ତିଗତ ଘର ମଧ୍ୟ ତିଆରି ହେଉ ନ ଥିଲା । ପକ୍କା ଘରତ ମୋଟେ ହେଉ ନ ଥିଲା । ନୂଆ ଛପର ଘର ମଧ୍ୟ ଅତି ଅଳ୍ପ ସଂଖ୍ୟାରେ ହେଉଥିଲା । ପୂର୍ବରୁ ଯାହାର ଯାହା ଘର ଥିଲା, ସେଥିରେ ସେମାନେ ମୁଣ୍ଡ ଗୁଞ୍ଜି ଚଳି ଯାଉଥିଲେ । ପୁରୁଣା ଘର ଭାଙ୍ଗି ନୂଆ ଘର କରିବାକୁ ପଇସା ନ ଥିଲା । ପୁରୁଣାକାଳିଆ ଧନୀ ଜମିଦାରମାନଙ୍କର ଘର, ମନ୍ଦିର, ମଠ, ଠାକୁରବାଡ଼ି ପ୍ରଭୃତିର ଅବକ୍ଷୟ ଘଟୁଥିଲା । ସେଥିରେ ନୂତନ ଉନ୍ନୟନ କାମ ହେଉ ନ ଥିଲା । ଓଡ଼ିଶା ନୂତନ ପ୍ରଦେଶ ହୋଇଥିଲେ ସୁଦ୍ଧା ନୂଆ ରାଜଧାନୀ ଗଠିତ ହେଉ ନ ଥିଲା । ଗ୍ରାମ ଓ ସହରମାନଙ୍କରେ ଅର୍ଥନୈତିକ ଅବସ୍ଥା ସ୍ଥାଣୁ ଭାବରେ ରହିଥିଲା ଏବଂ ଦେଶର ଚାରିଆଡ଼େ ରାଜନୈତିକ, ସାମାଜିକ ଓ ଆର୍ଥିକ କ୍ଷେତ୍ରରେ ଅନିଶ୍ଚୟତା ଅନୁଭୂତ ହେଉଥିଲା ।

ଏହି ପରସ୍ଥିତିରେ ୧୯୪୭ ମସିହାରେ ଭାରତ ସ୍ୱାଧୀନ ହେଲା ଏବଂ ପ୍ରାୟ ଦୁଇଶହ ବର୍ଷର ପ୍ରତିଷ୍ଠିତ ବ୍ରିଟିଶ ଶାସନର ଅବସାନ ଘଟିଲା । ସ୍ୱାଧୀନତା ପରେ ରାଜନୈତିକ, ସାମାଜିକ ଏବଂ ଅର୍ଥନୈତିକ କ୍ଷେତ୍ରରେ ବିରାଟ ପରିବର୍ତ୍ତନ ଘଟିବ ବୋଲି ସବୁ ଶ୍ରେଣୀର ଲୋକ ଆଶା କରିଥିଲେ । ସାଧାରଣ ଲୋକ ଆଶା କରିଥିଲେ ଯେ ଦେଶରେ ସବୁ ପ୍ରକାର ଶୋଷଣ ଲୋପ ପାଇବ । ଶୋଷଣକାରୀ ରାଜା, ଜମିଦାର ଓ ମହାଜନମାନଙ୍କର ବିଲୟ ଘଟିବ । କୃଷି, ଶିଳ୍ପ, ବ୍ୟବସାୟ, ବାଣିଜ୍ୟରେ ଉନ୍ନତି ଘଟିବ, ଜଳସେଚନ ଓ ଗମନାଗମନର ପ୍ରଭୂତ ଉନ୍ନତି ହେବ, ଶିକ୍ଷା ଓ ସ୍ୱାସ୍ଥ୍ୟ ସେବାର ପ୍ରସାର ହେବ, ଲୋକମାନେ ଶିକ୍ଷିତ ଓ ସ୍ୱାସ୍ଥ୍ୟବାନ୍ ହେବେ ଏବଂ ଦେଶରୁ ବେକାରି ଓ ଦାରିଦ୍ର୍ୟ ଲୋପ ପାଇବ । କୁସଂସ୍କାର ଓ ଅନ୍ଧବିଶ୍ୱାସ ଦୂର ହେବ । ଲୋକମାନଙ୍କର ଏହି ସ୍ୱପ୍ନକୁ ଦେଶର ସ୍ୱାଧୀନତା ସଂଗ୍ରାମୀ ଓ ନେତାମାନେ ପ୍ରଚୁର ଦ୍ୱାରା ବହୁଗୁଣରେ ବଢ଼ାଇ ଦେଇଥିଲେ । ସ୍ୱାଧୀନତା ପୂର୍ବରୁ ଦେଶବାସୀଙ୍କ ଦାରିଦ୍ର୍ୟ, ନିରକ୍ଷରତା, ରୋଗ, ଦୁଃଖ ପ୍ରଭୃତି ସବୁ ପ୍ରକାର ଅନଗ୍ରସରତା, ଦେଶର ପରାଧୀନତା ଓ ବିଦେଶୀ ସରକାରଙ୍କ ଶୋଷଣ ନୀତି ଯୋଗୁଁ ଘଟୁଛି ବୋଲି ଦେଶର ନେତା ଓ ଜନସାଧାରଣଙ୍କର ଦୃଢ଼ ଧାରଣା ଥିଲା । ବିଦେଶୀ ସରକାର ଚାଲିଗଲେ ଏବଂ ଦେଶ ସ୍ୱାଧୀନ ହୋଇଗଲେ, ସବୁ ପ୍ରକାର ଦୁର୍ଦ୍ଦଶା ଦୂରୀଭୂତ ହୋଇଯିବ ବୋଲି ସବୁ ଶ୍ରେଣୀର ଲୋକମାନେ ଭାବୁଥିଲେ । ଆଶା ଅତି ଉଚ୍ଚ ହେଲେ ଏବଂ କାର୍ଯ୍ୟ ଆଶାନୁରୂପ ନ ହେଲେ ହତାଶା ଜାତ ହେବା ଅନିବାର୍ଯ୍ୟ ଏବଂ ହତାଶାର ବହୁ କୁଫଳ ଲୋକମାନଙ୍କୁ ଭୋଗ କରିବାକୁ ହୁଏ । ସ୍ୱାଧୀନତାର ପରବର୍ତ୍ତୀ କାଳ, ବିଗତ ୪୦ ବର୍ଷ ମଧ୍ୟରେ ଓଡ଼ିଶା ସମେତ ଭାରତର ସବୁ ଅଞ୍ଚଳରେ ଲୋକମାନଙ୍କୁ ଏପରି କୁଫଳ ଭୋଗ କରିବାକୁ ପଡ଼ୁଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ପୃଥିବୀର ସବୁ ଦେଶରେ ଅଭୂତପୂର୍ବ ଜନଜାଗରଣ, ଅଚିନ୍ତନୀୟ ଆର୍ଥିକ, ଯାନ୍ତ୍ରିକ ଓ ବୌଦ୍ଧିକ ପ୍ରଗତି ଘଟିଛି । ବିଶ୍ୱଯୁଦ୍ଧ ଶେଷରେ ଭାରତର ସ୍ୱାଧୀନତା ପରେ ପରେ ପୃଥିବୀର ସବୁ ମହାଦେଶରେ ଔପନିବେଶିକ ଶାସନ ଲୋପ ପାଇଗଲା ଏବଂ ସବୁ ଛୋଟ ବଡ଼ ପରାଧୀନ ଦେଶ ସ୍ୱାଧୀନ ହୋଇଗଲେ । ୟୁରୋପ ଏବଂ ଆମେରିକାର ଉନ୍ନତ ଦେଶମାନଙ୍କରେ ଓ ଏସିଆ ମହାଦେଶର ଅଭୂତପୂର୍ବ ବୈଷୟିକ ଏବଂ ଯାନ୍ତ୍ରିକ ପ୍ରଗତି ହେବାରୁ, ସେ ଦେଶମାନଙ୍କର ସାଧାରଣ ଲୋକଙ୍କର ଜୀବନଧାରଣ ମାନ ବହୁଗୁଣରେ ବଢ଼ିଗଲା । ବିମାନ ଚଳାଚଳ, ଆକାଶ ମାର୍ଗରେ ଗମନାଗମନ, ରେଡିଓ, ଉପଗ୍ରହ ସାହାଯ୍ୟରେ ଟେଲିଭିଜନ ଏବଂ ଟେଲିଯୋଗାଯୋଗ ଦ୍ୱାରା

ସମ୍ବାଦ ସଂବାଦ ସୁବିଧା ଅସାଧାରଣ ଭାବେ ଉନ୍ନତ ହୋଇଯିବାରୁ ବିଭିନ୍ନ ଦେଶର ଲୋକମାନେ ଅତି ଅଳ୍ପ ସମୟ ମଧ୍ୟରେ ଅନ୍ୟ ଦେଶମାନଙ୍କୁ ଯାଇପାରଲେ, ବିଭିନ୍ନ ଦେଶରେ କ'ଣ ଘଟୁଛି ଏବଂ ଲୋକମାନେ କିପରି ଚଳୁଛନ୍ତି ତାହା ଅଳ୍ପ ସମୟ ମଧ୍ୟରେ ଜାଣିପାରିଲେ । ସବୁ ଦେଶର ଲୋକମାନେ ଅନ୍ୟ ଦେଶମାନଙ୍କର ଲୋକମାନଙ୍କର ଜୀବନଧାରଣ ମାନ ଏବଂ ଚଳିବା ପଦ୍ଧତି ପ୍ରତ୍ୟକ୍ଷଭାବରେ କିମ୍ବା ଟେଲିଭିଜନ ସାହାଯ୍ୟରେ ଦେଖିପାରିଲେ ଏବଂ ଉନ୍ନତ ଦେଶମାନଙ୍କର ଚଳିବା ପଦ୍ଧତି ଅନୁକରଣ କରିବାପାଇଁ ଇଚ୍ଛା କଲେ । ଦରିଦ୍ର ଦେଶମାନଙ୍କରେ ଲୋକମାନେ ନିଜର ଦାରିଦ୍ର୍ୟ ଓ ଦୁର୍ଦ୍ଦଶା ଧନୀ ଦେଶମାନଙ୍କର ସ୍ୱଚ୍ଛଳତା ସହିତ ତୁଳନା କରିବା ହେତୁ, ସେ ଦେଶମାନଙ୍କରେ ବ୍ୟାପକ ଜନଅସନ୍ତୋଷ ଜାଗ୍ରତ ହେଲା ।

ଭାରତରେ ନୂତନ ସମ୍ବିଧାନ ପ୍ରଚଳନ ପରେ ଶାସନ ଦାୟିତ୍ୱରେ ଥିବା ନେତାମାନେ ଲୋକମାନଙ୍କର ସର୍ବପ୍ରଧାନ ସମସ୍ୟାମାନ ଅଗ୍ରାଧିକାର ଭିତ୍ତିରେ ସମାଧାନପାଇଁ ଉଦ୍ୟମ କଲେ । ସମସ୍ୟା ବହୁତ ଓ ବହୁଳ ଥିଲା ଏବଂ ପରସ୍ପର ସହିତ ଛନ୍ଦି ହୋଇ ରହିଥିଲା । ଦେଶରେ ସର୍ବପ୍ରଧାନ ସମସ୍ୟା ଥିଲା ଗଣ ଦାରିଦ୍ର୍ୟ ଏବଂ ଧନୀ ଦରିଦ୍ର ଲୋକଙ୍କ ଜୀବନଧାରଣ ମାନରେ ବୈଷମ୍ୟ । ଆବଶ୍ୟକତା ତୁଳନାରେ ଦେଶରେ ସବୁ ପ୍ରକାର ପଦାର୍ଥର ଉତ୍ପାଦନ କମ୍ ଥିଲା ଏବଂ ସେ ଉତ୍ପାଦନରୁ ଧନୀ ଓ କ୍ଷମତାଶାଳୀ ଲୋକମାନେ ଅଧିକ ଭାଗ ନେଉଥିଲେ । ଜନସାଧାରଣ ପ୍ରଗତି ବିଷୟରେ ଯେପରି ଆଶାବାଦୀ ଥିଲେ, ଶାସନ ଦାୟିତ୍ୱରେ ଥିବା ନେତାମାନେ ମଧ୍ୟ ସେହିପରି ଆଶାବାଦୀ ଥିଲେ । ଜନସଂଖ୍ୟା ବୃଦ୍ଧି, ପ୍ରାକୃତିକ ସଂପଦର ସଦୁପଯୋଗର ଅଭାବ, ପୁଞ୍ଜି, କୁଶଳୀ କାରିଗର, ଶିଳ୍ପ ଓ କୃଷି କ୍ଷେତ୍ରରେ ସୁଦକ୍ଷ ସଂଚାଳକଙ୍କର ଅଭାବ ହେତୁ, ଉତ୍ପାଦନ ବୃଦ୍ଧି ପାଉ ନ ଥିବା ଏବଂ ଦେଶରେ ବେକାରି ଓ ଗଣଦାରିଦ୍ର୍ୟ ବିସ୍ତାର ଲାଭ କରୁଥିବା ଅବସ୍ଥା ସହଜରେ ଜଣା ଯାଉଥିଲା । କିପରି ଭାବରେ ଉତ୍ପାଦନ ବଢ଼ିବ, ବିଭିନ୍ନ ଉତ୍ପାଦନ କ୍ଷେତ୍ରରେ ଥିବା ପ୍ରତିବନ୍ଧକ ସବୁ ଦୂର ହେବ, ଉତ୍ପାଦିତ ପଦାର୍ଥ ବଣ୍ଟନରେ ସମତା ଆସିବ, ଦାରିଦ୍ର୍ୟ ଏବଂ ବେକାରି କିପରି ଚଞ୍ଚଳ ଦୂର ହେବ, ପୃଥିବୀର ବିଭିନ୍ନ ଉନ୍ନତ ଦେଶମାନେ ଏପରି ସମସ୍ୟାମାନଙ୍କର କିପରି ସମାଧାନ କରୁଛନ୍ତି, ଏ ସବୁ ବିଷୟ ଅନୁଶୀଳନ ଓ ଆଲୋଚନା ପରେ, ଯୋଜନାବଦ୍ଧ ଉତ୍ପାଦନ ବୃଦ୍ଧି, ସୁଷମ ବଣ୍ଟନ, ପୁଞ୍ଜି ଆହରଣ, କାରିଗରୀ ଜ୍ଞାନ କୌଶଳ ବୃଦ୍ଧି ଓ ପ୍ରୟୋଗ, ଶିକ୍ଷା ଓ ସ୍ୱାସ୍ଥ୍ୟ ସବୁ ବିଷୟରେ ଉନ୍ନତିପାଇଁ ସମଗ୍ର ଦେଶର ଯୋଜନା ଭିତ୍ତିରେ ପଞ୍ଚବାର୍ଷିକ ଯୋଜନାମାନ ପ୍ରଣୀତ ହେଲା ଏବଂ ସେଗୁଡ଼ିକ

ପର୍ଯ୍ୟାୟକ୍ରମେ କାର୍ଯ୍ୟକାରୀ କରାଗଲା । ଏହି କାର୍ଯ୍ୟକ୍ରମରେ ବିଗତ ତ୍ରିଶ ବର୍ଷ ମଧ୍ୟରେ ସାତଗୋଟି ଯୋଜନାର କାର୍ଯ୍ୟ ଶେଷ ହୋଇ ୧୯୯୧—୯୨ ମସିହା-ଠାରୁ ଅଷ୍ଟମ ଯୋଜନା କାର୍ଯ୍ୟ ଆରମ୍ଭ ହୋଇଛି ।

ଏହି ତ୍ରିଶ ବର୍ଷ ମଧ୍ୟରେ ବହୁ ଘଟଣା ଘଟିଗଲାଣି । ଶାସନ ଦାୟିତ୍ୱ ବହନ କରିଥିବା ବହୁ ନେତା ମରିଗଲେଣି ଏବଂ ନୂତନ ନେତାମାନେ ଦାୟିତ୍ୱ ବହନ କଲେଣି । ଚୀନ୍ ଦେଶ ସଙ୍ଗରେ ଥରେ ଏବଂ ପାକିସ୍ଥାନ ସଙ୍ଗରେ ତିନିଥର ଯୁଦ୍ଧ ହେଲାଣି । ଦେଶର ବିଭିନ୍ନ ପ୍ରାନ୍ତରେ ବିଚ୍ଛିନ୍ନତାବାଦୀ ଆନ୍ଦୋଳନ ଏବଂ ସଂତ୍ରାସବାଦୀ କାର୍ଯ୍ୟକ୍ରମ ବହୁବର୍ଷ କାଳ ଅର୍ଥନୈତିକ ପ୍ରଗତିରେ ବାଧା ସୃଷ୍ଟି କରିଛି । ଏସବୁ ବାଧାବିଘ୍ନ ୧୯୫୦ ମସିହାରେ ଆଶଙ୍କା କରାଯାଇ ନ ଥିଲା । ମାତ୍ର ବାଧାବିଘ୍ନ ସତ୍ତ୍ୱେ ଦେଶର ସବୁ ଅଞ୍ଚଳରେ ବହୁବିଧ ଓ ବହୁ ପରିମାଣ ପ୍ରଗତି ହୋଇଛି । କୃଷି ଉତ୍ପାଦନ ସାଢ଼େ ତିନିଗୁଣ ବଢ଼ି ଯାଇଛି, ବହୁ ବୃହତ ଓ କ୍ଷୁଦ୍ରଶିଳ୍ପ ପ୍ରତିଷ୍ଠିତ ହୋଇଛି । ରାସ୍ତାଘାଟ ନିର୍ମାଣ, ସଡ଼କ ପରିବହନ, ଜଳସେଚନ, ବନ୍ୟା ନିୟନ୍ତ୍ରଣ, ବିଦ୍ୟୁତାଦି ଶକ୍ତି ଉତ୍ପାଦନ, ଉଡ଼ାଜାହାଜ ଓ ଜଳଜାହାଜ ଚଳାଚଲ, ବନ୍ଦର, ରେଲଷ୍ଟେସନ, ବିମାନ ବନ୍ଦର ନିର୍ମାଣ, ମହାକାଶକୁ ଉପଗ୍ରହ ପ୍ରେରଣ ପ୍ରଭୃତି ବହୁ ସ୍ଥାୟୀ ଉନ୍ନୟନ କାର୍ଯ୍ୟ ହୋଇଛି ଏବଂ ଏ ସବୁ ଦିଗରେ ପ୍ରଗତି ଅବ୍ୟାହତ ରହିଛି । ସ୍କୁଲ, କଲେଜ, ବିଭିନ୍ନ କାରିଗରୀ ତାଲିମ ଅନୁଷ୍ଠାନମାନଙ୍କର ଅଭୂତପୂର୍ବ ସଂଖ୍ୟାବୃଦ୍ଧି, ଡାକ ଓ ଟେଲିଯୋଗାଯୋଗ ପ୍ରସାର, ସହର ଓ ସହରବାସୀଙ୍କ ସଂଖ୍ୟା ବୃଦ୍ଧି, ଗ୍ରାମାଞ୍ଚଳରେ ବିଦ୍ୟୁତଯୋଗାଣ, ରାସ୍ତାଘାଟ ନିର୍ମାଣ, ପରିବହନ ସୁବିଧା ପ୍ରଭୃତି ସମସ୍ତ ବିଷୟରେ ପ୍ରଗତି ସାଧିତ ହୋଇଛି । ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଏ ସବୁ ବିଷୟରେ ପ୍ରଗତି ସ୍ଥାଣୁ ଥିଲା । ୧୯୫୦ ମସିହା ପୂର୍ବରୁ ଦେଶର ସବୁ ଅଞ୍ଚଳରେ ଆର୍ଥିକ ସ୍ଥିତି ଯେପରି ସ୍ଥାଣୁ ଓ ଅନୁନ୍ନତ ଥିଲା, ଶତାବ୍ଦୀର ଶେଷ ଦଶକରେ ତାହା ନାହିଁ । ୧୯୪୭ ମସିହା ପୂର୍ବର ଭାରତ ଏବଂ ଶତାବ୍ଦୀର ଶେଷ ଦଶକର ଭାରତ ମଧ୍ୟରେ ଆକାଶ ପାତାଳ ପ୍ରଭେଦ । କୃଷି, ଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ, କାରିଗରୀ ବିଜ୍ଞାନ, ଗମନାଗମନ ସୁବିଧା ପ୍ରଭୃତି ସମସ୍ତ ଆଧୁନିକ ଉତ୍ପାଦନ ଓ ଯୋଗାଯୋଗ ପ୍ରଣାଳୀରେ ବର୍ତ୍ତମାନ ଏ ଦେଶ ପୃଥିବୀରେ ଏକ ଅନୁନ୍ନତ ଓ ସ୍ଥାଣୁ ଦେଶ ନୁହେଁ ।

ତଥାପି ଭାରତବର୍ଷର ଜନସାଧାରଣ ଆଜି ମଧ୍ୟ ୟୁରୋପ ଓ ଆମେରିକାର ସବୁଦେଶ, ଅଷ୍ଟ୍ରେଲିଆ ଏବଂ ଏସିଆର ଜାପାନ ପ୍ରଭୃତି ବହୁଦେଶର ଲୋକମାନଙ୍କ ତୁଳନାରେ ଅତି ଗରିବ । ଦେଶରେ ଉତ୍ପାଦନ ବଢ଼ିବା ସଙ୍ଗେ ସଙ୍ଗେ ଲୋକସଂଖ୍ୟା ଏତେ ବଢ଼ି ଯାଉଛି ଯେ, ସାଧାରଣ ଲୋକମାନଙ୍କର ଜୀବନଧାରଣ ମାନ ଉନ୍ନତ

ହୋଇ ପାରୁ ନାହିଁ, ତା'ପରେ ପୁଣି ଯେଉଁମାନେ ଧନୀ ଓ ଶିକ୍ଷିତ, ସେମାନେ ଉତ୍ପାଦନର ଅଧିକ ଭାଗ କଳେବଳେ କୌଶଳେ ନେଇ ଯାଉଛନ୍ତି । ଧନୀ ଲୋକ ଅଧିକ ଧନୀ ହୋଇ ଯାଉଛନ୍ତି ଏବଂ ଧନୀ ଦରିଦ୍ରଙ୍କ ମଧ୍ୟରେ ପାର୍ଥକ୍ୟ ବଢ଼ି ଯାଉଛି । ସେହି ଭଳିରେ ଉନ୍ନତ ଅଞ୍ଚଳର ଲୋକମାନେ ଅଧିକ ଧନୀ ହୋଇ ଯାଉଛନ୍ତି ଏବଂ ଦରିଦ୍ର ଓ ଅନୁନ୍ନତ ଅଞ୍ଚଳର ଲୋକମାନେ ଆର୍ଥିକ ପ୍ରଗତିର ସୁଯୋଗ ନେଇପାରୁ ନାହାନ୍ତି କିମ୍ବା ବର୍ଦ୍ଧିତ ଉତ୍ପାଦନରୁ ସେମାନଙ୍କର ନ୍ୟାଯ୍ୟ ଭାଗ ନେଇ ପାରୁ ନାହାନ୍ତି । ସେଥିଯୋଗୁଁ ଉନ୍ନତ ଏବଂ ଅନୁନ୍ନତ ଅଞ୍ଚଳମାନଙ୍କ ମଧ୍ୟରେ ଥିବା ପାର୍ଥକ୍ୟ ମଧ୍ୟ ବଢ଼ି ଯାଉଛି । ସମାଜର ସବୁ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ନୈତିକ ମୂଲ୍ୟବୋଧ ହ୍ରାସ ପାଇ ଦୁର୍ନୀତି ଏତେ ବଢ଼ି ଯାଇଛି ଯେ, ଧନ, ଶିକ୍ଷା ଓ ବୁଦ୍ଧି ବଳରେ ସରକାରୀ ଏବଂ ବେସରକାରୀ କଳ ଓ କାରବାର ସାହାଯ୍ୟରେ ସବଳ ଲୋକମାନେ ଦୁର୍ବଳ ଲୋକମାନଙ୍କୁ ଶୋଷଣ କରି ପାରୁଛନ୍ତି ।

ସ୍ୱାଧୀନତା ପୂର୍ବରୁ ଏବଂ ସ୍ୱାଧୀନତା ପରେ, ଯୋଜନା କାର୍ଯ୍ୟକ୍ରମ ଆରମ୍ଭ ପୂର୍ବରୁ ଏହିପରି ଶୋଷଣ ପ୍ରକ୍ରିୟା ମଧ୍ୟ କାର୍ଯ୍ୟକାରୀ ଥିଲା । ସେତେବେଳେ ଧନୀ, ଜମିମାଲିକ, ମହାଜନ, ବ୍ୟବସାୟୀ ଗୋଷ୍ଠୀ ଓ ସରକାରୀ କର୍ମଚାରୀ ଦରିଦ୍ର ଜନସାଧାରଣଙ୍କୁ ଶୋଷଣ କରୁଥିଲେ । ସେମାନଙ୍କ ହାତରେ ଜମି, ଶିଳ୍ପ ଓ ବ୍ୟବସାୟ ସଂସ୍ଥା ଏବଂ ସରକାରୀ କଳ ଥିବାରୁ ସାଧାରଣ ଲୋକ ସେମାନଙ୍କ ସହିତ କାରବାରରେ ଅସହାୟ ଥିଲେ । ଏହି ସବଳ ଶ୍ରେଣୀରେ ଅଳ୍ପଲୋକ ଥିଲେ ଏବଂ ଦୁର୍ବଳ ଶ୍ରେଣୀ ସମାଜର ଅଧିକାଂଶ ଲୋକ ଥିଲେ । ସ୍ୱାଧୀନତା ପରେ ଏପରି ଅବସ୍ଥା ବଦଳିଯିବ ବୋଲି ଲୋକମାନେ ଆଶା କରିଥିଲେ ଏବଂ ସ୍ୱାଧୀନତା ସଂଗ୍ରାମୀମାନେ ଏ ପରିସ୍ଥିତି ପରିବର୍ତ୍ତନପାଇଁ ପ୍ରତିଶ୍ରୁତି ଦେଇଥିଲେ । କିନ୍ତୁ ବିଗତ ତିରିଶ ବର୍ଷ ମଧ୍ୟରେ ସେ ପରିବର୍ତ୍ତନ ହୋଇପାରି ନାହିଁ । ପୁରୁଣା ଶୋଷଣକାରୀ ଶ୍ରେଣୀ ନୂତନ ରୂପରେ ସମାଜରେ ପ୍ରତିଷ୍ଠା ଲାଭ କରିଛନ୍ତି । ଦରିଦ୍ର ଲୋକମାନେ ସେମାନଙ୍କ ସହିତ କାରବାରରେ ଅସହାୟ ହୋଇପଡ଼ୁଛନ୍ତି ।

ଯୋଜନା ଆରମ୍ଭରୁ ଧନୀ ଦରିଦ୍ରଙ୍କ ମଧ୍ୟରେ ପାର୍ଥକ୍ୟ ହ୍ରାସ କରିବା ଏବଂ ଶୋଷଣ ବିହୀନ ସମାଜ ଗଠନ କରିବାପାଇଁ କେତେକ ନୀତି ନିୟମ ଗ୍ରହଣ କରାଯାଇଥିଲା । ସେହି ନୀତି ଅନୁସାରେ ଜମିଦାରୀ ଓ ମଧ୍ୟସ୍ୱତ୍ୱାଧିକାର ଲୋପ, ଭୂସଂସ୍କାର ଆଇନ ଏବଂ ମହାଜନୀ କାରବାର ଉପରେ କଟକଣା ପ୍ରଭୃତି କାର୍ଯ୍ୟକ୍ରମ ଗ୍ରହଣ କରାଯାଇଥିଲା । କିନ୍ତୁ ଶାସକ ଗୋଷ୍ଠୀରେ ଗୋଟିଏ ବରିଷ୍ଠ ଦଳ ସର୍ବଦା ମତ ପ୍ରକାଶ କରୁଥିଲେ ଯେ, ବଣ୍ଟନ ଅପେକ୍ଷା ଅଧିକ ଉତ୍ପାଦନ ବୃଦ୍ଧି ଉପରେ ଅଗ୍ରାଧିକାର ଦିଆଯିବା ଉଚିତ । ଗତ ତିରିଶ ବର୍ଷ ହେଲା ସୁଷମ ଧନ

ଏବଂ ଆୟ ବଣ୍ଟନ ପଦ୍ଧତି ନୀତିରୂପେ ଗ୍ରହଣ କରାଯାଇଛି, ଉତ୍ପାଦନ ବୃଦ୍ଧି ସଙ୍ଗେ ସଙ୍ଗେ ସବଳ ଶ୍ରେଣୀର ଗୃପ୍ତ ଓ କୌଶଳ ହେତୁ ସାମାଜିକ ବଣ୍ଟନ ଅଧିକରୁ ଅଧିକ ଅସମାନ ହେଉଛି ।

୧୯୬୦ ମସିହା ସୁଦ୍ଧା ସବୁ ରାଜ୍ୟରେ ଭୂସଂସ୍କାର ଆଇନମାନ ପାସ୍ ହେଲା । ରାଜଗୃପ୍ତ ନିଷେଧ କରାଗଲା ଏବଂ ଜମିମାଲିକାନାର ସର୍ବୋଚ୍ଚ ସୀମା ଧାର୍ଯ୍ୟ ହୋଇ ବଳକା ଜମି ଭୂମିହୀନ ଲୋକମାନଙ୍କ ମଧ୍ୟରେ ବାଣ୍ଟି ଦେବାପାଇଁ ଆଇନ ହେଲା । ଅଳ୍ପ କେତେକ ରାଜ୍ୟରେ ଏ ଆଇନ କାର୍ଯ୍ୟକାରୀ ହେଲା, ମାତ୍ର ଅଧିକାଂଶ ରାଜ୍ୟରେ ଜମି ମାଲିକମାନେ କୌଶଳକ୍ରମେ, ଏ ଆଇନମାନ ଆଜିଯାଏ ସୁଦ୍ଧା ଫଳପ୍ରଦ କରାଇ ଦେଇ ନାହାନ୍ତି । ସରକାରୀ କଳରେ ସର୍ବୋଚ୍ଚ ସ୍ଥାନରୁ ସର୍ବନିମ୍ନ ସ୍ଥାନ ପର୍ଯ୍ୟନ୍ତ ଦୁର୍ନୀତି ବ୍ୟାପିଗଲା । ବ୍ୟବସାୟୀ ଓ ଶିଳ୍ପ ଉଦ୍ୟୋଗୀମାନେ ନାନା ଉପାୟରେ ଟିକସ ଫାଙ୍କି, ଜିନିଷପତ୍ର ଅପମିଶ୍ରଣ ଏବଂ ଅଭାବ ସମୟରେ ଅତ୍ୟାବଶ୍ୟକ ପଦାର୍ଥ ମହଜୁଦ୍ କରି, ଦରଦାମ୍ ବଢ଼ାଇ, ସରକାରୀ ଅଫିସର ଓ ରାଜନୈତିକ ନେତାମାନଙ୍କୁ ଉତ୍କୋଚ ଦେଇ ନିଜର ଧନ ସମ୍ପତ୍ତି ବଢ଼ାଇଲେ । ରାସ୍ତାଘାଟ, ବନ୍ୟା ନିୟନ୍ତ୍ରଣ ଓ ଜଳସେଚନ ପ୍ରକଳ୍ପ, ସରକାରୀ କୋଠାବାଡ଼ି ପ୍ରଭୃତି ସମସ୍ତ ପ୍ରକାର ନିର୍ମାଣ କ୍ଷେତ୍ରରେ ସରକାରୀ ଯନ୍ତ୍ରୀଙ୍କ ସହାୟତାରେ କଣ୍ଟ୍ରାକ୍ଟରମାନେ କାମ ଖରାପ କରି ବହୁ ଟଙ୍କା ଲାଭ କଲେ । ଦେଶରକ୍ଷା ବିଭାଗଠାରୁ ଆରମ୍ଭ କରି, ରେଲବାଇ ଓ ଜଳ-ସ୍ଥଳ ଓ ବିମାନ ପରିବହନ ସମେତ ସମସ୍ତ ସରକାରୀ ବିଭାଗ ଓ ସାଧାରଣ ନିଗମମାନଙ୍କରେ ହଜାର ହଜାର କୋଟି ଟଙ୍କାର ପଦାର୍ଥ ଦେଶ ମଧ୍ୟରୁ ଏବଂ ବିଦେଶରୁ କିଣିବା କାରବାରରେ ବ୍ୟବସାୟୀ, କ୍ଷମତାରେ ଥିବା ରାଜନୈତିକ ବ୍ୟକ୍ତି ଏବଂ ସରକାରୀ ଅଫିସର ମିଳି ଶହ ଶହ କୋଟି ଟଙ୍କାର ଉତ୍କୋଚ ନେଇ ନିମ୍ନମାନର ପଦାର୍ଥ କିଣିଲେ । ଉନ୍ନୟନ ନାମରେ ବିଭିନ୍ନ କାର୍ଯ୍ୟକ୍ରମରେ ହଜାର ହଜାର କୋଟି ଟଙ୍କା ଖର୍ଚ୍ଚ ହେଲା । ସେଥିପାଇଁ ସରକାର ଦେଶ ଭିତରୁ ଏବଂ ବାହାରୁ ହଜାର କୋଟି ଟଙ୍କା ଋଣ ଉଠାଇଲେ ଏବଂ ନିଅଣ୍ଟିଆ ବଜେଟ କରି ଅଧିକ ନୋଟ୍ ଛପାଇଲେ । ଏହିସବୁ ପ୍ରକଳ୍ପ କାର୍ଯ୍ୟକାରୀ କରିବାପାଇଁ ନିଯୁକ୍ତ ଥିବା ଲୋକମାନେ ବହୁ ଟଙ୍କା ଆତ୍ମସାତ୍ କଲେ । କାମ ନ ହୋଇ ଟଙ୍କା ଖର୍ଚ୍ଚ ହେବାରୁ ଦରଦାମ୍ ବଢ଼ିଲା । ଚଢ଼ା ଦରରେ ଜିନିଷପତ୍ର କିଣିବାପାଇଁ ଅସତ୍ ଉପାୟରେ ଧନ କରୁଥିବା ଲୋକଙ୍କର କିଛି ଅସୁବିଧା ହେଉ ନ ଥିଲେ ମଧ୍ୟ ଗରିବ ଲୋକମାନେ ଅଧିକ ଅଭାବଗ୍ରସ୍ତ ଓ ଦରିଦ୍ର ହୋଇଗଲେ । ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମରେ ମଧ୍ୟ ଯେଉଁ ବିରାଟ ପରିମାଣର ଟଙ୍କା ଖର୍ଚ୍ଚ ହେଲା, ତାହା ମଧ୍ୟରୁ ପ୍ରକଳ୍ପ କାର୍ଯ୍ୟକାରୀ କରୁଥିବା ମଧ୍ୟସ୍ଥ ଲୋକମାନେ ବାରପଣ ଟଙ୍କା ଆତ୍ମସାତ୍ କଲେ । ଶିଳ୍ପ

ପ୍ରତିଷ୍ଠା ଏବଂ ବିଦେଶରୁ ବିଭିନ୍ନ ପଦାର୍ଥ ଆମଦାନୀପାଇଁ ଲାଇସେନ୍ସ ଦିଆଯାଉଥିଲା । ସେଥିରେ ବହୁ ରାଜନୈତିକ ବ୍ୟକ୍ତି ଏବଂ ସରକାରୀ କର୍ମଚାରୀ ବହୁ ଟଙ୍କା ଉତ୍କୋଚ ନେଲେ । କଣ୍ଟ୍ରୋଲ ପଦାର୍ଥମାନଙ୍କର ଦୋକାନ ଏବଂ ବିଭିନ୍ନ ମାଦକଦ୍ରବ୍ୟ ବ୍ୟବସାୟପାଇଁ ଲାଇସେନ୍ସ ଦିଆଗଲା । ସେଥିରେ ବହୁ ସରକାରୀ ଅଫିସର ଓ ରାଜନୈତିକ ବ୍ୟକ୍ତି ବହୁ ପରିମାଣରେ ଟଙ୍କା ଲାଞ୍ଚ ନେଲେ । ବସ୍ତୁତଃ ସରକାରୀ ସ୍ତରରେ ସବୁ ପ୍ରକା ର ଜିନିଷ କିଣା, ନିର୍ମାଣ କାର୍ଯ୍ୟ, ଲାଇସେନ୍ସ ଦେବା, ବ୍ୟବସାୟୀମାନେ ଜିନିଷ ଲୁଚାଇ ମହଜୁଦ୍ କରିବା, ଜିନିଷ ଅପମିଶ୍ରଣ କରିବା, କଳାବଜାରରେ ଅଧିକ ଦରରେ ଜିନିଷ ବିକିବା ପ୍ରଭୃତି ସବୁ ପ୍ରକାର ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ ଏପରି ବ୍ୟାପିଗଲା ଯେ ବ୍ୟବସାୟୀ, ଛୋଟବଡ଼ ରାଜନୈତିକ ନେତା ଏବଂ ବିଭିନ୍ନ ବିଭାଗର ଛୋଟ ବଡ଼ ସରକାରୀ କର୍ମଚାରୀ, ସମସ୍ତ ପ୍ରକାର କାରବାରରେ ଦୁର୍ନୀତିରେ ଲିପ୍ତ ହେଲେ ଏବଂ ସାଧାରଣ ଲୋକମାନଙ୍କଠାରୁ ବହୁ ବାଟରେ ଅନ୍ୟାୟରେ ଟଙ୍କା ଆଦାୟ କଲେ ।

୧୯୫୦ରୁ ୧୯୭୦ ମସିହା ପର୍ଯ୍ୟନ୍ତ, ପ୍ରାୟ ୨୦ ବର୍ଷ ସମୟରେ ଉପରୋକ୍ତ ପ୍ରକାର ଦୁର୍ନୀତି ସମାଜର ବିଭିନ୍ନ ସ୍ତରରେ କ୍ରମେ କ୍ରମେ ବ୍ୟାପୁଥିଲା । ୧୯୭୦ ମସିହା ବେଳକୁ ଜଣାଗଲା ଯେ ପ୍ରଚଳିତ ରୀତିରେ ଉନ୍ନୟନ କାର୍ଯ୍ୟ ଏବଂ ଯୋଜନା ପ୍ରକଳ୍ପ ପରିଚାଳନା ଦ୍ୱାରା ଧନୀ ଲୋକମାନେ ଅଧିକ ଧନୀ ହେଉଛନ୍ତି ଓ ଗରିବ ଲୋକମାନେ ଅଧିକ ଗରିବ ହେଉଛନ୍ତି । କେନ୍ଦ୍ରୀକୃତ ଯୋଜନା ପ୍ରକ୍ରିୟାରେ ମଧ୍ୟ ଉନ୍ନତ ଅଞ୍ଚଳ ଅଧିକ ଧନୀ ଅଞ୍ଚଳ ହେଉଛି ଏବଂ ଦରିଦ୍ର ଅଞ୍ଚଳମାନ ଦରିଦ୍ର ଭାବରେ ପଡ଼ି ରହିଛି । ଧନୀ ଓ ଦରିଦ୍ର ଶ୍ରେଣୀ ମଧ୍ୟରେ ଏବଂ ଉନ୍ନତ ଓ ଅନୁନ୍ନତ ଅଞ୍ଚଳମାନଙ୍କ ମଧ୍ୟରେ ପାର୍ଥକ୍ୟ ଦିନକୁ ଦିନ ବଢ଼ି ଚାଲିଛି । ୧୯୭୦ ମସିହାଠାରୁ ୧୯୯୨ ମସିହା ମଧ୍ୟରେ ଧନୀ ଓ ଦରିଦ୍ର ଏବଂ ଉନ୍ନତ ଓ ଅନୁନ୍ନତ ଅଞ୍ଚଳ ମଧ୍ୟରେ ପାର୍ଥକ୍ୟ କମାଇବାପାଇଁ ଉଦ୍ୟମ କରାଗଲା । ଦାରିଦ୍ର୍ୟ ଦୂରୀକରଣ ଏବଂ ବିକେନ୍ଦ୍ରୀକୃତ ଯୋଜନା କାର୍ଯ୍ୟକ୍ରମପାଇଁ ବହୁବିଧ ପ୍ରକଳ୍ପ କାର୍ଯ୍ୟକାରୀ ହେଲା । କିନ୍ତୁ ଧନୀ ଓ କ୍ଷମତାଶାଳୀ ଲୋକ ଅଧିକ ଧନୀ ହେବା ଏବଂ ଦରିଦ୍ର ଶ୍ରେଣୀ ଲୋକମାନେ ଅଧିକ ନିଷ୍ପେଷିତ ହେବା ଗତିରେ ପରିବର୍ତ୍ତନ ହୋଇପାରିଲା ନାହିଁ । ଦାରିଦ୍ର୍ୟ ଦୂରୀକରଣପାଇଁ ବ୍ୟୟ କରାଯାଉଥିବା ଅର୍ଥର ଅଧିକାଂଶ ଅଂଶ ପ୍ରକଳ୍ପ କାର୍ଯ୍ୟକାରୀ କରୁଥିବା କର୍ମଚାରୀ ଏବଂ ମଧ୍ୟସ୍ଥ ଲୋକମାନେ ଆତ୍ମସାତ୍ କଲେ । ଦୁର୍ନୀତି, ଯୋଗାଣ, ନିର୍ମାଣ ଶିଳ୍ପ ବାଣିଜ୍ୟ ବିଭାଗ, ସରକାରୀ ନିଗମ ମଧ୍ୟରେ ସୀମାବଦ୍ଧ ରହିଲା ନାହିଁ । ଏହା ପ୍ରତିରକ୍ଷା ବିଭାଗଠାରୁ ଆରମ୍ଭ କରି ଶିକ୍ଷା, ସ୍ୱାସ୍ଥ୍ୟ, ବିଚାର ବିଭାଗ ସମେତ ସମସ୍ତ ସରକାରୀ ବିଭାଗ, ସବୁପ୍ରକାର ବ୍ୟବସାୟୀ ଓ ସାଧାରଣ

ଲୋକମାନଙ୍କ ମଧ୍ୟକୁ ବ୍ୟାପିଗଲା । ଦୈନନ୍ଦିନ ଜୀବନ ପ୍ରଣାଳୀର ସବୁ କାର୍ଯ୍ୟରେ ଦୁର୍ନୀତି ଅଙ୍ଗୀଭୂତ ହେଲା । ସାଧାରଣ ଲୋକଙ୍କର ଉତ୍କୋଚ ନେବାର ସୁବିଧା ନ ଥିଲା । କିନ୍ତୁ ସେମାନେ ସୁବିଧା ହାସଲ କରିବା କିମ୍ବା ନ୍ୟାଯ୍ୟ କାର୍ଯ୍ୟ ହାସଲ କରିବାପାଇଁ ଉତ୍କୋଚ ଦେଲେ । ସମାଜର କୌଣସି ଲୋକ ଦୁର୍ନୀତିରୁ ମୁକ୍ତ ବୋଲି କେହି ଚିନ୍ତା କରିପାରିଲେ ନାହିଁ । ଦୁର୍ନୀତିଗ୍ରସ୍ତ ଲୋକମାନେ ଉଚ୍ଚ ସ୍ୱରରେ ଅନ୍ୟମାନଙ୍କୁ ଦୁର୍ନୀତିଗ୍ରସ୍ତ ବୋଲି ଅଭିଯୁକ୍ତ କଲେ ।

ବିଂଶ ଶତାବ୍ଦୀର ଶେଷରେ, ଊନବିଂଶ ଶତାବ୍ଦୀର ମୂଲ୍ୟବୋଧ ଅଚିନ୍ତନୀୟ ଭାବରେ ଅବକ୍ଷୟ ଘଟିଛି । ଓଡ଼ିଶା ସମେତ ଭାରତର ସବୁ ଅଞ୍ଚଳର ସବୁ ଶ୍ରେଣୀର ଲୋକ ଦୁର୍ନୀତି ଜାଲରେ ଛନ୍ଦି ହୋଇ ରହିଛନ୍ତି । ଏପରି ପରିସ୍ଥିତିରୁ କୌଣସି ଅଞ୍ଚଳ ବା କୌଣସି ଶ୍ରେଣୀ ଲୋକ ବାଦ୍ ପଡ଼ି ନାହିଁ । ବିଭିନ୍ନ ଲୋକ ଓ ଦଳ ଅନ୍ୟମାନଙ୍କୁ ସ୍ୱଳ୍ପ କିମ୍ବା ଅଧିକ ମାତ୍ରାରେ ଦୁର୍ନୀତିଗ୍ରସ୍ତ ବୋଲି ପ୍ରମାଣ କରିବାକୁ ଉଦ୍ୟମ କରୁଥିବାରୁ, ଖବରକାଗଜ, ପତ୍ରପତ୍ରିକା, କୋର୍ଟ କଚେରି ଓ ସଭା ସମିତିରେ ବହୁ ଦୁର୍ନୀତିପୂର୍ଣ୍ଣ ଘଟଣା ଏବଂ ରହସ୍ୟଜନକ କଥା ସର୍ବସାଧାରଣରେ ପ୍ରକାଶ ପାଉଛି । ସମାଜର ବିଭିନ୍ନ ଶ୍ରେଣୀର ଲୋକ ଏପରି ବିଷଚକ୍ରରେ ଘୂରି ବୁଲୁଛନ୍ତି । ସମସ୍ତେ କହୁଛନ୍ତି ଏହା ଘୋର କଳିଯୁଗ, ସବୁ ଲୋକ ଦୁର୍ନୀତି ଓ ଚୌର୍ଯ୍ୟବୃତ୍ତିରେ ଅଭ୍ୟସ୍ତ ହୋଇ ଯାଇଛନ୍ତି । କେହି ଭଲ ନୁହନ୍ତି । ସ୍ୱାଧୀନତା ପରଠାରୁ ବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ସମଗ୍ର ଦେଶରେ ଆର୍ଥିକ ପ୍ରଗତିର ଗତି ଏହି ଗତିରେ ହୋଇଛି । ସମାଜରେ ବହୁ ଲୋକ ଧନୀ ହେଉଛନ୍ତି କିନ୍ତୁ ଧନ ଆଗମର ପନ୍ଥା ଏହିପରି ଦୁର୍ନୀତିପୂର୍ଣ୍ଣ ହୋଇଛି ।

ଅର୍ଥନୀତିଜ୍ଞ ଗୁନାର ମିର୍ଡ଼ାଲଙ୍କ ସମେତ ବହୁ ଅର୍ଥଶାସ୍ତ୍ରୀ କହୁଛନ୍ତି ଯେ, ଅନୁନ୍ନତ ଦେଶମାନଙ୍କରେ ଆର୍ଥିକ ପ୍ରଗତି ଏହି ଗତିରେ ହୁଏ । ଏହି ପ୍ରକ୍ରିୟାରେ ଧନୀ ଅଧିକ ଧନୀ ହୋଇଯାଏ, ଉନ୍ନତ ଅଞ୍ଚଳ ଅଧିକ ଉନ୍ନତ ହୋଇଯାନ୍ତି ଏବଂ ଅନୁନ୍ନତ ଅଞ୍ଚଳ ଆହୁରି ଅନୁନ୍ନତ ଓ ଦରିଦ୍ର ହୋଇଯା'ନ୍ତି । ବିଗତ ପଚାଶ ବର୍ଷ ହେଲା ଭାରତ ବର୍ଷରେ ରାଜନୈତିକ ଶାସନ କ୍ଷମତା କେନ୍ଦ୍ରୀଭୂତ ହୋଇ ଦିଲ୍ଲୀ ସହରରେ ଅଳ୍ପ ଲୋକଙ୍କ ହାତରେ ରହିଛି । କ୍ଷମତା କେନ୍ଦ୍ର ନିକଟରେ ପଞ୍ଜାବ, ହରିଆନା, ଉତ୍ତରପ୍ରଦେଶ, ବିହାରର ଗାଙ୍ଗେୟ ଉପତ୍ୟକା, ମଧ୍ୟପ୍ରଦେଶ ଓ ରାଜସ୍ଥାନର କେତେକ ଅଞ୍ଚଳ ରହିଛନ୍ତି । ଦିଲ୍ଲୀ ବାହାରେ ବମ୍ବେ, ଆହମେଦାବାଦ, କଲିକତା, ମାନ୍ଦ୍ରାଜ ପ୍ରଭୃତି ବ୍ରିଟିଶ ଅମଳରୁ ପ୍ରତିଷ୍ଠିତ ବଡ଼ ବଡ଼ ସହର ଧନ, ଶିକ୍ଷା ଓ ରାଜନୈତିକ କ୍ଷମତା ବଳରେ ମଧ୍ୟ ଦେଶରେ ପ୍ରଭାବ ବିସ୍ତାର କରିଛନ୍ତି । ଓଡ଼ିଶା, ଆସାମ, ଦକ୍ଷିଣ ମଧ୍ୟପ୍ରଦେଶର ଅନୁନ୍ନତ ଅଞ୍ଚଳ,

ଉତ୍ତର ପୂର୍ବାଞ୍ଚଳରେ ସବୁ ରାଜ୍ୟ ଓ ଗ୍ରେଟନାଗପୁର ପାର୍ବତ୍ୟ ଅଞ୍ଚଳ ଶାସନ କେନ୍ଦ୍ରର ଶେଷ ବଳୟରେ ରହିଛନ୍ତି । ଧନ, ଶିକ୍ଷା, ରାଜନୈତିକ କ୍ଷମତା ପ୍ରଭୃତି ସମସ୍ତ ବିଷୟରେ ଏହିସବୁ ଅଞ୍ଚଳ ସବୁଠାରୁ ଅଧିକ ଅନୁନ୍ନତ ଓ ଦରିଦ୍ର ଅବସ୍ଥାରେ ରହିଛନ୍ତି । ରେଳରାସ୍ତା ଓ ଜଙ୍କ୍ସନ୍, ରାସ୍ତା, ବଡ଼ ବଡ଼ ଶିଳ୍ପ ସ୍ଥାପନ, ବନ୍ଦର ନିର୍ମାଣ, ଜାହାଜ ନିର୍ମାଣ କେନ୍ଦ୍ର, ବିମାନ ବନ୍ଦର ସ୍ଥାପନ ପ୍ରଭୃତି ସମସ୍ତ ଉନ୍ନୟନ ଓ କର୍ମସଂସ୍ଥାନ ନିର୍ଗମ କେନ୍ଦ୍ର, କେନ୍ଦ୍ର ସରକାରରେ କ୍ଷମତାରେ ରହିଥିବା ଲୋକ ସ୍ଥିର କଲେ । ଏ ସବୁ ବିଷୟରେ ବମ୍ବେ, କଲିକତା, ମାଡ୍ରାଜ, ଆହମେଦାବାଦ ପ୍ରଭୃତି ବଡ଼ ବଡ଼ ସହର ଧନୀ ଓ କ୍ଷମତାଶାଳୀ ବ୍ୟକ୍ତି ସେମାନଙ୍କର ପ୍ରଭାବ ବିସ୍ତାର କଲେ । କେନ୍ଦ୍ର ମନ୍ତ୍ରିମଣ୍ଡଳରେ ସ୍ୱରାଷ୍ଟ୍ର, ପ୍ରତିରକ୍ଷା, ବୈଦେଶିକ ବ୍ୟାପାର, ଅର୍ଥ, ଶିଳ୍ପ, ବାଣିଜ୍ୟ ରେଳବାଇ, ଇସ୍ପାତ ପ୍ରଭୃତି ସମସ୍ତ ଗୁରୁତ୍ୱପୂର୍ଣ୍ଣ ବିଭାଗରେ ଉପରୋକ୍ତ ଉନ୍ନତ ଅଞ୍ଚଳର ଲୋକମାନେ ରହିଲେ । ଯୋଜନା କମିସନର ଉପସଭାପତି ଓ ସଭ୍ୟ, ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ, ଅର୍ଥ କମିସନ୍, ଶିକ୍ଷା କମିସନ୍, କେନ୍ଦ୍ର ପବ୍ଲିକ୍ ସର୍ଭିସ୍ କମିସନ୍, ବ୍ୟାଙ୍କିଂ ସର୍ଭିସ୍ କମିସନ୍ ଆଦି ଯେତେ ପ୍ରକାର ଅର୍ଥ ଅନୁଦାନ ଦେଉଥିବା ଏବଂ ବଡ଼ ବଡ଼ ଚାକିରିରେ ନିଯୁକ୍ତି ଦେବାକୁ ସୁପାରିସ୍ କରୁଥିବା ଅନୁଷ୍ଠାନ ସେହିମାନଙ୍କ ହାତରେ ରହିଲା । ପୃଥିବୀରେ ବଡ଼ ଓ ସାନ ପ୍ରାୟ ୧୮୦ ଦେଶରେ ରାଜଦୂତ ଓ ତାଙ୍କ ଅଫିସ୍‌ମାନଙ୍କରେ ବିଭିନ୍ନ ସ୍ତରର ବହୁ କର୍ମଚାରୀ ନିଯୁକ୍ତି, ବିଭିନ୍ନ ରାଜ୍ୟରେ ରାଜ୍ୟପାଳ ନିଯୁକ୍ତି, ରାଷ୍ଟ୍ରାୟତ୍ତ ଶିଳ୍ପ ନିଗମ, ବ୍ୟାଙ୍କ୍, ବୀମା ନିଗମ, ଗୃହ ନିର୍ମାଣ, ରେଳବାଇ ବୋର୍ଡ ପ୍ରଭୃତିରେ ସଭ୍ୟ ଓ ଚେୟାରମାନ ପ୍ରଭୃତିଠାରୁ ଆରମ୍ଭ କରି ସବୁ ବଡ଼ ଚାକିରିରେ ନିଯୁକ୍ତିପାଇଁ ସେହିମାନେ ପ୍ରଭାବ ବିସ୍ତାର କଲେ । ଆନ୍ତର୍ଜାତିକ ମୁଦ୍ରା ପାଣ୍ଠି, ପୃଥିବୀ ବ୍ୟାଙ୍କ୍, ବହୁ ଆନ୍ତର୍ଜାତିକ କମିସନ୍‌ମାନଙ୍କରେ ଭାରତର ପ୍ରତିନିଧି ଓ ଡାଇରେକ୍ଟର ପ୍ରଭୃତି ନିଯୁକ୍ତି ସେହିମାନେ ସ୍ଥିର କଲେ ।

ଅର୍ଥାତ୍ ବିଶାଳ ଭାରତବର୍ଷ ଶାସନର ସବୁ ବିଷୟରେ ନୀତି ନିର୍ଦ୍ଧାରଣ, ଉନ୍ନୟନକେନ୍ଦ୍ର ସ୍ଥାପନ ଏବଂ ସବୁ ଗୁରୁତ୍ୱପୂର୍ଣ୍ଣ ପଦବୀ ନିଯୁକ୍ତି ସେହିମାନେ କଲେ । କ୍ଷମତା ବଳୟର ଶେଷରେ ରହିଥିବା ଲୋକମାନଙ୍କର ପ୍ରତିନିଧିମାନେ ସହିତ ସମ୍ବିଧାନ ଅନୁସାରେ ପାର୍ଲିଆମେଣ୍ଟରେ ରହିଛନ୍ତି ଏବଂ କେନ୍ଦ୍ର ମନ୍ତ୍ରି-ମଣ୍ଡଳରେ ନାମମାତ୍ର ପ୍ରତିନିଧି ଭାବରେ ରହିଛନ୍ତି, ସେମାନେ ଉପରୋକ୍ତ ସବୁ ଗୁରୁତ୍ୱପୂର୍ଣ୍ଣ ବିଷୟରେ କିଛି ଭାଗ ନେଇ ପାରିନାହାନ୍ତି ଓ ବର୍ତ୍ତମାନ ସୁଦ୍ଧା ନେଇ ପାରୁ ନାହାନ୍ତି । ସୁତରାଂ ଓଡ଼ିଶାପରି ଅନୁନ୍ନତ ଅଞ୍ଚଳ ଯେ ଦରିଦ୍ର ଓ ଅନୁନ୍ନତ ଅଞ୍ଚଳରୂପେ ରହିଛି ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏ ସବୁ ଅନୁନ୍ନତ

ଅଞ୍ଚଳରେ ଲୋକମାନେ ସେମାନଙ୍କର କ୍ଷୁଦ୍ର ପରିସର ମଧ୍ୟରେ କେବଳ ନିଜ ନିଜ ମଧ୍ୟରେ କଳିକରି, ପରସ୍ପରକୁ ଈର୍ଷା କରି ଅନୁନ୍ନତ ଅଞ୍ଚଳମାନଙ୍କୁ ଆହୁରି ଅନୁନ୍ନତ କରୁଛନ୍ତି । ଏହି ଅନୁନ୍ନତ ରାଜ୍ୟମାନଙ୍କର ସରକାରଙ୍କ ମନରେ ହୀନମନ୍ୟତା ବହୁ ପରିମାଣରେ ବଦ୍ଧିତ ହୋଇ ରହିଛି । ଭାରତର ସରକାରୀ ଓ ବେସରକାରୀ ମହଲରେ ୟୁରୋପ, ଆମେରିକା ଏବଂ ଜାପାନ ପ୍ରଭୃତି ଦେଶରୁ ଆସିଥିବା ଲୋକମାନେ ଦେଶର ସ୍ଥାନୀୟ ଲୋକଙ୍କଠାରୁ ଅଧିକ ଜ୍ଞାନୀ ଓ ଦକ୍ଷ ବୋଲି ଧାରଣା ଯେପରି ବ୍ରିଟିଶ ସରକାର ସମୟରୁ ଅଛି, ଭାରତର ଅନୁନ୍ନତ ରାଜ୍ୟମାନଙ୍କରେ ସେହିପରି ଦିଲ୍ଲୀ, ବମ୍ବେ, ମାନ୍ଦ୍ରାଜ ପ୍ରଭୃତି ଅଞ୍ଚଳର ଲୋକମାନେ ଅଧିକ ଜ୍ଞାନୀ ଓ ଦକ୍ଷ ବୋଲି ଧାରଣା ବହୁକାଳରୁ ବଦ୍ଧମୂଳ ଭାବରେ ଅଛି । ସ୍ଥାନୀୟ ଲୋକମାନଙ୍କୁ ହୀନ ଚକ୍ଷୁରେ ଦେଖିବା ଏବଂ ବିଭିନ୍ନ ଉନ୍ନୟନ କ୍ଷେତ୍ରରେ ଅନ୍ୟ ପ୍ରଦେଶ ଲୋକମାନଙ୍କର ପରାମର୍ଶ ନେବା ପଦ୍ଧତି ମଧ୍ୟ ବହୁକାଳରୁ ଉଦଭବ ହୋଇଛି । ଏପରିକି କୌଣସିଏ ଅନୁନ୍ନତ ଅଞ୍ଚଳରେ ଗ୍ରାମାଞ୍ଚଳର ଲୋକମାନଙ୍କର ଆର୍ଥିକ ଅବସ୍ଥା କିପରି ଏବଂ ସେଗୁଡ଼ିକରେ ଦାରିଦ୍ର୍ୟ ଦୂରୀକରଣ ପ୍ରକଳ୍ପ ଓ ପଞ୍ଚାୟତି ଶାସନ ପ୍ରଭୃତି କିପରି କାର୍ଯ୍ୟକାରୀ ହେଉଛି ତାହା ସମୀକ୍ଷା କରିବାପାଇଁ ସେହି ଦିଲ୍ଲୀ, ବମ୍ବେ, କଲିକତା ଅଞ୍ଚଳର ଅନୁଷ୍ଠାନ ବା ବ୍ୟକ୍ତି ବିଶେଷଙ୍କୁ ନିଯୁକ୍ତି ଦିଆଯାଉଛି । ଫଳରେ ଅନଗ୍ରସରତା, ଅନୁନ୍ନତ ଅବସ୍ଥା ଓ ହୀନମନ୍ୟତା ବଦ୍ଧମୂଳ ଭାବରେ ରହି ଯାଇଛି । ସମଗ୍ର ଦେଶରେ ଉନ୍ନତ ଓ ଅନୁନ୍ନତ ରାଜ୍ୟମାନଙ୍କର ପ୍ରଗତିରେ ଯେପରି ପାର୍ଥକ୍ୟ ଦେଖାଯାଉଛି, ବିଭିନ୍ନ ରାଜ୍ୟରେ ଉନ୍ନତ ଓ ଅନୁନ୍ନତ ଅଞ୍ଚଳ ମଧ୍ୟରେ ସେହିପରି ପାର୍ଥକ୍ୟ ମଧ୍ୟ ଦେଖାଯାଉଛି ।

ସ୍ୱାଧୀନତା ପରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପଞ୍ଚବାର୍ଷିକ ଯୋଜନାମାନଙ୍କ ଅନୁସାରେ ବହୁ ଉନ୍ନୟନ କାର୍ଯ୍ୟ ହୋଇଛି । ପ୍ରଥମ ବୃହତ୍ ପ୍ରକଳ୍ପ ହୀରାକୁଦ ବନ୍ଧଠାରୁ ଆରମ୍ଭ କରି, ବାଲିମେଳା ଓ ମାଛକୁଣ୍ଡ ବିଦ୍ୟୁତ ପ୍ରକଳ୍ପ, ରେଙ୍ଗାଲି ବନ୍ଧ, ରାଉରକେଲା ଇସ୍ପାତ କାରଖାନା, ପାରାଦ୍ୱୀପ ବନ୍ଦର, ଜାତୀୟ ଆଲୁମିନିୟମ୍ ପ୍ରକଳ୍ପ, ମିଗ୍ ଉଡ଼ାଜାହାଜ ଇଞ୍ଜିନ୍ କାରଖାନା, ତାଳଚେର ସାର କାରଖାନା ଏବଂ ଥର୍ମାଲ ବିଦ୍ୟୁତ ପ୍ରକଳ୍ପ ପ୍ରଭୃତି କେନ୍ଦ୍ର ଓ ରାଜ୍ୟ ସରକାରୀ ସ୍ତରରେ କେତେକ ନଦୀବନ୍ଧ ଯୋଜନା ଓ ବୃହତ୍ ଶିଳ୍ପ ପ୍ରତିଷ୍ଠିତ ହୋଇଛି । ରାଜ୍ୟ ସରକାର ଏବଂ ଘରୋଇ ଉଦ୍ୟୋଗ ସ୍ତରରେ ମଧ୍ୟ କେତେକ ସିମେଣ୍ଟ, ଆଲୁମିନିୟମ୍ , ଚିନି, ଝୋଟ, ସୂତା, କାଗଜ, ରସାୟନ ପ୍ରଭୃତି କେତେକ ବୃହତ୍ ଓ ମଧ୍ୟମ ଆକାରର ଶିଳ୍ପ ପ୍ରତିଷ୍ଠିତ ହୋଇଛି । ରାସ୍ତାଘାଟ ଓ ପୋଲ ନିର୍ମାଣରେ ମଧ୍ୟ ବିଶେଷ ପ୍ରଗତି ଦେଖାଯାଇଛି । ଜାତୀୟ ରାଜପଥ ନିର୍ମାଣ

ଦ୍ୱାରା ଓଡ଼ିଶାର ଉପକୂଳ ଅଞ୍ଚଳ ଏବଂ ଉତ୍ତର ଓ ପଶ୍ଚିମ ଅଞ୍ଚଳର ମାନ୍ଦ୍ରାଜ, କଲିକତା ଏବଂ ବମ୍ବେ ସହର ସହିତ ସଡ଼କ ପଥରେ ଯୋଗାଯୋଗ ସ୍ଥାପିତ ହୋଇଛି । ରାଜ୍ୟସ୍ତରୀୟ ରାସ୍ତାମାନଙ୍କର ମଧ୍ୟ ପ୍ରଭୂତ ଉନ୍ନତି କରାଯାଇ ରାଜଧାନୀ ଭୁବନେଶ୍ୱର ଏବଂ ରାଜ୍ୟର ବିଭିନ୍ନ ସହର ଓ ଗ୍ରାମାଞ୍ଚଳ ମଧ୍ୟରେ ଯୋଗାଯୋଗ ସ୍ଥାପନ କରାଯାଇଛି । ପ୍ରାୟ ସବୁ ବଡ଼ ବଡ଼ ନଦୀରେ ପୋଲ ହୋଇଛି ଏବଂ ଚାରିଆଡ଼େ ଗ୍ରାମାଞ୍ଚଳରେ ରାସ୍ତାଘାଟର ଉନ୍ନତି ହୋଇଛି ।

ଶିକ୍ଷା ଏବଂ ସ୍ୱାସ୍ଥ୍ୟ କ୍ଷେତ୍ରରେ ମଧ୍ୟ ବହୁ ଅନୁଷ୍ଠାନ ପ୍ରତିଷ୍ଠିତ ହୋଇଛି । ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ୱାଧୀନତା ପୂର୍ବରୁ ୧୯୪୩ ମସିହାରେ ପ୍ରତିଷ୍ଠିତ ହୋଇ-ଥିଲା । ସ୍ୱାଧୀନତା ପରେ କୃଷି ବିଶ୍ୱବିଦ୍ୟାଳୟ, ସମ୍ବଲପୁର, ବ୍ରହ୍ମପୁର ଓ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇଛି । କଟକରେ ଶ୍ରୀରାମଚନ୍ଦ୍ରଭଞ୍ଜ ମେଡିକାଲ କଲେଜ, ବ୍ରହ୍ମପୁର ଓ ବୁର୍ଲାରେ ମେଡିକାଲ କଲେଜ, ବୁର୍ଲାରେ ଇଞ୍ଜିନିଅରିଂ କଲେଜ ଏବଂ ରାଉରକେଲାରେ ଆଞ୍ଚଳିକ ଇଞ୍ଜିନିଅରିଂ କଲେଜ ପ୍ରତିଷ୍ଠିତ ହୋଇଛି । ଭୁବନେଶ୍ୱରରେ ଶିକ୍ଷକ ଟ୍ରେନିଂ କଲେଜ ଏବଂ ଆଞ୍ଚଳିକ ବୈଜ୍ଞାନିକ ଗବେଷଣାଗାର ପ୍ରତିଷ୍ଠିତ ହୋଇଛି । ସ୍ୱାଧୀନତା ପୂର୍ବରୁ ସମଗ୍ର ରାଜ୍ୟରେ ମୋଟେ ଦଶ ଏଗାରଟି କଳା, ବିଜ୍ଞାନ ଓ ବାଣିଜ୍ୟ ଡିଗ୍ରି କଲେଜ ଥିଲା । ଶତାବ୍ଦୀ ଶେଷ ବେଳକୁ ବଡ଼ ସାନ କଳା, ବିଜ୍ଞାନ ଓ ବାଣିଜ୍ୟ ବିଷୟରେ ୫୦୦ରୁ ଅଧିକ କଲେଜ ପ୍ରତିଷ୍ଠିତ ହୋଇଛି । ଏହି କଲେଜମାନଙ୍କ ମଧ୍ୟରୁ ଅଧିକାଂଶ ଗ୍ରାମାଞ୍ଚଳରେ ପ୍ରତିଷ୍ଠିତ ହୋଇଛି ଏବଂ ସ୍କୁଲ ଓ କଲେଜ-ମାନଙ୍କରେ ଛାତ୍ର ଛାତ୍ରୀ ସଂଖ୍ୟା ଅଭୂତପୂର୍ବ ଭାବରେ ବଢ଼ି ଯାଇଛି ।

ବଡ଼ ଓ ସାନ ଡାକ୍ତରଖାନା, ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ଏବଂ ଡାକ୍ତରଙ୍କ ସଂଖ୍ୟା ମଧ୍ୟ ବହୁଗୁଣରେ ବଢ଼ିଛି । ପ୍ରତି ଜିଲ୍ଲା ଓ ସବ୍‌ଡିଭିଜନରେ ମଧ୍ୟମ ଧରଣର ଡାକ୍ତରଖାନା ଏବଂ ବ୍ଲକ୍‌ରେ ସ୍ୱାସ୍ଥ୍ୟକେନ୍ଦ୍ର ପ୍ରତିଷ୍ଠିତ ହୋଇଛି । ଘରୋଇ ଡାକ୍ତର ଓ ଚିକିତ୍ସାଳୟ ମଧ୍ୟ ବହୁଗୁଣରେ ବଢ଼ିଯାଇଛି ।

ଗ୍ରାମାଞ୍ଚଳ ଅପେକ୍ଷା ସହରମାନଙ୍କର ଅଧିକ ଉନ୍ନତି ହୋଇଛି । ସ୍ୱାଧୀନତା ପୂର୍ବରୁ ନୂଆ ଭୁବନେଶ୍ୱର ଏବଂ ରାଉରକେଲା ସହର ମୋଟେ ନ ଥିଲା । ୧୯୩୬ ମସିହାରେ ନୂତନ ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲେ ସୁଦ୍ଧା ରାଜଧାନୀ କେଉଁ-ଠାରେ ହେବ ସ୍ଥିର ହୋଇ ନ ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରେ ପ୍ରତିଷ୍ଠିତ ହେବାପାଇଁ ସ୍ଥିର ହେବାରୁ ନୂଆ ଭୁବନେଶ୍ୱର ସହର ଗଠିତ ହେଲା । ଲିଙ୍ଗରାଜ ମନ୍ଦିର ଚାରିପାଖରେ ହଜାର ବର୍ଷ

ପୂର୍ବରୁ ଯେଉଁ ପୁରୁଣା ସହର ଥିଲା ତାହା ରାଜଧାନୀ ଭୁବନେଶ୍ୱର ସହରର ଏକ ଅଙ୍ଗ ହେଲା । ୧୯୫୬ ମସିହାରେ ରାଉରକେଲାଠାରେ ଇସ୍ପାତ କାରଖାନା ହେବାରୁ ରାଉରକେଲା ସହର ତିଆରି ହେଲା । ସ୍ୱାଧୀନତା ପୂର୍ବରୁ ମଧ୍ୟ ସମ୍ବଲପୁର, ବାଲେଶ୍ୱର, ବ୍ରହ୍ମପୁର, ଅନୁଗୁଳ ପ୍ରଭୃତି ସହର ଛୋଟ ଥିଲା । ସ୍ୱାଧୀନତା ପରେ ଏ ସବୁ ସହର ଏବଂ ପ୍ରତ୍ୟେକ ଜିଲ୍ଲା ଓ ସବ୍‌ଡିଭିଜନାଲ ସହରମାନଙ୍କର ପ୍ରଭୂତ ଉନ୍ନତି ହୋଇଛି । ସବୁଆଡ଼େ ଯାତାୟତପାଇଁ ବସ୍ ଚାଲିଛି ଏବଂ ରାସ୍ତାଘାଟର ଉନ୍ନତି ହେଉ ଗମନାଗମନରେ ସୁବିଧା ହୋଇଛି ।

ତଥାପି ଅନ୍ୟ ରାଜ୍ୟମାନଙ୍କ ତୁଳନାରେ ଓଡ଼ିଶାର ସବୁ ଅଞ୍ଚଳରେ ଏବଂ ସବୁ ଦିଗରେ ପ୍ରଗତି କମ୍ ହୋଇଛି । ବିଂଶ ଶତାବ୍ଦୀର ଶେଷ ଦଶକ ଯାଏ ନୂତନ ରେଳପଥ ନିର୍ମାଣରେ କିଛି ପ୍ରଗତି ହୋଇ ନାହିଁ କହିଲେ ଚଳେ । ସମ୍ବଲପୁରରୁ ଟିଟିଲାଗଡ଼, କୋରାପୁଟରୁ ରାୟଗଡ଼ା, କଟକରୁ ପାରାଦ୍ୱୀପ ପରି ଅଳ୍ପ କେତେଗୋଟି ଅଦୀର୍ଘ ରେଳପଥ ବ୍ୟତୀତ ଅନ୍ୟ କୌଣସି ରେଳପଥ ତିଆରି ହୋଇ ନାହିଁ । ତାଲଚେରକୁ ସମ୍ବଲପୁର ସହିତ ରେଳରାସ୍ତା ଦ୍ୱାରା ଯୋଗ କରିବାପାଇଁ ପ୍ରାୟ ଅଣ ନବେ ବର୍ଷ ହେଲା ଉଦ୍ୟମ ଚାଲିଥିଲା । ବର୍ତ୍ତମାନ ଯାଏ ଏହି ରେଳପଥର ମାତ୍ର ତିରିଶ୍ କିଲୋମିଟର ନିର୍ମିତ ହୋଇଛି । ଶତାବ୍ଦୀର ଶେଷ ଯାଏ ଭାରତର ଅନ୍ୟ ରାଜ୍ୟମାନଙ୍କ ତୁଳନାରେ ମୁଣ୍ଡପିଛା ଆୟ, ସହରମାନଙ୍କରେ ଲୋକସଂଖ୍ୟା, ଜଳସେଚନ ବ୍ୟବସ୍ଥା, ଏକରପିଛା ସାର ବ୍ୟବହାର, ଶିଳ୍ପ-ଉଦ୍ୟୋଗରେ କର୍ମସଂସ୍ଥାନ, ବିଦ୍ୟୁତ ବ୍ୟବହାର ଏବଂ ଲୋକମାନଙ୍କର ବ୍ୟାଙ୍କ୍-ମାନଙ୍କରେ ଜମା ପ୍ରଭୃତି ସମସ୍ତ ଉନ୍ନୟନ ଦିଗରେ ଓଡ଼ିଶା ଭାରତବର୍ଷରେ ସର୍ବନିମ୍ନ ସ୍ଥାନ ଅଧିକାର କରିଛି । କୋରାପୁଟ, ଫୁଲବାଣୀ, କଳାହାଣ୍ଡି, ବଲାଙ୍ଗୀର ପ୍ରଭୃତି ଓଡ଼ିଶାର କେନ୍ଦ୍ର ଓ ଦକ୍ଷିଣାଞ୍ଚଳରେ ଯେଉଁ ଆଦିବାସୀ ବହୁଳ ଜିଲ୍ଲାଗୁଡ଼ିକ ପୂର୍ବେ ଗଡ଼ଜାତ ରାଜାମାନଙ୍କର ଅନ୍ତର୍ଭୁକ୍ତ ଥିଲା ଏବଂ ଅନ୍ୟ ଆଦି-ବାସୀ ବହୁଳ ଅଞ୍ଚଳ ଆଜିଯାଏ ଭାରତବର୍ଷର ସବୁଠାରୁ ଅଧିକ ଅନଗ୍ରସର ଅଞ୍ଚଳ ଏବଂ ଆଜିଯାଏ ସେ ଅଞ୍ଚଳମାନଙ୍କରେ ସବୁ ଦିଗରେ ପ୍ରଗତିର ହାର ଅତି ଧୀର ଏବଂ ସେଠାରେ ଦାରିଦ୍ର୍ୟର ମାତ୍ରା ସର୍ବାଧିକ । ମୋଟ ଉପରେ ସ୍ୱାଧୀନତା ପରବର୍ତ୍ତୀ ପଞ୍ଚବାର୍ଷିକ ଯୋଜନାମାନଙ୍କ ସମୟରେ କୃଷି, ଶିଳ୍ପ, ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ, ଜଳସେଚନ, ଶକ୍ତି ଉତ୍ପାଦନ ପ୍ରଭୃତି କ୍ଷେତ୍ରରେ ଓଡ଼ିଶାର ପ୍ରଗତି ଅନ୍ୟ ରାଜ୍ୟମାନଙ୍କ ତୁଳନାରେ କମ୍ ହୋଇଛି । କିନ୍ତୁ ଦୁର୍ନୀତି, ନୈତିକ ମୂଲ୍ୟବୋଧର ଅବକ୍ଷୟ, ଉନ୍ନୟନ ଅର୍ଥ ଆତ୍ମସାତ୍, ରାଜନୈତିକ ଓ ଅର୍ଥନୈତିକ ଆବିଳତା ବିଷୟରେ ଓଡ଼ିଶାବାସୀ ଭାରତର ଅନ୍ୟ ଅଞ୍ଚଳବାସୀଙ୍କ ସହିତ ସମାନ୍ତରାଳ ଭାବରେ ଚାଲିଛନ୍ତି ।

ଆମ୍ଭମାନଙ୍କ ପରି ଯେଉଁମାନେ ୧୯୨୦ ମସିହାରୁ ୧୯୪୭ ମସିହା ମଧ୍ୟରେ ଓଡ଼ିଶାର ବିଭିନ୍ନ ସହର ଓ ଗ୍ରାମାଞ୍ଚଳର ଆର୍ଥିକ ଅବସ୍ଥା ଏବଂ ଲୋକଙ୍କ ଚଳଣି ଦେଖିଥିଲେ ଏବଂ ବର୍ତ୍ତମାନ ଶତାବ୍ଦୀର ଶେଷ ଦଶକରେ ସେ ସବୁ ଦେଖୁଛନ୍ତି, ସେମାନଙ୍କ ଚକ୍ଷୁରେ ସବୁ ଦିଗରେ ପ୍ରଗତି ସ୍ପଷ୍ଟ ଦେଖାଯାଉଛି । ୧୯୪୭ ପୂର୍ବରୁ ଆମ ଅଞ୍ଚଳ ଗାଁମାନଙ୍କରେ ମୋଟେ ପକ୍କାଘର ନ ଥିଲା କିମ୍ବା ଗାଁ ଗାଁ ଭିତରେ ରାସ୍ତା ନ ଥିଲା । ଗାଁ ଦାଣ୍ଡମାନଙ୍କରେ ବର୍ଷାଦିନେ ଆଣ୍ଠୁଏ କାଦୁଅ ଏବଂ ଶୀତ ଓ ଖରାଦିନେ ଛଅ ଇଞ୍ଚ ଧୂଳି ଥାଏ । ଦାତବ୍ୟ ଚିକିତ୍ସାଳୟ କେବଳ ଥାନା ମହକୁମା-ମାନଙ୍କରେ ଥାଏ ଏବଂ ସେଥିରେ ରୋଗୀ ରହିବାର ବ୍ୟବସ୍ଥା ନ ଥାଏ । ସେଥିରେ ମେଡିକାଲ ସ୍କୁଲରୁ ଏଲ୍. ଏମ୍. ପି. ପାସ୍ କରିଥିବା ଡାକ୍ତରମାନେ ଥାଆନ୍ତି । ଡାକ୍ତରଖାନା ସବୁ ଜିଲ୍ଲାବୋର୍ଡମାନଙ୍କ ଅଧୀନରେ ଥିଲା । ଗ୍ରାମାଞ୍ଚଳରେ ପୋଷ୍ଟ-ଅଫିସ୍ ସଂଖ୍ୟା ଖୁବ୍ କମ୍ ଥିଲା । ଆମ ଗାଁର ନିକଟତମ ପୋଷ୍ଟଅଫିସ୍ ଚାରି ମାଇଲ ଦୂରରେ ଜଗତ୍‌ସିଂହପୁର ଥାନା ପାଖରେ ଥିଲା । ଗାଁମାନଙ୍କରୁ ସହରମାନଙ୍କୁ ସବୁଆଡ଼ ପିଚୁରାସ୍ତା ନ ଥିଲା । ମଫସଲ ଅଞ୍ଚଳରୁ ସହରକୁ ଏବଂ ସହର ଭିତର ରାସ୍ତାସବୁ ନାଲିଗୋଡ଼ି ରାସ୍ତା ଥିଲା । ଜଗତ୍‌ସିଂହପୁରଠାରୁ ମାଛଗାଁ ରାସ୍ତା କଚା ରାସ୍ତା ଥିଲା । ଜଗତ୍‌ସିଂହପୁରଠାରୁ କଟକଯାଏ ନାଲିଗୋଡ଼ି ରାସ୍ତା ଥିଲା । ଆମେ ଗାଁରୁ ଜଗତ୍‌ସିଂହପୁର ପର୍ଯ୍ୟନ୍ତ ଚାରିମାଇଲ ବାଟ ଚାଲିକରି କିମ୍ବା ବଳଦଗାଡ଼ିରେ ଆସି ଜଗତ୍‌ସିଂହପୁରଠାରୁ କଟକକୁ ବସ୍‌ରେ ଆସୁଥିଲୁ । ଆମ ଗାଁରୁ ବେପାରି-ମାନେ ବଳଦଗାଡ଼ିରେ ଧାନ, ଚାଉଳ ଓ ନଡ଼ିଆ ପ୍ରଭୃତି ନୂଆବଜାର ପର୍ଯ୍ୟନ୍ତ ଆଣୁଥିଲେ ଏବଂ ମାଲ୍‌ଗୋଦାମରୁ କିରାସିନି, ସୋରିଷ ତେଲ ଏବଂ ବିଭିନ୍ନ ପ୍ରକାର ତେଜରାତିମାଲ ନେଇ ଗାଁକୁ ଫେରୁଥିଲେ । ଲୋକମାନେ କଟକ ମାଲ୍‌ଗୋଦାମକୁ ଆସି ଫେରିଲାବେଳକୁ ଶଗଡ଼, ବଳଦ, ମଣିଷ ଏବଂ ଜିନିଷପତ୍ର ସବୁ ନାଲି ଧୂଳିରେ ପୂର୍ଣ୍ଣ ହୋଇଥାଏ । ସେପରି ଅବସ୍ଥା ସେମାନଙ୍କର କଟକ ଆସି ଫେରିବାର ଚିହ୍ନ । କଟକ ମାଛଗାଁ ରାସ୍ତାରେ ସେକାଳେ ଟ୍ରକ୍ ମୋଟେ ଚାଲୁ ନ ଥିଲା । ସେ ସମୟରେ ଯେଉଁ ବସ୍ ସବୁ କଟକ ଜଗତ୍‌ସିଂହପୁର ରାସ୍ତାରେ ଚାଲୁଥିଲା, ସେଗୁଡ଼ିକ ଗ୍ରେଟ, ତାର ଅଧିକାଂଶ ଭାଗ କାଠରେ ତିଆରି ହୋଇଥିଲା । ଭିତରେ ବସିବା-ପାଇଁ କାଠ ବେଞ୍ଚ୍ ଥାଏ । ସେଥିରେ ଅଳ୍ପ ଲୋକ ବସୁଥିବାରୁ ବହୁ ଲୋକ ବସ୍‌ର କାଠ ଚଟାଣରେ ବସୁଥିଲେ । ଠିଆହୋଇ ଯିବାର ସୁବିଧା ନ ଥିଲା । କାରଣ ବସ୍‌ର ଛାତ ମୁଣ୍ଡରେ ବାଜୁଥିଲା । ଡ୍ରାଇଭର ପାଖରେ ଯେଉଁ ଦୁଇଟି ସିଟ୍ ଥାଏ, ସେଥିରେ ଖୁବ୍‌ଖାତିର ହୋଇ ତିନିଜଣ ବସନ୍ତି ଏବଂ ସେଥିପାଇଁ ଅଧିକ ପଇସା ଦିଅନ୍ତି । ସେ ସିଟ୍‌ରୁ ଗୋଟିଏ ପାଇବାକୁ ଡ୍ରାଇଭର ଏବଂ କଣ୍ଡକ୍ଟରଙ୍କୁ ବହୁ ଖୁସାମତ କରିବାକୁ ପଡ଼ୁଥିଲା । ଅନ୍ୟ ଯେଉଁସବୁ ରାସ୍ତାରେ ବସ୍ ଚାଲୁଥିଲା, ସେ

ବସ୍‌ର ଅବସ୍ଥା ମଧ୍ୟ ସେହିପରି ଥିଲା । ୧୯୫୦ ମସିହାଯାଏ ଆମେ ସମ୍ବଲପୁରଠାରୁ ମେଘମୁଣ୍ଡଳି ପର୍ଯ୍ୟନ୍ତ ସେହିପରି ବସ୍‌ରେ ଯିବାଆସିବା କରୁଥିଲୁ ।

୧୯୩୦ ମସିହା ପର୍ଯ୍ୟନ୍ତ ଆମ ଅଞ୍ଚଳରେ ପ୍ରତି ଗାଁରେ ଝଣ୍ଡେ କି ଦୁଇଖଣ୍ଡ ସାଇକେଲ୍ ଥିଲା । ଅନେକ ଗ୍ରାମରେ ଖଣ୍ଡେ ସୁଦ୍ଧା ସାଇକେଲ୍ ନ ଥିଲା । ମଟର ସାଇକେଲ୍, ସ୍କୁଟର ପ୍ରଭୃତି ଗାଁମାନଙ୍କରେ ମୋଟେ ଚାଲୁ ନ ଥିଲା । ସହର-ମାନଙ୍କରେ ସେମାନଙ୍କର ସଂଖ୍ୟା ନଗଣ୍ୟ ଥିଲା । ହାଟ, ବଜାର, ମେଳା ଓ ବନ୍ଧୁବାନ୍ଧବ ଘରକୁ ଗାଁ ଲୋକମାନେ ପାଦରେ ଯିବା ଆସିବା କରୁଥିଲେ । ଅଧିକାଂଶ ନଦୀରେ ପୋଲ ନ ଥିବା ହେତୁ ଦୂରଦୂରାନ୍ତରକୁ ବସ୍ ଚାଲୁ ନ ଥିଲା । ରେଲଗାଡ଼ିମାନଙ୍କର ସଂଖ୍ୟା କମ୍ ଥିଲା ଏବଂ ସେଥିମଧ୍ୟରୁ ଅଧିକାଂଶ ପାସେଞ୍ଜର ଗାଡ଼ି ଥିଲା । ଷ୍ଟେସନ୍ ସବୁ ଛୋଟ ଓ ପୁରୁଣାକାଳିଆ ଥିଲା । ସେଥିରେ ରାତିରେ ଆଲୁଅ ନ ଥାଏ କିମ୍ବା ଯାତ୍ରୀମାନେ ଅପେକ୍ଷା କରିବାକୁ ବଡ଼ ଘର ନ ଥାଏ ।

ଗ୍ରାମାଞ୍ଚଳରେ ହାଇସ୍କୁଲ ନ ଥିଲା । କେବଳ ଜିଲ୍ଲା ଏବଂ ସବ୍‌ଡିଭିଜନ ମହକୁମାମାନଙ୍କରେ ହାଇସ୍କୁଲ ଥିଲା । ଗାଁମାନଙ୍କରେ ପାଞ୍ଚ ସାତ ମାଇଲ ବ୍ୟବଧାନରେ ଗୋଟିଏ ଲେଖାଏଁ ମାଇନର ସ୍କୁଲ ଥିଲା । ମଫସଲ ଅଞ୍ଚଳରୁ ଅତି ଅଳ୍ପ ପିଲା ହାଇସ୍କୁଲରେ ପଢ଼ିବାକୁ ସୁବିଧା ପାଉଥିଲେ । ଆମ ଅଞ୍ଚଳରେ ଯୁଦ୍ଧ ପୂର୍ବରୁ ଜଗତ୍‌ସିଂହପୁରଠାରେ ମଧ୍ୟ ହାଇସ୍କୁଲ୍ ନ ଥିଲା । ୧୯୩୬ ମସିହା ପୂର୍ବରୁ ପୁରା ଓଡ଼ିଶା ପାଇଁ ରେଭେନ୍‌ସା କଲେଜ ଏକମାତ୍ର ପ୍ରଥମଶ୍ରେଣୀ କଲେଜ ଥିଲା । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲାପରେ ପାରଳାଖେମୁଣ୍ଡି କଲେଜ ଓ ଖଲିକୋଟ କଲେଜ ଓଡ଼ିଶା ପ୍ରଦେଶ ଅଧୀନକୁ ଆସିଲା । ଖଲିକୋଟ କଲେଜରେ ସେତେ-ବେଳେ ବି.ଏ. ଶ୍ରେଣୀ ନ ଥିଲା । ୧୯୪୩ ମସିହା ପର୍ଯ୍ୟନ୍ତ ଓଡ଼ିଶାରେ କୌଣସି ବିଶ୍ୱବିଦ୍ୟାଳୟ ନ ଥିଲା । ଉତ୍ତର ଓଡ଼ିଶାର ସ୍କୁଲ କଲେଜ ସବୁ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା ଏବଂ ଦକ୍ଷିଣ ଓଡ଼ିଶାର ସ୍କୁଲ କଲେଜ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା । ଉଚ୍ଚ ଶିକ୍ଷିତ ଲୋକମାନଙ୍କ ସଂଖ୍ୟା ଖୁବ୍ କମ୍ ଥିଲା ଏବଂ ଅତି ଅଳ୍ପସଂଖ୍ୟକ ଲୋକ ସରକାରୀ ଚାକିରିରେ ପ୍ରବେଶ କରୁଥିଲେ ।

ଗାଁମାନଙ୍କରେ ହାଟ ବଜାର ଏବଂ ଗାଁ ଭିତରେ ଥିବା ଦୋକାନସବୁ ଅତି ଛୋଟ ଥିଲା । ସେଥିରେ ମସଲା ମସଲି, ଗୁଆ ଗୁଣ୍ଡି, ତେଲ ଲୁଣ, ଗୁଡ଼ କିରାସିନି ପ୍ରଭୃତି ଅତ୍ୟାବଶ୍ୟକ ଦ୍ରବ୍ୟ ବିକ୍ରି ହେଉଥିଲା । ଅଧିକାଂଶ ଗରାକ ଗରିବ ଥିଲେ । କିଏ ଅଧଲାକର କିରାସିନି, ପଇସାକର ଗୁଡ଼, ପଇସା ପଇସାକର ଜିରା ଲଙ୍କା ହଳଦୀ ପ୍ରଭୃତି କିଣୁଥିଲେ । ଲୁଗା ଦୋକାନରେ ଚନ୍ଦ୍ରକୁଣା ଧୋତି ଗାମୁଛା ଶାଢ଼ୀର ବେଶି କାରବାର ଥିଲା । ହାଟରେ ପାଟରାମାନେ

ପାଟଫୁଲ, କାଠ ପାନିଆଁ, ସ୍ନୋ ଆଇଣି, ଅଲତା ସିନ୍ଦୁର, କୁମ୍ଭ ସୂତା ପ୍ରଭୃତି ଅଳ୍ପ ଦାମ୍‌ର ଜିନିଷ ବିକୁଥିଲେ । ନାଇଲନ୍ ପ୍ରଭୃତି ଶାଢ଼ୀ ଏବଂ ଦାମିକା ପ୍ୟାଣ୍ଟ ଜାମା ଗାଁ ପାଖ ହାଟ ବଜାରରେ ନ ଥିଲା । ମେଳାମାନଙ୍କରେ ମାଟି କୁଣ୍ଢେଇ, ହାଣ୍ଡି, ଘଡ଼ା, କଡ଼େଇ କମାର ତିଆରି ଦାଆ, କଟୁରି, ପଜିକ, କରଚୁଲି ଓ ଜାଲିଚାଟୁ ପ୍ରଭୃତି ଜିନିଷପତ୍ରର ବନ୍ଦିଖର୍ଦ୍ଦି ହେଉଥିଲା । ବିଦେଶୀ ଏବଂ କଳକାରଖାନାର ତିଆରି ଜିନିଷ ବେଶି ନ ଥିଲା । ହାଟ ଓ ମେଳାମାନଙ୍କରେ ସାଧାରଣତଃ ମାଟିହାଣ୍ଡି, ଲୁହାକଡ଼େଇ ପ୍ରଭୃତିରେ ଏକ ଦରିଦ୍ର ସମାଜର ପରିବେଶ ଓ ବଜାର ଥିଲା । ଗାଁ ପରିବାରମାନଙ୍କରେ ରନ୍ଧାବଢ଼ା ହେଉଥିଲା । ଖାଇବା ପିଇବାପାଇଁ ଲୋକମାନେ କଂସାର ଥାଳି, ଗିନା, ଥାଳିଆ, କଂସା, ଗିଲାସ ଏବଂ ପିତ୍ତଳ ଡାଲି, ଗରା ପ୍ରଭୃତି ବ୍ୟବହାର କରୁଥିଲେ । ଆଲୁମିନିଅମ୍ ବାସନ ଓ ରନ୍ଧାପାଇଁ ଡେକ୍‌ଚି, କରଚୁଲି ପ୍ରଭୃତି ଜିନିଷର କାରବାର ନ ଥିଲା । ଷ୍ଟେନଲେସ୍ ଷ୍ଟିଲ୍ ବାସନ କଥା ଲୋକମାନେ ଜାଣି ନ ଥିଲେ । ଚୀନା ମାଟି କପ୍ ପିଆଲା ପ୍ରଭୃତିର ବ୍ୟବହାର ମଧ୍ୟ ନ ଥିଲା ।

ଆମ ଅଞ୍ଚଳରେ ସାଧାରଣତଃ ଚାଉଳ ପ୍ରଧାନ ଖାଦ୍ୟ ଥିଲା । ଦୁଇଓଳି ଭାତ ପ୍ରଧାନ ଖାଦ୍ୟ, ଚାଉଳ, ବିରି, ଗୁଡ଼, ନଡ଼ିଆ, ଦହିଛେନା ପ୍ରଭୃତିର ବିଭିନ୍ନ ମିଶ୍ରଣରେ ପିଠାପଣା ହେଉଥିଲା । ପିଠା ଭାଜିବାପାଇଁ ସାଧାରଣତଃ ବାଦାମ ତେଲ, ଘଣା କମ୍ବା ମରା ନଡ଼ିଆତେଲ ପ୍ରଭୃତି ବ୍ୟବହୃତ ହେଉଥିଲା । ଅତି ଅଳ୍ପ ଧନୀ ଲୋକ ଗାଈ ମଇଁଷି ଘିଅ ବ୍ୟବହାର କରୁଥିଲେ । ଘରମାନଙ୍କରେ ବରା, ଗୁଲ୍‌ଗୁଲା, ପକୋଡ଼ି ପ୍ରଭୃତି ସାଧାରଣତଃ ହେଉ ନ ଥିଲା । ସେଗୁଡ଼ିକ ହାଟ ବଜାରରେ ଗୁଡ଼ିଆଦୋକାନମାନଙ୍କରେ ତିଆରି ହେଉଥିଲା । ଆମ ଅଞ୍ଚଳରେ ଗହମର କାରବାର ମୋଟେ ନ ଥିଲା । ହାଟରେ କମ୍ବା ମେଳା-ମାନଙ୍କରେ ଲୋକମାନେ ଅଟାର ପୁରି ଓ ତରକାରି କିଣି ଖାଉଥିଲେ । ବିଲାତି ଆଳୁ, କୋବି, ବିଲାତି ବାଇଗଣ ପ୍ରଭୃତି ଚାଷୀମାନେ ଚାଷ କରୁ ନ ଥିଲେ ଏବଂ ଘରମାନଙ୍କରେ ସେଗୁଡ଼ିକର ବିଶେଷ ବ୍ୟବହାର ନ ଥିଲା । କଞ୍ଚା କଦଳୀ, ସାରୁ, ବାଇଗଣ, କଖାରୁ, ଭେଣ୍ଡି, ଜହ୍ନି, ଖଡ଼ା ପ୍ରଭୃତି ସାଧାରଣ ପରିବା ଥିଲା । ନଈ, ପୋଖରୀ, ବିଲର ମାଛ ମଧ୍ୟ ଖାଦ୍ୟର ପ୍ରଧାନ ଅଙ୍ଗ ଥିଲା ।

୧୯୫୦ ମସିହା ପୂର୍ବରୁ ଗାଁମାନଙ୍କରେ ବିଜୁଳି ଆଲୁଅ ଲଗିବାର କୌଣସି ବ୍ୟବସ୍ଥା ହୋଇ ନ ଥିଲା । ରାତିରେ ଆଲୁଅପାଇଁ ସମସ୍ତେ କିରାସିନି ତେଲ ଏବଂ ସ୍ୱଚ୍ଛଳ ଲୋକମାନେ ଉଭୟ ତେଲ ଓ ଲଣ୍ଠଣ ବ୍ୟବହାର କରୁଥିଲେ । କେତେକ ପରିବାର ମଧ୍ୟ ପୁରୁଣାକାଳର ପୁନ୍ନାଙ୍ଗ ତେଲ ମାଟି ଦୀପରେ ଜାଳୁଥିଲେ । ଯୁଦ୍ଧ ସମୟରେ ଗାଁମାନଙ୍କରେ କିରାସିନି ମୋଟେ ମିଳୁ ନ ଥିଲା । ଲୋକମାନେ ତେଲ,

ଲଣ୍ଠନ ସୁଦ୍ଧା ଜାଳି ନ ପାରି ବସ୍ତୁତଃ ଅନ୍ଧାରରେ ଚଳୁଥିଲେ । ୧୯୫୦ ପୂର୍ବରୁ ଅନେକ ସବ୍‌ଡିଭିଜନ ଓ ଥାନା ମହକୁମାରେ ସୁଦ୍ଧା ବିଜୁଳି ଆଲୁଅ ନ ଥିଲା । ୧୯୩୬ ପୂର୍ବରୁ କଟକ ସହରର ଗଳି କନ୍ଦି ରାସ୍ତାରେ ଆଲୁଅ ଖୁଣ୍ଟମାନଙ୍କରେ କିରାସିନି ଲ୍ୟାମ୍ପ୍ ନାମକୁ ମାତ୍ର ଆଲୁଅ କରିବାକୁ ଜଳୁଥିଲା ।

ଏହିପରି ପରିସ୍ଥିତିରୁ ବିଗତ ତ୍ରିଶ ପଇଁତ୍ରିଶ ବର୍ଷ ମଧ୍ୟରେ ସମାଜରେ ସାମୂହିକ ଏବଂ ବ୍ୟକ୍ତିଗତ ଆର୍ଥିକ ଅବସ୍ଥାରେ ବୈପ୍ଳବିକ ପରିବର୍ତ୍ତନ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ସାମୂହିକ ଆର୍ଥିକ ଅବସ୍ଥାରେ ରାସ୍ତାଘାଟର ବିପୁଳ ପ୍ରସାର ହୋଇଛି । ସହରମାନଙ୍କରୁ ଦୂରଦୂରାନ୍ତର ଅନ୍ୟ ସହର ଏବଂ ଗ୍ରାମାଞ୍ଚଳମାନଙ୍କୁ ବହୁ ସଂଖ୍ୟକ ସରକାରୀ ଏବଂ ବେସରକାରୀ ବସ୍ ପ୍ରତିଦିନ ଚାଲିଛି । ରାଜଧାନୀ ଭୁବନେଶ୍ୱରରୁ ପ୍ରତି ଜିଲ୍ଲା ମହକୁମାକୁ ଏବଂ ସୁଦୂର ସହର ଜୟପୁର, ବଲାଙ୍ଗିର, ରାଉରକେଲ, ରାୟପୁର୍ ପ୍ରଭୃତି ସହରକୁ ପ୍ରତିଦିନ ଏକାଧିକ ବସ୍ ଚାଲିଛି । ପାଟାମୁଣ୍ଡାଇ ପ୍ରଭୃତି ଗ୍ରାମାଞ୍ଚଳରୁ ଏବଂ ପୁରୀ ପ୍ରଭୃତି ସହରରୁ କଲିକତାକୁ ମଧ୍ୟ ବସ୍ ଚାଲିଛି । ସୁଦୂର ରାଜ୍ୟ ମହାରାଷ୍ଟ୍ର, ଗୁଜୁରାଟ, ଉତ୍ତରପ୍ରଦେଶ ଓ ମଧ୍ୟପ୍ରଦେଶ ପ୍ରଭୃତିରୁ ଯାତ୍ରୀମାନେ ସ୍ୱତନ୍ତ୍ର ବସ୍‌ମାନଙ୍କରେ ପୁରୀ, ଭୁବନେଶ୍ୱର, କୋଣାର୍କ ପ୍ରଭୃତି ତୀର୍ଥ ଭ୍ରମଣରେ ଆସିପାରୁଛନ୍ତି । ଜାତୀୟ ରାଜପଥମାନଙ୍କରେ ଟ୍ରକ୍‌ରେ ଭାରତର ସବୁ ରାଜ୍ୟକୁ ମାଲ୍ ପଠାଯାଇ ପାରୁଛି ଏବଂ ସେଠାରୁ ଆମଦାନୀ କରାଯାଇ ପାରୁଛି । ରାଜ୍ୟ ମଧ୍ୟରେ ମଧ୍ୟ ଅଧିକାଂଶ ଅଞ୍ଚଳକୁ ବିଭିନ୍ନ ପ୍ରକାର ମାଲ୍ ପରିବହନ କରାଯାଇ ପାରୁଛି । ଗ୍ରାମାଞ୍ଚଳରେ ସବୁଆଡ଼େ ପିଚୁରାସ୍ତାର ପ୍ରସାର ହୋଇ ପାରିଛି । ମଟରସାଇକେଲ, ସ୍କୁଟର, ଲୁନା ପ୍ରଭୃତି ଦୁଇଚକିଆ ପେଟ୍ରୋଲ-ଚାଳିତ ଗାଡ଼ି ସହର ଓ ଗାଁମାନଙ୍କରେ ସବୁଆଡ଼େ ବ୍ୟାପି ଯାଇଛି । ରାଜ୍ୟମଧ୍ୟରେ ରେଳରାସ୍ତାର ଅଧିକ ପ୍ରସାର ହୋଇପାରି ନାହିଁ । ମାତ୍ର ଦ୍ରୁତଗାମୀ ଏକ୍‌ସପ୍ରେସ୍ ଗାଡ଼ି, ପାସେଞ୍ଜର ଗାଡ଼ି ଏବଂ ମାଲଗାଡ଼ିମାନଙ୍କର ସଂଖ୍ୟା ଯଥେଷ୍ଟ ବଢ଼ିଯାଇଛି । ଷ୍ଟେସନମାନଙ୍କର ସଂଖ୍ୟା ଯଥେଷ୍ଟ ବୃଦ୍ଧି ପାଇଛି । ବଡ଼ ବଡ଼ ରେଳଷ୍ଟେସନମାନଙ୍କର ବିଶେଷ ଉନ୍ନତି ହୋଇଛି । ଭୁବନେଶ୍ୱରରୁ ଦିଲ୍ଲୀ, କଲିକତା, ମାଡ୍ରାଜ, ବମ୍ବେ, ହାଇଦରାବାଦ ପ୍ରଭୃତି ଭାରତର ବଡ଼ ବଡ଼ ସହରମାନଙ୍କୁ ଅଳ୍ପସମୟ ମଧ୍ୟରେ ବିମାନଯୋଗେ ଯିବାଆସିବା କରି ହେଉଛି । ସ୍ୱାଧୀନତା ପରେ ଏହି ଗମନାଗମନ ସୁବିଧା ସବୁଠାରୁ ଅଧିକ ଆଖିଦୃଶିଆ ହୋଇଛି ।

ସହର ଓ ଗ୍ରାମମାନଙ୍କରେ ବିଦ୍ୟୁତ ଆଲୋକ ଏବଂ ବିଭିନ୍ନ ବଡ଼ ସାନ ଶିଳ୍ପରେ ବିଦ୍ୟୁତଶକ୍ତିର ବ୍ୟବହାର ଅଭୂତପୂର୍ବ ଭାବରେ ବୃଦ୍ଧି ପାଇଛି । ହୀରାକୁଦ, ବାଲିମେଳା, ମାଛକୁଣ୍ଡ, ରେଙ୍ଗାଲି ପ୍ରଭୃତି ଜଳବିଦ୍ୟୁତ୍ କେନ୍ଦ୍ର ଏବଂ

ତାଳଚେର ପ୍ରଭୃତି ସ୍ଥାନରୁ କୋଇଲାଭିତ୍ତିକ ବିଦ୍ୟୁତ୍ ଉତ୍ପାଦନ କେନ୍ଦ୍ରରୁ ରାଜ୍ୟର ବିଭିନ୍ନ ଅଞ୍ଚଳକୁ ବିଦ୍ୟୁତ୍‌ଶକ୍ତି ଯୋଗାଇ ଦିଆଯାଇ ପାରୁଛି । ସ୍ୱାଧୀନତା ପୂର୍ବରୁ ଭାରତରେ ଟେଲିଭିଜନ ନ ଥିଲା । ରେଡ଼ିଓର ମଧ୍ୟ ବହୁଳ ପ୍ରସାର ନ ଥିଲା । ବର୍ତ୍ତମାନ ଗାଁମାନଙ୍କରେ ଦରିଦ୍ର ପରିବାର ସୁଦ୍ଧା ରେଡ଼ିଓ ରଖିଛନ୍ତି ଏବଂ ସହର ଓ ଗ୍ରାମାଞ୍ଚଳରେ ଅଧିକାଂଶ ଧନୀ ଓ ମଧ୍ୟବିତ୍ତ ପରିବାର ଟେଲିଭିଜନ ରଖିଛନ୍ତି ।

ସହର ଓ ଗ୍ରାମାଞ୍ଚଳରେ ଲୋକମାନଙ୍କର ଘରଦ୍ୱାରରେ ମଧ୍ୟ ବହୁତ ଉନ୍ନତି ଘଟିଛି । ସବୁ ଗାଁରେ ପାଞ୍ଚ ଛଅଟା କୋଠାଘର ଦେଖିବାକୁ ମିଳୁଛି । ବିଭିନ୍ନ ସହରରେ ବହୁ ନୂତନ କୋଠାଘର ନିର୍ମିତ ହେଉଛି । କଟକ, ଭୁବନେଶ୍ୱର, ବ୍ରହ୍ମପୁର, ସମ୍ବଲପୁର, ରାଉରକେଲା ପ୍ରଭୃତି ବଡ଼ ବଡ଼ ସହର-ମାନଙ୍କରେ, କଲିକତା, ବମ୍ବେ, ଦିଲ୍ଲୀ, ମାନ୍ଦ୍ରାଜ ପ୍ରଭୃତି ସହରମାନଙ୍କ ପରି ପନ୍ଦର କୋଡ଼ିଏ ମାହାଲା ଘର ଦେଖିବାକୁ ମିଳୁ ନାହିଁ । କିନ୍ତୁ କେତେକ ସରକାରୀ ଏବଂ ବ୍ୟକ୍ତିଗତ ଗୃହ ପାଞ୍ଚମାହାଲା ଘର ଦେଖିବାକୁ ମିଳୁଛି । ସହର-ମାନଙ୍କର ରୂପ ବଦଳିଯାଇଛି । ସବୁ ସହରର ମୁଖ୍ୟରାସ୍ତାମାନଙ୍କରେ ଉଜ୍ଜ୍ୱଳ ଆଲୋକ ଦିଆଯାଉଛି ଏବଂ ଦୋକାନମାନ ବଡ଼ ଓ ଆଧୁନିକ ହୋଇଯାଇଛି । ସେଗୁଡ଼ିକରେ ବହୁପ୍ରକାର ନୂତନ ଜିନିଷ କିଣିବାକୁ ମିଳୁଛି । ଯୁଦ୍ଧ ପୂର୍ବର ପୁରୁଣାକାଳିଆ ଦୋକାନ ବଜାର ପରିବର୍ତ୍ତେ ଆଧୁନିକ ଧରଣର ଦୋକାନ ବଜାର ମୁଣ୍ଡ ଟେକୁଛି । ଗାଁମାନଙ୍କରେ ହାଟ ବଜାରରେ ମଧ୍ୟ ଦୋକାନମାନ ବଢ଼ି ହୋଇଯାଇଛି ଏବଂ ସହରମାନଙ୍କରୁ ବହୁପ୍ରକାର ନୂତନ ପଦାର୍ଥ ସେଠାରେ ବିକ୍ରି ହେଉଛି । ନାଇଲନ୍, ପଲିଷ୍ଟର ସୂତାର ବିଭିନ୍ନ ଡିଜାଇନ୍‌ର ଲୁଗାପଟା ଗାଁ ଦୋକାନମାନଙ୍କରେ ସୁଦ୍ଧା ଭରପୂର ହୋଇଛି ।

ଗ୍ରାମାଞ୍ଚଳ ଓ ସହରମାନଙ୍କରେ ସ୍କୁଲ, କଲେଜ, ଡାକ୍ତରଖାନା ଓ ପୋଷ୍ଟଅଫିସ୍ ପ୍ରଭୃତିର ସଂଖ୍ୟା ଅଭୂତପୂର୍ବ ଭାବରେ ବଢ଼ିଛି । ମୋଟ ଉପରେ ଶତାବ୍ଦୀର ପ୍ରଥମାର୍ଦ୍ଧ ସ୍ୱାଧୀନତା ପୂର୍ବ ଅବସ୍ଥା ତୁଳନାରେ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ଶେଷରେ ବହୁ ଦିଗରେ ଅଭୂତପୂର୍ବ ପ୍ରଗତି ଆମ ଆଖିକୁ ଦିଶୁଛି । କିନ୍ତୁ ପୃଥିବୀର ଅନ୍ୟ ଉନ୍ନତ ଦେଶ ଏବଂ ଭାରତବର୍ଷର ଉନ୍ନତ ରାଜ୍ୟମାନଙ୍କରେ ପ୍ରଗତି ତୁଳନାରେ ଓଡ଼ିଶାରେ ବିଭିନ୍ନ ଦିଗରେ ପ୍ରଗତି ଅତ୍ୟନ୍ତ କମ୍ ହୋଇଛି । ଜାପାନ, ଆମେରିକା ଏବଂ ୟୁରୋପର ବିଭିନ୍ନ ଦେଶମାନଙ୍କର ସହର ଓ ଗ୍ରାମାଞ୍ଚଳର ଚିତ୍ର ଯାହା ଆମ୍ଭେମାନେ ସ୍ୱଚକ୍ଷୁରେ ବା ଦୂରଦର୍ଶନରେ ଦେଖୁଛୁ, ତାହା ତୁଳନାରେ ଆମ ଦେଶର ଗ୍ରାମ ଓ କ୍ଷୁଦ୍ର ସହରାଞ୍ଚଳ ଆଜିସୁଦ୍ଧା ଆଦିମ ଅବସ୍ଥାରେ ଥିବାପରି ଜଣାଯାଉଛି । ବିଶେଷତଃ ଓଡ଼ିଶାର ଆଦିବାସୀ-ବହୁଳ କୋରାପୁଟ, ଫୁଲବାଣୀ,

କଳାହାଣ୍ଡି, ମୟୂରଭଞ୍ଜ ଓ ସୁନ୍ଦରଗଡ଼ ପ୍ରଭୃତିର ଗ୍ରାମାଞ୍ଚଳ ପୂର୍ବପରି ତିମିରାଚ୍ଛନ୍ନ ଅଞ୍ଚଳ ରୂପେ ରହିଛି । ପ୍ରଗତିର ଅନ୍ତରାଳରେ ସବୁ ଅଞ୍ଚଳରେ ସେହି ଗୋଟିଏ ସାଧାରଣ କଥା ରହିଛି । ଗାଁମାନଙ୍କରେ ଯେଉଁମାନେ ବର୍ତ୍ତମାନ କୋଠାଘର କରିଛନ୍ତି ବା ଧନୀ ହୋଇଛନ୍ତି, ସେମାନେ ପୂର୍ବେ ବେଶି ଜମିର ମାଲିକ ଓ ମହାଜନ ଜମିଦାର ପରିବାରର ଲୋକ ଥିଲେ । ବର୍ତ୍ତମାନ ସେ ପରିବାରର ଲୋକମାନେ ବ୍ୟବସାୟ ବାଣିଜ୍ୟ, ଚାକିରି ବାକିରି କରି କଳା ଓ ଧଳା ଉଭୟ ଧନ ମିଶାଇ ଅଧିକ ଧନୀ ହୋଇଛନ୍ତି । ଆଦିବାସୀ, ହରିଜନ, ବହୁ ଅନୁନ୍ନତ ଜାତିର ଲୋକ, ଦରିଦ୍ର ନୀଚଜାତି ପରିବାରର ଲୋକମାନଙ୍କର ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ ସତ୍ତ୍ୱେ ବିଶେଷ ଉନ୍ନତି ହୋଇ ନାହିଁ । ସେମାନେ ଅବଶ୍ୟ ପୂର୍ବ ଅପେକ୍ଷା ଅଧିକ ଗରିବ ହୋଇ ନାହାନ୍ତି, କିନ୍ତୁ ଏ ଯୁଗରେ ମଧ୍ୟ ସେମାନଙ୍କର ପିଲାମାନେ ଅଶିକ୍ଷିତ, ବେକାର ରହିଛନ୍ତି ଏବଂ ଖାଇବା ପିନ୍ଧିବାରେ ସେମାନଙ୍କର ବିଶେଷ ଅଭାବ ରହିଛି । ଶତାବ୍ଦୀର ପ୍ରଥମାର୍ଦ୍ଧ ଅପେକ୍ଷା ଦ୍ୱିତୀୟାର୍ଦ୍ଧରେ ଧନୀ ଓ ଦରିଦ୍ରଙ୍କ ମଧ୍ୟରେ ପାର୍ଥକ୍ୟ ନିଶ୍ଚିତ ଭାବରେ ବୃଦ୍ଧି ପାଇଛି । ଧନୀମାନେ ବିଭିନ୍ନ କୌଶଳରେ ପୂର୍ବ ମୂଳଦୁଆ ଉପରେ ଦ୍ରୁତ ଗତିରେ ଅଧିକ ଧନୀ ହୋଇ ଯାଉଛନ୍ତି । ମାତ୍ର ଦରିଦ୍ର ଲୋକମାନେ ଏ ସମାଜରେ ଉପରକୁ ଉଠି ପାରୁ ନାହାନ୍ତି । ସେହିପରି ଉନ୍ନତ ଅଞ୍ଚଳ ସବୁ ଦ୍ରୁତ ଗତିରେ ଅଧିକ ଉନ୍ନତ ହୋଇ ଯାଉଛନ୍ତି । ଅନୁନ୍ନତ ଅଞ୍ଚଳମାନ ଦ୍ରୁତ ଗତିରେ ଉନ୍ନତ ହୋଇ ପାରୁ ନାହାନ୍ତି । ସେଥିଯୋଗୁଁ ଉନ୍ନତ ଅଞ୍ଚଳର ଲୋକମାନଙ୍କର ଆର୍ଥିକ ଅବସ୍ଥା ଏବଂ ଅନୁନ୍ନତ ଅଞ୍ଚଳର ଲୋକମାନଙ୍କର ଅବସ୍ଥା ମଧ୍ୟରେ ପାର୍ଥକ୍ୟ ବୃଦ୍ଧି ପାଉଛି । କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ, ସମ୍ବଲପୁର ଅଞ୍ଚଳ ଏବଂ ଫୁଲବାଣୀ, କଳାହାଣ୍ଡି, କୋରାପୁଟ ଅଞ୍ଚଳ ମଧ୍ୟରେ ପାର୍ଥକ୍ୟ ଏହାର ନମୁନା । ବିଂଶ ଶତାବ୍ଦୀର ଶେଷରେ ରାଜ୍ୟର ଆର୍ଥିକ ପ୍ରଗତିର ସ୍ଥିତି ଏହିପରି ବୋଲି ମୁଁ ଦେଖିପାରୁଛି ।

## ଶିକ୍ଷା ପ୍ରସାର

( ୧୬ )

ଊନବିଂଶ ଶତାବ୍ଦୀ ଓ ବିଂଶ ଶତାବ୍ଦୀର ବହୁ ଲେଖକଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ, ଓଡ଼ିଶାରେ ଇଂରେଜ ଶାସନ ପୂର୍ବରୁ ଏବଂ ଇଂରେଜ ଶାସନ ଆରମ୍ଭରୁ ପ୍ରାୟ ଶହେ ବର୍ଷ ପର୍ଯ୍ୟନ୍ତ ଗ୍ରାମବାସୀମାନେ ନିଜ ଉଦ୍ୟମରେ ଏବଂ ନିଜ ଖର୍ଚ୍ଚରେ ପ୍ରାଥମିକ ଶିକ୍ଷା ପରିଚାଳନା କରୁଥିଲେ । ହରିଜନ, ଆଦିବାସୀ ଓ ଅନ୍ୟ ନିମ୍ନ ଜାତିର ଅଧିକାଂଶ ଲୋକ ପ୍ରାଥମିକ ଶିକ୍ଷାର ଆବଶ୍ୟକତା ଅନୁଭବ କରି ପାରି ନ ଥିଲେ । ମାତ୍ର ବ୍ରାହ୍ମଣ, କ୍ଷତ୍ରିୟ, କରଣ, ଖଣ୍ଡାୟତ ପ୍ରଭୃତି ଉଚ୍ଚ ଜାତିର ଲୋକମାନେ ସେମାନଙ୍କର ପୁଅ ପିଲାମାନଙ୍କ ପାଇଁ ପ୍ରାଥମିକ ଶିକ୍ଷା ଆବଶ୍ୟକ ବୋଲି ଅନୁଭବ କରୁଥିଲେ । ଉଚ୍ଚ ଜାତିର ଲୋକମାନେ ମଧ୍ୟ ଝିଅ ପିଲାମାନଙ୍କର ପ୍ରାଥମିକ ସ୍କୁଲରେ ପଢ଼ିବାର ଆବଶ୍ୟକତା ଉପଲବ୍ଧି କରି ନ ଥିଲେ । ସୁତରାଂ ସବୁ ଜାତିର ଝିଅପିଲାମାନେ ବିଂଶ ଶତାବ୍ଦୀର ତୃତୀୟ ଦଶକ ପର୍ଯ୍ୟନ୍ତ ପ୍ରାୟ ନିରକ୍ଷର ରହୁଥିଲେ । ଉଚ୍ଚଜାତିର ପୁଅପିଲାମାନଙ୍କ ପାଇଁ ଆୟତନ ଅନୁସାରେ ପ୍ରତି ଗ୍ରାମରେ ଦୁଇ ତିନି ଚାଟଶାଳୀ ଥିଲା । କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଜିଲ୍ଲା ଏବଂ ଅନେକ ଗଡ଼ଜାତ ରାଜ୍ୟରେ ଚାଟଶାଳୀ-ମାନଙ୍କର ପ୍ରତିଷ୍ଠା, ପରିଚାଳନା, ଶିକ୍ଷକ ନିଯୁକ୍ତି ଏବଂ ଶିକ୍ଷା ପ୍ରଣାଳୀ ପ୍ରାୟ ସମାନ ଥିଲା । ଫକୀରମୋହନ, ପ୍ରାଣକୃଷ୍ଣ ପରିଜା, ନୀଳକଣ୍ଠ ଦାସ ପ୍ରଭୃତି ଯେଉଁମାନେ ଊନବିଂଶ ଶତାବ୍ଦୀର ଅର୍ଦ୍ଧରୁ ବିଂଶ ଶତାବ୍ଦୀର ପ୍ରଥମ ଦଶକ ମଧ୍ୟରେ ଗାଁ ଚାଟଶାଳୀମାନଙ୍କରେ ପଢ଼ିଥିଲେ, ସେମାନଙ୍କର ଲେଖାରୁ ଜଣାଯାଏ ଯେ, ଚାଟଶାଳୀମାନଙ୍କର ଶିକ୍ଷକ ଓ ଶିକ୍ଷାପ୍ରଣାଳୀ ପ୍ରାୟ ସବୁଆଡ଼େ ଏକ ପ୍ରକାର ଥିଲା ।

ଅବଧାନମାନେ ନିଜର କର୍ମସଂସ୍ଥାନ ପାଇଁ ବିଭିନ୍ନ ଜିଲ୍ଲାର ଗ୍ରାମମାନଙ୍କୁ ଯାଉଥିଲେ । କେତେକ ଗ୍ରାମବାସୀ ଉଦ୍ୟମ କରି କୌଣସି ସ୍ୱଚ୍ଛଳ ଲୋକର ଘରେ କମ୍ବା ମଠ ବା ଠାକୁରବାଡ଼ି ପ୍ରଭୃତି ସର୍ବସାଧାରଣ ସ୍ଥାନରେ ଗୋଟିଏ

ଗୁହାଳୀ ବା ଗୁଟଶାଳୀ ବସାଉଥିଲେ । ଅବଧାନ ସେ ଗୁହାଳୀ ଘରେ ରହୁଥିଲେ । ଯେଉଁ ଅଭିଭାବକମାନେ ଗୁଟଶାଳୀରେ ପିଲ ପଢ଼ାଉଥିଲେ, ସେମାନେ ପିଲ ପିଛୁ ମାସକୁ ତିନି ଚାରି ଅଣା ଦରମା ଦେଉଥିଲେ ଏବଂ ପାଳକରି ଅବଧାନଙ୍କୁ ଘରେ ଖାଇବାକୁ ଦେଉଥିଲେ । ତାହା ବ୍ୟତୀତ ଗୁଟଶାଳୀରେ ପ୍ରବେଶ କଲବେଳେ, ବିଭିନ୍ନ ସ୍ତରର ପାଠ ଆରମ୍ଭ କଲବେଳେ ଏବଂ ବିଭିନ୍ନ ପୂଜା, ପର୍ବ ପର୍ବାଣି-ମାନଙ୍କରେ ପିଲମାନେ ଅବଧାନଙ୍କୁ ଚାଉଳ, ଡାଲି, ପଇସା ପ୍ରଭୃତି ସିଧା ଦେଉଥିଲେ । ଧାନ କଟାକଟିବେଳେ ପିଲମାନେ ବିଭିନ୍ନ ଗାଁ ଲୋକଙ୍କ ବିଲକୁ ଯାଇ ଅବଧାନ ଓ ଗୁଟଶାଳୀ ପାଇଁ ଧାନ ବୁଲା ମାଗି ଆଣୁଥିଲେ । ଶ୍ରୀପଞ୍ଚମୀ ସମୟରେ କେତେକ ବଡ଼ ପିଲମାନେ ନଡ଼ିଆ ଉପରେ ସରସ୍ୱତୀଙ୍କ ମୂର୍ତ୍ତି ଲେଖି ତାକୁ ବିଭିନ୍ନ ଲୋକଙ୍କ ଘରକୁ ନେଇ ଗୀତ ବୋଲି ଅବଧାନଙ୍କ ପାଇଁ ଚାଉଳ ମାଗି ଆଣୁଥିଲେ । ସୁତରାଂ ଗ୍ରାମବାସୀଙ୍କ ଉଦ୍ୟମ, ଶ୍ରଦ୍ଧା ଏବଂ ଅଭିଭାବକ ମାନଙ୍କଠାରୁ ଦରମା ଓ ଶ୍ରଦ୍ଧା ପ୍ରଭୃତି ଦ୍ୱାରା ଅବଧାନଙ୍କ ଦରମା ଓ ଗୁଟଶାଳୀର ରକ୍ଷଣାବେକ୍ଷଣ କାମ ଚଳୁଥିଲା । କେତେକ ଧନୀ ଓ ସ୍ୱଚ୍ଛଳ ଲୋକ ତାଙ୍କ ପିଲମାନଙ୍କୁ ପଢ଼ାଇବା ପାଇଁ ତାଙ୍କ ଘରେ ସ୍ୱତନ୍ତ୍ର ଅବଧାନ ନିଯୁକ୍ତ କରୁଥିଲେ ଏବଂ ତାଙ୍କୁ ଦରମା ଓ ଖାଇବା ପିଇବାକୁ ଦେଉଥିଲେ ।

ଗୁଟଶାଳୀରେ ଅବଧାନଙ୍କର ପିଲମାନଙ୍କ ଉପରେ ପୂର୍ଣ୍ଣ କର୍ତ୍ତୃତ୍ୱ ଥିଲା । ପିଲମାନେ କଠୋର ଦଣ୍ଡ ମଧ୍ୟରେ ଅତି ଶୃଙ୍ଖଳିତ ଭାବରେ ଚଳିବାକୁ ବାଧ୍ୟ ହେଉଥିଲେ । କୌଣସି ପିଲାର ଅବଧାନଙ୍କ ଆଜ୍ଞାକୁ ଅବଜ୍ଞା କରିବାକୁ ସାଧ୍ୟ ବା ସାହସ ନଥିଲା । ଅବଧାନ ପିଲାକୁ ଶାରୀରିକ ଦଣ୍ଡଦେବା ଏବଂ କଠୋର ଶାସ୍ତିଦେଇ ଶାସନ କରିବା ପ୍ରଥା ଅଭିଭାବକମାନେ ମାନି ନେଇଥିଲେ । ପିଲମାନେ ଅବଧାନଙ୍କୁ ସେବାସେଇବାସରେ ସାହାଯ୍ୟ କରୁଥିଲେ, ତାଙ୍କ ପାଇଁ ଚୂଡ଼ା, ମୁଢ଼ି ମସଲାମସଲ କିଣିଆଣୁଥିଲେ ଏବଂ ଗୁଟଶାଳୀର ଚଟାଣ ଲିପାପୋଛା କରୁଥିଲେ । ସେଥିରେ ଅଭିଭାବକମାନଙ୍କର କୌଣସି ଆପତ୍ତି ନ ଥିଲା । ଅବଧାନ ସାଧାରଣତଃ ଦରିଦ୍ର ହେଲେ ସୁଦ୍ଧା ତାଙ୍କର ଜ୍ଞାନ ଓ ପାଠ ଯୋଗୁଁ ଅଭିଭାବକମାନେ ଏବଂ ସାଧାରଣ ଗ୍ରାମବାସୀମାନେ ତାଙ୍କୁ ଆଦର କରୁଥିଲେ ଏବଂ ସମ୍ମାନ ଦେଉଥିଲେ ।

ଫକୀରମୋହନ ଏବଂ ଅନ୍ୟ ଲେଖକମାନଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ଅବଧାନମାନଙ୍କ ମଧ୍ୟରେ ଅଧିକାଂଶ କରଣ ଜାତିର ଲୋକ ଏବଂ ଅଳ୍ପ ସଂଖ୍ୟକ ମାଟିବଂଶ ଓଝା ଜାତିର ଲୋକ ଥିଲେ । କଟକ ଜିଲ୍ଲାର ଝଙ୍କଡ଼ ପ୍ରଗନାରୁ ବହୁ କରଣ ଜାତିର ଅବଧାନ ବାଲେଶ୍ୱର ଓ ମେଦିନୀପୁର ପ୍ରଭୃତି ଜିଲ୍ଲାକୁ

ଅବଧାନ କାମ କରିବାକୁ ଯାଉଥିଲେ । ପୁରୀଜିଲ୍ଲାର ଖୋରଧା ପ୍ରଭୃତି ଅଞ୍ଚଳରୁ ମଧ୍ୟ ବହୁ ଅବଧାନ ସୁଦୂର ସମ୍ବଲପୁର, ସୋନପୁର ଏବଂ ବିଭିନ୍ନ ଗଡ଼ଜାତ ରାଜ୍ୟରେ ଅବଧାନ କାମ କରିବାକୁ ଯାଉଥିଲେ । ନାହାକ ମାନଙ୍କର ଲୋକ-ସଂଖ୍ୟା ଓଡ଼ିଶାରେ କମ୍ ଥିଲା । ସେମାନଙ୍କମଧ୍ୟରୁ କେବଳ ମାଟିବଂଶ ନାହାକମାନେ ଅବଧାନ କାମ କରୁଥିଲେ । ଖଡ଼ିବଂଶ ନାହାକମାନେ ଜ୍ୟୋତିଷ କାମ କରୁଥିଲେ । ସବୁ ପ୍ରକାର ଅବଧାନଙ୍କର ଏବଂ ବିଶେଷତଃ ମାଟିବଂଶ ଓଝାଙ୍କର ଗଣିତବିଦ୍ୟାରେ ବିଶେଷ ପାରଙ୍ଗମତା ଥିଲା ଏବଂ ଚାଟଶାଳୀ ପାଠରେ ସେମାନେ ଗଣିତ ଶିକ୍ଷା ଦେବାରେ ଅଧିକ ଜୋର ଦେଉଥିଲେ । ମାଟିବଂଶ ଓଝାମାନେ ଗଣିତର ଲୀଳାବତୀ ସୂତ୍ର ସବୁ ଭଲଭାବରେ ଜାଣିଥିଲେ ବୋଲି ଲୋକମାନେ ବିଶ୍ୱାସ କରୁଥିଲେ । ଅବଧାନମାନେ ସେ ସମୟରେ ଅତି ଗରିବ ଥିଲେ ଏକଥା ନିଶ୍ଚିତ । ଅବଧାନଙ୍କ ବେଶଭୂଷା ବିଷୟରେ ଫକୀରମୋହନ ତାଙ୍କ 'ଆତ୍ମଜୀବନ ଚରିତ' ବହିରେ ଲେଖିଛନ୍ତି । "ଆଣ୍ଠୁଲୁଗା ଖଣ୍ଡିଏ ପଖାଳ କରିଆ, ମୁଣ୍ଡରେ ଖଣ୍ଡେ ମଳିଆ ଗାମୁଛା, କାନ୍ଧରେ ଗୋଟିଏ ସାଉଁଳି, ସାଉଁଳି ଏକ ପାଖରେ ଅଧସେର ଚାଉଳ ଫୁଟିବା ଭଳି ଖଣ୍ଡେ ପିତଳ, ପାନ ହଣ୍ଡିପ ଗୋଟିଏ ଲୋଟା, ଆରପାଖରେ ଯୋଡ଼ିଏ ତିନଟା ପୋଥିର ଖେଦା ଏବଂ ଖଣ୍ଡିଏ ଆଠ କି ନ' ହାତ ପିନ୍ଧା—ଏହା ଥିଲା କର୍ମପ୍ରାର୍ଥୀ ଅବଧାନଙ୍କର ଚିହ୍ନ । ଫଗୁଣ ଅଧାଅଧିରୁ ଚୈତ୍ର ଶେଷାଶେଷିଯାଏଁ ଅବଧାନମାନେ ଗୋହିରି ଦାଣ୍ଡରେ ବୁଲୁଥିବାର ଦେଖାଯାଉଥିଲା ।" ବ୍ରାହ୍ମଣମାନେ ଅବଧାନ କାମ ଖୋଜି ବେଶି ସଂଖ୍ୟାରେ ଯାଉ ନ ଥିଲେ । ବୋଧହୁଏ ଗାଁ ମାନଙ୍କରେ ବିଭିନ୍ନ ଲୋକଙ୍କ ଘରେ ପାକକରି ଖାଇବାକୁ ସେମାନେ ରାଜି ନ ଥିଲେ । ପରେ ଗାଁ ମାନଙ୍କରେ ସରକାରୀ ବିଦ୍ୟାଳୟସବୁ ପ୍ରତିଷ୍ଠିତ ହେବାରୁ ପ୍ରାଥମିକ ଶିକ୍ଷକ କାମରେ ବହୁ ବ୍ରାହ୍ମଣ ଜାତିର ଲୋକ ଯୋଗ ଦେଲେ ।

ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଓଡ଼ିଶାର ଗ୍ରାମାଞ୍ଚଳ ଚାଟଶାଳୀ-ମାନଙ୍କରେ ଅବଧାନମାନଙ୍କର ଶିକ୍ଷାପଦ୍ଧତି ପ୍ରାୟ ସମାନ ଥିଲା । ପଢ଼ା ଲେଖା ପାଇଁ ସେତେବେଳେ କାଗଜ କଲମର ପ୍ରଚଳନ ନ ଥିଲା । ସ୍ଲେଟ ଓ ଖଡ଼ିର ମଧ୍ୟ ପ୍ରଚଳନ ନ ଥିଲା । ଅବଧାନେ ପ୍ରତି ପିଲାକୁ ସ୍କୁଲଘର ଚଟାଣରେ ଗୋଟିଏ ସାହି ଦେଉଥିଲେ । ପିଲାମାନେ ନିଜ ନିଜ ସାହିରେ ମୁଣ୍ଡା ଖଡ଼ିରେ ଅ, ଆ, ଠାରୁ ଆରମ୍ଭ କରି କ୍ରମେ କ୍ରମେ ସବୁ ଅକ୍ଷର ଓ ଯୁକ୍ତାକ୍ଷର ସେହି ସାହିରେ ଲେଖି ମଡ଼ାଉଥିଲେ ଏବଂ ଶିଖୁଥିଲେ । ସେହି ସାହିରେ ମଧ୍ୟ ସଣିକିଆ, ମିଶାଣ, ଫେଡ଼ାଣ, ଗୁଣନ, ହରଣ, ଶୋଧ ପ୍ରଭୃତି ଲେଖି ବଡ଼ପାଟିରେ ଆବୃତ୍ତି କରୁଥିଲେ । ଏହି ପ୍ରଣାଳୀରେ ସେମାନେ ସବୁ ଅକ୍ଷର, ସଂଯୁକ୍ତଫଳା, ଯୁକ୍ତାକ୍ଷର,

ପଣିକିଆ, କଡ଼ା ଗଣ୍ଡା, ଗୁଣ୍ଠ ବିଶ୍ୱା ଓ ଜମି ମାପିବା ହିସାବ ମିଶାଣ, ଫେଡ଼ାଣ ଗୁଣନ, ହରଣ ଏବଂ ନଳ ଭାଙ୍ଗିବା ପ୍ରଭୃତି ଗଣିତବିଦ୍ୟା ଶିଖିଯାଉଥିଲେ । ଅଧିକାଂଶ ପିଲ କେବଳ ଅକ୍ଷର ଓ ବହିପଢ଼ା ଶିଖି ପଢ଼ା ଛାଡ଼ିଦେଉଥିଲେ । କେବଳ ଅଳ୍ପ ପିଲ ସବୁପାଠ ଶିଖିବାଯାଏ ସ୍କୁଲରେ ରହୁଥିଲେ । ଲେଖା ଲେଖି ତାଳପତ୍ର ଓ ଲେଖନରେ ହେଉଥିଲା । ମାତ୍ର ଅତି ଅଳ୍ପସଂଖ୍ୟକ ପିଲ ତାଳପତ୍ର ଓ ଲେଖନରେ ଲେଖିପାରୁଥିଲେ । ସବୁପାଠ ଜାଣିବା ସମୟ ସାପେକ୍ଷ ହେଉଥିଲା । ପିଲମାନେ ଭଲ ଭାବରେ ପଢ଼ି ଲେଖି ଶିଖିଲେ ଲେଖନ ସାହାଯ୍ୟରେ ତାଳପତ୍ରରେ ଲେଖୁଥିଲେ ଏବଂ ପୋଥିରୁ ପୁରାଣ ଭାଗବତ ପ୍ରଭୃତି ପଢ଼ୁଥିଲେ । ପଢ଼ିବା ପାଇଁ ସେ ସମୟରେ ବହି ନଥିଲା । ପିଲମାନେ ପ୍ରାଚୀନ ଲେଖକମାନଙ୍କର ଗୀତ ଆବୃତ୍ତି କରିବା ଅଭ୍ୟାସ କରୁଥିଲେ । ବିଲରେ ହଳ ମାଗିଲବେଳେ ବା ଗାଁରେ ଅବଧାନଙ୍କ ପାଇଁ ଚାଉଳ ମାଗିଲବେଳେ ଦଳବଦ୍ଧ ହୋଇ ସେ ଗୀତସବୁ ବୋଲୁଥିଲେ । ଅଧିକାଂଶ ପିଲ ଅଧାରୁ ପାଠ ଛାଡ଼ୁଥିଲେ । ଯେଉଁମାନେ ଚାଟଶାଳୀ ପାଠ ଶେଷ କରୁଥିଲେ, ସେମାନେ ଗଣିତ ଓ ମାନସାଙ୍କରେ ପାରଙ୍ଗମ ହେଉଥିଲେ ଏବଂ ଟଙ୍କା ପଇସା ଓ ଜମିମାପ ପ୍ରଭୃତି ହିସାବପତ୍ର ଭଲଭାବରେ କରିପାରୁଥିଲେ । ଯେଉଁ ଅଳ୍ପସଂଖ୍ୟକ ପିଲ ତାଳପତ୍ରରେ ଲେଖି ପାରୁଥିଲେ ଏବଂ ପୋଥିରୁ ଭାଗବତ, ରାମାୟଣ, ମହାଭାରତ ଏବଂ ବିଭିନ୍ନ ପୁରାଣସବୁ ପଢ଼ିପାରୁଥିଲେ । ଅବଧାନମାନେ ଏସବୁ କାମ ଭଲଭାବରେ କରିପାରୁଥିଲେ । ପଢ଼ା ବହୁତ କଷ୍ଟକର ଥିଲା । ବିଭିନ୍ନ ବିଷୟ ବହୁକାଳ ଘୋଷିବା ଓ ଆବୃତ୍ତି କରିବା ଆବଶ୍ୟକ ହେଉଥିଲା । ଯେଉଁ ଅଳ୍ପସଂଖ୍ୟକ ପିଲ ଦକ୍ଷତାର ସହ ଚାଟଶାଳୀପାଠ ଶେଷ କରୁଥିଲେ, ସେମାନଙ୍କର ପ୍ରାଥମିକ ଶିକ୍ଷାର ମୂଳଦୁଆ ଦୃଢ଼ ହେଉଥିଲା । ଅବଧାନମାନେ ଚାଟଶାଳୀ ମାଧ୍ୟମରେ ଶହ ଶହ ବର୍ଷ ଧରି ଲୋକମାନଙ୍କ ମଧ୍ୟରେ ପ୍ରାଥମିକ ଶିକ୍ଷା ଦୃଢ଼ ଭାବରେ ବଞ୍ଚାଇ ରଖିଥିଲେ ।

ଅବଧାନମାନେ ପିଲମାନଙ୍କୁ ପାଠ ଶିଖାଇବା, ନିୟମାନୁବର୍ତ୍ତୀ କରିବା, ଶିକ୍ଷକ ଓ ଅଭିଭାବକମାନଙ୍କ ଆଦେଶ ପାଳନ କରିବା ଏବଂ ଶୃଙ୍ଖଳା ଶିଖାଇବା ପାଇଁ କଠୋର ଦଣ୍ଡ ଦେଉଥିଲେ । ବେତ ଅବଧାନଙ୍କ ହାତରେ ସର୍ବଦା ଅମୋଘ ଅସ୍ତ୍ର ଥିଲା । ଚାଟଶାଳୀରେ ପୁରୁଷାନୁକ୍ରମେ ପଢ଼ୁଥିବା ସବୁ ପିଲ ଦୈନନ୍ଦିନ ବହୁବାର ବେତ୍ରାଘାତ ପାଇଛନ୍ତି । ବେତ୍ରାଘାତ ବ୍ୟତୀତ ଏକଗୋଡ଼ିଆ ଠିଆ ହେବା, ନାକକାନ ଧରିବା, କାନ୍ଥରେ ଚୌକି ବସିବା, ମଡ଼ୁଆ ଶାଙ୍କୁଳି ପକାଇବା ପ୍ରଭୃତି ଚାଟଶାଳୀରେ ସାଧାରଣ ଶାରୀରିକ ଦଣ୍ଡ ଥିଲା । ଅନେକ ସମୟରେ ଅବଧାନମାନେ ଚପଳ ଓ କୌତୁହଳପୂର୍ଣ୍ଣ ଶ୍ରେଷ୍ଠ ପିଲମାନଙ୍କୁ କଠୋର

ଶାରୀରିକ ଦଣ୍ଡ ଦେଉଥିଲେ ଏବଂ ପିଲାମାନଙ୍କର ଅଭିଭାବକମାନେ ପ୍ରତ୍ୟକ୍ଷରେ ବା ପରୋକ୍ଷରେ ସେ ପ୍ରଥାକୁ ଅନୁମୋଦନ କରୁଥିଲେ । ମୋଟାମୋଟି ଭାବରେ ସମାଜରେ ସବୁ ଲୋକଙ୍କର ଧାରଣା ଥିଲା ଯେ, ପିଲା ଚାଟଶାଳୀରେ କଠୋର ଶାରୀରିକ ଦଣ୍ଡ ନ ପାଇଲେ ପାଠ ଶିଖିପାରିବ ନାହିଁ କିମ୍ବା ଭବିଷ୍ୟତରେ ଶୃଙ୍ଖଳିତ ନାଗରିକ ହୋଇପାରିବ ନାହିଁ । ୧୯୨୫ ମସିହା ସୁଦ୍ଧା ଆମେ ପ୍ରାଥମିକ ବିଦ୍ୟାଳୟରେ ପଢ଼ିବା ପର୍ଯ୍ୟନ୍ତ ବିଦ୍ୟାଳୟମାନଙ୍କରେ ଏପରି ଶାରୀରିକ ଦଣ୍ଡ ଦିଆଯାଉଥିଲା ।

ଇଂରେଜ ଶାସନ କାଳରେ ୧୮୪୦ ମସିହାବେଳକୁ ଭାରତବର୍ଷର ବିଭିନ୍ନ ଅଞ୍ଚଳରେ ଇଂରେଜୀ ଶିକ୍ଷା ପ୍ରଚଳନ କରିବା ଏବଂ ବିଭିନ୍ନ ସ୍ତରରେ ସରକାରୀ ଉଦ୍ୟମରେ ଶିକ୍ଷାନୁଷ୍ଠାନମାନ ପ୍ରତିଷ୍ଠା କରିବା ସ୍ଥିର ହୋଇ ସାରିଥିଲେ ସୁଦ୍ଧା ଓଡ଼ିଶାର ବିଭିନ୍ନ ଗ୍ରାମ ଓ ସହର ଅଞ୍ଚଳମାନଙ୍କରେ ବିଂଶ ଶତାବ୍ଦୀର ପ୍ରଥମ ଦଶକ ପର୍ଯ୍ୟନ୍ତ ଗ୍ରାମ ବା ସହରବାସୀଙ୍କ ସାମୂହିକ ଓ ବ୍ୟକ୍ତିଗତ ଉଦ୍ୟମରେ ଉପରୋକ୍ତ ଚାଟଶାଳୀ ପ୍ରଣାଳୀରେ ପ୍ରାଥମିକ ଶିକ୍ଷା ଦିଆଯାଉଥିଲା । ଊନବିଂଶ ଶତାବ୍ଦୀର ଶେଷ ଏବଂ ବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧି ବେଳକୁ ଇଂରେଜ-ଶାସିତ ଓଡ଼ିଶାର ଜିଲ୍ଲାମାନଙ୍କର ସହର ଓ ଗ୍ରାମମାନଙ୍କରେ ସରକାରୀ ଉଦ୍ୟମରେ ନିମ୍ନପ୍ରାଥମିକ ଏବଂ ଉଚ୍ଚପ୍ରାଥମିକ ବିଦ୍ୟାଳୟମାନ ପ୍ରତିଷ୍ଠିତ ହେଲା । ତଥାପି ୧୯୨୨/୨୩ ମସିହା ସୁଦ୍ଧା ଆମ୍ଭେମାନେ ପ୍ରାଥମିକ ଶିକ୍ଷା ଆରମ୍ଭ କଲା ପର୍ଯ୍ୟନ୍ତ, ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଶିକ୍ଷାପ୍ରଣାଳୀ ପୁରୁଣା ଚାଟଶାଳୀ ଶିକ୍ଷାପ୍ରଣାଳୀଠାରୁ ଭିନ୍ନ ନ ଥିଲା । ସରକାରୀ ଉଦ୍ୟମରେ ପ୍ରତିଷ୍ଠିତ ପ୍ରାଥମିକ ସ୍କୁଲମାନଙ୍କରେ ମଧ୍ୟ ପିଲାମାନେ ପୂର୍ବ ପ୍ରଣାଳୀରେ ଅକ୍ଷର, ବନାନ, ପଣିକିଆ, ମିଶାଣ, ଫେଡ଼ାଣ ଏବଂ ଭିନ୍ନ ଅଙ୍କ କଷିବା ପ୍ରଭୃତି ଶିଖୁଥିଲେ । ପୂଜା ପର୍ବ-ପର୍ବାଣିରେ ପିଲାମାନେ ଚାଉଳ ନଡ଼ିଆ ପ୍ରଭୃତି ସ୍କୁଲକୁ ନେଉଥିଲେ ଏବଂ ଧାନକଟା ସମୟରେ ଗୀତ ବୋଲି ବିଲରେ ସ୍କୁଲ ପାଇଁ ଧାନହୁଲା ମାଗୁଥିଲେ ।

୧୯୨୦ ମସିହା ବେଳକୁ କଟକ ଜିଲ୍ଲାର ଆମ ଅଞ୍ଚଳରେ ଏବଂ ଓଡ଼ିଶା ଭିତରର ଅନ୍ୟ ଜିଲ୍ଲାମାନଙ୍କରେ ପ୍ରାଥମିକ ଶିକ୍ଷା ସଙ୍ଗଠିତ ହୋଇ ଯାଇଥିଲା । ପୁରୁଣା କାଳର ଚାଟଶାଳୀ ଏବଂ ଗ୍ରାମବାସୀମାନଙ୍କ ଦ୍ୱାରା ପରିଚାଳିତ ଅବଧାନୀ ପ୍ରଥା ଲୋପ ପାଇଯାଉଥିଲା । ପ୍ରତି ବଡ଼ ଗାଁରେ ଏବଂ ଦୁଇ ତିନି ଛୋଟ ଗାଁକୁ ମିଶାଇ ଗୋଟିଏ ସୁବିଧାଜନକ ସ୍ଥାନରେ ସରକାରଙ୍କ ତତ୍ତ୍ୱାବଧାନରେ ପ୍ରାଥମିକ ସ୍କୁଲ ସବୁ ବସିସାରିଥିଲା । ସ୍କୁଲମାନଙ୍କରେ ସାଧାରଣତଃ ଦୁଇଜଣ ଶିକ୍ଷକ

ଥିଲେ ଏବଂ ଗ୍ରାମମାନଙ୍କରେ ସର୍ବସାଧାରଣ ସ୍ଥାନରେ ନିର୍ମିତ ସ୍କୁଲଘରମାନଙ୍କରେ ସ୍କୁଲ ଚାଲୁଥିଲା । ଅଧିକାଂଶ ନିମ୍ନପ୍ରାଥମିକ ସ୍କୁଲ ଲୋକାଲବୋର୍ଡ଼ ଏବଂ ଉଚ୍ଚ ପ୍ରାଥମିକ ସ୍କୁଲ ଡିଷ୍ଟ୍ରିକ୍ଟବୋର୍ଡ଼ ଅଧୀନରେ ଥିଲା । ଉଚ୍ଚପ୍ରାଥମିକ ସ୍କୁଲମାନଙ୍କ ସଂଖ୍ୟା ଖୁବ୍ କମ୍ ଥିଲା । ପ୍ରାଥମିକ ସ୍କୁଲମାନଙ୍କରେ ପ୍ରଧାନଶିକ୍ଷକ ମଧ୍ୟ ଇଂରାଜୀ ବା ମଧ୍ୟ ଭର୍ଣ୍ଣାକୁଲାର ପରୀକ୍ଷାରେ ପାସ୍‌କରି ଏଲିମେଣ୍ଟାରୀ ଶିକ୍ଷକ ତାଲିମ୍ ପରୀକ୍ଷା ପାସ୍ କରିଥିଲେ । ଦ୍ୱିତୀୟ ଶିକ୍ଷକ ଟ୍ରେନିଂ ନ ପାଇଥିବା ବ୍ୟକ୍ତି ଥିଲେ । ସେ ଉଚ୍ଚପ୍ରାଥମିକ ବା ମଧ୍ୟଇଂରାଜୀ ସ୍କୁଲ ପର୍ଯ୍ୟନ୍ତ ପଢ଼ିଥିଲେ । ଆମ ସମୟରେ ପ୍ରାଥମିକ ସ୍କୁଲର ପ୍ରଧାନଶିକ୍ଷକ ମାସକୁ ଦଶଟଙ୍କା ଏବଂ ଦ୍ୱିତୀୟ ଶିକ୍ଷକ ମାସକୁ ଚାରି ପାଞ୍ଚ ଟଙ୍କା ଦରମା ପାଉଥିଲେ । ସ୍କୁଲଘର ଛପର ଓ ମରାମତି କରିବା ଗ୍ରାମବାସୀଙ୍କର ଦାୟିତ୍ୱ ଥିଲା । ଶିକ୍ଷା ବିଭାଗ ଦ୍ୱାରା ନିଯୁକ୍ତ ସବ୍‌ଇନ୍‌ସପେକ୍ଟର ସ୍କୁଲସବୁ ପରିଦର୍ଶନ କରୁଥିଲେ ।

ନିମ୍ନପ୍ରାଥମିକ ସ୍କୁଲରେ ଶିଶୁଶ୍ରେଣୀ, ତାପରେ ପ୍ରଥମ, ଦ୍ୱିତୀୟ, ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପାଠପଢ଼ା ହେଉଥିଲା । ଉଚ୍ଚପ୍ରାଥମିକ ସ୍କୁଲରେ ଆଉ ଦୁଇଗୋଟି ଶ୍ରେଣୀ ଚତୁର୍ଥ ଓ ପଞ୍ଚମଶ୍ରେଣୀ ଥିଲା । ସେଥିରେ ଇଂରାଜୀ ପଢ଼ା-ହେଉ ନ ଥିଲା । ପ୍ରାଥମିକ ସ୍କୁଲମାନଙ୍କରେ ଶିକ୍ଷାଦାନ ସାଧାରଣତଃ ପୁରାତନ ଚାଟଶାଳୀ ପ୍ରଣାଳୀରେ ହେଉଥିଲା । ଆମେ ଶିଶୁଶ୍ରେଣୀରେ ପଢ଼ିଲାବେଳେ କେତେମାସ ସ୍କୁଲଘର ଚଟାଣରେ କିମ୍ବା ସ୍କୁଲ ସମ୍ମୁଖରେ ଥିବା ଭୂଇଁରେ ମୁଣ୍ଡା ଖଡ଼ିରେ ଅକ୍ଷର ଲେଖି ମଡ଼ାଇଥିଲୁ । କିନ୍ତୁ ଅଳ୍ପକାଳ ପରେ ସବୁ ପିଲା ସ୍ଲେଟ ଓ ସ୍ଲେଟଖଡ଼ି ବ୍ୟବହାର କଲେ । ଆମ୍ଭେମାନେ ଲେଖିବା ପାଇଁ ତାଳପତ୍ର ଓ ଲେଖନ ବ୍ୟବହାର ଆଦୌ ଶିଖି ନ ଥିଲୁ । ତାଳପତ୍ର ପୋଥିରେ ଲେଖାଥିବା ଭାଗବତ ବା ପୁରାଣ ପ୍ରଭୃତି ଆମ୍ଭେମାନେ ସାଧାରଣତଃ ପଢ଼ିପାରୁ ନ ଥିଲୁ । ଆମ ବେଳକୁ ଲେଖିବା ପାଇଁ ମାଟିଆ ରଙ୍ଗର ବାଲିକାଗଜ, ସରକଲମ ଓ କାଳି ଦୁଆତ ପ୍ରଚଳିତ ହୋଇଥିଲା । ଆମ୍ଭେମାନେ ପ୍ରଥମ ଶ୍ରେଣୀଠାରୁ ପାଠ୍ୟ ପୁସ୍ତକ ପଢ଼ୁଥିଲୁ । ଅକ୍ଷର ଶିଖିବା, ବନାନ, ପଣିକିଆ ଓ ମିଶାଣ ଫେଡ଼ାଣ ଓ ଗଣିତ ପ୍ରଭୃତି ସ୍ଲେଟରେ କରୁଥିଲୁ । ହସ୍ତାକ୍ଷର ପ୍ରଭୃତି ବାଲିକାଗଜ ଓ କାଳିରେ ଲେଖୁଥିଲୁ ।

ଆମ ସମୟରେ ବିଭିନ୍ନ ଶ୍ରେଣୀ ପାଇଁ ପାଠ୍ୟପୁସ୍ତକ ଆନୁମୋଦିତ ହେବା ପଦ୍ଧତି ଅନୁସୃତ ହେଉଥିଲା । ଆମେ ପ୍ରଥମଶ୍ରେଣୀଠାରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ମଧୁସୂଦନ ରାଓଙ୍କ ଲିଖିତ ସାହିତ୍ୟ ପାଠ୍ୟପୁସ୍ତକ ରୂପେ ପଢ଼ୁଥିଲୁ । ତାଙ୍କ ଲିଖିତ ପ୍ରଥମ ଶ୍ରେଣୀ ପାଇଁ ବର୍ଣ୍ଣବୋଧ, ଦ୍ୱିତୀୟ ଶ୍ରେଣୀ ପାଇଁ ଶିଶୁବୋଧ, ତୃତୀୟ ଶ୍ରେଣୀ

ପାଇଁ ବାଳବୋଧ, ଚତୁର୍ଥ ପଞ୍ଚମ ପାଇଁ ସାହିତ୍ୟ କୁସୁମ ଏବଂ ଷଷ୍ଠ, ସପ୍ତମ ପାଇଁ ସାହିତ୍ୟ ପ୍ରସଙ୍ଗ ବହୁକାଳ ଅନୁମୋଦିତ ପାଠ୍ୟ ପୁସ୍ତକ ରୂପେ ଚଳୁଥିଲା। ସେ ସବୁ ସାହିତ୍ୟ କ୍ଷେତ୍ରରେ ଅତ୍ୟନ୍ତ ଉପାଦେୟ ପାଠ୍ୟପୁସ୍ତକ ଥିଲା। ମୋ' ବିଚାରରେ, ଆଜିକାଲି ସେ ସବୁ ଶ୍ରେଣୀ ପାଇଁ ପାଠ୍ୟପୁସ୍ତକରେ ଲିଖିତ ଗଦ୍ୟ ଓ ପଦ୍ୟ ମଧୁବାବୁଙ୍କ ଲେଖା ସହିତ ତୁଳନୀୟ ନୁହେଁ। ମଧୁବାବୁଙ୍କ ଲିଖିତ ସାହିତ୍ୟ କୁସୁମରେ ବିଭିନ୍ନ ଋତୁ ବର୍ଣ୍ଣନା, ପଦ୍ମ କବିତା ଓ ସାହିତ୍ୟ ପ୍ରସଙ୍ଗରେ ଲେଖାଥିବା ଜୀବନ ଚିନ୍ତା ପଦ୍ୟ ଆଜିକାଲି ସୁଦ୍ଧା ଉଚ୍ଚକୋଟିର ସାହିତ୍ୟିକ ଲେଖା। ସେଗୁଡ଼ିକ ଅମର ଲେଖା। ଗଣିତ ଶିକ୍ଷା ପାଇଁ ଆମେ ପ୍ରାଥମିକ ଶ୍ରେଣୀ-ମାନଙ୍କରେ ରତ୍ନାକର ଗର୍ଗବଡ଼ୁଙ୍କ ଲିଖିତ ପାଟିଗଣିତ ଏବଂ ନିମ୍ନମାଧ୍ୟମିକ ଶ୍ରେଣୀରେ ଦାଶରଥି ପାଣିଗ୍ରାହୀଙ୍କ ଗଣିତବନ୍ଧ ପଢ଼ୁଥିଲୁ। ସେତେବେଳକୁ ଅର୍ଥାତ୍ ୧୯୨୫-୩୦ ମସିହା ବେଳକୁ ଓଡ଼ିଆ ଲେଖକମାନେ ପ୍ରାଥମିକ ଏବଂ ନିମ୍ନ ମାଧ୍ୟମିକ ସ୍ତର ପର୍ଯ୍ୟନ୍ତ ପାଠ୍ୟ ପୁସ୍ତକ ଲେଖିପାରୁଥିଲେ। ମାତ୍ର ଉଚ୍ଚ ମାଧ୍ୟମିକ ଶ୍ରେଣୀର ପାଠ୍ୟ ପୁସ୍ତକ ଲେଖିପାରୁ ନ ଥିଲେ। ସେତେବେଳକୁ ସ୍କୁଲ କଲେଜ ଶିକ୍ଷା ଆଧୁନିକ ପ୍ରଣାଳୀରେ ସଙ୍ଗଠିତ ହୋଇଥିବାରୁ ପିଲାମାନେ ସାହିତ୍ୟ, ଗଣିତ, ଇତିହାସ ଓ ଭୂଗୋଳ ପ୍ରଭୃତି ବିଷୟରେ ଅନୁମୋଦିତ ପାଠ୍ୟ ପୁସ୍ତକମାନ ପଢ଼ୁଥିଲେ। ପ୍ରାଥମିକ ସ୍କୁଲ କିମ୍ବା ତାହାର ଉପରସ୍ଥ ସ୍କୁଲମାନଙ୍କରେ ପ୍ରାଚୀନ କବିମାନଙ୍କର କାବ୍ୟ କବିତା ପଢ଼ାହେଉ ନ ଥିଲା କିମ୍ବା ପିଲାମାନେ ସେଗୁଡ଼ିକ ଆବୃତ୍ତି କରୁ ନ ଥିଲେ। ସୁତରାଂ ସେଗୁଡ଼ିକ ବିଷୟରେ ସେମାନଙ୍କର କିଛି ଜ୍ଞାନ ନ ଥିଲା। ପ୍ରାଥମିକ ସ୍କୁଲରେ ପଢ଼ିଲାବେଳେ ଆମେ 'କମଳଲୋଚନ ଶ୍ରୀହରି' କଲା କଳେବର କହ୍ନାଇ, ମନବୋଧ ଚଉତିଶା ପ୍ରଭୃତି ଘରେ ଆବୃତ୍ତି କରୁଥିଲୁ।

ମୋଟ ଉପରେ ୧୯୨୦ ମସିହା ବେଳକୁ ନିମ୍ନପ୍ରାଥମିକ ସ୍ତରରୁ ବିଶ୍ୱବିଦ୍ୟାଳୟସ୍ତର ପର୍ଯ୍ୟନ୍ତ ଶିକ୍ଷାପ୍ରଣାଳୀର ସଙ୍ଗଠନ ସ୍ଥିର ହୋଇ ସାରିଥିଲା ଏବଂ ଭାରତବର୍ଷର ବିଭିନ୍ନ ପ୍ରଦେଶରେ ତାହା ପ୍ରଚଳିତ ଥିଲା। କହିବାକୁ ଗଲେ କେତେକ ଲଘୁ ପରିବର୍ତ୍ତନ ସହ ସେ ସଙ୍ଗଠନ ବର୍ତ୍ତମାନ ସୁଦ୍ଧା ପ୍ରଚଳିତ ଅଛି। ବ୍ରିଟିଶ ରାଜତ୍ୱ ସମୟରେ ଶିକ୍ଷାପ୍ରଣାଳୀର ସଙ୍ଗଠନ ଯାହା ଥିଲା, ସ୍ୱାଧୀନ ଭାରତରେ ବିଗତ ୪୫ ବର୍ଷ ମଧ୍ୟରେ ପ୍ରାୟ ସେହିପରି ଅଛି। ମୂଳତଃ ପ୍ରାଥମିକ, ନିମ୍ନ ମାଧ୍ୟମିକ, ଉଚ୍ଚମାଧ୍ୟମିକ ଏବଂ କଲେଜ ଓ ବିଶ୍ୱବିଦ୍ୟାଳୟ ଶିକ୍ଷାପ୍ରଣାଳୀ ସଙ୍ଗଠନ ୧୮୬୦ ମସିହା ସୁଦ୍ଧା ସ୍ଥିର ହୋଇଯାଇଥିଲା। ସିପାହୀ ବିଦ୍ରୋହ ପରେ ୧୮୫୭ ମସିହାରେ କଲିକତା, ବମ୍ବେ ଓ ମାଡ୍ରାଜ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା। ଛାତ୍ରଛାତ୍ରୀମାନେ ଉଚ୍ଚମାଧ୍ୟମିକ ବିଦ୍ୟାଳୟମାନଙ୍କରେ ବିଶ୍ୱବିଦ୍ୟାଳୟ

ଅନୁମେ ଦଶ ପାଠ୍ୟକ୍ରମ ଶେଷ କରି ବିଶ୍ୱବିଦ୍ୟାଳୟ ପ୍ରବେଶିକା ପରୀକ୍ଷା ଦେଉଥିଲେ । ସେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ କଲେଜମାନଙ୍କରେ ପ୍ରବେଶ କରିବାର ଯୋଗ୍ୟତା ଅର୍ଜନ କରୁଥିଲେ । ତା'ପରେ କଲେଜରେ ପ୍ରଥମ ଦୁଇବର୍ଷ ଫାଷ୍ଟ ଆର୍ଟସ୍ ବା ସାଇନ୍ସ, ପର ଦୁଇବର୍ଷ ବି. ଏ., ବି. ଏସ୍‌ସି. ଏବଂ ତାର ପର ଦୁଇବର୍ଷ ଏମ୍. ଏ., ଏମ୍. ଏସ୍‌ସି. ପଢ଼ିବାର ବ୍ୟବସ୍ଥା ହୋଇଥିଲା । ସୁତରାଂ ୧୮୬୦ ମସିହା ବେଳକୁ ପ୍ରାଥମିକ, ମାଧ୍ୟମିକ ଓ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ କଲେଜ ଶିକ୍ଷାର ବିଭିନ୍ନ ସୋପାନ ଇଂଲଣ୍ଡରେ ପ୍ରଚଳିତ ପଦ୍ଧତିରେ ସ୍ଥିର ହୋଇ ସାରିଥିଲା । ୧୮୬୭ ମସିହା ବେଳକୁ ଓଡ଼ିଶାରେ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାରେ ଗୋଟିଏ ଲେଖାଏଁ ଉଚ୍ଚମାଧ୍ୟମିକ ଜିଲ୍ଲାସ୍କୁଲ ପ୍ରତିଷ୍ଠିତ ହୋଇଥିଲା । ମାତ୍ର କଲେଜଶିକ୍ଷାର ସୁବିଧା ନ ଥିଲା । ଓଡ଼ିଶାର ପିଲାମାନେ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ସେମାନଙ୍କୁ ଏଫ୍. ଏ. ପଢ଼ିବାକୁ କଲିକତା ଯିବାକୁ ହେଉଥିଲା । କଟକରେ ୧୮୬୮ ମସିହାରେ ରେଭେନ୍‌ସା କଲେଜ ପ୍ରତିଷ୍ଠିତ ହୋଇଥିଲା । ୧୯୦୦ ମସିହା ପର୍ଯ୍ୟନ୍ତ କଟକ ପୁରୀ, ବାଲେଶ୍ୱର ଜିଲ୍ଲା ଏବଂ ଓଡ଼ିଶା ଗଡ଼ଜାତ ରାଜ୍ୟମାନଙ୍କର ପ୍ରବେଶିକା ପରୀକ୍ଷା ରେଭେନ୍‌ସା କଲେଜରେ ହେଉଥିଲା । ସମଗ୍ର ରାଜ୍ୟରେ ସେତେବେଳେ ମୁଷ୍ଟିମେୟ ଛାତ୍ର ପ୍ରବେଶିକା ପରୀକ୍ଷା ଦେଉଥିଲେ । ଗୋଦାବରୀଶବାବୁ ଲେଖିଛନ୍ତି ଯେ, ୧୯୦୬ ମସିହାରେ ସେ ପ୍ରବେଶିକା ପରୀକ୍ଷା ଦେବାବେଳେ, ଗଡ଼ଜାତ ସମେତ ସମସ୍ତ ଓଡ଼ିଶାରୁ କେବଳ ୩୦ ଜଣ ପିଲା ପ୍ରବେଶିକା ପରୀକ୍ଷାରେ ପାସ୍ କରିଥିଲେ ଏବଂ ସେଥିରୁ ୨୮ ଜଣ କଲେଜର ପ୍ରଥମବାର୍ଷିକ ଶ୍ରେଣୀରେ ନାମ ଲେଖାଇଥିଲେ ।

୧୯୨୦ ମସିହା ପର୍ଯ୍ୟନ୍ତ ମଧ୍ୟ ଅତି ଅଳ୍ପସଂଖ୍ୟକ ଓଡ଼ିଆ ପିଲା ଉଚ୍ଚ ଇଂରାଜୀ ବିଦ୍ୟାଳୟ ମାନଙ୍କରେ ପଢ଼ି ପ୍ରବେଶିକା ବା ମାଟ୍ରିକୁଲେସନ ପରୀକ୍ଷା ଦେଉଥିଲେ । ୧୯୦୬ ମସିହାରେ ଯେଉଁ ୩୦ ଜଣ ପିଲା ପାସ୍ କରିଥିବା କଥା ଗୋଦାବରୀଶବାବୁ ଲେଖିଛନ୍ତି, ତାଙ୍କ ମଧ୍ୟରେ ବହୁ ବଙ୍ଗାଳୀ ପିଲା ଥିଲେ । ସେତେବେଳେ କଲେଜରେ ସବୁ ଅଧ୍ୟାପକ ବଙ୍ଗାଳୀ ଥିଲେ ଏବଂ ଉଚ୍ଚ ଇଂରାଜୀ ବିଦ୍ୟାଳୟମାନଙ୍କରେ ମଧ୍ୟ ଅଧିକାଂଶ ଶିକ୍ଷକ ବଙ୍ଗାଳୀ ଥିଲେ । ଏପରିକି ୧୯୦୧ ମସିହାରେ ପରିଜା ବାଲିକୁଦା ମାଇନର ସ୍କୁଲରେ ନାମ ଲେଖାଇଲା ବେଳକୁ, ସେ ସ୍କୁଲର ହେଡ଼ମାଷ୍ଟର ରାଖାଲ ଚନ୍ଦ୍ର ସେନ୍ ଓ ହେଡ୍‌ପଣ୍ଡିତ ନନ୍ଦକିଶୋର ସେନ୍‌ଗୁପ୍ତ ବଙ୍ଗାଳୀ ଥିଲେ । ଓଡ଼ିଆମାନେ ଇଂରାଜୀ ପାଠ ପଢ଼ି ନ ଥିବାରୁ ମାଇନର ସ୍କୁଲ ପର୍ଯ୍ୟନ୍ତ ସବୁସ୍କୁଲରେ ଅଧିକାଂଶ ଶିକ୍ଷକ ବଙ୍ଗାଳୀ ଥିଲେ । ଓଡ଼ିଶାରେ ଇଂରାଜୀ ଶିକ୍ଷାର ପ୍ରସାର ଅତି ସୀମିତ ଥିଲା । ୧୮୦୪—୫ ସୁଦ୍ଧା ପ୍ରତି

ସବ୍‌ଡିଭିଜନରେ ପ୍ରାୟ ଗୋଟିଏ ଦୁଇଟି ମଧ୍ୟଇଂରାଜୀ ସ୍କୁଲ ଏବଂ ଜିଲ୍ଲା ମହକୁମାରେ ଗୋଟିଏ ମାତ୍ର ଉଚ୍ଚ ମାଧ୍ୟମିକ ସ୍କୁଲ ଥିଲା । ସମଗ୍ର ଓଡ଼ିଆ ଡିଭିଜନ ପାଇଁ କଟକରେ ରେଭେନ୍‌ସା କଲେଜ ଏକମାତ୍ର କଲେଜ ଥିଲା । ଯେଉଁଥିରେ ବି.ଏସ୍‌ସି କିମ୍ବା ଏମ୍ ଏ. ପଢ଼ିବାର ସୁବିଧା ନଥିଲା । ସେସବୁ ପଢ଼ିବା ପାଇଁ ଓଡ଼ିଆ ପିଲାଙ୍କୁ କଲିକତାକୁ ଯିବାକୁ ପଡ଼ୁଥିଲା । ବିଶ୍ୱବିଦ୍ୟାଳୟ କଲିକତାରେ ଥିବାରୁ ସାଧାରଣ ପିଲାମାନଙ୍କର ବିଶ୍ୱବିଦ୍ୟାଳୟ ସହିତ ଅତି କ୍ଷୀଣ ସମ୍ପର୍କ ଥିଲା ।

୧୯୧୨ ମସିହାରେ ବିହାର-ଓଡ଼ିଶା ପ୍ରଦେଶ ଗଠିତ ହେଲା । ଓଡ଼ିଶା ଡିଭିଜନ ବଙ୍ଗ ପ୍ରଦେଶରୁ ପୃଥକ ହୋଇ ବିହାର-ଓଡ଼ିଶା ପ୍ରଦେଶରେ ରହିଲା । ପ୍ରଥମ ବିଶ୍ୱଯୁଦ୍ଧ ସମୟ ୧୯୧୭ ମସିହାରେ ପାଟନା ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା ଏବଂ ଓଡ଼ିଶାର ସ୍କୁଲ କଲେଜ ସବୁ ତାହା ଅଧୀନରେ ରହିଲା । ତାହା ଦ୍ୱାରା ଉଚ୍ଚଶିକ୍ଷା ପ୍ରସାରର କୌଣସି ବିଶେଷ ସୁବିଧା ହୋଇ ନ ଥିଲା । ଗଡ଼ଜାତ ସମେତ ଓଡ଼ିଶା ଡିଭିଜନର ପୂର୍ବପରି ଗୋଟିଏ ମାତ୍ର କଲେଜ ଥିଲା ଏବଂ ଉଚ୍ଚମାଧ୍ୟମିକ ସ୍କୁଲ ସଂଖ୍ୟା ଅତି କମ୍ ଥିଲା । ୧୯୨୦ ମସିହାରୁ ୧୯୪୦ ମସିହା ମଧ୍ୟରେ ରାଜନୈତିକ ଘନଘଟା ଭିତରେ ମଧ୍ୟଇଂରାଜୀ ଓ ଉଚ୍ଚଇଂରାଜୀ ସ୍କୁଲ ସଂଖ୍ୟା ବୃଦ୍ଧି କରି ପିଲାମାନଙ୍କ ପାଇଁ ଶିକ୍ଷାସୁବିଧା କରିବାପାଇଁ ଲୋକମାନଙ୍କ ମଧ୍ୟରେ ବଳବତୀ ଇଚ୍ଛା ଜାଗ୍ରତ ହୋଇଥିଲା । କଲେଜ ସ୍ଥାପନ କରିବା ସାଧାରଣ ଲୋକଙ୍କ ଚିନ୍ତାର ବାହାରେ ଥିଲା । ହାଇସ୍କୁଲଟିଏ କରିବା ମଧ୍ୟ ବ୍ୟୟ-ବହୁଳ ଏବଂ କଷ୍ଟକର ବ୍ୟାପାର ଥିଲା । ଲୋକମାନେ ନିଜ ଉଦ୍ୟମରେ ଗ୍ରାମାଞ୍ଚଳରେ ମଧ୍ୟଇଂରାଜୀ ବିଦ୍ୟାଳୟମାନ ପ୍ରତିଷ୍ଠା କରିବାକୁ ଚେଷ୍ଟା କଲେ । ଏହିପରି ଉଦ୍ୟମର ୧୯୦୯ ମସିହାରେ ସତ୍ୟବାଦୀ ସ୍କୁଲ ପ୍ରତିଷ୍ଠା ଦିନଠାରୁ ସୂତ୍ରପାତ ହୋଇଥିଲା । ୧୯୨୦ ମସିହାରୁ ୧୯୩୦ ମସିହା ମଧ୍ୟରେ ସବୁ ସବ୍‌ଡିଭିଜନ ମହକୁମାରେ ଲୋକମାନଙ୍କ ଉଦ୍ୟମରେ ଗୋଟିଏ ହାଇସ୍କୁଲମାନ ପ୍ରତିଷ୍ଠିତ ହୋଇସାରିଥିଲା ଏବଂ ଗ୍ରାମାଞ୍ଚଳରେ ଅନେକ ସ୍ଥାନରେ ମଧ୍ୟଇଂରାଜୀ ବିଦ୍ୟାଳୟମାନ ପ୍ରତିଷ୍ଠା କରାଯାଇଥିଲା । ୧୯୩୦ ମସିହା ପରେ ଗ୍ରାମାଞ୍ଚଳରେ ସ୍କୁଲ ସ୍ଥାପନ କରିବାପାଇଁ ଲୋକମାନଙ୍କର ଉତ୍ସାହ ଓ ଉଦ୍ୟମ ଅଧିକରୁ ଅଧିକ ହୋଇଥିଲା । ସେ ସମୟରେ ଅନେକ ମଧ୍ୟଇଂରାଜୀ ସ୍କୁଲ ଉଚ୍ଚଇଂରାଜୀ ସ୍କୁଲରେ ପରିଣତ ହୋଇଥିଲା ଏବଂ ନୂତନ ମଧ୍ୟଇଂରାଜୀ ବିଦ୍ୟାଳୟମାନ ପ୍ରତିଷ୍ଠିତ ହୋଇଥିଲା ।

୧୯୨୮ ମସିହା ଶେଷରେ ମୁଁ ଉଚ୍ଚପ୍ରାଥମିକ ଶିକ୍ଷା ଶେଷକଲାବେଳକୁ ଆମ ଗାଁରେ ମଧ୍ୟଇଂରାଜୀ ବିଦ୍ୟାଳୟ ନଥିଲା । ଆମ ଗାଁଠାରୁ ଛଅ ମାଇଲ

ଦୂର ବାଲିକୁଦା ମାଇନର ସ୍କୁଲ ଏବଂ ଚାରିମାଇଲ ଦୂର ଜଗତ୍‌ସିଂହପୁର ମାଇନର ସ୍କୁଲ ଦୁଇଟି ପୁରୁଣା ସ୍କୁଲ ଥିଲେ । ସେତେବେଳକୁ ଆମ ଅଞ୍ଚଳରେ ପ୍ରତି ଦଶ ବାର ମାଇଲ ଅନ୍ତରରେ ଗୋଟିଏ ଲେଖାଏଁ ଘରୋଇ ମାଇନର ସ୍କୁଲ ପ୍ରତିଷ୍ଠିତ ହୋଇଥିଲା । ଆମ ଗାଁଠାରୁ ୩୨ ମାଇଲ ଦୂର କଟକ ସହରରେ ପାଞ୍ଚ ଗୋଟି ହାଇସ୍କୁଲ ଥିଲା ଏବଂ ୨୦ ମାଇଲ ଦୂର କୁଜଙ୍ଗରେ ଗୋଟିଏ ହାଇସ୍କୁଲ ଥିଲା । କଟକ ଜିଲ୍ଲାର ପ୍ରତି ସବ୍‌ଡିଭିଜନାଲ ମହକୁମାରେ ଗୋଟିଏ ହାଇସ୍କୁଲ ଏବଂ ଥାନା ମହକୁମାରେ ଗୋଟିଏ ଲେଖଏଁ ମାଇନର ସ୍କୁଲ ଥିଲା । ପ୍ରତି ଜିଲ୍ଲା ମହକୁମାରେ ଗୋଟିଏ ଲେଖାଏଁ ସରକାରୀ ହାଇସ୍କୁଲ ଥିଲା । ଅନ୍ୟ ସ୍କୁଲ ସବୁ ଘରୋଇ ସ୍କୁଲ ଥିଲା । କଟକ ଜିଲ୍ଲା ଓ ଆମ ଅଞ୍ଚଳ ତୁଳନାରେ ଅନ୍ୟ ଜିଲ୍ଲାମାନଙ୍କରେ କମ୍ ଶିକ୍ଷା ସୁବିଧା ଥିଲା । ଆମ ଅଞ୍ଚଳରେ ପ୍ରତି ଦଶ ବାର ମାଇଲ ଦୂରରେ ମାଇନର ସ୍କୁଲ ଥିଲେ ସୁଦ୍ଧା ଅତି ଅଳ୍ପସଂଖ୍ୟକ ପିଲା ପ୍ରାଥମିକ ଶିକ୍ଷା ଶେଷ କରି ମାଇନର ସ୍କୁଲ ମାନଙ୍କରେ ପଢ଼ିବାକୁ ଯାଉଥିଲେ । ଛାତ୍ରାବାସରେ ମାଇନର ସ୍କୁଲରେ ପଢ଼ିବା ପିଲା ପିଚ୍ଛା ପ୍ରାୟ ପାଞ୍ଚଟଙ୍କା ଖର୍ଚ୍ଚ ହେଉଥିଲା । ଗାଁମାନଙ୍କରେ ଖୁବ୍ କମ୍ ପରିବାର ସେ ଖର୍ଚ୍ଚ ବହନ କରିବାକୁ ସମର୍ଥ ଥିଲେ । ସୁତରାଂ ଗାଁମାନଙ୍କରେ ଅଧିକାଂଶ ପିଲା ପ୍ରାଇମେରୀ ସ୍କୁଲରେ ଅଧା ପାଠ ପଢ଼ି କିମ୍ବା ପ୍ରାଇମେରୀ ଶିକ୍ଷା ଶେଷ କରି ଗାଁରେ ରହିଯାଉଥିଲେ । ଆମ ଗାଁରୁ ଉଚ୍ଚ ଜାତିର ସ୍ୱଚ୍ଛଳ ପରିବାର-ମାନଙ୍କରୁ ଅତି ଅଳ୍ପ ପିଲା ମାଇନର ପଢ଼ିବାକୁ ଯାଉଥିଲେ । ଛାତ୍ରବୃତ୍ତି ନ ପାଇଲେ କିମ୍ବା ଧନୀ ପରିବାରର ମେଧାବୀ ପିଲା ନ ହେଲେ, କଟକରେ ହାଇସ୍କୁଲରେ ପଢ଼ିବାକୁ କେହି ଯାଉ ନ ଥିଲେ । ଏହା ହେଉଛି ୧୯୩୦ ଓ ୧୯୩୫ ମସିହା ମଧ୍ୟସ୍ଥ ସମୟର କଟକ ଜିଲ୍ଲାର କେନାଲ ଜଳସେଚିତ ଅଞ୍ଚଳର ଅବସ୍ଥା । ମୁଁ ୧୯୨୯ ମସିହାରେ ଆମ ଗାଁଠାରୁ ବାର ମାଇଲ ଦୂର ପଞ୍ଚପଲ୍ଲୀ ଗ୍ରାମରେ ଥିବା ମାଇନର ସ୍କୁଲରେ ପଞ୍ଚମଶ୍ରେଣୀରେ ନାମ ଲେଖାଇଥିଲି ଏବଂ ସେଠାରୁ ମାଇନର କେନ୍ଦ୍ର ପରୀକ୍ଷାରେ ପାସ୍ କରି ୧୯୩୨ ମସିହା ଜାନୁଆରୀ ମାସରେ କଟକ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଥିଲି ।

କଟକ ସହରରେ ସେତେବେଳେ ପାଞ୍ଚଗୋଟି ହାଇସ୍କୁଲ ଥିଲା । ସରକାରୀ କଲେଜିଏଟ୍ ସ୍କୁଲ ବ୍ୟତୀତ ଭିକ୍ଟୋରିଆ (ବର୍ତ୍ତମାନ ନାମ ଭକ୍ତମଧୁ ବିଦ୍ୟାପୀଠ), ପ୍ୟାରୀମୋହନ ଏକାଡେମୀ, ମିସନ୍ (ବର୍ତ୍ତମାନ ନାମ ଖ୍ରୀଷ୍ଟ କଲେଜିଏଟ୍) ମୁସ୍‌ଲିମ୍ ସେମିନାରୀ ନାମରେ ଚାରିଗୋଟି ଘରୋଇ ହାଇସ୍କୁଲ ଥିଲା । କଲେଜିଏଟ୍ ସ୍କୁଲରେ ଚତୁର୍ଥ ଶ୍ରେଣୀଠାରୁ ଏକାଦଶ ଶ୍ରେଣୀ ଆଠ ଗୋଟି ଶ୍ରେଣୀରେ ପ୍ରାୟ ଛଅଶହ ଚାରିଶହ ପିଲା ପଢ଼ିବାର ବ୍ୟବସ୍ଥା ଥିଲା । ଅନ୍ୟ ସ୍କୁଲମାନଙ୍କରେ ସେହିପରି

ଆଠଗୋଟି ଶ୍ରେଣୀରେ ପ୍ରାୟ ଘୃଶହ ଲେଖାଏଁ ପିଲ ପଢ଼ିବାର ବ୍ୟବସ୍ଥା ଥିଲ । କଟକ ଜିଲ୍ଲାର କେନ୍ଦ୍ରାପଡ଼ା, ଯାଜପୁର, ବାଙ୍କି ଓ କୁଜଙ୍ଗଠାରେ ହାଇସ୍କୁଲ ଥିଲ । ଅନ୍ୟ ଆଡ଼େ କେବଳ ମାଇନର ସ୍କୁଲ ଥିଲ । ୧୯୦୪—୧୯୦୬ ମସିହା ସମୟରେ, ଯେତେବେଳେ ନୀଳକଣ୍ଠ ଦାସ ଓ ଗୋଦାବରୀଶ ମିଶ୍ର ପ୍ରଭୃତି ପୁରୀ ଜିଲ୍ଲାସ୍କୁଲରେ ପଢ଼ୁଥିଲେ, ସେତେବେଳେ ଜିଲ୍ଲାସ୍କୁଲମାନଙ୍କରେ ପ୍ରାୟ ସବୁ ଶିକ୍ଷକ ବଙ୍ଗାଳୀ ଥିଲେ ଏବଂ ପିଲମାନଙ୍କ ମଧ୍ୟରେ ବହୁ ପିଲ ବଙ୍ଗାଳି ଥିଲେ । କିନ୍ତୁ ପଚଶ ବର୍ଷ ପରେ ଅବସ୍ଥା ଅନେକ ଗୁଣରେ ବଦଳିଯାଇଥିଲ । ୧୯୩୨ ମସିହାରେ ଅମେ ହାଇସ୍କୁଲରେ ନାମ ଲେଖାଇଲବେଳକୁ ସ୍କୁଲର ହେଡ୍‌ମାଷ୍ଟର ଓଡ଼ିଆ ଥିଲେ ଏବଂ ସ୍କୁଲରେ ଅଧାରୁ କମ୍ ଶିକ୍ଷକ ଓଡ଼ିଆ ଥିଲେ । ଉପର ଶ୍ରେଣୀ-ମାନଙ୍କରେ ଇଂରାଜୀ, ଗଣିତ, ଇତିହାସ, ଭୂଗୋଳ ପ୍ରଭୃତି ବିଷୟ ପଢ଼ାଉଥିବା ବରିଷ୍ଠ ଶିକ୍ଷକମାନେ ବଙ୍ଗାଳୀ ଥିଲେ, ଓଡ଼ିଆ ସାହିତ୍ୟ, ସଂସ୍କୃତ ଶିକ୍ଷକ ଓ ତଳ ଶ୍ରେଣୀମାନଙ୍କରେ ପଢ଼ାଉଥିବା ଶିକ୍ଷକମାନେ ଓଡ଼ିଆ ଥିଲେ । ପିଲମାନଙ୍କ ମଧ୍ୟରେ ମଧ୍ୟ କ୍ଲାସର ଚାଳିଶ ଜଣଙ୍କ ମଧ୍ୟରୁ ଦଶ ବାର ଜଣ ବଙ୍ଗାଳି ପିଲ ଥିଲେ । ମଫସଲ ମାଇନର ସ୍କୁଲମାନଙ୍କରୁ ଆସିଥିବା ଓଡ଼ିଆ ପିଲମାନେ ଭଲ ପଢ଼ି ପ୍ରାୟ ସବୁ ଶ୍ରେଣୀରେ ପ୍ରଥମ ଦଶ ସ୍ଥାନ ଅଧିକାର କରୁଥିଲେ । ସେମାନଙ୍କ ସଙ୍ଗରେ ବଙ୍ଗାଳି ପିଲମାନେ ପ୍ରତିଯୋଗିତା କରିପାରୁ ନଥିଲେ । ଉପର ଶ୍ରେଣୀ-ମାନଙ୍କରେ ପଢ଼ାଯାଉଥିବା ଗଣିତ, ବୀଜଗଣିତ, ଜ୍ୟାମିତି, ତ୍ରିକୋଣମିତି, ଭୂଗୋଳ ଇତିହାସ, ମେନସୁରେସନ୍ ପ୍ରଭୃତି ସମସ୍ତ ବିଷୟରେ ବଙ୍ଗାଳି ଲେଖକମାନେ ଇଂରାଜୀରେ ଲେଖିଥିବା ପାଠ୍ୟପୁସ୍ତକମାନ ପଢ଼ାଯାଉଥିଲ । ବସ୍ତୁତଃ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ପ୍ରାୟ ବାର ତେର ବର୍ଷ ପର ସମୟ ପର୍ଯ୍ୟନ୍ତ ମଧ୍ୟ ଓଡ଼ିଆମାନେ ମାଟ୍ରିକୁଲେସନ ସ୍ତରର ବିଭିନ୍ନ ବିଷୟରେ ପାଠ୍ୟପୁସ୍ତକ ଲେଖିପାରୁ ନଥିଲେ ।

ପ୍ରବେଶିକା ପରୀକ୍ଷାପର ଉଚ୍ଚଶିକ୍ଷାପାଇଁ ରେଭେନ୍‌ସା କଲେଜ ଓଡ଼ିଆ ଭାଷୀଜନର ଏକମାତ୍ର କଲେଜ ଥିଲ । ୧୯୩୬ ମସିହା ପର୍ଯ୍ୟନ୍ତ ଗଞ୍ଜାମ ଓ କୋରାପୁଟ ଜିଲ୍ଲା ମାନ୍ଦ୍ରାଜ ପ୍ରେସିଡେନ୍‌ସି ଅଧୀନରେ ଥିବାରୁ, ପାର୍ଲାଖେମୁଣ୍ଡି ଏବଂ ଖଲିକୋଟ କଲେଜ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲ । ରେଭେନ୍‌ସା କଲେଜ ୧୮୬୮ ମସିହାରେ ରେଭେନ୍‌ସା କଲେଜିଏଟ୍ ସ୍କୁଲ ଗୃହରେ ଆରମ୍ଭ ହୋଇଥିଲ । ସେ ବର୍ଷ ଜାନୁଆରୀମାସରେ ଏଫ୍ ଏ. କ୍ଲାସରେ ପ୍ରଥମେ ନାମ ଲେଖା ହୋଇଥିଲ । ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ପ୍ରଭୃତିଙ୍କ ଲେଖାରୁ ଜଣାଯାଏ ଯେ ୧୯୧୦ ମସିହା ପର୍ଯ୍ୟନ୍ତ ଅତି ଅଳ୍ପସଂଖ୍ୟକ ଛାତ୍ର କଲେଜରେ

ନାମ ଲେଖାଉଥିଲେ । କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ୧୯୧୦।୧୨ ମସିହା ପର୍ଯ୍ୟନ୍ତ ଗଡ଼ଜାତ ରାଜ୍ୟ ସମେତ ଓଡ଼ିଶାରୁ ଶହେ ଦୁଇଶହରୁ ଅଧିକ ପିଲା ପ୍ରବେଶିକା ପରୀକ୍ଷା ଦେଉ ନ ଥିଲେ । ରେଭେନ୍ସା କଲେଜରେ ବି ଏସ୍‌ସି ଓ ଏମ୍.ଏ. ପ୍ରଭୃତି ଡିଗ୍ରୀପାଇଁ ପଢ଼ିବାର ସୁବିଧା ନ ଥିଲା । ସେଥିପାଇଁ ଛାତ୍ରମାନଙ୍କୁ କଲିକତା ଯିବାକୁ ପଡ଼ୁଥିଲା । କଲେଜ ଓ ସ୍କୁଲ'ହଷ୍ଟେଲ ମିଶି କରି ଆଜିକାଲିର କଲେଜିଏଟ୍ ସ୍କୁଲ ଛାତ୍ରାବାସ ଗୃହରେ ଥିଲା । ସେହି ଛାତ୍ରାବାସରେ ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର, ନୀଳକଣ୍ଠ ଦାସ, ଭରତ ନାୟକ ପ୍ରଭୃତି ସେ ସମୟର ଓଡ଼ିଆ ଛାତ୍ରମାନେ ରହି କଲେଜରେ ପଢ଼ୁଥିଲେ । ରେଭେନ୍ସା କଲେଜିଏଟ୍ ସ୍କୁଲ ହତାରେ କଲେଜ ୧୮୬୮ରୁ ୧୯୨୧ ମସିହା ପର୍ଯ୍ୟନ୍ତ ପ୍ରାୟ ୫୩ ବର୍ଷ କାର୍ଯ୍ୟ କରିଥିଲା ।

ପ୍ରଥମ ମହାଯୁଦ୍ଧ ପରେ, କଟକର ଚୌଧୁରୀ ଆଗଞ୍ଜଠାରେ କଲେଜ ପାଇଁ ନୂଆ ଘର ତିଆରି ହେଲା ଏବଂ ୧୯୨୧ ମସିହାରେ ରେଭେନ୍ସା କଲେଜ ଚୌଧୁରୀ ଆଗଞ୍ଜ ସ୍ଥିତ ନୂତନ ଗୃହକୁ ଉଠିଆସିଲା । ନୂତନ କଲେଜ ଗୃହରେ ପର୍ଯ୍ୟାୟକ୍ରମେ ବି.ଏସ୍‌ସି., ଇଂରାଜୀରେ ଏମ୍.ଏ. ଶ୍ରେଣୀମାନ ଏବଂ ଆଇନ ଶ୍ରେଣୀ ପ୍ରଭୃତି ଖୋଲିଲା । ଛାତ୍ରାବାସମାନଙ୍କର ମେସ୍ ସବୁ ବର୍ତ୍ତମାନ ରହିଥିବା ପଦ୍ଧତିରେ ସଂଗଠିତ ହେଲା । ୧୯୩୬ ମସିହା ଜୁଲାଇମାସରେ ଆମେ ଆଇ.ଏ. କ୍ଲାସରେ ନାମ ଲେଖାଇଲାବେଳକୁ କଲେଜ ନୂତନ ଗୃହରେ ମାତ୍ର ୧୫ ବର୍ଷ କାର୍ଯ୍ୟ କରିଥିଲା । ଆମେ ପଢ଼ିଲାବେଳେ କଲେଜରେ ସର୍ବମୋଟ ପ୍ରାୟ ୫୦୦ ଛାତ୍ରଛାତ୍ରୀ ଥିଲେ । ମାତ୍ର କଲେଜ ଓ ଛାତ୍ରାବାସସବୁ ସୁସଂଗଠିତ ହୋଇଥିଲା ଏବଂ ଛାତ୍ର-ମାନେ ଶୃଙ୍ଖଳିତ ଜୀବନ ଯାପନ କରୁଥିଲେ । ସେତେବେଳେ କଲେଜରେ ବି. ଏ. ବି.ଏସ୍‌ସି. ସ୍ତରରେ ସବୁ ବିଷୟରେ ଅନର୍ସ କ୍ଲାସ ଥିଲା, କେବଳ ଇଂରାଜୀରେ ଏମ୍. ଏ. କ୍ଲାସ ଥିଲା । ଲ କଲେଜ ସେହି କଲେଜରେ ହେଉଥିଲା ଏବଂ ସେଥିରେ ଏକଶହରୁ ଅଧିକ ପିଲା ନଥିଲେ । ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ନଥିଲା । ଓଡ଼ିଶାର ହାଇସ୍କୁଲ ଓ କଲେଜ ସବୁ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା । ଇଂରାଜୀ ବ୍ୟତୀତ ଅନ୍ୟ କଳା ଓ ବିଜ୍ଞାନ ବିଷୟରେ ଏମ୍.ଏ. ପଢ଼ିବାପାଇଁ ସାଧାରଣତଃ ପିଲାମାନେ ପାଟନା ଯାଉଥିଲେ । କେତେକ ପିଲା ମଧ୍ୟ କଲିକତା, ଆଲ୍ଲାହାବାଦ ଓ ବନାରସ ବିଶ୍ୱବିଦ୍ୟାଳୟମାନଙ୍କୁ ଯାଉଥିଲେ । ଇଞ୍ଜିନିଅରିଂ ଓ ମେଡିକାଲ କଲେଜମାନଙ୍କରେ ପଢ଼ିବାପାଇଁ ଛାତ୍ରମାନେ ପାଟନା ଯାଉଥିଲେ । କୃଷି, ପଶୁଚିକିତ୍ସା ପ୍ରଭୃତି ବିଷୟରେ ପଢ଼ିବାପାଇଁ ପିଲାମାନେ ଭାରତର ଅନ୍ୟ ପ୍ରଦେଶ-ମାନଙ୍କରେ ବିଭିନ୍ନ ସହରମାନଙ୍କରେ ଥିବା କଲେଜମାନଙ୍କୁ ଯାଉଥିଲେ । ଏ

ସମସ୍ତ ବିଷୟରେ ବାହାର ପ୍ରଦେଶମାନଙ୍କୁ ପଢ଼ିବାକୁ ଯାଉଥିବା ପିଲାମାନଙ୍କର ସଂଖ୍ୟା ଅତି ଅଳ୍ପ ଥିଲା ।

ମୁଁ ୧୯୩୬ ମସିହା ଜୁଲାଇ ମାସରୁ ୧୯୪୦ ମସିହା ଫେବୃଆରି ମାସରେ ବି.ଏ. ପରୀକ୍ଷା ଶେଷ ପର୍ଯ୍ୟନ୍ତ ଚାରିବର୍ଷ ରେଭେନ୍‌ସା କଲେଜରେ ଆଇ.ଏ. ଓ ବି.ଏ. ପଢ଼ିଥିଲି । ୧୯୩୬ ମସିହା ଜୁଲାଇ ମାସରୁ ପୂଜାଛୁଟି ଶେଷ ପର୍ଯ୍ୟନ୍ତ ହଷ୍ଟେଲରେ ନ ଥିଲି । ସେ ବର୍ଷ ଅକ୍ଟୋବର ମାସରୁ ୧୯୪୦ ମସିହା ଫେବୃଆରି ମାସରେ ବି.ଏ. ପରୀକ୍ଷା ଶେଷଯାଏ କଲେଜର ପୂର୍ବ ଛାତ୍ରାବାସରେ ରହିଥିଲି । ଆମେ ଆଇ.ଏ. କ୍ଲାସରେ ନାମ ଲେଖାଇଲାବେଳକୁ ଶ୍ୟାମଚନ୍ଦ୍ର ତ୍ରିପାଠୀ ପ୍ରିନ୍‌ସିପାଲ ଥିଲେ, ପ୍ରାଣକୃଷ୍ଣ ପରିଜା ପଶ୍ଚିମ ଛାତ୍ରାବାସରେ ଏବଂ ଇଂରାଜୀ ଅଧ୍ୟାପକ କେ.ପି. ସିହ୍ନା ପୂର୍ବ ଛାତ୍ରାବାସରେ ଓ୍ୟାର୍ଡେନ ଥିଲେ । ଶ୍ୟାମଚନ୍ଦ୍ର ତ୍ରିପାଠୀ ଏବଂ ପ୍ରାଣକୃଷ୍ଣ ପରିଜା ବିଲାତରୁ ଫେରି ରେଭେନ୍‌ସା କଲେଜରେ ପ୍ରଫେସର ହେବା ଦିନଠାରୁ ଓଡ଼ିଶାରେ ସମସ୍ତେ ସେମାନଙ୍କୁ ତ୍ରିପାଠୀ ସାହେବ ଓ ପରିଜାସାହେବ ବୋଲି କହୁଥିଲେ । ସେ ଦୁଇଜଣ ବ୍ୟକ୍ତି ତାଙ୍କ ଜୀବଦ୍ଦଶା ମଧ୍ୟରେ ଓଡ଼ିଶାର ଶିକ୍ଷା ବିଭାଗର କର୍ଣ୍ଣଧାର ଥିଲେ । ତ୍ରିପାଠୀ ସାହେବ ରେଭେନ୍‌ସା କଲେଜର ପ୍ରଥମ ଓଡ଼ିଆ ପ୍ରିନ୍‌ସିପାଲ ଏବଂ ପରିଜା ସାହେବ ଦ୍ୱିତୀୟ ଓଡ଼ିଆ ପ୍ରିନ୍‌ସିପାଲ ଥିଲେ । ତା ପୂର୍ବରୁ ସାଧାରଣତଃ ଗୋରା ସାହେବମାନେ କଲେଜର ପ୍ରିନ୍‌ସିପାଲ ଥିଲେ ।

କଲେଜରେ ଆମେ ଯୋଗଦେବାର ପ୍ରଥମ ବର୍ଷରେ ତ୍ରିପାଠୀ ସାହେବ ଛଅମାସ ପାଇଁ ମୟୂରଭଞ୍ଜ ମହାରାଜାଙ୍କ ସହିତ ସମ୍ରାଟ ଅଷ୍ଟମ ଏଡ଼ୱାର୍ଡଙ୍କ ଅଭିଷେକ ଉତ୍ସବରେ ଯୋଗ ଦେବାପାଇଁ ବିଲାତ ଯାଇଥିଲେ । ତାଙ୍କ ସ୍ଥାନରେ ପରିଜା ପ୍ରିନ୍‌ସିପାଲ ହୋଇଥିଲେ । ତ୍ରିପାଠୀ ବିଲାତରୁ ଫେରି ପୁଣି ପ୍ରିନ୍‌ସିପାଲ ହେଲେ ଏବଂ ପରିଜା ପୂର୍ବପରି ବଟାନି ପ୍ରଫେସର ଓ ପଶ୍ଚିମ ଛାତ୍ରାବାସର ଓ୍ୱାର୍ଡେନ ରହିଲେ । ୧୯୩୮ ମସିହାରେ ଆମେ ତୃତୀୟ ବାର୍ଷିକ ଶ୍ରେଣୀରେ ପଢୁଥିବାବେଳେ ତ୍ରିପାଠୀ ସାହେବ ଓଡ଼ିଶାର ଡି.ପି.ଆଇ. ହୋଇଗଲେ । ସେ ହେଉଛନ୍ତି ଓଡ଼ିଶାର ପ୍ରଥମ ଓଡ଼ିଆ ଡି.ପି.ଆଇ । ତ୍ରିପାଠୀ ଡି.ପି.ଆଇ ହେଲାପରେ ପରିଜା କଲେଜର ସ୍ଥାୟୀ ପ୍ରିନ୍‌ସିପାଲ ହେଲେ । ୧୯୪୦ ମସିହାରେ ଆମ୍ଭେମାନେ କଲେଜ ଛାଡ଼ିବା ପର୍ଯ୍ୟନ୍ତ ପରିଜା ପ୍ରିନ୍‌ସିପାଲ୍ ଓ ତ୍ରିପାଠୀ ଡି.ପି.ଆଇ ଥିଲେ । ବସ୍ତୁତଃ ସେହି ପ୍ରିନ୍‌ସିପାଲ୍ ହୋଇ ପରିଜା ୧୯୪୫ ମସିହାରେ ଅବସର ଗ୍ରହଣ କଲେ । ଅବସର ପରେ ସେ ଅଳ୍ପକାଳ କୃଷି ବିଭାଗର ଡାଇରେକ୍ଟର ହୋଇଥିଲେ । ସେ ଶିକ୍ଷା ବିଭାଗର ଡାଇରେକ୍ଟର ହୋଇପାରି

ନାହାନ୍ତି । କାରଣ ତ୍ରିପାଠୀ ତାଙ୍କଠାରୁ ବୟସରେ ସାନଥିଲେ ଏବଂ ସେ ୧୯୪୮ ମସିହା ପର୍ଯ୍ୟନ୍ତ ଡି. ପି. ଆଇ. ଥିଲେ । ସେ କାଳର ରେଭେନ୍‌ସା କଲେଜର ପ୍ରିନସିପାଲ ଏବଂ ଡି. ପି. ଆଇ. ଆଜିକାଲିର ପ୍ରିନ୍‌ସିପାଲ ଓ ଡି. ପି. ଆଇଙ୍କ ପରି ଦୁର୍ବଳ ନ ଥିଲେ । ସେମାନେ ପ୍ରବଳ ପ୍ରତାପୀ ଏବଂ ଶିକ୍ଷା ବିଭାଗର ସର୍ବେସର୍ବା ଥିଲେ । ବିଲାତରୁ ଉଚ୍ଚଶିକ୍ଷା ପାଇ ସେମାନେ ଭାରତୀୟ ଶିକ୍ଷା ସେବା (ଆଇ. ଇ. ଏସ୍) ଚାକିରିରେ ଯୋଗ ଦେଇଥିଲେ, ମୋଟା ଦରମା ପାଇ କଲେଜର ବଡ଼ ବଡ଼ ଘରମାନଙ୍କରେ ରହୁଥିଲେ । ଶିକ୍ଷା ବିଭାଗରେ ସେମାନଙ୍କର କଥା ବେଦର ଗାର ଥିଲା ଏବଂ ପୂର୍ବ ବିହାର ଓଡ଼ିଶା ପ୍ରଦେଶର ଶିକ୍ଷା ବିଭାଗରେ ସେମାନଙ୍କର ଖ୍ୟାତି ଓ ଅଖଣ୍ଡ କ୍ଷମତା ଥିଲା । ଛାତ୍ର ଓ ଶିକ୍ଷକମାନେ ସେମାନଙ୍କ ପାଖକୁ ଯିବାକୁ ଭୟ କରୁଥିଲେ । ଆଜିକାଲିର ସ୍ୱାଧୀନ ଭାରତରେ ବହୁ କଲେଜ, ବିଶ୍ୱବିଦ୍ୟାଳୟ, ବହୁ ଉଚ୍ଚଶିକ୍ଷିତ ଅଧ୍ୟାପକ, ଗଣତାନ୍ତ୍ରିକ ଶାସନ ସଙ୍ଗଠନ, ମନ୍ତ୍ରୀ ଓ ବିଧାନସଭା ସଭ୍ୟଙ୍କ କ୍ଷମତା, ଛାତ୍ରସଂଘ, ଛାତ୍ରମାନଙ୍କର ଉଚ୍ଛୃଙ୍ଖଳତା, ସାଧାରଣ ଲୋକମାନଙ୍କର ଚେତନା ପରିପ୍ରେକ୍ଷୀରେ ସେ କ୍ଷମତା ଲୁପ୍ତ ହୋଇଯାଇଛି ।

କଲେଜରେ ଆମର ପ୍ରଥମ ବର୍ଷରେ ପରିଜା ପଶ୍ଚିମ ଛାତ୍ରାବାସରେ ଓ କେ. ପି. ସିହ୍ନା ପୂର୍ବ ଛାତ୍ରାବାସରେ ଓ୍ୱାର୍ଡେନ୍ ଥିଲେ । ପରେ କେ. ପି. ସିହ୍ନା ବିହାରକୁ ବଦଳି ହୋଇଯିବାରୁ ଏବଂ ପରିଜା ପ୍ରିନ୍‌ସିପାଲ ହୋଇଯିବାରୁ ପି. ଏସ୍ ସୁନ୍ଦରମ୍ ପୂର୍ବ ଛାତ୍ରାବାସର ଓ ବଳଭଦ୍ର ପ୍ରସାଦ ପଶ୍ଚିମ ଛାତ୍ରାବାସର ଓ୍ୱାର୍ଡେନ ହୋଇଥିଲେ । ମୋର ମନେ ହେଉଛି ଯେ, ୧୯୩୬ ମସିହାରୁ ୧୯୪୦ ମସିହା ପର୍ଯ୍ୟନ୍ତ ଆମେ ସେ କଲେଜରେ ପଢ଼ୁଥିଲାବେଳେ କଲେଜ ଅତ୍ୟନ୍ତ ସୁସଙ୍ଗଠିତ ଓ ଶୃଙ୍ଖଳିତ ଭାବରେ ଚାଲିଥିଲା । ଶ୍ରେଣୀମାନଙ୍କରେ ପଢ଼ାପଢ଼ି ନିୟମିତ ଭାବରେ ହେଉଥିଲା ଏବଂ ପରୀକ୍ଷାମାନ ନିର୍ଦ୍ଧାରିତ ସମୟରେ ହେଉଥିଲା । ଛାତ୍ର ଓ ଅଧ୍ୟାପକ ସମସ୍ତେ ପ୍ରିନ୍‌ସିପାଲଙ୍କୁ ଭୟ କରୁଥିଲେ । ଛାତ୍ରାବାସମାନଙ୍କରେ ଓ୍ୱାର୍ଡେନ୍ ଓ ସୁପରିଣ୍ଟେଣ୍ଡେଣ୍ଟମାନେ ଛାତ୍ରମାନଙ୍କ ଉପରେ କଡ଼ା ନଜର ରଖିଥିଲେ । ସେମାନେ ପ୍ରତିଦିନ ହଷ୍ଟେଲର ସବୁଆଡ଼େ ବୁଲି ହଷ୍ଟେଲର ପରିଷ୍କାରପରିଚ୍ଛନ୍ନତା ଏବଂ ପଢ଼ିବା ଘଣ୍ଟାମାନଙ୍କରେ ପିଲମାନେ କିପରି ସୁବିଧାରେ ପଢ଼ୁଥିଲେ, ତାହା ଦେଖୁଥିଲେ । ସୁପରିଣ୍ଟେଣ୍ଡେଣ୍ଟମାନେ ପ୍ରତିଦିନ ସକାଳେ ଛାତ୍ରମାନଙ୍କର ଉପସ୍ଥାନ ନେଉଥିଲେ । ମେସ୍‌ଗୁଡ଼ିକ ନିୟମିତ ଭାବରେ ଚାଲିଥିଲା ଏବଂ ଖାଇବା ପିଇବାର ମାନ ଉଚ୍ଚ ଥିଲା । ପିଲମାନେ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ ଓ କଲେଜର ଅଧ୍ୟାପକମାନଙ୍କର କଥା ମାନୁଥିଲେ ଏବଂ ସେମାନଙ୍କୁ ଭୟ କରୁଥିଲେ । ହଷ୍ଟେଲ ଓ ମେସ୍‌ମାନଙ୍କରେ ବହୁ ଚାକିର

ପୂର୍ଣ୍ଣାଙ୍ଗ ଥିଲେ । ସେମାନେ ସମସ୍ତେ ୱାର୍ଡେନ ଓ ସୁପରଣ୍ଟେଣ୍ଡେଣ୍ଟଙ୍କ ଦ୍ଵାରା ନିୟନ୍ତ୍ରିତ ଭାବରେ ନିଜ ନିଜର କାମ କରୁଥିଲେ । ହଷ୍ଟେଲର କମନ୍‌ରୁମ୍, ପ୍ରାର୍ଥନା ହଲ୍, ମେସ୍‌ରୁମ୍ ପ୍ରଭୃତି ବହୁ ସୁବିଧା ଥିଲା । ଆମ୍ଭେମାନେ ହଷ୍ଟେଲରେ ଅତି ସୁଖରେ ଚଳୁଥିଲୁ । ହଷ୍ଟେଲମାନଙ୍କରେ ଜୀବନଧାରଣ ମାନ ଆମ ଘରମାନଙ୍କର ଜୀବନଧାରଣ ମାନଠାରୁ ଢେର୍ ଉଚ୍ଚରେ ଥିଲା ।

ସାହେବମାନେ ମଧ୍ୟ ପ୍ରିନ୍‌ସିପାଲ ଥିବାବେଳେ କଲେଜରେ କେମ୍ବ୍ରିଜ ବିଶ୍ଵବିଦ୍ୟାଳୟ ଧାଡରେ ଅନେକ ଅନ୍ୟ ସୁବିଧା ଥିଲା । କଲେଜ କୋଠା ସମ୍ମୁଖରେ ଗୁଡ଼ିଏ ଟେନିସ୍ କୋର୍ଟ ଥିଲା । ଯୁବକ ପ୍ରଫେସର ଏବଂ କେତେକ ଖେଳପ୍ରିୟ ଧନୀ ଘରର ପିଲା ପ୍ରଫେସରମାନଙ୍କ ସଙ୍ଗେ ଟେନିସ୍ ଖେଳୁଥିଲେ । କଲେଜର କଳା ଓ ବିଜ୍ଞାନ ବିଭାଗମାନଙ୍କର କୋଠାମାନଙ୍କ ମଧ୍ୟରେ, ଲାଇବ୍ରେରୀକୁ ଏବଂ ପୂର୍ବ ଓ ପଶ୍ଚିମ ଛାତ୍ରାବାସକୁ ସିମେଣ୍ଟର ରାସ୍ତା ଥାଇ ସୁପରିଷ୍କୃତ ଘାସପଡ଼ିଆ ଓ ବଗିଚା ଥିଲା । କଲେଜ ହତାର ଶେଷ ଭାଗରେ ଦକ୍ଷିଣ, ପୂର୍ବ ଓ ପଶ୍ଚିମ ଦିଗରେ ପ୍ରଫେସର ମାନଙ୍କର ରହିବାଘର ତିଆରି ହୋଇଥିଲା । କଲେଜର ସାଇନସ୍ ବ୍ଲକ୍ ଓ ପ୍ରଫେସରମାନଙ୍କର ରହିବାଘର ମଧ୍ୟରେ ଗୋଟିଏ ବଡ଼ ଖେଳ ପଡ଼ିଆ ଥିଲା । ସେଥିରେ ପ୍ରତିଦିନ ଫୁଟ୍‌ବଲ୍, ହକି, ବାସ୍କେଟବଲ୍ ପ୍ରଭୃତି ଖେଳ ହେଉଥିଲା । ଆମ ସମୟରେ ଏବଂ ତା' ପୂର୍ବରୁ ତାଳଦଣ୍ଡା କେନାଲରେ ନୌକାଚାଳନା ଶିଖିବା ପାଇଁ କଲେଜରେ ଗୋଟିଏ ବୋଟ୍ କ୍ଲବ ଥିଲା । ସେଥିରେ ଦୁଇ ତିନୋଟି ବୋଟ୍ ଥିଲା । କଲେଜର ଆର୍ଟସ୍ ଓ ସାଇନ୍‌ସ ବ୍ଲକ ମଧ୍ୟରେ କଲେଜ ଲାଇବ୍ରେରୀ ଥିଲା । ସେଥିରେ ଆମ ସମୟରେ ଦାମୋଦର ମିଶ୍ର ନାମରେ ଜଣେ ଅତ୍ୟନ୍ତ କର୍ତ୍ତବ୍ୟନିଷ୍ଠ ଲାଇବ୍ରେରିଆନ୍ ଥିଲେ । କଲେଜରେ ଓ ହଷ୍ଟେଲମାନଙ୍କରେ ବକ୍ତୃତା ଓ ରଚନା ପ୍ରତିଯୋଗିତାମାନ ନିୟମିତ ରୂପେ ହେଉଥିଲା । ପ୍ରତିବର୍ଷ ବିଭିନ୍ନ ହଷ୍ଟେଲରେ ବାର୍ଷିକ ଉତ୍ସବମାନ ହେଉଥିଲା ଏବଂ କଲେଜ କମେମୋରେସନ୍ ଉତ୍ସବ ହେଉଥିଲା । କମେମୋରେସନ୍ ବେଳେ ଦୁଇଦିନ ଆର୍ଟସ୍ ଓ ସାଇନ୍‌ସ ବିଭାଗମାନଙ୍କରେ ପ୍ରଦର୍ଶନୀ ହେଉଥିଲା । କଟକ ସହରର ବହୁଲୋକ ସେଗୁଡ଼ିକୁ ଦେଖିବାକୁ ଆସୁଥିଲେ । କଲେଜରେ ପିଲା ଅଳ୍ପ ଥିଲେ । ପାଣି, ବିଜୁଳି ଆଲୁଅ, ଖାଇବା ମେସ୍, ଖେଳପଡ଼ିଆ, କମନରୁମ୍ ପ୍ରଭୃତି ପିଲାମାନଙ୍କର ଚଳିବାର ସମସ୍ତ ସୁବିଧା ଥିଲା । ମୋଟାମୋଟି କଲେଜଟି ଗୋଟିଏ ଆଦର୍ଶ ଅନୁଷ୍ଠାନ ରୂପେ ଚାଲୁଥିଲା । ୧୯୨୧ ମସିହା ଠାରୁ ୧୯୪୦ ମସିହା ପର୍ଯ୍ୟନ୍ତ ସେ କଲେଜରେ ପଢ଼ିଥିବା ସବୁ ଲୋକଙ୍କର ଏହି ଧାରଣା । ବିହାର-ଓଡ଼ିଶା ପ୍ରଦେଶର ଓଡ଼ିଶା ଡିଭିଜନରେ ସେ କଲେଜ ଏକମାତ୍ର ପ୍ରଥମ ଶ୍ରେଣୀ କଲେଜ ଥିଲା । କଲେଜ କହିଲେ ଲୋକମାନେ ରେଭେନ୍‌ସା କଲେଜ ବୋଲି ବୁଝୁଥିଲେ ।

ବସ୍ତୁତଃ ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଓଡ଼ିଶାରେ ଯେଉଁମାନେ ଉଚ୍ଚଶିକ୍ଷା ପାଇଛନ୍ତି, ସେମାନେ ସେହି ରେଭେନ୍‌ସା କଲେଜରେ ପଢ଼ିଥିଲେ । ପଚାଶ ବର୍ଷ ପରେ ଅଜି ମଧ୍ୟ ରେଭେନ୍‌ସା କଲେଜର ସେ କୋଠାବାଡ଼ି ଅଛି । କେତେକ ଅଧିକ ବିଜ୍ଞାନ ବିଭାଗର ପକ୍କା ଘର ତିଆରି ହୋଇଛି ଏବଂ ଅଧ୍ୟାପକମାନଙ୍କର ବାସଗୃହ ପାଇଁ ଅନେକ ଆକ୍‌ବେଷ୍ଟସ୍‌ର ଘର ତିଆରି ହୋଇଛି । ଯୁଦ୍ଧବେଳେ ଅସ୍ଥାୟୀ ଘର ରୂପେ ସେଗୁଡ଼ିକ ତିଆରି ହୋଇଥିଲା । ପଚାଶ ବର୍ଷ ପରେ ସେଗୁଡ଼ିକ ସ୍ଥାୟୀ ଘର ରୂପେ ରହିଛି । କଲେଜର ମୂଳ ଗୃହଗୁଡ଼ିକ ଯାହାକି ସାତ ଆଠ ଶହ ପିଲାଙ୍କ ପାଇଁ ନିର୍ମିତ ହୋଇଥିଲା, ସେଥିରେ ବର୍ତ୍ତମାନ ପାଞ୍ଚ ହଜାର ପିଲା ପଢ଼ୁଛନ୍ତି । ଘରଗୁଡ଼ିକର ସୁବ୍ୟବସ୍ଥିତ ରକ୍ଷଣାବେକ୍ଷଣ ଅଭାବରୁ କଲେଜ ଭବନ ଶ୍ରୀହୀନ ହୋଇଛି । ପୂର୍ବର ଟେନିସ୍ ଖେଳ ଓ ବୋଟକ୍ଲବ୍ ନାହିଁ କି ଲାଇବ୍ରେରୀ ସମ୍ମୁଖର ଲନ୍‌ର ଶୋଭା ନାହିଁ । ଆଜିକାଲିର କଲେଜ୍ ବାତାବରଣ ଦେଖିଲେ, 'କି ଥିଲା ଏ ରାଜ୍ୟ କି ହୋଇଛି ଆଜି ଭାବନା ମନରେ ଜାଗ୍ରତ ହେଉଛି ।'

ସ୍ଥୂଳତଃ ବିଂଶ ଶତାବ୍ଦୀର ଆରମ୍ଭରୁ ୧୯୪୦ ମସିହା ପର୍ଯ୍ୟନ୍ତ ଓଡ଼ିଶାରେ ଶିକ୍ଷା ସଂଗଠନ ଏହିପରି ଥିଲା । ଗାଁମାନଙ୍କରେ ପ୍ରାଥମିକ ସ୍କୁଲ, ସେଥିରେ ପଢ଼ା ପ୍ରଣାଳୀ ଅନେକାଂଶରେ ପୂର୍ବତନ ଚାଟଶାଳୀମାନଙ୍କରେ ଅବଧାନମାନଙ୍କ ଶିକ୍ଷାପ୍ରଣାଳୀ ପରି ଥିଲା । ଥାନା ମହକୁମାମାନଙ୍କରେ ମାଇନର ସ୍କୁଲ, ପ୍ରାଥମିକ ସ୍କୁଲମାନଙ୍କରୁ ଅତି ଅଳ୍ପ ପିଲା, ସାଧାରଣତଃ ଦୁଇ ତିନି ଜଣ ମାଇନର ସ୍କୁଲକୁ ପଢ଼ିବାକୁ ଯାଉଥିଲେ । ପ୍ରତି ଜିଲ୍ଲା ଓ ସବ୍‌ଡିଭିଜନ ମହକୁମାମାନଙ୍କରେ ହାଇସ୍କୁଲ ଥିଲା । ପ୍ରତି ମାଇନର ସ୍କୁଲରୁ ଦୁଇ ଚାରି ଜଣ ପିଲା ହାଇସ୍କୁଲକୁ ପଢ଼ିବାକୁ ଆସୁଥିଲେ । ଆମ କଟକ ଜିଲ୍ଲାରେ କଟକ ସହରରେ ପାଞ୍ଚଟା ହାଇସ୍କୁଲ ଏବଂ କେନ୍ଦ୍ରାପଡ଼ା, ଯାଜପୁର, ଜଗତସିଂହପୁର ଓ ବାଙ୍କିରେ ହାଇସ୍କୁଲ ଥିଲା । ଓଡ଼ିଶା ଡିଭିଜନରେ ରେଭେନ୍‌ସା କଲେଜ ଏକମାତ୍ର କଲେଜ ଥିଲା । ପ୍ରତି ହାଇସ୍କୁଲରୁ ମାଟ୍ରିକୁଲେସନ ପାଶ କରିଥିବା ଦଶଜଣରୁ କମ୍ ପିଲା କଲେଜକୁ ପଢ଼ିବାକୁ ଆସୁଥିଲେ । ମୋର ମନେ ଅଛି ଯେ, ମୁଁ ପଢ଼ୁଥିବା ପ୍ରାଥମିକ ସ୍କୁଲରୁ ମୋ' ବର୍ଷ ମୁଁ ଏକା ମାଇନର ସ୍କୁଲରେ ପଢ଼ିବାକୁ ଯାଇଥିଲି । ମୋ ପୂର୍ବବର୍ଷ କେହି ଯାଇ ନଥିଲେ ଓ ପରବର୍ଷ ମଧ୍ୟ କେହି ଯାଇ ନ ଥିଲେ । ସେହିପରି ମୁଁ ପଢ଼ୁଥିବା ମାଇନର ସ୍କୁଲରୁ ଆମବର୍ଷ କେବଳ ଆମେ ଦୁଇଜଣ ପିଲା ହାଇସ୍କୁଲରେ ପଢ଼ିବାକୁ ଯାଇଥିଲୁ । ମୁଁ କଟକ ଆସିଥିଲି । ଅନ୍ୟ ଜଣେ ଜଗତସିଂହପୁର ପଢ଼ିବାକୁ ଯାଇଥିଲା । ସେହି ଦୁଇଜଣ ପିଲା ହାଇସ୍କୁଲରୁ ପାସ୍ କରି କଲେଜରେ ନାମ ଲେଖାଇଥିଲୁ । ମୁଁ ବୃତ୍ତି ପାଇ ହଷ୍ଟେଲରେ ରହିଥିଲି । ସେ

ଦ୍ୱାରାରେ ରହି ଟ୍ୟୁସନ କରି ପାଠ ପଢ଼ୁଥିଲେ । କଟକ ହାଇସ୍କୁଲମାନଙ୍କରୁ ଅନେକ ପିଲା କଲେଜରେ ପଢ଼ିବାକୁ ଆସୁଥିଲେ କାରଣ ସେମାନେ କଟକରେ ରହିଲା ପିଲା କିମ୍ବା ମଫସଲର ଧନୀଘର ବା ବୃତ୍ତି ପାଇଥିବା ପିଲା । ତା' ପରେ ଓଡ଼ିଶାର ଅନ୍ୟ ଜିଲ୍ଲାମାନଙ୍କରୁ ଏବଂ ଗଡ଼ଜାତ ହାଇସ୍କୁଲମାନଙ୍କରୁ ପାସ୍ କରି ଅଳ୍ପ ସଂଖ୍ୟକ ପିଲା କଲେଜରେ ନାମ ଲେଖାଉଥିଲେ । ସ୍କୁଲମାନଙ୍କରୁ ଗୁଣିହୋଇ ପିଲାମାନେ କଲେଜରେ ପଢ଼ିବାକୁ ଆସୁଥିଲେ । ସେମାନେ ଧନୀଘର ପିଲା, ସହରରେ ଚାକିରି କରିଥିବା ଲୋକଙ୍କ ପିଲା କିମ୍ବା ଛାତ୍ରବୃତ୍ତି ପାଇଥିବା ଗରିବ ପରିବାରର ପିଲା ଥିଲେ । ମାଟ୍ରିକୁଲେଶନ୍ ପାସ୍ କରୁଥିବା ପିଲାଙ୍କ ସଂଖ୍ୟା କମ୍ ଥିଲା ଏବଂ ସେଥିରୁ ଅତି ଅଳ୍ପ ପିଲା କଲେଜରେ ନାମ ଲେଖାଉଥିଲେ । ଆମ ସମୟରେ ରେଭେନ୍ସା କଲେଜରେ ମୋଟେ ପାଞ୍ଚଶହ ପାଖାପାଖି ପିଲା ଥିଲେ । ଏହା ମଧ୍ୟ ସତ୍ୟ ଯେ, କଲେଜରୁ ଆଇ. ଏ. ଓ ବି. ଏ. ପାସ୍ କରିଥିବା ବହୁ ପିଲା କୌଣସି ଚାକିରି ନ ପାଇ କର୍ମସଂସ୍ଥାନପାଇଁ ଏଣେତେଣେ ଯାଉଥିଲେ ଏବଂ ସାଧାରଣ ଚାକିରିଟିଏପାଇଁ ବହୁକାଳ ଅପେକ୍ଷା କରିବାକୁ ପଡ଼ୁଥିଲା । ଚାକିରି ମଧ୍ୟରେ ଅଳ୍ପ କେତୋଟି କିରାଣି ଓ ସ୍କୁଲ ଶିକ୍ଷକ, ଚାରି ପାଞ୍ଚଜଣ ସବ୍‌ଡେପୁଟି, ଦୁଇ ତିନିଜଣ ସବ୍‌ରେଜିଷ୍ଟ୍ରାର, ଜଣେ ଦୁଇଜଣ କଲେଜ ଲେକ୍‌ଚରର ଚାକିରି ଥିଲା । ପ୍ରାଦେଶିକ ସାଧାରଣ ଚାକିରି ମଧ୍ୟରେ ସବ୍‌ଡେପୁଟି ଓ ଲେକ୍‌ଚରର ବଡ଼ ଚାକିରି ଥିଲା । ଆଧୁନିକ ଶିକ୍ଷା ଏବଂ ନୂତନ ଚିନ୍ତାଧାରା ଅତି ମନ୍ଥର ଗତିରେ ସମାଜ ମଧ୍ୟରେ ପ୍ରବେଶ କରୁଥିଲା । ୧୯୨୦ ମସିହାଠାରୁ ୧୯୪୦ ମସିହା ମଧ୍ୟରେ ଘଟୁଥିବା ରାଜନୈତିକ ବିପ୍ଳବ ଏହି ପରିବର୍ତ୍ତନକୁ ତ୍ୱରାନ୍ୱିତ କରୁଥିଲା ।

ଏହି ପରିପ୍ରେକ୍ଷୀରେ ୧୯୩୯ ମସିହା ସେପ୍‌ଟେମ୍ବର ମାସ ୩ ତାରିଖରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା ଏବଂ ୧୯୪୦ ମସିହାଠାରୁ ଭାରତର ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଅବସ୍ଥାରେ ଦ୍ରୁତ ପରିବର୍ତ୍ତନ ଆରମ୍ଭ ହେଲା । ୧୯୩୦ ଓ ୧୯୪୦ ମସିହା ମଧ୍ୟରେ ଶିକ୍ଷା କ୍ଷେତ୍ରରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଲୋକମାନେ ମାଧ୍ୟମିକ ଶିକ୍ଷା ପ୍ରସାର କରିବାପାଇଁ ଆଗ୍ରହୀ ଥିଲେ । ବିଭିନ୍ନ ଅଞ୍ଚଳରେ ସେମାନେ ଚାନ୍ଦା ଭେଦା କରି ନୂତନ ମାଇନର ସ୍କୁଲ ପ୍ରତିଷ୍ଠା ଏବଂ ଅବସ୍ଥିତ ମାଇନର ସ୍କୁଲକୁ ହାଇସ୍କୁଲରେ ପରିଣତ କରିବାକୁ ଚେଷ୍ଟା କରୁଥିଲେ । ସେହି ସମୟରେ ଆମ ଗାଁରେ ମାଇନରସ୍କୁଲ ପ୍ରତିଷ୍ଠା ହୋଇଥିଲା ଏବଂ ଜଗତ୍‌ସିଂହପୁର ଓ ବାଲିକୁଦାରେ ହାଇସ୍କୁଲ ପ୍ରତିଷ୍ଠିତ ହୋଇଥିଲା । ଘରୋଇ ଉଦ୍ୟମରେ ଲୋକମାନେ କିନ୍ତୁ କଲେଜ କରିବାକୁ ସାହସ କରୁ ନ ଥିଲେ । ଲୋକଙ୍କର ଧାରଣା ଥିଲା ଯେ କଲେଜ ଅର୍ଥ ରେଭେନ୍ସା କଲେଜ ପରି

ବହୁ ବ୍ୟୟସାପେକ୍ଷ ଉଚ୍ଚ ଶିକ୍ଷାଦାନ ଗୋଟିଏ ବୃହତ୍ ଅନୁଷ୍ଠାନ । ଲୋକମାନଙ୍କର ଚାନ୍ଦା ଦେବାରେ ଏପରି ଅନୁଷ୍ଠାନ ସହଜରେ ପ୍ରତିଷ୍ଠିତ ହୋଇପାରିବ ନାହିଁ ।

୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ପରେ ଓଡ଼ିଶାରେ ସମସ୍ତେ ଆଶା କରୁଥିଲେ ଯେ, ଓଡ଼ିଶା ଆଉ ଅଧିକ କାଳ ପାଟନା ବିଶ୍ୱବିଦ୍ୟାଳୟ ଓ ପାଟନା ହାଇକୋର୍ଟ ଅଧୀନରେ ରହିବ ନାହିଁ । ଅବିଳମ୍ବେ ଓଡ଼ିଶାରେ ସ୍ୱତନ୍ତ୍ର ହାଇକୋର୍ଟ ଏବଂ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେବ । ୧୯୩୮ ମସିହାରେ ବିଶ୍ୱନାଥ ଦାସ ଓଡ଼ିଶାର ପ୍ରଧାନମନ୍ତ୍ରୀ ଥିଲାବେଳେ ଗଡ଼ଜାତ ସମେତ ଓଡ଼ିଶାର ସବୁ ଅଞ୍ଚଳକୁ ନେଇ ଓଡ଼ିଶା ପ୍ରଦେଶର ଗୋଟିଏ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ସ୍ଥାପନ ବିଷୟ ବିଚାର କରି ରିପୋର୍ଟ ଦେବାକୁ ନୀଳକଣ୍ଠ ଦାସଙ୍କ ଅଧ୍ୟକ୍ଷତାରେ ଗୋଟିଏ କମିଟି ଗଠିତ ହୋଇଥିଲା । ତାର ପରବର୍ଷ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା, ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ, ରାଜ୍ୟପାଳଙ୍କ ଶାସନାଧୀନରେ ସମସ୍ତ ଶାସନକଳ ଯୁଦ୍ଧକାର୍ଯ୍ୟରେ ସାହାଯ୍ୟ କରିବାପାଇଁ ବ୍ୟସ୍ତ ରହିଲେ । ଯୁଦ୍ଧ ସମୟ ମଧ୍ୟରେ ୧୯୪୩ ମସିହାରେ ଦ୍ୱିତୀୟଥର ପାରଳା ମହାରାଜାଙ୍କ ମନ୍ତ୍ରିମଣ୍ଡଳରେ ପଣ୍ଡିତ ଗୋଦାବରୀଶ ମିଶ୍ର ଶିକ୍ଷାମନ୍ତ୍ରୀ ଥିଲେ । ୧୯୪୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ଆଇନ୍ ପାସ୍ ହେଲା ଏବଂ ସେହି ବର୍ଷ ନଭେମ୍ବର ମାସ ୨୭ ତାରିଖରେ ରେଭେନସା କଲେଜର ଗୋଟିଏ ଗୃହରେ ଉତ୍କଳ ବିଶ୍ୱବିଦ୍ୟାଳୟର କାର୍ଯ୍ୟ ଆରମ୍ଭ ହେଲା । ଓଡ଼ିଶା ପ୍ରଦେଶର ଏବଂ ଗଡ଼ଜାତମାନଙ୍କରେ ଥିବା ସମସ୍ତ ହାଇସ୍କୁଲ, ରେଭେନ୍ସା କଲେଜ, ପାରଳାଖେମୁଣ୍ଡି କଲେଜ, ଖଲ୍ଲିକୋଟ କଲେଜ, ରେଭେନ୍ସା ବାଳିକା ବିଦ୍ୟାଳୟର ଆଇ. ଏ. ଶ୍ରେଣୀମାନ, ରେଭେନ୍ସା କଲେଜ ହତାରେ ଥିବା ଟ୍ରେନିଂ କଲେଜ ବିଶ୍ୱବିଦ୍ୟାଳୟ ଅଧୀନରେ ରହିଲା ।

ବିଶ୍ୱବିଦ୍ୟାଳୟ ଅଧୀନରେ ଅତି ଅଳ୍ପସଂଖ୍ୟକ ମହାବିଦ୍ୟାଳୟ ଥିବାରୁ ତାହାର ପରିସର ଅତି ସଙ୍କୀର୍ଣ୍ଣ ଥିଲା । ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ହାଇସ୍କୁଲମାନଙ୍କର ସଂଖ୍ୟା ମଧ୍ୟ ଖୁବ୍ କମ୍ ଥିଲା । ତେଣୁ ହାଇସ୍କୁଲ ଓ କଲେଜ ସଂଖ୍ୟା ବୃଦ୍ଧି କରି ମାଧ୍ୟମିକ ଓ ଉଚ୍ଚଶିକ୍ଷା ପ୍ରସାର କରିବା ସରକାରଙ୍କର ନୀତି ହେଲା । ବିଶ୍ୱବିଦ୍ୟାଳୟ ସ୍ଥାପନର ପରବର୍ଷ ୧୯୪୪ ମସିହା ଜୁଲାଇ ମାସରେ, ସରକାର ସମ୍ବଲପୁର, ପୁରୀ ଓ ବାଲେଶ୍ୱରଠାରେ ଥିବା ଜିଲ୍ଲାସ୍କୁଲମାନଙ୍କର ଗୃହରେ କଳା, ବିଜ୍ଞାନ ଶ୍ରେଣୀ ସହିତ ପ୍ରଥମ ଶ୍ରେଣୀ କଲେଜମାନ ସ୍ଥାପନ କଲେ । ସେହିବର୍ଷ ପାଟଣା ମହାରାଜା ବଲାଙ୍ଗିରଠାରେ କଳା, ବିଜ୍ଞାନ ଓ ବାଣିଜ୍ୟ ଶ୍ରେଣୀ ସହିତ ଗୋଟିଏ ପ୍ରଥମ ଶ୍ରେଣୀ କଲେଜ ସ୍ଥାପନ କଲେ ।

ବର୍ଷେ ଦୁଇବର୍ଷ ମଧ୍ୟରେ କୋରାପୁଟ ଜିଲ୍ଲାର ଜୟପୁରଠାରେ ଗୋଟିଏ ଆଇ. ଏ ଓ ଆଇ. ଏସ୍‌ସି କ୍ଲାସଥିବା ସରକାରୀ କଲେଜ ସ୍ଥାପିତ ହେଲା । ବାରିପଦା-ଠାରେ ମୟୂରଭଞ୍ଜ ମହାରାଜା ଗୋଟିଏ କଳା ବିଜ୍ଞାନ କଲେଜ ସ୍ଥାପନ କଲେ । ଲୋକମାନଙ୍କ ଉଦ୍ୟମରେ, ବିଭିନ୍ନ ଅଞ୍ଚଳରେ ନୂତନ ହାଇସ୍କୁଲମାନ ପ୍ରତିଷ୍ଠା ହେବାକୁ ଲାଗିଲା । ସୁତରାଂ ସ୍ୱାଧୀନତା ପୂର୍ବରୁ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପରଠାରୁ ଓଡ଼ିଶାରେ ଶିକ୍ଷା ପ୍ରସାର ଆରମ୍ଭ ହେଲା । ସେଥିପାଇଁ ପାରଳାଖେମୁଣ୍ଡି ମହାରାଜା, ଶିକ୍ଷାମନ୍ତ୍ରୀ ଗୋଦାବରୀଶ ମିଶ୍ର, ଡ଼ି. ପି. ଆଇ. ଶ୍ୟାମଚନ୍ଦ୍ର ତ୍ରିପାଠୀ ଓ କୁଳପତି ପ୍ରାଣକୃଷ୍ଣ ପରିଜା ପ୍ରଭୃତି ଶିକ୍ଷାପ୍ରେମୀ ବ୍ୟକ୍ତିମାନଙ୍କର ଅବଦାନ ଓଡ଼ିଶାବାସୀଙ୍କର ଚିରସ୍ମରଣୀୟ ।

୧୯୪୪ ମସିହାରେ ସମ୍ବଲପୁର, ବାଲେଶ୍ୱର ଏବଂ ପୁରୀରେ ଯେତେବେଳେ ସରକାରୀ କଲେଜ ସବୁ ଆରମ୍ଭ ହେଲା, ସେତେବେଳେ କଳ୍ପନା କରାଯାଇଥିଲା ଯେ, କେବଳ ଅସ୍ଥାୟୀ ଭାବରେ କଲେଜ ସବୁ ଜିଲ୍ଲାସ୍କୁଲ ଗୃହମାନଙ୍କରେ କାର୍ଯ୍ୟ କରିବ । ପରେ ବଡ଼ ବଡ଼ ଉପଯୁକ୍ତ ସ୍ଥାନ ସ୍ଥିର କରାଯାଇ ଲାଇବ୍ରେରୀ, ଲାବୋରେଟରୀ, ଶ୍ରେଣୀ ଗ୍ୟାଲେରି, ଅଧ୍ୟାପକମାନଙ୍କ ବାସଗୃହ, ଛାତ୍ରାବାସ, ଖେଳପଡ଼ିଆ ପ୍ରଭୃତି ସମସ୍ତ ସୁବିଧା ଥାଇ ରେଭେନ୍‌ସା କଲେଜ ଅନୁରୂପ କଲେଜ ଗୃହ ସବୁ ତିଆରି କରାଯିବ । ସେହି କଳ୍ପନା ଅନୁସାରେ ସମ୍ବଲପୁର ସହରଠାରୁ ଆଠ ମାଇଲ ଦୂର ମହାନଦୀ ଓ ତାର ଉପନଦୀ ମାଳତୀ କୂଳରେ, ପ୍ରାୟ ଦୁଇଶହ ଏକର ଜମି ଉପରେ ସମ୍ବଲପୁର କଲେଜର ଗୃହ ସବୁ ଗଠନ ପାଇଁ ୧୯୪୫ ମସିହା ଅଗଷ୍ଟ ମାସରେ ଓଡ଼ିଶାର ଲାଟ ଲୁଇସ୍ ସାହେବ ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । ସେ ଭିତ୍ତିପ୍ରସ୍ତର ସ୍ଥାପନ ଉତ୍ସବ ଦିନ ଖୁବ୍ ବର୍ଷା ହେଲା । ସେ ଉତ୍ସବରେ ଯୋଗ ଦେବାପାଇଁ ଆମେ ସମ୍ବଲପୁର କଲେଜର ଅଧ୍ୟାପକମାନେ ମାଳତୀ ନଦୀ ପର୍ଯ୍ୟନ୍ତ ବସ୍‌ରେ ଯାଇ ନଦୀ ପାରହୋଇ ନ ପାରି ଫେରିଆସିଲୁ । କଲେଜ ସ୍ଥାନକୁ ସମ୍ବଲପୁର ସହର ସହିତ ଯୋଗ କରିବାକୁ ମାଳତୀ ନଦୀ ଉପରେ ଗୋଟିଏ ପୋଲ କରିବାକୁ କାର୍ଯ୍ୟକ୍ରମ ଥିଲା । ଜଳ ଡିଙ୍ଗୁରିବାଟେ ସମ୍ବଲପୁର ସହରଠାରୁ ସେ ସ୍ଥାନ ୧୦ ମାଇଲରୁ ଅଧିକ ଦୂର ଥିଲା । ଏହି ବିରାଟ ପରିକଳ୍ପନାକୁ ସମ୍ବଲପୁରବାସୀ ତୀବ୍ର ସମାଲୋଚନା କଲେ । ସହରରୁ ଏତେ ଦୂରରେ କଲେଜ ସ୍ଥାପନ କରିବାକୁ କେହି ପସନ୍ଦ କଲେ ନାହିଁ । ଫଳରେ ସେ ଭିତ୍ତିପ୍ରସ୍ତର ଚିରକାଳ ପାଇଁ ମାଟିତଳେ ପୋତି ହୋଇ ରହିଲା ଏବଂ କଲେଜ ସ୍ଥାୟୀ ଭାବରେ ଜିଲ୍ଲାସ୍କୁଲ ପରେ ରହିଲା । କଲେଜ ନିକଟରେ ବୁଢ଼ାରାଜା ପାହାଡ଼ ତଳେ ଅଧ୍ୟାପକମାନଙ୍କ ରହିବାପାଇଁ ଘରଗୁଡ଼ିଏ ନିର୍ମିତ ହେଲା ।

ହଷ୍ଟେଲ ପ୍ରଭୃତି ପାଇଁ ପୂର୍ବତନ ସ୍କୁଲ ଦ୍ୱାରାରେ ପ୍ରଥମେ ଅସ୍ଥାୟୀ ଘର ତିଆରି ହୋଇ, ପରେ ସ୍ଥାୟୀ ଘର ସବୁ ତିଆରି ହେଲା । ସ୍କୁଲପାଇଁ ତିଆରି ହୋଇଥିବା ରୁମମାନଙ୍କରେ ଲାବୋରେଟରୀ, ଲାଇବ୍ରେରୀ ଏବଂ ଶ୍ରେଣୀଗୃହ ସବୁ କାର୍ଯ୍ୟକାରୀ ହେଲା । ଜିଲ୍ଲାସ୍କୁଲ ପାଇଁ ଅଲଗା ଘରସବୁ ତିଆରି ହେଲା ।

ସେହିପରି ପୁରୀ ଓ ବାଲେଶ୍ୱର ଜିଲ୍ଲା ସ୍କୁଲଘରମାନଙ୍କରେ କଲେଜ ସବୁ ସ୍ଥାୟୀ ଭାବରେ କାର୍ଯ୍ୟ କଲା । ସରକାରଙ୍କର ସୀମିତ ସମ୍ବଳ ହେତୁ ବଡ଼ଜାଗା, ବଡ଼ଘର, ଅଧ୍ୟାପକମାନଙ୍କ ବାସଗୃହ, ବଡ଼ ବଡ଼ ଛାତ୍ରାବାସ, ଶ୍ରେଣୀ ଗ୍ୟାଲେରୀ, ସଭାଗୃହ ପ୍ରଭୃତି ସମସ୍ତ ଆନୁଷଙ୍ଗିକ ଗୃହ ନିର୍ମାଣର ଆଶା ତ୍ୟାଗ କରିବାକୁ ପଡ଼ିଲା । ଯଦିଓ କେତେବର୍ଷ ମଧ୍ୟରେ ସେ ସବୁ କଲେଜମାନଙ୍କରେ ଛାତ୍ରଛାତ୍ରୀ ସଂଖ୍ୟା ବହୁଗୁଣରେ ବଢ଼ିଗଲା ଏବଂ ବର୍ତ୍ତମାନ ସେ ସବୁ କଲେଜର ପ୍ରତ୍ୟେକଟିରେ ତିନିହଜାରରୁ ଅଧିକ ପିଲା ପଢ଼ୁଛନ୍ତି, ତଥାପି ଅଳ୍ପ ଘରଦ୍ୱାର, ଶ୍ରେଷ୍ଠ ଗ୍ରନ୍ଥାଗାର, ଲାବୋରେଟରୀ ଓ ଛାତ୍ରାବାସ ପ୍ରଭୃତି ଥାଇ ଏବଂ ଅଧ୍ୟାପକମାନଙ୍କ ପାଇଁ ବାସଗୃହ ପ୍ରଭୃତି ନ ଥାଇ, ବଡ଼ ବଡ଼ ପ୍ରଥମ ଶ୍ରେଣୀ କଲେଜ ସବୁ ଚାଲିପାରେ ବୋଲି ଲୋକମାନଙ୍କର ଧାରଣା ହୋଇଗଲା । ରେଭେନ୍‌ସା କଲେଜ ଆଦର୍ଶ ଆଉ ରହିଲା ନାହିଁ । ସମ୍ବଳର ଅଭାବରେ କୌଣସିମତେ କଲେଜ କରି ପିଲାମାନଙ୍କର କଲେଜ ପଢ଼ା କାମ ଚଳାଇବା ସମୀଚୀନ ମନେ ହେଲା । ବାରିପଦା କଲେଜ ପ୍ରଥମେ ବାରିପଦା ହାଇସ୍କୁଲରେ ଆରମ୍ଭ ହୋଇଥିଲା । ପରେ ଓଡ଼ିଶା ସରକାର ମୟୂରଭଞ୍ଜ ମହାରାଜାଙ୍କର ରାଜପ୍ରାସାଦ କିଣିନେଇ ସେଥିରେ କଲେଜ ଚଳାଇଲେ । ସେ ପ୍ରାସାଦର ରାଣୀମହଲ, ଦରବାରକକ୍ଷ, ସନ୍ତରଣ ପୁଷ୍କରିଣୀ ପ୍ରଭୃତି କଲେଜ ଗୃହ ଉଦ୍ଦେଶ୍ୟରେ ନିର୍ମିତ ହୋଇ ନ ଥିଲା । ପ୍ରାୟ ପଚିଶ ବର୍ଷ ପରେ ତକତପୁରଠାରେ ନୂଆ କଲେଜ ନିର୍ମିତ ହୋଇଛି ।

୧୯୪୪ ମସିହାଠାରୁ ବିଭିନ୍ନ ଜିଲ୍ଲାରେ କଲେଜ ସବୁ ସରକାରୀ ଉଦ୍ୟମରେ ସ୍ଥାପିତ ହୋଇଥିଲା । ସାଧାରଣ ଲୋକମାନେ ଘରୋଇ ଉଦ୍ୟମରେ କଲେଜ କରିବାକୁ ସାହସ କରି ନ ଥିଲେ । ୧୯୬୦ ମସିହା ପରଠାରୁ ଲୋକମାନଙ୍କ ଉଦ୍ୟମରେ ବିଭିନ୍ନ ସବ୍‌ଡିଭିଜନାଲ୍ ସଦର ଓ ପ୍ରଧାନ ଜନବସତି-ମାନଙ୍କରେ କଲେଜ ସବୁ ଆରମ୍ଭ ହେଲା । ଲୋକମାନଙ୍କର ଧାରଣା ହେଲା ଯେ, ପ୍ରଥମେ ଶ୍ରେଣୀଗୃହ, ଆବଶ୍ୟକ ଆସବାବ୍‌ପତ୍ର, ଲାଇବ୍ରେରୀ, ଛାତ୍ରାବାସ ପ୍ରଭୃତି କୌଣସି ସୁବିଧା ନ ଥାଇ କଲେଜ ଆରମ୍ଭ କରାଯାଇପାରେ । ପରେ ଆସ୍ତେ ଆସ୍ତେ ଆବଶ୍ୟକ ସୁବିଧା କରିବା ସମ୍ଭବ ହେବ । ଏହି ଧାରଣାରେ ଆଠଗଡ଼, ବଡ଼ମ୍ବା, ଜଗତ୍‌ସିଂହପୁର, ସାଲେପୁର, କେନ୍ଦ୍ରାପଡ଼ା, ଯାଜପୁର ରୋଡ଼, ଯାଜପୁର,

ବରଗଡ଼, ତାଳଚେର, ଆନନ୍ଦପୁର, ଦେବଗଡ଼, କୁଚିନ୍ଦା ପ୍ରଭୃତି ସବୁ ଜିଲ୍ଲାର ପ୍ରତି ସବ୍‌ଡିଭିଜନରେ କଲେଜମାନ ପ୍ରତିଷ୍ଠା ହୋଇଗଲା । ସେଥିମଧ୍ୟରୁ କେତେକ କଲେଜ ଅଳ୍ପଦିନ ମଧ୍ୟରେ ବଡ଼ ହୋଇଗଲା ଏବଂ ସେଥିରେ ଆବଶ୍ୟକ ଅନେକ ଘରଦ୍ୱାର ତିଆରି ହୋଇଗଲା । କେତେକ କଲେଜ ସରକାର ହାତକୁ ନେଇଗଲେ । ଅନ୍ୟ କେତେକ କଲେଜ ଘରଦ୍ୱାରବିହୀନ ଗ୍ରେଡ଼ କଲେଜ ହୋଇ ବହୁକାଳ ରହିଗଲେ ।

ତାହା ପରେ ୧୯୭୯—୮୦ ମସିହା ବେଳକୁ ଗ୍ରାମାଞ୍ଚଳର ସବୁଆଡ଼େ କଲେଜ କରିବାପାଇଁ ଲୋକମାନଙ୍କ ମଧ୍ୟରେ ଗୋଟିଏ ପ୍ରବଳ ଉଦ୍ଦୀପନା ଦେଖାଦେଲା । ଛପର କିମ୍ବା ଟାଇଲ ଘର ହେଉ କିମ୍ବା ମୋଟେ ଘର ନ ଥାଉ ଅବସ୍ଥିତ ମାଇନର କିମ୍ବା ହାଇସ୍କୁଲରେ ସକାଳଓଳି ହେଉ, ଲାଇବ୍ରେରୀରେ ମୋଟେ ବହି ନ ଥାଉ, ଶ୍ରେଣୀ ଗୃହରେ ପିଲାଙ୍କ ବସିବାପାଇଁ ବେଞ୍ଚ ଡେସ୍କ ନ ଥାଉ ପଛକେ ବହୁ ସ୍ଥାନରେ ଲୋକମାନେ କଲେଜ କରିବାକୁ ଚାହିଁଲେ । କେବଳ ବିଶ୍ୱବିଦ୍ୟାଳୟ ପାସ୍ ବହିରେ ଆବଶ୍ୟକ ଅମାନତ ଟଙ୍କା ୨୫୦୦୦ ଚାନ୍ଦା ଭେଦାରୁ ଉଠାଇ ଦେଇ, ଗ୍ରାମ୍ୟ ନେତାମାନେ କଳା ବିଜ୍ଞାନର କେତେକ ବିଷୟରେ ଅତି ଅଳ୍ପ ଦରମାରେ ଶିକ୍ଷକ ନିଯୁକ୍ତ କରି କଲେଜ କରିବା ଆରମ୍ଭ କଲେ । ଯୁକ୍ତି ହେଲା ସେ ସେ ଅଞ୍ଚଳର ପିଲାମାନେ ଘରେ ରହି ଶାଗ ପଖାଳ ଖାଇ, କଲେଜରେ ଆଇ.ଏ.ବି.ଏ. ପଢ଼ି ଯିବେ । ସରକାର ଓ ବିଶ୍ୱବିଦ୍ୟାଳୟ-ମାନେ କେତେକାଳ ବ୍ୟସ୍ତ ହୋଇ ଏ ଉଦ୍ୟମ ସଂଯତ କରିବାକୁ ଚେଷ୍ଟା କଲେ । ମାତ୍ର ପ୍ରତି ଅଞ୍ଚଳର ବିଧାୟକ ଓ ବିଭିନ୍ନ ରାଜନୈତିକ କର୍ମୀମାନଙ୍କର ଚାପରେ କିଛି ସୁବିଧା ନ ଥାଇ କଲେଜ ଖୋଲିବା ଉଦ୍ୟମ ବନ୍ଦ କରିପାରିଲେ ନାହିଁ । ପ୍ରତି ବିଧାୟକ ତାଙ୍କ ନିର୍ବାଚନ ମଣ୍ଡଳୀରେ ଦୁଇ ତିନି କଲେଜ କରି ତାଙ୍କ ଅଞ୍ଚଳର ଉନ୍ନତି ହେବାର ପ୍ରମାଣ କରିବାକୁ ଚେଷ୍ଟା କଲେ । କାରଣ କେନାଲ, ରାସ୍ତା, ପୋଲ ବା ଡାକ୍ତରଖାନା ପ୍ରଭୃତି କଲେ ବହୁ ଟଙ୍କା ଦରକାର । ମାତ୍ର କିଛି ସୁବିଧା ନ ଥାଇ କଲେଜଟିଏ କଲେ ବେଶି ଟଙ୍କା ଦରକାର ହେବ ନାହିଁ, ଅଥଚ ଆଖିଦୃଶିଆ ଉନ୍ନୟନ କାର୍ଯ୍ୟ ହେବାର ପ୍ରମାଣ ହେବ । କେତେକ ନେତୃସ୍ଥାନୀୟ ବ୍ୟକ୍ତି ମଧ୍ୟ କଲେଜ ପାଇଁ ଆଦାୟ କରାଯାଉଥିବା ଅର୍ଥରୁ କିଛି ଅପଯାତ କରିବାର ସୁବିଧା ପାଇଲେ । କଲେଜ ମାଧ୍ୟମରେ ବିଭିନ୍ନ ରାଜନୈତିକ ଦଳ ସେମାନଙ୍କ ଦଳପାଇଁ ପ୍ରଚାର କରିବା ସୁବିଧା ପାଇଲେ ଏବଂ ଅଞ୍ଚଳର କେତେକ ଉଚ୍ଚଶିକ୍ଷା ପ୍ରାପ୍ତ ବେକାର ଯୁବକଯୁବତୀମାନଙ୍କର କର୍ମସଂସ୍ଥାନ ସୁବିଧା ହେଲା । ଏହିପରି ବହୁ ଉଦ୍ଦେଶ୍ୟରେ କଲେଜଟିଏ କରିବା ଆବଶ୍ୟକ ମନେ ହେଲା ।

ତା' ପରେ ପୁଣି ୧୯୮୦ ମସିହାଠାରୁ ଅନେକ କଲେଜରେ ପିଲାମାନଙ୍କଠାରୁ ଚାନ୍ଦା ଆଦାୟ କରି ବି.ଏଡ୍ ଟ୍ରେନିଂ କ୍ଲାସ ଖୋଲାହେଲା । ସେଥିପାଇଁ ସରକାର ଓ ବିଶ୍ୱବିଦ୍ୟାଳୟ ଉପରେ ଚାପ ପକାଇ ବର୍ଷିକିଆ ଅନୁମତି ମିଳିଲା । ବିଭିନ୍ନ ହାଇସ୍କୁଲରେ ମଧ୍ୟ ସେହି ସୂତ୍ରରେ ମାଟ୍ରିକୁଲେସନ୍ ପାସ୍ କରିଥିବା ପିଲାଙ୍କପାଇଁ ଟ୍ରେନିଂ କ୍ଲାସ ଖୋଲାଗଲା । ପିଲାମାନଙ୍କଠାରୁ ଟଙ୍କା ଆଦାୟ କରିବା, ସେଥିରୁ କିଛି ଅର୍ଥ ଉପର ମହଲରେ ଉତ୍କୋଚ ଦେବା ଏବଂ ବହୁ ଅର୍ଥ ଆତ୍ମସାତ୍ କରିବା ସୁବିଧା ପାଇବାପାଇଁ ଅନେକ ଛୋଟବଡ଼ ରାଜନୈତିକ ନେତା ଉଦ୍ୟମ କଲେ । ସରକାର ଏ ଉଦ୍ୟମକୁ ମଧ୍ୟ ଆଠ ଦଶ ବର୍ଷ ବନ୍ଦ କରିପାରିଲେ ନାହିଁ । ୧୯୭୦ ମସିହାଠାରୁ ସରକାର ମଧ୍ୟ ନିଜ ଉଦ୍ୟମରେ ଆବଶ୍ୟକ ଅଞ୍ଚଳରେ ଅନେକ ହାଇସ୍କୁଲ, କଳା ବିଜ୍ଞାନରେ ସାଧାରଣ କଲେଜ ଓ ଟ୍ରେନିଂ କଲେଜ ପ୍ରଭୃତି ସ୍ଥାପନ କଲେ । ତାହା ସତ୍ତ୍ୱେ ଲୋକଙ୍କ ଉଦ୍ୟମରେ ଚାରିଆଡ଼େ କଲେଜ ଓ ସ୍କୁଲ ସବୁ ଛତୁ ଫୁଟିଲା ପରି ସ୍ଥାପିତ ହୋଇଗଲା । ଏ ପରିସ୍ଥିତି ରାଜ୍ୟର କୌଣସି ନିର୍ଦ୍ଦିଷ୍ଟ ଅଞ୍ଚଳରେ ସୀମାବଦ୍ଧ ନ ଥିଲା । ଅନୁନ୍ନତ କଳାହାଣ୍ଡି ଜିଲ୍ଲାଠାରୁ ଆରମ୍ଭ କରି ଅପେକ୍ଷାକୃତ ଉନ୍ନତ କଟକ, ପୁରୀ, ବାଲେଶ୍ୱର ଜିଲ୍ଲା ପର୍ଯ୍ୟନ୍ତ ସବୁଆଡ଼େ ଏହିପରି ପରିସ୍ଥିତି ଉପୁଜିଲା । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଏ ପ୍ରକାର କାର୍ଯ୍ୟର କଡ଼ା ସମାଲୋଚନା କଲେ । ତାଙ୍କ ସମାଲୋଚନାର ପ୍ରଧାନ କାରଣ ହେଲା ଯେ ଉଚ୍ଚଶିକ୍ଷାପାଇଁ ନିମ୍ନତମ ସୁବିଧା ନ ଥାଇ ଏପରି ଉଚ୍ଚଶିକ୍ଷା ଅନୁଷ୍ଠାନ ସବୁ ସ୍ଥାପନ ଦ୍ୱାରା ଶିକ୍ଷାର ମାନ ରସାତଳକୁ ଯିବ ଏବଂ ଶିକ୍ଷା କ୍ଷେତ୍ରରେ ବହୁ ବିଭ୍ରାଟ ହେବ । ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ଏ ସମାଲୋଚନା ସତ୍ତ୍ୱେ, ସରକାର ଓ ବିଶ୍ୱବିଦ୍ୟାଳୟମାନଙ୍କର ଅନିଚ୍ଛା ସତ୍ତ୍ୱେ, ରାଜ୍ୟର ସବୁଆଡ଼େ ଲୋକମାନଙ୍କର ଏହିପରି ଉଚ୍ଚଶିକ୍ଷା ଅନୁଷ୍ଠାନ ପ୍ରତିଷ୍ଠା କରିବା ଉତ୍ସାହ ଓ ଉଦ୍ୟମ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଅବ୍ୟାହତ ରହିଛି । କଟକ, ପୁରୀ, ବାଲେଶ୍ୱର ପ୍ରଭୃତି ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ପ୍ରତି ପାଞ୍ଚ ଛଅ ମାଇଲ ବ୍ୟବଧାନରେ ଗୋଟିଏ ଲେଖାଏଁ ଦୁର୍ବଳ କଲେଜ ପ୍ରତିଷ୍ଠିତ ହୋଇଛି । କଲେଜ ପ୍ରତିଷ୍ଠା ନୀତି ବିଷୟରେ ପରାମର୍ଶ ଦେବାପାଇଁ ସରକାର ଯଥାକ୍ରମେ ପ୍ରଫେସର ବାମ ଚରଣ ଦାସ ଓ ପ୍ରଫେସର ସଦାଶିବ ମିଶ୍ରଙ୍କ ଅଧ୍ୟକ୍ଷତାରେ ଦୁଇଟି କମିଟି ବସାଇଥିଲେ । ଶେଷୋକ୍ତ କମିଟିରେ ମୁଁ ଜଣେ ସଦସ୍ୟ ଥିଲି । ମାତ୍ର ସେ କମିଟିମାନଙ୍କ ପରାମର୍ଶ ସରକାର ଗ୍ରହଣ କରିପାରି ନାହାନ୍ତି କିମ୍ବା ସେ ଅନୁସାରେ କିଛି କାର୍ଯ୍ୟ ହୋଇ ନାହିଁ ।

୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପରେ, ଗଡ଼ଜାତ ସମେତ ସମସ୍ତ ପ୍ରଦେଶପାଇଁ ୧୯୪୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ

ହୋଇଥିଲା । ପ୍ରଦେଶ ଓ ଗଡ଼ଜାତମାନଙ୍କରେ ଥିବା ସବୁ ହାଇସ୍କୁଲ ଓ କଳା, ବିଜ୍ଞାନ, ବାଣିଜ୍ୟ, ଆଇନ୍, ଡାକ୍ତରୀ, ଇଞ୍ଜିନିଅରିଂ, କୃଷି, ପଶୁଚିକିତ୍ସା ପ୍ରଭୃତି ବିଷୟରେ ଶିକ୍ଷାଦାନ କରୁଥିବା ସବୁ କଲେଜ ଏହି ବିଶ୍ୱବିଦ୍ୟାଳୟ ଅଧୀନରେ ରଖାଯାଇଥିଲା । ପ୍ରଥମେ ବିଶ୍ୱବିଦ୍ୟାଳୟ କେବଳ ମାଟ୍ରିକୁଲେସନ୍‌ଠାରୁ ଏମ୍.ଏ. ଓ ଏମ୍.ଏସ୍‌ସି. ପର୍ଯ୍ୟନ୍ତ ବିଭିନ୍ନ ଡିଗ୍ରି ପାଇଁ ପରୀକ୍ଷା ପରିଚାଳନା କରୁଥିଲା । ବିଭିନ୍ନ ବିଷୟରେ ସ୍ନାତକ କିମ୍ବା ସ୍ନାତକୋତ୍ତର ଡିଗ୍ରି ପାଇଁ ପ୍ରତ୍ୟକ୍ଷ ଭାବରେ ଶିକ୍ଷାଦାନ କରୁ ନ ଥିଲା । ଶିକ୍ଷାଦାନ କିମ୍ବା ଶିକ୍ଷା ପରିଚାଳନା କରିବାପାଇଁ ବିଶ୍ୱବିଦ୍ୟାଳୟର ନିଜର ଗୃହ ଓ ଜମି ନ ଥିଲା । ୧୯୫୭ ମସିହାରେ ପ୍ରଥମେ ସଂସ୍କୃତ, ଦର୍ଶନ ପ୍ରଭୃତି କେତେକ ବିଷୟରେ ସ୍ନାତକୋତ୍ତର ଡିଗ୍ରି ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତ୍ୟକ୍ଷ ଭାବରେ କଟକ ଷ୍ଟେସନ ପାଖ ବର୍ତ୍ତମାନ ପଡ଼ିଆରେ ଏହାର ନିଜସ୍ୱ ଗୃହରେ ଶିକ୍ଷାଦାନ ଆରମ୍ଭ କଲା । ସେହି ସମୟରେ ବିଶ୍ୱବିଦ୍ୟାଳୟର ବିଭିନ୍ନ ଶିକ୍ଷାଦାନୀ ବିଭାଗ, ପରିଚାଳନା ଅଫିସ୍, ଅଧ୍ୟାପକ ଓ କର୍ମଚାରୀମାନଙ୍କର ବାସଗୃହ ଏବଂ ଅନ୍ୟ ଆନୁସଙ୍ଗିକ ଗୃହ ସବୁ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ସହାୟତାରେ ଭୁବନେଶ୍ୱରର ବାଣୀବିହାରରେ ହେବା ସ୍ଥିର ହେଲା ଏବଂ ସେଥି ନିମିତ୍ତ ୪୦୦ ଏକର ଜମି ସରକାର ବିଶ୍ୱବିଦ୍ୟାଳୟକୁ ଦେଲେ । ବାଣୀବିହାରଠାରେ ସେହି ଜମିରେ ବିଶ୍ୱବିଦ୍ୟାଳୟର ବିଭିନ୍ନ ଗୃହ ୧୯୫୭ଠାରୁ ୧୯୬୨ ମସିହା ମଧ୍ୟରେ ନିର୍ମିତ ହେଲା ଏବଂ ୧୯୬୨ ମସିହା ଜୁଲାଇ ମାସରେ ବିଶ୍ୱବିଦ୍ୟାଳୟ କାର୍ଯ୍ୟାଳୟ କଟକରୁ ବାଣୀବିହାରକୁ ଉଠିଆସିଲା । ୧୯୬୨ ମସିହାଠାରୁ ୧୯୯୩ ମସିହା ମଧ୍ୟରେ ବିଶ୍ୱବିଦ୍ୟାଳୟରେ ବହୁ ନୂଆ ନୂଆ ବିଭାଗ ସବୁ ଖୋଲିଛି ଏବଂ ସେଥିପାଇଁ ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ଅନେକ ନୂତନ ଗୃହ ନିର୍ମିତ ହୋଇଛି ।

ସେହି ୧୯୬୨ ମସିହାରେ ଭୁବନେଶ୍ୱରରେ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । କୃଷି ଓ ପଶୁଚିକିତ୍ସା ପ୍ରଭୃତି କଲେଜମାନ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଅଲଗା ହୋଇ ସେ ବିଶ୍ୱବିଦ୍ୟାଳୟ ଅଧୀନରେ ରହିଲା । ୧୯୬୭ ମସିହାରେ ସମ୍ବଲପୁର ଓ ବ୍ରହ୍ମପୁରଠାରେ ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠିତ ହେଲା । ପଶ୍ଚିମ ଓଡ଼ିଶାରେ ସମ୍ବଲପୁର, ବଲାଙ୍ଗୀର, ସୁନ୍ଦରଗଡ଼, କଳାହାଣ୍ଡି ଜିଲ୍ଲାମାନଙ୍କରେ ଥିବା କଲେଜମାନ ସମ୍ବଲପୁର ବିଶ୍ୱବିଦ୍ୟାଳୟ ଅଧୀନରେ ରହିଲା ଏବଂ ତାହାର କାର୍ଯ୍ୟାଳୟ ଓ ସ୍ନାତକୋତ୍ତର ବିଭାଗ ପ୍ରଭୃତି ଜ୍ୟୋତି ବିହାରରେ ଅବସ୍ଥିତ ହେଲା । ଦକ୍ଷିଣାଞ୍ଚଳର ଗଞ୍ଜାମ, କୋରାପୁଟ, ଫୁଲବାଣୀ ଜିଲ୍ଲାମାନଙ୍କର କଲେଜ ସବୁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଅଧୀନରେ ରହିଲା ଏବଂ ତାହାର

କାର୍ଯ୍ୟାଳୟ ଓ ସ୍ନାତକୋତ୍ତର ବିଭାଗମାନ ଗୋପାଳପୁର ବନ୍ଦର ନିକଟସ୍ଥ ଭଞ୍ଜବିହାରଠାରେ ଅବସ୍ଥିତ ହେଲା । ଓଡ଼ିଶାର ସେ ସମୟର ବାକି ଛଅଗୋଟି ଜିଲ୍ଲା, କଟକ, ପୁରୀ, ବାଲେଶ୍ୱର, ମୟୂରଭଞ୍ଜ, କେନ୍ଦୁଝର ଓ ଢେଙ୍କାନାଳ ଜିଲ୍ଲାମାନଙ୍କର କଲେଜମାନ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ରହିଲା । ୧୯୮୦ ମସିହାରେ ପୁରୀଠାରେ ଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ତାହା ଅଧୀନରେ ରାଜ୍ୟର ବିଭିନ୍ନ ସଂସ୍କୃତ, ଆୟୁର୍ବେଦ, ଜ୍ୟୋତିଷ ବିଦ୍ୟା ଶିକ୍ଷା ଦେଉଥିବା ଅନୁଷ୍ଠାନମାନ କାର୍ଯ୍ୟ କରୁଛନ୍ତି । ସେ ବିଶ୍ୱବିଦ୍ୟାଳୟର ସ୍ନାତକ ଓ ସ୍ନାତକୋତ୍ତର ବିଭାଗମାନ ପୁରୀରେ ଶ୍ରୀବିହାରଠାରେ ଅବସ୍ଥିତ ହୋଇଛି । ସୁତରାଂ ପଚାଶ ବର୍ଷ ତଳେ ଏ ରାଜ୍ୟରେ କୌଣସି ବିଶ୍ୱବିଦ୍ୟାଳୟ ନ ଥିବା ସ୍ଥଳେ, ଶତାବ୍ଦୀ ଶେଷରେ ବର୍ତ୍ତମାନ ଉପରୋକ୍ତ ପାଞ୍ଚଗୋଟି ବିଶ୍ୱବିଦ୍ୟାଳୟ କାର୍ଯ୍ୟ କରୁଛନ୍ତି । ତାହା ବ୍ୟତୀତ ମୟୂରଭଞ୍ଜ, ବାଲେଶ୍ୱର ଓ କେନ୍ଦୁଝର ଜିଲ୍ଲାମାନଙ୍କୁ ନେଇ ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ ସ୍ଥାପନପାଇଁ ଦଶବର୍ଷରୁ ଅଧିକ ହେବ ଆନ୍ଦୋଳନ ଚାଲିଛି ।

ବିଗତ ପଚାଶ ବର୍ଷ ମଧ୍ୟରେ ସରକାରୀ ଉଦ୍ୟମରେ ରାଜ୍ୟରେ ତିନିଗୋଟି ବୃହତ ମେଡ଼ିକାଲ କଲେଜ, ଚାରିଗୋଟି ଇଞ୍ଜିନିଅରିଂ କଲେଜ, ଅନେକ ଶିକ୍ଷକ ତାଲିମ କଲେଜ, ଆଞ୍ଚଳିକ ବିଜ୍ଞାନ ଗବେଷଣା ଅନୁଷ୍ଠାନ, କେତେକ ସମାଜ ବିଜ୍ଞାନ ଗବେଷଣା ଅନୁଷ୍ଠାନ, ଅନେକ ଆଇନ କଲେଜ ସମେତ ବହୁ ବିଜ୍ଞାନ, ସମାଜ ବିଜ୍ଞାନ, କଳା ସଂସ୍କୃତି ଗବେଷଣା ଅନୁଷ୍ଠାନମାନ ସରକାରୀ ଏବଂ ସରକାରୀ ଉଦ୍ୟମରେ ଗଢ଼ି ଉଠିଛି । ମୋଟ ଉପରେ ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଓଡ଼ିଶାର ଶିକ୍ଷା କ୍ଷେତ୍ରରେ ଅବସ୍ଥା ସ୍ଥାଣୁ ଥିବ ବେଳେ, ଦ୍ୱିତୀୟ ଭାଗରେ ସବୁ ସ୍ତରରେ ଅଭୂତପୂର୍ବ ଶିକ୍ଷା ପ୍ରସାର ହୋଇଛି । ଶତାବ୍ଦୀର ଶେଷ ଦଶନ୍ଧିରେ ସରକାରୀ ହିସାବ ଅନୁସାରେ ରାଜ୍ୟରେ ୧୯୯୧ ମସିହା ସୁଦ୍ଧା ଅଣଆନୁଷ୍ଠାନିକ କେନ୍ଦ୍ର ସମେତ ପ୍ରାୟ ୬୦ ହଜାର ପ୍ରାଥମିକ ବିଦ୍ୟାଳୟ, ୧୨ ହଜାର ମାଇନର ସ୍କୁଲ, ପାଞ୍ଚହଜାର ଛଅଶହ ହାଇସ୍କୁଲ, ଏବଂ ୪୧୦ ସାଧାରଣ କଲେଜ କାର୍ଯ୍ୟ କରୁଛି । ତାହା ବ୍ୟତୀତ ଆଉ ଦୁଇ ତିନିଶହ ସ୍ୱୀକୃତି ପାଇ ନ ଥିବା କଲେଜ ମଧ୍ୟ ଚାଲିଛି । ପ୍ରାଥମିକ ସ୍କୁଲମାନଙ୍କରେ ପ୍ରାୟ ୩୬ଲକ୍ଷ, ମାଇନର ସ୍କୁଲମାନଙ୍କରେ ୧୦ଲକ୍ଷ, ହାଇସ୍କୁଲମାନଙ୍କରେ ପ୍ରାୟ ଆଠଲକ୍ଷ ଏବଂ କଲେଜମାନଙ୍କରେ ପ୍ରାୟ ଦେଢ଼ଲକ୍ଷ ଛାତ୍ର ଛାତ୍ରୀ ପାଠ ପଢ଼ୁଛନ୍ତି । ପ୍ରାୟ ତିନିଲକ୍ଷ ଛାତ୍ରଛାତ୍ରୀ ପ୍ରତିବର୍ଷ ମାଟ୍ରିକୁଲେସନ୍ ପରୀକ୍ଷା ଦେଉଛନ୍ତି ଏବଂ ସେଥିରୁ ପ୍ରାୟ ଦେଢ଼ଲକ୍ଷ ପିଲା ପାସ୍ କରୁଛନ୍ତି । ବିଭିନ୍ନ

ବିଶ୍ୱବିଦ୍ୟାଳୟରେ ପ୍ରାୟ ପାଞ୍ଚହଜାରରୁ ଅଧିକ ଛାତ୍ରଛାତ୍ରୀ ସ୍ନାତକୋତ୍ତର ଶ୍ରେଣୀମାନଙ୍କରେ ପଢ଼ୁଛନ୍ତି । ପଚିଶ ବର୍ଷ ତଳେ ଛାତ୍ରଛାତ୍ରୀମାନଙ୍କର ଏତେ ସଂଖ୍ୟା ଅଚିନ୍ତନୀୟ ଥିଲା ।

ଆଉ ଗୋଟିଏ ଉଲ୍ଲେଖନୀୟ ବିଷୟ ହେଉଛି ଯେ, ପ୍ରାଥମିକ ସ୍ତରଠାରୁ ସ୍ନାତକୋତ୍ତର ସ୍ତର ପର୍ଯ୍ୟନ୍ତ ଶିକ୍ଷାନୁଷ୍ଠାନମାନଙ୍କରେ ବହୁ ଛାତ୍ରୀ ପଢ଼ୁଛନ୍ତି । ୧୯୨୪-୨୫ ମସିହା ବେଳକୁ ଆମ୍ଭେମାନେ ଯେତେବେଳେ ପ୍ରାଥମିକ ସ୍କୁଲରେ ପଢ଼ୁଥିଲୁ, ସେତେବେଳେ ଆମ ସ୍କୁଲରେ ପ୍ରଥମ, ଦ୍ୱିତୀୟ ଶ୍ରେଣୀ ପର୍ଯ୍ୟନ୍ତ ପାଞ୍ଚ ସାତ ଜଣ ବାଳିକା ପଢ଼ୁଥିଲେ । ତୃତୀୟ ଶ୍ରେଣୀ ବେଳକୁ କୌଣସି ବାଳିକା ପଢ଼ୁ ନ ଥିଲେ । ସେତେବେଳେ ମାଇନର ସ୍କୁଲ ଓ ହାଇସ୍କୁଲ-ମାନଙ୍କରେ ପୁଅ ଝିଅ ଏକାଠି ପଢ଼ିବାର ବ୍ୟବସ୍ଥା ନ ଥିଲା । ବିଭିନ୍ନ ଜିଲ୍ଲାରେ ବାଳିକାମାନଙ୍କ ପାଇଁ କେବଳ ଦୁଇଚାରିଟା ମାଇନର ସ୍କୁଲ ଏବଂ ଗୋଟିଏ ଦୁଇଟି ହାଇସ୍କୁଲ ଥିଲା । ସେତେବେଳେ ଓଡ଼ିଶାର ଏକମାତ୍ର କଲେଜ ରେଭେନ୍‌ସା କଲେଜରେ ଛାତ୍ରୀ ସଂଖ୍ୟା ନଗଣ୍ୟ ଥିଲା । ଆମେ ଆଇ. ଏ. କ୍ଲାସରେ ପଢ଼ିଲାବେଳେ, ଶହେ ପିଲା ମଧ୍ୟରେ ମାତ୍ର ଚାରି ପାଞ୍ଚଜଣ ବାଳିକା ପିଲା ପଢ଼ୁଥିଲେ । ବି ଏ. ପଢ଼ିଲାବେଳେ ଆମ ଶ୍ରେଣୀରେ ପ୍ରାୟ ଶହେ ପିଲାଙ୍କ ମଧ୍ୟରେ ଦୁଇଜଣ ବାଳିକା ପିଲା ଥିଲେ । ସେଥିମଧ୍ୟରୁ ଜଣେ ଖ୍ରୀଷ୍ଟିଆନ ପରିବାରର, ଅନ୍ୟଜଣକ ବଙ୍ଗାଳୀ ହିନ୍ଦୁ ପରିବାରର ଝିଅ ଥିଲେ । ଗାଁ ଗହଳରୁ ଝିଅମାନେ ମାଇନର ସ୍କୁଲଠାରୁ ଆରମ୍ଭ କରି କଲେଜ ପର୍ଯ୍ୟନ୍ତ ପଢ଼ିବାକୁ ଆସୁ ନ ଥିଲେ । ସେ ଅବସ୍ଥା ସମ୍ପୂର୍ଣ୍ଣ ରୂପେ ବଦଳି ଯାଇଛି । ବର୍ତ୍ତମାନ ପ୍ରାଇମେରି ସ୍କୁଲମାନଙ୍କରେ ପଢ଼ୁଥିବା ୩୭ଲକ୍ଷ ପିଲାଙ୍କ ମଧ୍ୟରେ ୧୫ଲକ୍ଷ ବାଳିକା ଅଛନ୍ତି । ସେହିପରି ମାଇନର ସ୍କୁଲରେ ପଢ଼ୁଥିବା ପ୍ରାୟ ୧୦ଲକ୍ଷ ପିଲାଙ୍କ ମଧ୍ୟରେ ପ୍ରାୟ ଚାରିଲକ୍ଷ ବାଳିକା ପିଲା ଅଛନ୍ତି । ହାଇସ୍କୁଲରେ ପଢ଼ୁଥିବା ଆଠଲକ୍ଷ ପିଲାଙ୍କ ମଧ୍ୟରେ ଅଢ଼େଇଲକ୍ଷ ବାଳିକା ଅଛନ୍ତି । କଲେଜ ପିଲାଙ୍କ ମଧ୍ୟରେ ଶତକଡ଼ା ତିରିଶ ଚାଳିଶ ଏବଂ ସ୍ନାତକୋତ୍ତର ଶ୍ରେଣୀମାନଙ୍କରେ ଶତକଡ଼ା ପଚିଶ ବାଳିକା ପିଲା ଅଛନ୍ତି । ସବୁ ସ୍କୁଲ କଲେଜରେ ପୁଅ ଓ ଝିଅ ଏକାଠି ପଢ଼ିବାର ବ୍ୟବସ୍ଥା ହୋଇଛି । ବିଗତ ପଚିଶ ବର୍ଷ ମଧ୍ୟରେ ଶିକ୍ଷାର ପ୍ରସାର ସହିତ ନାରୀଶିକ୍ଷାର ମଧ୍ୟ ଅଭୂତପୂର୍ବ ପ୍ରସାର ହୋଇଛି ।

ସେହିପରି ଶତାବ୍ଦୀର ତୃତୀୟ ଦଶନ୍ଧି ପର୍ଯ୍ୟନ୍ତ ସ୍କୁଲ କଲେଜରେ ହରିଜନ ଓ ଆଦିବାସୀ ଶ୍ରେଣୀର ପିଲା ପ୍ରାୟ କେହି ପାଠ ପଢ଼ୁ ନ ଥିଲେ । ମୁଁ ୧୯୨୪ ମସିହାରେ ପ୍ରଥମ ଶ୍ରେଣୀରେ ପଢ଼ିଲାବେଳେ, ଆମ ସ୍କୁଲରେ ହରିଜନ ଶ୍ରେଣୀର

ଜଣେମାତ୍ର ପାଣ ପିଲା ପଢ଼ିବାକୁ ଆସୁଥିଲା । ସେ ସ୍କୁଲଘର ଭିତରେ ଅନ୍ୟ-ପିଲାମାନଙ୍କ ସହ ନ ବସି ବାରଣ୍ଡାରେ ବସୁଥିଲା । ଦ୍ୱିତୀୟ ଶ୍ରେଣୀ ବେଳକୁ ସେ ପିଲା ସ୍କୁଲରେ ନ ଥିଲା । ଆମ ଗାଁ ଓ ପାଖ ଗାଁରେ ଅନେକ ବାଉରି, କଣ୍ଡରା, ଧୋବା ଓ ପାଣ ଘର ଥାଇ ମଧ୍ୟ ସେମାନଙ୍କ ଘରୁ କୌଣସି ପିଲା ପ୍ରାଥମିକ ସ୍କୁଲରେ ପୁଣ୍ଡା ପଢ଼ିବାକୁ ଆସୁ ନ ଥିଲେ । ବର୍ତ୍ତମାନ ଶତାବ୍ଦୀର ଶେଷ ଦଶନ୍ଧିରେ ସେ ଅବସ୍ଥା ମଧ୍ୟ ବଦଳି ଯାଇଛି । ବର୍ତ୍ତମାନ ପ୍ରାଇମେରୀ ସ୍କୁଲରେ ପଢ଼ୁଥିବା ୩୬ଲକ୍ଷ ପିଲାଙ୍କ ମଧ୍ୟରେ ପ୍ରାୟ ଛଅଲକ୍ଷ ହରିଜନ ପିଲା ଏବଂ ଆଉ ପ୍ରାୟ ସାଢ଼େ ଛଅଲକ୍ଷ ଆଦିବାସୀ ପିଲା ଅଛନ୍ତି । ହାଇସ୍କୁଲରେ ପଢ଼ୁଥିବା ଆଠଲକ୍ଷ ପିଲାଙ୍କ ମଧ୍ୟରେ ପ୍ରାୟ ୯୦ହଜାର ହରିଜନ ଏବଂ ୭୦ହଜାର ଆଦିବାସୀ ପିଲା ଅଛନ୍ତି । ଅବଶ୍ୟ ସ୍କୁଲରେ ନାମ ଲେଖାଉଥିବା ହରିଜନ ଓ ଆଦିବାସୀ ପିଲାଙ୍କ ମଧ୍ୟରୁ ପ୍ରାଥମିକ ସ୍ତରରେ ପ୍ରାୟ ଶତକଡ଼ା ୭୦ ଭାଗ ଏବଂ ହାଇସ୍କୁଲ ସ୍ତରରେ ଶତକଡ଼ା ପ୍ରାୟ ୮୦ରୁ ୯୦ ଭାଗ ପିଲା ପାଠପଢ଼ା ଛାଡ଼ି ଦେଉଛନ୍ତି । ସ୍କୁଲ କଲେଜରେ ସେମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ହୋଇ ମଧ୍ୟ, ଆଜିଯାଏ ସେମାନେ ସେ ସୁବିଧାର ସମ୍ପୂର୍ଣ୍ଣ ସଦୁପଯୋଗ କରିପାରୁ ନାହାନ୍ତି ।

ବିଂଶ ଶତାବ୍ଦୀର ଆରମ୍ଭ ଓ ପ୍ରଥମାର୍ଦ୍ଧ ତୁଳନାରେ, ଶତାବ୍ଦୀର ଶେଷ ଭାଗରେ ଅଭୂତପୂର୍ବ ଶିକ୍ଷା ପ୍ରସାର ହୋଇଛି । ତଥାପି ୧୯୯୧ ମସିହା ଜନଗଣନା ଅନୁସାରେ ଓଡ଼ିଶାରେ ସାକ୍ଷରତା ପରିମାଣ ଶତକଡ଼ା ପ୍ରାୟ ୪୮ ଦଶମିକ ୫୫ ହୋଇଛି । ମହିଳାମାନଙ୍କ ମଧ୍ୟରେ ସାକ୍ଷରତା ମାତ୍ର ଶତକଡ଼ା ୩୪.୪୦ ଭାଗ ହୋଇଛି । ହରିଜନ ଓ ଆଦିବାସୀଙ୍କ ମଧ୍ୟରେ ସାକ୍ଷରତା ଶତକଡ଼ା ୨୦ ଭାଗରୁ ବେଶି ନୁହେଁ । ହରିଜନ ମହିଳାମାନଙ୍କ ମଧ୍ୟରେ ସାକ୍ଷରତା ଶତକଡ଼ା ୯ ଭାଗ ଓ ଆଦିବାସୀ ମହିଳାମାନଙ୍କ ମଧ୍ୟରେ ସାକ୍ଷରତା ଶତକଡ଼ା ମାତ୍ର ପାଞ୍ଚଭାଗ ହୋଇଛି । ସର୍ବଭାରତୀୟ ସ୍ତରରେ ସାକ୍ଷରତା ଆମ ରାଜ୍ୟଠାରୁ ଅଧିକ ଏବଂ ଭାରତର ଅନ୍ୟ ଉନ୍ନତ ରାଜ୍ୟମାନଙ୍କରେ ସାକ୍ଷରତା ମାତ୍ରା ଖୁବ୍ ବେଶି । କେରଳ ପରି ରାଜ୍ୟରେ ସାକ୍ଷରତା ଶତକଡ଼ା ଶହେ ହୋଇଛି । ଓଡ଼ିଶା ଅପେକ୍ଷା ଭାରତର ଉନ୍ନତ ରାଜ୍ୟମାନଙ୍କରେ ଉଚ୍ଚଶିକ୍ଷା ପ୍ରାପ୍ତ ଲୋକମାନଙ୍କର ମାତ୍ରା ମଧ୍ୟ ଅଧିକ । ସେ ଦୃଷ୍ଟିରୁ ବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଶାରେ ଦ୍ରୁତ ଶିକ୍ଷା ପ୍ରସାର ସତ୍ତ୍ୱେ ଶିକ୍ଷା ପ୍ରସାର ଦିଗରେ ବହୁ ପଥ ଅତିକ୍ରମ କରିବାକୁ ବାକି ଅଛି ।

# ଶିକ୍ଷାର ମାନ

( ୧୩ )

ବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଶାରେ ସ୍କୁଲ୍ କଲେଜ ଏବଂ ସେଥିରେ ନାମ ଲେଖାଉଥିବା ପିଲମାନଙ୍କର ସଂଖ୍ୟା ଦ୍ରୁତ ଗତିରେ ବଢ଼ୁଥିବା ସବୁ ରାଜ୍ୟବାସୀ ଦେଖୁଛନ୍ତି । ସେଥି ସଙ୍ଗେ ସଙ୍ଗେ ଶିକ୍ଷାନୁଷ୍ଠାନମାନଙ୍କରୁ ଶିକ୍ଷା ଶେଷ କରି ବାହାରୁଥିବା ପିଲମାନଙ୍କର ଜ୍ଞାନ ଓ ଚାଲିଚଳଣ ସମ୍ବନ୍ଧେ ଅନୁଭବ କରୁଛନ୍ତି ଏବଂ ସେଥିପାଇଁ ବହୁ ଲୋକ ବ୍ୟକ୍ତ ଉଦ୍‌ବେଗ ପ୍ରକାଶ କରୁଛନ୍ତି । ଘଟଣାଚକ୍ରରେ ମୋ' ଜୀବନର ଗତିପଥରେ ମୁଁ ଓଡ଼ିଶାର ବିଭିନ୍ନ ସ୍ତରରେ ଶିକ୍ଷା ପ୍ରସାର ଓ ଶିକ୍ଷାର ଗୁଣାତ୍ମକ ମାନ ସହିତ ଓତପ୍ରୋତ ଭାବରେ ଜଡ଼ିତ ହୋଇଛି । ପୂର୍ବ ଅଧ୍ୟାୟରେ ଲେଖିଛି ଯେ, ୧୯୨୩ ମସିହା ବେଳକୁ ମୁଁ ଗାଁ ପାଠଶାଳରେ ପଢ଼ା ଆରମ୍ଭ କଲାବେଳକୁ ଆମ ଅଞ୍ଚଳରେ ପୁରୁଣା କାଳିଆ ସରେଇ ପାଠଶାଳ ଏବଂ ସରେଇ ଭାବରେ ନିଯୁକ୍ତ ଅବଧାନମାନେ ନ ଥାନ୍ତି । ଗାଁ ମାନଙ୍କରେ ଲୋକାଲବୋର୍ଡ କିମ୍ବା ଜିଲ୍ଲାବୋର୍ଡ ଦ୍ୱାରା ପରିଚାଳିତ ପ୍ରାଥମିକ ବିଦ୍ୟାଳୟମାନ ଥାଏ । କିନ୍ତୁ ସେ ସ୍କୁଲରେ ଯେଉଁ ଶିକ୍ଷକମାନେ ଥିଲେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ପୁରୁଣା କାଳିଆ ପାଠଶାଳମାନଙ୍କରେ ପଢ଼ିଥିଲେ ଏବଂ ସେହି ଧାରାରେ ତାଙ୍କ ଛାତ୍ରମାନଙ୍କୁ ପଢ଼ାଉଥିଲେ । ସ୍କୁଲମାନଙ୍କରେ ଯେଉଁ ଅଳ୍ପସଂଖ୍ୟକ ପିଲା ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ି ପାଠ ଶେଷ କରୁଥିଲେ, ସେମାନେ ପ୍ରାଥମିକ ସ୍ତରର ବର୍ଣ୍ଣାଶୁଦ୍ଧି, ପଣିକିଆ, କଡ଼ାଗଣ୍ଡା, ଗଣିତ, ସାହିତ୍ୟ ପ୍ରଭୃତି ପାଠ ଶିଖି ଯାଉଥିଲେ । ପ୍ରାଥମିକ ସ୍କୁଲରେ ଯେଉଁ ଗଣିତ, ମାନସାଙ୍କ, ପଣିକିଆ, ହିସାବ କିତାବ ପ୍ରଭୃତି ମୁଁ ଶିଖିଥିଲି, ସତୁରି ବର୍ଷ ପରେ ଆଜି ପର୍ଯ୍ୟନ୍ତ ସେ ସବୁ ମୋର ମନେ ଅଛି ଏବଂ ସେ ସବୁ ଜ୍ଞାନ ଦୈନନ୍ଦିନ ଜୀବନର ଲେଖା ଲେଖି ଓ ହିସାବ କିତାବ କରିବାରେ ଲାଗୁଛି ।

ସେ ସମୟରେ ପ୍ରାଇମେରି ସ୍କୁଲର ପରିବେଶ ଗୁରୁକୁଳ ପରି ନ ଥିଲେ ସୁଦ୍ଧା, ଗ୍ରାମ୍ୟଜୀବନ ସହିତ ସମ୍ପୂର୍ଣ୍ଣ ଭାବରେ ସମନ୍ୱିତ ଥିଲା । ଗାଁ ମୁଣ୍ଡର ଖୋଲା ପଡ଼ିଆରେ ଛୋଟା ବଗିଚା ମଧ୍ୟରେ ସ୍କୁଲର ଚାଳଘରେ ଚଟେଇ ଉପରେ ବସି

ସ୍ଲେଟ୍, ଖଡ଼ି, କାଗଜ କଲମ ସାହାଯ୍ୟରେ ପାଠ ଶିଖି ଯିବାରେ କିଛି ଅସୁବିଧା ନ ଥିଲା । ସ୍କୁଲରେ ବେଞ୍ଚ, ଡେସ୍କ, ଚଉକି, ଟେବୁଲ, ବ୍ଲାକ୍‌ବୋର୍ଡ ପ୍ରଭୃତି କିଛି ଉପକରଣ ନ ଥିଲା । ମାତ୍ର ସ୍କୁଲର ଶିକ୍ଷକମାନେ ପିଲାମାନଙ୍କର ଯତ୍ନ ନେଉଥିଲେ ଏବଂ ପ୍ରାଇମେରୀ ପାଠ ଶେଷକଲା ପିଲାମାନେ ପ୍ରାଇମେରୀ ସ୍ତରର ପାଠ ଭଲରୂପେ ଶିଖି ଯାଉଥିଲେ ।

ନିମ୍ନପ୍ରାଥମିକ ସ୍କୁଲ ଶିକ୍ଷା ପରେ ମୁଁ ଆମ ଗାଁରେ ଥିବା ଉଚ୍ଚପ୍ରାଥମିକ ସ୍କୁଲରେ ଦୁଇବର୍ଷ ପଢ଼ିଥିଲି । ସେ ସ୍କୁଲ ଜିଲ୍ଲାବୋର୍ଡ଼ ଅଧୀନରେ ଥିଲା । ସ୍କୁଲ ଘର ବଡ଼ ଥିଲା ଏବଂ ସେଥିରେ ଇଟା କାନ୍ଥ ଓ ଚୂନ ଚଟାଣ ଥିଲା । ସ୍କୁଲରେ ବ୍ଲାକ୍‌ବୋର୍ଡ଼, ଚଉକି ଟେବୁଲ୍, ଡେସ୍କ, ବେଞ୍ଚ, ମାନଚିତ୍ର ପ୍ରଭୃତି ସମସ୍ତ ଉପକରଣ ଥିଲା । ମାତ୍ର ସେ ସ୍କୁଲରେ ଦୁଇବର୍ଷଯାକ ମୁଁ କିଛି ପଢ଼ି ନଥିଲି । ସ୍କୁଲର ହେଡ଼ପଣ୍ଡିତ ତାଙ୍କର ବ୍ୟକ୍ତିଗତ କାମପାଇଁ ଅଧିକାଂଶ ଦିନ ସ୍କୁଲରେ ଅନୁପସ୍ଥିତ ରହନ୍ତି । ଆମର ସମସ୍ତଙ୍କ ବରଗଛ ମୂଳେ ଖେଳିବା, ସ୍କୁଲପାଖ ଘରବାଡ଼ିମାନଙ୍କରୁ ପିଜୁଳି, ଆମ୍ବ ପ୍ରଭୃତି ଖାଇବା ଏବଂ ସ୍କୁଲ ଯିବା ବାଟରେ କେନ୍ଦୁବଣରେ ପାଚିଲା କେନ୍ଦୁ ଖାଇବା ପ୍ରଭୃତିରେ ଚାଲିଯାଉଥିଲା । ଘରେ ସକାଳେ କିମ୍ବା ରାତିରେ ଆମେ କିଛି ପଢୁ ନ ଥିଲୁ । ଶିକ୍ଷକଙ୍କ ନିଷ୍ଠା ଉପରେ ପିଲାମାନଙ୍କର ପାଠ ଅନେକ ପରିମାଣରେ ନିର୍ଭର କରେ ! ଆମର ସେ ଦୁଇବର୍ଷର ପାଠ ତାହାର ଗୋଟିଏ ପ୍ରମାଣ ।

ଉଚ୍ଚ ପ୍ରାଥମିକ ସ୍କୁଲରୁ ଯାଇ ଯେଉଁ ମାଇନର ସ୍କୁଲରେ ମୁଁ ପଢ଼ିଲି, ସେ ସ୍କୁଲରେ ମଧ୍ୟ ଘରଦ୍ୱାର ଓ ଉପକରଣ ପ୍ରଭୃତି ବିଶେଷ କିଛି ନ ଥିଲା । ଗାଁ ଲୋକଙ୍କର ଚାନ୍ଦା ଭେଦା ଓ ଛାତ୍ରମାନଙ୍କଠାରୁ ଆଦାୟ ସ୍କୁଲ ଦରମାରେ ସେ ସ୍କୁଲ ଚାଲୁଥିଲା । ସ୍କୁଲରେ ଛାତ୍ରାବାସ ନ ଥିଲା । ଗୋଟିଏ ଚାଳିବଖରିର ଚାଳଘର ଓ ଦୁଇଟା ଚାଳିଆରେ ସେ ସ୍କୁଲ ଚାଲିଥିଲା । ଛାତ୍ରାବାସରେ ରହୁଥିବା ପିଲାମାନେ ଓ ଶିକ୍ଷକମାନେ ସ୍କୁଲ ଘରର ଦୁଇଟା ରୁମ୍‌ରେ ତାଙ୍କର ଲୁଗାପଟା ବାକ୍ସ ପ୍ରଭୃତି ରଖୁଥିଲେ ଏବଂ ରାତିରେ ସ୍କୁଲ ଘରର ଚଟାଣରେ କିମ୍ବା ବେଞ୍ଚମାନଙ୍କରେ ଶୋଉଥିଲେ । ତଥାପି ଏହି ଦରିଦ୍ର ପରିବେଶ ମଧ୍ୟରେ ଶିକ୍ଷକମାନେ କେନ୍ଦ୍ର ମାଇନର ପରୀକ୍ଷାରେ ପାସ୍ କରିବା ପାଇଁ ପିଲାମାନଙ୍କୁ ନିଷ୍ଠାର ସହିତ ପଢ଼ାଉଥିଲେ । ମୋର ମନେ ହୁଏ ସେ ସ୍କୁଲରେ ଷଷ୍ଠ ଓ ସପ୍ତମ ଶ୍ରେଣୀରେ ଅଙ୍କ, ସାହିତ୍ୟ, ଇତିହାସ, ଭୂଗୋଳ ପ୍ରଭୃତି ବିଷୟରେ ଆମେ ଯେଉଁ ପାଠ ପଢ଼ିଥିଲୁ ତାହା ଦ୍ୱାରା ଆମେ ନିମ୍ନମାଧ୍ୟମିକ ସ୍ତରର ଯଥୋଚିତ ଜ୍ଞାନ ଅର୍ଜନ କରିଥିଲୁ ଏବଂ ତାହା ଆମକୁ ହାଇସ୍କୁଲ ପାଠରେ ଯଥେଷ୍ଟ ସାହାଯ୍ୟ କରିଥିଲା ।

ମାଇନର ସ୍କୁଲରୁ ପାସ୍ କଲାପରେ ମୁଁ କଟକ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଗ୍ରୁଣବର୍ଷ ମାଟ୍ରିକୁଲେସନ୍ ପଢ଼ିଥିଲି । କହିବାକୁ ଗଲେ କଟକ ରେଭେନ୍‌ସା କଲେଜିଏଟ୍ ସ୍କୁଲ ସେତେବେଳେ ଓଡ଼ିଶାରେ ସର୍ବୋତ୍କୃଷ୍ଟ ହାଇସ୍କୁଲ୍ ଥିଲା । ୧୮୬୮ ମସିହାରୁ ହାଇସ୍କୁଲ ହୋଇଥିବା ସେ ସ୍କୁଲର ସାରା ବିହାର ଓଡ଼ିଶା ପ୍ରଦେଶରେ ଉଚ୍ଚ ନାମ ଥିଲା । ୧୮୬୮ ମସିହାରୁ ୧୯୨୧ ମସିହା ପର୍ଯ୍ୟନ୍ତ ସେହି ସ୍କୁଲ ଘରେ ରେଭେନ୍‌ସା କଲେଜ ଥିଲା । ସ୍କୁଲ ହତାରେ ବି. ଏଡ୍ ଟ୍ରେନିଂ କଲେଜ ଥିଲା ଏବଂ ସେ ସ୍କୁଲ ଟ୍ରେନିଂ କଲେଜର ପ୍ରାକ୍‌ଟିସିଂ ସ୍କୁଲ ଥିଲା । ଟ୍ରେନିଂ କଲେଜର ପ୍ରିନ୍‌ସିପାଲ୍ ଏହାର ମୁଖ୍ୟ ତତ୍ତ୍ୱାବଧାରକ ଥିଲେ । ସ୍କୁଲର ଶିକ୍ଷକମାନେ ସମସ୍ତେ ସରକାରୀ କର୍ମଚାରୀ ଥିଲେ ଏବଂ ପ୍ରତିଯୋଗିତାରେ ସରକାରୀ ଶିକ୍ଷକ ରୂପେ ନିଯୁକ୍ତି ପାଇଥିଲେ । ସ୍କୁଲରେ ବଛାବଛି ହୋଇ ଭଲ ପିଲାମାନେ ନାମ ଲେଖାଉଥିଲେ ଏବଂ ପାଠ ପଢ଼ିବା ପାଇଁ ସ୍କୁଲରେ ଶ୍ରେଣୀଗୃହ, ଆସବାବ୍‌ପତ୍ର, ହଷ୍ଟେଲ, ଖେଳପଡ଼ିଆ ଓ ବ୍ୟାୟାମଶାଳା ପ୍ରଭୃତି ସମସ୍ତ ସୁବିଧା ଥିଲା । ସ୍କୁଲରେ ପୂର୍ଣ୍ଣ ଶୃଙ୍ଖଳା ଥିଲା ଏବଂ କଟକରେ ସେତେବେଳେ ଥିବା ପାଞ୍ଚଗୋଟି ହାଇସ୍କୁଲ ମଧ୍ୟରେ କଲେଜିଏଟ୍ ସ୍କୁଲରେ ସବୁଠାରୁ ଅଧିକ ଭଲ ପାଠ ପଢ଼ା ହେଉଥିଲା । ସ୍କୁଲର ଭଲପିଲାମାନେ ଓଡ଼ିଶାର ଅନ୍ୟ ଜିଲ୍ଲାସ୍କୁଲମାନଙ୍କର ଭଲ ପିଲା ଏବଂ ବିହାରର ପାଟନା ହାଇସ୍କୁଲ ସମେତ ଅନ୍ୟ ଜିଲ୍ଲାସ୍କୁଲର ଭଲପିଲାଙ୍କ ସହ ପ୍ରତିଯୋଗିତା କରୁଥିଲେ । ପ୍ରତିବର୍ଷ ସେ ସ୍କୁଲର ଜଣ ଦୁଇଜଣ ପିଲା ବିହାର ଓଡ଼ିଶା ପ୍ରଦେଶର ମାଟ୍ରିକୁଲେସନ ପରୀକ୍ଷାରେ ପ୍ରଥମ ପାଞ୍ଚଜଣଙ୍କ ମଧ୍ୟରେ ରହୁଥିଲେ । ସେ ସମୟରେ ମାଟ୍ରିକୁଲେସନ ପରୀକ୍ଷାରେ ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀରେ ପାସ୍ କରିଥିବା ପିଲା, ମାଟ୍ରିକୁଲେସନ୍ ପାଠ୍ୟ ବିଷୟ ସବୁ ଭଲରୂପେ ଜାଣିଥିଲେ । ସେମାନେ ଓଡ଼ିଆ ଓ ଇଂରାଜୀରେ ଭଲ ରୂପେ ଲେଖା ପଢ଼ା କରି ପାରୁଥିଲେ ।

ଆଗରୁ ମଧ୍ୟ କହିଛି ଯେ, ଆମେ ରେଭେନ୍‌ସା କଲେଜରେ ଆଇ. ଏ., ବି. ଏ. ପଢ଼ିଲାବେଳେ, ସେ କଲେଜ ଗୋଟିଏ ଆଦର୍ଶ ଅନୁଷ୍ଠାନ ଥିଲା । ସେତେବେଳେ କଲେଜର ଅଧ୍ୟାପକମାନେ ସମସ୍ତେ ଉଚ୍ଚଶିକ୍ଷିତ, ଉଚ୍ଚ ଦରମା ପ୍ରାପ୍ତ ଏବଂ ଉଚ୍ଚମାନର ଜୀବନଯାପନ କରିବା ବ୍ୟକ୍ତି ଥିଲେ ଏବଂ ସମାଜରେ ବିଶେଷ ସମ୍ମାନ ପାଉଥିଲେ । ଅଧ୍ୟାପକଙ୍କ ମଧ୍ୟରୁ ଅନେକ ବିଲାତରୁ ଉଚ୍ଚ ଡିଗ୍ରୀ ପାଇଥିଲେ । ମାତ୍ର ପାଠ ପଢ଼ାଇବାରେ ସବୁ ଅଧ୍ୟାପକଙ୍କ ଦକ୍ଷତା ସମାନ ନ ଥିଲା । କେତେକ ଶିକ୍ଷକ ଛାତ୍ରମାନଙ୍କ ମଧ୍ୟରେ ଉତ୍ତମ ଶିକ୍ଷକ ବୋଲି ଖ୍ୟାତି ଅର୍ଜନ କରିଥିଲେ । ଅନ୍ୟମାନେ ସେପରି ଖ୍ୟାତି ଅର୍ଜନ କରି ପାରି ନ ଥିଲେ ।

ସେତେବେଳେ ସାଧାରଣତଃ ଅଧ୍ୟାପକମାନେ ଗବେଷଣା କରୁ ନ ଥିଲେ ଏବଂ ଛାତ୍ରମାନଙ୍କର ଗବେଷଣା ପାଇଁ ରେଭେନ୍‌ସା କଲେଜ ଖ୍ୟାତି ଅର୍ଜନ କରି ନ ଥିଲା । ମାତ୍ର କଲେଜରୁ ବି. ଏ., ବି. ଏସ୍. ସି. ପାସ୍ କରୁଥିବା ପିଲାମାନେ ପଢ଼ିଥିବା ବିଷୟରେ ଯଥୋଚିତ ଜ୍ଞାନ ଅର୍ଜନ କରୁଥିଲେ ।

ରେଭେନ୍‌ସା କଲେଜରୁ ବି. ଏ. ଅନର୍ସ ପାସ୍ କରି ଆମ୍ଭେମାନେ ପାଟନା କଲେଜରେ ଏମ୍. ଏ. ପଢ଼ିଲୁ । ପଢ଼ାପଢ଼ିରେ କିନ୍ତୁ ରେଭେନ୍‌ସା କଲେଜ ଓ ପାଟନା କଲେଜର ମାନ ସମାନ ଥିଲା । ପାଟନା କଲେଜରେ ମଧ୍ୟ କିଛି ଗବେଷଣା ହେଉ ନ ଥିଲା । ସଉଦ୍ୱାର, ଲାଇବ୍ରେରୀ ଏବଂ ଛାତ୍ରାବାସ ପ୍ରଭୃତି ରେଭେନ୍‌ସା କଲେଜରେ ପାଟନା କଲେଜଠାରୁ ଅଧିକ ଭଲଥିଲା । କେବଳ ରେଭେନ୍‌ସା କଲେଜରେ ବିଭିନ୍ନ ବିଷୟରେ ଏମ୍ ଏ., ଏସ୍. ଏସ୍. ସି. କ୍ଲାସ ଖୋଲା ନ ଥିବାରୁ, ଓଡ଼ିଆ ପିଲାମାନେ ବାଧ୍ୟ ହୋଇ ପାଟନା କଲେଜରେ ଏମ୍. ଏ. ପଢ଼ିବାକୁ ଯାଉଥିଲେ । ପାଟନାର ବିଭିନ୍ନ କଲେଜରେ ଓଡ଼ିଆ ପିଲାମାନେ ବିହାରର ପିଲାମାନଙ୍କ ଅପେକ୍ଷା ଯଥେଷ୍ଟ ଭଲ ପଢ଼ୁଥିଲେ ।

ଏମ୍. ଏ. ପାସ୍ କରି ଆଠବର୍ଷ ଅଧ୍ୟାପନା କାର୍ଯ୍ୟ କଲାପରେ, ମୁଁ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍‌ସରେ ଦୁଇବର୍ଷ ଗବେଷଣା କରିଥିଲି । ସେଠାରେ ପଢ଼ାପଢ଼ିର ରୀତି ଅଲଗା ଥିଲା । ଦିନରାତି ପଢ଼ିବା ଓ ଗବେଷଣା କରିବାପାଇଁ ସେଠାରେ ଯଥେଷ୍ଟ ସୁବିଧା ଥିଲା । ଅଧ୍ୟାପକମାନେ ସମସ୍ତେ ଗବେଷଣାରତ ଥିଲେ । ସକାଳଠାରୁ ଦିନଟାଠାରୁ ଗୋଟାଏ ମଧ୍ୟରେ ବିଭିନ୍ନ ଗାଲେରୀ ବା ହଲ୍‌ରେ ଲେକ୍‌ଚର କ୍ଲାସ ହୁଏ । ସେଥିରେ ଯୋଗ ଦେବାକୁ ପିଲାମାନେ ବାଧ୍ୟ ନୁହନ୍ତି କିମ୍ବା ସେଥିରେ କୌଣସି ଉପସ୍ଥାନ ପଞ୍ଜୀକୃତ ହୁଏ ନାହିଁ । ଆବଶ୍ୟକତା ଅନୁସାରେ ପିଲାମାନେ ବିଭିନ୍ନ କ୍ଲାସରେ ଯୋଗ ଦିଅନ୍ତି । କେଉଁଦିନମାନଙ୍କରେ କେଉଁ ରୁମ୍‌ରେ କେଉଁ ବିଷୟରେ କ୍ଲାସ ସବୁ ହେବ ତାହା ଆଗରୁ କାଲେଣ୍ଡରରେ ଛପା ହୋଇଥାଏ । ଉପରଠାରୁ ବିଶେଷତଃ ସ୍ନାତକୋତ୍ତର ଗବେଷଣାରତ ଛାତ୍ରମାନଙ୍କପାଇଁ ପ୍ରଫେସର-ମାନେ ଆଲୋଚନାଚକ୍ର କରନ୍ତି । ସେଥିରେ ମଧ୍ୟ ଯୋଗଦେବା ପିଲାମାନଙ୍କ ଇଚ୍ଛାଧୀନ । ନିଜର ଆବଶ୍ୟକତା ଅନୁସାରେ ପିଲାମାନେ ପ୍ରଫେସରମାନଙ୍କଠାରୁ ଅନୁମତି ନେଇ ସେ ଆଲୋଚନାଚକ୍ରମାନଙ୍କରେ ଯୋଗ ଦିଅନ୍ତି । କ୍ଲାସ ବା ଆଲୋଚନାଚକ୍ରରେ ଉପସ୍ଥାନ ପଡ଼େ ନାହିଁ କିମ୍ବା ସ୍କୁଲରେ ଘଣ୍ଟା ବାଜେ ନାହିଁ । ସବୁକଥା ଆଗରୁ ନିର୍ଦ୍ଦିଷ୍ଟ ଭାବରେ ଜଣାଥାଏ । ସ୍କୁଲରେ ଅହେତୁକ ଭାବରେ ଏଣୁ ତେଣୁ ଛୁଟି ଗୁଡ଼ାଏ ହୋଇଯାଏ ନାହିଁ । ସ୍କୁଲର ଲାଇବ୍ରେରୀରେ ଆମ ସମୟରେ ଯୁକ୍ତ ଲକ୍ଷରୁ ଅଧିକ ବହି ଥିଲା । ବର୍ତ୍ତମାନ ତାହା ବହୁ ପରିମାଣରେ ବଢ଼ିଯିବଣି ।

ଲାଇବ୍ରେରୀ ସକାଳ ଦଶଟାଠାରୁ ରାତି ଦଶଟା ପର୍ଯ୍ୟନ୍ତ ଖୋଲା ଥାଏ । ଯାହାର ଯେତେ ସମୟ ଇଚ୍ଛା ସେତେ ସମୟ ସେ ପଢ଼ିପାରେ । ଗବେଷଣାରତ ଛାତ୍ରମାନେ ପ୍ରତିଦିନ ଆଠ ଦଶ ଘଣ୍ଟା ସେଥିରେ ପଢ଼ନ୍ତି । ଆବଶ୍ୟକତା ଅନୁସାରେ ଲଣ୍ଡନ ମ୍ୟୁଜିଅମ୍, ଲଣ୍ଡନ ୟୁନିଭରସିଟି ଏବଂ ଇଣ୍ଡିଆ ହାଉସ ପ୍ରଭୃତିରେ ଥିବା ଲାଇବ୍ରେରୀମାନଙ୍କରେ ମଧ୍ୟ ପଢ଼ନ୍ତି । ସ୍କୁଲରେ ଖାଇବାପିଇବା, ମଳ ମୂତ୍ର ତ୍ୟାଗକରିବା, ଗାଧୋଇବା, ବାଳକାଟିବା ପ୍ରଭୃତି ସବୁ ସୁବିଧା ଥାଏ । କୌଣସି ଅସୁବିଧା ଭୋଗ ନକରି ଜଣେ ଛାତ୍ର କ୍ଲାସ ବା ଆଲୋଚନାଚକ୍ରରେ ଯୋଗଦେବା, ଲାଇବ୍ରେରୀରେ ପଢ଼ିବା କିମ୍ବା ଗବେଷଣାପାଇଁ ଆବଶ୍ୟକ ବିଭିନ୍ନ ମେସିନ୍ ବ୍ୟବହାର କରିବା ପ୍ରଭୃତି ସମସ୍ତ କାର୍ଯ୍ୟ କରିପାରେ । ସେପରି ସୁବିଧା ଆମ ଭାରତବର୍ଷରେ ଆଜିପର୍ଯ୍ୟନ୍ତ ଅଧିକାଂଶ ବିଶ୍ୱବିଦ୍ୟାଳୟ ସ୍ତରରେ ମଧ୍ୟ କରାଯାଇ ପାରି ନାହିଁ । ଶିକ୍ଷା ଓ ଗବେଷଣାପାଇଁ ଲଣ୍ଡନ ସ୍କୁଲ ଅଫ୍ ଇକନମିକ୍ସ, ଲଣ୍ଡନ ବିଶ୍ୱବିଦ୍ୟାଳୟ, ଅକ୍ସଫୋର୍ଡ, କାମ୍ବ୍ରିଜ୍, ଆମେରିକାର ହାରଭାର୍ଡ, କଲମ୍ବିଆ ପ୍ରଭୃତି ବିଶ୍ୱବିଦ୍ୟାଳୟମାନଙ୍କରେ ଯେଉଁ ପରିବେଶ ସୃଷ୍ଟି କରାଯାଇଛି ତାହା ଆମ ଓଡ଼ିଶାରେ କାହିଁକି ଭାରତବର୍ଷରେ ମଧ୍ୟ କେଉଁଠାରେ କରାଯାଇ ପାରି ନାହିଁ । ଆମ ଓଡ଼ିଶାର କୌଣସି ଶିକ୍ଷାନୁଷ୍ଠାନ ଇଂଲଣ୍ଡ ବା ଆମେରିକାର ଶିକ୍ଷାନୁଷ୍ଠାନମାନଙ୍କ ସହ ତୁଳନୀୟ ନୁହେଁ ।

ମୋଟ ଉପରେ ଆମ୍ଭମାନଙ୍କର ପଢ଼ା ସମୟରେ ମୋର ଓଡ଼ିଶାରେ ଏବଂ ଭାରତବର୍ଷର ଅନ୍ୟ ପ୍ରଦେଶମାନଙ୍କରେ ଅନୁଭୂତି ଏବଂ ପରେ ପୃଥିବୀର ଅନ୍ୟ ଉନ୍ନତ ଦେଶମାନଙ୍କରେ ଶିକ୍ଷା ବିଷୟରେ ଅନୁଭୂତିରୁ ଏତିକି କୁହାଯାଇ ପାରେ ଯେ ୧୯୪୦—୪୬ ମସିହା ପୂର୍ବରୁ ଓଡ଼ିଶାରେ ସ୍କୁଲ କଲେଜ ସଂଖ୍ୟା ଅଳ୍ପଥିଲା ଏବଂ ସେଥିରେ ଅତି ଅଳ୍ପସଂଖ୍ୟକ ପିଲା ପାଠ ପଢ଼ୁଥିଲେ । ମାତ୍ର ଯେଉଁମାନେ ବିଭିନ୍ନ ସ୍ତରରେ ଅଧ୍ୟୟନ କରି ପରୀକ୍ଷାମାନଙ୍କରେ ଉତ୍ତୀର୍ଣ୍ଣ ହେଉଥିଲେ, ସେମାନେ ସେହି ସ୍ତରମାନଙ୍କର ନିମ୍ନତମ ଜ୍ଞାନ ଅର୍ଜନ କରି ପାରୁଥିଲେ ।

୧୯୪୪ ମସିହାଠାରୁ ବିଶେଷତଃ ସ୍ୱାଧୀନତା ପରଠାରୁ ଉଚ୍ଚଶିକ୍ଷା କ୍ଷେତ୍ରରେ ଓଡ଼ିଶାରେ ଭିନ୍ନ ପରିବେଶ ସୃଷ୍ଟି ହେଲା । ୧୯୪୪ ମସିହାରେ ପୁରୀ, ସମ୍ବଲପୁର, ବାଲେଶ୍ୱର ପ୍ରଭୃତି ସହରମାନଙ୍କରେ ସରକାରୀ ପ୍ରଥମଶ୍ରେଣୀ କଲେଜ ସବୁ ଜିଲ୍ଲାସ୍କୁଲ ଘରମାନଙ୍କରେ ଆରମ୍ଭ ହେଲା । କଲେଜମାନଙ୍କପାଇଁ ଆବଶ୍ୟକ ଶ୍ରେଣୀଗୃହ, ଲାଇବ୍ରେରୀ, ଲାବୋରେଟରୀ, ଛାତ୍ରାବାସ, ଖେଳପଡ଼ିଆ ପ୍ରଭୃତି ତିଆରି ହେବାର ଆଶା ଥିଲେ ମଧ୍ୟ କାର୍ଯ୍ୟରେ ତାହା ହୋଇ ପାରିଲା ନାହିଁ । ଫଳରେ ପଚିଶ ବର୍ଷ କାଳ ସେ କଲେଜମାନ ସ୍କୁଲ ପରିବେଶ ମଧ୍ୟରେ

ରହିଗଲା । ସ୍କୁଲ୍ ଘରମାନଙ୍କରେ ଯେ କୌଣସି ପ୍ରକାରେ ଲାଇବ୍ରେରୀ, ଲାବୋରେଟରୀ ପ୍ରଭୃତି କରାଗଲା । କଲେଜ ସ୍ତରର ଉଚ୍ଚଶିକ୍ଷା ପାଇଁ ଯେପରି ଆସବାବପତ୍ର ଓ ପରିବେଶ ଆବଶ୍ୟକ ତାହା ହୋଇ ପାରିଲା ନାହିଁ । ପଚିଶବର୍ଷ ପରେ ମଧ୍ୟ ସେ କଲେଜମାନଙ୍କର ଲାଇବ୍ରେରୀରେ ଚାରିଲକ୍ଷ ହଜାରରୁ ବେଶି ବହି ନାହିଁ କିମ୍ବା ପଚିଶ ପିଲା ବସିବାପାଇଁ ଲାଇବ୍ରେରୀ ରିଡିଙ୍ଗ୍ ରୁମ୍ ନାହିଁ । ଅଥଚ ସେ ସବୁ କଲେଜମାନଙ୍କରେ ଅନେକ ବିଷୟରେ ଏମ୍. ଏ. ପଢ଼ା ଯାଉଛି ଏବଂ ପ୍ରତି କଲେଜରେ ତିନି ହଜାରରୁ ଅଧିକ ପିଲା ପଢ଼ୁଛନ୍ତି ।

୧୯୬୦ ମସିହା ପରେ, ଲୋକଙ୍କ ଉଦ୍ୟମରେ ଯେଉଁ ଘରୋଇ କଲେଜ-ମାନ ସ୍ଥାପିତ ହେଲା, ସେଗୁଡ଼ିକ ସରକାରୀ କଲେଜମାନଙ୍କଠାରୁ ନିମ୍ନସ୍ତରର ହେଲା । ପ୍ରଥମେ ସେ କଲେଜମାନଙ୍କରେ ବିଶେଷ କିଛି ଘରଦ୍ୱାର, ଆସବାବପତ୍ର, ଓ ଲାଇବ୍ରେରୀ ପ୍ରଭୃତି ନଥିଲା । ସେଥି ମଧ୍ୟରୁ କେତେକ କଲେଜରେ କେତେବର୍ଷ ପରେ ଆସ୍ତେ ଆସ୍ତେ ଘରଦ୍ୱାର ହେଲା । ମାତ୍ର କଲେଜ ସ୍ତରର ଲାଇବ୍ରେରୀ ଲାବୋରେଟରୀ ପ୍ରଭୃତି ହୋଇ ପାରିଲା ନାହିଁ; ଆଉ ଅନେକ କଲେଜରେ ପିଲାମାନେ ଅସ୍ଥାୟୀ ଘରେ ନାମମାତ୍ର ଲାଇବ୍ରେରୀ, ଲାବୋରେଟରୀ ପ୍ରଭୃତି ଥିବା ଅବସ୍ଥାରେ ବହୁକାଳ ପାଠ ପଢ଼ୁଥିଲେ । କଲେଜର ଅଧ୍ୟାପକମାନେ ଅଳ୍ପ ଦରମା ପାଉଥିଲେ । କେତେକ କଲେଜରେ ସେମାନେ କମ୍ ଟଙ୍କା ନେଇ ଅଧିକ ଟଙ୍କାର ରସିଦ୍ ଲେଖି ଦେଉଥିଲେ । ସରକାରୀ କଲେଜମାନଙ୍କଠାରୁ, ସେଗୁଡ଼ିକରେ ଶିକ୍ଷାଦାନ ନିଶ୍ଚିତଭାବେ ନିମ୍ନମାନର ଥିଲା । ୧୯୬୦ ମସିହା ପରେ ଯେଉଁ କଲେଜମାନ ପ୍ରତିଷ୍ଠିତ ହୋଇଥିଲା, ସେଥିରୁ ଅଧିକାଂଶଙ୍କର ଏହିପରି ଅବସ୍ଥା ଥିଲା । ୧୯୮୦ ମସିହା ପରଠାରୁ ବର୍ତ୍ତମାନ ୧୯୯୩ ମସିହା ମଧ୍ୟରେ ରାଜ୍ୟର ସବୁ ଅଞ୍ଚଳରେ ନିଜ ଗାଁ ପାଖରେ ଗୋଟିଏ କଲେଜ କରିବା ଇଚ୍ଛା ଲୋକମାନଙ୍କ ମଧ୍ୟରେ ଅତି ପ୍ରବଳ ହୋଇଛି । ସେମାନଙ୍କର ଧାରଣା ହୋଇଛି ଯେ ନିଜ ଅଞ୍ଚଳରେ ଗୋଟିଏ କଲେଜ ହେଲେ, ସେ ଅଞ୍ଚଳର ପିଲାମାନଙ୍କର ପଢ଼ିବା ସୁବିଧା ହେବ ଏବଂ ସେ ଅଞ୍ଚଳର ଆର୍ଥିକ ଓ ସାମାଜିକ ଉନ୍ନତି ହେବ । ବିଭିନ୍ନ ଅଞ୍ଚଳର ରାଜନୈତିକ ନେତା, ବିଧାନସଭା, ପଞ୍ଚାୟତ, ପଞ୍ଚାୟତ ସମିତି ପ୍ରଭୃତିର ସଭ୍ୟ ଏବଂ ସେ ଅଞ୍ଚଳମାନଙ୍କର ବେକାର ଶିକ୍ଷିତ ଯୁବକମାନେ ଏହି ଧାରଣାକୁ ଦୃଢ଼ୀଭୂତ କରୁଛନ୍ତି ଏବଂ ତାର ସଫଳ ରୂପାୟନପାଇଁ ଲୋକମାନଙ୍କୁ ଉତ୍ସାହ ଦେଉଛନ୍ତି । ସେଥିପାଇଁ ଅନୁମତି ଦେବାପାଇଁ ସରକାର ଓ ବିଶ୍ୱବିଦ୍ୟାଳୟ-ମାନଙ୍କ ଉପରେ ବହୁତ ଚାପ ପଡ଼ୁଛି ଏବଂ ଲୋକପ୍ରତିନିଧି ସରକାର ଲୋକମାନଙ୍କ ପାଖରେ ଅପ୍ରିୟ ନହେବା ଉଦ୍ଦେଶ୍ୟରେ ସେ ଚାପ ଆଗରେ ମୁଣ୍ଡ ନୁଆଁଉଛନ୍ତି ।

କେହି ଧୀର ଚିତ୍ତରେ ବିଚାର କରୁ ନାହାନ୍ତି ଯେ, କଲେଜଟିଏ କରିବାକୁ ହେଲେ କେତେକ ସର୍ବନିମ୍ନ ସମ୍ବଳ, ଘରଦ୍ୱାର, ଉତ୍ତମ ଶିକ୍ଷକ, ଲାଇବ୍ରେରି, ଲାବୋରେଟରୀ ପ୍ରଭୃତି ଆବଶ୍ୟକ । ଏସବୁ ଯୋଗାଡ଼ ନକରି କଲେଜଟିଏ ଆରମ୍ଭ କରିଦେଲେ, ସେ ଅଞ୍ଚଳର ପିଲାମାନଙ୍କୁ ତା'ର ବିଷମୟ ଫଳ ଭୋଗ କରିବାକୁ ପଡ଼ିବ । ଫଳରେ ବିଭିନ୍ନ ସ୍ଥାନରେ ଅବସ୍ଥିତ ମାଇନର କିମ୍ବା ହାଇସ୍କୁଲ ଘରେ ସକାଳଓଳି କଲେଜ ପାଠ ଆରମ୍ଭ ହୋଇ ଯାଉଛି । ଅନ୍ୟ କୌଣସି ସ୍ଥାନ-ମାନଙ୍କରେ ଅସ୍ଥାୟୀ ଚାଳଘରମାନଙ୍କରେ କଲେଜ ଆରମ୍ଭ ହୋଇଯାଉଛି । କର୍ମସଂସ୍ଥାନ ନପାଇଥିବା ଏମ୍.ଏ. ପାସ୍ କରିଥିବା ଯୁବକଯୁବତୀମାନଙ୍କୁ ମାସକୁ ତିନି ଚାରିଶହ ଟଙ୍କା ଦରମା ଦେଇ ଅଧ୍ୟାପକ ଭାବରେ ନିଯୁକ୍ତ କରାଯାଉଛି । ସେମାନେ ସର୍ବଦା ଅନ୍ୟଆଡ଼େ ବିକଳ୍ପ କର୍ମସଂସ୍ଥାନପାଇଁ ଉଦ୍ୟମ କରୁଛନ୍ତି ଏବଂ ଅସ୍ଥାୟୀ ଭାବରେ ଉକ୍ତ କଲେଜମାନଙ୍କରେ ଅଧ୍ୟାପକ ଭାବରେ ରହୁଛନ୍ତି । ଓଡ଼ିଶା ସରକାର ନିୟମ କରିଛନ୍ତି ଯେ ଲୋକମାନେ ନିଜ ଖର୍ଚ୍ଚରେ ନଅ ବର୍ଷ କଲେଜ ଚଳାଇଲେ ସରକାରୀ ଅନୁଦାନ ପାଇବାପାଇଁ ଯୋଗ୍ୟ ବିବେଚିତ ହେବ । ବହୁ ଅଧ୍ୟାପକ ସେହି ଦୀର୍ଘକାଳପାଇଁ ଅପେକ୍ଷା କରିଛନ୍ତି । ଲାଇବ୍ରେରିପାଇଁ ଖଣ୍ଡିଏ ହେଲେ ଆଲମିରା ନାହିଁ କିମ୍ବା ପଚିଶ ଷାଠିଏ ଖଣ୍ଡ ବହି ନାହିଁ । ଅଧ୍ୟାପକ କିମ୍ବା ଛାତ୍ର ଛାତ୍ରୀଙ୍କର ପଢ଼ିବାପାଇଁ କୌଣସି ସୁଯୋଗ ସୁବିଧା ନାହିଁ । ଛାତ୍ରାବାସ, ଖେଳପଡ଼ିଆ, ଶିକ୍ଷକଙ୍କପାଇଁ ରହିବାଘର ପ୍ରଭୃତି କଲେଜର କୌଣସି ଆନୁସଙ୍ଗିକ ସୁବିଧା ନାହିଁ । ଅଥଚ କଲେଜ ଚାଲିଛି । ଛାତ୍ରମାନେ ଉଚ୍ଚମାଧ୍ୟମିକ ଶିକ୍ଷା ବୋର୍ଡ ବା ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେଉଛନ୍ତି । ଅନେକ ପିଲା ପାସ୍ କରି ଯାଉଛନ୍ତି । ଅନ୍ୟ ବହୁ ପିଲା ଫେଲ୍ ହୋଇ ଯାଉଛନ୍ତି ।

୧୯୬୨ ମସିହାରୁ ୧୯୮୦ ମସିହା ମଧ୍ୟରେ, ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଫେସର, ସିଣ୍ଡିକେଟ୍ ସଭ୍ୟ ଏବଂ ଶେଷରେ କୁଳପତି ହିସାବରେ ବାର୍ଷିକ ପରିଦର୍ଶନ, ପରୀକ୍ଷା ସମୀକ୍ଷା, ନୂତନ କଲେଜ କିମ୍ବା ଅବସ୍ଥିତ କଲେଜରେ ନୂତନ ବିଷୟରେ ଶିକ୍ଷା ଆରମ୍ଭ କରିବାକୁ ବିଶ୍ୱବିଦ୍ୟାଳୟର ଅନୁମତି ଦେବା ପ୍ରଭୃତି ବିଷୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧିନରେ ଥିବା ପ୍ରାୟ ସମସ୍ତ ସରକାରୀ ଓ ବେସରକାରୀ କଲେଜ ଦେଖିଥିଲି । ୧୯୬୮ ମସିହାରେ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ବିଭିନ୍ନ କଲେଜ-ମାନଙ୍କୁ ଅନୁଦାନ ଦେବା ଉଦ୍ଦେଶ୍ୟରେ ବିଭିନ୍ନ କଲେଜ ପରିଦର୍ଶନ କରିବାପାଇଁ ଗୋଟିଏ ପରିଦର୍ଶକ ଦଳ ପଠାଇଥିଲେ । ବିଶ୍ୱବିଦ୍ୟାଳୟ ତରଫରୁ ମୁଁ ସେମାନଙ୍କୁ ନେଇ, ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ଅଧିକାଂଶ କଲେଜ

ଦେଖାଇଥିଲି । ସେତେବେଳେ ବଡ଼ ବଡ଼ ସରକାରୀ କଲେଜମାନଙ୍କରେ ସୁଦ୍ଧା ଉଚ୍ଚଶିକ୍ଷାପାଇଁ ବିଶ୍ୱବିଦ୍ୟାଳୟ ନିର୍ଦ୍ଧାରିତ କରିଥିବା ଅତ୍ୟାବଶ୍ୟକ ସୁବିଧାମାନ ନଥିଲା । ଘରୋଇ କଲେଜମାନଙ୍କ କଥା ଭିନ୍ନ । ଅନେକ ଘରୋଇ କଲେଜର ଅବସ୍ଥା ସେମାନଙ୍କୁ ଦେଖାଇବାକୁ ମୋତେ ଲାଜ ଲାଗୁଥିଲା । ଅତି ସାଧାରଣ ଦରକାରୀ ସୁବିଧା, ପ୍ରିନ୍‌ସପାଲଙ୍କ ଅଫିସ୍, ଶ୍ରେଣୀଗୃହ, ଲାଇବ୍ରେରୀ ଏବଂ ଲାବୋରେଟରୀ ପ୍ରଭୃତିର ଅବସ୍ଥା ଯାହା ଥିଲା, ସେଥିରେ ଯେ ସେ କଲେଜ ମାନଙ୍କରେ ଉଚ୍ଚଶିକ୍ଷା କିପରି ଚାଲିଛି ତାହା ଦେଖି ସେମାନେ ଆଶ୍ଚର୍ଯ୍ୟ ହୋଇ-ଥିଲେ । ଅନେକ କଲେଜରେ ଲାଇବ୍ରେରୀ କିମ୍ବା ରିଡିଂରୁମ୍ ନଥିଲା । ତେଣୁ ଲାଇବ୍ରେରୀଆନ ନିଯୁକ୍ତ କରିବା ଆବଶ୍ୟକ ନଥିଲା । ବିଜ୍ଞାନ ଶ୍ରେଣୀର ପିଲାମାନେ ବର୍ଷକୁ ବର୍ଷ ବିଶ୍ୱବିଦ୍ୟାଳୟ ପରୀକ୍ଷା ଦେଉଥିଲେ, ଅଥଚ ଲାବୋରେଟରୀରେ ଷ୍ଟୋଭମାନଙ୍କୁ ଗ୍ୟାସ୍ ଯୋଗାଣ କିମ୍ବା ନିତାନ୍ତ ଆବଶ୍ୟକ ଯନ୍ତ୍ରପାତି ନଥିଲା । ଗୋଟିଏ କଲେଜରେ ବି.ଏ. କ୍ଲାସ ଖୋଲିବାପାଇଁ ଅନୁମତି ଦେବା ନିମିତ୍ତ ବିଶ୍ୱବିଦ୍ୟାଳୟ ତରଫରୁ ମୁଁ ପରିଦର୍ଶନ କରିବାକୁ ଯାଇଥିଲି । ସେ କଲେଜର ଲାଇବ୍ରେରୀରେ ଷାଠିଏ ଖଣ୍ଡରୁ ଅଧିକ ବହି ନଥିଲା ଏବଂ ଅର୍ଥଶାସ୍ତ୍ରରେ ମାତ୍ର ତିନିଖଣ୍ଡ ବହି ଥିଲା । ଏ ଅବସ୍ଥାରେ ପିଲା ଏବଂ ଶିକ୍ଷକ କିପରି ପଢ଼ୁଥିଲେ ଏବଂ ସେ କଲେଜରେ କିପରି ପାଠପଢ଼ା ହେଉଥିଲା ସହଜରେ ଅନୁମେୟ । ଗୋଟିଏ ପିଲା କଲେଜରୁ ପଢ଼ି ବି.ଏ. ପାସ୍ କରିବ, ଅଥଚ ଗୋଟିଏ ବିଷୟରେ ଦଶଖଣ୍ଡ ବହି ଏକାଠି ଥିବା ଦେଖି ନଥିବ, ଏକଥା ଅଚିନ୍ତନୀୟ । ପ୍ରାଥମିକ ବା ମାଇନର ସ୍କୁଲ୍ ଏପରିକି ହାଇସ୍କୁଲରେ ଏପରି ଅବସ୍ଥା ହେଲେ ଚାଲିଯାଇପାରେ । ମାତ୍ର ଏପରି ଅବସ୍ଥାରେ କଲେଜ ଶିକ୍ଷା କିପରି ଚାଲିବ ?

୧୯୮୦ ମସିହା ପରେ ଯେଉଁ ଘରୋଇ କଲେଜ ସବୁ ପ୍ରତିଷ୍ଠିତ ହେଲା ସେଗୁଡ଼ିକର ଅବସ୍ଥା ଆହୁରି ଶୋଚନୀୟ ଥିଲା । ଏହି ନୂଆ କଲେଜମାନ ସ୍ଥାପନ ଉଦ୍ୟମ କୌଣସି ଗୋଟିଏ ଜିଲ୍ଲାରେ ସୀମାବଦ୍ଧ ନଥିଲା । କଳାହାଣ୍ଡି ଜିଲ୍ଲାର ଜଣେ ମନ୍ତ୍ରୀ ମୋତେ କହୁଥିଲେ ଯେ, ତାଙ୍କ ଉଦ୍ୟମରେ କଳାହାଣ୍ଡି ଜିଲ୍ଲାରେ କୋଡ଼ିଏଟି ଘରୋଇ କଲେଜ ସ୍ଥାପିତ ହୋଇଛି । କଳାହାଣ୍ଡିର ଭବାନୀପାଟଣା-ଠାରେ ଯେଉଁ ସରକାରୀ କଲେଜ ଅଛି, ସେଥିରେ ବହୁ ଅଭାବ ଓ ଅସୁବିଧା ଅଛି ଏବଂ ତାହା ସମ୍ବଲପୁର ବିଶ୍ୱବିଦ୍ୟାଳୟ ଅଧୀନରେ ଗୋଟିଏ ଆଦର୍ଶ ବା ବଡ଼ କଲେଜ ନୁହେଁ । ଜଣେ ଅଧ୍ୟାପକ ସେ କଲେଜରେ ଅବସ୍ଥାପିତ ହେଲେ, ସେ ଦଣ୍ଡ ଭୋଗୁଛି ବୋଲି ମନେ କରୁଛି । ଏପରି ସ୍ଥଳେ ଆଉ କୋଡ଼ିଏଟି ନୂତନ କଲେଜରେ ଉଚ୍ଚଶିକ୍ଷା ଦାନର ସୁବିଧା ସୁଯୋଗ କିପରି ହୋଇଥିବ ଅନୁମାନ କରିହେଉ ନାହିଁ । ଖବରକାଗଜମାନଙ୍କରେ ପ୍ରକାଶ ପାଉଛି ଯେ କଟକ, ପୁରୀ

ପ୍ରକୃତ କକ୍ଷାମାନଙ୍କରେ ବିଭିନ୍ନ ବ୍ଲକ୍‌ରେ ତିନି ଚାରି କଲେଜ ଲୋକମାନଙ୍କ ଉଦ୍ୟମରେ ପ୍ରତିଷ୍ଠା କରାଯାଉଛି । ଆହୁରି ଅନେକ ସ୍ଥାନରେ କଲେଜ ସ୍ଥାପନ କରିବାପାଇଁ ଉଦ୍ୟମ ଚାଲିଛି । ପ୍ରତି ବିଧାନସଭା ସଭ୍ୟ ନିଜ ନିଜ ନିର୍ବାଚନ ମଣ୍ଡଳୀରେ ଦୁଇ ଚାରି ଗୋଟି କଲେଜ କରିବାକୁ ଉଦ୍ୟମ କରୁଛନ୍ତି । ସ୍କୁଲ କରିବା ଉଦ୍ୟମଠାରୁ କଲେଜ କରିବାକୁ ଅଧିକ ପସନ୍ଦ କରୁଛନ୍ତି । କାରଣ ସ୍କୁଲ ସ୍ଥାପନ ଅପେକ୍ଷା କଲେଜ ପ୍ରତିଷ୍ଠା ଅଧିକ ଆଖିଦୃଶିଆ ହେବ । କଲେଜର ଧାରଣା ଲୋକମାନଙ୍କ ପାଖରେ ନୂତନ । ଏହା ଉନ୍ନତ ଦେଶମାନଙ୍କରେ ଥିବା କଲେଜ ବିଷୟରେ ଧାରଣା କିମ୍ବା ଆମେ ପଢୁଥିବା କିମ୍ବା ଚାକିରି କରିବାର ପ୍ରଥମ ଅବସ୍ଥା ସମୟର ଧାରଣାଠାରୁ ସଂପୂର୍ଣ୍ଣ ଭିନ୍ନ । କଲେଜ ପ୍ରତିଷ୍ଠା କରିବାକୁ ଉଦ୍ୟମ କରୁଥିବା ବ୍ୟକ୍ତିମାନେ ଭାବୁଛନ୍ତି ଯେ, ବିଶେଷ କିଛି ସମ୍ବଳ ସଂଗ୍ରହ ନକରି, ଘରଦ୍ୱାର ଆସବାବପତ୍ର ଯୋଗାଡ଼ ନକରି, କୌଣସି ମାଇନର କିମ୍ବା ହାଇସ୍କୁଲରେ ସ୍କୁଲ ସମୟ ପୂର୍ବରୁ କଲେଜ ଆରମ୍ଭ କରାଯାଇପାରେ । ଅନ୍ୟ ଆଡ଼େ ଚାକିରି ନପାଇଥିବା ଏମ୍. ଏ., ଏମ୍. ଏସ୍‌ସି. ପାସ୍ କରିଥିବା କେତେକ ଯୁବକଯୁବତୀଙ୍କୁ ମାସକୁ ତିନି ଚାରି ଶହ ଟଙ୍କା ଦରମାରେ ଅଧ୍ୟାପକ ବା ଅଧ୍ୟାପିକା ନିଯୁକ୍ତ କରି, ବିଶ୍ୱବିଦ୍ୟାଳୟରେ ଜମାଦେବା ଟଙ୍କା ପ୍ରଥମରେ ଚାନ୍ଦା ଭେଦା ଦ୍ୱାରା ସଂଗ୍ରହ କରି କଲେଜ ଆରମ୍ଭ କରାଯାଇପାରେ । ପରେ ରାଜ୍ୟ-ସରକାର ଏବଂ ବିଶ୍ୱବିଦ୍ୟାଳୟ ଉପରେ ଚାପ ପକାଇ କଲେଜ ପ୍ରତିଷ୍ଠାପାଇଁ ଅନୁମତି ଅଣାଯାଇପାରିବ ।

ଚଉଦ ବର୍ଷ ତଳେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିବା ସମୟରେ, ଦିନେ କୌଣସି କାର୍ଯ୍ୟରେ ଶିକ୍ଷା ମନ୍ତ୍ରୀଙ୍କ ଅଫିସ୍‌ରେ ବସିଥିଲି । ଶିକ୍ଷାବିଭାଗର ସଚିବ ମଧ୍ୟ ସେଠାରେ ଉପସ୍ଥିତ ଥିଲେ । ସେତେବେଳେ ଜଣେ ଜଣାଶୁଣା ରାଜନୈତିକ କର୍ମୀ ଆଉ ଦୁଇ ତିନି ଜଣ କର୍ମୀଙ୍କ ସହ ସେଠାରେ ପହୁଞ୍ଚି କୌଣସି ଗୋଟିଏ ମାଇନର ସ୍କୁଲରେ ସକାଳଓଳି ଗୋଟିଏ ପ୍ରସ୍ତାବିତ କଲେଜର କ୍ଲାସ କରିବାପାଇଁ ମନ୍ତ୍ରୀଙ୍କଠାରୁ ଅନୁମତି ମାଗିଲେ । ସେତିକିବେଳେ ଶିକ୍ଷା ସଚୀବ କହିଦେଲେ ଯେ, ସ୍କୁଲମାନଙ୍କରେ ଆଉ କଲେଜ କ୍ଲାସ କରିବାକୁ ମନା କରିଦେଇ ଅଳ୍ପଦିନ ତଳେ ଗୋଟିଏ ଚିଠି ସବୁ ସ୍କୁଲକୁ ପଠାଯାଇଛି । କାରଣ ସ୍କୁଲମାନଙ୍କରେ କଲେଜ କ୍ଲାସ ହେଲେ ସ୍କୁଲ କାର୍ଯ୍ୟକ୍ରମରେ ବହୁ ବାଧାବିଘ୍ନ ଉପୁଜୁଛି । ଏକଥା ଶୁଣି ସେ କର୍ମୀଜଣଙ୍କ ଶିକ୍ଷା ସଚୀବଙ୍କୁ ଅତି କର୍କଶ ଭାଷାରେ ଗାଳିଦେଲେ । ଠିଆ ହୋଇପଡ଼ି କହିଲେ ଯେ "ଆପଣମାନେ ରାଜ୍ୟ ଚଳାଉଛନ୍ତି, ଆମ୍ଭେମାନେ ଯାଉଛୁ" । ଶିକ୍ଷା ସଚୀବ ନୀରବ ରହିଲେ । ମନ୍ତ୍ରୀ

ସେ କର୍ମୀଙ୍କୁ ବସିବାକୁ କହିଲେ । ଆମ୍ଭେମାନେ କାର୍ଯ୍ୟ ଶେଷ କରି ଶୀଘ୍ର ଚାଲି ଆସିଲୁ । ସେ କର୍ମୀମାନେ ସେହିଠାରେ ବସିଥିଲେ । ମୁଁ ବର୍ତ୍ତମାନ ଦେଖୁଛି ଯେ, ସେହି ପ୍ରକ୍ରିୟାରେ ବର୍ତ୍ତମାନ ବହୁ ସ୍କୁଲରେ ସକାଳଓଳି କଲେଜ କ୍ଲାସ ଆରମ୍ଭ ହୋଇଯାଉଛି । କଲେଜ ପାଇଁ ଘରଦ୍ୱାର କରିବାକୁ ପଡ଼ୁନାହିଁ କିମ୍ବା କୌଣସି ଆସବାବପତ୍ର କିଣିବାକୁ ପଡ଼ୁନାହିଁ । ଆମ ଗାଁ ବାଳିକା ସ୍କୁଲରେ ମଧ୍ୟ ଗୋଟିଏ ମହିଳା କଲେଜର ପ୍ରଥମ ଓ ଦ୍ୱିତୀୟ ବାର୍ଷିକ କଳାର ଶ୍ରେଣୀ ଚାଲିଛି । ତୃତୀୟ ଚତୁର୍ଥ ବାର୍ଷିକ ପ୍ରଭୃତି ଶ୍ରେଣୀ ଖୋଲିବାକୁ ଉଦ୍ୟମ ହେଉଛି ।

ଅନେକ ଅଞ୍ଚଳର ବହୁ ଲୋକ ଶିକ୍ଷା ପ୍ରସାରର ମହତ ଉଦ୍ଦେଶ୍ୟରେ କଲେଜ ସ୍ଥାପନ ନିମିତ୍ତ ଉଦ୍ୟମ କରୁଛନ୍ତି । ଆଉ କେତେକ ଲୋକପ୍ରିୟତା ପାଇଁ, ଏପରି ଉଦ୍ୟମ କରୁଛନ୍ତି । କେତେକ ମଧ୍ୟ ଟଙ୍କା ଦେଇ କିମ୍ବା ଅନ୍ୟ ଉପାୟରେ ପ୍ରଭାବ ବିସ୍ତାର କରି, ନିଜ ନାମରେ କିମ୍ବା ନିଜର ପିତାମାତାଙ୍କ ନାମରେ ନାମିତ କରି କଲେଜ ଆରମ୍ଭ କରି ଦେଇଛନ୍ତି । ସେମାନେ ଭାବୁଛନ୍ତି ତାହା ଦ୍ୱାରା ଚିରକାଳ ତାଙ୍କ ନାମ ରହିଯିବ । କିନ୍ତୁ ଏସବୁ କଲେଜରେ ପିଲାମାନେ ନାମକୁ ମାତ୍ର କଲେଜ ପାଠ ପଢ଼ୁଛନ୍ତି । ସରକାରୀ ସ୍କୁଲରେ ପିଅନମାନେ ମାସକୁ ହଜାରେ ଟଙ୍କା ପାଉଥିଲା ବେଳେ, ଏପରି କଲେଜରେ ଅସ୍ଥାୟୀ ଶିକ୍ଷକମାନେ ତିନି ଚାରିଶହ ଟଙ୍କା ଦରମା ପାଉଥିବାରୁ, ସବୁବେଳେ ଅସନ୍ତୁଷ୍ଟ ହୋଇ ଅନ୍ୟଆଡ଼େ ଚାକିରି ଖୋଜୁଛନ୍ତି । କଲେଜ ପଢ଼ାର କୌଣସି ସୁବିଧା ନ ଥାଇ ପଢ଼ା ହେଉଥିବାରୁ ପିଲାମାନେ ମଧ୍ୟ ସବୁବେଳେ ଅସନ୍ତୁଷ୍ଟ ଓ ବିଶୃଙ୍ଖଳିତ ।

କେତେକ ଶିକ୍ଷାବିତ୍ ମଧ୍ୟ ଲୋକପ୍ରିୟତା ଅର୍ଜନ କରିବା ଉଦ୍ଦେଶ୍ୟରେ ହେଉ କିମ୍ବା ନିଜର ସୁଚିନ୍ତିତ ବଦ୍ଧମୂଳ ଧାରଣା ହେରୁ ହେଉ, ମତପ୍ରକାଶ କରୁଛନ୍ତି ଯେ, କୌଣସି ସୁବିଧା ନ ଥାଇ ମଧ୍ୟ କଲେଜ ପ୍ରତିଷ୍ଠା କରି ଶିକ୍ଷାର ପ୍ରସାର ହେଉ । ରାଜ୍ୟରେ ଯେତେ ସଂଖ୍ୟାରେ ସମ୍ଭବ ଯୁବକଯୁବତୀମାନେ ଉଚ୍ଚ ଶିକ୍ଷିତ ହୋଇଥାନ୍ତୁ । ସେମାନେ କହନ୍ତି, ସତ୍ୟବାଦୀରେ ତ ପିଲାମାନେ ଗଛମୂଳେ ପାଠ ପଢ଼ୁଥିଲେ । ରାଜ୍ୟର ସମସ୍ତ ହିତାକାଂକ୍ଷୀ ବୁଦ୍ଧିଜୀବୀ ରାଜ୍ୟରେ ଉଚ୍ଚ ଶିକ୍ଷା ପ୍ରସାର ଇଚ୍ଛା କରନ୍ତି । କିନ୍ତୁ କିଛି ଶିକ୍ଷା ନ ଦେଇ ସାର୍ଟିଫିକେଟ ବାଣ୍ଟିବା ଏବଂ ଶିକ୍ଷା ପରିବର୍ତ୍ତେ କୁଶିକ୍ଷା ପ୍ରସାର କରିବା ବିଷୟରେ ଅନେକ ଶିକ୍ଷାବିତ୍ ଦ୍ୱିଧା ପ୍ରକାଶ କରୁଛନ୍ତି । ଶିକ୍ଷା ପ୍ରସାରରେ ଶିକ୍ଷାର ନିମ୍ନତମ ମାନରକ୍ଷା କରିବାକୁ ସେମାନେ ଚାହୁଁଛନ୍ତି । ସତ୍ୟବାଦୀରେ ଗଛମୂଳେ ଯିନା ପଢ଼ା ହେଉଥିଲା, କିନ୍ତୁ ସ୍କୁଲର ଶିକ୍ଷକମାନେ ଅତି ଉଚ୍ଚକୋଟିର ଜ୍ଞାନୀ ଏବଂ ଆଦର୍ଶ ପଣ୍ଡିତ ଥିଲେ ।

ସେଠାରେ ସେମାନେ ପିଲମାନଙ୍କୁ ଅତି ଶୃଙ୍ଖଳିତ ଆଦର୍ଶ ଜୀବନଯାପନ କରିବାକୁ ଶିକ୍ଷା ଦେଉଥିଲେ । ସ୍କୁଲରେ ବଡ଼ ଲାଇବ୍ରେରୀ ପ୍ରତିଷ୍ଠା କରିଥିଲେ । ଉଚ୍ଚକୋଟିର ଶିକ୍ଷାଦାନ ହେତୁ, ସେ ସ୍କୁଲର ଛାତ୍ରମାନେ ଅନ୍ୟ ସ୍କୁଲମାନଙ୍କର ଛାତ୍ରମାନଙ୍କଠାରୁ ଅଧିକ ଜ୍ଞାନ ଅର୍ଜନ ସହ ଭବିଷ୍ୟତରେ ସମାଜସେବୀ, ନୀ.ିବାନ୍ ଓ କର୍ତ୍ତବ୍ୟନିଷ୍ଠ ନାଗରିକ ହେବାକୁ ଶିକ୍ଷା ପାଉଥିଲେ । ଆଜିକାଲିର ଅନ୍ନ-ମାନର ସ୍କୁଲ କଲେଜମାନଙ୍କରେ ଛାତ୍ରମାନେ ସେପରି କିଛି ଶିକ୍ଷା ପାଉଛନ୍ତି ବୋଲି କେହି କହି ପାରିବେ କି ? ଶିକ୍ଷାଦାନ ପାଇଁ ସୁବିଧା ନ ଥାଇ ମଧ୍ୟ ଯଦି ଶିକ୍ଷକମାନେ ଜ୍ଞାନୀ ଓ ନିଷ୍ଠାପର ଥିବେ ଏବଂ ଛାତ୍ରଛାତ୍ରୀମାନେ ଜ୍ଞାନ ପିପାସୁ ଥିବେ, ତେବେ ବି ଶିକ୍ଷାରମାନ ରକ୍ଷା କରାଯାଇ ପାରିବ । କିନ୍ତୁ ସେପରି ଅବସ୍ଥା ନବ ପ୍ରତିଷ୍ଠିତ ସବୁେଇ ଶିକ୍ଷାନୁଷ୍ଠାନ ମାନଙ୍କରେ ଅଛି କି ? ସେଠାରେ କେବଳ ଅଛି ଶିକ୍ଷାଦାନର ସମସ୍ତ ସୁବିଧାର ଅଭାବ, ପଥପ୍ରଦର୍ଶନହୀନ ଛାତ୍ରଛାତ୍ରୀଙ୍କର ବିଶ୍ୱ-ବିଦ୍ୟାଳୟ କିମ୍ବା ବୋର୍ଡ଼ ପରୀକ୍ଷାରେ ପାସ୍ କରି ପ୍ରମାଣପତ୍ର ଲାଭ କରିବାର ବଳବତୀ ଇଚ୍ଛା ଏବଂ ଅନ୍ୟ କର୍ମସଂସ୍ଥାନ ଉପାୟବିହୀନ ଶିକ୍ଷକମାନଙ୍କର ଦରିଦ୍ର ଓ ହତାଶ ଭାବରେ ସମୟ ଯାପନ । ଏହିଭଳି ଶିକ୍ଷା ପ୍ରଚଳନ ଲୋକମାନେ ମଧ୍ୟ ଚାହୁଁଛନ୍ତି । ସେମାନେ କହନ୍ତି ନାହିଁ ମାମୁଁ ଠାରୁ କଣା ମାମୁଁ ଭଲ । ଉଚ୍ଚଶିକ୍ଷାର ପ୍ରମାଣପତ୍ର ପାଇଲେ ପିଲା ଚାକିରି ବଜାରରେ ପ୍ରବେଶ କରିପାରିବ ଏବଂ ସମାଜରେ ତା'ର ପ୍ରତିଷ୍ଠା ବଢ଼ିବ ।

ଏ ସମସ୍ୟାରେ ଶିକ୍ଷା ବିଷୟରେ ବହୁ ତତ୍ତ୍ୱ ଓ ପ୍ରଶ୍ନ ଜଡ଼ିତ ଅଛି । ପ୍ରାଥମିକ, ମାଧ୍ୟମିକ ଓ ଉଚ୍ଚଶିକ୍ଷାର ରୂପ କ'ଣ ହେବା ଉଚିତ ? ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା ସହିତ ଉଚ୍ଚଶିକ୍ଷା ସାର୍ବଜନୀନ ହେବା ଉଚିତ କି ? ଏ ସବୁ ପ୍ରଶ୍ନ ଆମ ଦେଶରେ ବହୁକାଳ ହେଲା ଆଲୋଚିତ ହେଉଛି । ପ୍ରାଥମିକ ଶିକ୍ଷା ସାର୍ବଜନୀନ ହେବା ଏବଂ ମାଧ୍ୟମିକ ଶିକ୍ଷା ସାର୍ବଜନୀନ ଏବଂ ଅଧିକରୁ ଅଧିକ ଧନ୍ଦାମୂଳକ ହେବା ଉଚିତ ବୋଲି ଅଧିକାଂଶ ଲୋକ ଏକମତ ହେଉଛନ୍ତି । ପ୍ରାଥମିକ ଶିକ୍ଷା ସାର୍ବଜନୀନ ହେବା ନୀତି ସରକାର ଗ୍ରହଣ କରିଛନ୍ତି । ଉଚ୍ଚଶିକ୍ଷା କିନ୍ତୁ ଯେଉଁମାନେ ଉଚ୍ଚ ଶିକ୍ଷା ପାଇବାପାଇଁ ଉପଯୁକ୍ତ, ସେମାନଙ୍କ ମଧ୍ୟରେ ସୀମାବଦ୍ଧ ରହିବା ଉଚିତ ବୋଲି ଅଧିକାଂଶ ଲୋକ ମତ ଦେଉଛନ୍ତି । ବାନ୍ଧିନ୍ନ ଶିକ୍ଷା ସମସ୍ୟା ଆଲୋଚନା କରିବା ଏଠାରେ ଉଦ୍ଦେଶ୍ୟ ନୁହେଁ । କେବଳ ବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧିରୁ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଶିକ୍ଷାର ପ୍ରସାର ସହିତ ଶିକ୍ଷାର ମାନ କିପରି ହ୍ରାସ ପାଇଛି ତାହାର ସୂଚନା ଦିଆ ଯାଉଛି ।

ଶିକ୍ଷାଦାନ ପାଇଁ ସୁବିଧା ନକରି ଉଚ୍ଚଶିକ୍ଷା ପ୍ରସାର କରିବା ଦ୍ୱାରା ଶିକ୍ଷାର ମାନ କିପରି କମି ଯାଉଛି, ତାହା ବର୍ତ୍ତମାନ ଅଧିକାଂଶ ଲୋକ ଅନୁଭବ କରି

ପାରୁଛନ୍ତି । ଆମ୍ଭମାନଙ୍କ ପରି ଯେଉଁମାନେ କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଛାତ୍ରମାନଙ୍କୁ ଶିକ୍ଷାଦାନ କରୁଥିଲେ ଏବଂ ରାଜ୍ୟ ଓ କେନ୍ଦ୍ର ଲୋକସେବା ଆୟୋଗ, ବିଶ୍ୱବିଦ୍ୟାଳୟ ଏବଂ ବ୍ୟାଙ୍କ୍ ପ୍ରଭୃତି ବହୁ ସଙ୍ଗଠନରେ ନିଯୁକ୍ତିପାଇଁ ପ୍ରାର୍ଥୀ ବାଛିବାରେ ସାହାଯ୍ୟ କରୁଥିଲେ, ସେମାନେ ଆଜିକାଲିର କଲେଜ ଓ ବିଶ୍ୱବିଦ୍ୟାଳୟରେ ଶିକ୍ଷାଲାଭ କରି ଡିଗ୍ରୀ ପାଇଥିବା ପିଲାମାନଙ୍କର ଜ୍ଞାନର ଗଭୀରତା ସମ୍ୟକ ଭାବେ ଜାଣି ପାରିଛନ୍ତି । ବି.ଏ. ପାସ୍ କରି ଯେଉଁ ପିଲାମାନେ ଏମ୍.ଏ ପଢ଼ିବାପାଇଁ ସ୍ନାତକୋତ୍ତର ଶ୍ରେଣୀରେ ନାମ ଲେଖାଉଛନ୍ତି । ସେମାନେ ସାଧାରଣ ଭାବରେ ପାସ୍ କରିବା ପିଲାଙ୍କଠାରୁ ଉଚ୍ଚ ମାନର ପିଲା । ପ୍ରତିଯୋଗିତାରେ ଜିତି ସେମାନେ ସ୍ନାତକୋତ୍ତର ଶ୍ରେଣୀମାନଙ୍କରେ ନାମ ଲେଖାଉଛନ୍ତି । ସାଧାରଣ ଭାବେ ଆଇ. ଏ କିମ୍ବା ବି.ଏ. ପାସ୍ କରିଥିବା ପିଲାମାନେ ଆଜିକାଲି ଓଡ଼ିଆରେ କିମ୍ବା ଇଂରାଜୀରେ ନିର୍ଭୁଲ ଭାବେ ଦୁଇ ତିନି ପୃଷ୍ଠା ଲେଖି ପାରୁ ନାହାନ୍ତି । ଜଣେ ଉଚ୍ଚ ଶିକ୍ଷିତ ବ୍ୟକ୍ତି ଯେପରି ଲେଖାପଢ଼ା, ହିସାବ ପତ୍ର ପ୍ରଭୃତି କରିବା ଆଶା କରାଯାଏ, ସେପରି ଦକ୍ଷତା ସେମାନେ ଅର୍ଜନ କରିପାରୁ ନାହାନ୍ତି । କଲେଜରେ ପଢ଼ୁଥିବା ବିଷୟରେ ସେମାନେ ବିଶେଷ କିଛି ଜାଣନ୍ତି ନାହିଁ । ବିଭିନ୍ନ ସ୍ତରର ପାଇଁ ଲୋକସେବା ଆୟୋଗ କିମ୍ବା କୌଣସି ପ୍ରାର୍ଥୀ ବାଛିବା କମିଟି ପାଖରେ ସାକ୍ଷାତ କରିବାକୁ ଆସିଥିବା ପ୍ରାର୍ଥୀମାନଙ୍କୁ ଅତି ସାଧାରଣ ପ୍ରଶ୍ନଟିଏ ପଚାରିଦେଲେ ମଧ୍ୟ ସେମାନେ ତା'ର ଉତ୍ତର ଦେଇ ପାରୁ ନାହାନ୍ତି । ଅନେକ ପିଲା ସମ୍ବଲପୁର କଟକର କେଉଁ ଦିଗରେ ଅବସ୍ଥିତ, ମାଇଲକ କେତେ କିଲୋମିଟର, ଦାମନଯୋଡ଼ି କେଉଁଠି, ପୂର୍ବର କୋରାପୁଟ ଜିଲ୍ଲା ବର୍ତ୍ତମାନ କେତେଗୋଟି ଜିଲ୍ଲାରେ ବିଭକ୍ତ ହେଲା, ଓଡ଼ିଶାର ଲୋକସଂଖ୍ୟା କେତେ, ଜମି କିପରି ମାପ କରାଯାଏ, ଏକରକେ କେତେ ଡିସ୍‌ମିଲ୍ ପ୍ରଭୃତି ଅତି ସାଧାରଣ ପ୍ରଶ୍ନର ଉତ୍ତର ଦେଇ ପାରନ୍ତି ନାହିଁ । ଅଧିକାଂଶ ପିଲା ତାଙ୍କ ପଢ଼ା ବିଷୟରେ କିମ୍ବା ଓଡ଼ିଆ ବା ଇଂରାଜୀରେ ସାଧାରଣ ବହି ଦଶ ପନ୍ଦର ଖଣ୍ଡ ପଢ଼ି ନାହାନ୍ତି । ସେମାନେ କୌଣସି ଇଂରାଜୀ କିମ୍ବା ଓଡ଼ିଆ ଖବରକାଗଜ ବା ପତ୍ରପତ୍ରିକା ନିୟମିତ ଭାବରେ ପଢ଼ନ୍ତି ନାହିଁ । ଅଧିକାଂଶ ଘରୋଇ କଲେଜରେ କମନ୍‌ରୁମ୍‌ର ବ୍ୟବସ୍ଥା ନାହିଁ । କମନ୍‌ରୁମ୍ କିମ୍ବା ଲାଇବ୍ରେରୀ ପାଠାଗାରକୁ ବିଭିନ୍ନ ପତ୍ରପତ୍ରିକା ଆସେ ନାହିଁ । ଶିକ୍ଷକ ବା ଛାତ୍ର-ମାନେ ସେଗୁଡ଼ିକ ପଢ଼ିପାରନ୍ତି ନାହିଁ । ଅଧିକାଂଶ କଲେଜରେ ଏପରି ଅବସ୍ଥା ହେତୁ ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କ ଜ୍ଞାନ ଏବଂ ଜ୍ଞାନ ଅର୍ଜନ କରିବା ଉପାୟ ଅତି ସୀମିତ । ମୋର ଅନୁମାନ ହୁଏ, ବଡ଼ କଲେଜ ଏବଂ ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ଶ୍ରେଣୀମାନଙ୍କରେ ପଢ଼ୁଥିବା ଶତକଡ଼ା ଦଶ ବାର ଭାଗ ଛାତ୍ର ସାଧାରଣ ଛାତ୍ର-ମାନଙ୍କଠାରୁ ଉଚ୍ଚରେ । ଆଉ ପନ୍ଦର କୋଡ଼ିଏ ଭାଗ ଛାତ୍ର ସାଧାରଣ ଛାତ୍ର ଏବଂ

ସେମାନଙ୍କର ଜ୍ଞାନ ଚଳନୀୟ । ଏମାନଙ୍କ ପରେ ଶତକଡ଼ା ପ୍ରାୟ ୭୦ ଭାଗ ଗ୍ରନ୍ଥ ସାଧାରଣ ଗ୍ରନ୍ଥମାନଙ୍କ ତଳେ ଏବଂ ସେମାନଙ୍କର ଜ୍ଞାନ ଅତି ସୀମିତ ।

ଶିକ୍ଷାଦାନ ଓ ପାଠ ପଢ଼ିବାପାଇଁ ସୁବିଧା ନ ଥାଇ ବିଭିନ୍ନ ଶିକ୍ଷାନୁଷ୍ଠାନ ସ୍ଥାପନ କରିବାର ଗୋଟିଏ ବିଷମୟ ପରିଣାମ ବର୍ତ୍ତମାନ ରାଜ୍ୟର ସବୁଅଞ୍ଚଳେ ଜନସାଧାରଣ ନିଜ ଆଖି ଆଗରେ ଦେଖି ପାରୁଛନ୍ତି । ମାଧ୍ୟମିକ ଶିକ୍ଷାବୋର୍ଡ ଏବଂ ବିଶ୍ୱବିଦ୍ୟାଳୟମାନେ ବିଭିନ୍ନ ଡିଗ୍ରୀପାଇଁ ପାଠ୍ୟକ୍ରମ ନିର୍ଦ୍ଧାରିତ କରିଛନ୍ତି ଏବଂ ବିଭିନ୍ନ ବିଷୟରେ ପାଠ୍ୟପୁସ୍ତକମାନ ସୁପାରିସ୍ କରିଛନ୍ତି । ଉଦ୍ଦେଶ୍ୟ ହେଲା, ନିର୍ଦ୍ଧାରିତ ପାଠ୍ୟକ୍ରମ ଅନୁସାରେ ସ୍କୁଲ ଓ କଲେଜମାନଙ୍କରେ ପିଲାମାନଙ୍କୁ ଶିକ୍ଷା ଦିଆଯିବ, ବିଶ୍ୱବିଦ୍ୟାଳୟ ଏବଂ ମାଧ୍ୟମିକ ଶିକ୍ଷାବୋର୍ଡ କର୍ତ୍ତୃପକ୍ଷ, ପିଲାମାନେ ନିର୍ଦ୍ଧାରିତ ବିଷୟମାନଙ୍କରେ କିପରି ଜ୍ଞାନ ଅର୍ଜନ କରିଛନ୍ତି, ତାହା ଶିକ୍ଷକମାନଙ୍କ ଦ୍ୱାରା ପରୀକ୍ଷା କରାଇବେ ଏବଂ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ପିଲାମାନେ ବୋର୍ଡ କିମ୍ବା ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କଠାରୁ ସାର୍ଟିଫିକେଟ ବା ପ୍ରମାଣପତ୍ର ପାଇବେ । ସେ ପ୍ରମାଣପତ୍ର ବିଭିନ୍ନ ଗ୍ରନ୍ଥଗ୍ରାହୀଙ୍କର ଯୋଗ୍ୟତାର ନିଦର୍ଶନ ହେବ ଏବଂ ତାହା ବଳରେ ସେମାନେ ବିଭିନ୍ନ କ୍ଷେତ୍ରରେ ନିଯୁକ୍ତି ପାଇବାପାଇଁ ଯୋଗ୍ୟ ବିବେଚିତ ହେବେ ।

ମାତ୍ର ସ୍କୁଲ କଲେଜରେ ଶିକ୍ଷକ ଓ ଅନ୍ୟ ବହୁ ସୁବିଧାର ଅଭାବ ହେତୁ, ପିଲାମାନେ ନିର୍ଦ୍ଧାରିତ ବିଷୟମାନଙ୍କରେ ଆଶାନୁରୂପ ଶିକ୍ଷା ପାଇ ପାରୁ ନାହାନ୍ତି ଏବଂ ଜ୍ଞାନ ଅର୍ଜନ କରିପାରୁ ନାହାନ୍ତି । ଅଥଚ ନ୍ୟାୟ ବା ଅନ୍ୟାୟରେ ବୋର୍ଡ ବା ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ବେଶି ନମ୍ବର ରଖି ପାସ୍ କରିଯିବାକୁ ପିଲା ଓ ତାଙ୍କର ଅଭିଭାବକମାନେ ଇଚ୍ଛା କରୁଛନ୍ତି । ଫଳରେ ବୋର୍ଡ ଏବଂ ବିଶ୍ୱବିଦ୍ୟାଳୟ-ମାନଙ୍କର ପରୀକ୍ଷାମାନଙ୍କରେ ସବୁଆଡ଼େ ବ୍ୟାପକ ଭାବରେ କପି ହେଉଛି । ୧୯୪୦ ମସିହା ପୂର୍ବରୁ ଆମ୍ଭେମାନେ ସ୍କୁଲ କଲେଜରେ ପଢ଼ୁଥିବା ବେଳେ ପାଞ୍ଚ ଶହ ପିଲାଙ୍କ ମଧ୍ୟରେ ଦୁଇତିରିଜଣ ଯୁଦ୍ଧା କପି କରିବା ଦେଖା ଯାଉ ନଥିଲା । କପି କରି ପରୀକ୍ଷାରେ ପାସ୍ କରିବା ସାଧାରଣ ପିଲାଙ୍କର ଅଭ୍ୟାସ ନ ଥିଲା । ୧୯୪୪ ମସିହାରୁ ପ୍ରାୟ ୧୯୭୦ ମସିହା ପର୍ଯ୍ୟନ୍ତ ଆମ୍ଭେମାନେ କଲେଜ ଓ ବିଶ୍ୱବିଦ୍ୟାଳୟରେ ଚାକିରି କରୁଥିବା ବେଳେ ମଧ୍ୟ କପିକରି ପାସ୍ କରିବା ସାଧାରଣ ପିଲାଙ୍କର ଅଭ୍ୟାସ ନ ଥିଲା । କିନ୍ତୁ ୧୯୭୦ ମସିହା ପରେ, ସେ ଅବସ୍ଥା ସମ୍ପୂର୍ଣ୍ଣରୂପେ ବଦଳିଗଲା । ବିଗତ କୋଡ଼ିଏ ବର୍ଷ ହେଲା ବୋର୍ଡ ଓ ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ କପି କରିବା ସାଧାରଣ ପିଲାଙ୍କର ଅଭ୍ୟାସରେ ପରିଣତ ହୋଇଛି । ଅବସ୍ଥା ଏପରି ଶୋଚନୀୟ ହୋଇଛି ଯେ, ପରୀକ୍ଷାମାନଙ୍କରେ କପି

ବନ୍ଦ କରିବା କର୍ତ୍ତୃପକ୍ଷଙ୍କ ସାଧ୍ୟାତୀତ ହୋଇଛି । ତାହାଦ୍ୱାରା ପରୀକ୍ଷା ନିରର୍ଥକ ହୋଇଛି ଏବଂ ପାଠ ପଢ଼ିଥିବା ଭଲପିଲା ଏବଂ ନପଢ଼ିଥିବା ଅଜ୍ଞ ପିଲାଙ୍କ ମଧ୍ୟରେ ତୁଳନା ସମ୍ଭବ ହେଉ ନାହିଁ । କହିବାକୁ ଗଲେ ପରୀକ୍ଷା ପ୍ରଣାଳୀ ସମ୍ପୂର୍ଣ୍ଣ ରୂପେ ଭୁଷୁଡ଼ି ପଡ଼ିଛି ଏବଂ ଧୂଆ ମୂଳା ଏବଂ ଅଧୂଆ ମୂଳା ସବୁ ସମାନ ହୋଇ ଯାଉଛି । ବୋର୍ଡ କିମ୍ବା ବିଶ୍ୱବିଦ୍ୟାଳୟ ସାର୍ଟିଫିକେଟ୍ ଉପରେ ସାଧାରଣ ଲୋକ ଏବଂ ନିଯୁକ୍ତି ଦେଉଥିବା ସଂଗଠନମାନ ବିଶ୍ୱାସ ହରାଇଛନ୍ତି । ସେଥିଯୋଗୁଁ 'ନିଯୁକ୍ତି ଦେଉଥିବା ପ୍ରାୟ ସବୁ ସଂସ୍ଥା ପ୍ରାର୍ଥୀ ବାଛିବାପାଇଁ, ନିଜେ ସ୍ୱତନ୍ତ୍ର ଲିଖିତ ଓ ମୌଖିକ ପରୀକ୍ଷାମାନ କରାଉଛନ୍ତି । ବିଶ୍ୱବିଦ୍ୟାଳୟ ସ୍ନାତକୋତ୍ତର ବିଭାଗ-ମାନଙ୍କରେ ନାମ ଲେଖାଇବାପାଇଁ ବିଭିନ୍ନ ବିଭାଗମାନ ସ୍ୱତନ୍ତ୍ର ପରୀକ୍ଷା କରୁଛନ୍ତି । ସୁତରାଂ ବୋର୍ଡ କିମ୍ବା ବିଶ୍ୱବିଦ୍ୟାଳୟ ସାର୍ଟିଫିକେଟ ଓ ପରୀକ୍ଷା ନମ୍ବର ପିଲାମାନଙ୍କର ଜ୍ଞାନର ମାପକାଠି ବୋଲି ଆଉ ବିବେଚିତ ହେଉ ନାହିଁ ।

୧୯୭୦ ମସିହାଠାରୁ ୧୯୮୦ ମସିହା ମଧ୍ୟରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟର ଅଧ୍ୟାପକ, ସିଣ୍ଡିକେଟ୍ ସଭ୍ୟ ଏବଂ କୁଳପତି ହିସାବରେ, ରେଭେନ୍ସା ଓ ବୁର୍ଲା ସାମନ୍ତ ଚନ୍ଦ୍ରଶେଖର ସିଂହ କଲେଜ ସମେତ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା ବହୁ ସରକାରୀ କଲେଜରେ ପରୀକ୍ଷା ସମୀକ୍ଷା କରିବାକୁ ଯାଇଛି । ବିଶ୍ୱବିଦ୍ୟାଳୟ ସ୍ତରରେ କପି କରିଥିବା ପିଲାମାନଙ୍କର ବିଚାର କରି ଦଣ୍ଡବିଧାନ କରିବା କମିଟିରେ ଅଧ୍ୟକ୍ଷ ବା ସଭ୍ୟ ରୂପେ ଉକ୍ତ କପି କରିଥିବା ବିଷୟରେ ଶହ ଶହ ପିଲାଙ୍କର ରିପୋର୍ଟ ସମୀକ୍ଷା କରିଛି ଏବଂ ଏପରି ପିଲାଙ୍କୁ ପ୍ରତ୍ୟକ୍ଷ ଭାବରେ ଜେରା କରିଛି । ଏ ସବୁରୁ ମୁଁ ଜାଣି ପାରିଥିଲି ଯେ, ବୋର୍ଡ ଏବଂ ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ କପି କରିବା ମାତ୍ରା ଅତ୍ୟନ୍ତ ଗମ୍ଭୀର ଓ ବ୍ୟାପକ ଥିଲା । ୧୯୮୦ ମସିହାରେ ବିଶ୍ୱବିଦ୍ୟାଳୟରୁ ଅବସର ନେଲାପରେ ସ୍କୁଲ କଲେଜ ପରୀକ୍ଷା ବେଳେ ପିଲାମାନେ କିପରି ବ୍ୟାପକ ଭାବେ କପି କରୁଛନ୍ତି, ତାହା ମୁଁ ନିଜେ ଦେଖିପାରୁଛି ଏବଂ ରାଜ୍ୟର ସବୁଲୋକ ମଧ୍ୟ ଜାଣି ଅଧିକେ ଦେଖୁଛନ୍ତି ।

ସବୁଠାରୁ ଉଦ୍‌ବେଗର ବିଷୟ ହେଉଛି ଯେ ପିଲାମାନଙ୍କର ଏହି ଅନ୍ୟାୟ କାମରେ ସେମାନଙ୍କର ଅଭିଭାବକ, ସ୍କୁଲ କଲେଜର ଅନେକ ଶିକ୍ଷକ ଏବଂ ଅଧ୍ୟକ୍ଷ ସାହାଯ୍ୟ କରୁଛନ୍ତି । ବହୁ ନେତୃସ୍ଥାନୀୟ ବ୍ୟକ୍ତି ଏ ସମସ୍ୟା ପ୍ରତି ଉଦାସୀନତା ଦେଖାଉଛନ୍ତି ଏବଂ ପିଲାମାନଙ୍କର ଏ ଅନ୍ୟାୟ କାର୍ଯ୍ୟ ଦେଖି ଆଖି ବୁଜି ଦେଉଛନ୍ତି । ସ୍କୁଲ କଲେଜରେ କପି କରି ପାସ୍ କରିଥିବା ବା ଦଣ୍ଡ ପାଇଥିବା ବ୍ୟକ୍ତିମାନେ ଅଳ୍ପବର୍ଷ ପରେ ସମାଜରେ ପ୍ରତିଷ୍ଠିତ ବ୍ୟକ୍ତି ହୋଇ ଯାଉଛନ୍ତି । ଅନେକ ରାଜନୈତିକ ନେତା ସ୍କୁଲ କଲେଜରେ କପି କରି ଦଣ୍ଡ

ଯାଇଥିବା ପିଲମାନଙ୍କୁ ଦଣ୍ଡରୁ ମୁକ୍ତ ଦେବାପାଇଁ ସ୍କୁଲ, କଲେଜ ବା ବିଶ୍ୱ-ବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ଉପରେ ଚାପ ପକାଉଛନ୍ତି । ଅନେକ ବେସରକାରୀ ସ୍କୁଲ୍ କଲେଜର ଅଧ୍ୟକ୍ଷ ଏବଂ ପରିଚାଳନା ସମିତିର ସମ୍ପାଦକ ତାଙ୍କ ସ୍କୁଲ୍ ବା କଲେଜର ପରୀକ୍ଷା ଫଳ ଉପରେ ଭଲ ହୋଇଯାଉ ଏବଂ ତାଙ୍କ ପିଲ୍ ଉପରେ ପାସ୍ କରି ଯାଆନ୍ତୁ, ସେଥିପାଇଁ କପି କରୁଥିବା ପିଲମାନଙ୍କୁ ପରୋକ୍ଷରେ ସାହାଯ୍ୟ କରୁଛନ୍ତି । ଯେଉଁ କେତେକ ସାଧୁ ଓ ନିଷ୍ଠାପର ଶିକ୍ଷକ ଏ କାର୍ଯ୍ୟ ବନ୍ଦ କରିବାକୁ ଚେଷ୍ଟା କରୁଛନ୍ତି, ସେମାନଙ୍କୁ ସମାଜବିରୋଧୀ ଛାତ୍ରମାନେ ମାଡ଼ ଦେଉଛନ୍ତି ଏବଂ କେତେକ ସ୍ଥାନରେ ମାଡ଼ର ମାତ୍ରା ଅତ୍ୟଧିକ ହେଉଛି । ପରୀକ୍ଷାରେ କପି କରିବା ବର୍ତ୍ତମାନ ଆମ ସମାଜରେ ଗୋଟିଏ ସାଧାରଣ କଥା ହୋଇଛି ଏବଂ ଏହା ସମାଜର ଗୋଟିଏ ଅତ୍ୟନ୍ତ ନିନ୍ଦନୀୟ କାର୍ଯ୍ୟବୋଲି ପରିଗଣିତ ହେଉ ନାହିଁ ।

ମୁଁ ନିଜେ ପରୀକ୍ଷା କରିବାକୁ ଯାଇ ଅନେକ କଲେଜରେ ପିଲମାନଙ୍କ ଦ୍ୱାରା ଅପମାନିତ ଓ ଘେରାଉ ହୋଇଛି ଏବଂ ଢେଲା ପଥରର ସମ୍ମୁଖୀନ ହୋଇଛି । ଅନେକ କଲେଜରେ ପୁଲିସ୍ ସାହାଯ୍ୟରେ ଏପରି ପରିସ୍ଥିତିରୁ ନିଷ୍କୃତି ପାଇଛି । ଥରେ ଉତ୍କଳର ସର୍ବଜନ ପୂଜ୍ୟ ଜଣେ ଜନନାୟକଙ୍କ ନାମରେ ନାମିତ ଗୋଟିଏ କଲେଜରେ ପରୀକ୍ଷା ସମୀକ୍ଷା କରିବାକୁ ଯାଇଥିଲି । କଲେଜର ଗୋଟିଏ ଲମ୍ବା ହଲ୍‌ରେ ପ୍ରାୟ ଶହେଜଣ ପିଲ ପରୀକ୍ଷା ଦେଉଥିଲେ । ହଲ୍‌ର ଦୁଇ ପାଖରେ ବଡ଼ବଡ଼ ଝରକାରେ କୌଣସି ରେଲିଂ ବା ଗ୍ରିଲ୍ ନଥାଏ । ଆମେ ହଲ୍‌ରେ ପ୍ରବେଶ କଲାମାତ୍ରେ ଦେଖିଲୁ ଯେ ସେଥିରେ ପରୀକ୍ଷା ଦେଉଥିବା ପ୍ରାୟ ସବୁ ପିଲ ବହି କିମ୍ବା ନୋଟ୍ ଖାତା ପକାଇ କପି କରୁଥିଲେ । ପରୀକ୍ଷା ନିରୀକ୍ଷଣ କରୁଥିବା ଶିକ୍ଷକମାନେ ନିରବଦ୍ରଷ୍ଟା ହୋଇ ହଲ୍‌ର ବିଭିନ୍ନ ସ୍ଥାନରେ ଠିଆ ହୋଇଥିଲେ । ଆମେ ହଲ୍‌ରେ ପଶିଯିବାମାତ୍ରେ ପରୀକ୍ଷାର୍ଥୀମାନେ ବହିପତ୍ର ସବୁ ଦୁଇପାଖ ଝରକାବାଟେ ପଦାକୁ ଫିଙ୍ଗିଦେଲେ । ଆମେ ସେ କଲେଜର ସେଦିନ ପରୀକ୍ଷା ବାତିଲ କରିବାପାଇଁ ସୁପାରିସ୍ କଲୁ । ସିଣ୍ଡିକେଟ୍‌ରେ କେତେକ ବନ୍ଧୁ ଯୁକ୍ତି କଲେ ଯେ, ସେ କଲେଜ ପରୀକ୍ଷା ବାତିଲ୍ କଲେ ଯେଉଁ ଜନନାୟକଙ୍କ ନାମରେ କଲେଜ ନାମିତ ହୋଇଛି ତାଙ୍କୁ ଅପମାନ ହେବ । ଏ ଯୁକ୍ତି ସିଣ୍ଡିକେଟ୍‌ର ଅଧିକାଂଶ ସଭ୍ୟ ଗ୍ରହଣ କଲେ ନାହିଁ । ପରୀକ୍ଷା ବାତିଲ୍ ହେଲା । ଜନନାୟକଙ୍କ ନାମରେ କଲେଜ ନାମିତ ହେଲେ ସୁଦ୍ଧା, ପିଲ କପି କରି ଦଣ୍ଡ ପାଇଲେ ଜନନାୟକଙ୍କୁ କ'ଣ ଅପମାନ ହେବ ?

ଆଉଦିନେ ପୂର୍ବତନ ଗଡ଼ଜାତ ରାଜ୍ୟର ଗୋଟିଏ କଲେଜରେ ପରୀକ୍ଷା ସମୀକ୍ଷା କରିବାକୁ ଯାଇଥିଲୁ । କଲେଜଟି ରାଜାଙ୍କ ଅମଳର ଗୋଟିଏ ପୁରୁଣା

କୋଠାଘରେ କାର୍ଯ୍ୟ କରୁଥିଲା । ଅଧିକ ସ୍ଥାନପାଇଁ ଛାତ ଉପରେ ଗୋଟିଏ ଲମ୍ବା ଚାଳଛପର ହଲ ହୋଇଥିଲା । ପରୀକ୍ଷା ତଳ ପୁରୁଣା ଘରମାନଙ୍କରେ ଏବଂ ଉପର ମହାଲର ଚାଳ ଛପର ହଲରେ ହେଉଥିଲା । ତଳ ମହାଲରେ ପ୍ରିନ୍‌ସପାଲ ତାଙ୍କ ରୁମ୍‌ରେ ବସିଥିଲେ ଏବଂ ତାଙ୍କ ପାଖରେ କଲେଜ ପରିଚାଳନା ସମିତିର ସମ୍ପାଦକ ମଧ୍ୟ ବସିଥିଲେ । ଆମେ ପ୍ରିନ୍‌ସପାଲଙ୍କ ରୁମ୍‌ରେ ପହଞ୍ଚି ଦେଖିଲୁ ଯେ, ପ୍ରିନ୍‌ସପାଲ ମୋର ଜଣେ ଅତି ପରିଚିତ ଲୋକ । କଲେଜରେ ପଢ଼ୁଥିବାବେଳେ, ସେ ମୋ' ଠାରୁ ପାଞ୍ଚଟା କ୍ଲାସ୍ ଉପରେ ପଢ଼ୁଥିଲେ । ସରକାରୀ କଲେଜରୁ ଅବସର ଗ୍ରହଣ କରି, ସେ କଲେଜର ପ୍ରିନ୍‌ସପାଲ ରୂପେ କାର୍ଯ୍ୟ କରୁଥିଲେ । ଆମେ ପହଞ୍ଚିଲାକ୍ଷଣି ସେ ଆମକୁ ତାଙ୍କ ପାଖରେ ବସିବାକୁ କହିଲେ । ଆମେ ସେଠାରେ ନ ବସି ସଙ୍ଗେ ସଙ୍ଗେ ପରୀକ୍ଷା ହଲ୍‌ମାନଙ୍କରେ ପଶିଗଲୁ । ପଶିଗଲାକ୍ଷଣି ଦେଖିଲୁ, ଉପରମାହାଲ ଓ ତଳ ମହାଲର ପରୀକ୍ଷା ହଲମାନଙ୍କରୁ କାଗଜ, ବହି, ନୋଟ୍ ଖାତା, ବର୍ଷା ହେଲପର ବାହାରେ ପଡ଼ୁଥାଏ । ଆମ୍ଭେମାନେ ପରୀକ୍ଷା ହଲ୍‌ମାନଙ୍କରୁ ଫେରି ପ୍ରିନ୍‌ସପାଲଙ୍କ ରୁମ୍‌କୁ ଆସିଲୁ । ସେତେବେଳ ପର୍ଯ୍ୟନ୍ତ ପରିଚାଳନା ସମିତିର ସମ୍ପାଦକ ସେଠାରେ ଉପସ୍ଥିତ ଥିଲେ । ସେ ଜଣେ ଅତି ଧୀରସ୍ଥିର ଭଦ୍ରଲୋକ ପରି ମନେ ହେଉଥିଲେ । ମୁଁ ତାଙ୍କୁ ଅତି କର୍କଶ ଭାଷାରେ ଗାଳିଦେଇ ପଚାରିଲି ଯେ, ଆପଣମାନେ କେଉଁ ଉଦ୍ଦେଶ୍ୟରେ ଏପରି କଲେଜ କରିଛନ୍ତି ? ଅତ୍ୟନ୍ତ ଦୁଃଖର କଥା ଯେ, ଆପଣଙ୍କ ଓ ପ୍ରିନ୍‌ସପାଲଙ୍କ ଉପସ୍ଥିତିରେ ସବୁ ପିଲା କପି କରୁଛନ୍ତି । ସେ ଟିକିଏ ଅପଦସ୍ତ ହେଲେ ଏବଂ କହିଲେ "ଆମ୍ଭେମାନେ ନିରୁପାୟ" । ସେଦିନ ସେ କଲେଜର ପିଲାମାନେ ଆମେ ଫେରିଲାବେଳେ ଆମ ଗାଡ଼ି ଉପରକୁ ଢେଲା ପକାଇବା ପାଇଁ ରାସ୍ତାରେ ଜଗିଥିଲେ । ଆମେ କିନ୍ତୁ ସନ୍ଧ୍ୟା ପାଞ୍ଚଟା ପୂର୍ବରୁ ଭିନ୍ନ ବାଟରେ ସେ ସହର ଛାଡ଼ିଥିଲୁ । ମୁଁ ସିଣ୍ଡିକେଟ୍‌ର ସଭ୍ୟ ଥିଲାବେଳେ ବହୁ କଲେଜରେ ଏହିପରି ଅବସ୍ଥା ଦେଖିବାକୁ ପାଇଥିଲି ।

ମୁଁ କୁଳପତି ଥିଲାବେଳେ, ଥରେ ଓଡ଼ିଶାର ଜଣେ ତୁଙ୍ଗ ନେତା ତାଙ୍କ ନାମରେ ନିର୍ମିତ ଗୋଟିଏ କଲେଜରେ ପରୀକ୍ଷା କେନ୍ଦ୍ର କରିବାକୁ ମୋତେ ଅନୁରୋଧ କଲେ । ସେ କଲେଜରେ ପରୀକ୍ଷା କରିବା ପାଇଁ କେତେଗୋଟି ହଲ୍; ପରୀକ୍ଷାର୍ଥୀ ବସିବା ପାଇଁ ବେଞ୍ଚ, ଡେସ୍କ ଏବଂ ପ୍ରଶ୍ନ ପତ୍ର ରଖିବା ପାଇଁ ଲୁହା ଆଲମାରୀ ପ୍ରଭୃତି ଅଛି କି ନାହିଁ ଦେଖିବାକୁ ମୁଁ ବିଶ୍ୱବିଦ୍ୟାଳୟର ପରୀକ୍ଷା ନିୟନ୍ତ୍ରକଙ୍କୁ ପଠାଇଲି । ସେ କଲେଜ ପରିଦର୍ଶନ କରି ଫେରିଆସି ମୋତେ କହିଲେ ଯେ, ସେ କଲେଜରେ କେବଳ ଦୁଇ ତିନି ଗୋଟି ଲମ୍ବା ଚାଳଘର ଅଛି ଏବଂ ହଲମାନଙ୍କ ମଧ୍ୟରେ ମାଟିରେ ଅଧା କାନ୍ଥ ଦିଆହୋଇଛି । ପ୍ରଶ୍ନ ପତ୍ର ଓ

ଖାତା ପ୍ରଭୃତି ରଖିବା ପାଇଁ ସେଥିରେ କୌଣସି ଲୁହା ଆଲମାରି ନାହିଁ କିମ୍ବା ପରୀକ୍ଷାର୍ଥୀଙ୍କ ପାଇଁ ଆବଶ୍ୟକ ପରିମାଣର ବେଞ୍ଚ ଡେସ୍କ ନାହିଁ । ଏହି ସବୁ କାରଣରୁ ଆମେ ସେଠାରେ ପରୀକ୍ଷା କେନ୍ଦ୍ର ଖୋଲିବାକୁ ରାଜି ହେଲୁ ନାହିଁ । ମୁଁ ଅବସର ନେବାର କେତେକ ବର୍ଷ ପରେ, ଥରେ ବିଶ୍ୱବିଦ୍ୟାଳୟ ପରୀକ୍ଷାର କେତେଗୋଟି ବିଷୟର ପ୍ରଶ୍ନପତ୍ର ପରୀକ୍ଷା ପୂର୍ବରୁ ପ୍ରକାଶ ପାଇଗଲା । ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଏପରି ଅବସ୍ଥା ମୋଟେ ଘଟେ ନାହିଁ । ସେ ସମୟରେ ଖବରକାଗଜମାନଙ୍କରେ ବାହାରିଲା ଯେ, ସେହି କଲେଜରୁ ପ୍ରଶ୍ନପତ୍ର ବାହାରି ହୋଇ ବାହାରେ ପ୍ରକାଶ ପାଇ ଯାଇଥିଲା । ସେତେବେଳକୁ ମୁଁ ଅବସର ନେଇ ସାରିଥିଲି ଏବଂ ସେ ଭୃଙ୍ଗ ନେତା ବି ଇହଜଗତରେ ନ ଥିଲେ । ମୁଁ କେବଳ ସେହି ପୂର୍ବକଥା ସ୍ମରଣ କରୁଥିଲି ।

ଆଉଥରେ ଗୋଟିଏ ବଡ଼ ସରକାରୀ କଲେଜରେ ଛାତ୍ର ଇଉନିୟନର ଜଣେ କର୍ମକର୍ତ୍ତା ସୁବିଧାରେ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ କପି କରୁଛନ୍ତି ବୋଲି ସେ କଲେଜର ଜଣେ ଅଧ୍ୟାପକ ମୋ ପାଖକୁ ପ୍ରତ୍ୟକ୍ଷଭାବରେ ଲେଖିଲେ । ଚିଠି ପାଇ ମୁଁ ହଠାତ୍ ସେ କଲେଜର ପରୀକ୍ଷା ଦେଖିବାକୁ ଗଲି । ଉକ୍ତ ଛାତ୍ର ଯେଉଁ କୋଠରିରେ ପରୀକ୍ଷା ଦେଉଥିଲା, ସେଥିରେ ମୋଟେ ଦଶ ବାର ଜଣ ପରୀକ୍ଷାର୍ଥୀ ଥିଲେ । ମୁଁ ସେ କୋଠରିରେ କିଛି ସମୟ ରହିଲି, ଚାରିଆଡ଼େ ବୁଲି ଦେଖିଲି । ମାତ୍ର ସେ ଛାତ୍ର କପି କରୁଥିବାର କୌଣସି ପ୍ରମାଣ ପାଇଲି ନାହିଁ । ଅନ୍ୟ ପରୀକ୍ଷା ରୁମ୍ ସବୁ ଦେଖି ସେ ଦିନ ମୁଁ ଫେରି ଆସିଲି । କିନ୍ତୁ ତାର ଦୁଇଚାରି ଦିନ ପରେ ଶିକ୍ଷକମାନେ ତାର ଗୋଟିଏ ପରୀକ୍ଷା ଖାତାରୁ ଖଣ୍ଡେ କାଗଜ ପାଇଲେ । ତାର ଖାତା ସହିତ ସେ କାଗଜ ବିଶ୍ୱବିଦ୍ୟାଳୟକୁ ପଠାଗଲା । ଧରାଯାଇଥିବା କାଗଜ ଓ ପରୀକ୍ଷା ଖାତା ସବୁ ବିଶ୍ୱବିଦ୍ୟାଳୟର କଣ୍ଡକ୍ଟିଂ ବୋର୍ଡ଼ ଯାଞ୍ଚ କରନ୍ତି । ତାଙ୍କ ରିପୋର୍ଟ ସିଣ୍ଡିକେଟ୍‌ର ଗୋଟିଏ କମିଟିକୁ ଯାଏ । ସେ କମିଟିରେ କୁଳପତି ଅଧ୍ୟକ୍ଷ ଥାଆନ୍ତି । କମିଟି ସଂପୃକ୍ତ ପିଲାଙ୍କୁ ଡାକି ତାଙ୍କଠାରୁ ସତ୍ୟାସତ୍ୟ ପଚାରି ବୁଝନ୍ତି ଏବଂ ସବୁ କଥା ବିଚାର କରି ପିଲାର ଦଣ୍ଡବିଧାନ ସିଣ୍ଡିକେଟ୍‌କୁ ସୁପାରିସ୍ କରନ୍ତି । ଉକ୍ତ ପିଲାକୁ କମିଟି ମତାମତ ଦେବାକୁ ଡାକିଥିଲେ । ସେ ପିଲା କହିଲା ଯେ ପରୀକ୍ଷା-ନିରୀକ୍ଷକଙ୍କର ତାଙ୍କ ଉପରେ ରାଗ ଥିଲା । ସେ ପରୀକ୍ଷା ଉତ୍ତର ଖାତାରେ ଯାହା ଲେଖିଥିଲା, ନିରୀକ୍ଷକ ତାହା ଦେଖି ବହିରୁ ସେ ବିଷୟ ଉଦ୍ଧାର କରି ତା' ଖାତା ମଧ୍ୟରେ ପୁରାଇ ଦେଇଥିବେ । କମିଟି ତାଙ୍କ କଥା ବିଶ୍ୱାସ ନ କରି ତାଙ୍କୁ ନିୟମ ଅନୁସାରେ ଦଣ୍ଡ ଦେବାକୁ ସୁପାରିସ କଲେ । ପର ଦିନ କେନ୍ଦ୍ର ମନ୍ତ୍ରିମଣ୍ଡଳର ଜଣେ ବରିଷ୍ଠ ମନ୍ତ୍ରୀ ମୋ' ପାଖକୁ ଫୋନ୍ କଲେ ଯେ, ପରୀକ୍ଷା-ନିରୀକ୍ଷକ ସେ ପିଲାକୁ ହଇରାଣ

ଭରିବା ପାଇଁ ଏପରି କାର୍ଯ୍ୟ କରିଛନ୍ତି । ଆପଣ ଏହାର ସୁବିଗ୍ଭର କରନ୍ତୁ । ମୁଁ କହିଲି "ଆଜ୍ଞା, ସେ ପିଲାଖାତାରୁ ମିଳିଥିବା କାଗଜରେ ଯାହା . ଲେଖା ଅଛି, ତାହା ତାର ଉତ୍ତର ଖାତାରେ ଅବିକଳ ଭାବରେ ଲେଖାହୋଇଛି'। ଏହିପରି ପ୍ରମାଣ ପାଇ ଆମେ ଶହ ଶହ ପିଲାଙ୍କୁ ଦଣ୍ଡ ଦେଉଛୁ । ଏ ପିଲାକୁ ଛାଡ଼ିଦେବୁ କିପରି ? ମୋ' ଠାରୁ ଏ ଉତ୍ତର ପାଇ ସେ କହିଲେ—"ଆପଣଙ୍କର ଯାହା କରିବା ଉଚିତ ତାହା କରନ୍ତୁ ।" କମିଟିର ସୁପାରିସ୍ ଅନୁସାରେ ସେ ପିଲାକୁ ଦଣ୍ଡ ଦିଆଯାଇଥିଲା । କେତେବର୍ଷ ପରେ ସେ ପିଲା ବିଧାନସଭାର ସଭ୍ୟ ଏବଂ ସମାଜରେ ଜଣେ ଅତି ପ୍ରତିଷ୍ଠିତ ବ୍ୟକ୍ତି ହୋଇ ପାରିଛନ୍ତି ।

ଅବସର ଗ୍ରହଣ ପରେ ମୁଁ ଗୋଟିଏ ବଡ଼ ବେସରକାରୀ କଲେଜର ପରିଚ୍ଳନା ସମିତିର କେତେବର୍ଷ ଅଧ୍ୟକ୍ଷ ହୋଇଥିଲି । ଶୁଣିବାକୁ ପାଇଲି ଯେ, ସେ କଲେଜରେ ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ ପରୀକ୍ଷାର୍ଥୀମାନେ ବ୍ୟାପକ ଭାବରେ କପି କରୁଛନ୍ତି । ଏପରି ପରିସ୍ଥିତିର ସୁଯୋଗ ନେବା ପାଇଁ ଅନ୍ୟ କଲେଜମାନଙ୍କରୁ ବହୁ ପିଲା କେନ୍ଦ୍ର ବଦଳାଇ ସେ କଲେଜରେ ପରୀକ୍ଷା ଦେଉଛନ୍ତି । ଏ ପରିସ୍ଥିତିର ନିୟନ୍ତ୍ରଣ ପାଇଁ ପରୀକ୍ଷା ସମୟରେ ମୁଁ ନିଜେ ସେ କଲେଜକୁ ଯିବି ବୋଲି ଇଚ୍ଛା କଲି । କିନ୍ତୁ କଲେଜ ପ୍ରିନ୍ସିପାଲ ମୋତେ କହିଲେ ଯେ, ମୋର ଯିବାର ଆବଶ୍ୟକତା ନାହିଁ । କଲେଜର ଅଧ୍ୟାପକମାନେ ସୁଚ୍ଛୁ ରୂପେ ପରୀକ୍ଷା ପରିଚ୍ଳନା ଓ ନିୟନ୍ତ୍ରଣ କରିବେ । ପରୀକ୍ଷା ପରେ, ଜାଣିଲି ଯେ, ବିଶ୍ୱବିଦ୍ୟାଳୟରୁ ଯେଉଁମାନେ ସେ କଲେଜର ପରୀକ୍ଷାମାନ ସମୀକ୍ଷା କରିବାକୁ ଯାଇଥିଲେ, ସେମାନେ ଏ କଲେଜର ପରୀକ୍ଷାମାନଙ୍କରେ ବ୍ୟାପକଭାବରେ କପି ହୋଇଥିବାର ପ୍ରମାଣ ପାଇ ସେ କଲେଜର ଅନେକ ପରୀକ୍ଷା ବାତିଲ କରିବାକୁ ସୁପାରିସ୍ କରିଥିଲେ । ଫଳରେ ସେ କଲେଜର ପ୍ରାୟ ବାରଶହ ପିଲାଙ୍କର ପରୀକ୍ଷା ବାତିଲ ହୋଇଥିଲା । ସେ କଲେଜର ପରିଚ୍ଳନା ସମିତିରେ ସେ ଅଞ୍ଚଳର ପାର୍ଲିଆମେଣ୍ଟ ସଦସ୍ୟ ସଭ୍ୟ ଥିଲେ । ସେ ପିଲାମାନଙ୍କର ପରୀକ୍ଷା ଯେପରି ନାକଚ ନ ହେବ, ସେଥିପାଇଁ ଚେଷ୍ଟା କରିବାକୁ ମୋତେ ଅନୁରୋଧ କଲେ । ସେ କହିଲେ ଯେ, ପିଲାମାନେ କପି କଲେ ତ କଲେ, କିନ୍ତୁ ଦୁଃଖର ବିଷୟ ଯେ, ସେ କଲେଜର କେତେକ ଅଧ୍ୟାପକ ସେ କଲେଜରେ ବ୍ୟାପକ କପି ହେଉଛି ବୋଲି ଗ୍ଭରିଆଡ଼େ କହିବୁଲିଲେ । ମୁଁ ତାଙ୍କୁ କହିଲି ଯେ, ଗ୍ଭରିଆଡ଼େ କହି ବୁଲିବାଟା ଦୋଷ ନୁହେଁ, କପି କରିବାଟା ଦୋଷ । ପରୀକ୍ଷା ବାତିଲ ବନ୍ଦ କରିବା ମୋ ପକ୍ଷରେ ସମ୍ଭବ ନୁହେଁ । ସେ ପିଲାଙ୍କର ଆଉଥରେ ନିର୍ମଳ ଭାବରେ ପରୀକ୍ଷା କରାଇବାକୁ ମୁଁ ଉଦ୍ୟମ କରିବି । ପରେ ସେ ପିଲାମାନଙ୍କର ଆଉଥରେ ପରୀକ୍ଷା ହେଲା । ଦ୍ୱିତୀୟଥର ପରୀକ୍ଷାରେ ମଧ୍ୟ

ଆମ୍ଭେମାନେ ପନ୍ଦରଜଣ ପିଲାଙ୍କୁ କପି କରୁଥିବାରୁ ପରୀକ୍ଷାହଲମାନଙ୍କରୁ ବହିଷ୍କୃତ କରିବାକୁ ବାଧ୍ୟ ହୋଇଥିଲୁ ।

ମୁଁ କୁଳପତି ଥିବାବେଳେ ଏ ସମ୍ପର୍କରେ ଘଟିଥିବା ଆଉ ଗୋଟିଏ ଘଟଣା ମଧ୍ୟ ଉଲ୍ଲେଖଯୋଗ୍ୟ । ବିଶ୍ୱବିଦ୍ୟାଳୟ ଅଧୀନରେ ସେତେବେଳେ ଦୁଇଗୋଟି ଆଇନ କଲେଜ ଥିଲା ଏବଂ ସେ କଲେଜମାନଙ୍କରେ ଅନେକ ବର୍ଷ ହେଲା ପରୀକ୍ଷାରେ ବ୍ୟାପକ କପି ହେଉଥିଲା । ତାହା ବନ୍ଦ କରିବା ଆମର ଗୋଟିଏ ପ୍ରଧାନ ସମସ୍ୟା ହେଲା । ଆଇନ କଲେଜର ପିଲାମାନେ ମଧ୍ୟ ଏକାସାଙ୍ଗରେ ସ୍ନାତକୋତ୍ତର ବିଭାଗମାନଙ୍କରେ ପଢୁଥିଲେ । ଗୋଟିଏ ଅନୁଷ୍ଠାନରେ ବ୍ୟାପକ କପି ଅନ୍ୟ ବିଭାଗ ପରୀକ୍ଷାମାନଙ୍କ ଉପରେ ପ୍ରଭାବ ପକାଉଥିଲା । ମୁଁ ତତ୍କାଳୀନ ରାଜ୍ୟପାଳଙ୍କ ପାଖକୁ ଯାଇ ସବୁକଥା ବର୍ଣ୍ଣନା କରି ତାଙ୍କୁ କହିଲି ଯେ, କପି କରିବା ହେତୁ ଆଇନ ଛାତ୍ରମାନଙ୍କ ପରୀକ୍ଷା ବାତିଲ କଲେ ସେମାନେ ବିଶ୍ୱବିଦ୍ୟାଳୟ ଅଫିସ୍‌ରେ ବହୁ ଗଣ୍ଡଗୋଳ କରିବେ । ସେଥିଯୋଗୁଁ ସରକାର ଆମକୁ ଦୋଷ ଦେବେ ଯେ, ଆମେ ସରକାରଙ୍କୁ ନ ଜଣାଇ ଏପରି ଆଇନ ଶୃଙ୍ଖଳା ପରିସ୍ଥିତି ସୃଷ୍ଟି କଲୁ । ରାଜ୍ୟପାଳ ଅନୁମତି ଦେଲେ ଆମେ ଆଇନ ପରୀକ୍ଷାମାନଙ୍କରେ କପି ବନ୍ଦ କରିବାକୁ ଦୃଢ଼ ପଦକ୍ଷେପ ନେବୁ । ରାଜ୍ୟପାଳ ତତ୍କ୍ଷଣାତ୍ ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଫୋନ୍ କଲେ । ମାତ୍ର ମୁଖ୍ୟମନ୍ତ୍ରୀ ସେତେବେଳେ ଅନ୍ୟ କାମରେ ବ୍ୟସ୍ତ ଥିବା ହେତୁ ତାଙ୍କ ଅଫିସ୍‌ରେ ନ ଥିଲେ । ରାଜ୍ୟପାଳ ମୋତେ କହିଲେ ଯେ, ସେ ମୁଖ୍ୟମନ୍ତ୍ରୀଙ୍କ ସହ ପରାମର୍ଶ କରି ପରେ ମୋ'ତେ କହିବେ । ମୋର ସେତେବେଳକୁ ଅବସର ନେବାକୁ ଦୁଇମାସ ବାକି ଥିଲା । ଆଇନ ପରୀକ୍ଷା ହେବାକୁ ମଧ୍ୟ ଦୁଇମାସ ବାକି ଥିଲା । ମୁଁ ଅବସର ଗ୍ରହଣ କଲାପର୍ଯ୍ୟନ୍ତ ରାଜ୍ୟପାଳଙ୍କ ଠାରୁ କୌଣସି ବାର୍ତ୍ତା ପାଇ ନ ଥିଲି ।

ଏ ସମ୍ପର୍କରେ ମୋର ଆଉ ଗୋଟିଏ ଅନୁଭୂତି ମଧ୍ୟ କୌତୂହଳଜନକ । ମୁଁ ଅବସର ଗ୍ରହଣ କରିବାର ବହୁକାଳ ପରେ ଦିନେ ସକାଳ ଚାଲି ବୁଲି ଯାଉଥିଲି । ଦେଖିଲି ଆମ ଘରପାଖ ହାଇସ୍କୁଲ ଗେଟ୍ ପାଖରେ ଅନେକଗୁଡ଼ିଏ ସାଇକେଲ ଥୁଆ ହୋଇଥିଲା ଏବଂ ସେଠାରେ ଦୁଇଜଣ କନ୍‌ଷ୍ଟେବଲ ଠିଆ ହୋଇଥିଲେ । ଭାବିଲି ଏଠାରେ ଗୋଟିଏ କ'ଣ ହେଉଛି । ଫେରିଲାବେଳେ ସ୍କୁଲ ପଛପଟେ ଖୋଲା ପଡ଼ିଆ ବାଟରେ ଫେରିଲି । ଦେଖିଲି ପଡ଼ିଆରେ ସ୍କୁଲଘର ପାଖରେ ତିନିଜଣ ଯୁବକ ଗୋଟିଏ ମାଇକ୍ ଧରି ଠିଆ ହୋଇଛନ୍ତି । ସେଥିରୁ ଜଣେ ଯୁବକ ମୋ' ପାଖକୁ ଆସି ପଚାରିଲା—"ଆଜ୍ଞା, ବ ଗଣସୀ କେଉଁ ରାଜ୍ୟରେ ଅବସ୍ଥିତ ?" ମୁଁ ତତ୍କ୍ଷଣାତ୍ ସବୁକଥା ଅନୁମାନ କରିନେଲି । କହିଲି "ମୁଁ ବାଟରେ ଚାଲିଯାଉଛି । ତୁମମାନଙ୍କୁ ଏ ବିଷୟରେ କିଛି କହିବି ନାହିଁ ।

ତୁମ୍ଭେମାନେ ଏପରି ଅନ୍ୟାୟ କାମ କାହିଁକି କରୁଛ ?" ସେମାନେ ମୋ ଉପରେ ରାଗିଗଲେ ଏବଂ କହିଲେ "ହଉ ହଉ, ଆପଣ ତ ବାଟରେ ଯାଉଛନ୍ତି, ଯାଆନ୍ତୁ ।" ମୁଁ ଚାଲି ଆସିଲି ପରେ ବୁଝିଲି ଯେ, ସେ ସ୍କୁଲରେ ସେଦିନ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷା ହେଉଥିଲା । ଉକ୍ତ ଯୁବକମାନେ ସ୍କୁଲ ପରୀକ୍ଷା ହଲରୁ ପ୍ରଶ୍ନପତ୍ର ଉପାୟ କରି ଆଣି ପରୀକ୍ଷାର୍ଥୀଙ୍କୁ ମାଇକ୍ ସାହାଯ୍ୟରେ ଉତ୍ତର ଡାକିଦେଉଥିଲେ । ସବୁଠାରୁ କୌତୂହଳର ବିଷୟ ହେଲା ଯେ, ବାରାଣସୀ କେଉଁ ରାଜ୍ୟରେ ଅବସ୍ଥିତ, ତାହା ପ୍ରଶ୍ନରେ ନ ଥିଲା । ପ୍ରଶ୍ନରେ ଥିଲା ବାରଉଣି (ବିହାରରେ ଯେଉଁଠାରେ ପେଟ୍ରୋଲ ରିଫାଇନରି ଅଛି) କେଉଁ ରାଜ୍ୟରେ ଅବସ୍ଥିତ ? ଉତ୍ତର ଡାକୁଥିବା ଯୁବକମାନେ ବାରଉଣିକୁ ବାରାଣସୀ ବୁଝିଲେ । ବାରାଣସୀ ମଧ୍ୟ କେଉଁ ରାଜ୍ୟରେ ଅବସ୍ଥିତ, ତାଙ୍କୁ ଜଣା ନ ଥିବାରୁ ମୋତେ ପଚାରୁଥିଲେ । ଏଥିରୁ ଉତ୍ତର ବତାଇ ଦେଉଥିବା ଯୁବକମାନଙ୍କର ଜ୍ଞାନର ସୀମା ସହଜରେ ଅନୁମେୟ । ପରୀକ୍ଷା ହଲରେ ଯେଉଁ ପିଲାମାନେ ପରୀକ୍ଷା ଦେଉଥିଲେ, ପଡ଼ିଆରେ ଯେଉଁ ଯୁବକମାନେ ମାଇକ୍ ସାହାଯ୍ୟରେ ଉତ୍ତର ବତାଇ ଦେଉଥିଲେ ଏବଂ ସାଧାରଣ ସ୍କୁଲ ପିଲଙ୍କ ଜ୍ଞାନ, ପରୀକ୍ଷାକେନ୍ଦ୍ରମାନଙ୍କର ଅବସ୍ଥା—ଏ ସବୁ ଅବସ୍ଥା ଭାବି ଦୁଃଖରେ ମ୍ରିୟମାଣ ହୋଇଥିଲି ।

୧୯୭୦ ମସିହାରୁ ୧୯୮୦ ମସିହା ମଧ୍ୟରେ ମୁଁ ବିଶ୍ୱବିଦ୍ୟାଳୟର ବିଭିନ୍ନ ପଦବୀରେ ଥିଲାବେଳେ, ଏହିପରି ଶହ ଶହ ଘଟଣା ଅନୁଭବ କରିଥିଲି । ସେ ସବୁ ଲେଖିଲେ ଗୋଟିଏ ପୋଥି ହେବ । କେବଳ କେତେକ ଘଟଣା ଉଦାହରଣ ସ୍ୱରୂପ ବର୍ଣ୍ଣନା କରୁଛି । ସେଥିରୁ ଅନୁମାନ କରିହେବ ଯେ, ପରୀକ୍ଷାମାନଙ୍କରେ କିପରି ବ୍ୟାପକ କପି ହେଉଛି ଏବଂ ତାହା ସରକାର ଓ ଜନସାଧାରଣଙ୍କୁ ଅଗୋଚର ନାହିଁ । ଏ କୁକର୍ମରେ ବହୁ କଲେଜର ଅଧ୍ୟକ୍ଷ, ଅଧ୍ୟାପକ ଓ ପରିଚାଳନା ସମିତିମାନଙ୍କର ସଭ୍ୟ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସାହାଯ୍ୟ କରୁଛନ୍ତି । ସରକାର ଏବଂ ଦେଶର ନେତୃସ୍ଥାନୀୟ ବ୍ୟକ୍ତିମାନେ ସେ ସବୁ ଦେଖି ନ ଦେଖିଲାପରି ଆଖି ବୁଜିଦେଉଛନ୍ତି । ଆମ ସମାଜ ଏ ପ୍ରକାର ଅପରାଧ ଉପରେ ଗୁରୁତ୍ୱ ନ ଦେଇ ପରୋକ୍ଷ ଭାବରେ ଏ ପରିସ୍ଥିତିକୁ ସାହାଯ୍ୟ କରୁଛି ।

ମୁଁ ବିଶ୍ୱବିଦ୍ୟାଳୟରେ କାର୍ଯ୍ୟ କରୁଥିଲାବେଳେ ଭାବପ୍ରବଣ ହୋଇ ଏପରି ଅପରାଧର ଘୋର ବିରୋଧ କରୁଥିଲି ଏବଂ ସେଥିଯୋଗୁଁ ବହୁ ଲୋକଙ୍କ ବିଷଦୃଷ୍ଟିରେ ପଡ଼ିଥିଲି । ବିଗତ ଦଶ ପନ୍ଦର ବର୍ଷ ମଧ୍ୟରେ ବିଶ୍ୱବିଦ୍ୟାଳୟ, ମାଧ୍ୟମିକ ଶିକ୍ଷାବୋର୍ଡ ଏବଂ ରାଜ୍ୟ ସରକାର ପରୀକ୍ଷାମାନଙ୍କରେ ଏପରି ଅନ୍ୟାୟ କାର୍ଯ୍ୟ ବନ୍ଦ କରିବାକୁ ବିଭିନ୍ନ ପଦକ୍ଷେପ ନେଇଛନ୍ତି । ପରୀକ୍ଷାରେ କପି କରିବା ଗୋଟିଏ ଧର୍ତ୍ତବ୍ୟ ଅପରାଧ ବୋଲି ସରକାର ଘୋଷଣା କରିଛନ୍ତି । ପରୀକ୍ଷା

ସମସ୍ତରେ ବିଶ୍ୱବିଦ୍ୟାଳୟ ଏବଂ ବୋର୍ଡ଼ମାନଙ୍କରୁ ବିଭିନ୍ନ ପରୀକ୍ଷାକେନ୍ଦ୍ରମାନଙ୍କୁ ସମୀକ୍ଷକମାନେ ପରିଦର୍ଶନ କରୁଛନ୍ତି । ବହୁ କଲେଜ ଓ ସ୍କୁଲରେ ପରୀକ୍ଷା ନାକଚ ହେଉଛି । ପିଲାମାନଙ୍କୁ ବ୍ୟକ୍ତିଗତ ଓ ସମୂହ ଭାବରେ ଦଣ୍ଡ ଦିଆଯାଉଛି । କେତେକ ସ୍ଥଳରେ ସାହାଯ୍ୟ କରୁଥିବା ଶିକ୍ଷକମାନଙ୍କୁ ମଧ୍ୟ ଦଣ୍ଡ ଦିଆଯାଉଛି । ମାତ୍ର ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଏ ବ୍ୟାଧି ଲାଗି ରହିଛି । ଏହାର ମୂଳ କାରଣ ହେଉଛି ଯେ, ସ୍କୁଲ କଲେଜମାନଙ୍କରେ ପଢ଼ିବା ସୁବିଧା ଓ ବାତାବରଣ ନାହିଁ । ପିଲାମାନେ ଆବଶ୍ୟକ ଜ୍ଞାନ ଅର୍ଜନ କରିପାରୁ ନାହାନ୍ତି । କିନ୍ତୁ କର୍ମସଂସ୍ଥାନ ପାଇଁ ନ୍ୟାଯ୍ୟ ବା ଅନ୍ୟାଯ୍ୟ ଭାବରେ ପରୀକ୍ଷାରେ ପାସ୍ କରିବାକୁ ଉଦ୍ୟମ କରୁଛନ୍ତି । ସ୍କୁଲ କଲେଜମାନଙ୍କରେ ପରୀକ୍ଷା କପରି ଚାଲିଛି, ତାହା ସମାଜରେ ସମସ୍ତେ ଦେଖିପାରୁଛନ୍ତି । ଅନେକ ଲୋକ କହୁଛନ୍ତି, ଏହା କେବଳ ଓଡ଼ିଶାର ସମସ୍ୟା ନୁହେଁ । ଭାରତବର୍ଷର ସବୁ ରାଜ୍ୟରେ ଏହିପରି ପରିସ୍ଥିତି ଉପୁଜୁଛି । ତାହା ସତ୍ୟ, ମାତ୍ର ଏ ଯୁଗରେ ଯେତେବେଳେ ପୃଥିବୀରେ ସବୁ ବିଷୟରେ କ୍ଷିପ୍ରଗତିରେ ଜ୍ଞାନର ପ୍ରସାର ହେଉଛି, ସେତେବେଳେ ଭାରତ ବର୍ଷରପିଲାମାନେ ପାଠ ନ ପଢ଼ି ଜ୍ଞାନ ଥିବାର ପ୍ରମାଣପତ୍ର ପାଇଲେ ପୃଥିବୀର ଅନ୍ୟ ଦେଶର ପିଲାମାନଙ୍କ ସହ କପରି ପ୍ରତିଯୋଗିତା କରିବେ ? ଏହା ଆମ ଦେଶର ଭବିଷ୍ୟତ ପାଇଁ ଗୋଟିଏ ବିରାଟ ବିପଦ । ସେଥିପ୍ରତି ଦେଶର ଜନସାଧାରଣ ସଚେତନ ହେବା ଅତ୍ୟନ୍ତ ଆବଶ୍ୟକ ।

ପାଠ ପଢ଼ିବା ପାଇଁ ସୁବିଧା ନ କରି ଏବଂ ଆବଶ୍ୟକ ପରିବେଶ ସୃଷ୍ଟି ନ କରି ଭୁରିଆଡ଼େ ସ୍କୁଲ କଲେଜମାନ ଖୋଲିବାର ଆଉ ଅନେକ କୁପରିଣାମ ମଧ୍ୟ ବର୍ତ୍ତମାନ ସମସ୍ତେ ଅନୁଭବ କରି ପାରୁଛନ୍ତି । ସବୁଆଡ଼େ ପ୍ରାଥମିକ ଶିକ୍ଷକ-ମାନଙ୍କଠାରୁ ଆରମ୍ଭ କରି କଲେଜ ଅଧ୍ୟାପକମାନଙ୍କ ପର୍ଯ୍ୟନ୍ତ ଶିକ୍ଷକମାନଙ୍କ ମଧ୍ୟରେ ବ୍ୟାପକ ଅସନ୍ତୋଷ ପୁରି ରହିଛି । ସରକାରଙ୍କଠାରୁ ଦରମା ପାଉଥିବା ଶିକ୍ଷକମାନେ ନିୟମିତ ଭାବରେ ଦରମା ପାଉନାହାନ୍ତି ଏବଂ ସେମାନଙ୍କର ପଦୋନ୍ନତି ପ୍ରଭୃତି ବିଷୟରେ ବହୁ ଅସନ୍ତୋଷ ଅଛି । ସରକାରୀ ଶିକ୍ଷାନୁଷ୍ଠାନ-ମାନଙ୍କରେ ମଧ୍ୟ ଶିକ୍ଷାଦାନର ସୁବିଧା ଓ ବାତାବରଣ ନାହିଁ । ବେସରକାରୀ ଶିକ୍ଷାନୁଷ୍ଠାନମାନଙ୍କରେ ଶିକ୍ଷକମାନେ ଅତି ଅଳ୍ପ ଦରମା ପାଉଛନ୍ତି । ସେମାନଙ୍କର ଚାକିରିରେ ସ୍ଥାୟିତ୍ୱ ନାହିଁ । ବହୁ ଶିକ୍ଷକ ଅନ୍ୟ ସ୍ଥାନରେ ଅଧିକ ସୁବିଧାଜନକ ଚାକିରି ପାଇଁ ଉଦ୍ୟମ କରୁଛନ୍ତି । ସେ ଶିକ୍ଷାନୁଷ୍ଠାନମାନଙ୍କରେ ଶିକ୍ଷାର ସୁବିଧା ଓ ବାତାବରଣ ନାହିଁ । ଅଧିକାଂଶ ପରିଚାଳନା ସମିତିରେ ଦଳାଦଳି ଏବଂ ଅନେକ ସ୍କୁଲ କଲେଜର ପରିଚାଳନା ସମିତିର ସମ୍ପାଦକ ଏବଂ ସଭ୍ୟମାନଙ୍କର ସ୍କୁଲ ପାଣ୍ଠି ଆତ୍ମସାତ୍ ପ୍ରଭୃତି ସମସ୍ୟା ସ୍କୁଲ କଲେଜ ପରିବେଶକୁ

ଆବିଳ କରୁଛି । ସ୍କୁଲରେ ପାଠପଢ଼ା ନ ହେବାରୁ ବହୁ ଛାତ୍ରଛାତ୍ରୀ ଶିକ୍ଷକମାନଙ୍କଠାରୁ ଘରୋଇ ଭାବରେ ଶିକ୍ଷାଲାଭ କରିବାକୁ ଆବଶ୍ୟକ ମନେ କରୁଛନ୍ତି ଏବଂ ଅଭିଭାବକମାନେ ଗରିବ ହୋଇଥିଲେ ମଧ୍ୟ ଶିକ୍ଷକମାନଙ୍କୁ ଟଙ୍କା ଦେଇ ସେମାନଙ୍କ ପାଖରେ ଘରୋଇଭାବରେ ପିଲମାନଙ୍କୁ ପଢ଼ାଉଛନ୍ତି । ନ ହେଲେ ପିଲମାନେ କିଛି ପଢ଼ିପାରିବେ ନାହିଁ କିମ୍ବା ପରୀକ୍ଷାରେ ପାସ୍ କରି ପାରିବେ ନାହିଁ । ଶିକ୍ଷକମାନେ ମଧ୍ୟ ଘରୋଇ ଶିକ୍ଷାଦାନରେ ବ୍ୟସ୍ତ ରହି ସ୍କୁଲ ବା କଲେଜ କ୍ଲାସମାନଙ୍କରେ ଶିକ୍ଷାଦାନରେ ସମସ୍ତ ଓ ମନୋଯୋଗ ଦେଇ ପାରୁନାହାନ୍ତି । ଏହି ପ୍ରକ୍ରିୟାରେ ଶିକ୍ଷାଦାନ ସର୍ବସାଧାରଣ ଅନୁଷ୍ଠାନମାନଙ୍କରୁ ଘରୋଇ ଶିକ୍ଷାଳୟମାନଙ୍କୁ ସ୍ଥାନାନ୍ତରିତ ହୋଇଯାଉଛି । ଘରୋଇ ଟ୍ୟୁସନ କଲେଜମାନଙ୍କ ଅପେକ୍ଷା ସ୍କୁଲମାନଙ୍କରେ ଅଧିକ ହେଉଛି । ପ୍ରାଥମିକ ସ୍କୁଲଠାରୁ ଆରମ୍ଭ କରି ହାଇସ୍କୁଲ ଶେଷ ପର୍ଯ୍ୟନ୍ତ ଛାତ୍ରଛାତ୍ରୀମାନେ ଘରୋଇ ଭାବରେ ଶିକ୍ଷକମାନଙ୍କ ପାଖରେ ନ ପଢ଼ିଲେ ପାଠ ଶିଖି ପାରୁ ନାହାନ୍ତି । ଏହା ସତ୍ତ୍ୱେ ବୋର୍ଡ଼ ଏବଂ ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ ଶତକଡ଼ା ପ୍ରାୟ ଷାଠିଏ ଭାଗ ପିଲା ଅକୃତକାର୍ଯ୍ୟ ହୋଇଯାଉଛନ୍ତି ।

ସ୍କୁଲ୍ କଲେଜମାନଙ୍କର ଏହି ପରିବେଶରୁ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ବିଶୃଙ୍ଖଳାର ଉତ୍ପତ୍ତି ଏବଂ ପରିପ୍ରକାଶ ଆମ ସମାଜର ଗୋଟିଏ ପ୍ରଧାନ ସମସ୍ୟା ହୋଇଛି । ଛାତ୍ର ବିଶୃଙ୍ଖଳା ସ୍କୁଲମାନଙ୍କ ଅପେକ୍ଷା କଲେଜମାନଙ୍କରେ ଅଧିକ । ସ୍କୁଲମାନଙ୍କରେ ଅନେକ ପରିମାଣରେ ଛାତ୍ରଛାତ୍ରୀମାନେ ଶିକ୍ଷକମାନଙ୍କ କର୍ତ୍ତୃତ୍ୱରେ ଅଛନ୍ତି । କିନ୍ତୁ କଲେଜମାନଙ୍କରେ ବହୁ ଛାତ୍ର ଶିକ୍ଷକମାନଙ୍କର କର୍ତ୍ତୃତ୍ୱର ବାହାରେ । ସାନ ବଡ଼ ସବୁ ସରକାରୀ ଓ ବେସରକାରୀ କଲେଜମାନଙ୍କରେ ଛାତ୍ରସଂଘମାନ କାର୍ଯ୍ୟ କରୁଛନ୍ତି । ଛାତ୍ରସଂଘ ବର୍ତ୍ତମାନ ସବୁପ୍ରକାର କଲେଜ ଓ ବିଶ୍ୱବିଦ୍ୟାଳୟ ଶିକ୍ଷାର ଅବିଚ୍ଛେଦ୍ୟ ଅଙ୍ଗ । ପ୍ରତିବର୍ଷ ଛାତ୍ରସଂଘର କର୍ମକର୍ତ୍ତାମାନଙ୍କର ନିର୍ବାଚନ ହେଉଛି । ନିର୍ବାଚନ ସମୟ କଲେଜ ଓ ବିଶ୍ୱବିଦ୍ୟାଳୟ ବିଭାଗମାନଙ୍କର ବିରାଟ ଗଣ୍ଡଗୋଳର ସମୟ । କଲେଜମାନଙ୍କରେ ବହୁପ୍ରକାର ଅଭାବ ଓ ଅସୁବିଧା ସବୁବେଳେ ରହିଥିବାରୁ ଛାତ୍ରମାନଙ୍କର ବହୁଦଫା ଦାବି ସବୁବେଳେ ପ୍ରସ୍ତୁତ ହୋଇ ରହିଛି । ନିର୍ବାଚନ ସମୟରେ ନିଜର ନେତୃତ୍ୱ ପ୍ରତିଷ୍ଠା କରିବା ଏବଂ ଲୋକପ୍ରିୟତା ଅର୍ଜନ କରି ଇଉନିୟନମାନଙ୍କର କର୍ମକର୍ତ୍ତାରୂପେ ନିର୍ବାଚିତ ହେବାକୁ ବିଭିନ୍ନ ଦାବିକୁ ଅଧ୍ୟକ୍ଷମାନଙ୍କ ପାଖରେ ଉପସ୍ଥାପିତ କରିବା, ତାକୁ ଘେରାଉ କରିବା ଏବଂ ବିଭିନ୍ନ ସଭାସମିତିରେ ତାହା ପ୍ରଚାର କରିବାକୁ ବିଭିନ୍ନ ଦଳର ପିଲମାନେ ଉଦ୍ୟମ କରନ୍ତି । ଏହିସମୟରେ କଲେଜମାନେ ଦେଶର ବିଭିନ୍ନ ରାଜନୈତିକ ଦଳମାନଙ୍କର କର୍ମୀମାନଙ୍କର କ୍ରୀଡ଼ାଭୂମି ହୁଅନ୍ତି । ବିଭିନ୍ନ

ରାଜନୈତିକ ଦଳ କଲେଜ ୟୁନିୟନ ନିର୍ବାଚନମାନଙ୍କରେ ଜିତି କଲେଜମାନଙ୍କୁ ନିଜ କର୍ତ୍ତୃତ୍ୱରେ ରଖିବାକୁ ଚାହାନ୍ତି । ସେଥିପାଇଁ କଲେଜୟୁନିୟନମାନଙ୍କ ନିର୍ବାଚନ ସମୟରେ ରାଜନୈତିକ ଦଳମାନେ ସେମାନଙ୍କର ପ୍ରାର୍ଥୀମାନଙ୍କୁ ଠିଆ କରୁଛନ୍ତି ଏବଂ ନିର୍ବାଚନ ଜିତିବା ପାଇଁ ଧନ ଓ ବାହୁବଳ ନିୟୋଜିତ କରୁଛନ୍ତି ।

ନିର୍ବାଚନ ସମୟରେ ବହୁ ରାଜନୈତିକ କର୍ମୀ ଓ ସମାଜ-ବିରୋଧୀ ଲୋକ କଲେଜମାନଙ୍କରେ ନିର୍ବାଚନ କାମରେ ଯୋଗ ଦେଉଛନ୍ତି । ୟୁନିୟନ ନିର୍ବାଚନରେ ପ୍ରାର୍ଥୀମାନେ ବିଭିନ୍ନ ରାଜନୈତିକ ଦଳର ପ୍ରାର୍ଥୀ ବୋଲି ପ୍ରକାଶ୍ୟରେ ଘୋଷଣା କରୁଛନ୍ତି । ନିର୍ବାଚନ ପରେ ମଧ୍ୟ ବର୍ଷକଯାକ ବିଭିନ୍ନ ରାଜନୈତିକ ଦଳର କର୍ମୀ ଓ ସମାଜ-ବିରୋଧୀ ଲୋକ କଲେଜଛାତ୍ରମାନଙ୍କ ମଧ୍ୟରେ କାମ କରୁଛନ୍ତି । ସେମାନଙ୍କ ଦଳର ଉଚ୍ଚ ନେତାମାନେ ସେମାନଙ୍କୁ ଉତ୍ସାହ ଓ ସାହାଯ୍ୟ ଦେଉଛନ୍ତି । ଯେଉଁ ଦଳ ନିର୍ବାଚନରେ ଜିତିଲା, ତାହାର ଗଠନ ମୂଳକ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ଅନ୍ୟ ଦଳ ଭାଙ୍ଗିଦେବାକୁ ଉଦ୍ୟମ କରୁଛି । କଲେଜମାନଙ୍କରେ ସରକାରୀ ଓ ବିରୋଧୀ ଦଳମାନଙ୍କର କର୍ମୀମାନେ ଛାତ୍ର-ଛାତ୍ରୀଙ୍କ ମଧ୍ୟରେ ନିୟମିତଭାବରେ କାମ କରୁଥିବାରୁ ସରକାର ଏବଂ ବିରୋଧୀ ଦଳ ମଧ୍ୟରେ କଲେଜ ବାହାରେ ଘଟୁଥିବା କଳହ ଅବାଧରେ କଲେଜ ଏବଂ ବିଶ୍ୱବିଦ୍ୟାଳୟମାନଙ୍କ ମଧ୍ୟରେ ପ୍ରବେଶ କରୁଛି । ଫଳରେ କଲେଜ ବା ବିଶ୍ୱବିଦ୍ୟାଳୟ ସହିତ ସମ୍ବନ୍ଧ ନଥିବା ସମସ୍ୟାମାନଙ୍କରେ ଛାତ୍ରଛାତ୍ରୀମାନେ ବହୁ ସମୟରେ କଲେଜ ବା ବିଶ୍ୱବିଦ୍ୟାଳୟମାନଙ୍କରେ ଗଣ୍ଡଗୋଳ, ଧର୍ମଘଟ ଏବଂ କର୍ତ୍ତୃପକ୍ଷଙ୍କୁ ଘେରାଉ ପ୍ରଭୃତି କରୁଛନ୍ତି । ଏ ସବୁର ଗୋଟିଏ ନିଶ୍ଚିତ ଫଳ ହେଉଛି, ପାଠପଢ଼ାରେ ବ୍ୟାଘାତ ଏବଂ କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ଶିକ୍ଷା ବାତାବରଣର ବିନାଶ । ଏହି କଳୁଷିତ ବାତାବରଣରେ ଶିକ୍ଷାର ମାନ ରକ୍ଷା କରିବା ସମ୍ଭବ ନୁହେଁ । ସୁତରାଂ ଶିକ୍ଷାର ପ୍ରସାର ସଙ୍ଗେ ସଙ୍ଗେ ସମସ୍ତଙ୍କ ଜ୍ଞାତସାରରେ ଶିକ୍ଷାର ମାନ ଦିନକୁ ଦିନ ତଳକୁ ଯାଉଛି ।

ସ୍ଥୂଳତଃ ବିଂଶ ଶତାବ୍ଦୀରେ ଓଡ଼ିଶାରେ ଶିକ୍ଷାର ପ୍ରଗତି ବିଷୟ ବିଚାର କଲେ ଜଣାଯାଏ ଯେ, ଶତାବ୍ଦୀର ଆରମ୍ଭରେ ଶିକ୍ଷାର ମୋଟେ ପ୍ରସାର ହୋଇ ନଥିଲା । ପ୍ରାଥମିକ ଶିକ୍ଷା ଗାଁମାନଙ୍କରେ କେତେକ ଉଚ୍ଚଜାତି ଏବଂ ଧନୀ ପରିବାରଙ୍କର ପିଲାମାନଙ୍କ ମଧ୍ୟରେ ସୀମାବଦ୍ଧ ଥିଲା । ହରିଜନ ଓ ଆଦିବାସୀ-ମାନଙ୍କର ପିଲାମାନେ ମୋଟେ ପାଠ ପଢୁ ନଥିଲେ । ସବୁଜାତିର ଲୋକଙ୍କର ବାଳିକା ପିଲାମାନେ କ୍ୱଚିତ ପାଠ ପଢୁଥିଲେ । ପ୍ରାଥମିକ ଶିକ୍ଷା ପରେ ଅତି ଅଳ୍ପ ପିଲା ମାଇନର ଓ ହାଇସ୍କୁଲମାନଙ୍କରେ ପଢୁଥିଲେ । ୧୯୭୦ ମସିହାଠାରୁ

୧୯୫୦ ମସିହା ମଧ୍ୟରେ ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷା ମନ୍ଥର ଗତିରେ ପ୍ରସାରଲାଭ କରିଥିଲା । ସ୍ୱାଧୀନତା ପରେ କିନ୍ତୁ ସବୁ ସ୍ତରରେ ଶିକ୍ଷାର ଅଭୂତପୂର୍ବ ପ୍ରସାର ହୋଇଛି । ଶତାବ୍ଦୀର ଶେଷବେଳକୁ ପ୍ରାଥମିକ ଶିକ୍ଷା ସାର୍ବଜନୀନ କରିବାକୁ ଏବଂ ସବୁ ଲୋକଙ୍କୁ ସାକ୍ଷର କରିବାକୁ ଉଦ୍ୟମ ହେଉଛି । କିନ୍ତୁ ଶିକ୍ଷାର ଏହି ଦ୍ରୁତ ପ୍ରସାର ସହିତ ଶିକ୍ଷାର ମାନ ଅତ୍ୟନ୍ତ ଶୀଘ୍ର ଭାବରେ ହ୍ରାସ ପାଉଛି । ସ୍କୁଲ ଓ କଲେଜମାନଙ୍କରେ ବହୁସଂଖ୍ୟକ ପିଲା ନାମ ଲେଖାଉଛନ୍ତି, କିନ୍ତୁ ସେଗୁଡ଼ିକରେ ପାଠ ପଢ଼ିବା ପାଇଁ ନିମ୍ନତମ ସୁବିଧା ସୁଦ୍ଧା ନାହିଁ । ସ୍କୁଲ କଲେଜମାନଙ୍କରେ ଘରଦ୍ୱାର, ଆବଶ୍ୟକ ବେଞ୍ଚ, ଡେସ୍କ, ଲାଇବ୍ରେରୀ, ଲାବୋରେଟରୀ ପ୍ରଭୃତି ନାହିଁ । ଶିକ୍ଷକମାନେ ବିଶେଷତଃ ବେସରକାରୀ ସ୍କୁଲ ଓ କଲେଜମାନଙ୍କରେ ଅତି ଅଳ୍ପ ଦରମା ପାଉଛନ୍ତି । ସେମାନଙ୍କ ମଧ୍ୟରେ ସର୍ବଦା ତୀବ୍ର ଅସନ୍ତୋଷ ରହିଛି ଏବଂ ସେମାନେ ବିଭିନ୍ନ ଦାବି ହାସଲ ପାଇଁ ବରାବର ଆନ୍ଦୋଳନ କରୁଛନ୍ତି । ସ୍କୁଲ କଲେଜମାନଙ୍କରେ ନିୟମିତ ପାଠ ପଢ଼ା ହେଉ ନଥିବାରୁ ଛାତ୍ରଛାତ୍ରୀମାନେ ଘରୋଇ ଟ୍ୟୁସନ ଉପରେ ନିର୍ଭର କରୁଛନ୍ତି । ପିଲାମାନେ ପାଠ ନପଢ଼ି ପରୀକ୍ଷା-ମାନଙ୍କରେ ପାସ୍ କରିବାକୁ ଚେଷ୍ଟା କରୁଥିବାରୁ ପରୀକ୍ଷାମାନଙ୍କରେ ବ୍ୟାପକ କପି ହେଉଛି ଏବଂ ସେଥିରେ ଅଭିଭାବକ ଓ ଶିକ୍ଷକମାନେ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସାହାଯ୍ୟ କରୁଛନ୍ତି । ସରକାର ଏ ଅବସ୍ଥା ପ୍ରତି ଏକପ୍ରକାର ଉଦାସୀନ ରହିଛନ୍ତି । ଛାତ୍ରମାନଙ୍କ ମଧ୍ୟରେ, ବିଶେଷତଃ କଲେଜ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ବିଶୃଙ୍ଖଳା ଚରମ ସୀମାରେ ପହଞ୍ଚିଛି । କଲେଜମାନଙ୍କରେ ଛାତ୍ରସଂଘମାନଙ୍କର ପ୍ରଭାବ ବିସ୍ତାରିତ ହୋଇଛି ଏବଂ ଛାତ୍ରସଂଘ ମାଧ୍ୟମରେ ବିଭିନ୍ନ ରାଜନୈତିକ ଦଳ ଓ ସମାଜ-ବିରୋଧୀ ଲୋକ କଲେଜମାନଙ୍କରେ ବରାବର ଗୋଳମାଳ କରିବା ପାଇଁ ସୁଯୋଗ ପାଉଛନ୍ତି । ଘରୋଇ ସ୍କୁଲ ଓ କଲେଜମାନଙ୍କର ପରିଚାଳନା ସମିତି-ମାନଙ୍କରେ ବରାବର ଦଳାଦଳି ଲାଗିରହିଛି ଏବଂ ବହୁ ଅନୁଷ୍ଠାନରେ ପରିଚାଳନା କର୍ତ୍ତୃପକ୍ଷ ଅନୁଷ୍ଠାନମାନଙ୍କର ପାଣ୍ଠି ଆତ୍ମସାତ୍ କରିବାର ସୁଯୋଗ ପାଉଛନ୍ତି । ସ୍କୁଲ କଲେଜମାନଙ୍କରେ ଶିକ୍ଷାର ବାତାବରଣ ନାହିଁ । ଶିକ୍ଷାର ଏହି ପରିସ୍ଥିତିରେ ବିଂଶ ଶତାବ୍ଦୀ ଶେଷ ହେଉଛି । ପୃଥିବୀର ବିଭିନ୍ନ ଦେଶରେ ଯେତେବେଳେ ସବୁ ବିଷୟରେ ଜ୍ଞାନର ବିସ୍ଫୋରଣ ଘଟୁଛି, ଆମ ଦେଶରେ ଶିକ୍ଷିତ ଲୋକଙ୍କ ସଂଖ୍ୟା ବଢ଼ୁଛି, କିନ୍ତୁ ସେମାନେ ଜ୍ଞାନୀ ଓ ଶୃଙ୍ଖଳିତ ହୋଇପାରୁନାହାନ୍ତି । ଶିକ୍ଷାନୁଷ୍ଠାନ-ମାନଙ୍କର ସୁସଂଗଠନ ଓ ଶିକ୍ଷାର ମାନବର୍ଦ୍ଧନ ଏକବିଂଶ ଶତାବ୍ଦୀର ପ୍ରଧାନ କାର୍ଯ୍ୟ ହେବ ବୋଲି ଲୋକମାନେ ଆଶା କରୁଛନ୍ତି ।

# ପୁରାତନ ଓ ନୂତନ ସାମାଜିକ ବ୍ୟାଧି

( ୧୪ )

ବିଂଶ ଶତାବ୍ଦୀର ଆରମ୍ଭରୁ ଶେଷ ସମୟ ମଧ୍ୟରେ ଓଡ଼ିଶାର ସାମାଜିକ ଜୀବନରେ ପରିବର୍ତ୍ତନ ବିଷୟର କଲାବେଳେ, ସାମାଜିକ ଜୀବନର ବିଭିନ୍ନ ଦିଗ ଓ ଅଙ୍ଗ ବିଷୟରକୁ ନେବାକୁ ହେବ । ସାମାଜିକ ଜୀବନରେ ସାଧାରଣତଃ ବହୁ ବିଷୟ ଅନ୍ତର୍ଭୁକ୍ତ କରାଯାଏ । ପରିବାରର ଗଠନପ୍ରଣାଳୀ, ପାରିବାରିକ ଜୀବନ, ଗୋଷ୍ଠୀଗତ ଜୀବନରେ ବ୍ୟକ୍ତିଗତ ପରିବାରର ବନ୍ଧୁବାନ୍ଧବ, ସାହି ପଡ଼ିଶା, ଗାଁ ଭିତର ଓ ବାହାର ଲୋକଙ୍କ ସହ ସମ୍ବନ୍ଧ ଓ ବ୍ୟବହାର, ବିବାହ ପ୍ରଭୃତି ପଦ୍ଧତି, ବେଶଭୂଷା, ରନ୍ଧାବଢ଼ା, ଖାଇବା ପିଇବା ରୀତି, ଓଷାବାର, ପର୍ବପର୍ବାଣି ଯାନିଯାତ୍ରା, ମନୋରଞ୍ଜନ ପ୍ରଣାଳୀ, ସାମାଜିକ ବନ୍ଧନ ଓ ନିୟନ୍ତ୍ରଣ, ପରମ୍ପରା ଓ ସାମୂହିକ ମୂଲ୍ୟବୋଧ, ଦୈନନ୍ଦିନ ଜୀବନପ୍ରଣାଳୀ, ଭାଷା, ସାହିତ୍ୟ, ସଙ୍ଗୀତ, ନୃତ୍ୟ ଗୀତ, ବିଭିନ୍ନ ପ୍ରକାର ସାମାଜିକ ସଙ୍ଗଠନ ପ୍ରଭୃତି ସମସ୍ତ କଥା ସାମାଜିକ ଜୀବନ ମଧ୍ୟରେ ଅନ୍ତର୍ଭୁକ୍ତ । କୌଣସି ରାଜ୍ୟର ବିଭିନ୍ନ ଅଞ୍ଚଳ ମଧ୍ୟରେ ସବୁ କଥା ସମାନ ନ ଥାଏ । ଓଡ଼ିଶାରେ ମଧ୍ୟ ବିଭିନ୍ନ ଅଞ୍ଚଳରେ ସବୁ କଥା ସମାନ ନ ଥିଲା କିମ୍ବା ବର୍ତ୍ତମାନ ମଧ୍ୟ ନାହିଁ । କଥାରେ ଅଛି—ନଈକେ ବାଙ୍କ, କଥାକେ ଫାଙ୍କ । କିନ୍ତୁ ଓଡ଼ିଶାର ସବୁ ଅଞ୍ଚଳରେ ଲୋକମାନଙ୍କ ମଧ୍ୟରେ ମୌଳିକ ଜୀବନଯାପନ ପଦ୍ଧତିର ଅଧିକାଂଶ କଥା ସମାନ ଥିଲା ଏବଂ ବର୍ତ୍ତମାନ ମଧ୍ୟ ଅଛି । ଅଳ୍ପ-ସଂଖ୍ୟକ ଲୋକଙ୍କୁ ଛାଡ଼ିଦେଲେ ସବୁ ଲୋକଙ୍କର ଧର୍ମ ହିନ୍ଦୁଧର୍ମ ଥିବାରୁ ଦେବଦେବୀ ପୂଜା, ପୂନିଅଁ ପରବ, ଭାଗବତ, ରାମାୟଣ, ମହାଭାରତ ଓ ବିଭିନ୍ନ ପୁରାଣ ପାଠ, ମେଳା ମହୋତ୍ସବ, ବିବାହ ଉପନୟନ ପଦ୍ଧତି ପ୍ରଭୃତି ସମାନ ଥିଲା । ସବୁଆଡ଼େ ଦୃଢ଼ ଜାତିଭେଦ ଥିଲା ଏବଂ ଛୁଆଁ ଅଛୁଆଁ ଭାବ ଥିଲା । ଭାଷା ଏକ ଥିଲା । ସବୁଆଡ଼େ ଅଧିକାଂଶ ଲୋକ ନିରକ୍ଷର ଥିବାରୁ ଲେଖିପଢ଼ି ପାରୁ ନ ଥିଲେ, କିନ୍ତୁ ଚାଟଶାଳୀ ପଢ଼ା ପଦ୍ଧତି ପ୍ରାୟ ସବୁଆଡ଼େ ସମାନ ଥିଲା । ରୋଗ ଚିକିତ୍ସା ପାଇଁ କବିରାଜି ଔଷଧ, ଗୁଣି ଗାରଡ଼ି, ଝଡ଼ାଫୁଙ୍କା ପ୍ରଭୃତି ସବୁଆଡ଼େ ପ୍ରଚଳିତ ଥିଲା । ଲୋକମାନେ ଅଶିକ୍ଷିତ ଥିବାରୁ ସବୁଆଡ଼େ ବହୁପ୍ରକାର ଅନ୍ଧବିଶ୍ୱାସ ଓ

କୁସଂସ୍କାର ଥିଲା । କୃଷି ସବୁଅଞ୍ଚଳେ ପ୍ରଧାନ ବ୍ୟବସାୟ ଥିବା ହେତୁ ଏବଂ ପରିବାରର ଭରଣପୋଷଣ ପାଇଁ ଲୋକମାନେ କୃଷି ଉପରେ ନିର୍ଭର କରୁଥିବାରୁ ଅଧିକାଂଶ ଲୋକଙ୍କର, ବିଶେଷତଃ ଜମିଥିବା ଲୋକଙ୍କର ପରିବାର ଏକାନ୍ନବର୍ତ୍ତୀ ଯୌଥ ପରିବାର ଥିଲା । ଏ ସବୁ ମୌଳିକ ବିଷୟ ସହ ଲୋକମାନଙ୍କର ଦୈନନ୍ଦିନ ଜୀବନ ଯାପନ ପ୍ରଣାଳୀ, ଖାଦ୍ୟପେୟ, ରନ୍ଧାବଢ଼ା, ପିଠାପଣା, ଶତାମୂଳକ, ଚାଲିଚଳଣି ପ୍ରାୟ ସମାନ ଥିଲା । ସ୍ଥାନୀୟ ଜୀବନଯାପନ ଏବଂ କେତେକ ଆଞ୍ଚଳିକ ବୈଷମ୍ୟ ମଧ୍ୟରେ ସମଗ୍ର ରାଜ୍ୟରେ ସାଂସ୍କୃତିକ ଓ ସାମାଜିକ ଜୀବନ ପ୍ରାୟ ସମାନ ଥିଲା ।

ବସ୍ତୁତଃ ହିନ୍ଦୁଧର୍ମ କୃଷିଭିତ୍ତିକ ଜୀବିକା ନିର୍ବାହ ଏବଂ ଗ୍ରାମଗୋଷ୍ଠୀମାନଙ୍କ ମଧ୍ୟରେ ଜୀବନ ଯାପନ ହେତୁ, ସମଗ୍ର ଭାରତବର୍ଷରେ ସବୁ ରାଜ୍ୟର ମୌଳିକ ସାମାଜିକ ଅବସ୍ଥାମାନଙ୍କ ମଧ୍ୟରେ ବହୁପ୍ରକାର ସାମଞ୍ଜସ୍ୟ ପୂର୍ବକାଳରୁ ଆଜି-ପର୍ଯ୍ୟନ୍ତ ରହି ଆସିଅଛି । ପରିବାର ସଙ୍ଗଠନ, ଗ୍ରାମଗୋଷ୍ଠୀ ଜୀବନ, ବିବାହାଦି ସମ୍ବନ୍ଧ ସ୍ଥାପନ, ଦେବଦେବୀ ପୂଜା, ପର୍ବପର୍ବାଣି, ଖାଇବା ପିଇବା ରୀତି, ସାମୂହିକ ମୂଲ୍ୟବୋଧ, ଦୈନନ୍ଦିନ ଜୀବନଯାପନ ପ୍ରଣାଳୀ, ସମାଜରେ ଜାତିଭେଦ, ସାମାଜିକ ନିୟନ୍ତ୍ରଣ ପ୍ରଭୃତି ଭାରତର ସବୁ ରାଜ୍ୟରେ ପ୍ରାୟ ସମାନ । ଭାଷା, ସାହିତ୍ୟ, ସଙ୍ଗୀତ ପ୍ରଭୃତିରେ ପ୍ରଭେଦ ହେତୁ ବିଭିନ୍ନ ରାଜ୍ୟ ମଧ୍ୟରେ ସାଂସ୍କୃତିକ ପ୍ରଭେଦ ଅଛି । ମାତ୍ର ବହୁ ସାମଞ୍ଜସ୍ୟ ହେତୁ ହିମାଳୟଠାରୁ କୁମାରିକା ଏବଂ କାମରୂପରୁ ସୌରାଷ୍ଟ୍ର ପର୍ଯ୍ୟନ୍ତ ସମଗ୍ର ଭାରତବର୍ଷରେ ଏକପ୍ରକାର ସାମାଜିକ ଜୀବନ ପ୍ରଚଳିତ ଅଛି ବୋଲି ପୃଥିବୀର ଅନ୍ୟ ଦେଶର ଲୋକମାନଙ୍କର ଧାରଣା । ଦେଶରୁ ବାହାରକୁ ଗଲେ ସମଗ୍ର ଭାରତବର୍ଷର ସାମାଜିକ ଐକ୍ୟ ମଧ୍ୟ ସହଜରେ ଅନୁମିତ ହୁଏ । ଇଂଲଣ୍ଡ ଓ ୟୁରୋପର ଅନ୍ୟଦେଶମାନଙ୍କର ଲୋକମାନଙ୍କର ସାମାଜିକ ଜୀବନ ଦେଖିଲେ ଜଣାଯାଏ ଯେ, ସେ ଦେଶ-ମାନଙ୍କର ସାମାଜିକ ଜୀବନ ଆମ ଭାରତବର୍ଷର ସାମାଜିକ ଜୀବନଠାରୁ ସମ୍ପୂର୍ଣ୍ଣ ଭିନ୍ନ, କିନ୍ତୁ ୟୁରୋପର ବିଭିନ୍ନ ଦେଶମାନଙ୍କର ସାମାଜିକ ଜୀବନ ମଧ୍ୟରେ ବହୁ ସାମଞ୍ଜସ୍ୟ ରହିଛି । ଏକାନ୍ନବର୍ତ୍ତୀ ଯୌଥ ପରିବାର ଇଂଲଣ୍ଡ ଓ ଫ୍ରାନ୍ସ ପ୍ରଭୃତି ଦେଶମାନଙ୍କରେ କେବେ ନ ଥିଲା । ବର୍ତ୍ତମାନ ସୁଦ୍ଧା ପରିବାରମାନ କ୍ଷୁଦ୍ର । ସାବାଳକ ପୁଅ ଝିଅ ବାପ ମା'ଙ୍କ ସହ ରହନ୍ତି ନାହିଁ । ଆମ ଜୀବନ ଗୋଷ୍ଠୀ-କୈନ୍ଦ୍ରିକ, ତାଙ୍କ ଜୀବନ ବ୍ୟକ୍ତି କୈନ୍ଦ୍ରିକ । ସେ ଦେଶମାନଙ୍କରେ କୌଣସି ପରିବାରରେ ବନ୍ଧୁବାନ୍ଧବ, ଜ୍ଞାତି କୁଟୁମ୍ବ ଆସି ରହନ୍ତି ନାହିଁ । ସେମାନଙ୍କର ବେଶଭୂଷା, ଖାଦ୍ୟ ପେୟ, ରନ୍ଧନ ପ୍ରଣାଳୀ, ଦୈନନ୍ଦିନ ଜୀବନ ଯାପନ ପ୍ରଣାଳୀ, ପରିବାରର ବିଭିନ୍ନ ଲୋକଙ୍କ ମଧ୍ୟରେ ସମ୍ବନ୍ଧ, ନାରୀ ପୁରୁଷଙ୍କ ମଧ୍ୟରେ ମିଳାମିଶା,

ବିବାହ ପ୍ରଣାଳୀ, ସାମାଜିକ ବନ୍ଧନ ଓ ନିୟନ୍ତ୍ରଣ, ନୃତ୍ୟ ଗୀତ, ପରମ୍ପରା, ମୂଲ୍ୟବୋଧ ପ୍ରଭୃତି ସବୁ ବିଷୟରେ ସେମାନଙ୍କ ଚାଲିଚଳଣି ଆମ ଦେଶଠାରୁ ଭିନ୍ନ । ସେଥିଯୋଗୁଁ ୟୁରୋପୀୟ ସମାଜ ଭାରତୀୟ ସମାଜଠାରୁ ଭିନ୍ନ ବୋଲି ସେମାନେ ଓ ଆମେ ସମସ୍ତେ ଉପଲବ୍ଧି କରି ପାରୁଛୁ ।

ଓଡ଼ିଶାରେ ଊନବିଂଶ ଶତାବ୍ଦୀର ପୂର୍ବ ଶତାବ୍ଦୀମାନଙ୍କରେ ସାମାଜିକ ଅବସ୍ଥାର ବିବରଣୀ ସାଧାରଣତଃ ଆମ୍ଭ ଗୋଚରକୁ ଆସେ ନାହିଁ । ଐତିହାସିକ ଏବଂ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ଗବେଷଣାରୁ ବିଭିନ୍ନ ଐତିହାସିକ ଯୁଗର ସାମାଜିକ ଅବସ୍ଥା ବିଷୟରେ ଆଭାସ ମିଳେ । କୌଣସି ଗୋଟିଏ ଯୁଗର ସାମାଜିକ ଅବସ୍ଥା ଶୂନ୍ୟରୁ ଉଦ୍‌ଭବ ହୁଏ ନାହିଁ । ଆମେରିକା ପରି ଏ ଦେଶରେ ବିଭିନ୍ନ ଦେଶରୁ ଲୋକମାନେ ଆସି ତିନି ଚାରି ଶହ ବର୍ଷ ମଧ୍ୟରେ ବସତି ସ୍ଥାପନ କରି ନାହାନ୍ତି । ଏ ଦେଶର ନଦୀ ଉପତ୍ୟକା ଏବଂ ବନ ଜଙ୍ଗଲ ମଧ୍ୟରେ ଲୋକମାନେ ହଜାର ହଜାର ବର୍ଷ ହେଲା ସାମାଜିକ ଜୀବନ ଯାପନ କରି ଆସିଛନ୍ତି । ଯୁଗରୁ ଯୁଗ ସାମାଜିକ ଜୀବନର କ୍ରମ ବିକାଶ ହୋଇଛି । ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରକାର ରାଜାମାନଙ୍କ ଶାସନରେ ପରିସ୍ଥିତି ସହିତ ସମନ୍ୱୟ ରଖି ଲୋକମାନେ ଗ୍ରାମଗୋଷ୍ଠୀ-ମାନଙ୍କରେ ସାମାଜିକ ଜୀବନଯାପନ କରିଛନ୍ତି । ତାହାର ଧାରାବାହିକ ଠିକଣଠି ବିବରଣୀ ଆମ ପାଖରେ ନାହିଁ । ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ବିଭିନ୍ନ ଲେଖକମାନଙ୍କ ଲେଖାରୁ ଆମ୍ଭେମାନେ ବିଗତ ଦେଢ଼ ଶହ ବର୍ଷର ଓଡ଼ିଶାର ସାମାଜିକ ଜୀବନ ବିଷୟରେ ବିଶଦଭାବରେ ଜାଣିବାକୁ ପାଉଛୁ । ଊନବିଂଶ ଶତାବ୍ଦୀର ମଧ୍ୟଭାଗରୁ ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧି ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଲୋକମାନଙ୍କ ଅବସ୍ଥା ଫକୀରମୋହନ, ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, ଭରତ ନାୟକ ପ୍ରଭୃତି ଲେଖକମାନଙ୍କ ଲେଖାରୁ ଏବଂ ବିଭିନ୍ନ କବିମାନଙ୍କର କାବ୍ୟ କବିତାରୁ ଆମେ ଜାଣିବାକୁ ପାଉଛୁ । ୧୯୨୦ ମସିହାଠାରୁ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ଲୋକମାନଙ୍କର ସାମାଜିକ ଓ ଅର୍ଥନୈତିକ ଅବସ୍ଥା ତ ଆମେ ସ୍ୱଚକ୍ଷୁରେ ଦେଖୁଛୁ । ଊନବିଂଶ ଶତାବ୍ଦୀର ସାମାଜିକ ଅବସ୍ଥାରୁ ଆମ୍ଭେମାନେ ତାହାର ପୂର୍ବଶତାବ୍ଦୀମାନଙ୍କର ଅବସ୍ଥା ଅନୁମାନ କରୁଛୁ । ବହୁ ଶତାବ୍ଦୀ ଧରି ଲୋକମାନଙ୍କର ସାମାଜିକ ଅବସ୍ଥାରେ ଯେ ଦ୍ରୁତ ପରିବର୍ତ୍ତନ ହୋଇ ନାହିଁ, ଏହା ସହଜରେ ଅନୁମେୟ ।

ଅନ୍ୟ ଗୋଟିଏ ଗୋଟିଏ ବିଷୟ ମଧ୍ୟ ସ୍ପଷ୍ଟ ଯେ ଊନବିଂଶ ଶତାବ୍ଦୀର ଶେଷଭାଗ ପୂର୍ବରୁ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ରାସ୍ତାଘାଟ ଏବଂ ଯିବା ଆସିବା କରିବାର ସୁବିଧା ମୋଟେ ନଥିଲା । ଯେଉଁସବୁ ଅଞ୍ଚଳ ପୂର୍ବତନ ଗଡ଼ଜାତ ରାଜ୍ୟ-

ମାନଙ୍କର ଅନ୍ତର୍ଭୁକ୍ତ ଥିଲା, ସେ ସବୁ ଅଞ୍ଚଳରେ ୧୯୪୭ ମସିହାରେ ଭାରତର ସ୍ୱାଧୀନତା ପର୍ଯ୍ୟନ୍ତ ମଧ୍ୟ ଯିବାଆସିବାର ସୁବିଧା ନଥିଲା । ୧୮୯୫ ମସିହା ପରେ ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲା କଟକ, ପୁରୀ, ବାଲେଶ୍ୱର ଓ ଗଞ୍ଜାମ ଜିଲ୍ଲାରେ ରେଲଗାଡ଼ି ଯାତାୟାତ ଚାଲି । ନ'ଅଙ୍କ ଦୁର୍ଭିକ୍ଷ ପରେ ୧୮୮୦ ମସିହାଠାରୁ ୧୯୧୦ ମସିହା ମଧ୍ୟରେ ଅନେକ ଲମ୍ବା ରାସ୍ତା ଓ କେନାଲ୍ ବନ୍ଧ ନିର୍ମିତ ହୋଇଥିଲା । ଏହି ସବୁ ଜିଲ୍ଲାମାନଙ୍କରେ ମଧ୍ୟ ଗାଁମାନଙ୍କରେ କେବଳ କଚାରାସ୍ତା ଏବଂ ଗାଁଦାଣ୍ଡ ଗୋହିରୀ ରାସ୍ତା ଥିଲା । ସେଗୁଡ଼ିକରେ ବର୍ଷାଦିନେ ଆଣ୍ଠିଏ ପାଣି କାଦୁଅ ଏବଂ ଶୀତ ଓ ଖରାଦିନେ ଆଣ୍ଠିଏ ଧୂଳି ଥାଏ । ୧୯୬୦ ମସିହା ପୂର୍ବରୁ ବଡ଼ ବଡ଼ ସରକାରୀ ରାସ୍ତା ମଧ୍ୟ ପିଚୁ ରାସ୍ତା ନଥିଲା । ପକ୍କା ରାସ୍ତା ସବୁ ମୋରମ ପକା ଗୋଡ଼ିରାସ୍ତା ଥିଲା । ବଡ଼ ବଡ଼ ରାସ୍ତାମାନଙ୍କ ମଧ୍ୟରୁ ମଧ୍ୟ ବହୁ ଅଂଶ କଚା ଥିଲା । ମହାନଦୀ, ବ୍ରାହ୍ମଣୀ, ବୈତରଣୀ, ସୁବର୍ଣ୍ଣରେଖା ପ୍ରଭୃତି ବଡ଼ ବଡ଼ ନଦୀ ଏବଂ ଆଉ ବହୁ ଛୋଟ ନଦୀ ନାଳମାନଙ୍କରେ ପୋଲ ନଥିଲା । ୧୯୬୦ ମସିହା ପର୍ଯ୍ୟନ୍ତ ଗ୍ରାମାଞ୍ଚଳେ ବସ୍ ଚାଲୁ ନଥିଲା । ୧୯୬୦ରୁ ୧୯୫୦ ମସିହା ମଧ୍ୟରେ ବିଭିନ୍ନ ଗ୍ରାମାଞ୍ଚଳ ଓ ସହରକୁ ଯୋଗ କରୁଥିବା ନାଲିଗୋଡ଼ି ରାସ୍ତାମାନଙ୍କରେ ଅଳ୍ପ ସଂଖ୍ୟକ ଛୋଟ ଛୋଟ ବସ୍ ଚାଲୁଥିଲା । ଊନବିଂଶ ଶତାବ୍ଦୀରେ ଓ ତା ପୂର୍ବରୁ ଗୋଟିଏ ଅଞ୍ଚଳରୁ ଅନ୍ୟ ଅଞ୍ଚଳକୁ ଯିବା ଆସିବା କରିବାକୁ ମୋଟେ ସୁବିଧା ନଥିଲା । ବନ ଜଙ୍ଗଲ ପୂର୍ଣ୍ଣ ଗଡ଼ଜାତ ରାଜ୍ୟମାନଙ୍କର ବିଭିନ୍ନ ଅଞ୍ଚଳ ଦୁର୍ଗମ ଥିଲା । ସବୁଆଡ଼େ ପାଦରେ ଚାଲିକରି ଯିବା କିମ୍ବା ବଳଦଗାଡ଼ିରେ ଯିବା ବ୍ୟତୀତ ଲୋକମାନଙ୍କର ଅନ୍ୟ ଉପାୟ ନଥିଲା । ଦୂରକୁ ଯିବା ଆସିବାର ସୁବିଧା ନଥିବାରୁ ବନ୍ଧୁବାନ୍ଧବ, ସାହିପଡ଼ିଶା, ହାଟବଜାର, ମେଳାମହୋତ୍ସବ, ଯାତ୍ରା ଓ ପାଲା ପ୍ରଭୃତି ସମସ୍ତ ସାମାଜିକ ମିଳାମିଶା ସ୍ଥାନୀୟ ଅଞ୍ଚଳରେ ସୀମାବଦ୍ଧ ଥିଲା । ସ୍ଥାନୀୟ ଅଞ୍ଚଳ ଅଧିକାଂଶ ସ୍ଥଳରେ ଦଶ ପନ୍ଦର ଗୋଟି ଗାଁ ମଧ୍ୟରେ ସୀମାବଦ୍ଧ ଥିଲା । ତାହାରି ମଧ୍ୟରେ ଥିଲେ ମହାଜନ, ଜମିଦାର, କବିରାଜ, ପୁରୋହିତ, ଧୋବା, ଭଣ୍ଡାରି, ବଢ଼େଇ, କମାର, କୁମ୍ଭାର ପ୍ରଭୃତି ଦୈନନ୍ଦିନ ଜୀବନର ସମସ୍ତ ଆବଶ୍ୟକ ଲୋକ ।

ଆହୁରି ମଧ୍ୟ ସ୍ପଷ୍ଟ ଯେ, ସବୁ ଅଞ୍ଚଳରେ ଅଧିକାଂଶ ଲୋକ ଦରିଦ୍ର ଓ ଅଶିକ୍ଷିତ ଥିଲେ । ଜାତିଭେଦ ଓ ସାମାଜିକ ନିୟନ୍ତ୍ରଣ ପ୍ରଥା ଦୃଢ଼ ଥିଲା । ଲୋକମାନଙ୍କ ମଧ୍ୟରେ କୁସଂସ୍କାର ଓ ଅନ୍ଧବିଶ୍ୱାସ ପୂରି ରହିଥିଲା । ଶହ ଶହ ବର୍ଷ ଧରି ସମାଜରେ ଦ୍ରୁତ ପରିବର୍ତ୍ତନ ନଥିଲା । ସମାଜ ରୁଦ୍ଧ ଓ ବାହାର ଜଗତରୁ ବିଚ୍ଛିନ୍ନ ଥିଲା । ସମାଜପତିମାନେ ସାଧାରଣତଃ ଉଚ୍ଚ ଜାତିର ଧନୀ ଲୋକମାନେ ଥିଲେ । ସେମାନେ ବିଭିନ୍ନ କଠୋର ପନ୍ଥା ଦ୍ୱାରା ପାରମ୍ପରିକ ଚାଲିଚଳଣି ଓ ରୀତି ନୀତି

ବଳବତ୍ତର ରହିଥିଲେ । ସମାଜ ବହୁ ବିଷୟରେ ସ୍ଥାଣୁ ଥିଲା । ପ୍ରତ୍ୟେକ ବ୍ୟକ୍ତିର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମାଜରେ ସ୍ଥାନ, ଅନ୍ୟମାନଙ୍କ ସହିତ ସମ୍ବନ୍ଧ, ଜୀବନ-ଯାପନ ପ୍ରଣାଳୀ ବନ୍ଧା ନିୟମ ଅନୁସାରେ ସ୍ଥିର ହେଉଥିଲା । ବ୍ୟକ୍ତିର ବୃଦ୍ଧି, ବିଚାର, ପ୍ରତିଭା, କର୍ମକୁଶଳତା ତାହାର ମଧ୍ୟରେ ସୀମାବଦ୍ଧ ଥିଲା । ସମାଜକୁ ବାହାରିଯାଇ ସ୍ୱାଧୀନଭାବରେ ଚଳିବାପାଇଁ ସୁବିଧା ନଥିଲା କିମ୍ବା ଅଧିକାଂଶ ଲୋକଙ୍କର ଶକ୍ତି ନଥିଲା । ଏହିପରି ସମାଜ ଆମ ଜନ୍ମ ସମୟ ବଂଶଗତାଦ୍ଧୀର ଦ୍ୱିତୀୟ ଦଶନ୍ଧି ପର୍ଯ୍ୟନ୍ତ ଚାଲି ଆସିଥିଲା । ସଂସ୍କାର ଓ ପରିବର୍ତ୍ତନର ବାତ ବ ଣ ନଥିଲା ।

ପୃଥିବୀ ଇତିହାସରେ ବିଭିନ୍ନ ସମାଜରେ କେଉଁ କାରଣରୁ ଏବଂ କେଉଁ ଭାବରେ ପରିବର୍ତ୍ତନ ହୋଇଛି, ସେ ବିଷୟରେ ବହୁ ମନୀଷୀ ବିଶ୍ଳେଷଣ ଓ ଆଲୋଚନା କରିଛନ୍ତି । କାର୍ଲ୍ ମାର୍କ୍ସଙ୍କ ମତରେ, ସାମାଜିକ ସମ୍ବନ୍ଧ ଅର୍ଥନୈତିକ ଉତ୍ପାଦନ କୌଶଳ ଓ ପ୍ରଣାଳୀ ଉପରେ ନିର୍ଭର କରେ । ଉତ୍ପାଦନ କୌଶଳ ଓ ପ୍ରଣାଳୀ ବଦଳିଗଲେ ପୂର୍ବରୁ ଥିବା ସାମାଜିକ ସମ୍ବନ୍ଧ ଏବଂ ନୂତନ ଉତ୍ପାଦନ ପ୍ରଣାଳୀ ମଧ୍ୟରେ ସଂଘର୍ଷ ଜାତ ହୁଏ । ଏ ସଂଘର୍ଷରେ ପୁରାତନ ସାମାଜିକ ସମ୍ବନ୍ଧର ପତନ ହୁଏ ଏବଂ ଏକ ନୂତନ ପ୍ରକାର ସାମାଜିକ ସମ୍ବନ୍ଧର ଉଦ୍‌ଭବ ହୁଏ । ତାହାଦ୍ୱାରା ନୂତନ ଉତ୍ପାଦନ ପ୍ରଣାଳୀ ଏବଂ ନୂତନ ସାମାଜିକ ସମ୍ବନ୍ଧ ମଧ୍ୟରେ ସମନ୍ୱୟ ପ୍ରତିଷ୍ଠିତ ହୁଏ । ମାର୍କ୍ସ ପୃଥିବୀର ବିଭିନ୍ନ ଦେଶର ବିଭିନ୍ନ ଯୁଗର ଇତିହାସ ଅନୁଶୀଳନ କରି ତାଙ୍କର ତଥ୍ୟ ପ୍ରତିପାଦନ କରିଥିଲେ । ଆମ ଦେଶର ସାମାଜିକ ଜୀବନର ଇତିହାସ ଅନୁଶୀଳନ କଲେ ମାର୍କ୍ସଙ୍କର ତତ୍ତ୍ୱ ଯଥାର୍ଥ ବୋଲି ମନେହୁଏ । ପ ରମ୍ପରିକ କୃଷି ଉତ୍ପାଦନ ପ୍ରଣାଳୀ ଉପରେ ଆଧାରିତ ସାମାଜିକ ଜୀବନରେ ଜମିମାଲିକ ଓ ରୟତ, ମହାଜନ ଓ ଖାତକ ଏବଂ ଜାତି ଜାତି ମଧ୍ୟରେ ସମ୍ବନ୍ଧ ପ୍ରତିଷ୍ଠିତ ହୁଏ । ଦୈନନ୍ଦିନ ଜୀବନଧାରଣ ଓ ଉତ୍ପାଦନ କାର୍ଯ୍ୟରେ କୃଷକର ବଢ଼େଇ, କମାର, କୁମ୍ଭାର, ତେଲି, ତନ୍ତୀ, ବାରିକ, ଗଉଡ଼, ୋବା ପ୍ରଭୃତି ବିଭିନ୍ନ ବୃତ୍ତିରେ ଲିପ୍ତ ଥିବା ପରିବାରମାନଙ୍କ ସହିତ ପାରମ୍ପରିକ ସମ୍ବନ୍ଧ ପ୍ରତିଷ୍ଠିତ ହୁଏ । କାଳକ୍ରମେ ସେ ସମ୍ବନ୍ଧ ଜାତି ଜାତି ମଧ୍ୟରେ ଥିବା ସମ୍ବନ୍ଧରେ ପରିଣତ ହୁଏ । କୃଷି ଜମି ଉପରେ ନିର୍ଭର କରି ଚଳୁଥିବା ହେତୁ ଯୌଥ ପରିବାର ସଂଗଠନ ଏବଂ ପରମ୍ପରାବଦ୍ଧ ଗ୍ରାମଗୋଷ୍ଠୀ ଜୀବନର ଉଦ୍‌ଭବ ହୁଏ । ଉତ୍ପାଦନ ପ୍ରଣାଳୀ ବଦଳିଗଲେ, ହଳଲଙ୍ଗଳ ପରିବର୍ତ୍ତେ ଟ୍ରାକ୍ଟର ଓ ବିଭିନ୍ନ ଯନ୍ତ୍ରପାତି ସାହାଯ୍ୟରେ ଚାଷ ହେଲେ, କଳକାରଖାନାରେ ବିଭିନ୍ନ ପଦାର୍ଥ ନିର୍ମିତ ହେଲେ, ବଳଦଗାଡ଼ି ପରିବର୍ତ୍ତେ ବସ୍, ଟ୍ରକ୍, ରେଲଗାଡ଼ି, ଜାହାଜ ଓ ଉଡ଼ାଜାହାଜ ପ୍ରଭୃତି ଦ୍ୱାରା ଯାତାୟାତ ଏବଂ ଜିନିଷପତ୍ର ପରିବହନ

ହେଲେ, ଗାଁ ଛାଡ଼ି ଲୋକମାନେ ଶିଳ୍ପ ବ୍ୟବସାୟ କେନ୍ଦ୍ର ସହରମାନଙ୍କୁ ଚାଲିଗଲେ ପୁରାତନ ସାମାଜିକ ଜୀବନ, ପରିବାର ସଙ୍ଗଠନ, ଗ୍ରାମଗୋଷ୍ଠୀ, ପାରିବାରିକ ଓ ଜାତି ଜାତି ମଧ୍ୟରେ ସମ୍ପର୍କ, ପରମ୍ପରା, କୌଳିକ ପ୍ରଥା ସବୁ ଭାଙ୍ଗିଯାଏ ଏବଂ ଜୀବନଧାରଣର ନୂତନ ପଦ୍ଧତି ଉଦ୍ଭବ ହୁଏ । ପୃଥିବୀର ବିଭିନ୍ନ ଦେଶରେ ଏହି ପ୍ରକ୍ରିୟାରେ ସମାଜ ଗୋଟିଏ ସ୍ତରରୁ ଅନ୍ୟ ଗୋଟିଏ ସ୍ତରକୁ ପରିବର୍ତ୍ତିତ ହୋଇଛି ।

ଏହି ଶତାବ୍ଦୀରେ ମଧ୍ୟ ବହୁ ଅର୍ଥଶାସ୍ତ୍ରୀ ଏବଂ ଐତିହାସିକ, ପୃଥିବୀର ବିଭିନ୍ନ ଦେଶରେ ସମାଜ ଓ ସଭ୍ୟତା କିପରି ଆଦିମ ସ୍ତରରୁ ଆଧୁନିକ ସଭ୍ୟତା ପର୍ଯ୍ୟନ୍ତ ଗତି କରିଛି, ପ୍ରତ୍ୟେକ ସ୍ତରର ମୌଳିକ ଅବସ୍ଥା ଓ ରୂପରେଖ କ'ଣ ଏବଂ ପ୍ରଗତି କିପରି ଏବଂ କେଉଁ କାରଣରୁ ଗୋଟିଏ ସ୍ତରରୁ ଅନ୍ୟ ସ୍ତରକୁ ହୋଇଛି, ବର୍ଣ୍ଣନା କରିଛନ୍ତି । ଅଳ୍ପ କେତେବର୍ଷ ତଳେ ଆମେରିକାର ଜଣେ ଐତିହାସିକ ରୋଷ୍ଟୋ (W. W. Rostow) ବର୍ଣ୍ଣନା କରିଛନ୍ତି ଯେ ଯେତେବେଳଯାଏ ଉତ୍ପାଦନ ପ୍ରଣାଳୀ ନିଉଟନଙ୍କ ଉଦ୍ଭାବନ ପୂର୍ବବର୍ତ୍ତୀ କାରିଗରୀ କୌଶଳ ମଧ୍ୟରେ ସୀମିତ ଥିଲା, ସେତେବେଳଯାଏ ଅର୍ଥନୈତିକ ଓ ସାମାଜିକ ଜୀବନ ପାରମ୍ପରିକ ଅବସ୍ଥାରେ ରହିଥିଲା । ନିଉଟନଙ୍କ ପରବର୍ତ୍ତୀ ବୈଜ୍ଞାନିକ କାରିଗରୀ କୌଶଳ ଯେତେବେଳେ ଉତ୍ପାଦନ କ୍ଷେତ୍ରରେ ଆସ୍ତେ ଆସ୍ତେ ବ୍ୟବହୃତ ହେଲା, ପାରମ୍ପରିକ ସମାଜ କ୍ରମେ ବଦଳିବାକୁ ଲାଗିଲା ଏବଂ ବିଭିନ୍ନ ସ୍ତର ଦେଇ ଶେଷରେ ଶିଳ୍ପ-ସମୃଦ୍ଧ ଦୈନନ୍ଦିନ ଜୀବନରେ ବହୁ ପ୍ରକାର ପଦାର୍ଥ ବ୍ୟବହାର କରୁଥିବା ଆଧୁନିକ ପାଶ୍ଚାତ୍ୟ ସଭ୍ୟତା ସ୍ତରକୁ ଆସିଲା । ରୋଷ୍ଟୋଙ୍କ ବର୍ଣ୍ଣନା ମାର୍କ୍ସଙ୍କ ତଥ୍ୟଠାରୁ ଭିନ୍ନ ନୁହେଁ, ଉଭୟ ବର୍ଣ୍ଣନା କରୁଛନ୍ତି ଯେ ଅର୍ଥନୈତିକ ପ୍ରଣାଳୀରେ କାରିଗରୀ ବିଦ୍ୟା ଓ ଉତ୍ପାଦନ କୌଶଳ ବଦଳିଗଲେ ସାମାଜିକ ସମ୍ବନ୍ଧ, ରୀତି, ନୀତି ଓ ଜୀବନ ବଦଳିଯାଏ । ବିଂଶ ଶତାବ୍ଦୀରେ ଆମ ଦେଶରେ ସାମାଜିକ ପରିବର୍ତ୍ତନ ଏହି ତଥ୍ୟର ସତ୍ୟତା ପ୍ରତିପାଦନ କରୁଛି ।

ଊନବିଂଶ ଶତାବ୍ଦୀ ଏବଂ ବିଂଶ ଶତାବ୍ଦୀର ପ୍ରଥମ ଦୁଇ ଦଶନ୍ଧି ପର୍ଯ୍ୟନ୍ତ ଓଡ଼ିଶା ସମେତ ଭାରତର ସବୁ ରାଜ୍ୟରେ ସମାଜ ପାରମ୍ପରିକ ଥିଲା । ଏ ଶତାବ୍ଦୀ ଆରମ୍ଭ ବେଳକୁ ଭାରତର ବିଭିନ୍ନ ଅଞ୍ଚଳରେ ବ୍ରିଟିଶ ଶାସନ ପ୍ରାୟ ଦେଢ଼ଶହ ବର୍ଷ ଚାଲିଥିଲା । ଆମ ଓଡ଼ିଶାରେ ୧୮୦୩ରୁ ୧୯୧୪ ପର୍ଯ୍ୟନ୍ତ ପ୍ରାୟ ଶହେବର୍ଷ ଚାଲିଥିଲା । ଭାରତର ବମ୍ବେ, ମାଡ୍ରାଜ ଓ କଲିକତା ଅଞ୍ଚଳ ଅପେକ୍ଷା ଓଡ଼ିଶାରେ ଇଂରାଜୀ ଶିକ୍ଷାର ପ୍ରସାର ଅତି କମ୍ ହୋଇଥିଲା । ସେଥିରେ କଳ କାରଖାନା କିଛି ନଥିଲା । ରେଲରାସ୍ତା ଉପକୂଳ ଅଞ୍ଚଳରେ ମୋଟେ କୋଡ଼ିଏ ବର୍ଷ କାଳ ଚାଲିଥିଲା । ଅନ୍ୟ

ଅଞ୍ଚଳରେ ମୋଟେ ରେଳ ଚଳାଚଳ ନଥିଲା । ସ୍ଥଳଆଡ଼େ ରାସ୍ତାଘାଟ ନଥିଲା ଏବଂ ବିଶେଷ ବସ୍ ଚଳାଚଳ ନଥିଲା । ଗଡ଼ଜାତ ରାଜ୍ୟମାନ ପୂରା ଅନ୍ଧାରୀ ମୂଲକ ଥିଲା । ସବୁଆଡ଼େ ସମାଜ ପାରମ୍ପରିକ ରୀତିରେ ଚାଲୁଥିଲା । ସଂସ୍କାର ଓ ପରିବର୍ତ୍ତନର ଗତି ଅତି ମନ୍ଥର ଥିଲା । ଗଡ଼ଜାତ ଅଞ୍ଚଳମାନଙ୍କରେ ସେ ପରିବର୍ତ୍ତନ ମୋଟେ ଆରମ୍ଭ ହୋଇ ନଥିଲା ।

୧୯୨୦ ମସିହାରୁ ୧୯୪୭ ମସିହା ମଧ୍ୟରେ ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ରାଜନୈତିକ ଓ ସାମାଜିକ ବିପ୍ଲବ ପ୍ରଭାବରେ ଗଡ଼ଜାତ ଅଞ୍ଚଳ ସମେତ ଓଡ଼ିଶାର ସବୁ ଅଞ୍ଚଳରେ ପୁରାତନ ସାମାଜିକ ଜୀବନରେ ଯୁଗାନ୍ତକାରୀ ପରିବର୍ତ୍ତନ ଆରମ୍ଭ ହେଲା । ଏହି ସମୟ ମଧ୍ୟରେ ଆଧୁନିକ ଶିକ୍ଷାର ପ୍ରସାର ହେଉଥିଲା, ବିଭିନ୍ନ ଅଞ୍ଚଳରେ ରାସ୍ତାଘାଟର ଉନ୍ନତି ହେଉଥିଲା ଏବଂ ରେଳ ମଟର ପ୍ରଭୃତି ଯାନବାହନ ଯୋଗେ ଲୋକମାନେ ଗୋଟିଏ ଅଞ୍ଚଳରୁ ଅନ୍ୟ ଅଞ୍ଚଳମାନଙ୍କୁ ଯିବା ଆସିବା କରିପାରୁଥିଲେ । ପୋଷ୍ଟ ଅଫିସ୍‌ମାନଙ୍କର ସଂଖ୍ୟା ବଢ଼ୁଥିଲା, ଖବରକାଗଜମାନଙ୍କର ସଂଖ୍ୟା ବଢ଼ୁଥିଲା ଏବଂ ଭାରତବର୍ଷର ଗୋଟିଏ ଅଞ୍ଚଳର ଖବର ଅନ୍ୟ ଅଞ୍ଚଳମାନଙ୍କରେ ପହଞ୍ଚି ପାରୁଥିଲା । ଗାନ୍ଧିଜୀଙ୍କ ନେତୃତ୍ୱରେ ଭାରତର ସ୍ୱାଧୀନତା ପାଇଁ ସଂଗ୍ରାମ କରୁଥିବା କଂଗ୍ରେସ ସଙ୍ଗଠନର ଶାଖା ଦେଶର ସବୁ ପ୍ରଦେଶ ଓ ଜିଲ୍ଲାମାନଙ୍କରେ ପ୍ରତିଷ୍ଠିତ ହୋଇଥିଲା । କେନ୍ଦ୍ର ସଙ୍ଗଠନର ନିର୍ଦ୍ଦେଶ ସବୁ ଅଞ୍ଚଳରେ ସହଜରେ ପ୍ରଚାରିତ ହୋଇ ପାରୁଥିଲା । ରାଜନୈତିକ ସଂଘର୍ଷ ସନ୍ଦେଶ ସହ ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟକ୍ରମ, ଜାତିଭେଦ ଓ ଛୁଆଁ ଅଛୁଆଁ ଭାବ ହଟାଇବା, ନିଶାଦ୍ରବ୍ୟ ସେବନ ବନ୍ଦ କରିବା, ବିଦେଶୀ ପଦାର୍ଥ ବ୍ୟବହାର ନ କରିବା, ଗ୍ରାମ ପରିବେଶ ନିର୍ମଳ ରଖିବା, ରୋଗୀସେବା, କୁସଂସ୍କାର ତ୍ୟାଗ ପ୍ରଭୃତି ବିଷୟରେ ବାର୍ତ୍ତା ଗ୍ରାମେ ଗ୍ରାମେ ପ୍ରଚାରିତ ହେଲା । ଗଡ଼ଜାତ ଅଞ୍ଚଳମାନଙ୍କରେ ପ୍ରଜାମଣ୍ଡଳ ସଙ୍ଗଠନମାନଙ୍କ ମାଧ୍ୟମରେ ପ୍ରଜାମାନଙ୍କର ଦାବି ଏବଂ ପ୍ରଜାମାନଙ୍କର ଦେଶର ସ୍ୱାଧୀନତା ଆନ୍ଦୋଳନରେ ସହଯୋଗ କରିବା ବାର୍ତ୍ତା ପ୍ରଚାରିତ ହେଲା । ସର୍ବଭାରତୀୟ କଂଗ୍ରେସ ନେତାମାନେ ବିଭିନ୍ନ ଅଞ୍ଚଳକୁ ଆସି ସଭାସମିତିମାନଙ୍କରେ ସ୍ୱାଧୀନତା ଆନ୍ଦୋଳନର ପ୍ରଗତି ଓ କାର୍ଯ୍ୟକ୍ରମ ଲୋକମାନଙ୍କୁ ବୁଝାଉଥିଲେ । ସ୍ଥାନୀୟ ପାରମ୍ପରିକ ରୁଦ୍ଧ ସମାଜରେ ଥିବା ଲୋକମାନେ ଅନ୍ୟ ଅଞ୍ଚଳର ଏବଂ ଅନ୍ୟ ପ୍ରଦେଶର ଲୋକମାନଙ୍କ ସମ୍ପର୍କରେ ଆସିଲେ । ପୃଥିବୀର ଓ ଭାରତବର୍ଷର ବିଭିନ୍ନ ଭାବଧାରା ଲୋକମାନଙ୍କ ମଧ୍ୟରେ ପ୍ରବେଶ କଲା । ରୁଦ୍ଧ ସମାଜର ଦ୍ୱାର କ୍ରମେ ଉନ୍ମୁକ୍ତ ହୋଇଗଲା । ଏସବୁ ଘଟଣା ସାଧାରଣ ଲୋକଙ୍କ ଦୈନନ୍ଦିନ ଜୀବନ ଉପରେ ପ୍ରଭାବ ପକାଇଲା ।

କିନ୍ତୁ ୧୯୨୦ ରୁ ୧୯୪୭ ମସିହା ମଧ୍ୟରେ ପୁରାତନ ଓ ପାରମ୍ପରିକ ସାମାଜିକ ଜୀବନ ଓ ଚିନ୍ତାଧାରା ଏବଂ ଆଧୁନିକ ଶିକ୍ଷା ଓ ସଂସ୍କାରର ଭାବଧାରା ମଧ୍ୟରେ ଯେଉଁ ସଂଘର୍ଷ ଲାଗିଥିଲା, ସେଥିରେ ପାରମ୍ପରିକ ଜୀବନର ବଳ ଅଧିକ ଥିଲା । କାରଣ ଅର୍ଥନୈତିକ ଉତ୍ପାଦନ କୌଶଳ ଓ ପ୍ରଣାଳୀରେ ବିଶେଷ କିଛି ପରିବର୍ତ୍ତନ ହୋଇ ନ ଥିଲା । ରାଜ୍ୟରେ ଅଳ୍ପ କେତେକ ଲୋକଙ୍କ ବ୍ୟତୀତ ପ୍ରାୟ ସବୁ ଲୋକ ଗ୍ରାମାଞ୍ଚଳରେ ବାସ କରୁଥିଲେ । ଗ୍ରାମାଞ୍ଚଳମାନଙ୍କ ନେତୃତ୍ୱ ପୁରାତନ ଓ ପାରମ୍ପରିକ ଚିନ୍ତାଧାରା ବିଶିଷ୍ଟ ଧନୀ ମହାଜନ ଓ ଜମିଦାରମାନଙ୍କ ହାତରେ ଥିଲା । ସେମାନେ ପ୍ରାୟ ସମସ୍ତେ ଉଚ୍ଚଜାତିର ଲୋକ ଥିଲେ । ମହାଜନ, ଜମିଦାର ଏବଂ ଉଚ୍ଚ ଜାତିର ଲୋକମାନେ ସମାଜର ପରମ୍ପରାଗତ ଜାତିଭେଦ, କୁସଂସ୍କାର, କୌଳିକ ପ୍ରଥା ପ୍ରଭୃତି ବଳବତ୍ତର ରଖିବାକୁ ଉଦ୍ୟମ କରୁଥିଲେ । ଆଧୁନିକ ଶିକ୍ଷା ବିଶେଷ ଭାବରେ ପ୍ରସାରିତ ହୋଇ ନ ଥିଲା ଏବଂ ସଂସ୍କାରବାଦୀଙ୍କ ସଂଖ୍ୟା ଓ ବଳ କମ୍ ଥିଲା । ବିଂଶ ଶତାବ୍ଦୀର ଆରମ୍ଭରୁ ସମୟ ଯେତେ ଆଗେଇ ଯାଉଥିଲା, ସେମାନଙ୍କର ସଂଖ୍ୟା ଓ ବଳ ସେତେ ବୃଦ୍ଧି ପାଉଥିଲା ।

୧୯୪୭ ମସିହା ପରେ ଶିକ୍ଷାର ପ୍ରସାର, ରାଜ୍ୟ, ଦେଶ ଓ ପୃଥିବୀର ବିଭିନ୍ନ ଦେଶ ମଧ୍ୟରେ ଯାତାୟାତ ଓ ଯୋଗାଯୋଗ ସୁବିଧାର ପ୍ରସାର, ଅର୍ଥନୈତିକ ଉତ୍ପାଦନ କ୍ଷେତ୍ରରେ ଅଧିକରୁ ଅଧିକ ବୈଜ୍ଞାନିକ କାରିଗରି କୌଶଳର ବ୍ୟବହାର ବିଭିନ୍ନ ବିଷୟରେ ପୃଥିବୀର ବିଭିନ୍ନ ଦେଶମାନଙ୍କର ଚିନ୍ତାଧାରାର ବିନିମୟ, ଦେଶରେ ଶାସନ ପଦ୍ଧତିରେ ପରିବର୍ତ୍ତନ ପ୍ରଭୃତି ଦ୍ୱାରା ପୁରାତନ ସାମାଜିକ ପଦ୍ଧତି ଏବଂ ପରମ୍ପରା କ୍ରମେ କ୍ରମେ ଦୁର୍ବଳ ହୋଇଗଲା । ଶତାବ୍ଦୀର ଶେଷରେ ପାରମ୍ପରିକ ନେତୃତ୍ୱର ବିଲୟ ହୋଇଛି ଏବଂ ପାରମ୍ପରିକ ଜୀବନ ପଦ୍ଧତି ଦୁର୍ବଳ ହୋଇଛି । ନୂତନ ଯୁଗର ଶିକ୍ଷିତ ଓ ଅର୍ଦ୍ଧ ଶିକ୍ଷିତ ଲୋକଙ୍କ ମଧ୍ୟରେ, ପୁରାତନ ଓ ନୂତନ ପଦ୍ଧତିର ସମ୍ମିଶ୍ରଣରେ ଗୋଟିଏ ସ୍ୱତନ୍ତ୍ର ଜୀବନ ପଦ୍ଧତି ପ୍ରଚଳିତ ହୋଇଛି । ଏଥିରେ ଆମର ପୁରାତନ ସମାଜର ଆଦର୍ଶ, ପରମ୍ପରା ଓ ମୂଲ୍ୟବୋଧ ନାହିଁ କିମ୍ବା ପାଶ୍ଚାତ୍ୟ ସଭ୍ୟତାର ବହୁ ଉତ୍କର୍ଷ ମୂଲ୍ୟବୋଧ ଏବଂ ଜୀବନପଦ୍ଧତି ନାହିଁ । ଏଥିରେ ଆମ ପୁରାତନ ଜୀବନର ବହୁ ଦୋଷ ଦୁର୍ବଳତା ସହିତ ପାଶ୍ଚାତ୍ୟ ଦେଶମାନଙ୍କରୁ ଆଗତ ବହୁ ଦୋଷ ଦୁର୍ବଳତା ମିଶ୍ରିତ ହୋଇଛି । ବିଂଶ ଶତାବ୍ଦୀର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଏହି ସାମାଜିକ ପରିବର୍ତ୍ତନ ପ୍ରକ୍ରିୟା ମଧ୍ୟରେ ଆମର ଜନ୍ମଠାରୁ ଶେଷଜୀବନ ପର୍ଯ୍ୟନ୍ତ ସମସ୍ତ ଅତିବାହିତ ହୋଇଛି । ଆମେ ଏ ପରିବର୍ତ୍ତନ ପ୍ରକ୍ରିୟାର ମାଧ୍ୟମ ହୋଇଛୁ, ଏହା ମଧ୍ୟରେ ଜୀବନବ୍ୟାପି କାର୍ଯ୍ୟ କରିଛୁ, ଜୀବନକାଳରେ ଏ ପରିବର୍ତ୍ତନ ଦେଖିଛୁ ଏବଂ ଅନୁଭବ କରିଛୁ ।

ଆମର ପୁରାତନ ସମାଜରେ କେତେଗୋଟି ଦୋଷ ବଦ୍ଧମୂଳ ଭାବରେ ରହିଥିଲା । ପ୍ରଥମରେ ଭାରତବର୍ଷର ସବୁ ରାଜ୍ୟପରି ଏ ରାଜ୍ୟରେ ହିନ୍ଦୁ ସମାଜରେ ଜାତିଭେଦ ଓ ଛୁଆଁ ଅଛୁଆଁ ଭାବ ସୁଦୃଢ଼ ଥିଲା । ଦ୍ୱିତୀୟରେ ଲୋକମାନଙ୍କ ମଧ୍ୟରେ ଗରିବାଗିର୍ଦ୍ଧ୍ୟ, ନିରକ୍ଷରତା, ଅଜ୍ଞତା, ଧର୍ମ ବିଷୟରେ ଭ୍ରାନ୍ତ ଧାରଣା, ବାହାର ଜଗତ ସହିତ ସମ୍ପର୍କଚ୍ଛିନ୍ନତା ହେତୁ ଦୈନନ୍ଦିନ ଜୀବନଯାପନରେ ବହୁ ପ୍ରକାର ଭ୍ରାନ୍ତ ଧାରଣା, ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୃଢ଼ ଭାବରେ ରହିଥିଲା । ସେ କୁସଂସ୍କାର ଶାସ୍ତ୍ର କଥନ କିମ୍ବା ମନୁଷ୍ୟର ବିଚାର ବା ଯୁକ୍ତିଯୁକ୍ତ ଚିନ୍ତା ଓ ଅନୁଭୂତି ପ୍ରଭୃତି ଦ୍ୱାରା ଗ୍ରହଣୀୟ ବୋଲି ପ୍ରତିପାଦନ କରିବା ସମ୍ଭବ ନ ଥିଲା । ତୃତୀୟରେ ଶାସ୍ତ୍ରାନୁମୋଦିତ ହେଉ ବା ନ ହେଉ, ସମାଜର ଚିରାଚରିତ ପନ୍ଥା ଗ୍ରହଣ ପାଇଁ କଠୋର ନିୟମମାନ ଥିଲା । ଗାଁ ପଞ୍ଚାୟତ, ଜାତିଆଣ ସଭା ପ୍ରଭୃତି ସାମାଜିକ ସଙ୍ଗଠନମାନ ବିଭିନ୍ନ ପନ୍ଥା ଦ୍ୱାରା ଚିରାଚରିତ ଚଳଣି ପଦ୍ଧତି ପାଳନ କରିବାକୁ ଲୋକମାନଙ୍କୁ ବାଧ୍ୟ କରୁଥିଲେ । ବ୍ୟକ୍ତି-ସ୍ୱାଧୀନତା ଅତ୍ୟନ୍ତ ସୀମିତ ଥିଲା ।

ଆମ ପିଲାଦିନ ୧୯୨୦ ମସିହା ବେଳକୁ ଆମ ଅଞ୍ଚଳରେ ଚିରାଚରିତ ଭାବରେ ଛତିଶ ପାଟକ ନିଜ ନିଜ ଜାତି ପାଇଁ ନିର୍ଦ୍ଦିଷ୍ଟ ମାର୍ଗରେ ଚାଲିଥିଲେ । ସେମାନଙ୍କ ମଧ୍ୟରେ ସଂଘର୍ଷ ନ ଥିଲା କିମ୍ବା ସଂସ୍କାରର ଉଦ୍ୟମ ନ ଥିଲା । ଗାଁ ମାନଙ୍କରେ ଉଚ୍ଚଜାତି ବ୍ରାହ୍ମଣ କରଣ, କ୍ଷତ୍ରିୟ ଖଣ୍ଡାୟତ, ଅନୁନ୍ନତ ଜାତି ବଢ଼େଇ, କମାର, ଭଣ୍ଡାରି, ଗଉଡ଼, ତେଲି, ଗୁଡ଼ିଆ, ଗୁଣ୍ଡି, କୁମ୍ଭାର, କେଉଟ ଏବଂ ନୀଚ ଜାତି ଧୋବା, ବାଉରି, କଣ୍ଡରା, ପାଣ, ହାଡ଼ି ପ୍ରଭୃତି ଜାତିର ଲୋକମାନେ ନିଜ ନିଜର କୌଳିକ ବ୍ୟବସାୟ ଅବଲମ୍ବନ କରି ଏବଂ ଜାତି ଜାତି ମଧ୍ୟରେ ପାରମ୍ପରିକ ସମ୍ବନ୍ଧ ରକ୍ଷା କରି ଚଳୁଥିଲେ । ବିଭିନ୍ନ ଜାତିର ଲୋକଙ୍କ ମଧ୍ୟରେ ଜାତିଆଣ ସଭା, ଡାଙ୍ଗରା, ମହୋତ୍ସବ ପ୍ରଭୃତି ହେଉଥିଲା । ଉଚ୍ଚ ଜାତିର ଲୋକେ ନୀଚଜାତିର ଲୋକଙ୍କୁ ଛୁଇଁଲେ ଛୁଆଁ ହୋଇଗଲେ ଭାବି ଲୁଗା ଧୋଉଥିଲେ । ନୀଚ ଜାତିର ଲୋକଙ୍କ ପାଇଁ ଅଲଗା କୂଅ ପୋଖରୀରେ ଅଲଗା ତୁଠ, ଅଲଗା ଶ୍ମଶାନ ଥିଲା । ଉଚ୍ଚ ଜାତିର ଲୋକମାନେ ନୀଚ ଜାତିର ଲୋକମାନଙ୍କ ହାତରୁ ପାଣି କିମ୍ବା ଖାଦ୍ୟ ଗ୍ରହଣ କରିବା ଅଚିନ୍ତନୀୟ ଥିଲା । ନୀଚ ଜାତିର ଲୋକମାନେ ଉଚ୍ଚ ଜାତିର ଲୋକମାନଙ୍କ ଘର ଅଗଣାକୁ ଯାଉ ନ ଥିଲେ କିମ୍ବା କୌଣସି ଲୁଗାପଟା, ବାସନ କୁସନ ଛୁଇଁ ନ ଥିଲେ । ବିବାହ ଉପନୟନ ପ୍ରଭୃତି ଉତ୍ସବରେ ନୀଚ ଜାତିର ଲୋକମାନେ ଡକାହୋଇ ଉଚ୍ଚ-ଜାତିର ଲୋକମାନଙ୍କ ଘରକୁ ଖାଇବାକୁ ଆସିଲେ ଦାଣ୍ଡରେ କିମ୍ବା ବାଡ଼ରେ ତଳେ ଖାଇବାକୁ ବସୁଥିଲେ । ସେହିଠାରେ ପତରରେ ଖାଇ ନିଜ ହାତରେ

ପତର ଉଠାଇ ପୋଖରୀରେ ହାତଧୋଇ ଘରକୁ ଯାଉଥିଲେ । ସେମାନେ ଉଚ୍ଚଜାତିର ଲୋକମାନଙ୍କଠାରୁ ଅଲଗା ପଡ଼ାରେ ରହୁଥିଲେ । ଉଚ୍ଚ ଜାତିର ଲୋକମାନେ ସେ ପଡ଼ା ମାଡ଼ୁ ନ ଥିଲେ । ମଜୁରି କରିବା ପାଇଁ ସେମାନଙ୍କୁ ଡାକିବାକୁ ଗଲେ ଦୂରରେ ଠିଆ ହୋଇ ଡାକୁଥିଲେ ।

ଉଚ୍ଚଜାତିର ଲୋକମାନେ ଭଣ୍ଡାରି, ତେଲି, କୁମ୍ଭାର, କେଉଟ, ବଢ଼େଇ, କମାର ପ୍ରଭୃତି ଅନ୍ୟ ଅନୁନ୍ନତ ଜାତିର ଲୋକମାନଙ୍କ ହାତର କୌଣସି ଖାଦ୍ୟ ଖାଉ ନ ଥିଲେ, ମାତ୍ର ସେମାନଙ୍କୁ ଛୁଇଁବାରେ କିମ୍ବା ସେମାନଙ୍କ ସଙ୍ଗରେ ବସା ଉଠା କରିବାରେ କୌଣସି କଟକଣା ନ ଥିଲା । ହାଟ ଓ ମେଳା ପ୍ରଭୃତିରେ ଯେଉଁଠାରେ ବହୁ ଲୋକଙ୍କର ସମାଗମ ହେଉଥିଲା, ସେଠାରେ ଛୁଆଁ ଅଛୁଆଁ ବାରଣ ନ ଥିଲା । ପ୍ରତି ଜାତିର ଲୋକ ସେହି ଜାତି ମଧ୍ୟରେ ବିବାହ କରୁଥିଲେ । ଅନ୍ୟ ଜାତିରେ ବିବାହ କରିବା ପ୍ରଶ୍ନ ଉଠୁ ନ ଥିଲା ।

ଜାତିମାନଙ୍କ ମଧ୍ୟରେ ବ୍ରାହ୍ମଣ ଜାତିର ସ୍ଥାନ ସବୁଠାରୁ ଉଚ୍ଚରେ ଥିବାରୁ ସେମାନଙ୍କର ଅନ୍ୟ ଜାତିମାନଙ୍କ ସହ ମିଶିବାରେ ଅଧିକ ବାରଣ ଥିଲା । ନୀଚ ଜାତିର ଲୋକମାନଙ୍କୁ ତ ବ୍ରାହ୍ମଣମାନେ ଛୁଉଁ ନ ଥିଲେ । ସେମାନଙ୍କ ଘରକୁ ଯିବା କିମ୍ବା ତାଙ୍କ ପିଣ୍ଡାରେ ବସିବା ପ୍ରଶ୍ନ ନ ଥିଲା । ବ୍ରାହ୍ମଣମାନେ ବ୍ରାହ୍ମଣେତର କୌଣସି ଜାତି ଘରେ ରନ୍ଧା ଖାଦ୍ୟ ଖାଉ ନ ଥିଲେ । ଗଉଡ଼, ଭଣ୍ଡାରି ପ୍ରଭୃତି ଅନୁନ୍ନତ ଜାତି ଘରେ ଜଳଖିଆ ମଧ୍ୟ ଖାଉ ନ ଥିଲେ କିମ୍ବା ତେଲି, ତାମ୍ବୁଲି, ଶୁଣ୍ଢି ପ୍ରଭୃତି ଜାତିର ଲୋକଙ୍କ ହାତରୁ ପାଣି ପିଉ ନ ଥିଲେ । କରଣ, କ୍ଷତ୍ରିୟ, ଖଣ୍ଡାୟତ ପ୍ରଭୃତି ଉଚ୍ଚ ଜାତିର ଲୋକଙ୍କ ଘରେ ଜଳଖିଆ ଖାଇବା କିମ୍ବା ପାଣି ପିଇବା ପାଇଁ ସେମାନଙ୍କୁ ବାରଣ ନ ଥିଲା । ବ୍ରାହ୍ମଣମାନଙ୍କ ମଧ୍ୟରେ ମଧ୍ୟ ବହୁ ଉଚ୍ଚ ନୀଚ ସ୍ତର ଥିଲା ଏବଂ ବହୁ ପ୍ରକାର ଉପଜାତି ଥିଲେ । ଶାସନୀ ବ୍ରାହ୍ମଣମାନେ ଅଣାସନୀ ବ୍ରାହ୍ମଣଙ୍କ ଘରେ ବନ୍ଧୁ କରୁ ନ ଥିଲେ ବା ଅନ୍ନ ଭୋଜନ କରୁ ନ ଥିଲେ । ବ୍ରହ୍ମଣମାନେ କେବଳ ତାଙ୍କ ସଙ୍ଗରେ ଭକ୍ଷ୍ୟଭୋଜ୍ୟ ସମ୍ବନ୍ଧ ଥିବା ବ୍ରାହ୍ମଣମାନଙ୍କ ଘରେ ଅନ୍ନ ଭୋଜନ କରୁଥିଲେ । ୧୯୨୦-୨୫ ମସିହା ମଧ୍ୟବର୍ତ୍ତୀ ଯେଉଁ ସମୟ କଥା ଲେଖୁଛୁ, ତାର ଦଶବର୍ଷ ଆଗରୁ ଗୋପବନ୍ଧୁ ଦାସ ଓ ନୀଳକଣ୍ଠ ଦାସ ପ୍ରଭୃତି ସତ୍ୟବାଦୀ ସ୍କୁଲ ହଷ୍ଟେଲରେ ହରିଜନ ପିଲମାନଙ୍କ ସହିତ ସବୁ ଜାତିର ପିଲା ଏକାଠି ବସି ଖାଇବାର ବ୍ୟବସ୍ଥା କରିଥିଲେ । ଏ ସଂସ୍କାର ସେମାନେ ଗାନ୍ଧିଜୀଙ୍କ ଆଗରୁ ଆରମ୍ଭ କରିଥିଲେ । ମାତ୍ର ତାହାର କୌଣସି ପ୍ରଭାବ ଆମଅଞ୍ଚଳ ଗ୍ରାମମାନଙ୍କରେ ପଡ଼ି ନ ଥିଲା । ୧୯୨୧ ମସିହା ପରେ ଗାନ୍ଧିଜୀ ଯେତେବେଳେ ଜାତିଭେଦ ଓ ଛୁଆଁ ଅଛୁଆଁ

ଭାବ ଲୋପ ପାଇଁ ସମଗ୍ର ଦେଶକୁ ଡାକଦେଲେ, ସେ ଶବ୍ଦ ଆମଆଡ଼ ଗାଁ ମାନଙ୍କରେ ମଧ୍ୟ ଶୁଭିଲା । କିନ୍ତୁ ତାହା ଧୀରେ ଧୀରେ କାର୍ଯ୍ୟରେ ପରିଣତ ହେବା ପାଇଁ ବହୁକାଳ ଲାଗିଲା । ୧୯୩୦-୩୧ ମସିହା ପର୍ଯ୍ୟନ୍ତ ତାହାର ପ୍ରଭାବ ଆମ ଅଞ୍ଚଳରେ ବିଶେଷ ଭାବରେ ଅନୁଭୂତ ହୋଇ ନ ଥିଲା ।

ସେହିପରି ଆମ ପିଲାକାଳ ପର୍ଯ୍ୟନ୍ତ ବହୁ ପ୍ରକାର ଅନ୍ଧ ବିଶ୍ୱାସ ଓ କୁସଂସ୍କାର ଓଡ଼ିଶାରେ ସବୁଆଡ଼େ ପ୍ରଚଳିତ ଥିଲା । ଲୋକମାନଙ୍କର ଦାରିଦ୍ର୍ୟ, ଶିକ୍ଷା ଦୀକ୍ଷାର ଅଭାବ, ସାଧାରଣ ସ୍ୱାସ୍ଥ୍ୟରକ୍ଷା ବିଷୟରେ ଅଜ୍ଞତା ଓ ସ୍ୱାସ୍ଥ୍ୟସେବାର ଅଭାବ ପ୍ରଭୃତି ହେତୁ ଗାଁ ମାନଙ୍କରେ ପୁରୁଷାନୁକ୍ରମେ ବହୁ ଅନ୍ଧ ବିଶ୍ୱାସ ଓ କୁସଂସ୍କାର ରହିଥିଲା । ଗାଁର ସ୍ତ୍ରୀଲୋକମାନଙ୍କୁ ବହୁବାର ଡାଆଣୀ, କାଲିସୀ, ଭୂତ ପ୍ରଭୃତି ଲାଗୁଥିଲେ ଏବଂ ଗାଁର ଗୁଣିଆଁମାନେ ସେଗୁଡ଼ିକୁ ଛଡ଼ାଉଥିଲେ । କାଲିସୀ ଲାଗିଥିବା ସ୍ତ୍ରୀଲୋକମାନେ ନାନା ପ୍ରକାର ରୋଗ ଭଲହେବା ପାଇଁ, ବନ୍ଧ୍ୟା ସ୍ତ୍ରୀଲୋକମାନଙ୍କର ପିଲାଛୁଆ ହେବା ପାଇଁ ହୁକୁମ୍ ଔଷଧ ପ୍ରଭୃତି ଦେଉଥିଲେ । ଦୋଳପୂର୍ଣ୍ଣିମୀ ଦିନ କେତେକ ଗଉଡ଼ଙ୍କୁ ଜାଡ଼ୁଆ ଲାଗୁଥିଲା । ସେମାନେ ଭାତ ଫୁଟୁଥିବା ବଲହାଣ୍ଡି ମଧ୍ୟରେ ହାତ ପୂରାଇ ଗୋରୁମାନଙ୍କ ଉପରକୁ ତାତିଲା ଭାତ ଫୋପାଡ଼ୁଥିଲେ । ପାଣିରେ ବୁଡ଼ି ଜଳୁଥିବା ନିଆଁ ବଳିତା ଗିଳି ଜାଡ଼ୁଆ ଛଡ଼ାଉଥିଲେ । ଲୋକମାନଙ୍କର ବହୁ ପ୍ରକାର ଡାଆଣୀ, ଚିର୍‌ଗୁଣୀ, ଭୂତପ୍ରେତ ପ୍ରଭୃତିରେ ବିଶ୍ୱାସ ଥିଲା । ଭୂତକୁ ଦେଖିଲେ ବୋଲି ଭାବି ଭୟରେ କେତେକ ଲୋକ ମରିଯାଉଥିଲେ । ଅନ୍ୟମାନଙ୍କୁ ଭୂତ ଲାଗିଲେ ଗୁଣିଆଁମାନେ ଝଡ଼ା ଫୁଙ୍କା କରି କାଟପାଣି ପ୍ରଭୃତି ଦେଇ ଭୂତ ଛଡ଼ାଉଥିଲେ । ହଇଜା ଓ ବସନ୍ତ ପ୍ରଭୃତି ମହାମାରୀ ରୋଗସବୁ ଠାକୁରାଣୀଙ୍କ କୋପରୁ ହେଉଥିଲା ବୋଲି ଲୋକମାନଙ୍କର ଦୃଢ଼ ବିଶ୍ୱାସ ଥିଲା । ଗାଁରେ ରୋଗ ଆରମ୍ଭ ହେବାକ୍ଷଣି ଗାଁ ଠାକୁରାଣୀଙ୍କୁ ମାର୍ଜନା କରିବା, ଠାକୁରାଣୀଙ୍କ ପାଖରେ ସଂକୀର୍ତ୍ତନ କରିବା ଏବଂ ଛେନା କଦଳୀ ପ୍ରଭୃତି ପଣା କରି ଠାକୁରାଣୀଙ୍କୁ ପୂଜା କରିବା ଓ ଗାଁ ଛକମୁଣ୍ଡରେ ପଣା ଦେବା, ବସନ୍ତରୋଗର ନିରାକରଣ ପାଇଁ ନଅଦିନ ପର୍ଯ୍ୟନ୍ତ ମଙ୍ଗଳା ମା' କିମ୍ବା ଶୀତଳା ଠାକୁରାଣୀଙ୍କୁ ପୂଜା କରିବା, ବହୁ ପ୍ରକାର ରୋଗରେ ଝଡ଼ାଫୁଙ୍କା ଓ ଟୁଣ୍ଡା ଟୁଣ୍ଡିକ ଔଷଧ ବ୍ୟବହାର କରିବା, ବହୁବାର ସବୁଆଡ଼େ କୌଣସି ଠାକୁର ବା ଠାକୁରାଣୀଙ୍କ ପାଖରେ ହୁକୁମ୍ ଔଷଧ ବଣ୍ଟାହେବା ଏବଂ ସେଠାରେ ବହୁ ଜନସମାଗମ ହେବା ପ୍ରଭୃତି ବହୁ ଅନ୍ଧବିଶ୍ୱାସ ଲୋକମାନଙ୍କ ମଧ୍ୟରେ ପୂର୍ଣ୍ଣମାତ୍ରାରେ ଥିଲା । ନୀଳକଣ୍ଠ ଦାସ କାଲିସୀ ଲାଗିଥିବା ଜଣେ ସ୍ତ୍ରୀଲୋକକୁ ମାରିଥିଲେ । ଆମ ପିଲାକାଳେ ମଧ୍ୟ କଲେଜରେ ପଢ଼ୁଥିବା ଅନେକ ଛାତ୍ର କାଲିସୀ ଓ ଡାଆଣୀ ଲାଗିଥିବା ଲୋକଙ୍କୁ ବିଦ୍ରୂପ କରୁଥିଲେ । ମାତ୍ର ସଂସ୍କାରବାଦୀଙ୍କ ମତ ସାଧାରଣ

ଲୋକଙ୍କ ଉପରେ ବିଶେଷ ପ୍ରଭାବ ପକାଇପାରୁ ନ ଥିଲା । ଏ ସବୁ ବ୍ୟତୀତ ବ୍ରାହ୍ମଣମାନେ ହଳ ନ କରିବା, ଶାସନୀ ବ୍ରାହ୍ମଣମାନେ ପାରୁସ୍ପଷ ନ କରିବା, ବିଭିନ୍ନ ପ୍ରକାର ଲୋକ ମୁଣ୍ଡରେ ଚୁଟି ରଖି ଠାକୁର ଠାକୁରାଣୀଙ୍କ ପାଖରେ ବାଳ ପକାଇବା, ବିପଦରୁ ରକ୍ଷା ପାଇବା ପାଇଁ ଠାକୁରାଣୀଙ୍କୁ ବଳି ଯାଚ ଛେଳି, ମେଣ୍ଢା, ମଇଁଷି ବଳିଦେବା ପ୍ରଭୃତି ବହୁ ପ୍ରକାର ଅଯୌକ୍ତିକ ଧର୍ମବିଶ୍ୱାସ ଲୋକମାନଙ୍କ ମଧ୍ୟରେ ଥିଲା ।

ବିଗତ ପଚସ୍ତରି ବର୍ଷ ମଧ୍ୟରେ ବହୁ କୁପଦ୍ଧତି କ୍ରମେ କ୍ରମେ ଲୋପ ପାଇଯାଇଛି । ଅନେକ ପୁରାତନ କୁପଦ୍ଧତି ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ମଧ୍ୟ ଅଛି । ତାହା ବ୍ୟତୀତ ଅନେକ ମାରାତ୍ମକ କୁପଦ୍ଧତି ଯାହାକି ଲୋକମାନଙ୍କ ମଧ୍ୟରେ ପୂର୍ବେ ପ୍ରଚଳିତ ନ ଥିଲା, ତାହା ସମାଜରେ ପ୍ରବେଶ କରିଛି । ଶିକ୍ଷାର ପ୍ରସାର, ଦେଶ ବିଦେଶକୁ ଯିବା ଆସିବା କରିବା ସୁବିଧା, ଶିଳ୍ପ ଉଦ୍ୟୋଗର ପ୍ରସାର, ବଡ଼ ବଡ଼ ସହରମାନଙ୍କର ପ୍ରତିଷ୍ଠା, ଗ୍ରାମ ଓ ସହରମାନଙ୍କ ମଧ୍ୟରେ ଯୋଗାଯୋଗ, ସିନେମା, ରେଡ଼ିଓ, ଟେଲିଭିଜନ ପ୍ରଭୃତିର ପ୍ରସାର, ଗ୍ରାମ ଓ ସହରମାନଙ୍କରେ ବହୁ ପ୍ରକାର ନୂଆ ଜିନିଷର ବିକାକିଣା, ଜୀବିକା ନିର୍ବାହ ପାଇଁ ବହୁ ପ୍ରକାର ବୃତ୍ତି ଓ ପନ୍ଥା ଅବଲମ୍ବନ, ପରିବାର ସଙ୍ଗଠନର ପରିବର୍ତ୍ତନ, ଜାତିଆଣ ଓ ପାରମ୍ପରିକ ଗ୍ରାମ୍ୟ ନେତୃତ୍ୱର ଅବସାନ, ଶାସନ ପଦ୍ଧତିରେ ପରିବର୍ତ୍ତନ ଏବଂ ବିଭିନ୍ନ ଗଣତାନ୍ତ୍ରିକ ଶାସନ ସଙ୍ଗଠନ ପାଇଁ ଘନ ଘନ ନିର୍ବାଚନ ପ୍ରଭୃତିର ପ୍ରଭାବରେ ଶତାବ୍ଦୀର ଆରମ୍ଭରେ ଯେଉଁ ସାମାଜିକ ପଦ୍ଧତିମାନ ଥିଲା, ତାହା ବହୁ ପରିମାଣରେ ବଦଳିଯାଇଛି । ଅନେକ ପାରମ୍ପରିକ ପଦ୍ଧତିର ସ୍ଥିତି ମଧ୍ୟ ନୂତନ ସାମାଜିକ ପରିବେଶ ମଧ୍ୟରେ ବଦଳିଯାଇଛି ।

୧୯୨୧ ମସିହା ପରେ ଛୁଆଁ ଅଛୁଆଁ ଭାବ ଓ ଜାତିଭେଦ ଲୋପ ପାଇଁ କାର୍ଯ୍ୟକ୍ରମ ସନାତନପନ୍ଥୀଙ୍କର ଘୋର ବିରୋଧ ସତ୍ତ୍ୱେ ଭାରତବର୍ଷର ସ୍ଥିରଆଡ଼େ ପୁରାତନ ସମାଜ ଉପରେ ଅଭୂତପୂର୍ବ ପ୍ରଭାବ ପକାଇଲା । ହଜାର ହଜାର ବର୍ଷ ଧରି ଦୃଢ଼ ଥିବା ଜାତିଭେଦ ଓ ଛୁଆଁ ଅଛୁଆଁ ଭାବ ଉପରେ ଏପରି ଆଘାତ କେବେ ପଡ଼ି ନଥିଲା । ଗାନ୍ଧିଜୀଙ୍କ ଏହି ବିଚାରଧାରା କଂଗ୍ରେସକର୍ମୀଙ୍କ ପ୍ରଚାର ମାଧ୍ୟମରେ ସବୁଆଡ଼ ପରି ଆମଆଡ଼େ ବିଶେଷତଃ ୧୯୩୦ ମସିହାଠାରୁ ଅନୁଭୂତ ହେଲା । ଜନସାଧାରଣଙ୍କ ମଧ୍ୟରେ ଐକ୍ୟ ପ୍ରତିଷ୍ଠା ପାଇଁ ଅସ୍ପୃଶ୍ୟତା ନିବାରଣ ସ୍ୱାଧୀନତା ଆନ୍ଦୋଳନର ଗୋଟିଏ ଅବିଚ୍ଛେଦ୍ୟ ଅଙ୍ଗ ଥିଲା । ୧୯୫୦ ମସିହା ପରେ ଭାରତର ନୂତନ ସମ୍ବିଧାନରେ ଅସ୍ପୃଶ୍ୟତା ଗୋଟିଏ ଦଣ୍ଡନୀୟ ଅପରାଧ ହେଲା । ହରିଜନ ଓ ଉପଜାତିର ଲୋକଙ୍କ ପାଇଁ ରାଜ୍ୟ ବିଧାନସଭା ଓ ପାର୍ଲିଆମେଣ୍ଟରେ ସ୍ଥାନ ସଂରକ୍ଷିତ ହେଲା । ସ୍କୁଲ କଲେଜରେ ମଧ୍ୟ ସେମାନଙ୍କ

ପାଇଁ ସ୍ଥାନ ସଂରକ୍ଷିତ ହେଲା । ବିଗତ ପ୍ରାୟ ୪୫ ବର୍ଷ ହେଲା ସେମାନଙ୍କୁ ଏସବୁ ସୁବିଧା ଦିଆଯାଉଛି । ଏହି ୪୫ ବର୍ଷରେ ଶିକ୍ଷାର ପ୍ରସାର ଦ୍ରୁତଗତିରେ ହେଉଛି । ଦେଶ ଓ ସମାଜର ଐକ୍ୟ ପାଇଁ ଜାତିଭେଦ ପ୍ରଭୃତି ସାମାଜିକ ଭେଦଭାବ ଉଠାଇ ଦେବାକୁ ସବୁଆଡ଼େ ପ୍ରୟାସ କରାଯାଉଛି ।

ଏ ସବୁ ସତ୍ତ୍ୱେ ଶତାବ୍ଦୀର ଶେଷରେ ଦେଖା ଯାଉଛି ଯେ, ଗ୍ରାମାଞ୍ଚଳ ଓ ସହରମାନଙ୍କରେ ଯଦିଓ ଅସ୍ପୃଶ୍ୟତା ଓ ଜାତିଭେଦର ପୂର୍ବତନ ଉତ୍କଟତା ଅନେକ ପରିମାଣରେ ହ୍ରାସ ପାଇଛି, ତଥାପି ଜାତିଭେଦ କିମ୍ବା ଅସ୍ପୃଶ୍ୟତା ଲୋପ ପାଇ ନାହିଁ । ଅନ୍ୟ ଦିଗରେ ଜାତି ଭିତ୍ତିରେ ବିଭିନ୍ନ ଶ୍ରେଣୀର ଲୋକଙ୍କ ପାଇଁ ବିଭିନ୍ନ ସରକାରୀ ସ୍ତରରେ ଯେପରି ସ୍ଥାନସଂରକ୍ଷଣ ହେଉଛି, ତାହାଦ୍ୱାରା ଜାତିଭେଦ ବାନ୍ଧିକାଳ ବଞ୍ଚାଇ ରଖିବାକୁ ବ୍ୟବସ୍ଥା ଦେଉଛି । ବର୍ତ୍ତମାନ ହରିଜନ ଶ୍ରେଣୀର କୌଣସି ଲୋକକୁ ଛୁଇଁଦେଲେ ଉଚ୍ଚଜାତିର ଲୋକମାନଙ୍କୁ ଲୁଗା ଧୋଇବାକୁ ପଡ଼ିବ, ଏପରି ଭାବ କେଉଁଆଡ଼େ ନାହିଁ । ହରିଜନ ଶ୍ରେଣୀର ଲୋକମାନେ ସ୍କୁଲ, କଲେଜ, ସରକାରୀ ଓ ବେସରକାରୀ ଅଫିସ, ଦୋକାନ ବଜାର, ସଭା ସମିତିରେ ଉଚ୍ଚଜାତିର ଲୋକଙ୍କ ସହିତ ସମାନଭାବରେ ଚଳୁଛନ୍ତି । ଏ ବିଷୟରେ ଉଚ୍ଚଜାତିର ଲୋକଙ୍କ ମନରେ କୌଣସି ଦ୍ୱିଧା ବା ଗ୍ଳାନି ନାହିଁ । ମାତ୍ର ଗାଁମାନଙ୍କରେ ହରିଜନ ଲୋକଙ୍କ ସହିତ ଉଚ୍ଚଜାତିର ଲୋକମାନେ ପଂକ୍ତି ଭୋଜନରେ ଏକାଠି ଖାଇବାକୁ ବସୁନାହାନ୍ତି କିମ୍ବା ଉଚ୍ଚଜାତିର ଲୋକମାନେ ହରିଜନ ଲୋକମାନଙ୍କର ଘରେ ବସାଉଠା କରିବା କିମ୍ବା ସେମାନଙ୍କ ଘରେ ପାଣି ପିଇବା ବା କୌଣସି ଖାଦ୍ୟ ଖାଇବା ପ୍ରଭୃତି କରୁନାହାନ୍ତି । ସ୍କୁଲ, କଲେଜରେ ଉଚ୍ଚଜାତିର ପିଲା ଏବଂ ହରିଜନ ପିଲା ଏକା ବେଞ୍ଚରେ ବସି ପାଠ ପଢ଼ୁଛନ୍ତି, ଏକା ହଷ୍ଟେଲରେ ରହୁଛନ୍ତି ଏବଂ ଏକା ମେସ୍‌ରେ ଖାଉଛନ୍ତି, କିନ୍ତୁ ଗାଁକୁ ଗଲେ କୌଣସି ଉଚ୍ଚଜାତିର ଲୋକ କୌଣସି ହରିଜନ ପିଲାର ଘରେ ବସୁ ନାହିଁ କିମ୍ବା ତାଙ୍କ ଘରେ ଖାଉ ନାହିଁ । ଉଚ୍ଚଜାତିର ପରିବାର ଓ ହରିଜନ ପରିବାର ମଧ୍ୟରେ ବିବାହ ସମ୍ବନ୍ଧ ନାହିଁ । କୌଣସି କୌଣସି ସ୍ଥାନରେ ଏପରି ସମ୍ବନ୍ଧ ହେଲେ, ତାହା ସାମାଜିକ ବ୍ୟତିକ୍ରମ ବୋଲି ଧରାଯାଉଛି ଏବଂ ଏପରି ଘଟଣାମାନଙ୍କରେ ବହୁପ୍ରକାର କନ୍ଦଳ ଉପୁଜୁଛି । ଗାଁମାନଙ୍କରେ ହରିଜନ ଶ୍ରେଣୀର ଲୋକମାନେ ଉଚ୍ଚଜାତିର ଲୋକମାନଙ୍କ ସହିତ ଏକା ସାହିରେ ଘର କରି ରହୁ ନାହାନ୍ତି । ପୂର୍ବପରି ଉଚ୍ଚଜାତିର ଲୋକଙ୍କ ସାହିଠାରୁ ହରିଜନମାନଙ୍କ ସାହି ସବୁବେଳେ ଦୂରରେ ରହିଛି । ଦେବମନ୍ଦିରରେ ପ୍ରବେଶ ଏବଂ ସର୍ବସାଧାରଣ କୂଅ ପୋଖରୀ ବ୍ୟବହାର ପାଇଁ ହରିଜନମାନଙ୍କର ଆଇନଗତ ଦାବି ଥିଲେ ମଧ୍ୟ ସେମାନେ ଦେବମନ୍ଦିରରେ ପ୍ରବେଶ କରୁନାହାନ୍ତି କିମ୍ବା ସର୍ବସାଧାରଣ କୂଅ

ବ୍ୟବହାର କରୁ ନାହାନ୍ତି । ପୂର୍ବପରି ବିଭିନ୍ନ ଜାତି ପାଇଁ ବିଭିନ୍ନ ଶ୍ମଶାନ ଅଛି । ବିଭିନ୍ନ ପ୍ରକାର ହରିଜନ ଜାତି ମଧ୍ୟରେ ମଧ୍ୟ ବିବାହ, ଖିଆପିଆ, ଧୋବା, ଭଣ୍ଡାରି ସେବା ପ୍ରଭୃତି ହେଉ ନାହିଁ । ଧୋବାପରି ଝିଅ ବାଉରି କିମ୍ବା ପାଣ ଘରେ ବିବାହ କରୁନାହିଁ । କିମ୍ବା ଧୋବା ବାଉରି ପାଣ ପ୍ରଭୃତି ହରିଜନ ଜାତି ଏକାଠି ବସି ଖାଉ ନାହାନ୍ତି । ପ୍ରତ୍ୟେକ ଜାତିର ବିବାହ ସମ୍ବନ୍ଧ ସେହି ଜାତି ମଧ୍ୟରେ ହେଉଛି । ଏସବୁ ବିଷୟରେ ଭେଦଭାବ ପୂର୍ବପରି ରହିଛି ଏବଂ ଅଳ୍ପକାଳ ମଧ୍ୟରେ ଏହାର ଲୋପର ମଧ୍ୟ ସମ୍ଭାବନା ନାହିଁ । ଶିକ୍ଷାର ପ୍ରସାର, ସାମାଜିକ ମନୋଭାବର ପରିବର୍ତ୍ତନ ଏବଂ ଜୀବନ ଧାରଣର ଆର୍ଥିକ ମାନ ଉନ୍ନତି ପ୍ରଭୃତି ଦ୍ୱାରା ଏହି ଭେଦଭାବ ଲୋପ ପାଇଁ ବହୁକାଳ ଲାଗିଯିବ ।

ଅନ୍ୟ ଉଚ୍ଚ ଓ ଅନୁନ୍ନତ ଜାତିମାନଙ୍କ ମଧ୍ୟରେ ଭେଦଭାବ ମଧ୍ୟ ପୂର୍ବପରି ରହିଛି । ସହରମାନଙ୍କରେ ବିଭିନ୍ନ ଜାତିର ଲୋକମାନେ ଏକାଠି ପଂକ୍ତି ଭୋଜନରେ ଖାଇବାରେ କୌଣସି ଆପତ୍ତି ନାହିଁ । ସହରମାନଙ୍କରେ ମଧ୍ୟ ଶିକ୍ଷିତ ହରିଜନ ଲୋକ ଉଚ୍ଚଜାତିର ଲୋକମାନଙ୍କ ସହିତ ଏକାଠି ବସି ଖାଇବାରେ କୌଣସି ବାରଣ ନାହିଁ । ଗାଁମାନଙ୍କରେ ହରିଜନମାନଙ୍କ ବ୍ୟତୀତ ଅନ୍ୟ ବ୍ରାହ୍ମଣେତର ଜାତିର ଲୋକମାନେ ଏକାଠି ବସି ଖାଇବାରେ ମଧ୍ୟ କୌଣସି ଆପତ୍ତି ନାହିଁ । ବ୍ରାହ୍ମଣମାନେ କିନ୍ତୁ ବ୍ରାହ୍ମଣେତର ଉଚ୍ଚଜାତିର ଲୋକମାନଙ୍କ ସହିତ ବସି ଖିଆପିଆ କରୁ ନାହାନ୍ତି । ପୂର୍ବେ ବ୍ରାହ୍ମଣମାନଙ୍କ ମଧ୍ୟରେ ଯେଉଁ ଉଚ୍ଚ ବ୍ରାହ୍ମଣ ଓ ନୀଚ ବ୍ରାହ୍ମଣ ଭେଦ ଥିଲା, ତାହା ସମ୍ପୂର୍ଣ୍ଣ ଲୋପ ପାଇଯାଇଛି । ତଥାପି କେତେକ ସାମନ୍ତ ବ୍ରାହ୍ମଣ ଅନ୍ୟ ବ୍ରାହ୍ମଣଙ୍କ ଘରେ ବନ୍ଧୁ କରିବେ ନାହିଁ ବୋଲି ସ୍ଥିର କରୁଛନ୍ତି । ତାହା କିନ୍ତୁ ବର୍ତ୍ତମାନ ସାଧାରଣ ନୁହେଁ, କେବଳ ଏକ ବ୍ୟତିକ୍ରମ ।

ବୈବାହିକ ସମ୍ବନ୍ଧ ପ୍ରଭୃତି ବିଷୟରେ ବ୍ରାହ୍ମଣେତର ଉଚ୍ଚଜାତି ଯଥା— କ୍ଷତ୍ରିୟ, ଖଣ୍ଡାୟତ, କରଣ ପ୍ରଭୃତି ଜାତି ମଧ୍ୟରେ ବୈବାହିକ ସମ୍ବନ୍ଧ ସ୍ଥାପନ ପାଇଁ ବିଶେଷ କିଛି ପ୍ରତିବନ୍ଧକ ନାହିଁ । ଯାହା କିଛି ଅଛି, ଅଳ୍ପକାଳ ପରେ ତାହା ଚାଲିଯିବ ବୋଲି ମନେହେଉଛି । ବ୍ରାହ୍ମଣମାନେ କିନ୍ତୁ ଅନ୍ୟ ଜାତିରେ ବୈବାହିକ ସମ୍ବନ୍ଧ କରିବାକୁ ନାରାଜ । ବର୍ତ୍ତମାନ ସହରର ଶିକ୍ଷିତ ଲୋକମାନଙ୍କ ମଧ୍ୟରେ ଏପରି କେତେକ ସମ୍ବନ୍ଧ ହେଉଛି । ମାତ୍ର ବର୍ତ୍ତମାନ ସୁଦ୍ଧା ତାହା ବ୍ୟତିକ୍ରମ ହୋଇ ରହିଛି । ଏପରି ପ୍ରତିବନ୍ଧକ ଚଞ୍ଚଳ ଲୋପ ପାଇବ ବୋଲି ମନେ ହେଉନାହିଁ । ଅନ୍ୟ ସବୁ ଜାତିର ଲୋକ ନିଜ ନିଜ ଜାତି ମଧ୍ୟରେ ବୈବାହିକ ସମ୍ବନ୍ଧ ସ୍ଥାପନ କରୁଛନ୍ତି । ଭଣ୍ଡାରି ଘର ଝିଅ ତେଲି ଘରେ ବିବାହ କରିବା କିମ୍ବା

ସହରଘର ଝିଅ ଗୁଡ଼ିଆଘରେ ବିବାହ କରିବା ପ୍ରଶ୍ନ ଉଠୁନାହିଁ । ଝାଁ ଝାଁ ଘଟଣା ଛାଡ଼ିଦେଲେ ସବୁ ବୈବାହିକ ସମ୍ବନ୍ଧ ନିଜ ନିଜ ଜାତି ମଧ୍ୟରେ ହେଉଛି । ସେହିପରି ବହୁ କୌଳିକ ବୃତ୍ତି ପୂର୍ବରୁ ଚାଲିଥିବା ପନ୍ଥା ଅନୁସାରେ ସେହି ଜାତି ବ୍ୟତୀତ ଅନ୍ୟ କୌଣସି ଜାତି କରୁ ନାହିଁ । ବ୍ରାହ୍ମଣମାନଙ୍କ ବ୍ୟତୀତ ଯଜମାନୀ ଓ ସାଧାରଣ ଠାକୁରପୂଜା କାମ ଅନ୍ୟ କୌଣସି ଜାତିର ଲୋକ କରୁ ନାହାନ୍ତି । ଭଣ୍ଡାରି କାମ ବାରିକମାନଙ୍କ ବ୍ୟତୀତ ଅନ୍ୟ କୌଣସି ଜାତିର ଲୋକ କରୁ-ନାହାନ୍ତି । ସହରମାନଙ୍କର ସାଲୁନ୍‌ମାନଙ୍କରେ ସୁଦ୍ଧା ସେହିମାନଙ୍କ ବ୍ୟତୀତ ଅନ୍ୟ କୌଣସି ଜାତିର ଲୋକ କରୁ ନାହାନ୍ତି । ସେହିପରି ବଢ଼େଇ, କମାର, ତନ୍ତୀ, ତେଲି, ମୋଚି, ଧୋବା ପ୍ରଭୃତି ଜାତିର କୌଳିକ ବୃତ୍ତି କେବଳ ସେହି ଜାତିର ଲୋକମାନେ କରୁଛନ୍ତି । ଅନ୍ୟ ଜାତିର ଲୋକମାନେ ସେହି ବୃତ୍ତିସବୁ ଅବଲମ୍ବନ କରିବା ଚିନ୍ତା କରି ପାରୁ ନାହାନ୍ତି । ଅନ୍ୟ ଦିଗରେ କୌଣସି ଜାତିର ଲୋକ ତାହାର କୌଳିକ ବୃତ୍ତି ଛାଡ଼ି ଚାଷକାମ, ବାଣିଜ୍ୟ ବ୍ୟବସାୟ, ଚାକିରିବାକିରି, ମଜୁରିକାମ ପ୍ରଭୃତି ସାଧାରଣ କାମ କରିବାରେ କୌଣସି ପ୍ରତିବନ୍ଧକ ନାହିଁ । ଚାଷକାମ ସବୁକାଳେ ସବୁ ଜାତିଙ୍କର ସାଧାରଣ କାମ ଥିଲା । ବ୍ୟବସାୟ, କଳକାରଖାନାରେ ମଜୁରି ଏବଂ ବିଭିନ୍ନ ସରକାରୀ କିମ୍ବା ବେସରକାରୀ ପ୍ରତିଷ୍ଠାନରେ ଚାକିରି ପ୍ରଭୃତି କାମ ବର୍ତ୍ତମାନ ସବୁଜାତି ପାଇଁ ଉନ୍ମୁକ୍ତ । ଯେତେବେଳଯାଏ ବୈବାହିକ ସମ୍ବନ୍ଧ ସେହି ଜାତି ମଧ୍ୟରେ ସୀମାବଦ୍ଧ ଥିବ ଏବଂ ଗୋଟିଏ ଜାତିର ପାରମ୍ପରିକ କୌଳିକ ବୃତ୍ତି ଅନ୍ୟ ଜାତିର ଲୋକମାନେ କରିବାକୁ ରାଜି ହେବେ ନାହିଁ, ସେତେବେଳଯାଏ ଜାତିଭେଦ ଲୋପ ପାଇବା ସମ୍ଭବ ନୁହେଁ । ଜାତି ଭିତ୍ତିରେ ଚାକିରିବାକିରିରେ ସ୍ଥାନ ସଂରକ୍ଷଣ ଜାତିଭେଦକୁ ଆହୁରି ସୁଦୃଢ଼ କରିବ । ହରିଜନ, ଉପଜାତି ଏବଂ ଅନୁନ୍ନତ ଜାତିମାନଙ୍କର ଲୋକମାନେ ନିଜ ଜାତିର ପରିଚୟ ଦେଇ ସ୍ଥାନ ସଂରକ୍ଷଣର ସୁବିଧା ଭୋଗ କରିବାକୁ ସର୍ବଦା ଚେଷ୍ଟା କରିବେ । ସୁତରାଂ ଜାତିଭେଦ ଯେ ଆଉ ପଚାଶ କିମ୍ବା ଶହେ ବର୍ଷ ମଧ୍ୟରେ ଏ ରାଜ୍ୟରେ କିମ୍ବା ଭାରତର ଅନ୍ୟ ରାଜ୍ୟମାନଙ୍କରେ ଲୋପ ପାଇଯିବ, ତାହାର ସମ୍ଭାବନା ନାହିଁ ।

ଶତାବ୍ଦୀର ଆରମ୍ଭରେ ଶହ ଶହ ବର୍ଷର ଭୂତପ୍ରେତ ବିଶ୍ୱାସ, ଡାଆଣୀ, କାଳୀସୀ ପ୍ରଭୃତି ଲାଗିବା, ହଇଜା, ବସନ୍ତ ପ୍ରଭୃତି ରୋଗକୁ ଠାକୁରାଣୀଙ୍କ ପ୍ରକୋପ ବୋଲି ବିଚାରିବା, ରୋଗ ଭଲ କରିବା ପାଇଁ ହୁକୁମ୍ ଔଷଧ ବାଣ୍ଟିବା, ମାନସିକ କରି ଠାକୁରାଣୀଙ୍କୁ ବୋଦା ଯାଚିବା ପ୍ରଭୃତି ଯେଉଁ ଅନ୍ଧବିଶ୍ୱାସ ଓ କୁସଂସ୍କାରମାନ ଥିଲା, ତାହା ଯେ ଶତାବ୍ଦୀର ଶେଷ ବେଳକୁ ସମ୍ପୂର୍ଣ୍ଣ ଲୋପ ପାଇ ଯାଇଛି, ତାହା

କହିହେବ ନାହିଁ । ମାତ୍ର ଶିକ୍ଷାର ପ୍ରସାର, ଗମନାଗମନର ସୁବିଧା, ରେଡିଓ ଟେଲିଭିଜନ ପ୍ରଭୃତି ଗଣମାଧ୍ୟମ ଏବଂ ଗାଁମାନଙ୍କରେ ବିଜୁଳି ଆଲୁଅ ପ୍ରସାର, ଗାଁ ଓ ସହରମାନଙ୍କ ମଧ୍ୟରେ ସଦାସର୍ବଦା ସମ୍ପର୍କ ଏବଂ ବହୁ ଆଧୁନିକ ଚଳିବା ପଦ୍ଧତିର ପ୍ରସାର ହେତୁ ପୁରାତନ ଅନ୍ଧବିଶ୍ୱାସ ଓ କୁସଂସ୍କାରସବୁ ବହୁ ପରିମାଣରେ ହ୍ରାସ ପାଇଛି ଏବଂ ପାଶ୍ଚାତ୍ୟ ଦେଶମାନଙ୍କର ଚିନ୍ତାଧାରା ବହୁ ପରିମାଣରେ ଗ୍ରାମାଞ୍ଚଳରେ ପ୍ରବେଶ କରିଛି । ବିଶେଷତଃ ସ୍କୁଲ କଲେଜରେ ପଢ଼ିଥିବା ଯୁବକ ଯୁବତୀ ଏବଂ ତାଙ୍କ ସମ୍ପର୍କରେ ଆସିଥିବା ପାଠ ନପଢ଼ିଥିବା ଯୁବସଂପ୍ରଦାୟ ପୁରାତନ କୁସଂସ୍କାରମାନଙ୍କରେ ବିଶ୍ୱାସ କରୁ ନାହାନ୍ତି । ଯଦିଓ ବହୁ ଅନୁନ୍ନତ ଅଞ୍ଚଳରେ ଏବଂ ଆଦିବାସୀ ପ୍ରଭୃତି ସମାଜରେ ଏସବୁ କୁସଂସ୍କାର ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ପ୍ରଚଳିତ ଅଛି । ସ୍ୱାଧୀନତା ପରେ ୧୯୫୦ ମସିହାରେ ଅନଗୁଳ ନିକଟବର୍ତ୍ତୀ ରନ୍ତିଲେଇ ଗାଁରେ ପନ୍ଦର ଷୋହଳ ବର୍ଷର ପିଲା ନେପାଳୀ ବାବାଙ୍କଠାରୁ ହୁକୁମ ଔଷଧ ନେବାପାଇଁ ଦଶ ପନ୍ଦର ଦିନ ଭାରତର ବିଭିନ୍ନ ରାଜ୍ୟରୁ ଆସିଥିବା ହଜାର ହଜାର ଲୋକଙ୍କର ସମାଗମ ହୋଇଥିଲା । ସେଥିରୁ ଶହ ଶହ ଲୋକ ବିଭିନ୍ନ ରାଜ୍ୟରେ ହଇଜାରେ ଆକ୍ରାନ୍ତ ହୋଇ ମରିଥିଲେ ଏବଂ ଏ ସମ୍ବାଦ ଦେଶ ବିଦେଶରେ ପ୍ରଚାରିତ ହୋଇଥିଲା । ଶେଷରେ ସରକାରଙ୍କ ହସ୍ତକ୍ଷେପରେ ହୁକୁମ ଔଷଧ ଦେବା ବନ୍ଦ ହୋଇଥିଲା । ଶତାବ୍ଦୀର ଶେଷରେ ମଧ୍ୟ ବିଭିନ୍ନ ପ୍ରକାର ବାବା ଓ ସନ୍ନ୍ୟାସୀଙ୍କ ପ୍ରଭାବ ଆମ ଲୋକଙ୍କ ଉପରେ କମ୍ ନୁହେଁ । କିନ୍ତୁ ସେସବୁରେ ସାଧାରଣ ଲୋକଙ୍କ ବିଶ୍ୱାସ କମିଯାଉଛି ଏବଂ କାଳକ୍ରମେ ଅନ୍ଧବିଶ୍ୱାସ ସବୁ ଲୋପ ପାଇଯିବ ।

ଶତାବ୍ଦୀର ଦ୍ୱିତୀୟ ଦଶନ୍ଧି ପର୍ଯ୍ୟନ୍ତ ଗ୍ରାମାଞ୍ଚଳରେ ସବୁଆଡ଼େ ପୁରାତନ ପଲ୍ଲୀ ନେତୃତ୍ୱ ପ୍ରଚଳିତ ଥିଲା । ଶହ ଶହ ବର୍ଷ ଧରି ଗ୍ରାମ୍ୟ ସମାଜର ନେତୃତ୍ୱ ଉଚ୍ଚଜାତିର ଧନୀ ମହାଜନ ଓ ଜମିଦାରମାନଙ୍କ ହାତରେ ଥିଲା । ଗାଁ ପଞ୍ଚାୟତରେ ସେମାନଙ୍କର ପୂର୍ଣ୍ଣ କର୍ତ୍ତୃତ୍ୱ ଥିଲା । ପରମ୍ପରା ଅନୁସାରେ ଲୋକମାନଙ୍କର ଚାଲିଚଳଣି ଓ ସାମାଜିକ ବିଧି ଯାହାହେବା ଉଚିତ ବୋଲି ସେମାନେ ମନେ କରୁଥିଲେ, ତାହା ସେମାନେ ବିଭିନ୍ନ ଉପାୟରେ ରକ୍ଷା କରିବାକୁ ଉଦ୍ୟମ କରୁଥିଲେ । ଯେଉଁମାନେ ପାରମ୍ପରିକ ସାମାଜିକ ବିଧି ଲଂଘନ କରୁଥିଲେ, ସମାଜପତିମାନେ ପଞ୍ଚାୟତ ବସାଇ ସେମାନଙ୍କୁ ବିଭିନ୍ନ ପ୍ରକାର ଦଣ୍ଡ ଦେଉଥିଲେ । ସେମାନଙ୍କ ଘରେ ନ ଖାଇବା, ସେମାନଙ୍କୁ ଅନ୍ୟମାନଙ୍କ ଘରେ ପଂକ୍ତି ଭୋଜନକୁ ନ ଡାକିବା, ସେମାନଙ୍କୁ ଧୋବା ଭଣ୍ଡାରି ନଅାଁ ପାଣି ବାସନ୍ଦ କରିବା ପ୍ରଭୃତି କାର୍ଯ୍ୟ ଏହି ଦଣ୍ଡର ଅନ୍ତର୍ଭୁକ୍ତ ଥିଲା । ଦୋଷ କରିଥିବା ପରିବାର ଚଳିବାରେ ଅସୁବିଧା ଭୋଗ କରି ଦୋଷ ପାଇଁ କୋରିମାନା

ଦେଉଥିଲେ ଏବଂ ବିହିତ ବିଧାନ ଅନୁସାରେ ପ୍ରାୟଶ୍ଚିତ୍ତ କରୁଥିଲେ । ବିଭିନ୍ନ ଜାତିର ଜାତିଆଣ ସଭାମାନେ ମଧ୍ୟ ଏହିପରି ଦଣ୍ଡବିଧାନ କରୁଥିଲେ । ସମାଜ କିମ୍ବା ଜାତିଆଣ ନେତୃତ୍ୱ ବିରୋଧରେ କେହି ବେଶିଦିନ ସଂଗ୍ରାମ କରି ପାରୁ ନ ଥିଲେ । ଦୋଷ କରିଛୁ ବୋଲି ଦୋଷୀର ବିବେକ କହୁ ନ ଥିଲେ ମଧ୍ୟ ସେ ସମାଜପତିଙ୍କ ପାଖରେ ମୁଣ୍ଡ ନୁଆଁଇବାକୁ ବାଧ ହେଉଥିଲା । ଆମ ପିଲାକାଳ ୧୯୨୦-୨୧ ମସିହା ପର୍ଯ୍ୟନ୍ତ ଆମ ଅଞ୍ଚଳର ଗ୍ରାମ୍ୟ ସମାଜ ଏହିପରି ଥିଲା । ମୁଁ ପିଲାଦିନେ ଅନେକ ଗାଁ ନିଶାପ, ଜାତିଆଣ ସଭା, ସମାଜ ବାସନ୍ଦ ଏବଂ ଗାଁରେ ଦଳାଦଳି ଦେଖିଛୁ । ୧୯୧୨-୧୩ ମସିହା ସମୟରୁ ନୀଳକଣ୍ଠ ଦାସ ପ୍ରଭୃତି ସତ୍ୟବାଦୀର ସମାଜ-ସଂସ୍କାରକମାନେ ବିଧବା ଆନ୍ଦୋଳନ, ହରିଜନ ଓ ଉଚ୍ଚ-ଜାତିର ପିଲାମାନଙ୍କୁ ଏକତ୍ର ଭୋଜନ କରାଇବା ପ୍ରଭୃତି କାର୍ଯ୍ୟ ଦ୍ୱାରା ପୁରୀ ଶାସନମାନଙ୍କର ରକ୍ଷଣଶୀଳ ବ୍ରାହ୍ମଣମାନଙ୍କ ସହିତ ସଂଘର୍ଷ କରୁଥିଲେ । ସେ ସଂଘର୍ଷ କିନ୍ତୁ ଆମଆଡ଼େ ପ୍ରଭାବ ପକାଇପାରି ନଥିଲା । କିନ୍ତୁ ଆମ ଜୀବନକାଳ ୧୯୨୦ ମସିହାରୁ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ରକ୍ଷଣଶୀଳ ସମାଜ ଏବଂ ସମାଜ-ସଂସ୍କାରକଙ୍କ ନୂତନ ଆଭିମୁଖ୍ୟ ମଧ୍ୟରେ ସଂଘର୍ଷର ସମୟ ଥିଲା ।

ସଂଘର୍ଷର ପ୍ରଥମ ଫଳପ୍ରଦ ପ୍ରଭାବ ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ସହିତ ଆରମ୍ଭ ହେଲା । ଗାନ୍ଧିଜୀଙ୍କ ଅନୁଗାମୀ ସ୍ୱେଚ୍ଛାସେବକମାନେ ଗ୍ରାମେ ଗ୍ରାମେ ଅସ୍ପୃଶ୍ୟତା ଓ ଜାତିଭେଦ ଲୋପ, କୁସଂସ୍କାର ଓ ଅନ୍ଧବିଶ୍ୱାସ ପରିତ୍ୟାଗ, ନୂତନ ପ୍ରକାର ଶିକ୍ଷା, ସ୍ୱାସ୍ଥ୍ୟସେବା, ଗ୍ରାମ ସଙ୍ଗଠନ ପ୍ରଭୃତି କାର୍ଯ୍ୟକ୍ରମ ପ୍ରଚାର କଲେ । ସେମାନେ ମଧ୍ୟ ଗ୍ରାମାଞ୍ଚଳରେ ମହାଜନ, ଜମିଦାର ପ୍ରଭୃତି ଧନୀ ଓ ଉଚ୍ଚଜାତିର ସମାଜପତିଙ୍କ ଦରିଦ୍ର ଲୋକମାନଙ୍କ ଉପରେ ଅତ୍ୟାଚାରର ବିରୋଧ କଲେ । ତାହା ଫଳରେ ସେମାନେ ରକ୍ଷଣଶୀଳ ସମାଜପତିଙ୍କ ବିଷଦୃଷ୍ଟିରେ ପଡ଼ିଲେ । ଦୁଇ ଗୋଷ୍ଠୀଙ୍କ ମଧ୍ୟରେ ସଂଘର୍ଷର ସୂତ୍ରପାତ ହେଲା । ଜାତୀୟ ସ୍ତରରେ ମଧ୍ୟ ସନାତନପନ୍ଥୀ ନେତାମାନେ ଗାନ୍ଧିଜୀଙ୍କୁ ଘୋର ବିରୋଧ କରୁଥିଲେ । ତାଙ୍କ ବକ୍ତୃତା ସଭାମାନଙ୍କରେ କଳା ପତାକା ଦେଖାଇ ବିକ୍ଷୋଭ ପ୍ରଦର୍ଶନ କରୁଥିଲେ । ସମୟର ପ୍ରଭାବ, ପାଶ୍ଚାତ୍ୟ ଶିକ୍ଷା ପ୍ରସାର, ଦେଶବ୍ୟାପୀ ସ୍ୱାଧୀନତା ଆନ୍ଦୋଳନ ଗାନ୍ଧିଜୀଙ୍କ ଅନୁଗାମୀ ସ୍ୱାଧୀନତା-ସଂଗ୍ରାମୀମାନଙ୍କ ସପକ୍ଷରେ ଗଲା । ସମାଜର ନେତୃତ୍ୱ ପୁରାତନପନ୍ଥୀ ସମାଜପତି, ଜମିଦାର ଓ ମହାଜନଙ୍କ ହାତରୁ ଯୁବ ସଂପ୍ରଦାୟ ହାତକୁ ଗଲା । ୧୯୨୦ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଗ୍ରାମ୍ୟ ସମାଜରେ ଯେଉଁ ରାଜନୀତି ପ୍ରବେଶ କରିଥିଲା, ତାହା ଅହିଂସା ଆନ୍ଦୋଳନ ଦ୍ୱାରା ବିଦେଶୀ ସରକାରଙ୍କଠାରୁ ସ୍ୱାଧୀନତା ଲାଭ ନିମିତ୍ତ ତ୍ୟାଗ ଓ ଆଦର୍ଶର ରାଜନୀତି ଥିଲା । ତା' ବିରୋଧରେ ପୁରାତନପନ୍ଥୀମାନେ ସଂଗ୍ରାମ କରି ପାରିଲେ

ନାହିଁ । ସମାଜ-ସଂସ୍କାରକ ସ୍ୱାଧୀନତା-ସଂଗ୍ରାମୀମାନେ ସମାଜର ନେତୃତ୍ୱ ନେଲେ ।

୧୯୫୦ ମସିହା ପରେ କିନ୍ତୁ ଅବସ୍ଥା ବଦଳିଗଲା । ୧୯୫୦ ମସିହା ପରେ ପାର୍ଲିଆମେଣ୍ଟ, ବିଧାନସଭା, ପଞ୍ଚାୟତ ପ୍ରଭୃତି ପାଇଁ ଘନ ଘନ ନିର୍ବାଚନ ହେଲା । ନିର୍ବାଚନରେ ଜିତି ସବୁ ସ୍ତରରେ କ୍ଷମତା ହାସଲ କରିବା ପାଇଁ ରାଜନୈତିକ ଦଳମାନେ ଜାତୀୟ ସ୍ତରରୁ ଗ୍ରାମ ପର୍ଯ୍ୟନ୍ତ ସଙ୍ଗଠନ ଗଢ଼ିଲେ । ବିଭିନ୍ନ ରାଜନୈତିକ ନେତା ପ୍ରତିଷ୍ଠା ଓ କ୍ଷମତା ଲାଭ ପାଇଁ ବିଭିନ୍ନ ସ୍ତରରେ ସେମାନଙ୍କର ସମର୍ଥକ କର୍ମୀମାନଙ୍କୁ ପ୍ରସ୍ତୁତ କଲେ । ଗ୍ରାମ ଓ ସହର, ସବୁ ଅଞ୍ଚଳରେ ଲୋକମାନଙ୍କ ମଧ୍ୟରେ ସର୍ବବ୍ୟାପୀ ରାଜନୈତିକ ପ୍ରଭାବ ପ୍ରବେଶ କଲା । ସ୍ୱାଧୀନତା ପୂର୍ବରୁ ରାଜନୈତିକ କର୍ମୀ ଓ ସ୍ୱାଧୀନତା-ସଂଗ୍ରାମୀମାନଙ୍କର ସଂଗ୍ରାମର ଗୋଟିଏ ମାତ୍ର ଉଦ୍ଦେଶ୍ୟ ଥିଲା । ସେତେବେଳେ ଧନଲିପ୍ସା ଓ କ୍ଷମତା ଲିପ୍ସା ପ୍ରାଧାନ୍ୟ ଲାଭ କରି ନ ଥିଲା । କିନ୍ତୁ ସ୍ୱାଧୀନତା ପରେ ରାଜନୈତିକ ନେତା ଓ କର୍ମୀମାନଙ୍କ ମଧ୍ୟରେ ଧନ ଓ କ୍ଷମତାଲିପ୍ସା ପ୍ରାଧାନ୍ୟ ଲାଭ କଲା । ଦେଶସେବା ଓ ଜନସେବା ନାମରେ ଆତ୍ମସେବା ସର୍ବଦା ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ହେଲା । ବିଭିନ୍ନ ସ୍ତରରେ ପ୍ରତିଷ୍ଠା ଲାଭ କରିବା ଏବଂ ନିର୍ବାଚନମାନଙ୍କରେ ଜିତିବା ପାଇଁ ବହୁ ଅର୍ଥ ଓ ଜନବଳ ଆବଶ୍ୟକ ହେଲା । ଗ୍ରାମାଞ୍ଚଳ ଓ ସହରାଞ୍ଚଳମାନଙ୍କରେ କେବଳ ଧନୀଲୋକମାନେ ଏ କାର୍ଯ୍ୟ କରିବାକୁ ସମର୍ଥ ହେଲେ । ଉଚ୍ଚଜାତିର ରକ୍ଷଣଶୀଳ ପୁରାତନପନ୍ଥୀମାନଙ୍କର ଆଉ ସମାଜର ନେତୃତ୍ୱ ନେବାର ସମ୍ଭାବନା ନ ଥିଲା । ଦରିଦ୍ର ସ୍ୱାର୍ଥତ୍ୟାଗୀ ଆଦର୍ଶବାଦୀ ଲୋକଙ୍କର ଜନ-ସମର୍ଥନ ଲାଭ କରିବାକୁ ସମ୍ବଳ ନ ଥିଲା । ସୁତରାଂ ସେମାନେ ସମାଜର ନେତୃତ୍ୱ ହରାଇଲେ । ପୂର୍ବତନ ଧନୀ ମହାଜନ ବା ଜମିଦାର ପରିବାରର ଯୁବସମ୍ପ୍ରଦାୟ ଏ କାର୍ଯ୍ୟ କରିବାକୁ ସମର୍ଥ ହେଲେ ।

ସେମାନେ ରାଜନୈତିକ ଦଳମାନଙ୍କର ପ୍ରତିନିଧି ଏବଂ ଜାତୀୟ ସ୍ତରର ନେତାମାନଙ୍କର ସମର୍ଥକ ଭାବରେ କାର୍ଯ୍ୟ କଲେ । ଜାତୀୟ ରାଜନୈତିକ ଦଳମାନେ ସତ୍ ବା ଅସତ୍ ଉପାୟରେ ବହୁ ଅର୍ଥ ସଂଗ୍ରହ କରି ଗ୍ରାମ ଓ ସହରଙ୍କରେ ଜନ-ସମର୍ଥନ ଲାଭ ପାଇଁ ଏହି ଲୋକମାନଙ୍କ ମାଧ୍ୟମରେ ଟଙ୍କା ଖର୍ଚ୍ଚ କଲେ । କ୍ଷମତାରେ ଥିବା ରାଜନୈତିକ ନେତାମାନେ ଗ୍ରାମାଞ୍ଚଳରେ ସେମାନଙ୍କର ଏହି ପ୍ରକାର ସମର୍ଥକମାନଙ୍କୁ କଣ୍ଟ୍ରୋଲ ପଦାର୍ଥ ଦୋକାନ, ମଦ ଦୋକାନ, ଦଣ୍ଡାଦାରର କାମ ପ୍ରଭୃତି ଅର୍ଥ ଉପାର୍ଜନ କରିବାର ବହୁ ପ୍ରକାର ସୁବିଧା ଦେଲେ । ସୁତରାଂ ସେମାନେ ହେଲେ ସମାଜର ନେତା । ସେମାନେ

ବ୍ୟବସାୟୀ, କଣ୍ଟ୍ରାକ୍ଟର; ବସ୍, ଟ୍ରକ୍, କଳ କାରଖାନା ଓ ଜମିବାଡ଼ିର ମାଲିକ ଏବଂ ଧାନ ଓ ଜନ ବଳରେ ପଞ୍ଚାୟତମାନଙ୍କରେ ସରପଞ୍ଚ, ପଞ୍ଚାୟତ ସମିତିରେ ସଭାପତି, ବିଧାନସଭା କିମ୍ବା ପାର୍ଲିଆମେଣ୍ଟରେ ସଭ୍ୟ, ମନ୍ତ୍ରୀ ପ୍ରଭୃତି ପଦବୀ ଅଧିକାର କଲେ । ଏମାନେ ପୁରାତନ ପରମ୍ପରା ବା କୁସଂସ୍କାର ବିଶ୍ୱାସ କରୁ ନ ଥିଲେ କିମ୍ବା ଏମାନଙ୍କର ନ୍ୟାୟ ଅନ୍ୟାୟ ବିଚାର ଓ ଧର୍ମଭୟ ନ ଥିଲା । ଅନ୍ୟ ଦିଗରେ ନୀତିପୂର୍ଣ୍ଣ ଶୃଙ୍ଖଳିତ ଆଦର୍ଶ ସମାଜ ଗଠନ କରିବାକୁ ଏମାନଙ୍କର ଜ୍ଞାନ, ନୈତିକତା ଓ ନିଷ୍ଠା ନ ଥିଲା । ଯେ କୌଣସି ଉପାୟରେ ଧନ ଓ କ୍ଷମତା ଲାଭ କରିବା ଏମାନଙ୍କର ଉଦ୍ଦେଶ୍ୟ ହେଲା । ୧୯୫୦ ମସିହାରୁ ୧୯୬୭ ପର୍ଯ୍ୟନ୍ତ ସ୍ୱାଧୀନତା ପୂର୍ବ ଆଦର୍ଶ କେତେକ ପରିମାଣରେ ସମାଜରେ ଥିଲା, ଯଦିଓ ତାହା ଧୀରେ ଧୀରେ କ୍ଷୀଣ ହୋଇ ଆସୁଥିଲା । ୧୯୭୦ ମସିହା ପରେ ସେ ଆଦର୍ଶ ପୂର୍ଣ୍ଣ ଭାବରେ ଲୋପ ପାଇଯାଇଛି ଏବଂ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଉପରୋକ୍ତ ଶ୍ରେଣୀର ଲୋକମାନେ ସମାଜର ବିଭିନ୍ନ ସ୍ତରରେ ନେତୃତ୍ୱ ନେଉଛନ୍ତି ।

ଶତାବ୍ଦୀର ଆରମ୍ଭରୁ ପରିବାରର ସଙ୍ଗଠନ ଓ ମୂଲ୍ୟବୋଧର ପରିବର୍ତ୍ତନ ଧୀରେ ଧୀରେ ଆରମ୍ଭ ହୋଇଥିଲା । ଶତାବ୍ଦୀର ପ୍ରଥମ ଓ ଦ୍ୱିତୀୟ ଦଶନ୍ଧି ପର୍ଯ୍ୟନ୍ତ ଏକାନ୍ନବର୍ତ୍ତୀ ଯୌଥ ପରିବାର ପ୍ରାୟ ସବୁଆଡ଼େ ପ୍ରଚଳିତ ଥିଲା । ପରିବାରର ମୁରବି ଓ ଗୁରୁଜନମାନଙ୍କ ଆଗରେ କନିଷ୍ଠମାନେ କଥା କହିବାକୁ ଡରୁଥିଲେ । ବୋହୂମାନେ ଶାଶୁଘରେ ବହୁକାଳ ପର୍ଯ୍ୟନ୍ତ ଶାଶୁ ଓ ବଡ଼ ଯାଆ ପ୍ରଭୃତିଙ୍କ ସହିତ କଥାବାର୍ତ୍ତା କରୁ ନ ଥିଲେ ଏବଂ ଶଶୁର, ଦେଢ଼ଶୁର ପ୍ରଭୃତିଙ୍କ ଆଗରେ ମୁଣ୍ଡରେ ଓଢ଼ଣା ଦେଇ ଲୁଚୁଥିଲେ । ଗାଁର ସ୍ତ୍ରୀଲୋକମାନେ ସ୍ୱାମୀମାନଙ୍କ ସହିତ ସହରରେ ରହିବାକୁ ଯାଉ ନ ଥିଲେ । ଆମ ପିଲାଦିନେ ପରିବାରମାନଙ୍କରେ ପୁରୁଷ ଓ ସ୍ତ୍ରୀଲୋକମାନଙ୍କର ଏହି ପ୍ରକାର ଚଳଣି ଥିଲା । କ୍ରମେ ଯୌଥ ପରିବାର ସବୁ ଭାଙ୍ଗିବାକୁ ଲାଗିଲା । ଭାଇ ଭାଇ ସମ୍ପତ୍ତି ଓ ଘରବାଡ଼ି ବାଣ୍ଟି ଅଲଗା ଅଲଗା ରହିଲେ । ଯେତେବେଳ ପର୍ଯ୍ୟନ୍ତ ପରିବାରର ସମସ୍ତ ଲୋକ କୃଷି ଓ ଭୂସମ୍ପତ୍ତି ଉପରେ ନିର୍ଭର କରି ଚଳୁଥିଲେ ଏବଂ ସମ୍ପତ୍ତି ବାଣ୍ଟିବାର ସୁବିଧା ନ ଥିଲା, ସେତେବେଳ ପର୍ଯ୍ୟନ୍ତ ବିଭିନ୍ନ ମନୋମାଳିନ୍ୟ ସତ୍ତ୍ୱେ ସାଧାରଣତଃ ଲୋକମାନେ ବଡ଼ ବଡ଼ ଏକାନ୍ନବର୍ତ୍ତୀ ପରିବାରରେ ରହୁଥିଲେ । କ୍ରମେ କ୍ରମେ ସେ ଅବସ୍ଥା ବଦଳିଆସୁଥିଲା ଏବଂ ଶତାବ୍ଦୀର ଶେଷ ବେଳକୁ ସେ ଅବସ୍ଥା ବହୁଗୁଣରେ ବଦଳିଯାଇଛି । ଲୋକମାନେ କୃଷି ବ୍ୟତୀତ ଅନ୍ୟ ବହୁପ୍ରକାର ସୂତ୍ରମାନଙ୍କରୁ ଆୟ କରି ପାରୁଛନ୍ତି ଏବଂ ନିଜର ଆୟରେ ନିଜ ସ୍ତ୍ରୀ ଓ ପିଲାଙ୍କ ସହିତ ପରିବାରର ବାହାରେ ରହୁଛନ୍ତି । ଗାଁ ମାନଙ୍କରେ

ମଧ୍ୟ ଏକାନ୍ନବର୍ତ୍ତୀ ପରିବାର ଭାଙ୍ଗି ଲୋକମାନେ ନିଜର ସ୍ତ୍ରୀ ଓ ପିଲାଙ୍କ ସହିତ ଗ୍ରେଟ ପରିବାରରେ ରହୁଛନ୍ତି । ଶତାବ୍ଦୀର ଆରମ୍ଭରେ ଆମଆଡ଼େ ଲୋକମାନଙ୍କର ସାଧାରଣତଃ ବିଶ୍ୱାସ ଥିଲା, ଏକାନ୍ନବର୍ତ୍ତୀ ପରିବାର ଯେ ଭାଙ୍ଗିବ ତାର ସର୍ବନାଶ ହେବ । କିନ୍ତୁ ଶତାବ୍ଦୀର ଶେଷରେ ଲୋକମାନେ ସାଧାରଣଭାବେ ଗ୍ରହଣ କରି ନେଇଛନ୍ତି ଯେ, ଯେତେଭାଇ ସେତେ ଘର ।

ଏକାନ୍ନବର୍ତ୍ତୀ ପରିବାରସବୁ ଭାଙ୍ଗିବା ପରେ ପରିବାରର ମୁରବି ଓ ବରିଷ୍ଠ ଲୋକମାନଙ୍କର କର୍ତ୍ତୃତ୍ୱ ଯୁବକମାନଙ୍କ ଉପରେ ରହିଲା ନାହିଁ । ୧୯୨୦।୨୧ ମସିହା ପରେ ଗ୍ରାମ ଓ ସହରାଞ୍ଚଳରେ ବହୁ ଯୁବକ ଘରର ମୁରବିମାନଙ୍କ କଥା ନମାନି ଅସହଯୋଗ ଆନ୍ଦୋଳନ ଏବଂ ସମାଜସଂସ୍କାର କାର୍ଯ୍ୟକ୍ରମରେ ଯୋଗ ଦେଇଥିଲେ । ସ୍ୱାଧୀନତା ପର୍ଯ୍ୟନ୍ତ ସେ ପ୍ରକ୍ରିୟା ଅବ୍ୟାହତ ଥିଲା । ସ୍ୱାଧୀନତା ପରେ ଗ୍ରାମ ଓ ସହରାଞ୍ଚଳରେ ଯୁବକମାନେ ସ୍କୁଲ କଲେଜରେ ପଢ଼ି, ବହୁ ଲୋକଙ୍କ ସହିତ ମିଶି, ବିଭିନ୍ନ ଚାକିରି ଓ ବ୍ୟବସାୟ ପ୍ରଭୃତିରେ ଯୋଗ ଦେଇ, ଯୌଥ ପରିବାର ବାହାରେ ବିଭିନ୍ନ ସ୍ଥାନରେ ରହି ସ୍ୱଇଚ୍ଛାରେ ଏବଂ ରୁଚି ଅନୁ-ସାରେ ଜୀବନଯାପନ କଲେ । ସେମାନଙ୍କର ଚିନ୍ତାଧାରା ଓ ମୂଲ୍ୟବୋଧ ତାଙ୍କ ରକ୍ଷଣଶୀଳ ପରିବାରମାନଙ୍କର ମୁରବିମାନଙ୍କର ଚିନ୍ତାଧାରା ଓ ମୂଲ୍ୟବୋଧଠାରୁ ଭିନ୍ନ ହେଲା ।

ଗାଁଲୋକମାନଙ୍କର ପାରମ୍ପରିକ ମୂଲ୍ୟବୋଧରେ ଧର୍ମଭୟ, ଠାକୁର-ଠାକୁରାଣୀଙ୍କ ଉପରେ ବିଶ୍ୱାସ, ଗୁରୁଜନମାନଙ୍କୁ ଭକ୍ତି କରିବା ଏବଂ ସେମାନଙ୍କ କଥା ମାନିବା, ନିୟମ ଅନିୟମ, ନ୍ୟାୟ ଅନ୍ୟାୟ, ସତ ମିଛ, ପାପପୁଣ୍ୟ କଥା ବିଚାର କରିବା ଏବଂ ସମାଜର ନିୟମ ମାନି ଚଳିବା ପ୍ରଭୃତି ଭାବନାର ପ୍ରଭାବ ଥିଲା । ପୁରୁଷାନୁକ୍ରମେ ସମାଜର ନୈତିକତା ଏବଂ ଶୃଙ୍ଖଳା ପାଇଁ ଧର୍ମଗ୍ରନ୍ଥ ଏବଂ ସାଧୁସନ୍ଥମାନେ ଲୋକମାନଙ୍କ ମଧ୍ୟରେ ଏସବୁ ବିଷୟ ପ୍ରଚାର କରୁଥିଲେ । ସବୁ ଧର୍ମର ଧର୍ମଗୁରୁ, ଋଷି ଏବଂ ମନୁଙ୍କ ପରି ମନୀଷୀମାନେ ସାମାଜିକ ଆଇନ୍ ପ୍ରଣୟନ କରିଥିଲେ । ମାତ୍ର କାଳକ୍ରମେ ବହୁ ଅନିୟମ କଥା ଏବଂ କୁସଂସ୍କାର ସମାଜରେ ପଶିଯାଇଥିଲା ଏବଂ ବହୁପ୍ରକାର ଅନିୟମ, ଦୁର୍ନୀତି, ଅନ୍ୟାୟ ଏବଂ ଅନାଚାର ସମାଜର ଅଙ୍ଗ ହୋଇଥିଲା । କିନ୍ତୁ ଏସବୁ ସମାଜର ବ୍ୟତିକ୍ରମ ଏବଂ ସାଧାରଣ ଜୀବନରେ ବିଚ୍ୟୁତି ବୋଲି ଗଣ୍ୟ ହେଉଥିଲା । ସତ୍ୟ, ନ୍ୟାୟ, ପୁଣ୍ୟ ଓ ସଦାଚାର ଚିରକାଳ ସମାଜର ଆଦର୍ଶ ବୋଲି ଲୋକମାନଙ୍କର ଧାରଣା ଥିଲା । ସାଧାରଣ ଲୋକ ଅସହାୟ ଅବସ୍ଥାରେ ମଧ୍ୟ ଆଶା କରୁଥିଲେ ଯେ, ଶେଷରେ ଧର୍ମର ଜୟ ଏବଂ ଅଧର୍ମର ପରାଜୟ ହେବ ।

ଆମ ପିଲାଦିନେ ବିଂଶ ଶତାବ୍ଦୀର ତୃତୀୟ ଓ ଚତୁର୍ଥ ଦଶନ୍ଧିରେ ଆମ ଅଞ୍ଚଳର ପଲ୍ଲୀଗ୍ରାମମାନଙ୍କରେ ଯେଉଁ ସମାଜ ପ୍ରଚଳିତ ଥିଲା, ତାହା ସଦାଶୟତାପୂର୍ଣ୍ଣ ଆଦର୍ଶ ସମାଜ ନଥିଲା । ଲୋକମାନେ ବହୁ କୁସଂସ୍କାର ଉପରେ ଅନ୍ଧବିଶ୍ୱାସ କରୁଥିଲେ । ସମାଜପତି ଧନୀ ମହାଜନମାନେ ଅନ୍ୟାୟ କାର୍ଯ୍ୟର ପ୍ରତୀକ ଥିଲେ । ସାଧାରଣ ଲୋକ ଅତି ଦରିଦ୍ର, ଅଶିକ୍ଷିତ, ରୋଗଗ୍ରସ୍ତ, ଭୟାଳୁ ଏବଂ ଭାଗ୍ୟବାଦୀ ଥିଲେ । କଠୋର ବ୍ରିଟିଶ ଶାସନ, ରଜା, ଜମିଦାର, ମହାଜନମାନଙ୍କ କର୍ତ୍ତୃତ୍ୱ ଅଧୀନରେ ରହି ସେମାନେ ନିଜକୁ ଅସହାୟ ମନେ କରୁଥିଲେ ଏବଂ ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କରିବାକୁ ସାହସ କରୁ ନଥିଲେ । ତଥାପି ସାଧାରଣତଃ କେଉଁ କଥା ନ୍ୟାୟ ଏବଂ କେଉଁଟା ଅନ୍ୟାୟ, କେଉଁ କାର୍ଯ୍ୟ ପାପ ଏବଂ କେଉଁ କାର୍ଯ୍ୟ ପୁଣ୍ୟ, ଏ ମୂଲ୍ୟବୋଧ ଲୋକମାନଙ୍କ ମଧ୍ୟରେ ଥିଲା ଏବଂ ସାଧାରଣ ଲୋକ ନୀତି-ବିରୁଦ୍ଧ କାର୍ଯ୍ୟ କରିବାକୁ ଭୟ କରୁଥିଲେ ।

ଗାନ୍ଧିଜୀଙ୍କ ଅସହଯୋଗ ଆନ୍ଦୋଳନ ଯୁବସଂପ୍ରଦାୟକୁ ସରକାରଙ୍କର ଅନ୍ୟାୟ କାର୍ଯ୍ୟ ଏବଂ ଜମିଦାର ମହାଜନ ପ୍ରଭୃତିଙ୍କ ଶୋଷଣ ବିରୋଧରେ ସଂଗ୍ରାମ କରିବାକୁ ସାହାସ ଦେଲା । ସାଧାରଣ ଜନତା ମଧ୍ୟରେ ମଧ୍ୟ ଅସହାୟତା ପରିବର୍ତ୍ତେ ସାହସ ଓ ଦୃଢ଼ ମନୋବଳ ପ୍ରବେଶ କଲା । ୧୯୨୧ ମସିହାରୁ ୧୯୪୭ ମସିହା ପର୍ଯ୍ୟନ୍ତ ଆମର ଯୁବକ ଅବସ୍ଥା ସମୟରେ ସମାଜରେ କୁସଂସ୍କାର, ଦୁର୍ନୀତି ଓ ଅନ୍ଧବିଶ୍ୱାସ ପ୍ରଭୃତି ବିରୋଧରେ ଏବଂ ସମାଜର ପାରମ୍ପରିକ ନୀତି, ଆଦର୍ଶ ଓ ମୂଲ୍ୟବୋଧ ସପକ୍ଷରେ ପ୍ରଚାର କରାଯାଉଥିଲା ଏବଂ ପାରମ୍ପରିକ ମୂଲ୍ୟ-ବୋଧର ପୁନରୁଦ୍ଧାର ପାଇଁ ଉଦ୍ୟମ କରାହେଉଥିଲା ।

ସ୍ୱାଧୀନତା ଲାଭ ପରେ ୧୯୫୦ ମସିହାରୁ ୧୯୭୦ ମସିହା ପର୍ଯ୍ୟନ୍ତ ସେ ଉଦ୍ୟମ କ୍ରମେ ଶିଥିଳ ହୋଇଗଲା ଏବଂ ୧୯୭୦ ମସିହାରୁ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ସମୟ ମଧ୍ୟରେ ପୁରାତନ ଆଦର୍ଶ ଓ ମୂଲ୍ୟବୋଧର ବହୁଗୁଣ ଅବକ୍ଷୟ ଘଟିଲା । ଶତାବ୍ଦୀର ଶେଷରେ ଜନସାଧାରଣ ପୁରାତନ ନୈତିକ ମୂଲ୍ୟବୋଧ ପ୍ରାୟ ହରାଇ ବସିଲେ । ବିଗତ ପଚାଶ ବର୍ଷ ମଧ୍ୟରେ ଦେଶରେ ପାଶ୍ଚାତ୍ୟ ଶିକ୍ଷାର ବହୁଳ ପ୍ରସାର ହୋଇଛି । ଦେଶର ବହୁ ଲୋକ ପାଶ୍ଚାତ୍ୟ ଦେଶମାନ ଭ୍ରମଣ କରୁଛନ୍ତି ଏବଂ ପାଶ୍ଚାତ୍ୟ ଦେଶବାସୀଙ୍କ ସହ ଭାବର ଆଦାନ ପ୍ରଦାନ କରୁଛନ୍ତି । ପାଶ୍ଚାତ୍ୟ ଦେଶମାନଙ୍କର ଚାଲିଚଳଣିର ପ୍ରଭାବ ଆମ ଦେଶର ସହର ଓ ଗ୍ରାମମାନଙ୍କରେ ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଲୋକମାନଙ୍କ ଉପରେ ଦ୍ରୁତଗତିରେ ପଡ଼ୁଛି । କିନ୍ତୁ ପାଶ୍ଚାତ୍ୟ ଦେଶମାନଙ୍କରେ ପ୍ରଚଳିତ ନୈତିକ ମୂଲ୍ୟବୋଧ ଏବଂ ଭଲଗୁଣ ଆମ ଦେଶର ଲୋକ ବିଶେଷତଃ ଯୁବ ସମାଜ ହୃଦୟଙ୍ଗମ କରିପାରୁ ନାହାନ୍ତି କିମ୍ବା

ଗ୍ରହଣ କରିପାରୁ ନାହାନ୍ତି । ଅନ୍ୟ ପଟରେ ସିନେମା, ଦୂରଦର୍ଶନ ପ୍ରଭୃତି ମାଧ୍ୟମରେ ସେ ଦେଶମାନଙ୍କରେ ଚାଲିଥିବା ବାହ୍ୟ ବ୍ୟବହାର, ଚାଲିଚଳଣି ଓ ଦୁର୍ଗୁଣ ଆମ ଦେଶର ଯୁବ ସଂପ୍ରଦାୟ ଚଞ୍ଚଳ ଶିଖି ଯାଉଛନ୍ତି । ଫଳରେ ବିଂଶ ଶତାବ୍ଦୀ ଶେଷରେ ଆମ ପୁରାତନ ସମାଜର ଅନ୍ଧବିଶ୍ୱାସ ଓ କୁସଂସ୍କାର ଲୋପ ପାଇବା ସଙ୍ଗେ ସଙ୍ଗେ ଆମ ସମାଜର ଚିରନ୍ତନ ନୈତିକ ମୂଲ୍ୟବୋଧ ମଧ୍ୟ ଲୋକମାନେ ଭୁଲି ଯାଉଛନ୍ତି । ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଲୋକମାନେ ପାଶ୍ଚାତ୍ୟ ଦେଶର ଲୋକମାନଙ୍କର ନୈତିକ ମୂଲ୍ୟବୋଧ ନବୁଝି ସେମାନଙ୍କର ବାହ୍ୟ ଆଚାର ବ୍ୟବହାର ଅନୁକରଣ କରୁଛନ୍ତି । ଫଳରେ ନୂତନ ଯୁବସଂପ୍ରଦାୟର ଆମ ପୁରାତନ ସମାଜର କିମ୍ବା ପାଶ୍ଚାତ୍ୟ ସମାଜର କୌଣସି ନୈତିକ ମୂଲ୍ୟ-ବୋଧ ନାହିଁ ।

ସେମାନେ ଆମ ପିଲାଦିନରେ ଗ୍ରାମ୍ୟ ସମାଜରେ ଚଳୁଥିବା ଲୋକମାନଙ୍କ ପରି ଭୀରୁ ଓ ହୀନବଳ ନୁହନ୍ତି । ମାତ୍ର ସେମାନଙ୍କର ଧର୍ମବିଶ୍ୱାସ କିମ୍ବା ନ୍ୟାୟ ଅନ୍ୟାୟ ବିଚାର ନାହିଁ କିମ୍ବା ଆମ ସମାଜର ପାରମ୍ପରିକ ଆଚାର ବ୍ୟବହାର ପ୍ରତି ଆଗ୍ରହ ନାହିଁ । ସେମାନଙ୍କ ଉପରେ ତାଙ୍କ ପରିବାର ମାନଙ୍କର ପିତାମାତା ଓ ଗୁରୁଜନମାନଙ୍କର ବିଶେଷ ପ୍ରଭାବ ଓ ନିୟନ୍ତ୍ରଣ ନାହିଁ । ସାଧାରଣ ଯୁବକମାନେ ସ୍କୁଲ କଲେଜରେ ପାଠ ପଢ଼ି ଆବଶ୍ୟକ ଜ୍ଞାନ ଅର୍ଜନ କରିପାରୁ ନାହାନ୍ତି କିମ୍ବା ଶୃଙ୍ଖଳା, ବିନୟ, କର୍ତ୍ତବ୍ୟ ବୋଧ ସତ୍ୟନିଷ୍ଠା, ସଦାଚାର ପ୍ରଭୃତି ସମାଜର ଆଦର୍ଶ ଓ ସଦ୍‌ଗୁଣ ସବୁ ଶିକ୍ଷା କରିପାରୁ ନାହାନ୍ତି । ଦେଶର କଳୁଷିତ ରାଜନୈତିକ ବାତାବରଣ ମଧ୍ୟରେ ସବୁଶ୍ରେଣୀର ନେତୃସ୍ଥାନୀୟ ବ୍ୟକ୍ତି ମଧ୍ୟ ସେମାନଙ୍କର ନୈତିକ ମୂଲ୍ୟବୋଧ ଓ ସଦାଚାର ହରାଇ ବସିଛନ୍ତି । ନେତୃସ୍ଥାନୀୟ ବ୍ୟକ୍ତିମାନେ ଯୁବସଂପ୍ରଦାୟ ନିକଟରେ କୌଣସି ଆଦର୍ଶ ଦେଖାଇ ପାରୁନାହାନ୍ତି । ବହୁ କ୍ଷେତ୍ରରେ ବିଭିନ୍ନ ଶ୍ରେଣୀର ନେତୃସ୍ଥାନୀୟ ବ୍ୟକ୍ତି ଯୁବ-ସଂପ୍ରଦାୟକୁ ଅସତ୍ ଓ କୁପଥରେ ଅଗ୍ରସର ହେବାକୁ ପ୍ରେରଣା ଓ ଉତ୍ସାହ ଦେଉଛନ୍ତି । ଫଳରେ ସମ୍ପୂର୍ଣ୍ଣ ସମାଜରେ ନୈରାଶ୍ୟଜନକ ଭାବରେ ଅଧୋଗତି ଓ ଅବନତି ଘଟିଛି । ଏହି ଅଧୋଗତିର ସ୍ୱରୂପ ବର୍ତ୍ତମାନ ବିଭିନ୍ନ ଶ୍ରେଣୀର ଲୋକମାନଙ୍କର କାର୍ଯ୍ୟକଳାପ ଓ ଆଚାର ବ୍ୟବହାରରେ ପ୍ରତିଫଳିତ ହେଉଛି ।

ଶତାବ୍ଦୀର ଶେଷରେ ଆମ ସମାଜର ସବୁଶ୍ରେଣୀର ଲୋକଙ୍କ ମଧ୍ୟରେ ଗୋଟିଏ ଲକ୍ଷଣ ବ୍ୟାପକଭାବରେ ଦେଖାଯାଉଛି ଯେ, ସମସ୍ତେ ଜୀବନଧାରଣର ମାନ ବଢ଼ାଇବା ପାଇଁ ଏବଂ ପ୍ରତିଷ୍ଠା ଲାଭ କରିବା ପାଇଁ ନ୍ୟାୟ ଅନ୍ୟାୟ, ସତ୍ ଅସତ୍ ଯେ କୌଣସି ପନ୍ଥାରେ ଧନ ଅର୍ଜନ କରିବାକୁ ଚାହୁଁଛନ୍ତି । ସବୁକାଳେ ଓ

ସବୁ ସମାଜରେ ଧନୀ ଲୋକମାନେ ପ୍ରତିଷ୍ଠା ଓ ପ୍ରତିପତ୍ତି ଲାଭ କରିଛନ୍ତି ଏବଂ ନେତୃତ୍ୱ ନେଇଛନ୍ତି । ଧନାଗମ ତୃଷ୍ଣା ସବୁକାଳେ ସବୁ ସମାଜରେ ସବୁଠାରୁ ଅଧିକ ବଳବତୀ ପ୍ରବୃତ୍ତି ହୋଇଛି । ଶଙ୍କରାଚାର୍ଯ୍ୟ ପ୍ରଭୃତି ମନୀଷୀ ଓ ପଣ୍ଡିତମାନେ ଏ ପ୍ରବୃତ୍ତିକୁ ନିୟନ୍ତ୍ରିତ କରିବାକୁ ଲୋକମାନଙ୍କୁ ଉପଦେଶ ଦେଇଛନ୍ତି । ବିଗତ ଚାରି ପାଞ୍ଚଶହ ବର୍ଷ ହେଲା ପାଶ୍ଚାତ୍ୟ ଦେଶମାନଙ୍କରେ ଧନ ଅର୍ଜନ ଓ ଠୁଳ କରିବା ଲୋକମାନଙ୍କର ସର୍ବପ୍ରଧାନ ଧ୍ୟାନ ହୋଇଛି । ସଭ୍ୟତା ଓ ସଂସ୍କୃତି ସବୁ ଧନର ମାପକାଠିରେ ମାପ କରାଯାଉଛି ଏବଂ ସମସ୍ତ ସାମାଜିକ ଦୈନନ୍ଦିନ କାର୍ଯ୍ୟ ଲାଭ କ୍ଷତି ନିକିତିରେ ମାପ କରାଯାଉଛି । ଏ ମାନଦଣ୍ଡ ବର୍ତ୍ତମାନ ଆମ ଦେଶ ସମେତ ପୃଥିବୀର ସବୁ ଦେଶରେ ଜନସାଧାରଣ ବ୍ୟାପକଭାବରେ ଗ୍ରହଣ କରିଛନ୍ତି । କିନ୍ତୁ ଧନ ଆୟ ଓ ପୁଞ୍ଜି ଠୁଳ କରିବା କାର୍ଯ୍ୟ ନିୟନ୍ତ୍ରିତ କରିବା ପାଇଁ ସବୁ ଦେଶରେ ନୀତି, ନିୟମ ଓ ଆଇନକାନୁନ ପ୍ରଚଳିତ କରାଯାଇଛି ଓ ବିଭିନ୍ନ ଅନୁଷ୍ଠାନ ଗଠନ କରାଯାଇଛି । ପୂର୍ବକାଳରୁ ଆମ ଦେଶରେ ଆଇନ-ପ୍ରଣେତା ମୁନିଋଷିଗଣ ଏ ବିଷୟରେ ଆଇନ ପ୍ରଣୟନ କରିଥିଲେ । ସବୁକାଳେ ପରମ୍ପରା ଅନୁସାରେ ଲୋକମାନେ ଏ ସବୁ ବିଧି ଏବଂ ଆଇନ୍ ମାନି ଚାଲୁଥିଲେ । ନିୟମ ଓ ଆଇନ ଭଙ୍ଗ ପାଇଁ ଦଣ୍ଡବିଧାନ ଥିଲା ।

ବିଗତ ଚାଳିଶ ବର୍ଷ ମଧ୍ୟରେ ପୃଥିବୀର ବହୁ ଅନୁନ୍ନତ ଦେଶମାନଙ୍କ ସହିତ ଆମ ଦେଶର ଏ ବିଷୟରେ ବିଶେଷତ୍ୱ ହେଉଛି ଯେ, ଧନାଗମ ପ୍ରଧାନ ପ୍ରବୃତ୍ତି ସହ ଧନ ଆୟ ଓ ଠୁଳ କରିବା ବିଷୟରେ ନିୟମକାନୁନ୍ ନ ମାନିବା ବା ଯେ କୌଣସି ଉପାୟରେ ବିଧି ଲଂଘନ କରିବା । ଧନ ଅର୍ଜନ ପନ୍ଥାରେ ଲୋକମାନେ ନୀତି ଅନୀତି, ନ୍ୟାୟ ଅନ୍ୟାୟ, ଆଇନ୍ ଓ ବେଆଇନ୍ କଥା ବିଚାର କରୁ ନାହାନ୍ତି । ଫଳରେ ଦୁର୍ନୀତି, ବ୍ୟଭିଚାର, ଚୋରି, ଡକାୟତି, ଲାଞ୍ଚ ମିଛ, ଜାଲ୍ ଫିସାଦ ସମାଜର ସବୁ ଶ୍ରେଣୀର ଲୋକଙ୍କ ମଧ୍ୟରେ, ସବୁ କାର୍ଯ୍ୟରେ ବ୍ୟାପକଭାବରେ ମାଡ଼ିଯାଉଛି ଏବଂ କ୍ରମେ ଏ ସବୁର ମାତ୍ରା ଅଧିକରୁ ଅଧିକ ହୋଇ ସମସ୍ତ ସାମାଜିକ ଜୀବନକୁ କଳଙ୍କିତ ଓ କଳୁଷିତ କରୁଛି । ବିଂଶ ଶତାବ୍ଦୀର ଶେଷରେ ନୈତିକ ମୂଲ୍ୟବୋଧର ଦ୍ରୁତ ଅବକ୍ଷୟ ଏବଂ ସବୁ ସ୍ତରରେ ବ୍ୟାପକ ଦୁର୍ନୀତି ସମାଜର ପ୍ରଧାନ ସମସ୍ୟା ହୋଇଛି ।

ଦୁର୍ନୀତି, ଚୋରି, ଡକାୟତି, ମିଥ୍ୟାଚାର, ଅନ୍ୟାୟ, ଆଇନ୍ ଭଙ୍ଗ ସବୁ ସମାଜରେ ସବୁକାଳେ ଥିଲା । ଏପରିକି ଦୁଇ ହଜାର ବର୍ଷ ପୂର୍ବେ ଯିଶୁଖ୍ରୀଷ୍ଟଙ୍କର ଜଣେ, ପଟ୍ଟଶିଷ୍ୟ ଇହୁଦୀ ପୁରୋହିତଙ୍କଠାରୁ କିଛି ଲାଞ୍ଚ ନେଇ ଯିଶୁଙ୍କୁ ତାଙ୍କ ଶତ୍ରୁମାନଙ୍କୁ ଚିହ୍ନାଇ ଦେଇଥିଲା । ମାତ୍ର ସବୁ ଯୁଗରେ ଧର୍ମଗୁରୁ ଓ

ଆଇନ୍ ପ୍ରଣେତାମାନେ ଦୁର୍ନୀତିକୁ ନିୟନ୍ତ୍ରିତ ଓ ସୀମିତ କରିବାକୁ ଚେଷ୍ଟା କରିଥିଲେ । ଆଇନ୍, ଅନୁଶାସନ ଏବଂ ସାମାଜିକ ନିୟନ୍ତ୍ରଣ ଦ୍ୱାରା ଏସବୁ ଅପରାଧ ସୀମିତ ଥିଲା । କିନ୍ତୁ ବିଗତ ତିରିଶ ବର୍ଷ ହେଲା ପୃଥିବୀର ବିଭିନ୍ନ ଦେଶରେ, ବିଶେଷତଃ ଅନୁନ୍ନତ ଦେଶମାନଙ୍କରେ ଦୁର୍ନୀତିର ମାତ୍ରା କୌଣସି ସୀମା ମାନି ନାହିଁ । ଉନ୍ନତ ଜାପାନ ଦେଶର ପ୍ରଧାନମନ୍ତ୍ରୀଙ୍କଠାରୁ ଆରମ୍ଭ କରି ହଲଣ୍ଡର ରାଣୀଙ୍କ ସ୍ୱାମୀ ପର୍ଯ୍ୟନ୍ତ ଲୋକମାନେ ଦୁର୍ନୀତି ଫାଶରେ ଆବଦ୍ଧ ହୋଇଛନ୍ତି । ଆଫ୍ରିକାର ନୂତନ ଭାବରେ ସ୍ୱାଧୀନତା ଲାଭ କରିଥିବା ସମସ୍ତ ଦେଶ, ଦକ୍ଷିଣ ଆମେରିକାର ସବୁ ଦେଶ, ଦକ୍ଷିଣ ଓ ଦକ୍ଷିଣପୂର୍ବ ଏସିଆ ମହାଦେଶର ଏବଂ ଇଟାଲୀଠାରୁ ଆରମ୍ଭ କରି ମଧ୍ୟପ୍ରାଚ୍ୟର ସବୁ ଦେଶରେ ଦୁର୍ନୀତି ସର୍ବବ୍ୟାପୀ ହୋଇଛି ।

ଆମ ଦେଶରେ ବ୍ରିଟିଶ ଶାସନ କାଳରେ ସରକାରୀ ଶାସନକଳରେ ଦୁର୍ନୀତି ସର୍ବବ୍ୟାପୀ ନଥିଲା । ଅଫିସ୍ କଚେରି ପ୍ରଭୃତିରେ ଅଧସ୍ତନ କର୍ମଚାରୀମାନେ ଅଳ୍ପମାତ୍ରାରେ ଲାଞ୍ଚ ନେଉଥିଲେ । ଦ୍ୱିତୀୟ ମହାଯୁଦ୍ଧଠାରୁ ଅତ୍ୟାବଶ୍ୟକ ପଦାର୍ଥ-ମାନଙ୍କ ଅଭାବ, ସେଗୁଡ଼ିକର ବ୍ୟବସାୟ ଓ ବଣ୍ଟନ ଉପରେ ସରକାରୀ ନିୟନ୍ତ୍ରଣ, ବ୍ୟବସାୟ ବାଣିଜ୍ୟ ଓ ଶିଳ୍ପ ଉଦ୍ୟୋଗ ପାଇଁ ସରକାରଙ୍କଠାରୁ ଲାଇସେନ୍ସ ଗ୍ରହଣ, ସରକାରୀ ଉଦ୍ୟୋଗମାନଙ୍କର ପରିଚାଳନା, ପ୍ରତିରକ୍ଷାଠାରୁ ଆରମ୍ଭ କରି ସମସ୍ତ ପ୍ରକାର ସରକାରୀ ବିଭାଗମାନଙ୍କ ପାଇଁ ହଜାର ହଜାର କୋଟି ଟଙ୍କାର ଜିନିଷ ଦେଶ ବିଦେଶରୁ କିଣିବା ଏବଂ ବିଭିନ୍ନ ରାଜନୈତିକ ବ୍ୟକ୍ତି, କଣ୍ଟ୍ରାକ୍ଟର ଓ ସରକାରୀ କର୍ମଚାରୀଙ୍କ ଦ୍ୱାରା ଯୋଜନା ଓ ଉନ୍ନୟନ କାର୍ଯ୍ୟ ପାଇଁ ହଜାର ହଜାର କୋଟି ଟଙ୍କାର ସରକାରୀ ପାଣ୍ଠି ଖର୍ଚ୍ଚ କରିବା ପ୍ରଭୃତି ହେତୁ ଏସବୁ କାର୍ଯ୍ୟରେ ଲିପ୍ତ ଥିବା ବ୍ୟବସାୟୀ, ଶିଳ୍ପପତି, ମଧ୍ୟସ୍ଥ, ଦଲାଲ୍, କଣ୍ଟ୍ରାକ୍ଟର ଏବଂ ନିୟନ୍ତ୍ରଣକାରୀ ସରକାରୀ କର୍ମଚାରୀ ଓ ରାଜନୈତିକ କର୍ମକର୍ତ୍ତା, ସମସ୍ତେ ଦୁର୍ନୀତିପୂର୍ଣ୍ଣ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟ କରିବାକୁ ଯଥେଷ୍ଟ କ୍ଷେତ୍ର ପାଇଲେ । ସରକାରୀ କଳ ହସ୍ତଗତ କରିଥିବା ରାଜନୈତିକ ଦଳର ନେତା, ମନ୍ତ୍ରୀ, ବିଭିନ୍ନ ଦାୟିତ୍ୱରେ ଥିବା ରାଜନୈତିକ ବ୍ୟକ୍ତି ଓ ଉଚ୍ଚ ସ୍ତରରୁ ନିମ୍ନସ୍ତର ପର୍ଯ୍ୟନ୍ତ ସରକାରୀ କର୍ମଚାରୀ, ସମସ୍ତେ ଦୁର୍ନୀତି ପୂର୍ଣ୍ଣ କାର୍ଯ୍ୟ କରିବାକୁ ବିସ୍ତୃତ କ୍ଷମତା ପାଇଲେ । ଦେଶର ସର୍ବୋଚ୍ଚ ଶାସନକର୍ତ୍ତା ମଧ୍ୟ ଦୁର୍ନୀତିର ଉତ୍ସ ହେଲେ । କ୍ରମେ ଏ ରୋଗ ସର୍ବବ୍ୟାପୀ ହୋଇଗଲା । ଜନସାଧାରଣ, ସରକାରୀ ଓ ବେସରକାରୀ ଅଫିସ୍ କର୍ମଚାରୀ, ସ୍କୁଲ କଲେଜ, ଶିକ୍ଷକ, ଛାତ୍ର, ଡାକ୍ତର, ଶାସନକାରୀ ଅଫିସର, ବିଚାରପତି, ସମସ୍ତେ ଦୁର୍ନୀତି ଫାଶରେ ପଡ଼ିଲେ । ନ୍ୟାୟ ଅନ୍ୟାୟ ବିଚାର ରହିଲା ନାହିଁ । ଲାଞ୍ଚ ନଦେଲେ କୌଣସି ସ୍ତରରେ କାର୍ଯ୍ୟ ହୋଇପାରୁ ନାହିଁ । ସବୁ ବିଭାଗରେ ପିଅନଠାରୁ

ଆରମ୍ଭ କରି ଉଚ୍ଚ ଅଫିସର ପଦବୀମାନଙ୍କରେ ନିଯୁକ୍ତି ପାଇଁ ଲୋକମାନେ ପର୍ଯ୍ୟାପ୍ତ ପରିମାଣରେ ଲାଞ୍ଚ ଦେଉଛନ୍ତି । ସବୁ ସରକାରୀ ବିଭାଗରେ ବଦଳି ଓ ବଦଳି ବନ୍ଦ ପାଇଁ ସରକାରୀ ଅଫିସର ଓ ରାଜନୈତିକ ନେତାମାନେ ଲାଞ୍ଚ ନେଉଛନ୍ତି । ଏ ସବୁ ପ୍ରକାର ଆଚାର ବ୍ୟବହାର ସମସ୍ତେ କରୁଛନ୍ତି, ଦେଖୁଛନ୍ତି ଏବଂ ଅନୁଭବ କରୁଛନ୍ତି । ଏଗୁଡ଼ିକ ଅଭ୍ୟାସଗତ ହୋଇ ଯାଇଛି । ସମାଜରେ ଅତି ଅଳ୍ପ ଲୋକ ଏ ଦୁର୍ନୀତି-ପୂର୍ଣ୍ଣ କାର୍ଯ୍ୟରୁ ମୁକ୍ତ ଅଛନ୍ତି । ସମସ୍ତେ ଲାଞ୍ଚ ଦେଇ ନିଜ କାମଟା କରାଇନେବାକୁ ଚାହୁଁଛନ୍ତି ଏବଂ ସେ କାମ କରାଇଦେବା ବ୍ୟକ୍ତି ଅନାୟାସରେ ଲାଞ୍ଚ ନେଉଛନ୍ତି ।

ଲାଭ ପାଇଁ ଖାଦ୍ୟପେୟଠାରୁ ଆରମ୍ଭ କରି ସମସ୍ତ ପ୍ରକାର ବ୍ୟବହାର୍ଯ୍ୟ ପଦାର୍ଥର ଅପମିଶ୍ରଣ, କ୍ଷୀରରେ ନୀର, ମହୁରେ ଗୁଡ଼, ଘିଅରେ ତେଲ, ଚାଉଳ ଓ ଅଟାରେ ଗୋଡ଼ିବାଲି, ସିମେଣ୍ଟରେ ମାଟି ପ୍ରଭୃତି ମିଶା ଯାଉଛି । ଜୀବନରକ୍ଷାକାରୀ ଔଷଧ ମଧ୍ୟ ଅପମିଶ୍ରିତ ହେଉଛି । ଲାଞ୍ଚ ନଦେଲେ ଡାକ୍ତର ମୁମୂର୍ଷୁ ଶଯ୍ୟାରେ ରୋଗୀକୁ ଦେଖିବାକୁ ପ୍ରସ୍ତୁତ ନୁହନ୍ତି । ଶିକ୍ଷକମାନେ ଟଙ୍କା ନେଇ ପରୀକ୍ଷା ଖାତାରେ ନମ୍ବର ବଢ଼ାଉଛନ୍ତି, ସ୍କୁଲ କଲେଜର ଛାତ୍ରଛାତ୍ରୀମାନେ ପାଠ ନଜାଣି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପାଇଁ ବ୍ୟାପକଭାବରେ କପି କରୁଛନ୍ତି । ଦୈନନ୍ଦିନ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ଏପରି ଦୁର୍ନୀତିପୂର୍ଣ୍ଣ ଅନ୍ୟାୟ କାର୍ଯ୍ୟ ବ୍ୟାପିଯାଉଛି । ଏହାକୁ ଅନ୍ୟାୟ ବୋଲି କହିଲେ ଲୋକେ ହସୁଛନ୍ତି । ସମାଜର ଅଧିକାଂଶ ଲୋକ ଯେତେବେଳେ ଏପରି କାର୍ଯ୍ୟ କରୁଛନ୍ତି, ସେତେବେଳେ ଏହାକୁ ଅନ୍ୟାୟ ଓ କଦାଚାର ବୋଲି କହିବା ନିରର୍ଥକ । ଯେଉଁ ମୂଲ୍ୟବୋଧରେ ଏହାକୁ ଅନ୍ୟାୟ ବୋଲି ବିଚାର କରାଯିବ, ସେ ମୂଲ୍ୟବୋଧର ପୂର୍ଣ୍ଣ ଅବକ୍ଷୟ ଘଟିଛି । ବିଂଶ ଶତାବ୍ଦୀର ଶେଷରେ ପରିସ୍ଥିତି ଏପରି ନୈରାଶ୍ୟମୟ ହୋଇଛି । ପରବର୍ତ୍ତୀ ଶତାବ୍ଦୀରେ ଏ ଅବସ୍ଥାର କିପରି ପରିବର୍ତ୍ତନ ଘଟିବ, ତାର ରୂପରେଖ ଉଜ୍ଜ୍ୱଳସ୍ୱରେ ଦିଶୁନାହିଁ ।

ଶତାବ୍ଦୀର ଶେଷଭାଗରେ ବ୍ୟାପକ ଦୁର୍ନୀତି ସହିତ ଆଉ କେତେଗୋଟି ଘଟଣା ଜନଜୀବନକୁ ବ୍ୟଥିତ କରୁଛି । ବୈବାହିକ କ୍ଷେତ୍ରରେ ଯୌତୁକ ଆଦାନ-ପ୍ରଦାନ ଏବଂ ଯୌତୁକ ଆଦାୟ ପାଇଁ ବ୍ୟାପକ ବଧୂ-ନିର୍ଯ୍ୟାତନା, ସମାଜରେ ଚୋରି, ଡକାୟତି, ନରହତ୍ୟା, ମଦ୍ୟପାନ, ହିଂସାକାଣ୍ଡ ପ୍ରଭୃତି ବ୍ୟାପକ ଭାବରେ ଘଟୁଛି । ଦୁର୍ନୀତି ସହିତ ଏସବୁର ମୂଳ ଉତ୍ସ ଏକ । ତାହା ହେଉଛି ଧନାଗମ ତୃଷ୍ଣା ଓ ଧନଲୋଭ, ନୈତିକ ମୂଲ୍ୟବୋଧର ଅବକ୍ଷୟ ଏବଂ ସମାଜରେ ଅନ୍ୟାୟର ନିୟନ୍ତ୍ରଣ ଓ ପ୍ରତିରୋଧର ଅଭାବ ।

ଆମ ପିଲାଦିନେ ଆମ ଅଞ୍ଚଳରେ ସବୁଜାତିର ଗରିବ ଲୋକଙ୍କ ମଧ୍ୟରେ ଯୌତୁକର ଆଦାନପ୍ରଦାନ ପ୍ରାୟ ନଥିଲା । ଦରିଦ୍ର ବ୍ରାହ୍ମଣ ପରିବାରରେ ଲୋକମାନେ ସତ୍‌କୁଳ ଓ ସତ୍‌ପାତ୍ରରେ ତୁଳସୀପତ୍ର ପାଣି ସହ କନ୍ୟାଦାନ କରୁଥିଲେ ଏବଂ ନୂଆ ଲୁଗା, ମିଠାଇ, ଉଖୁଡ଼ା ସହିତ ଝିଅ ବିଦା କରୁଥିଲେ । କେତେକ ଅତି ଗରିବ ପରିବାର ବରପିତାଠାରୁ କିଛି ଟଙ୍କା ଆଣି ଝିଅ ବିଭା କରିଦେଉଥିଲେ । ଲୋକମାନେ ତାକୁ କନ୍ୟାବିକ୍ରି ବୋଲି କହୁଥିଲେ ଏବଂ ସେ କାର୍ଯ୍ୟକୁ ସମାଜରେ ଅଧିକାଂଶ ଲୋକ ନିନ୍ଦା କରୁଥିଲେ । ଅନ୍ୟସବୁ ଜାତିର ଦରିଦ୍ର ପରିବାରମାନଙ୍କ ମଧ୍ୟରେ ଯୌତୁକ ଆଦାନପ୍ରଦାନ ମଧ୍ୟ ମୋଟେ ନଥିଲା । କ୍ଷତ୍ରିୟ ଓ କରଣ ଜାତିର ଧନୀ ଲୋକଙ୍କ ମଧ୍ୟରେ ଯୌତୁକ ଦାବି କରାଯାଉଥିଲା । କନ୍ୟାପିତା କନ୍ୟାର ବିବାହ ପାଇଁ ବରଘରକୁ ଟଙ୍କା ଏବଂ କନ୍ୟାକୁ ସୁନାରୁପା ଅଲଙ୍କାର, ଖଟ, ପାଲଙ୍କି, ସୁଆରି, ବାସନ କୁସନ ପ୍ରଭୃତି ବହୁ ଆସବାବ୍‌ପତ୍ର ଦେଉଥିଲେ । ମାତ୍ର ଯୌତୁକ ଆଣିନଥିବା ବଧୂମାନଙ୍କ ଉପରେ ନିର୍ଯ୍ୟାତନା ନଥିଲା । ଧନୀ ପରିବାରମାନଙ୍କର ଏହି ପଦ୍ଧତି କ୍ରମେ ବିଭିନ୍ନ ଜାତିର ମଧ୍ୟବିତ୍ତ, ନିମ୍ନ ମଧ୍ୟବିତ୍ତ ଓ ଦରିଦ୍ର ପରିବାରମାନଙ୍କୁ ମାଡ଼ିଗଲା । ବିଗତ ତିରିଶ ଚାଳିଶ ବର୍ଷ ମଧ୍ୟରେ ଏହା ସମସ୍ତ ବିବାହ ବନ୍ଧନର ଅଙ୍ଗସ୍ୱରୂପ ହୋଇ ଯାଇଛି । ବିବାହ ପ୍ରସ୍ତାବ ହେବାକ୍ଷଣି ପ୍ରଥମେ ଦେବା ନେବା କଥାବାର୍ତ୍ତା ହେଉଛି ଏବଂ ଯୌତୁକର ମାତ୍ରା ସ୍ଥିର ହେଉଛି । ଝିଅକୁ ଭଲଘରେ ଏବଂ ଭଲ ପାତ୍ରରେ ବିବାହ ଦେବାକୁ ସବୁ ପିତାମାତା ଚାହାନ୍ତି । ସମସ୍ତ ଝିଅଙ୍କୁ ବିବାହ କରିଦେବା ପିତାମାତାଙ୍କର ସାମାଜିକ ଦାୟିତ୍ୱ ବୋଲି ଆମ ସମାଜରେ ସମସ୍ତଙ୍କର ଧାରଣା । ନୈତିକ ମୂଲ୍ୟବୋଧର ଅବକ୍ଷୟ ଓ ଧନଲୋଭ ପରିପ୍ରେକ୍ଷୀରେ ବରପିତାମାନେ ପରିସ୍ଥିତିର ସୁବିଧା ନେଉଛନ୍ତି ।

ପାଠ ପଢ଼ିଥିବା ରୋଜଗାରକ୍ଷମ ଓ ସମ୍ପତ୍ତିବାନ୍ ଯୁବକମାନଙ୍କ ବିବାହ ପାଇଁ ସେମାନେ ଓ ସେମାନଙ୍କର ପରିବାରମାନେ କନ୍ୟାଘରଠାରୁ ବହୁ ଅର୍ଥ ଏବଂ ମଟର ଗାଡ଼ିଠାରୁ ଆରମ୍ଭ କରି ଟେଲିଭିଜନ, ସ୍କୁଟର, ରେଫ୍ରିଜରେଟର୍ ପ୍ରଭୃତି ମୂଲ୍ୟବାନ୍ ଆସବାବ୍ ଏବଂ ବହୁମୂଲ୍ୟର ସୁନା ଅଲଙ୍କାର ଦାବି କରୁଛନ୍ତି । କନ୍ୟାପିତାମାନେ ସର୍ବସ୍ୱାନ୍ତ ହୋଇ ସୁଦ୍ଧା ଝିଅକୁ ଭଲରେ ବିବାହ ଦେବା ପାଇଁ ଯୌତୁକ ଦାବି ପୂରଣ କରିବାକୁ ଯାଇ ସର୍ବସ୍ୱାନ୍ତ ହେଉଛନ୍ତି ! ଅନେକ ସମୟରେ ଚୁକ୍ତି ଭଙ୍ଗ ହେଲେ କନ୍ୟାକୁ ବହୁ ନିର୍ଯ୍ୟାତନା ସହ୍ୟ କରିବାକୁ ହେଉଛି ଏବଂ ଗଞ୍ଜଣା ଅତ୍ୟଧିକ ହେଲେ ଯୁବତୀ ଝିଅମାନେ ମୃତ୍ୟୁ ବରଣ କରିବାକୁ ଶ୍ରେୟ ମନେ କରୁଛନ୍ତି । ଅନେକ ସ୍ଥଳରେ ବରଘରର ଲୋକମାନେ ମଧ୍ୟ ବୋହୂକୁ ମାରି

ଦେଉଛନ୍ତି । ଏପରି ଦୁଃଖଦାୟକ ଘଟଣା ପ୍ରତିଦିନ ଖବରକାଗଜମାନଙ୍କରେ ବାହାରୁଛି ।

ବର୍ତ୍ତମାନ ଓଡ଼ିଶା ସମେତ ଭାରତବର୍ଷର ସବୁ ରାଜ୍ୟ ଉପରେ ଦୃଷ୍ଟି ପକାଇଲେ ଜଣାଯାଉଛି ଯେ, ଯୌତୁକ ଆଦାନ ପ୍ରଦାନ ସର୍ବବ୍ୟାପୀ ହୋଇଛି । ମୋର ଅଭିଜ୍ଞତା ମଧ୍ୟରେ ଥିବା ଶହଶହ ଏପରି ଘଟଣା ମଧ୍ୟରୁ କେତେକ ଘଟଣା ଉଦାହରଣ ସ୍ୱରୂପ ଉଲ୍ଲେଖ କରାଯାଉଛି । ଉତ୍କଳ ବିଶ୍ୱବିଦ୍ୟାଳୟର ଜଣେ ପିଅନର ବାପ ତାର ଜୀବନଯାକ କୋଠିଆ ଓ ଦିନମଜୁରିଆ ହୋଇ ଘାସ କାମ କରୁଥିଲା । ଅନ୍ୟମାନଙ୍କ ଦେଖାରୁ ତାର ପୁଅ ପିଅନ ହେବାରୁ ସେ ତାର ବିବାହ ପାଇଁ କନ୍ୟା ଘରୁ ସାଢ଼େ ଆଠ ଭରିର ସୁନା ଅଳଙ୍କାର ଦାବି କଲା । ଆମ ଗାଁ ଘରେ ଜଣେ ବାଉରି ଜାତିର ଚାକର ଅଛି । ତାର ଝିଅ ବିବାହ ପାଇଁ ଜୋଇଁକୁ ଘଣ୍ଟା, ସାଇକେଲ ଓ ବରଯାତ୍ରୀ ଲୋକଙ୍କୁ ଲୁଗାପଟା ଦେବା ସହିତ ବିବାହର ଅନ୍ୟ ଖର୍ଚ୍ଚ ପାଇଁ ଚାରି ହଜାର ଟଙ୍କା କରଜ କରି ଆଣି ଖର୍ଚ୍ଚ କରିବାକୁ ବାଧ୍ୟ ହେଲା । କରଜ ଶୁଝିବା ପାଇଁ ସେ ଆମ ଘରେ ସର୍ବଦା ଚାକର ରୂପେ କାମ କରୁଛି । ବିବାହ ପରେ ଉଭୟ ଜୋଇଁ ଏବଂ ଝିଅ ଘାସମୂଲିଆ କାମ କରୁଛନ୍ତି । ଭୁବନେଶ୍ୱରରେ ଆମ ଘରେ ଠିକା ଚାକରାଣୀ କାମ କରୁଥିବା ଜଣେ ସ୍ତ୍ରୀଲୋକ ତାର ଝିଅର ବିବାହରେ ତିନି ଚାରି ହଜାର ଟଙ୍କା ଖରଚ କଲା । ତାର ସ୍ୱାମୀ ଭୁବନେଶ୍ୱରରେ ରିକ୍ସା ଟାଣେ ଏବଂ ଜୋଇଁ ମଧ୍ୟ ଜଣେ ଯୁବକ ରିକ୍ସାଚାଳକ । ଏହିପରି ଶହ ଶହ ଘଟଣା ଆମ ସମାଜରେ ପ୍ରତିଦିନ ଘଟୁଛି । ଯୌତୁକ ପ୍ରଥା ଅତି ଗରିବ ଲୋକଙ୍କ ପରିବାରମାନଙ୍କୁ କପରି ପ୍ରବେଶ କରିଛି, ଏସବୁ ତାର ନମୁନା ମାତ୍ର ।

ଧନୀ ଲୋକଙ୍କ କଥା ଗୁଡ଼ । ବରଘରର ସମ୍ପତ୍ତିପରିମାଣ ଏବଂ ଜୋଇଁର ଯୋଗ୍ୟତା ଓ ଚାକିରି ଅନୁସାରେ ଯୌତୁକର ପରିମାଣ ଧରାବନ୍ଧା ରୂପେ ସ୍ଥିର ହୋଇଛି । ଆଇ. ଏ. ଏସ୍. ହୋଇଥିଲେ ଏତେ ଓ. ଏ. ଏସ୍. ହୋଇଥିଲେ ଏତେ । ସେହିପରି ଇଞ୍ଜିନିଅର, ଡାକ୍ତର, ବ୍ୟାଙ୍କ ଅଫିସର, କିରାଣି, ପିଅନ ହୋଇଥିଲେ କେତେ ଯୌତୁକ ଦେବାକୁ ପଡ଼ିବ, ତାହା ଲୋକମାନଙ୍କ ମଧ୍ୟରେ ଗୋଟିଏ ମୋଟାମୋଟି ଧାରଣା ହୋଇଛି । ପ୍ରଥମେ ନିଲାମ ଡାକରେ ପରି ଉଚ୍ଚ ପରିମାଣ ଦାବି କରା ଯାଉଛି । ଯୁକ୍ତିତର୍କ ଓ ମଧ୍ୟସ୍ଥତା ଦ୍ୱାରା ଯାହା ଚାଲିଛି ଅଛି, ସେହି ଅନୁସାରେ ଯୌତୁକ ପରିମାଣ ସ୍ଥିର ହେଉଛି । ଚୁକ୍ତିରକ୍ଷା କରି ନପାରିଲେ ଝିଅର ଅବସ୍ଥା ଶୋଚନୀୟ ହେଉଛି । ବହୁସ୍ଥଳରେ ମଧ୍ୟ ବିବାହ ପରେ ଚୁକ୍ତି ବାହାରେ ଅଧିକ ଟଙ୍କା ବା ଆସବାବ ପତ୍ର ଦାବି କରାଯାଉଛି । ଦେଶରେ ଯୌତୁକ ନିରୋଧ ଆଇନ୍ ପାସ୍ ହୋଇଛି । ଯୌତୁକ ଦେବା ଓ ନେବା ଧର୍ତ୍ତବ୍ୟ

ଅପରାଧ ବୋଲି ଆଇନ୍‌ରେ ଲେଖାଯାଇଛି । ଯେଉଁଠାରେ ଝିଅମାନେ ଯୌତୁକ ଗଞ୍ଜଣା ହେତୁ ଆତ୍ମହତ୍ୟା ପ୍ରଭୃତି ଦ୍ୱାରା ମରିଯାଉଛନ୍ତି, ସେଠାରେ ଆଇନ୍ ଅନୁସାରେ ମକଦ୍ଦମା ହେଉଛି । ଏହାର ସଂଖ୍ୟା କିନ୍ତୁ ସର୍ବବ୍ୟାପୀ ଯୌତୁକ ଆଦାନ ପ୍ରଦାନ ସଂଖ୍ୟା ତୁଳନାରେ ଖୁବ କମ୍ । କେବଳ ଖବରକାଗଜରେ ଛପା ହେଉଛି ବୋଲି ଲୋକେ ଜାଣୁଛନ୍ତି । ଅନ୍ୟଥା ସମସ୍ତ ସାଧାରଣ ଲୋକ ଯୌତୁକ ଦେଉଛନ୍ତି ଏବଂ ନେଉଛନ୍ତି । ଦେବାନେବା ଲୋକ ରାଜି ହୋଇ ଏହା କରୁଥିବାରୁ ଆଇନ୍ ସେଥିରେ ହସ୍ତକ୍ଷେପ କରି ପାରୁ ନାହିଁ । ଏ ପ୍ରଥା ଆମ ସମାଜର ଗୋଟିଏ ବିରାଟ ବ୍ୟାଧି ।

ଅନ୍ୟ ଏକ ଗୁରୁତର ବ୍ୟାଧି ମଧ୍ୟ ଲୋକମାନଙ୍କ ମନକୁ ଅସ୍ଥିର କରୁଛି । ତାହାହେଲା ବିଭିନ୍ନ ପ୍ରକାର ଅପରାଧର ଅତ୍ୟଧିକ ମାତ୍ରା । ଚୋରି ଓ ଚୋର ସବୁକାଳେ ଥିଲେ । ବ୍ରିଟିଶ ଶାସନ ପୂର୍ବରୁ ଓଡ଼ିଶା ସମେତ ଭାରତର ସବୁ ପ୍ରଦେଶରେ ଚୋରି ଏବଂ ଡକାୟତିର ମାତ୍ରା ଅତ୍ୟଧିକ ଥିଲା । ଦୂର ସ୍ଥାନମାନଙ୍କୁ ତୀର୍ଥଯାତ୍ରା କିପରି ବିପଦସଂକୁଳ ଥିଲା ଏବଂ ଗାଁ ଗାଁରେ ଚୋର ଡକାୟତମାନେ କିପରି ଉତ୍ପାତ କରୁଥିଲେ, ତାହା ଇତିହାସରୁ ଏବଂ ବୃଦ୍ଧ ଲୋକମାନଙ୍କ କାହାଣୀରୁ ଜଣାଯାଏ । ଊନବିଂଶ ଶତାବ୍ଦୀରେ ବ୍ରିଟିଶ ଶାସନ ଅମଳରେ ମଧ୍ୟ ବହୁକାଳ ଏହିପରି ଅବସ୍ଥା ଥିଲା । ଊନବିଂଶ ଶତାବ୍ଦୀର ଶେଷରେ ରେଲଗାଡ଼ି ଚଳାଚଳ ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ ସ୍ଥାନରୁ କଲିକତା ସହରକୁ ଯିବା କିପରି ବିପଦସଂକୁଳ ଥିଲା, ତାହା ଫକୀରମୋହନ ପ୍ରଭୃତି ଲେଖକ ବର୍ଣ୍ଣନା କରିଛନ୍ତି । ଦୂରସ୍ଥାନକୁ ଯାଉଥିବା ଯାତ୍ରୀମାନଙ୍କର ଟଙ୍କା ପଇସା ବାଟରେ ଥିବା ଚଟି-ଘରମାନଙ୍କରେ କିପରି ଚୋରି ହେଉଥିଲା, ତାହା ଆମ ବାପା ଓ ଅଜାଙ୍କ କାଳର ଲୋକମାନେ ସମସ୍ତେ ଜାଣିଥିଲେ । ମାତ୍ର ବିଂଶ ଶତାବ୍ଦୀର ଆରମ୍ଭ ସମୟକୁ ଭାରତର ସ୍ୱରିଆଡ଼େ ବ୍ରିଟିଶ୍ ଶାସନ ଦୃଢ଼ଭାବରେ ପ୍ରତିଷ୍ଠିତ ହୋଇଥିଲା ଏବଂ ସରକାର ଆଇନ୍‌ଶୃଙ୍ଖଳା ଦୃଢ଼ଭାବରେ ରକ୍ଷା କରି ପାରିଥିଲେ । ଆମ ପିଲାଦିନେ, ୧୯୨୦ ମସିହାରୁ ୧୯୩୦-୩୫ ମସିହା ମଧ୍ୟରେ ଆମ ଅଞ୍ଚଳରେ ଏବଂ ଓଡ଼ିଶାର ଅନ୍ୟ ଅଞ୍ଚଳର ଗାଁ ମାନଙ୍କରେ ଚୋରି, ଡକାୟତି ଓ ହତ୍ୟାକାଣ୍ଡ ପ୍ରଭୃତି ଖୁବ୍ କମ୍ ଥିଲା । ଡକାୟତି ମାତ୍ରା ଅତି ଅଳ୍ପ ଥିଲା ଏବଂ ଗାଁମାନଙ୍କରେ ଚୋରି ଖୁବ୍ ଛୋଟକାଟିଆ ଥିଲା । ଲୋକଙ୍କର ପୁଲିସ୍ ଓ ସରକାରୀ କର୍ମଚାରୀଙ୍କ ପ୍ରତି ଖୁବ୍ ଭୟ ଥିଲା । ଚୋରମାନେ ଦଳବଦ୍ଧ ହୋଇ ବଡ଼ ଧରଣର ଚୋରି କିମ୍ବା ଡକାୟତି କରିବାକୁ ସାହସ କରୁ ନ ଥିଲେ । ଲୋକମାନଙ୍କ ହାତରେ କୌଣସି ଅସ୍ତ୍ରଶସ୍ତ୍ର ନ ଥିଲା । ଆଜି ଲୋକମାନଙ୍କ କବାଟ ଭାଙ୍ଗି, ବୋମା ଫଟାଇ, ମାରଣାସ୍ତ୍ର ବ୍ୟବହାର କରି ଟଙ୍କା, ସୁନା,

ରୁପା ଓ ମୂଲ୍ୟବାନ୍ ପଦାର୍ଥ ସବୁ ଲୁଟିନେବା ବିଶେଷ ଶୁଣାଗୁଣା ନ ଥିଲା । ଯାହାରେ ରେଲ ମଟରରେ ମଧ୍ୟ ଡକାୟତି ନ ଥିଲା । ଗୋରମାନଙ୍କ ବ୍ରିଟିଶ୍ ସରକାର ଦୃଢ଼ ହସ୍ତରେ ଦମନ କରୁଥିଲେ । ସେମାନଙ୍କ ପିଠିରେ ପଡ଼ିବାକୁ କେହି ନ ଥିଲେ । ପୁଲିସ୍ ଓ ସରକାରୀ କର୍ମଚାରୀମାନଙ୍କର ମଧ୍ୟ ଉପର ହାକିମ ଓ ସରକାରଙ୍କୁ ଖୁବ୍ ଭୟ ଥିଲା । ସେମାନେ ଲାଞ୍ଚନେଇ ଚୋର ଡକାୟତଙ୍କୁ ଛାଡ଼ିଦେବାକୁ ଭୟ କରୁଥିଲେ । ଦ୍ୱିତୀୟ ଯୁଦ୍ଧ ସମୟରେ ଏବଂ ସ୍ୱାଧୀନତା ପରେ ପ୍ରାୟ ପନ୍ଦର କୋଡ଼ିଏ ବର୍ଷ ଦେଶର ସବୁଆଡ଼େ ମଧ୍ୟ ଅପରାଧର ମାତ୍ରା କମ୍ ଥିଲା ।

ମାତ୍ର ବିଗତ କୋଡ଼ିଏ ପଚିଶ୍ ବର୍ଷହେଲା ସବୁ ପ୍ରକାର ଅପରାଧର ଗତି ଭିନ୍ନ ହୋଇଛି । ଚୋର ଡକାୟତମାନେ ବିଭିନ୍ନ ପ୍ରକାର ଅସ୍ତ୍ର ବ୍ୟବହାର କରୁଛନ୍ତି । ଯୁବକମାନଙ୍କ ହାତରେ ଛୁରୀ, ଭୁଜାଲି ପ୍ରଭୃତି ଅସ୍ତ୍ର ସାଧାରଣ ଭାବେ ଅଛି । ଅସାମାଜିକ ବ୍ୟକ୍ତିମାନେ ମଧ୍ୟ ସହଜରେ ଦେଶୀ ଓ ବିଦେଶୀ ବନ୍ଧୁକ ଯୋଗାଡ଼ କରି ପାରୁଛନ୍ତି ଏବଂ ହାତବୋମା ପ୍ରଭୃତି ତିଆରି କରିବା କୌଶଳ ଶିଖୁଛନ୍ତି । ଗ୍ରାମ ଓ ସହରମାନଙ୍କରେ ବହୁସଂଖ୍ୟକ ଶିକ୍ଷିତ, ଅର୍ଦ୍ଧ-ଶିକ୍ଷିତ ଓ ଅଶିକ୍ଷିତ ବେକାର ଯୁବକ ଅଛନ୍ତି । ସେମାନଙ୍କ ମଧ୍ୟରୁ ଅନେକେ ମଦ ଏବଂ ଅନ୍ୟ ବିଭିନ୍ନ ପ୍ରକାର ନିଶାଦ୍ରବ୍ୟ ସେବନ କରିବା ଅଭ୍ୟାସ କରିଛନ୍ତି । ପୂର୍ବ ଅପେକ୍ଷା ସେମାନଙ୍କର ସାହସ ଓ ଶାରୀରିକ ଶକ୍ତି ଅଧିକ ଏବଂ ସେମାନେ ଧନୀ ଲୋକଙ୍କ ପରି ଖାଇବା ପିଇବା ଓ ପିନ୍ଧିବାକୁ ଇଚ୍ଛା କରନ୍ତି । ସେମାନଙ୍କର ନୈତିକ ମୂଲ୍ୟବୋଧ କିଛି ନାହିଁ । ଦୈନନ୍ଦିନ ଖର୍ଚ୍ଚ କରିବା, ନିଶାଦ୍ରବ୍ୟ ସେବନ କରିବା, ବିଭିନ୍ନ ପ୍ରକାର ମଉଜ ମଜ୍‌ଲିସ୍ କରିବାକୁ ସେମାନଙ୍କର ରୋଜଗାର ନାହିଁ କିମ୍ବା ପାଖରେ ପଇସା ନାହିଁ । ସୁତରାଂ ଦଳବଦ୍ଧ ହୋଇ ଗାଁରେ ବା ସହରରେ ଚୋରି କିମ୍ବା ଡକାୟତି କରିବା ସେମାନଙ୍କର ସହଜ ଉପାୟ ହୋଇଛି । ସେଥିପାଇଁ ସେମାନଙ୍କର ଅସ୍ତ୍ର ଅଛି, ଗାଡ଼ି ମଟର, ସ୍କୁଟର, ମଟରସାଇକେଲ୍ ପ୍ରଭୃତି ଭଡ଼ା କିମ୍ବା ଚୋରି କରାଯାଇ ପାରୁଛି । ଧରାପଡ଼ିଲେ ପୁଲିସ୍, ଅନ୍ୟ ଅଫିସର ଏବଂ ରାଜନୈତିକ ବ୍ୟକ୍ତିଙ୍କୁ ଲାଞ୍ଚ ଦେଇ ଖସି ଯିବାର ସୁବିଧା ମଧ୍ୟ ଅଛି । ଗାଁରେ ଓ ସହରମାନଙ୍କରେ ବିଭିନ୍ନ ରାଜନୈତିକ ନେତା ସେମାନଙ୍କୁ ନିଜର ଉଦ୍ଦେଶ୍ୟ ସାଧନ ପାଇଁ ବ୍ୟବହାର କରୁଛନ୍ତି ଏବଂ ବିପଦ-ବେଳେ ନେତାମାନେ ସେମାନଙ୍କୁ ସାହାଯ୍ୟ କରୁଛନ୍ତି । ଫଳରେ ଗାଁ ଓ ସହରମାନଙ୍କରେ ବସ୍ ଓ ରେଲଗାଡ଼ିରେ, ବ୍ୟାଙ୍କ୍, ଦୋକାନ ବଜାରରେ, ରାସ୍ତାଘାଟରେ ପ୍ରତିଦିନ ଶହ ଶହ ଚୋରି ଡକାୟତି ହେଉଛି । ଦିନ ରାତି ଯେ କୌଣସି ସମୟରେ ଚୋର ଏବଂ ଅସାମାଜିକ ଲୋକମାନେ ସାଧାରଣ

ଲୋକଙ୍କଠାରୁ ରାସ୍ତାରେ ଆକ୍ରମଣ କରି ଟଙ୍କା ସୁନା ଛଡ଼ାଇ ନେଉଛନ୍ତି । ପ୍ରତିଦିନ ବହୁ ଲୋକଙ୍କ ଘରେ ସଶସ୍ତ୍ର ଡକାୟତମାନେ ପଶି ଗୃହମାଲିକମାନଙ୍କୁ ଆହତ କରି, ସାହି ପଡ଼ିଶା ଲୋକଙ୍କୁ ବୋମା ଓ ବନ୍ଧୁକ ପ୍ରଭୃତି ଦ୍ୱାରା ଭୟଭୀତ କରି ଟଙ୍କା ସୁନା ଓ ମୂଲ୍ୟବାନ ପଦାର୍ଥ ଲୁଟି ନେଉଛନ୍ତି ଏବଂ ମହିଳାମାନଙ୍କୁ ନିର୍ଯାତନା ଦେଉଛନ୍ତି । ସଚ୍ଚୋଟ ପୁଲିସ୍ ଅଫିସରଙ୍କ ସଂଖ୍ୟା କମ୍ । ପୁଲିସ କର୍ମଚାରୀମାନେ ଅନ୍ୟ ବହୁ କାର୍ଯ୍ୟରେ ନିଯୁକ୍ତ ଏବଂ ନିଜର ଚାକିରି ଓ ବଦଳି ପ୍ରଭୃତି ପାଇଁ ରାଜନୈତିକ ନେତାଙ୍କୁ ସେମାନେ ଭୟ କରନ୍ତି । ଅସାମାଜିକ ବ୍ୟକ୍ତିମାନଙ୍କର ନିଜ ନିଜ ମଧ୍ୟରେ କଳହ ଏବଂ ରାଜନୈତିକ ଦଳମାନଙ୍କ କନ୍ଦଳରେ ସେମାନଙ୍କଠାରୁ ଭଡ଼ା ନେଇ ହିଂସାକାଣ୍ଡ କରିବା କାର୍ଯ୍ୟ ପ୍ରତିଦିନ ବହୁସଂଖ୍ୟାରେ ଘଟୁଛି । ବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ଆଇନ ଶୃଙ୍ଖଳାର ଏହି ଭୟାବହ ଅବସ୍ଥା ଆମେ ଏବଂ ଆମର ସମସାମୟିକ ଲୋକମାନେ ଆଖିରେ ଦେଖୁଛୁ ଏବଂ ଅସ୍ଥିର ଚିତ୍ତରେ ଅନୁଭବ କରୁଛୁ । ବର୍ତ୍ତମାନ ନିଉୟର୍କ, ରୋମ୍, ଲଣ୍ଡନ୍, ପାରିସ୍ ପ୍ରଭୃତି ୟୁରୋପ ଏବଂ ଆମେରିକାର ସହରମାନଙ୍କ ସହିତ ଆମ ଦେଶର ବମ୍ବେ, କଲିକତା, ଦିଲ୍ଲୀ, ମାନ୍ଦ୍ରାଜ ପ୍ରଭୃତି ବଡ଼ ବଡ଼ ସହରମାନଙ୍କରେ ଅପରାଧୀ ଓ ସମାଜ ବିରୋଧୀ ଲୋକଙ୍କର ସ୍ୱତନ୍ତ୍ର ଗୋଷ୍ଠୀ ଅଛି । ଚୋରି ଡକାୟତି ଏବଂ ହତ୍ୟାକାଣ୍ଡ ପାଇଁ ଅଭିନବ କୌଶଳ ଓ ଅଭିନବ ଅସ୍ତ୍ରଶସ୍ତ୍ର ଉଦ୍ଭାବିତ ହେଉଛି । ଟଙ୍କା ଖର୍ଚ୍ଚ କଲେ ସହରର ଯେକୌଣସି ଅସାମାଜିକ ଦଳକୁ ଯେ କୌଣସି ସ୍ଥାନରେ ବିଭିନ୍ନ ପ୍ରକାର ଅପରାଧ କାର୍ଯ୍ୟରେ ଲଗାଇହେବ । ସିନେମା ପ୍ରଭୃତିରେ ଅପରାଧ କୌଶଳ ପ୍ରଦର୍ଶନ ଦ୍ୱାରା ଅଳ୍ପବୟସରୁ ପିଲାମାନେ ଏବଂ ଯୁବକ ଯୁବତୀମାନେ ଅପରାଧ କାର୍ଯ୍ୟକୁ ସାହସିକ କାର୍ଯ୍ୟ ବୋଲି ଭାବୁଛନ୍ତି ଏବଂ ନୈତିକ ମୂଲ୍ୟବୋଧ ନଥିବାରୁ ସେ ସବୁ କାର୍ଯ୍ୟ କରିବାକୁ ଉତ୍ସାହିତ ହେଉଛନ୍ତି । ପ୍ରଚଳିତ ରାଜନୈତିକ ପରିସ୍ଥିତି ସେଥିପାଇଁ ସୁବିଧା ଓ ଇନ୍ଧନ ଯୋଗାଉଛି । ସୁତରାଂ ଅପରାଧର ମାତ୍ରା, ପ୍ରକାର ଓ କୌଶଳ ଏ ଦେଶରେ ବ୍ରିଟିଶଶାସନ ପ୍ରଚଳନର ପୂର୍ବ ପରିସ୍ଥିତି ଠାରୁ ଅଧିକ ହୋଇଛି ।

ଆମ ପିଲାକାଳ ବିଂଶ ଶତାବ୍ଦୀର ତୃତୀୟ ଦଶନ୍ଧି ପର୍ଯ୍ୟନ୍ତ ଓଡ଼ିଶାର ସହର ଓ ଗ୍ରାମାଞ୍ଚଳରେ ଯୁବକମାନଙ୍କର ଶାରୀରିକ ବଳ ଓ ସାହସ ବର୍ତ୍ତମାନ ଅପେକ୍ଷା କମ୍ ଥିଲା । ସେମାନଙ୍କ ପରିବାରର ଗୁରୁଜନମାନଙ୍କର ସେମାନଙ୍କ ଉପରେ କର୍ତ୍ତୃତ୍ୱ ଥିଲା ଏବଂ ସେମାନଙ୍କର ଧର୍ମଭୟ ଏବଂ ସରକାରଙ୍କ ପ୍ରତି ଭୟ ଥିଲା । ଗୁରୁଜନମାନଙ୍କୁ ଅମାନ୍ୟ କରି ଆଇନ୍ କାନୁନ୍ ଭାଙ୍ଗି ଅପରାଧ କାର୍ଯ୍ୟ କରିବାକୁ ସେମାନେ ଭୟ କରୁଥିଲେ । ଡକାୟତି ଓ ହତ୍ୟାକାଣ୍ଡ ପ୍ରଭୃତି କରିବାକୁ

ସୁବିଧା ଓ ସୁଯୋଗ କମ୍ ଥିଲା । ଆଇନ୍ଶୃଙ୍ଖଳା ଦୃଢ଼ ଥିଲା । ବିଂଶ ଶତାବ୍ଦୀର ଏବଂ ଆମ ଜୀବନର ଶେଷ ଭାଗରେ ସେ ଅବସ୍ଥା ସମ୍ପୂର୍ଣ୍ଣ ବଦଳିଯାଇଛି । ଯୁବକମାନଙ୍କର ଶାରୀରିକ ବଳ, ସାହସ ଓ ବୈଷୟିକ ଜ୍ଞାନ ପୂର୍ବ ଅପେକ୍ଷା ଅଧିକ, ମାତ୍ର ନୈତିକ ମୂଲ୍ୟବୋଧ, ଶୃଙ୍ଖଳା ଓ ଧର୍ମଭୟ କମ୍ । ଶିକ୍ଷାନୁଷ୍ଠାନମାନଙ୍କରେ ଶିକ୍ଷାଲାଭ କରୁଥିବା ଅଧିକାଂଶ ଯୁବକଙ୍କର ମଧ୍ୟ ବିନୟ, ଶୃଙ୍ଖଳା ଓ ଶିଷ୍ଟ ବ୍ୟବହାର ନାହିଁ । ଅନ୍ୟ ଦିଗରେ ଆଇନ ଶୃଙ୍ଖଳା ଭଙ୍ଗ ଏବଂ ବିଭିନ୍ନ ପ୍ରକାର ଅସାମାଜିକ କାର୍ଯ୍ୟ କରିବା ପାଇଁ ସୁବିଧା ଓ କ୍ଷେତ୍ର ବିସ୍ତାରିତ । ଫଳରେ ନୂତନ ସମାଜରେ ଆର୍ଥିକ ଓ ବୈଷୟିକ ପ୍ରଗତି ସହିତ ସାମାଜିକ ଅବନତି ପ୍ରଧାନ ସମସ୍ୟା ହୋଇଛି ।

# ଦିଗନ୍ତରୁ ପଶ୍ଚାତ୍ ଦୃଷ୍ଟି

## (୧୫)

ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିରୁ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ପ୍ରାୟ ଅଶୀବର୍ଷ ମୁଁ ଓଡ଼ିଶାରେ ଜୀବନଯାପନ କରିଛି । ଏହି ଅଶୀବର୍ଷ ମଧ୍ୟରେ ଆମ ସମାଜର ଲୋକମାନେ କିପରି ଚଳିଛନ୍ତି, ଶତାବ୍ଦୀର ଆରମ୍ଭରେ ସେମାନଙ୍କର ସାମାଜିକ ଓ ଅର୍ଥନୈତିକ ଅବସ୍ଥା କିପରି ଥିଲା ଏବଂ ଶତାବ୍ଦୀର ଶେଷରେ ସେଥିରେ କିପରି ପରିବର୍ତ୍ତନ ହୋଇଛି, ତାହା ଏ ପୁସ୍ତକରେ ବର୍ଣ୍ଣନା କରିଛି । ଏ ବର୍ଣ୍ଣନା ପରିସଂଖ୍ୟାନ ତଥ୍ୟ ସମ୍ବଳିତ କିମ୍ବା ଐତିହାସିକ ଗବେଷଣାମାନଙ୍କରୁ ସଂଗୃହୀତ ବିଷୟବସ୍ତୁର ବର୍ଣ୍ଣନା ନୁହେଁ । ଏହା ଗୋଟିଏ ସମୟର ଜଣେ ଅନୁଭବୀ ଓ ପ୍ରତ୍ୟକ୍ଷଦର୍ଶୀର ବିବରଣୀ । ମୋର ଅନେକ ପୂର୍ବସୂରି ଏବଂ ସମସାମୟିକ ଲେଖକ ତାଙ୍କ ଜୀବନକାଳର ଏହିପରି ବିବରଣୀ ଲେଖିଛନ୍ତି । ବହୁକାଳ ପୂର୍ବକଥା ଏ ବିଷୟରେ ଲେଖା ହୋଇ ନାହିଁ । କେବଳ ଆମ ସମୟର ସତୁରି ଅଶୀ ବର୍ଷ ପୂର୍ବରୁ ବଞ୍ଚିଥିବା ଲୋକମାନେ ତାଙ୍କ ସମୟର ଯେଉଁ ଇତିହାସ ଲେଖିଛନ୍ତି, ତାକୁ ମୂଳଦୁଆ କରି ଆମ ସମୟରେ ସେଥିରେ ଯେଉଁ ପରିବର୍ତ୍ତନ ମୁଁ ଅନୁଭବ କରିଛି ଓ ଦେଖିଛି, ତାହା ବର୍ଣ୍ଣନା କରିଛି । ମୋ ପରେ ଯେଉଁମାନେ ତାଙ୍କ ଜୀବନକାଳରେ ଓଡ଼ିଶାର ସାମାଜିକ ଓ ଅର୍ଥନୈତିକ ଅବସ୍ଥାର ବିବରଣୀ ଲେଖିବେ, ସେମାନେ ଆମ ସମୟଠାରୁ ତାଙ୍କ ସମୟରେ କ'ଣ ପରିବର୍ତ୍ତନ ହୋଇଛି ଲେଖିବେ । ପୁରୁଷାନୁକ୍ରମେ ଜାତିର ଇତିହାସ ଏହିପରି ଲେଖାହୁଏ । ବ୍ୟକ୍ତିବିଶେଷଙ୍କ ଜୀବନକାଳ ସ୍ୱଳ୍ପ, ଜାତିର ଇତିହାସ ଦୀର୍ଘକାଳ ଗତି କରି ଚାଲିଥାଏ । ବିଭିନ୍ନ ବ୍ୟକ୍ତି ତାଙ୍କ ଜୀବନକାଳର ଅଭିନୟ ସାରି କାଳଗର୍ଭରେ ଲୀନ ହୋଇଯାନ୍ତି । କାଳକୁ କାଳର ଇତିହାସ ଲେଖା ଚାଲିଥାଏ । ଏହାର ଅନ୍ତ ନାହିଁ ।

ଓଡ଼ିଶାର ଭୌଗୋଳିକ ପରିସ୍ଥିତି, ଜଳବାୟୁ, ନଦୀ, ପର୍ବତ, ମାଟି, ପାଣି ଅନୁସାରେ କାଳେ କାଳେ ଲୋକମାନଙ୍କର ଜୀବିକା ଓ ଜୀବନଯାପନ ପ୍ରଣାଳୀ ନିର୍ଦ୍ଧାରିତ ହୋଇଛି । ପ୍ରକୃତିକ ବିପର୍ଯ୍ୟୟ ଏବଂ ବିଭିନ୍ନ ପ୍ରକାର ସାମାଜିକ ଓ ରାଜନୈତିକ ସଂଗଠନ ମଧ୍ୟରେ ହଜାର ହଜାର ବର୍ଷ ହେଲା ଲୋକମାନେ

ଏ ରାଜ୍ୟରେ ବାସ କରିଆସିଛନ୍ତି । ଇତିହାସରୁ ଜଣାଯାଏ ଯେ, ହଜାର ବର୍ଷ ପୂର୍ବେ ଏ ରାଜ୍ୟର ଉପକୂଳବର୍ତ୍ତୀ ଅଞ୍ଚଳଗୁଡ଼ିକ ସମୃଦ୍ଧ ଥିଲା । ଏ ରାଜ୍ୟରୁ ବଣିକମାନେ ସମୁଦ୍ରପଥରେ ନୌକା ଚଳାଇ ଦକ୍ଷିଣପୂର୍ବ ଏସିଆର ଅନ୍ୟ ଦେଶ ଓ ଦ୍ୱୀପପୁଞ୍ଜମାନଙ୍କରେ ବାଣିଜ୍ୟ କରୁଥିଲେ ଏବଂ ବସତି ସ୍ଥାପନ କରିଥିଲେ । ଓଡ଼ିଶାରେ ସେକାଳର ବିରାଟ ମନ୍ଦିର ଓ ନଗରବନ୍ଦରସବୁ ତାର ନିଦର୍ଶନ ସ୍ୱରୂପ ଆଜିଯାଏ ରହିଛି । ମାତ୍ର ବିଗତ ପାଞ୍ଚଶହ ବର୍ଷ ହେଲା ଲୋକମାନେ ପରାଧୀନ ହୋଇ ପୁରାତନ ସମୃଦ୍ଧି ପନ୍ଥା ହରାଇ, ଦାରିଦ୍ର୍ୟ, ଅଜ୍ଞତା ଓ କୁସଂସ୍କାର ମଧ୍ୟରେ କାଳ କାଟିଛନ୍ତି । ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିରେ ମୋର ଜନ୍ମ ସମୟରେ ଆମ ଅଞ୍ଚଳ ସମେତ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଲୋକମାନଙ୍କ ମଧ୍ୟରେ ଉତ୍କଟ ଦାରିଦ୍ର୍ୟ, ପାରମ୍ପରିକ ସାମାଜିକ ସଂଗଠନ, କୁସଂସ୍କାର, ନିରକ୍ଷରତା ଓ ଅଜ୍ଞତା ଊନବିଂଶ ଶତାବ୍ଦୀ ପରି ରହିଥିଲା ସମସ୍ତ ଭାରତବର୍ଷରେ ବ୍ରିଟିଶ ଶାସନ ସୁଦୃଢ଼ ଓ ସୁପ୍ରତିଷ୍ଠିତ ଥିଲା । ଓଡ଼ିଶାପ୍ରଦେଶ ବୋଲି ଗୋଟିଏ ପ୍ରଦେଶ ନଥିଲା । ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରଜାମାନେ ରାଜାମାନଙ୍କର ମନମୁଖୀ ଶାସନାଧୀନ ଥିଲେ । ବ୍ରିଟିଶ ଶାସିତ ଅଞ୍ଚଳରେ ଜମିଦାର ଓ ମହାଜନମାନେ ମଧ୍ୟ ସାଧାରଣ ଲୋକମାନଙ୍କୁ ଶୋଷଣ କରୁଥିଲେ । ଆର୍ଥିକ ଓ ସାମାଜିକ ଅବସ୍ଥା, କୃଷି, ଶିଳ୍ପ, ବାଣିଜ୍ୟ, ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ସୁବିଧା ପ୍ରଭୃତି ସବୁ ବିଷୟରେ ଏ ରାଜ୍ୟ ଅନଗ୍ରସର ଓ ସ୍ଥାଣୁ ଥିଲା । ମନେ ହେଉଥିଲା ଯେପରି ବ୍ରିଟିଶ ଶାସନ ଏବଂ ପ୍ରଗତିହୀନ ଆର୍ଥିକ ଓ ସାମାଜିକ ଅବସ୍ଥା ଚିରକାଳ ରହିଯିବ । ମାତ୍ର ତିରିଶ ବର୍ଷ ମଧ୍ୟରେ ସବୁ ଭୁଷୁଡ଼ିପଡ଼ିଲା । ବ୍ରିଟିଶ ଶାସନ ଲୋପ ପାଇଲା, ସେଥି ସଙ୍ଗେ ସଙ୍ଗେ ରାଜା, ଜମିଦାର ଲୋପ ପାଇଲେ, ମହାଜନମାନଙ୍କର କର୍ତ୍ତୃତ୍ୱ ରହିଲା ନାହିଁ ଏବଂ ପାରମ୍ପରିକ ସମାଜ ସଙ୍ଗଠନ ଓ ନେତୃତ୍ୱରେ ପରିବର୍ତ୍ତନ ଆରମ୍ଭ ହେଲା । ପରବର୍ତ୍ତୀ ପଚିଶ ବର୍ଷରେ ସ୍ୱାଧୀନ ଭାରତରେ ଭିନ୍ନ ପ୍ରକାର ଶାସନ, ଆର୍ଥିକ ପ୍ରଗତି, ଶିକ୍ଷା ପ୍ରସାର, ସମାଜ ସଂସ୍କାର ଓ ସାମାଜିକ ପରିସ୍ଥିତି ପ୍ରଚଳିତ ହେଲା । ଏ ଶତାବ୍ଦୀର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସାମାଜିକ ଓ ଆର୍ଥିକ ପରିବର୍ତ୍ତନ କିଛି କମ୍ ହୋଇ ନାହିଁ । ଆମ କାଳର ଲୋକମାନେ ଏ ବୈପ୍ଳବିକ ପରିବର୍ତ୍ତନର ପ୍ରତ୍ୟକ୍ଷଦର୍ଶୀ ଓ ଅନୁଭବୀ । ଶତାବ୍ଦୀ ଓ ମୋ ଜୀବନକାଳର ଶେଷରେ ମୁଁ ପଛକୁ ଚାହୁଁଛି ଏବଂ ସେ ପରିବର୍ତ୍ତନ ବିଷୟରେ ସ୍ମୃତିଚାରଣ କରୁଛି ।

## ନୂତନ ଓଡ଼ିଶାରାଜ୍ୟ ଗଠନ

୧୯୩୬ ମସିହା ଅପ୍ରେଲମାସ ପହିଲାରେ ଓଡ଼ିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେଲା । ସେ ବର୍ଷ ଆମେ ପାଟନା ବିଶ୍ୱବିଦ୍ୟାଳୟର ମାଟ୍ରିକୁଲେସନ୍ ପରୀକ୍ଷା ପାସ୍

କରିଥିଲୁ । ଓଡ଼ିଶାରେ ସେତେବେଳେ କୌଣସି ବିଶ୍ୱବିଦ୍ୟାଳୟ ନଥିଲା । ଓଡ଼ିଶା ଡିଭିଜନର ସବୁ ସ୍କୁଲ କଲେଜ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା । ଓଡ଼ିଶା ଡିଭିଜନ ୧୯୧୨ ମସିହା ପର୍ଯ୍ୟନ୍ତ ବଙ୍ଗ ପ୍ରେସିଡେନ୍ସି ଅଧୀନରେ ଥିଲା । ୧୯୧୨ ମସିହାରେ ବିହାର ଓଡ଼ିଶା ପ୍ରଦେଶ ଗଠନ କରାଯାଇ ଓଡ଼ିଶା ଡିଭିଜନ ତାହାର ଗୋଟିଏ ଅଙ୍ଗ ହେଲା । ୧୯୦୫ ମସିହା ପର୍ଯ୍ୟନ୍ତ ସମ୍ବଲପୁର ଜିଲ୍ଲା ମଧ୍ୟପ୍ରଦେଶରେ ଥିଲା । ସେ ବର୍ଷ ତାହା ଓଡ଼ିଶା ଡିଭିଜନରେ ମିଶିଥିଲା । ଗଞ୍ଜାମ ଓ କୋରାପୁଟ ଜିଲ୍ଲା ୧୯୩୬ ମସିହା ପର୍ଯ୍ୟନ୍ତ ମାନ୍ଦ୍ରାଜ ପ୍ରେସିଡେନ୍ସି ଅଧୀନରେ ଥିଲା । ୧୯୩୬ ମସିହାରେ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ଓ କୋରାପୁଟ, ଏହି ଛଅଗୋଟି ଜିଲ୍ଲାକୁ ନେଇ ଓଡ଼ିଶା ପ୍ରଦେଶ ଗଠିତ ହେଲା । ପରେ ଅନୁଗୁଳ ଓ ଫୁଲବାଣୀ ମିଶି ଗୋଟିଏ ସ୍ୱତନ୍ତ୍ର ଜିଲ୍ଲା ହୋଇଥିଲା ।

ସ୍ୱତନ୍ତ୍ର ପ୍ରଦେଶ ହେବା ପୂର୍ବରୁ ଓଡ଼ିଆମାନେ ଉତ୍ତରରେ ପ୍ରଥମେ ବଙ୍ଗ ପ୍ରେସିଡେନ୍ସିରେ, ପରେ ବିହାର-ଓଡ଼ିଶା ପ୍ରଦେଶରେ, ଦକ୍ଷିଣରେ ମାନ୍ଦ୍ରାଜ ପ୍ରେସିଡେନ୍ସିରେ, ପଶ୍ଚିମରେ ମଧ୍ୟପ୍ରଦେଶରେ ଏବଂ ରାଜ୍ୟର ମଧ୍ୟଭାଗରେ ୨୬ ଗଡ଼ଜାତ ରାଜ୍ୟରେ ବିକ୍ଷିପ୍ତ ହୋଇ ରହୁଥିଲେ । ବଙ୍ଗ ପ୍ରେସିଡେନ୍ସିରେ ଥିଲାବେଳେ ଓଡ଼ିଆ ଡିଭିଜନର ସମସ୍ତ ଶାସନ ବିଭାଗର ଚାକିରି ବଙ୍ଗାଳୀମାନେ ପାଉଥିଲେ । ଓଡ଼ିଆମାନେ ଦରିଦ୍ର ଓ ଅଶିକ୍ଷିତ ଥିବାରୁ ଗାଁମାନଙ୍କରେ କୃଷି ମୂଲିଆ ଏବଂ ସହରମାନଙ୍କରେ ବାବୁମାନଙ୍କର ଚାକର ପୂଝାରୀ ରୂପେ କାର୍ଯ୍ୟକରି ଦୀନହୀନ ଜୀବନ ଯାପନ କରୁଥିଲେ । ଏକସମୟରେ ବଙ୍ଗାଳୀମାନେ ଓଡ଼ିଆ ଭାଷାକୁ ଲୋପ କରିଦେବାକୁ ଚେଷ୍ଟା କରିଥିଲେ । ସେହିପରି ମାନ୍ଦ୍ରାଜ ପ୍ରେସିଡେନ୍ସି ଅଧୀନରେ ଥିବା ଗଞ୍ଜାମ ଓ କୋରାପୁଟ ଜିଲ୍ଲାମାନଙ୍କରେ ପ୍ରାୟ ସମସ୍ତ ଚାକିରି ତେଲେଙ୍ଗାମାନେ ପାଉଥିଲେ । ୧୮୦୫ ମସିହା ପୂର୍ବରୁ ସମ୍ବଲପୁର ଜିଲ୍ଲା ଓ ସେ ଅଞ୍ଚଳର ଗଡ଼ଜାତମାନଙ୍କରେ ପ୍ରାୟ ସମସ୍ତ ଚାକିରି ମରହଟ୍ଟା ଓ ହିନ୍ଦୁସ୍ଥାନୀ-ମାନେ ପାଉଥିଲେ । ହିନ୍ଦୁସ୍ଥାନୀ ଓ ମରହଟ୍ଟାମାନେ ଓଡ଼ିଆ ଜାତୀୟତା ଏବଂ ଓଡ଼ିଆ ଭାଷାକୁ ସମ୍ବଲପୁର ଜିଲ୍ଲାରୁ ଲୋପ କରିବାକୁ ଚାହୁଁଥିଲେ ଏବଂ କେତେକ ବର୍ଷ କୋର୍ଟ କଚେରିରୁ ଓଡ଼ିଆଭାଷା ହଟାଇ ଦିଆଯାଇଥିଲା । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେବା ପୂର୍ବରୁ ଓଡ଼ିଆମାନଙ୍କର କୌଣସି ପ୍ରଶାସନିକ ସ୍ଥିତି ନଥିଲା । ବିକ୍ଷିପ୍ତ ଭାବରେ ରହୁଥିବା ସବୁ ପ୍ରଦେଶରେ ସେମାନେ ସଂଖ୍ୟାଲଘୁ ସମ୍ପ୍ରଦାୟ ଥିଲେ । ସେ ପ୍ରଦେଶମାନଙ୍କର ଶାସନକଳ ଓ ଚାକିରିବାକିରିରେ ସେମାନଙ୍କର କୌଣସି ସ୍ଥାନ ନଥିଲା ।

ମୋ ଜନ୍ମ ପୂର୍ବରୁ, ୧୯୦୩ ମସିହାରୁ ଉତ୍କଳ ସମ୍ମିଳନୀ ଆନୁକୂଲ୍ୟରେ ସମସ୍ତ ଓଡ଼ିଆଭାଷୀ ଲୋକଙ୍କୁ ନେଇ ଗୋଟିଏ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ

କରିବା ପାଇଁ ଆନ୍ଦୋଳନ ଆରମ୍ଭ ହୋଇଥିଲା । ସେହିଦିନଠାରୁ ୧୯୩୬ ମସିହା ପର୍ଯ୍ୟନ୍ତ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓଡ଼ିଆମାନଙ୍କର ମୁଖ୍ୟ ସମସ୍ୟା ଥିଲା । ବହୁ ଆନ୍ଦୋଳନ ଓ ଉଦ୍ୟମ ପରେ ୧୯୩୬ ମସିହାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ବିଂଶ ଶତାବ୍ଦୀର ଓଡ଼ିଶା ଇତିହାସରେ ସର୍ବପ୍ରଧାନ ଘଟଣା । ସ୍ୱତନ୍ତ୍ର ପ୍ରଦେଶ ଗଠନ ବେଳେ ବହୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବଙ୍ଗଳା ଓ ବିହାର ପ୍ରଦେଶରେ ରହିଗଲା । ସେସବୁ ଅଞ୍ଚଳ ଓଡ଼ିଶା ରାଜ୍ୟରେ ମିଶିବା ପାଇଁ ଓଡ଼ିଶାବାସୀ କ୍ଷୀଣ ସ୍ୱରରେ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଦାବି କରୁଛନ୍ତି । ଆଜିସୁଦ୍ଧା ସେ ଦାବି ଅରଣ୍ୟରୋଦନ ପ୍ରାୟ ହୋଇ ରହିଛି ।

୧୯୩୬ ମସିହାରେ ସ୍ୱତନ୍ତ୍ର ପ୍ରଦେଶ ଗଠନ କରାଯିବା ବେଳକୁ ଓଡ଼ିଶାର ମଧ୍ୟଭାଗରେ ଥିବା ୨୬ଟି ଗଡ଼ଜାତ ରାଜ୍ୟରେ ବାସ କରୁଥିବା ଓଡ଼ିଆମାନେ ଓଡ଼ିଶା ପ୍ରଦେଶରେ ମିଶି ନଥିଲେ । ୧୯୩୦ ମସିହା ପରେ ବିଭିନ୍ନ ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରଜାମଣ୍ଡଳ ଆନ୍ଦୋଳନ ଆରମ୍ଭ ହୋଇଥିଲା । ୧୯୪୭ ମସିହାରେ ଭାରତ ସ୍ୱାଧୀନ ହେଲାପରେ ଓଡ଼ିଶାର ନେତାମାନେ ୨୬ଟିଯାକ ଗଡ଼ଜାତ ରାଜ୍ୟକୁ ଓଡ଼ିଶା ପ୍ରଦେଶରେ ମିଶାଇବାକୁ ଉଦ୍ୟମ କଲେ । ଭାରତବର୍ଷର କେନ୍ଦ୍ର ସରକାର ତାହା ସମର୍ଥନ କଲେ । ୧୯୪୮ ମସିହା ଜାନୁଆରୀ ମାସ ପହିଲାଠାରୁ ମୟୂରଭଞ୍ଜ ରାଜ୍ୟ ବ୍ୟତୀତ ୨୫ଟି ଗଡ଼ଜାତରାଜ୍ୟ ଓଡ଼ିଶା ପ୍ରଦେଶ ସହ ମିଶିଗଲା । ପରବର୍ତ୍ତୀ ମୟୂରଭଞ୍ଜ ରାଜ୍ୟ ଓଡ଼ିଶାରେ ମିଶିଲା । ଏ ମିଶ୍ରଣ ପ୍ରକ୍ରିୟାରେ ବିଭିନ୍ନ ଲୋକଙ୍କ ଚକ୍ରାନ୍ତ ହେତୁ ଓଡ଼ିଶାରାଜ୍ୟ ସରେଇକଳା ଓ ଖରସୁଆଁ ବିହାର ରାଜ୍ୟରେ ରହିଗଲା । ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ସେ ଦୁଇଟି ରାଜ୍ୟ ଓଡ଼ିଶାରେ ମିଶାଇବା ପାଇଁ ମଧ୍ୟ କ୍ଷୀଣ ଦାବି ହେଉଛି, କିନ୍ତୁ ତାହା ଫଳେମାତ୍ର ଫଳପ୍ରଦ ହୋଇ ନାହିଁ । ସ୍ୱତନ୍ତ୍ର ପ୍ରଦେଶ ଗଠନ ପରେ ପ୍ରଦେଶର ରାଜଧାନୀ କେଉଁଠାରେ ହେବ, ସେଥିପାଇଁ କେତେବର୍ଷ ବାଦାନୁବାଦ ହେଲା । ଶେଷରେ ରାଜଧାନୀ ଭୁବନେଶ୍ୱରରେ ହେବାପାଇଁ ସ୍ଥିର ହେଲା ଏବଂ ୧୯୪୭ ମସିହା ଅପ୍ରେଲ ମାସରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ନେହରୁ ଭୁବନେଶ୍ୱରରେ ଭିତ୍ତିପ୍ରସ୍ତର ସ୍ଥାପନ କଲେ । ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ୧୯୪୭ ମସିହାରେ ଭାରତର ସ୍ୱାଧୀନତା ଲାଭ, ୧୯୪୮ ମସିହାରେ ଓଡ଼ିଶା ପ୍ରଦେଶରେ ଗଡ଼ଜାତ ରାଜ୍ୟମାନଙ୍କର ମିଶ୍ରଣ ଏବଂ ଭୁବନେଶ୍ୱରରେ ଓଡ଼ିଶା ରାଜ୍ୟର ରାଜଧାନୀ ସ୍ଥାପନ ବିଂଶ ଶତାବ୍ଦୀର ଓଡ଼ିଶା ଇତିହାସରେ ୪ଟି ଆମ ଜୀବନକାଳରେ ସର୍ବପ୍ରଧାନ ଘଟଣାମାନ ବୋଲି ମୁଁ ମନେକରେ ।

## ବଢ଼ି, ମରୁଡ଼ି, ବାତ୍ୟା ଓ ଦୁର୍ଭିକ୍ଷ :

୧୯୪୩ ମସିହା ଅଗଷ୍ଟ ମାସରେ ବଙ୍ଗଳା ଦୁର୍ଭିକ୍ଷ ଏବଂ ଓଡ଼ିଶାର କଟକ, ପୁରୀ, ବାଲେଶ୍ୱର ଜିଲ୍ଲାମାନଙ୍କରେ ଉତ୍କଟ ଖାଦ୍ୟାଭାବ ସମୟରେ ମୁଁ ପ୍ରଥମେ ଯୋଗାଣ ବିଭାଗରେ ଯାଜପୁର ସବ୍‌ଡ଼ିଭିଜନରେ ଚାକିରି ଆରମ୍ଭ କରିଥିଲି । ଚାକିରିରେ ଯୋଗଦେବା ମାତ୍ରେ ମୋର ପ୍ରଥମ କାର୍ଯ୍ୟ ହୋଇଥିଲା, ତିର ବନ୍ୟା-ପ୍ରପୀଡ଼ିତ ବଞ୍ଚିରପୁର ଓ ବରୀ ଅଞ୍ଚଳରେ ବନ୍ୟାକ୍ଲିଷ୍ଟ ଲୋକମାନଙ୍କ ମଧ୍ୟରେ ଧାନ ଚାଉଳ ବାଣ୍ଟିବା । ଚାକିରିର ପ୍ରଥମରେ ମୁଁ ଏକ ବିସ୍ତୃତ ଅଞ୍ଚଳରେ ବନ୍ୟାର କରାଳ ରୂପ ଏବଂ ବନ୍ୟାକ୍ଲିଷ୍ଟ ଲୋକଙ୍କର ଦୁଃଖ କଷ୍ଟ ଦେଖିଥିଲି ।

ବଢ଼ି, ମରୁଡ଼ି ଓ ଦୁର୍ଭିକ୍ଷ ଓଡ଼ିଶାରେ କିମ୍ବା ଭାରତବର୍ଷର ବିଭିନ୍ନ ରାଜ୍ୟରେ କୌଣସି ସମୟର ଆକସ୍ମିକ ବା ଅସାଧାରଣ ଘଟଣା ନୁହେଁ । ଇତିହାସର ସବୁକାଳେ ମୌସୁମୀ ବାୟୁ ପ୍ରବାହିତ ଏ ଦେଶରେ ଘନ ଘନ ବଢ଼ି, ମରୁଡ଼ି ଓ ଦୁର୍ଭିକ୍ଷ ହେଉଥିଲା । ୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ ଊନବିଂଶ ଶତାବ୍ଦୀର ଓଡ଼ିଶା ଇତିହାସରେ ସର୍ବପ୍ରଧାନ ଘଟଣା । ନ'ଅଙ୍କ ଦୁର୍ଭିକ୍ଷ କେବଳ ଊନବିଂଶ ଶତାବ୍ଦୀରେ ନୁହେଁ, ତାର ପୂର୍ବବର୍ତ୍ତୀ ପ୍ରାୟ ପାଞ୍ଚଶହ ବର୍ଷ ମଧ୍ୟରେ ଗୋଟିଏ ଅତି ଭୟାବହ ଘଟଣା ଥିଲା । ଏହି ଭୟଙ୍କର ଦୁର୍ଭିକ୍ଷରେ ଓଡ଼ିଶା ଡିଭିଜନର କଟକ, ପୁରୀ ଏବଂ ବାଲେଶ୍ୱର ଜିଲ୍ଲାରେ ଦଶ ଲକ୍ଷରୁ ଅଧିକ ଲୋକ କ୍ଷୁଧାରେ ମରିଯାଇଥିଲେ । ନ'ଅଙ୍କ ଦୁର୍ଭିକ୍ଷ ମୋ' ଜେଜେ ବାପାଙ୍କ ଯୁବକ ସମୟର ଘଟଣା । ଦୁର୍ଭିକ୍ଷବେଳେ ସେ ତାଙ୍କର କେତେକ ସାଥୀଙ୍କ ସହ ଆମ ଘରର ଧାନ ଚାଉଳ ଚୋର ଡକାୟତଙ୍କ ହାତରୁ ରକ୍ଷା କରିବା ପାଇଁ ରାତିରେ ବାଣ୍ଡ ବାଡ଼ିଅଡ଼େ ଜଗୁଥିଲେ । ସେ ସମୟର ଭୟାବହ ଘଟଣାମାନ ଓଡ଼ିଶାର ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଆଜିପର୍ଯ୍ୟନ୍ତ ଜନଶ୍ରୁତିରେ ରହିଛି ।

ପୂର୍ବେ ଓଡ଼ିଶାର ବିଭିନ୍ନ ବିସ୍ତୃତ ଅଞ୍ଚଳରେ ପ୍ରାୟ ପ୍ରତି ତିନି ଚାରି ବର୍ଷରେ ଦୁର୍ଭିକ୍ଷ ପଡ଼ୁଥିଲା, ଯଦିଓ ସବୁ ଦୁର୍ଭିକ୍ଷ ନ'ଅଙ୍କ ଦୁର୍ଭିକ୍ଷ ପରି ଭୟାବହ ହେଉ ନ ଥିଲା କିମ୍ବା ଅତି ଅଳ୍ପ ସମୟ ମଧ୍ୟରେ ଏତେ ଲୋକ ମରୁ ନ ଥିଲେ । ସବୁକାଳେ ଖରିଫ୍ ଧାନ ଫସଲ ଲୋକମାନଙ୍କର ଏକମାତ୍ର ବଡ଼ ଫସଲ ଥିଲା । ତାହାରି ଉପରେ ଲୋକମାନେ ପୂର୍ଣ୍ଣ ଭାବରେ ନିର୍ଭର କରୁଥିଲେ । ଜଳସେଚନର ସୁବିଧା ଅଭାବରେ ଖରିଫ୍ ଧାନ ଫସଲ ଦକ୍ଷିଣ ପଶ୍ଚିମ ମୌସୁମୀ ବାୟୁ ଜନିତ ବର୍ଷା ଉପରେ ନିର୍ଭର କରୁଥିଲା । ଅତିବର୍ଷା କିମ୍ବା ଅଳ୍ପ ବର୍ଷାରେ ଧାନ ଫସଲ ନଷ୍ଟ ହୋଇଯାଏ । ବଢ଼ି, ମରୁଡ଼ି, ବାତ୍ୟା ଧାନ ଫସଲର କାଳ । ବଢ଼ିରେ ଧାନ ଫସଲ ପଚି ନଷ୍ଟ ହୋଇଯାଏ, ଜମିରେ ବାଲି ଚଢ଼ିଯାଏ, ଲୋକମାନଙ୍କର

ଘରଦ୍ୱାର ଭାଙ୍ଗିଯାଏ, ଘରେ ଥିବା ଧାନ ଚାଉଳ, ଆସବାବ୍‌ପତ୍ର ନଷ୍ଟ ହୋଇଯାଏ । ସେଥିରେ ବନ୍ୟାକ୍ରାନ୍ତ ଅଞ୍ଚଳର ଲୋକମାନେ ଛିନ୍ନ ଭିନ୍ନ ଓ କାଙ୍ଗାଳ ହୋଇଯାଆନ୍ତି । ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ନଦୀମାନଙ୍କରେ ବନ୍ଧବାନ୍ଧ ନ ଥିବାରୁ ପ୍ରାୟ ପ୍ରତିବର୍ଷ ବଢ଼ି ହେଉଥିଲା । ସରକାରୀ ରେକର୍ଡ଼ରୁ ଜଣାଯାଏ ଯେ, ୧୮୦୩ ମସିହାରୁ ୧୮୬୩ ମସିହା, ଷାଠିଏ ବର୍ଷ ମଧ୍ୟରେ ୧୩ ଥର ବଡ଼ ବଢ଼ି ହୋଇଥିଲା ଏବଂ ୧୮୭୦ ମସିହାରୁ ୧୯୦୦ ମସିହା ମଧ୍ୟରେ ୧୫ ଥର ବଡ଼ ବଢ଼ି ହୋଇଥିଲା ।

ମରୁଡ଼ିରେ ମଧ୍ୟ ବ୍ୟାପକ ଅଞ୍ଚଳରେ ଫସଲ ନଷ୍ଟ ହେଉଥିଲା । ରାଜ୍ୟର ସବୁ ଜିଲ୍ଲାରେ ପ୍ରତି ତିନି ଚାରି ବର୍ଷରେ ମରୁଡ଼ି ହୁଏ । ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ମଧ୍ୟ ଦକ୍ଷିଣ-ପଶ୍ଚିମ ମୌସୁମୀ ବାୟୁ ଶେଷରେ, ମହାଳୟା ଅମାବାସ୍ୟାଠାରୁ ଦୀପାବଳୀ ଅମାବାସ୍ୟା ମଧ୍ୟରେ ପ୍ରତି ଆଠ ଦଶ ବର୍ଷରେ ବଡ଼ ବାତ୍ୟା ହୁଏ । ବଢ଼ି, ମରୁଡ଼ି କିମ୍ବା ବାତ୍ୟାରେ ଫସଲ ନଷ୍ଟ ହୋଇଗଲେ ଖାଦ୍ୟାଭାବ ଓ ଦୁର୍ଭିକ୍ଷ ପଡ଼େ । ୧୮୦୩ ମସିହାରୁ ୧୮୬୩ ମସିହା ମଧ୍ୟରେ ଓଡ଼ିଶାରେ ୧୩ ଥର ଦୁର୍ଭିକ୍ଷ ହୋଇଥିଲା । ୧୮୬୬ ମସିହାର ନ'ଅଙ୍କ ଦୁର୍ଭିକ୍ଷ ସବୁଠାରୁ ବଡ଼ ଦୁର୍ଭିକ୍ଷ ହୋଇଥିବାରୁ ତାହା ଆଜିଯାଏ ଜନମାନସରେ ଅଛି । ନ'ଅଙ୍କ ଦୁର୍ଭିକ୍ଷ ପରେ ସରକାରଙ୍କର ସାବଧାନତା ଓ ଦୁର୍ଭିକ୍ଷ ନିରାକରଣ ବ୍ୟବସ୍ଥା ସତ୍ତ୍ୱେ, ୧୮୭୦ ଠାରୁ ୧୯୦୦ ମସିହା ପର୍ଯ୍ୟନ୍ତ ୩୦ ବର୍ଷରେ ୧୧ ଥର ଖାଦ୍ୟାଭାବ ହୋଇଥିଲା । ସେଥିମଧ୍ୟରୁ ତିନିଥର ଦୁର୍ଭିକ୍ଷ ବଡ଼ ଆକାରର ଥିଲା ।

ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ମଧ୍ୟ ବିଭିନ୍ନ ଅଞ୍ଚଳରେ ଥରକୁଥର ଦୁର୍ଭିକ୍ଷ ହେଉଥିଲା । ୧୯୧୯/୨୦ ମସିହାର ଉତ୍ତର ଅଞ୍ଚଳର ଭୟାବହ ଦୁର୍ଭିକ୍ଷ କଥା ନୀଳକଣ୍ଠ ଦାସ ତାଙ୍କ ଆତ୍ମଜୀବନୀରେ ବର୍ଣ୍ଣନା କରିଛନ୍ତି । ସେ ଅଞ୍ଚଳର ଦୁର୍ଭିକ୍ଷ-ପ୍ରପୀଡ଼ିତ ଲୋକମାନଙ୍କର କରୁଣ କାହାଣୀ ଗୋପବନ୍ଧୁବାବୁ ବିହାର ଓଡ଼ିଶା କାଉନ୍‌ସିଲ୍‌ରେ ଅତି ଭାବବିହ୍ୱଳ ଭାବରେ ବର୍ଣ୍ଣନା କରିଥିଲେ । ତାହା ଫଳରେ ବିହାର ଓଡ଼ିଶାର ଲାଟସାହେବ ନିଜେ ଘଟଣା ଦେଖିବାକୁ ସେ ଅଞ୍ଚଳକୁ ଆସିଥିଲେ । ୧୯୦୦ ମସିହାରେ ବଲାଙ୍ଗୀର ଅଞ୍ଚଳରେ ମରୁଡ଼ିଜନିତ କରାଳ ଦୁର୍ଭିକ୍ଷ କଥା ଭରତ ନାୟକ ତାଙ୍କ "ମୋର ପୂର୍ବ ଅନୁଭୂତିର କଥା" ବହିରେ ବିଶଦଭାବରେ ବର୍ଣ୍ଣନା କରିଛନ୍ତି । କଳାହାଣ୍ଡି ଏବଂ ବଲାଙ୍ଗୀର ଅଞ୍ଚଳରେ ମରୁଡ଼ି ହେତୁ ଘନ ଘନ ଖାଦ୍ୟାଭାବ ଏବଂ ଦୁର୍ଭିକ୍ଷ ବିଂଶ ଶତାବ୍ଦୀର ଶେଷପର୍ଯ୍ୟନ୍ତ ଲାଗିରହିଛି । ୧୯୬୬ ମସିହାରେ କଳାହାଣ୍ଡି ଦୁର୍ଭିକ୍ଷ-ପ୍ରପୀଡ଼ିତ ଅସ୍ଥିକଙ୍କାଳସାର ଲୋକଙ୍କର ଚିତ୍ର ପୃଥିବୀର ବିଭିନ୍ନ ଦେଶର ପତ୍ର-ପତ୍ରିକା ଏବଂ ଦୂରଦର୍ଶନରେ

ପ୍ରସ୍ତୁତ ହୋଇଥିଲା । ସେ ବର୍ଷ ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ଲୋକମାନଙ୍କର ଅବସ୍ଥା ସ୍ୱଚକ୍ଷୁରେ ଦେଖିବା ପାଇଁ କଳାହାଣ୍ଡି ଆସିଥିଲେ । ପୁନର୍ବାର ୧୯୮୫/୮୬ ମସିହାରେ କଳାହାଣ୍ଡିରେ ମରୁଡ଼ି ଜନିତ ଖାଦ୍ୟାଭାବ ଯୋଗୁଁ ବହୁଲୋକ ଗଛ ପତ୍ର, କନ୍ଦା, ମୂଳ ପ୍ରଭୃତି ଖାଇଲେ ଏବଂ ଅନାହାରରେ ଅନେକ ଲୋକ ମଲେ । ସେତେବେଳର ପ୍ରଧାନମନ୍ତ୍ରୀ ରାଜୀବ ଗାନ୍ଧି ଲୋକଙ୍କ ଅବସ୍ଥା ଦେଖିବା ପାଇଁ କଳାହାଣ୍ଡି ଆସିଥିଲେ । ଆଦିବାସୀ ଅଞ୍ଚଳର ଆର୍ଥିକ ଅବସ୍ଥା ସୁଧାରିବା ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ହୋଇଥିଲା । ତଥାପି ସେଠାରେ ବରାବର ଅନାହାର ମୃତ୍ୟୁ ଘଟିବାରୁ ୧୯୮୯ ମସିହାରେ ଓଡ଼ିଶା ବିଧାନସଭାରେ ହଟ୍ଟଗୋଳ ହୋଇଥିଲା ଏବଂ ଲୋକମାନଙ୍କର ପ୍ରକୃତ ଅବସ୍ଥା ଅନୁସନ୍ଧାନ କରିବାକୁ ଗୋଟିଏ ଗୃହ କମିଟି ନିଯୁକ୍ତ ହୋଇଥିଲା । ସେହି ସମୟରେ ସେଠାକାର ଲୋକମାନଙ୍କର ଦାରିଦ୍ର୍ୟ ଏବଂ ଖାଦ୍ୟାଭାବ ଅନୁସନ୍ଧାନ ପାଇଁ କେତେକ ଲୋକ ସୁପ୍ରିମ୍ କୋର୍ଟରେ ଆବେଦନ କରିଥିଲେ । ସୁପ୍ରିମ୍‌କୋର୍ଟ ଏହି ଅନୁସନ୍ଧାନ କରିବାକୁ ଜଣେ ଜିଲ୍ଲା ଜଜ୍‌ଙ୍କୁ ନିଯୁକ୍ତ କରିଥିଲେ । ତାଙ୍କ ରିପୋର୍ଟ ୧୯୯୧ ମସିହାରେ ବାହାରିଲା । ସେଥିରେ ଲୋକମାନଙ୍କର ଦାରିଦ୍ର୍ୟ, ଅନାହାର ଓ ସେମାନଙ୍କ ସାହାଯ୍ୟ ପାଇଁ ଗଠିତ ସଙ୍ଗଠନମାନଙ୍କର ଅବ୍ୟବସ୍ଥା ବିଶଦ ଭାବରେ ବର୍ଣ୍ଣିତ ହୋଇଥିଲା । ୧୯୯୬ ମସିହାରେ ଓଡ଼ିଶା ହାଇକୋର୍ଟ ସେ ତଥ୍ୟ ଠିକ୍ ବୋଲି ଗ୍ରହଣ କରି ଅନାହାରରେ ମରିଥିବା ଲୋକମାନଙ୍କର ପରିବାର-ମାନଙ୍କୁ କ୍ଷତିପୂରଣ ଦେବାପାଇଁ ଓଡ଼ିଶା ସରକାରଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ।

ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ବଢ଼ିର ପ୍ରକୋପ କମାଇବା ପାଇଁ ଏବଂ ସମ୍ବଲପୁର ଜିଲ୍ଲାରେ ଜଳସେଚନର ସୁବିଧା କରିବା ପାଇଁ ୧୯୪୮ ମସିହାରୁ ୧୯୫୫ ମସିହା ମଧ୍ୟରେ ହୀରାକୁଦବନ୍ଧ ନିର୍ମାଣ ହେଲାବେଳେ ୧୯୪୮ରୁ ୧୯୫୬ ମସିହା ପର୍ଯ୍ୟନ୍ତ ମୁଁ ସମ୍ବଲପୁର କଲେଜରେ ଚାକିରି କରୁଥିଲି । ବନ୍ଧ ନିର୍ମାଣ ପୂର୍ବରୁ ମହାନଦୀର ଶଯ୍ୟା ମୁଁ ଦେଖିଛି ଏବଂ ବନ୍ଧ ହେବାପାଇଁ ଆମର ବନ୍ଧୁ ଇଞ୍ଜିନିଅରମାନେ ସର୍ଭେ କରିବା ସମୟରେ ଆମେ କଲେଜର ଅଧ୍ୟାପକ ଓ ଶିକ୍ଷକ କେତେଥର ହୀରାକୁଦଠାରେ ବଣଭୋଜି କରିଥିଲୁ । ହୀରାକୁଦବନ୍ଧ ହେବା ସତ୍ତ୍ୱେ କଟକ ଓ ପୁରୀ ଜିଲ୍ଲାରେ ମହାନଦୀ ଏବଂ ତାର ଶାଖାନଦୀ ମାନଙ୍କରେ ବନ୍ୟା ସମ୍ପୂର୍ଣ୍ଣରୂପେ ବନ୍ଦ ହୋଇଯାଇ ନାହିଁ । ୧୯୫୫ ମସିହାରେ ଦେବୀ ନଦୀ ବନ୍ୟାରେ ଦଳେଇ ଘାଇ ଭାଙ୍ଗି କଟକ ଜିଲ୍ଲାର ବହୁ ଅଞ୍ଚଳରେ ବ୍ୟାପକ କ୍ଷତି ଘଟିଥିଲା । ୧୯୮୬ ମସିହାରେ ଆଉଥରେ ଦଳେଇ ଘାଇ ଭାଙ୍ଗିଥିଲା । ୧୯୯୧ ମସିହାରେ ହୀରାକୁଦ ବନ୍ଧର ତଳ ଅଞ୍ଚଳରେ ବହୁ ବର୍ଷା ହୋଇ ଉପକୂଳ ଅଞ୍ଚଳରେ ସାତଗୋଟି ଜିଲ୍ଲାରେ ଲକ୍ଷ ଲକ୍ଷ ଲୋକ ବନ୍ୟାରେ ବିପନ୍ନ

ହୋଇଥିଲେ । କଟକ ଓ ପୁରୀ ଜିଲ୍ଲାର ବହୁ ଅଞ୍ଚଳ ପ୍ରାୟ ଏକମାସ ପାଣିସେର ମଧ୍ୟରେ ଥିଲା । ଏ ସବୁ ବନ୍ୟାର ଆମେ ପ୍ରତ୍ୟକ୍ଷଦର୍ଶୀ । ବହୁକାଳର ଇତିହାସକୁ ନ ଯାଇ ୧୮୦୩ ମସିହାରୁ ବିଂଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ ସେଉଁ ଦୁଇଶହ ବର୍ଷର ଇତିହାସ ଆମ ସମ୍ମୁଖରେ ଅଛି, ସେଥିରୁ ଜଣାଯାଉଛି ଯେ, ହୀରାକୁଦ ଓ ରେଙ୍ଗାଲି ପ୍ରଭୃତି ବନ୍ଧ ନିର୍ମାଣ ସତ୍ତ୍ୱେ, ବିଂଶ ଶତାବ୍ଦୀ ଶେଷପର୍ଯ୍ୟନ୍ତ ଏ ରାଜ୍ୟରେ ବନ୍ୟା ସମସ୍ୟାର ସମାଧାନ ହୋଇପାରି ନାହିଁ ।

ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ବାତ୍ୟା ଓ ଅଭ୍ୟନ୍ତରର ଜିଲ୍ଲାମାନଙ୍କରେ ମରୁଡ଼ି ମଧ୍ୟ କାଳେ କାଳେ ଲାଗିରହିଛି । ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ପ୍ରତିବର୍ଷ ମହାଳୟା ଅମାବାସ୍ୟାଠାରୁ ଦୀପାବଳୀ ଅମାବାସ୍ୟା ପର୍ଯ୍ୟନ୍ତ ବାତ୍ୟାର ଆଶଙ୍କା ଥାଏ । ୧୯୩୬ ଏବଂ ୧୯୬୭ ମସିହାର ବଡ଼ ବାତ୍ୟାମାନ ମୁଁ ଦେଖିଛି । ୧୨୯୯ ସାଲ ବା ୧୮୯୧ ମସିହାର ବଡ଼ ବାତ୍ୟା ଆଜିଯାଏ ଆମ ଅଞ୍ଚଳରେ ଜନଶ୍ରୁତିରେ ଅଛି । ଓଡ଼ିଶାବାସୀଙ୍କ ଦାରିଦ୍ର୍ୟର ପ୍ରଧାନ କାରଣ ଏହି ପ୍ରାକୃତିକ ବିପର୍ଯ୍ୟୟ ବନ୍ୟା, ମରୁଡ଼ି ଓ ବାତ୍ୟା କାଳେ କାଳେ ଲାଗିରହିଛି । ବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଏହି ଚିର ଦୁଃଖଦାୟକ ବିପର୍ଯ୍ୟୟର ସମାଧାନ ହୋଇ ପାରିନାହିଁ ।

**ମହାମାରୀ ହଇଜା**

୧୯୩୩ ମସିହା ଜୁଲାଇମାସରେ ମୁଁ କଟକ ପ୍ରେଜେଣ୍ଟେସନ ସ୍କୁଲରେ ନବମ ଶ୍ରେଣୀରେ ପଢ଼ୁଥିବାବେଳେ କଟକ ସହରରେ ହଇଜା ଲାଗିଲା । ପାଞ୍ଚ ଛଅଦିନ ମଧ୍ୟରେ ହଇଜା ସହରର ବିଭିନ୍ନ ସାହି, ଗଳି କନ୍ଦିରେ ବ୍ୟାପିଗଲା । ଗ୍ରୀଷ୍ମଛୁଟି ପରେ ଅଳ୍ପଦିନ ତଳେ ସ୍କୁଲ ସବୁ ଖୋଲିଥିଲା । ହଇଜାର ପ୍ରକୋପ ଯୋଗୁଁ ସ୍କୁଲ ସବୁ ପ୍ରାୟ ଏକମାସ ବନ୍ଦ ହୋଇଗଲା । ହଇଜା କଟକ ସହରରୁ ଗାଁମାନଙ୍କୁ ମାଡ଼ିଗଲା । ସେ ବର୍ଷ ମୋ ମାମୁଁଘର ଗାଁରେ ମୋର ମାମୁଁ ଓ ଜଣେ ମାଉସୀ ହଇଜାରେ ମରିଗଲେ । ମୋର ଗୋଟିଏ ଭଉଣୀର ଶାଶୂଘର ଗାଁରେ ଭଉଣୀର ସମସ୍ତ ପରିବାର ଲୋକ ହଇଜାରେ ଆକ୍ରାନ୍ତ ହେଲେ । ସେଥିରେ ଭଉଣୀର ସ୍ୱାମୀ, ଶାଶୂ ଏବଂ ଜଣେ ଝିଅଙ୍କ ମରିଗଲେ । ଅନ୍ୟମାନେ ବଞ୍ଚିଗଲେ ।

ଭାରତବର୍ଷରେ ହଇଜା, ବସନ୍ତ ଓ ପ୍ଲେଗ, ଏହି ତିନିଗୋଟି ମହାମାରୀ ମଧ୍ୟରୁ ପ୍ଲେଗ୍‌ରେ ଆଗେ ଓଡ଼ିଶାରେ ବେଶି ଲୋକ ମରୁ ନ ଥିଲେ । ମାତ୍ର ହଇଜା ଓ ବସନ୍ତରୋଗରେ ପୂର୍ବକାଳରୁ ହଜାର ହଜାର ଲୋକ ମରି-ଯାଉଥିଲେ । ରାଜ୍ୟର ଜଳବାୟୁ, ନଈ ନାଳ, ପୋଖରୀ ତଡ଼ିଆ ବିଲମାଳ ପରି

ଦେଶରେ ଏହି ରୋଗ ବର୍ଷାଋତୁର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସହଜରେ ଗାଁକୁ ଗାଁ ମାଡ଼ିଯାଉଥିଲା । ରାଜ୍ୟରେ ଏପରି କୌଣସି ଗାଁ ବା ସହର ନାହିଁ, ଯେଉଁଠାରେକି କେବେ ହଇଜାରୋଗ ହୋଇନାହିଁ । ଏପରି ପରିବାର ମଧ୍ୟ ନାହିଁ, ଯାହାର କି କୌଣସି ଲୋକ ବା ବନ୍ଧୁବାନ୍ଧବ ହଇଜାରେ ମରି ନାହାନ୍ତି । ଭାଗ୍ୟର ବିଡ଼ମ୍ବନା ଯେ, ଉତ୍କଳର ଆରାଧ୍ୟ ଦେବତା ମହାପ୍ରଭୁ ଜଗନ୍ନାଥଙ୍କ ରଥଯାତ୍ରା ସମୟରେ ଶ୍ରୀକ୍ଷେତ୍ରରୁ ହଇଜା ଆରମ୍ଭ ହୋଇ ପ୍ରତିବର୍ଷ ଗ୍ରାମେ ଗ୍ରାମେ ବ୍ୟାପିଯାଉଥିଲା ଏବଂ ବହୁ ଅଞ୍ଚଳରେ ଶହ ଶହ ସଂଖ୍ୟାରେ ଲୋକ ମରିଯାଉଥିଲେ । ବଢ଼ି, ମରୁଡ଼ି, ଦୁର୍ଭିକ୍ଷ ସମୟରେ ଅଖାଦ୍ୟ ଖାଇବା ଏବଂ ଦୂଷିତ ଜଳ ବ୍ୟବହାର ହେତୁ ଏ ରୋଗ ସହଜରେ ବ୍ୟାପିଯାଏ । ୧୯୬୦ ମସିହା ପୂର୍ବରୁ ବ୍ୟାପକ ହଇଜା ରୋଗରେ ଗଣମୃତ୍ୟୁ ଏ ରାଜ୍ୟର ଗୋଟିଏ ଜଣାଶୁଣା ସାଧାରଣ କଥା ଥିଲା ।

ଅଜ୍ଞତା ବଶତଃ ଲୋକମାନେ ଏ ରୋଗର କାରଣ ଓ ପ୍ରତିକାର ଜାଣି ନ ଥିଲେ । ରୋଗ ବ୍ୟାପିବ ବେଳେ ଠାକୁରାଣୀ ମାର୍ଜନା, କୀର୍ତ୍ତନ ଏବଂ ଛକମୁଣ୍ଡରେ ପଣା ପାଣି ଦେବା ସବୁଆଡ଼େ ସାଧାରଣ କଥା ଥିଲା । ବେଳେ ବେଳେ ବିପର୍ଯ୍ୟସ୍ତ ଚିକିତ୍ସା ହେତୁ ରୋଗରେ ମୃତ୍ୟୁସଂଖ୍ୟା ଅଧିକ ହେଉଥିଲା । ଆମ ପିଲାକାଳ ୧୯୨୦-୨୫ ମସିହା ବେଳକୁ ରୋଗର ପ୍ରାଦୁର୍ଭାବ କମିଯାଇଥିଲା । ତଥାପି ୧୯୩୩ ମସିହାରେ ବହୁ ଅଞ୍ଚଳରେ ବ୍ୟାପକ ହଇଜାରେ ବହୁଲୋକ ମରିଥିଲେ । ୧୯୫୦-୫୧ ମସିହାରେ ଅନୁଗୁଳ ସହରର ନିକଟ ରନ୍ଧୋଲେଇ ଗାଁରେ ହୁକୁମ ଔଷଧ ବାଣ୍ଟିବା ସମୟରେ ସେଠାରୁ ଆରମ୍ଭ ହୋଇ ହଇଜାରୋଗ ଓଡ଼ିଶା ଏବଂ ଭାରତର ଅନ୍ୟ ଅଞ୍ଚଳମାନଙ୍କୁ ବ୍ୟାପିଯାଇଥିଲା ଏବଂ ସେଥିରେ ବହୁଲୋକ ମରିଥିଲେ । ଶତାବ୍ଦୀର ଶେଷରେ ମଧ୍ୟ ମଝିରେ ମଝିରେ ରାଜ୍ୟର ବିଭିନ୍ନ ଅଞ୍ଚଳରେ ହଇଜାରୋଗ ହୋଇ ଶତାଧିକ ଲୋକ ମରୁଛନ୍ତି । ମାତ୍ର ୧୯୬୦ ମସିହା ପୂର୍ବରୁ ପ୍ରତିବର୍ଷ ଯେପରି ହଇଜାରେ ଗଣମୃତ୍ୟୁ ହେଉଥିଲା, ତାହା ବର୍ତ୍ତମାନ ନିୟନ୍ତ୍ରିତ ହୋଇଛି । ସ୍ୱାସ୍ଥ୍ୟସେବାର ପ୍ରସାର ଏବଂ ରୋଗର କାରଣ ଓ ପ୍ରତିକାର ବିଷୟରେ ଜନଚେତନା ହେତୁ ଏହା ସମ୍ଭବ ହୋଇଛି ।

ବସନ୍ତରୋଗରେ ମଧ୍ୟ ସେହିପରି ବିଂଶ ଶତାବ୍ଦୀର ତୃତୀୟ ଦଶନ୍ଧି ପର୍ଯ୍ୟନ୍ତ ରାଜ୍ୟରେ ବହୁଲୋକ ମରୁଥିଲେ । ଅନ୍ଧ ବିଶ୍ୱାସରେ ଲୋକମାନେ ଟିକା ନ ନେଇ ଠାକୁରାଣୀ ପୂଜା କରୁଥିଲେ । ବିଗତ ପଚାଶ ବର୍ଷ ମଧ୍ୟରେ ଏ ଅବସ୍ଥା ବଦଳି ଯାଇଛି । ସବୁଆଡ଼େ ଲୋକମାନେ ରୋଗ ବିଷୟରେ ସଚେତନ ହେବାରୁ ଏବଂ ସବୁ ଲୋକ ଟିକା ନେବାରୁ ଶତାବ୍ଦୀର ଶେଷବେଳକୁ ବସନ୍ତରୋଗର

ସମ୍ପୂର୍ଣ୍ଣ ନିରାକରଣ ହୋଇଛି । ଏହି ଦୁଇଟି ମହାମାରୀ ବ୍ୟତୀତ ବିଂଶ ଶତାବ୍ଦୀର ତୃତୀୟ ଦଶନ୍ଧି ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ପ୍ରତିବର୍ଷ ବହୁଲୋକ ଚିକିତ୍ସା ଅଭାବରୁ ମ୍ୟାଲେରିଆ, ଟାଇଫଏଡ୍ ଓ ଆମାଶୟ ପ୍ରଭୃତି ରୋଗରେ ମରି ଯାଉଥିଲେ । ଶିଶୁ-ମୃତ୍ୟୁ ହାର ସମଗ୍ର ଭାରତବର୍ଷରେ ଓଡ଼ିଶାରାଜ୍ୟରେ ଅଧିକ ଥିଲା ।

ମାତ୍ର ସ୍ୱାଧୀନତା ପରେ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ସ୍ୱାସ୍ଥ୍ୟସେବା ଓ ସ୍ୱାସ୍ଥ୍ୟ-ବ୍ୟବସ୍ଥାର ଉଲ୍ଲେଖନୀୟ ପ୍ରସାର ଘଟିଛି । ଆଗେ ଗ୍ରାମାଞ୍ଚଳରେ ଲୋକମାନେ ରୋଗ ଚିକିତ୍ସା ପାଇଁ ପ୍ରଧାନତଃ କବିରାଜମାନଙ୍କ ଉପରେ ନିର୍ଭର କରୁଥିଲେ । ଅଳ୍ପ କେତେକ କବିରାଜ ଆୟୁର୍ବେଦଶାସ୍ତ୍ରଜ୍ଞ ପଣ୍ଡିତ ଥିଲେ । ଅନ୍ୟ କବିରାଜ-ମାନଙ୍କର ସ୍ୱାସ୍ଥ୍ୟ ସେବାରେ ଦକ୍ଷତା ନ ଥିଲା । ଲୋକମାନେ ବହୁ ଟୁଣୁକା ଟାଣୁକ ଔଷଧ ବ୍ୟବହାର କରୁଥିଲେ ଏବଂ ଦୁରାରୋଗ୍ୟ ରୋଗମାନଙ୍କରୁ ଆରୋଗ୍ୟ ଆଶାରେ ଦେବଦେବୀ ଓ ହୁକୁମ ଔଷଧ ପ୍ରଭୃତିର ଆଶ୍ରୟ ନେଉଥିଲେ । ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ କ୍ରମେ ସେ ଅବସ୍ଥା ବଦଳିଯାଇଛି । ସହର ଓ ଗ୍ରାମାଞ୍ଚଳରେ କ୍ରମଆଡ଼େ ପାଶ୍ଚାତ୍ୟ ଚିକିତ୍ସାବିଜ୍ଞାନରେ ଶିକ୍ଷିତ ଡାକ୍ତରମାନଙ୍କ ସଂଖ୍ୟା ଏବଂ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରମାନଙ୍କ ସଂଖ୍ୟା ଖୁବ୍ ଅଧିକ ହୋଇଛି । ରାଜ୍ୟରେ ତିନୋଟି ମେଡିକାଲ କଲେଜ ପ୍ରତିଷ୍ଠିତ ହୋଇଛି ଏବଂ ସେଗୁଡ଼ିକରେ ବହୁପ୍ରକାର ଆଧୁନିକ ଚିକିତ୍ସାର ସୁବିଧା ମିଳୁଛି । ପ୍ରତି ଜିଲ୍ଲା ଏବଂ ସବ୍‌ଡିଭିଜନ ଡାକ୍ତରଖାନାମାନଙ୍କରେ ମଧ୍ୟ ବହୁ ବିଶେଷଜ୍ଞ ଡାକ୍ତର ଅଛନ୍ତି । ଏହା ବ୍ୟତୀତ ପାଶ୍ଚାତ୍ୟ ଔଷଧ କ୍ରମଆଡ଼େ ବର୍ଦ୍ଧି ହେଉଛି ଏବଂ ସବୁ ଅଞ୍ଚଳରେ ବହୁ ଘରୋଇ ଡାକ୍ତର ବ୍ୟବସାୟ କରୁଛନ୍ତି । ମାତ୍ର ପାଶ୍ଚାତ୍ୟ ଦେଶମାନଙ୍କ ଏବଂ ଆମ ଦେଶର ବଡ଼ ବଡ଼ ସହରମାନଙ୍କ ତୁଳନାରେ ଆମ ରାଜ୍ୟରେ ଚିକିତ୍ସାକ୍ଷେତ୍ରରେ ବହୁ ଅଭାବ ଏବଂ ଡାକ୍ତରଖାନାମାନଙ୍କରେ ବହୁ ଅବ୍ୟବସ୍ଥା ଶତାବ୍ଦୀର ଶେଷ ସୁଦ୍ଧା ମଧ୍ୟ ପରିଲକ୍ଷିତ ହେଉଛି । ତଥାପି ଶତାବ୍ଦୀର ପ୍ରଥମ ଭାଗ ତୁଳନାରେ ଶତାବ୍ଦୀ ଶେଷରେ ସ୍ୱାସ୍ଥ୍ୟ ଓ ଚିକିତ୍ସା କ୍ଷେତ୍ରରେ ଘଟିଥିବା ବୈପ୍ଳବିକ ପରିବର୍ତ୍ତନ, ଯେଉଁମାନେ ଦୁଇ ଅବସ୍ଥା ଦେଖିଛନ୍ତି, ସେମାନେ ସ୍ପଷ୍ଟ ଅନୁଭବ କରିପାରୁଛନ୍ତି ।

## ରାଜା ଓ ପ୍ରଜା

୧୯୪୨ ମସିହାରେ ଏମ୍. ଏ. ପାସ୍ କରି ମୁଁ କଟକରେ ଟ୍ୟୁସନ କରି ଚାକିରି ଅପେକ୍ଷାରେ ରହିଥିଲି । ସେ ବର୍ଷ ନଭେମ୍ବର ମାସରେ ତାଳଚେର ରାଜାଙ୍କର ନାତି ଟିକାୟତଙ୍କର ଗୃହଶିକ୍ଷକ ରୂପେ ତାଳଚେର ଗଲି ।

ତାଲଚେରରେ ମୁଁ ଆଠ ନଅମାସ ରହିଥିଲି ଏବଂ ରାଜପରିବାରର ଦୈନନ୍ଦିନ ଜୀବନଯାପନ ପ୍ରଣାଳୀ, ରାଜ ପରିବାରର ପାଖଲୋକମାନଙ୍କ କାର୍ଯ୍ୟ ଏବଂ ସାଧାରଣ ଲୋକମାନଙ୍କର ଦାରିଦ୍ର୍ୟ ଓ ରାଜକେନ୍ଦ୍ରିକ ଜୀବନ ନିରୀକ୍ଷଣ କରିଥିଲି । ସେ ସମସ୍ତ ଓଡ଼ିଶାରେ ଗଡ଼ଜାତ ରାଜ୍ୟଶାସନର ଶେଷ ପର୍ଯ୍ୟାୟ ଥିଲା ଏବଂ ତାହା ପୂର୍ବରୁ ଗଡ଼ଜାତ ରାଜ୍ୟମାନଙ୍କରେ ହିଂସାତ୍ମକ ଆନ୍ଦୋଳନ ହୋଇ ସାରିଥିଲା । ଦ୍ୱିତୀୟ ମହାଯୁଦ୍ଧ ଚାଲିଥାଏ ଏବଂ ଯୁଦ୍ଧ ପରେ ଭାରତବର୍ଷର ଅବସ୍ଥା କଅଣ ହେବ, ସେଥିପାଇଁ ରାଜା ଓ ପ୍ରଜା ଉଭୟ ଅପେକ୍ଷା କରିଥିଲେ ।

୧୯୪୭ ମସିହା ପୂର୍ବରୁ ଭାରତବର୍ଷରେ ବ୍ରିଟିଶ ଶାସନ କାଳରେ ପ୍ରାୟ ଛଅଶହ ଛୋଟ ବଡ଼ କରଦରାଜ୍ୟ ଥିଲା । ଆମ ଓଡ଼ିଶାରେ ୨୬ଟି ଗଡ଼ଜାତ ରାଜ୍ୟ ଥିଲା । ଓଡ଼ିଶାରାଜ୍ୟର ପ୍ରାୟ ଏକତୃତୀୟାଂଶ ଲୋକ ଗଡ଼ଜାତ ରାଜ୍ୟମାନଙ୍କରେ ବାସ କରୁଥିଲେ । ସେ ସବୁ ରାଜ୍ୟରେ ରାଜାମାନେ ମନମୁଖୀ ଶାସନ କରୁଥିଲେ । ରାଜ୍ୟ ସବୁ ଛୋଟ ଥିଲା ଏବଂ ଅଧିକାଂଶ ରାଜାଙ୍କର ଆଧୁନିକ ଶାସନ ବିଷୟରେ ଧାରଣା ବା ଦକ୍ଷ ଭାବରେ ଶାସନ କରିବା ପାଇଁ ବିଦ୍ୟାବୁଦ୍ଧି ଓ କ୍ଷମତା ନ ଥିଲା । ରାଜ୍ୟଗୁଡ଼ିକ ଛୋଟ ଥିବାରୁ ସେଗୁଡ଼ିକରେ ରାସ୍ତା ଓ ଗମନାଗମନର ସୁବିଧା ସେହି ରାଜ୍ୟମାନଙ୍କରେ ସୀମିତ ଥିଲା ଏବଂ ସେମାନଙ୍କର ବାହାର ଜଗତ ସହିତ ସଂଯୋଗ ନ ଥିଲା । ରାଜାଙ୍କ ଗଡ଼, ରାଜଧାନୀ ଓ ସଦର ମହକୁମା ଗୋଟିଏ ଗୋଟିଏ ବଡ଼ ଗାଁ ପରି ଥିଲା । ରାଜ୍ୟମାନଙ୍କରେ ସହର ନ ଥିଲା କହିଲେ ଚଳେ । ସବୁ ରାଜ୍ୟବାସୀ ଗାଁମାନଙ୍କରେ ଚାଷ ଉପରେ ନିର୍ଭର କରି ଚଳୁଥିଲେ । ଗାଁ ମୁଖିଆ ଏବଂ ପ୍ରଧାନମାନଙ୍କ ବ୍ୟତୀତ ସାଧାରଣ କୃଷୀ ପରିବାରମାନଙ୍କର ଜମି ଅତି ଅଳ୍ପ ଥିଲା । ଜଳସେଚନ ପ୍ରଭୃତିର ସୁବିଧା ନ ଥିବାରୁ କୃଷି-ପ୍ରଣାଳୀ ଅନୁନ୍ନତ ଓ ଏକର ପ୍ରତି ଉତ୍ପାଦନ ଅତି ଅଳ୍ପ ଥିଲା । ଚାଷ ପାଇଁ ସବୁ ରାଜ୍ୟରେ ମରୁଡ଼ି ପ୍ରଧାନ ବିପଦ ଥିଲା । ସବୁ ରାଜ୍ୟରେ ଜଙ୍ଗଲ ଅଞ୍ଚଳ ଅଧିକ ଥିବାରୁ ଲୋକମାନେ ଜାଳେଣି କାଠ, ଘର କରିବା ଓ କୃଷି ଉପକରଣ ପ୍ରଭୃତି ତିଆରି କରିବା ପାଇଁ କାଠର ସୁବିଧା ପାଉଥିଲେ ଏବଂ ମହୁଲ, ମହୁ, ଫଳ ମୂଳ ପ୍ରଭୃତି ଛୋଟ ଛୋଟ ଜଙ୍ଗଲଜାତ ପଦାର୍ଥରୁ ମଧ୍ୟ କିଛି ଆୟ କରୁଥିଲେ । ତଥାପି ଗୋରୁଗାଈ, କୃଷି, ବାଣିଜ୍ୟ, ହାଟ ବଜାର ସବୁ ଆଦିମ ଧରଣର ଥିଲା ଏବଂ ସାଧାରଣ ଲୋକ ମୋଗଲବନ୍ଦୀ ଅଞ୍ଚଳର ଲୋକମାନଙ୍କଠାରୁ ଅଧିକ ଗରିବ ଓ ଅଶିକ୍ଷିତ ଥିଲେ ।

ମୋଗଲବନ୍ଦୀ ଅଞ୍ଚଳ ପରି ସବୁ ରାଜ୍ୟରେ ଶିକ୍ଷା, ସ୍ୱାସ୍ଥ୍ୟ, ପୁଲିସ୍, ଜଙ୍ଗଲ ଓ ନିର୍ମାଣ ପ୍ରଭୃତି ବିଭାଗମାନ ଥିଲା । ମାତ୍ର ମୋଟ ରାଜସ୍ୱ ଅତି ଅଳ୍ପ ଥିବାରୁ

ଏବଂ ସଂଗୃହୀତ ରାଜସ୍ୱର ଅଧିକାଂଶ ଭାଗ ରାଜପରିବାରର ଖର୍ଚ୍ଚରେ ଲାଗୁଥିବାରୁ ସବୁ ବିଭାଗର ଆୟବ୍ୟୟ ସ୍ୱଳ୍ପ ଥିଲା । ସ୍ୱଳ୍ପବେତନଭୋଗୀ କର୍ମଚାରୀମାନେ ନିମ୍ନମାନର ଥିଲେ । ସେମାନଙ୍କର ସଂଖ୍ୟା କମ୍ ଥିଲା ଏବଂ ତାଙ୍କ ଚାକିରି ରାଜାଙ୍କ ଇଚ୍ଛା ଉପରେ ନିର୍ଭର କରୁଥିଲା । କର୍ମଚାରୀମାନେ ସର୍ବଦା ରାଜାମାନଙ୍କର ଅନୁଗ୍ରହପ୍ରାର୍ଥୀ ଏବଂ ତୋଷାମଦକାରୀ ଥିଲେ । ସେମାନେ ରାଜାମାନଙ୍କର ପ୍ରଜା-ଶୋଷଣ ଓ ନିଷ୍ପେଷଣର ମାଧ୍ୟମ ଥିଲେ । ରାଜା ଓ ପ୍ରଜା ମଧ୍ୟରେ ସେମାନେ ମଧ୍ୟସ୍ଥ ଥିବାରୁ ନିଜ ସ୍ୱାର୍ଥରେ ମଧ୍ୟ ପ୍ରଜାମାନଙ୍କୁ ଶୋଷଣ କରୁଥିଲେ ଏବଂ ସେମାନଙ୍କ ଉପରେ ବହୁ ଅତ୍ୟାଚାର କରୁଥିଲେ । ସାଧାରଣ ପ୍ରଜା ଅତି ଦରିଦ୍ର ଓ ଅଶିକ୍ଷିତ ଥିବାରୁ ରାଜପରିବାରର ଲୋକ ଏବଂ ରାଜକର୍ମଚାରୀଙ୍କ ପ୍ରତି ସେମାନଙ୍କର ଅତିମାତ୍ରାରେ ଭୟ ଥିଲା । ରାଜାଙ୍କ ପାଖରେ ଦ୍ୱାରଗୁହାରି କରିବାକୁ ସେମାନେ ଅତ୍ୟନ୍ତ ଭୟ କରୁଥିଲେ ଏବଂ ରାଜା ଓ ରାଜକର୍ମଚାରୀମାନଙ୍କଠାରୁ ସବୁବେଳେ ଦୂରରେ ରହିବାକୁ ଚେଷ୍ଟା କରୁଥିଲେ ।

ସାଧାରଣ ପ୍ରଜା ଅତି ଗରିବ ଥିବାରୁ ଏବଂ ସେମାନଙ୍କର ଆୟ କ୍ଷୁଦ୍ର ଯୋଗୁଁ ଅତି ନିଅଣ୍ଟ ଥିବାରୁ ରାଜାମାନେ ବେଶି ରାଜସ୍ୱ ଆଦାୟ କରି ପାରୁ ନ ଥିଲେ । ଭୂରାଜସ୍ୱ ପ୍ରଧାନ କର ଥିଲା ଏବଂ ଉତ୍ପାଦନ ହାର କମ୍ ଥିବାରୁ ଏକର ପ୍ରତି ଖଜଣା ଅତି କମ୍ ଥିଲା । ସେହି ସ୍ୱଳ୍ପ ଖଜଣା ମଧ୍ୟ ପ୍ରଜାମାନେ ଦେବାକୁ ଅକ୍ଷମ ଥିଲେ । ଖଜଣା ଅଳ୍ପ ମାତ୍ରାରେ ବଢ଼ାଇଦେଲେ କରଭାର ଦୁର୍ବହ ହେଲାବୋଲି ପ୍ରଜାମାନେ ଭାବୁଥିଲେ । ଖଜଣା ବଢ଼ିଲେ ପ୍ରଜାର ବ୍ୟକ୍ତିଗତ ଭାବରେ କିଛି କରିବାର ଶକ୍ତି ନ ଥିଲା, ମାତ୍ର ସମୟେ ସମୟେ ପ୍ରଜାମାନେ ମେଳିବାନ୍ଧି ବିଦ୍ରୋହ କରୁଥିଲେ । ବିଭିନ୍ନ ବିଷୟରେ ଟିକସ ବଢ଼ାଇବା ସମ୍ଭାବନା କମିଥିବାରୁ ରାଜାମାନେ ରାସ୍ତା ବ୍ୟବହାର ପାଇଁ ଟୋଲ୍, ଜଙ୍ଗଲ କାଠ ସଂଗ୍ରହ ଉପରେ ଟିକସ ଏବଂ ଚୁଲି ଟିକସ ପ୍ରଭୃତି ଅତ୍ୟନ୍ତ ଅପ୍ରୀତିକର ଟିକସମାନ ବସାଉଥିଲେ । ଜଙ୍ଗଲ ଟିକସ ପ୍ରଭୃତି ଆଦାୟ କ୍ଷେତ୍ରରେ କର୍ମଚାରୀମାନଙ୍କର ଦୁର୍ନୀତି ନିମିତ୍ତ ବହୁ ବାଟ ଥିଲା । କର୍ମଚାରୀମାନଙ୍କ ଦୁର୍ନୀତି ଯୋଗୁଁ ରାଜକୋଷକୁ ଟିକସ ଯାଏ ନାହିଁ, କର୍ମଚାରୀମାନେ ଲାଭବାନ୍ ହୁଅନ୍ତି ଏବଂ ପ୍ରଜାମାନେ ଅତ୍ୟାଚାର ଭୋଗନ୍ତି ।

ସବୁ ରାଜ୍ୟରେ ବେଠି ଗୋଟିଏ ସାଧାରଣ ପ୍ରଥା ଥିଲା । ରାସ୍ତା ନିର୍ମାଣ ପ୍ରଭୃତି ସାଧାରଣ କାର୍ଯ୍ୟରେ, ରାଜା ଓ ରାଜପରିବାରର ଲୋକ, ରାଜକର୍ମଚାରୀ ଓ ଗାଁ ମୁଖିଆଙ୍କ ବ୍ୟକ୍ତିଗତ କାମରେ, ରାଜ୍ୟକୁ ଆସୁଥିବା ବ୍ରିଟିଶ ସରକାରଙ୍କର କର୍ମଚାରୀ ଅତିଥି ଅଭ୍ୟାଗତଙ୍କ କାମରେ ବେଠି ଆଦାୟ କରାଯାଉଥିଲା । ସବୁ

ସ୍ୱତ ଖାଇ ବିନା ମଜୁରିରେ ପ୍ରଜା ଏହି ସବୁ କାର୍ଯ୍ୟ କରିବାକୁ ବାଧ୍ୟ ହେଉଥିଲେ । ଏ ବିଷୟରେ ଆପତ୍ତି କରିବାକୁ କାହାର ସାହସ ନ ଥିଲା । କୌଣସି ଲୋକ ଆପତ୍ତି କଲେ ତାଙ୍କୁ ସଙ୍ଗେ ସଙ୍ଗେ ଶାସ୍ତି ଦିଆଯାଉଥିଲା । ଶାସ୍ତି ଥିଲା ସବୁବେଳେ ମାଡ଼ । ତାହାଛଡ଼ା ଗାଈଗୋରୁ ନେଇଯିବା, ଫସଲ କାଟିନେବା, ଘର-ଭାଙ୍ଗିଦେବା, ଶେଷରେ ପ୍ରଜାକୁ ରାଜ୍ୟରୁ ବାହାର କରିଦେବା ପ୍ରଭୃତି ବିଭିନ୍ନ ପ୍ରକାର ଶାସ୍ତି ଥିଲା । ଶ୍ରମ ବେଠି ବ୍ୟତୀତ ରାଜା ଓ ରାଜକର୍ମଚାରୀମାନେ ପ୍ରଜାମାନଙ୍କଠାରୁ ଦାମ୍ ନ ଦେଇ ଅନ୍ୟ ବହୁ ପ୍ରକାର ଦ୍ରବ୍ୟ ଆଦାୟ କରୁଥିଲେ । ରାଜପରିବାରର ବିବାହାଦି ଉତ୍ସବରେ ଦୁଧ, ଘିଅ, ପରିବା, ଚାଉଳ, ଡାଲି ପ୍ରଭୃତି ପ୍ରଜାମାନଙ୍କଠାରୁ ମାଗଣାରେ ଆସୁଥିଲା । ବ୍ରିଟିଶ ସରକାରଙ୍କର କର୍ମଚାରୀଙ୍କର ରାଜ୍ୟରେ କୌଣସି କ୍ୟାମ୍ପ ପଡ଼ିଲେ କିମ୍ବା ରାଜକର୍ମଚାରୀମାନେ ଗ୍ରାମାଞ୍ଚଳରେ କୌଣସି କାର୍ଯ୍ୟ କରିବାକୁ ଗଲେ, ସେମାନଙ୍କ ପାଇଁ ଚାଉଳ, କାଠ, ଦୁଧ, ଘିଅ ପ୍ରଭୃତି ସମସ୍ତ ରସଦ ପ୍ରଜାମାନେ ମାଗଣାରେ ଯୋଗାଇ ଦେଉଥିଲେ । ରାଜ୍ୟର ଜମି ବାଡ଼ି, ନଦୀ, ପର୍ବତ, ଅରଣ୍ୟ ସବୁ ରାଜାଙ୍କର । ପ୍ରଜାମାନେ ତାଙ୍କ ଅନୁମତିରେ ତାଙ୍କୁ କର ଦେଇ ରାଜ୍ୟରେ ବାସ କରୁଛନ୍ତି ଏବଂ ଜମିଜୃତ ଓ ଜଙ୍ଗଲ-ସମ୍ପଦ ବ୍ୟବହାର କରୁଛନ୍ତି ବୋଲି ମାରାତ୍ମକ ଆଇନ ଓ ପରମ୍ପରା ଥିଲା । ରାଜ୍ୟର ସମସ୍ତ ଶାସନପ୍ରତିଷ୍ଠା, ରାଜସ୍ୱ ଆଦାୟ ଓ ଖର୍ଚ୍ଚ ରାଜକେନ୍ଦ୍ରିକ ଥିଲା । ରାଜପରିବାର ଓ ରାଜ୍ୟର ଶାସକ ମଧ୍ୟରେ କୌଣସି ପାର୍ଥକ୍ୟ ନ ଥିଲା । ଫଳରେ ପ୍ରଜାମାନେ ଦରିଦ୍ର ଓ ଭୀତତ୍ରସ୍ତ ଭାବରେ ଅନ୍ଧକାରାଚ୍ଛନ୍ନ ସମାଜରେ ଜୀବନଯାପନ କରୁଥିଲେ ।

ମୋଗଲବନ୍ଦୀ ଅଞ୍ଚଳର ଲୋକମାନେ ଗଡ଼ଜାତ ଅଞ୍ଚଳମାନଙ୍କୁ ଅନ୍ଧୋସ୍ରି-ମୂଳକ ବୋଲି ଭାବୁଥିଲେ । ତାର କାରଣ, ସେ ଅଞ୍ଚଳମାନଙ୍କରେ ରାସ୍ତାଘାଟ ନଥିବାରୁ ସେଥିରେ ଯିବା ଆସିବା କରିବା ସୁବିଧା ନଥିଲା । ଦ୍ୱିତୀୟରେ ଅଧିକାଂଶ ରାଜ୍ୟ ଜଙ୍ଗଲରେ ପରିପୂର୍ଣ୍ଣ ଥିଲା । ତୃତୀୟରେ ରାଜାମାନଙ୍କର ମନମୁଖୀ ଶାସନ ଅଧୀନରେ ପ୍ରଜାମାନଙ୍କର ବ୍ୟକ୍ତିଗତ ସ୍ୱାଧୀନତା ଏବଂ ଧନଜୀବନର ନିରାପତ୍ତା ନଥିଲା । ବ୍ରିଟିଶ ଶାସିତ 'ଅଞ୍ଚଳରେ ଯେପରି ଆଇନ୍-କାନୁନ୍ ଓ କୋର୍ଟ-କଚେରି ପ୍ରଚଳିତ ହୋଇଥିଲା, ଗଡ଼ଜାତ ଅଞ୍ଚଳରେ ରାଜାମାନଙ୍କର ଶାସନ ଲୋପ ହେଲା ପର୍ଯ୍ୟନ୍ତ ତାହା ହୋଇପାରି ନଥିଲା । ବ୍ରିଟିଶ ସରକାର ତାଙ୍କ ନିଜ ସ୍ୱାର୍ଥରେ ଗଡ଼ଜାତ ଶାସନ ଉପରେ ବିଶେଷ ହସ୍ତକ୍ଷେପ କରୁ ନଥିଲେ, କାରଣ ରାଜାମାନେ ଭାରତ-ବର୍ଷରେ ଇଂରେଜ ସରକାରଙ୍କର ଦୃଢ଼ ସମର୍ଥକ ଥିଲେ ।

୧୯୩୦ ମସିହା ପୂର୍ବରୁ ଗଡ଼ଜାତ ରାଜ୍ୟ ଶାସନ ପଦ୍ଧତି ଲୋପ କରି ପ୍ରଜା ଶାସନ ପ୍ରବର୍ତ୍ତନ କରିବା ପାଇଁ ସଙ୍ଗଠିତ ଆନ୍ଦୋଳନ ହୋଇ ନଥିଲା ।

୧୯୨୧ ମସିହା ପରେ ଭାରତର ସ୍ୱାଧୀନତା ସଂଗ୍ରାମ ବାର୍ତ୍ତା କ୍ରମେ କ୍ରମେ ଗଡ଼ଜାତ ଅଞ୍ଚଳମାନଙ୍କରେ ପ୍ରବେଶ କରୁଥିଲା । ୧୯୩୦ ମସିହା ପରେ ଓଡ଼ିଶାର ଅଧିକାଂଶ ଗଡ଼ଜାତ ରାଜ୍ୟରେ ପ୍ରଜାମଣ୍ଡଳମାନ ଗଠିତ ହେଲା ଏବଂ ସେଗୁଡ଼ିକ ଗଡ଼ଜାତ ରାଜାମାନଙ୍କର ମନମୁଖୀ ଶାସନ ଏବଂ ଅତ୍ୟାଚାର ବିରୋଧରେ ଆନ୍ଦୋଳନ କଲେ । ୧୯୩୭ ମସିହାଠାରୁ ୧୯୩୯ ମସିହା ମଧ୍ୟରେ ଓଡ଼ିଶାର କଂଗ୍ରେସ ମନ୍ତ୍ରିମଣ୍ଡଳ ଗଡ଼ଜାତ ରାଜ୍ୟମାନଙ୍କରେ ପ୍ରଜା ଆନ୍ଦୋଳନକୁ ସାହାଯ୍ୟ କଲେ । ୧୯୪୨ ମସିହାରେ ଭାରତର ବିଭିନ୍ନ ଅଞ୍ଚଳରେ ଭାରତ ଛାଡ଼ ଆନ୍ଦୋଳନ ହିଂସାତ୍ମକ ରୂପ ଧାରଣ କରିଥିବା ସମୟରେ ଓଡ଼ିଶାର ଅନେକ ଗଡ଼ଜାତ ରାଜ୍ୟରେ ପ୍ରଜାମଣ୍ଡଳ ଆନ୍ଦୋଳନ ହିଂସାତ୍ମକ ମାର୍ଗ ଧରିଥିଲା । ରାଜାମାନେ ସେ ହିଂସାତ୍ମକ ଆନ୍ଦୋଳନମାନ ବ୍ରିଟିଶ ସରକାରଙ୍କର ସୈନ୍ୟ ସାହାଯ୍ୟରେ ଦମନ କରିବାକୁ ସକ୍ଷମ ହୋଇଥିଲେ । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତବର୍ଷ ସ୍ୱାଧୀନ ହେଲା । ଗଡ଼ଜାତ ରାଜ୍ୟମାନଙ୍କ ଉପରେ ଥିବା ବ୍ରିଟିଶ ସରକାରଙ୍କର ସାର୍ବଭୌମ କ୍ଷମତା ସାଧୀନ ଭାରତ ସରକାରଙ୍କ ହାତରେ ପଡ଼ିଲା । ତିନିମାସ ପରେ ଭାରତର ଜନ-ନାୟକ ତତ୍କାଳୀନ ସ୍ୱରାଷ୍ଟ୍ରମନ୍ତ୍ରୀ ସର୍ଦ୍ଦାର ପଟେଲ ଓଡ଼ିଶା ଆସିଲେ ଏବଂ ତାଙ୍କ ସମ୍ମୁଖରେ ଓଡ଼ିଶାର ଗଡ଼ଜାତ ରାଜାମାନେ ତାଙ୍କ ରାଜ୍ୟମାନ ଓଡ଼ିଶା ରାଜ୍ୟ ସହିତ ମିଶିବା ପାଇଁ ଚୁକ୍ତି ସ୍ୱାକ୍ଷର କଲେ । ୧୯୪୮ ମସିହା ଜାନୁଆରୀ ମାସ ପହିଲାଠାରୁ ମୟୂରଭଞ୍ଜ ବ୍ୟତୀତ ଓଡ଼ିଶାର ସମସ୍ତ ଗଡ଼ଜାତ ରାଜ୍ୟ ଓଡ଼ିଶା ସହିତ ମିଶିଗଲା ଏବଂ ପରବର୍ଷ ମୟୂରଭଞ୍ଜ ଓଡ଼ିଶା ସହିତ ମିଶିଲା । ଏହା ଫଳରେ ଶହ ଶହ ବର୍ଷ ଧରି ଚାଲିଥିବା ଗଡ଼ଜାତ ଶାସନପ୍ରଣାଳୀ ଆମର ଜୀବନକାଳରେ ଲୋପ ପାଇଗଲା । ଗଡ଼ଜାତ ଅଞ୍ଚଳ ସହ ସମଗ୍ର ଓଡ଼ିଶା ରାଜ୍ୟ ଅନ୍ୟ ରାଜ୍ୟମାନଙ୍କ ପରି ଭାରତର ସମ୍ବିଧାନ ଅନୁସାରେ ଲୋକପ୍ରତିନିଧିମାନଙ୍କ ଦ୍ୱାରା ଶାସିତ ହେଲା ।

## ଜମିଦାର ଓ ରୟତ

ଆମେ ପ୍ରାଇମେରି ସ୍କୁଲରେ ପଢ଼ିଲାବେଳଠାରୁ ଜାଣି ପାରିଥିଲୁ ଯେ ଆମ ଗାଁ ଜଣେ କଲିକତା ଜମିଦାରଙ୍କର ରେଭନ୍ୟୁ ଇଷ୍ଟେଟ୍‌ରେ ଥିଲା ଏବଂ ଆମ ପଡ଼ୋଶୀ ଗାଁ କଲ୍ୟାଣପୁର କଟକର ଜମିଦାର ରାଧାପ୍ରସାଦ ଭଗତଙ୍କ ଅଧୀନରେ ଥିଲା । ଆମ ଗାଁରେ ଜମିଦାର ସୁଧାଂଶୁମୋହନ ବୋଷଙ୍କର ପକ୍କା କଚେରି ଘର ଥିଲା ଏବଂ ପଡ଼ୋଶୀ ଗାଁରେ ରାଧାପ୍ରସାଦ ଭଗତଙ୍କର କଚେରିଘର ଥିଲା । ମୁଁ ଯେଉଁ ଗାଁରେ ମାଇନର ସ୍କୁଲରେ ପଢ଼ୁଥିଲି, ସେ ଗାଁରେ ଛ'ପଣ କଚେରି, ପାଞ୍ଚପଣ କଚେରି ଓ ବାରପଣ ଷୋହଳଗଣ୍ଡା କଚେରି ଘରମାନ ଥିଲା । ସେ ନାଁ

ଗୁଡ଼ାକର ଅର୍ଥ ଆମେ ପ୍ରଥମେ ବୁଝିପାରୁ ନଥିଲୁ । ପରେ ଜାଣିଲୁ ଯେ ବଷ୍ଟୁପୁର ଜମିଦାରୀର ଛଅପଣ, ପାଞ୍ଚପଣ ଓ ସ୍ବଳ୍ପଣ ଷୋହଳଚଣ୍ଡା ଅଂଶୀଦାରମାନଙ୍କର କଚେରୀକୁ ଲୋକମାନେ ସେହି ନାମରେ କହୁଥିଲେ ।

ଇଂରେଜମାନେ ପୂର୍ବଭାରତର ବଙ୍ଗଳା, ବିହାର, ଆସାମ, ଓଡ଼ିଶା ପ୍ରଭୃତି ଅଞ୍ଚଳମାନଙ୍କ ମଧ୍ୟରେ ଜମିଦାରମାନଙ୍କ ଦ୍ୱାରା ଖଜଣା ଆଦାୟ କରୁଥିଲେ । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଉପକୂଳ ଅଧିକାର କରିବାର ଦୁଇବର୍ଷ ପରେ ୧୮୦୫ ମସିହାଠାରୁ ସେଥିରେ ବଙ୍ଗ ପ୍ରେସିଡେନ୍‌ସିରେ ପ୍ରବର୍ତ୍ତିତ ହୋଇଥିବା ଜମିଦାରୀ ପ୍ରଥା ଓ ଚିରସ୍ଥାୟୀ ବନ୍ଦୋବସ୍ତ କରିବାକୁ ଉଦ୍ୟମ କଲେ । ୧୮୦୫ ମସିହାରେ କନିକା, କୁଜଙ୍ଗ, ଆଳି, ସୁକିନ୍ଦା ପ୍ରଭୃତି ଜମିଦାରୀରେ ଚିରସ୍ଥାୟୀ ବନ୍ଦୋବସ୍ତ କରାଗଲା । ପରେ ପରେ ସେମାନେ କଟକର ଡୋମପଡ଼ା, ବଳରାମପୁର, ହରିଶପୁର, ବିଷ୍ଣୁପୁର, ପୁରୀର ମରିଚପୁର ଏବଂ ବାଲେଶ୍ୱରରେ ଥିବା ୧୬୦ ଗୋଟି ଗ୍ରେଟ ଜମିଦାରୀରେ ଚିରସ୍ଥାୟୀ ବନ୍ଦୋବସ୍ତ କଲେ । ସେ ମାହାଲମାନଙ୍କରେ ପ୍ରଜାମାନଙ୍କର ଓ ଗ୍ରାମଗୋଷ୍ଠୀ-ମାନଙ୍କର ଜମିରେ ଥିବା ସ୍ୱତ୍ୱାଧିକାର ବିଷୟରକୁ ନଆଗଲା ନାହିଁ ।

ଅନ୍ୟ ଅଞ୍ଚଳରେ ଇଂରେଜ ସରକାର ଜମିଦାର, ମକଦମ, କାନୁନ୍‌ଗୋ ପ୍ରଭୃତିଙ୍କ ଜମିରେ ଥିବା ସ୍ୱତ୍ୱ ସ୍ୱୀକାର କଲେ ଏବଂ ସେମାନଙ୍କ ସଙ୍ଗେ ଚିରସ୍ଥାୟୀ ବନ୍ଦୋବସ୍ତ କରିବେ ବୋଲି ଇଚ୍ଛା ପ୍ରକାଶ କରିଥିଲେ । ମାତ୍ର ୧୮୩୭ ମସିହାଠାରୁ ଇଷ୍ଟ ଇଣ୍ଡିଆ କମ୍ପାନୀର କୋର୍ଟ ଅଫ୍ ଡାଇରେକ୍ଟରସ୍‌ଙ୍କ ନିର୍ଦ୍ଦେଶରେ ଚିରସ୍ଥାୟୀ ବନ୍ଦୋବସ୍ତ ପ୍ରଥା ଆଉ ପ୍ରସାରିତ କରାଗଲା ନାହିଁ । ତାହା ପରିବର୍ତ୍ତେ ଜମି ମାଲିକମାନଙ୍କ ସହିତ ତିରିଶ ବର୍ଷିଆ ବନ୍ଦୋବସ୍ତ ହେଲା । ଦକ୍ଷିଣ-ଓଡ଼ିଶାରେ ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ ଇଂରେଜମାନେ ୧୮୦୩ ମସିହାରେ ଓଡ଼ିଶା ଉପକୂଳ ଅଧିକାର କରିବା ପୂର୍ବରୁ ଅନେକ ଜମିଦାରଙ୍କ ସହିତ ଚିରସ୍ଥାୟୀ ବନ୍ଦୋବସ୍ତ କରିଥିଲେ । ଏହି ବ୍ୟବସ୍ଥା ଅନୁସାରେ କୋରାପୁଟର ଜୟପୁର ଧରାକୋଟ, ଜମିଦାରୀ, ଗଞ୍ଜାମର ଖଲ୍ଲିକୋଟ, ଚିକିଟି, ଜରଡ଼ା ପ୍ରଭୃତି ଜମିଦାରୀ ଏବଂ ବିଶାଖାପାଟଣାର ପାରଳାଖେମୁଣ୍ଡି ପ୍ରଭୃତି ଜମିଦାରୀମାନଙ୍କରେ ୧୮୦୩ ମସିହା ପୂର୍ବରୁ ଚିରସ୍ଥାୟୀ ବନ୍ଦୋବସ୍ତ ହୋଇଥିଲା । ପରେ ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ନୂତନ ଜମିଦାରୀମାନ ସୃଷ୍ଟି ନହେବାରୁ ବହୁ ଅଞ୍ଚଳରେ ରୟତୱାରି ବନ୍ଦୋବସ୍ତ ହୋଇଥିଲା । ସେହି ଅନୁସାରେ ଗଞ୍ଜାମ ଜିଲ୍ଲାର ବହୁ ଅଞ୍ଚଳରେ ମଧ୍ୟ ରୟତୱାରି ବନ୍ଦୋବସ୍ତ ପ୍ରଥା ପ୍ରଚଳିତ ହୋଇଥିଲା ।

ସମ୍ବଲପୁର ଜିଲ୍ଲା ୧୮୦୫ ମସିହାରେ ଓଡ଼ିଶା ପ୍ରଦେଶରେ ମିଶିବା ପୂର୍ବରୁ ସେଥିରେ ୧୭ଟି ଜମିଦାରୀ ଏବଂ ଅନ୍ୟ ଅଧିକାଂଶ ଅଞ୍ଚଳରେ ଗଉନ୍ତିଆ ପ୍ରଥା

ପ୍ରଚଳିତ ଥିଲା । ଗଡ଼ଜାତ ରାଜ୍ୟମାନଙ୍କ ମଧ୍ୟରୁ କେତେକ ରାଜ୍ୟରେ ମଧ୍ୟ ଜମିଦାର ଥିଲେ । ମାତ୍ର ଅଧିକାଂଶ ଅଞ୍ଚଳରେ ରାଜାମାନେ ଗାଁ ପ୍ରଧାନ ଓ ସର୍ବରାକାରମାନଙ୍କ ଦ୍ୱାରା ପ୍ରଜାମାନଙ୍କଠାରୁ ଖଜଣା ଆଦାୟ କରୁଥିଲେ ।

୧୯୪୭ ମସିହାରେ ଭାରତବର୍ଷ ସ୍ୱାଧୀନ ହେବା ପୂର୍ବରୁ ଉତ୍ତର, ଦକ୍ଷିଣ, ପଶ୍ଚିମ ଓଡ଼ିଶାରେ ଏବଂ ଗଡ଼ଜାତ ରାଜ୍ୟମାନଙ୍କରେ ଅଧିକାଂଶ ଅଞ୍ଚଳରେ ଏହିପରି ଜମିଦାର, ଗଉନ୍ତିଆ, ସର୍ବରାକାର, ମକଦମ ଓ ପ୍ରଧାନ ପ୍ରଭୃତି ମଧ୍ୟସ୍ୱତ୍ୱାଧିକାରୀଙ୍କ ଦ୍ୱାରା ଖଜଣା ଆଦାୟ ହେଉଥିଲା ଏବଂ ମଧ୍ୟସ୍ୱତ୍ୱାଧିକାରୀମାନେ ଜମିରେ ଚାଷ କରୁଥିବା ପ୍ରଜାମାନଙ୍କ ଉପରେ ବିଭିନ୍ନ ପ୍ରକାର ଅତ୍ୟାଚାର କରୁଥିଲେ । ଚିରସ୍ଥାୟୀ ବନ୍ଦୋବସ୍ତ ମାହାଲମାନଙ୍କରେ ଅତ୍ୟାଚାରର ମାତ୍ରା ଅଧିକ ଥିଲା । ସେପରି ବଡ଼ମାହାଲମାନଙ୍କ ଜମିଦାରମାନଙ୍କୁ ରାଜା ବୋଲି କୁହାଯାଉଥିଲା ଏବଂ ସେମାନେ ଗଡ଼ଜାତ ରାଜାମାନଙ୍କ ପରି ବ୍ୟବହାର କରୁଥିଲେ । କଣିକା, ଆଳି ପ୍ରଭୃତି ଜମିଦାରୀମାନଙ୍କରେ ଖଜଣା ଓ ଦାଖଲ ଖାରଜ ପାଉଣା ବ୍ୟତୀତ ଭୁଲ୍ ସଂଶୋଧନ ପାଉଣା, ଜମିର ରେକର୍ଡ ଖୋଜି ନକଲ କରିବା ପାଉଣା, ଚୁଲିଟିକସ, ଝରକା ଟିକସ, ମହୁମାରିବା ଟିକସ, ଗୋବରଖାତ ଟିକସ, ଘୁଣ୍ଡିଆ ଭେଟି, ଦଣ୍ଡହର ଭେଟି, ପିଆଦା ଖର୍ଚ୍ଚ, ହାତୀ ଖରଚ ପ୍ରଭୃତି ବହୁପ୍ରକାର ବେଆଇନ୍ ପାଉଣା ଆଦାୟ କରାଯାଉଥିଲା ।

ଏ ସବୁ ବ୍ୟତୀତ ଜମିଦାରଙ୍କ ନିଜ୍‌ଚାଷ ଜମିରେ ଚାଷ କରିବା ପାଇଁ, ଜମିଦାରଙ୍କ ରଥଯାତ୍ରା, ହାତୀଧରା, ଶିକାର ପ୍ରଭୃତି ପାଇଁ ବର୍ଷରେ କେତେଦିନ ବେଠି କରିବା ପାଇଁ ପ୍ରଜାମାନଙ୍କୁ ବାଧ୍ୟ କରାଯାଉଥିଲା ଏବଂ ଗଡ଼ଜାତ ରାଜ୍ୟମାନଙ୍କରେ ମଧ୍ୟ ଏପ୍ରକାର ପାଉଣାସବୁ ଆଦାୟ କରାଯାଉଥିଲା । ତିରିଶ ବର୍ଷିଆ ବନ୍ଦୋବସ୍ତ ଜମିଦାରୀମାନଙ୍କରେ ଏପରି ପାଉଣା ଆଦାୟ କମ୍ ଥିଲା । ମାତ୍ର ସେ ସବୁ ଜମିଦାରୀମାନଙ୍କରେ ମଧ୍ୟ ଜମିଦାରଙ୍କ କର୍ମଚାରୀମାନେ ବହୁପ୍ରକାର ଭେଟି ଓ ପାଉଣା ଆଦାୟ କରୁଥିଲେ । ସେସବୁ ଜମିଦାରୀମାନଙ୍କ ମଧ୍ୟରୁ ବହୁ ଜମିଦାରୀ କଲିକତାର ଜମିଦାରମାନଙ୍କ ହାତରେ ଥିଲା । ସେମାନେ ଜମିଦାରୀମାନଙ୍କୁ କ୍ୱଚିତ୍ ଆସୁଥିଲେ । ପ୍ରଜାମାନଙ୍କ ସହିତ ସେମାନଙ୍କର କିଛି ପ୍ରତ୍ୟକ୍ଷ ସମ୍ପର୍କ ନଥିଲା କିମ୍ବା କୃଷିର ଉନ୍ନତି ପାଇଁ ସେମାନେ କିଛି କରୁ ନଥିଲେ । ବରଂ ସେମାନେ କୃଷିର ଉନ୍ନତିରେ ପ୍ରତିବନ୍ଧକ ଥିଲେ । ସେହିପରି ଗଉନ୍ତିଆ, ସର୍ବରାକାର, ଇନାମଦାର, ମକଦମ ପ୍ରଭୃତି ସମସ୍ତ ପ୍ରକାର ମଧ୍ୟସ୍ୱତ୍ୱାଧିକାରୀ ପ୍ରଜାମାନଙ୍କୁ ବିଭିନ୍ନ ଉପାୟରେ ଉତ୍ପୀଡ଼ନ କରୁଥିଲେ । କୃଷିର ଉନ୍ନତି ନିମିତ୍ତ ସେମାନଙ୍କର କୌଣସି ଅବଦାନ ନଥିଲା ।

ଜମିଦାରମାନେ ପ୍ରଜାମାନଙ୍କଠାରୁ ବିଭିନ୍ନ ପାଉଣା ଆଦାୟ କରି, କୃଷିର ଉନ୍ନତି ପାଇଁ କିଛି ନକରି, ନିଜେ ବିଳାସବ୍ୟସନରେ ରହି ସମାଜରେ ଗୋଟିଏ ଅନିଷ୍ଟକାରୀ ଆଦର୍ଶ ଦେଖାଉଥିଲେ । ତାଙ୍କ ଦେଖାଦେଖି ମହାଜନ, ବଡ଼ଚାଷୀ, ଓ ବଡ଼ ବଡ଼ ରୟତ ବହୁ ଜମିର ମାଲିକ ହୋଇ ତାହା ଭାଗଚାଷରେ ଲଗାଇ ଭାଗଚାଷୀମାନଙ୍କଠାରୁ ଅଧିକ ପାଉଣା ଆଦାୟ କରି ଜମିଦାରମାନଙ୍କ ପରି ବ୍ୟବହାର କଲେ ଏବଂ ତାଙ୍କ ପରି ବିଳାସ ବ୍ୟସନରେ ରହିଲେ । ସେଥିଯୋଗୁଁ ଗାଁମାନଙ୍କରେ ଜମିରେ ପ୍ରକୃତ ଚାଷ କରୁଥିବା ଚାଷୀମୂଲିଆମାନେ ବହୁ ପରିଶ୍ରମ କରି, ଅନ୍ୟମାନଙ୍କୁ ପାଉଣା ଦେଇ ନିଜେ ଦାରିଦ୍ର୍ୟ, ଦୁଃଖ, ରୋଗ ଶୋକରେ କାଳ କାଟୁଥିଲେ । ବଢ଼ି, ମରୁଡ଼ି, ବାତ୍ୟା ଓ ଦୁର୍ଭିକ୍ଷର ଏମାନେ ହିଁ ପ୍ରଥମେ ଶିକାର ହେଉଥିଲେ । ଜମିଦାର, ମହାଜନ ଏବଂ ଧନୀ ଲୋକମାନେ ବ୍ରିଟିଶ ସରକାରଙ୍କର ସମର୍ଥକ ଥିଲେ । ସୁତରାଂ ବ୍ରିଟିଶ ସରକାର ସେମାନଙ୍କୁ ପକ୍ଷ ପୋଷାଉଥିଲେ । ଦରିଦ୍ର ପ୍ରଜା ଜମିଦାର ଓ ମହାଜନଙ୍କ ବିରୋଧରେ ଆପତ୍ତି କରିବାକୁ ସାହସ କରୁ ନଥିଲେ ।

୧୯୨୧ ମସିହାଠାରୁ ଗାନ୍ଧିଜୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ଫଳରେ ଭାରତର ସବୁ ଅଞ୍ଚଳରେ ନବ ଜାଗରଣ ସୃଷ୍ଟି ହେଲା । ସାଧାରଣ ଲୋକମାନେ ରାଜା, ଜମିଦାର ଓ ମହାଜନମାନଙ୍କ ଅତ୍ୟାଚାର ବିରୋଧରେ ଆପତ୍ତି କରିବାକୁ ସାହସ କଲେ । ୧୯୨୧ ମସିହାଠାରୁ ସ୍ୱାଧୀନତା ଲାଭ ପର୍ଯ୍ୟନ୍ତ ଭାରତୀୟ ଜାତୀୟ କଂଗ୍ରେସ ମଧ୍ୟ ସ୍ୱାଧୀନତା ପରେ ରାଜାମାନଙ୍କର କ୍ଷମତା ଓ ଅତ୍ୟାଚାର, ଜମିଦାରୀ ପ୍ରଥା ଏବଂ ମହାଜନମାନଙ୍କର ଶୋଷଣ ଲୋପ କରିବା ପାଇଁ ଲୋକମାନଙ୍କୁ ପ୍ରତିଶ୍ରୁତି ଦେଲେ । ସ୍ୱାଧୀନତା ଲାଭର ବର୍ଷେ ଦୁଇବର୍ଷ ମଧ୍ୟରେ ପ୍ରାୟ ସବୁ ରାଜ୍ୟରେ ଜମିଦାରୀ ପ୍ରଭୃତି ସବୁ ପ୍ରକାର ମଧ୍ୟସ୍ୱତ୍ୱାଧିକାର ଲୋପ ବିଷୟରେ କମିଟିମାନ ବସିଲା । ଓଡ଼ିଶାରେ ୧୯୪୯ ମସିହାରେ ଜମିଜମା କମିଟି ରାଜ୍ୟରେ ସବୁପ୍ରକାର ମଧ୍ୟସ୍ୱତ୍ୱାଧିକାର ଲୋପ ପାଇଁ ସୁପାରିସ୍ କଲେ । ସେହି ସୁପାରିସ୍ ଅନୁସାରେ ୧୯୫୬ ମସିହାରେ ଓଡ଼ିଶା ସରକାର ଭୂସମ୍ପତ୍ତିରେ ଜମିଦାର, ମାଲ୍‌ଗୁଜାର, ଗଉନ୍ତିଆ, ଜାଗିରଦାର, ମାଫିଦାର ଏବଂ ଇନାମଦାର ପ୍ରଭୃତିଙ୍କର ସମସ୍ତ ପ୍ରକାର ମଧ୍ୟସ୍ୱତ୍ୱାଧିକାର ଲୋପ କଲେ ।

ଜମିଦାରୀ ପ୍ରଭୃତି ପ୍ରଥା ଲୋପ ପରେ ମଧ୍ୟ ବହୁ ଜମିଥିବା ବଡ଼ ଚାଷୀମାନେ ଭାଗଚାଷ ପ୍ରଥାରେ ବହୁ ଜମି ଚାଷ କରାଇ ଭାଗଚାଷୀଙ୍କଠାରୁ ଅତ୍ୟଧିକ ଭାଗ ଆଦାୟ କରୁଥିଲେ । ଭାଗଚାଷ ପ୍ରଥା ନିୟନ୍ତ୍ରଣ କରିବା ପାଇଁ ଓଡ଼ିଶାରେ ୧୯୪୮ ଓ ୧୯୫୫ ମସିହାରେ ଆଇନମାନ ପାସ୍ ହୋଇଥିଲା । କିନ୍ତୁ ବାସ୍ତବ କ୍ଷେତ୍ରରେ ସେ ଆଇନ ସବୁ ଫଳପ୍ରଦ ହୋଇ ନଥିଲା । ଫଳପ୍ରଦ ଭୂସଂସ୍କାର

କରିବା ପାଇଁ ୧୯୬୦ ମସିହାରେ ଓଡ଼ିଶା ଭୂସଂସ୍କାର ଆଇନ ପାସ୍ ହେଲା । ସେ ଆଇନ୍ ଅନୁସାରେ ରାଗବୃଷ ପ୍ରଥା ଲୋପ କରିବା, ଭୂମିମାଲିକମାନଙ୍କର ମାଲିକାନାର ସର୍ବୋଚ୍ଚ ସୀମା ଧାର୍ଯ୍ୟ କରିବା ଏବଂ ସର୍ବୋଚ୍ଚ ସୀମା ପରେ ବଳକା ଜମି ଗରିବ ଭୂମିହୀନ ଲୋକଙ୍କ ମଧ୍ୟରେ ବାଣ୍ଟିବାର ବ୍ୟବସ୍ଥା ହେଲା । ବିଗତ ତିରିଶ ବର୍ଷ ମଧ୍ୟରେ ଏହି ଆଇନର ସର୍ତ୍ତସବୁ କାର୍ଯ୍ୟକାରୀ କରିବାରେ ବହୁ ବାଧାବିଘ୍ନ ଉପୁଜୁଛି ଏବଂ ଏ ବିଷୟରେ କୋର୍ଟ କଚେରିମାନଙ୍କରେ ବହୁ ମକଦମା ଚାଲିଛି । ଆଇନ୍‌ର ସର୍ତ୍ତସବୁ ଲଙ୍ଘନ କରିବା ପାଇଁ ଜମିମାଲିକମାନେ ବହୁ ପ୍ରକାର କୌଶଳ ଅବଲମ୍ବନ କରୁଛନ୍ତି । ସୁତରାଂ ଶତାବ୍ଦୀର ଶେଷ ସୁଦ୍ଧା ଭୂସଂସ୍କାର କାର୍ଯ୍ୟକ୍ରମ ସମ୍ପୂର୍ଣ୍ଣରୂପେ ସଫଳ ହୋଇ ନାହିଁ ଏବଂ ଭାଗଚାଷୀ ପ୍ରଥା ଲୋପ ହୋଇପାରି ନାହିଁ । କିନ୍ତୁ ଶତାବ୍ଦୀ ଶେଷସୁଦ୍ଧା ପୂର୍ବର ଜମିଦାରୀ ପ୍ରଭୃତି ସମସ୍ତ ପ୍ରକାର ମଧ୍ୟସ୍ୱତ୍ୱାଧିକାରୀ ଏବଂ ସେଗୁଡ଼ିକର ଅତ୍ୟାଚାର ଲୋପ ପାଇ ଯାଇଛି । ସାଧାରଣ ଚାଷୀମାନେ ବିଭିନ୍ନପ୍ରକାର ଭୂସଂସ୍କାର ଆଇନ୍ ବିଷୟରେ ସଚେତନ ହୋଇଛନ୍ତି ।

### ମହାଜନ ଓ ଖାତକ

ଆମ ପରିବାର ଗୋଟିଏ ମଧ୍ୟମ ଧରଣର ମହାଜନ ପରିବାର ଥିଲା ଏବଂ ଆମର ଅନେକ ବନ୍ଧୁବାନ୍ଧବ ବଡ଼ ମହାଜନ ଥିଲେ । ପିଲାଦିନୁ ବିଭିନ୍ନ ପ୍ରକାର ମହାଜନୀ କାରବାର ମୁଁ ଦେଖିଛି । ଶତାବ୍ଦୀ ମଧ୍ୟରେ ମହାଜନୀ କାରବାରରେ କିପରି ପରିବର୍ତ୍ତନ ହୋଇଛି ଏବଂ ମହାଜନ ପରିବାରମାନଙ୍କର ଲୋକମାନେ ବର୍ତ୍ତମାନ କି କି ବ୍ୟବସାୟ କରୁଛନ୍ତି ଏବଂ ସେମାନଙ୍କର ଆର୍ଥିକ ଅବସ୍ଥା ବର୍ତ୍ତମାନ କିପରି ଅଛି, ତାହା ନିରୀକ୍ଷଣ କରୁଛି ।

ମହାଜନୀ କାରବାର ଚିରକାଳ ଏ ଦେଶରେ ଥିଲା । ମହାଜନମାନେ ସମାଜରେ ଗୋଟିଏ ଆବଶ୍ୟକ ଓ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ କରନ୍ତି । କାଳେ କାଳେ ଗାଁମାନଙ୍କରେ ସମ୍ପତ୍ତିହୀନ ଓ ଅଭାବଗ୍ରସ୍ତ ଜନତା ମଧ୍ୟରେ ମହାଜନମାନେ ହିଁ ସମ୍ପତ୍ତିର କେନ୍ଦ୍ର ଥିଲେ । ଗାଁମାନଙ୍କର କୃଷିଜାତ ଦ୍ରବ୍ୟମାନଙ୍କର ବିକ୍ରି, ବାହାରୁ ଆସୁଥିବା ଖାଉଟି ଦ୍ରବ୍ୟମାନଙ୍କର କାରବାର, ସୁଖ ଦୁଃଖରେ ଗରିବଲୋକମାନଙ୍କୁ ଋଣଦେବା ଦ୍ୱାରା ମହାଜନମାନେ ଗାଁଲୋକମାନଙ୍କର ପରମ ଉପକାରୀ ରୂପେ କାର୍ଯ୍ୟ କରନ୍ତି । ଏ ସବୁ କାର୍ଯ୍ୟରେ ଆବଶ୍ୟକ ଋଣ ଦେବା ପାଇଁ ମହାଜନମାନଙ୍କ ବ୍ୟତୀତ, ଗାଁ ଲୋକଙ୍କର ବିକଳ୍ପ ସୂତ୍ର ନଥିଲା । ବ୍ରିଟିଶ ରାଜତ୍ୱ କାଳରେ କୋର୍ଟ କଚେରି ସଙ୍ଗଠିତ ହେବାଦ୍ୱାରା ଏବଂ ଜମିବାଡ଼ିରେ ବ୍ୟକ୍ତିଗତ ସ୍ୱତ୍ୱ ସୁଷ୍ଠୁଭାବରେ ପ୍ରତିଷ୍ଠିତ ହେବାଦ୍ୱାରା, ଗ୍ରାମାଞ୍ଚଳରେ ମହାଜନମାନଙ୍କର ସ୍ଥିତି ଅଧିକ ସୁଦୃଢ଼ ହୋଇଥିଲା ।

କିନ୍ତୁ କାଳକ୍ରମେ ମହାଜନମାନେ ଗାଁମାନଙ୍କରେ ଗରିବ ଲୋକମାନଙ୍କର ଅଭାବ, ଅସୁବିଧା ଏବଂ ନିଜର ଧନ-ସମ୍ପତ୍ତିର ସୁଯୋଗ ନେଇ ବହୁ ବୈଧ ଓ ଅବୈଧ ଉପାୟରେ ସେମାନଙ୍କୁ ଶୋଷଣ କଲେ । ମହାଜନମାନେ ଖାତକ-ମାନଙ୍କଠାରୁ ଅତ୍ୟଧିକ ସୁଧ ଆଦାୟ କଲେ, ଋଣ ଓ ସୁଧ ଅନାଦାୟ ହେତୁ କୋର୍ଟ କଚେରିରେ ମକଦମା କରି ଖାତକମାନଙ୍କର ଜମିବାଡ଼ି ନିଲାମ କରିନେଲେ ଏବଂ ସେମାନଙ୍କର ଘର କ୍ରୋକ କଲେ । ଋଣ କାରବାରରେ ସେମାନେ ମଧ୍ୟ ବହୁ ପ୍ରକାର ଜାଲ୍ ଫିସାଦ କଲେ । ଏହି ପ୍ରକ୍ରିୟାରେ ବହୁ ଖାତକଙ୍କର ଜମିବାଡ଼ି ମହାଜନମାନଙ୍କ ହାତକୁ ଗଲା ଏବଂ ସେମାନେ ମହାଜନମାନଙ୍କର ଭାଗଚାଷୀ ହୋଇ କୁଟୁମ୍ବ ପୋଷିଲେ । ସଙ୍କଟ ସମୟରେ ଖାତକମାନେ ମହାଜନ ଦୁଆରକୁ ଯିବାକୁ ବାଧ୍ୟ ହେଉଥିବାରୁ ଏବଂ ଋଣ ପାଇଁ ବିକଳ୍ପ ବ୍ୟବସ୍ଥା ନଥିବାରୁ ମହାଜନ-ମାନଙ୍କୁ ଅସନ୍ତୁଷ୍ଟ କରିବା ଖାତକମାନଙ୍କ ପକ୍ଷରେ ସମ୍ଭବ ନଥିଲା । ମହାଜନ ମାନଙ୍କ ଅନ୍ୟାୟ କାର୍ଯ୍ୟ ବିରୋଧରେ ଆପତ୍ତି କରିବାକୁ ସେମାନଙ୍କର ସାହସ ନଥିଲା ।

୧୯୨୧ ମସିହାର ଅସହଯୋଗ ଆନ୍ଦୋଳନ ଫଳରେ ସାଧାରଣ କୃଷୀ ଓ ଖାତକମାନଙ୍କ ମଧ୍ୟରେ ଚେତନା ଜାଗ୍ରତ ହେଲା । ୧୯୩୦ ମସିହାରୁ ୧୯୩୪ ମସିହା ମଧ୍ୟରେ କୃଷିଜାତ ଦ୍ରବ୍ୟମାନଙ୍କର ଦର କ୍ରମାନ୍ୱୟରେ ଅତ୍ୟଧିକ ହ୍ରାସ ହେବାରୁ ଖାତକମାନଙ୍କର ଋଣଭାର ଅତ୍ୟଧିକ ହୋଇଗଲା ଏବଂ ସେମାନେ ଋଣ ପରିଶୋଧ କରିପାରିଲେ ନାହିଁ । ଫଳରେ ଖାତକମାନଙ୍କ ହାତରୁ ବହୁ ପରିମାଣରେ ଜମିବାଡ଼ି ମହାଜନମାନଙ୍କ ହାତକୁ ଚାଲିଗଲା । ଖାତକମାନେ ହତାଶ ହୋଇ ଅନେକ ଅଞ୍ଚଳରେ ବିଦ୍ରୋହ କଲେ ଏବଂ ମହାଜନମାନଙ୍କ ଉପରେ ଆକ୍ରମଣ କଲେ । ୧୯୩୪ ମସିହାରେ ଓଡ଼ିଶାରେ ମହାଜନ ଆଇନ୍ ପାସ୍ ହେଲା । ବଡ଼ ମହାଜନମାନେ ନାମ ରେଜେଷ୍ଟ୍ରି କରିବାକୁ ବାଧ୍ୟ ହେଲେ । କଚେରିମାନଙ୍କରେ ମଧ୍ୟ ହାକିମମାନେ ମହାଜନମାନଙ୍କୁ ଅତ୍ୟଧିକ ସୁଧହାର ମଞ୍ଜୁର କଲେ ନାହିଁ । ଯୁଦ୍ଧବେଳେ ସ୍ୱାଧୀନତା-ସଂଗ୍ରାମୀମାନେ ରଜା, ଜମିଦାର ଓ ମହାଜନମାନଙ୍କ ଅତ୍ୟାଚାର ବିରୋଧରେ ପ୍ରଚାର କରୁଥିଲେ । ଅନିଶ୍ଚିତ ପରିସ୍ଥିତିରେ ମହାଜନମାନେ ଡରିଗଲେ ଏବଂ ମହାଜନ କାରବାର ମାନ୍ଦା ପଡ଼ିଗଲା ।

ସ୍ୱାଧୀନତା ପରେ କ୍ରମାଗତଭାବେ ଦରଦାମ ବୃଦ୍ଧି ପାଇବା ହେତୁ ଖାତକ-ମାନଙ୍କର ଋଣଭାର ଲଘୁ ହୋଇଗଲା । ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକ୍ରମରେ ସମବାୟ ସମିତି ମାନଙ୍କର ପୁନରୁଦ୍ଧାର, ଗ୍ରାମ୍ୟ ଉନ୍ନୟନ ଯୋଜନା, ବ୍ୟାଙ୍କ ଜାତୀୟକରଣ, କ୍ଷୁଦ୍ରଚାଷୀ ଓ ଭୂମିହୀନ ବ୍ୟକ୍ତିଙ୍କୁ ଅଗ୍ରାଧିକାର ଭିତ୍ତିରେ ଅଳ୍ପ

ସୁଧରେ ଋଣଦାନ ପ୍ରଭୃତି ହେତୁ ସାଧାରଣ କୃଷୀ ମୂଲିଆ ଲୋକଙ୍କ ଋଣ ପାଇବାର ବିକଳ୍ପ ବ୍ୟବସ୍ଥା ମିଳିଲା । ରାଜନୈତିକ ଚାପରେ ବହୁ କୃଷୀଙ୍କର ଋଣ ଅରକୁଅର ଛାଡ଼ ହୋଇଗଲା । ସମବାୟ ସମିତିମାନଙ୍କରୁ ନେଇଥିବା ଋଣ ନ ଦେଇପାରିଲେ ଜମିବାଡ଼ି ସହଜରେ ନିଲାମ ହେଲା ନାହିଁ କିମ୍ବା ଘର କୋରକ ହେଲା ନାହିଁ । ଫଳରେ ଗାଁ ମାନଙ୍କରେ ପୂର୍ବ ପଦ୍ଧତିର ମହାଜନ କାରବାର ବହୁ ପରିମାଣରେ କମିଗଲା ।

କିନ୍ତୁ ଏହାଦ୍ୱାରା ମହାଜନ ପରିବାରମାନେ ନିର୍ଦ୍ଧନ କିମ୍ବା ସର୍ବସ୍ୱାନ୍ତ ହୋଇଗଲେ ନାହିଁ । ଧନୀ ଲୋକଙ୍କ ଧନ ବିଭିନ୍ନ ଦିଗରେ ବଢ଼ିବାର ବାଟ ପାଏ ଏବଂ ଧନ ସମାଜରେ ବିଭିନ୍ନ ପ୍ରକାର କ୍ଷମତା ଅଧିକାର କରିବାର ଅସ୍ତ୍ର ହୁଏ । ମହାଜନ ପରିବାରର ଲୋକମାନେ ସେମାନଙ୍କର ଧନ ଅନ୍ୟ ଦିଗରେ ଖଟାଇବାକୁ ଉଦ୍ୟମ କଲେ । ତାଙ୍କ ପିଲାମାନେ ପାଠ ପଢ଼ି ବଡ଼ ବଡ଼ ସରକାରୀ ଚାକିରି କଲେ । ଓକିଲ, ଡାକ୍ତର, ଇଞ୍ଜିନିୟର ହେଲେ । ସେମାନେ ଗାଁରେ ଏବଂ ସହର-ମାନଙ୍କରେ ଶ୍ରେଷ୍ଠ ବଡ଼ ବ୍ୟବସାୟ କଲେ, କଣ୍ଟ୍ରାକ୍ଟର ହେଲେ, ସହରମାନଙ୍କରେ ଘର କରି ଭଡ଼ାଦେଲେ, ଗାଁରେ ଓ ସହରରେ ଧାନକଲ, ସିନେମାଘର, କଣ୍ଟ୍ରୋଲ ଦୋକାନ, ଇଟାଭାଟି, ପେଟ୍ରୋଲ୍ ପମ୍ପ, କୋଇଲା ଗୋଦାମ, ଟ୍ରକ ଓ ବସ୍ ଚଲାଇବା ପ୍ରଭୃତି ବହୁପ୍ରକାର ଲାଭଜନକ ବ୍ୟବସାୟରେ ଟଙ୍କା ଲଗାଇ ପୂର୍ବ ଅପେକ୍ଷା ଅଧିକ ଧନୀ ହୋଇଗଲେ । ଧନ ବଳରେ ସାମାଜିକ ଓ ରାଜନୈତିକ କ୍ଷମତା ହାସଲ କଲେ । ସେମାନେ ସରପଞ୍ଚ, ପଞ୍ଚାୟତ ସମିତି ସଭ୍ୟ ଓ ସଭାପତି, ବିଧାନସଭା ସଭ୍ୟ, ମନ୍ତ୍ରୀ ପ୍ରଭୃତି ହେବାର ସୁଯୋଗ ପାଇଲେ । ସେମାନେ ଗ୍ରାମ୍ୟ ସମାଜର ନେତୃତ୍ୱ ନେଲେ ଏବଂ ରାଜନୈତିକ ଦଳମାନେ ଭୋଟ ପାଇବା ପାଇଁ ଅନେକ ପରିମାଣରେ ସେହିମାନଙ୍କ ଉପରେ ନିର୍ଭର କଲେ । କ୍ଷୁଦ୍ରକୃଷୀ ଓ ମୂଲିଆ ଶ୍ରେଣୀର ଲୋକମାନେ ବିଭିନ୍ନ ସୂତ୍ରରୁ ଋଣ ପାଇ ମୂଲଲାଗି କୌଣସି ପ୍ରକାରେ ଚଳିଯାଉଛନ୍ତି । କିନ୍ତୁ ସେମାନଙ୍କର ଧନୀ ହେବାର ସୁଯୋଗ ଖୁବ୍ କମ୍ । ଶତାବ୍ଦୀର ଶେଷବେଳକୁ ସମାଜ ବଦଳିଯାଇଛି ଏବଂ ଧନ ଆଗମର ପନ୍ଥା ମଧ୍ୟ ବଦଳିଯାଇଛି ।

## ଶସ୍ତା ଓ ମହଙ୍ଗା କାଳ

ଆମ ପିଲାଦିନେ ୧୯୨୦ ମସିହା ଠାରୁ ୧୯୩୦ ମସିହା ମଧ୍ୟରେ ସବୁ ପ୍ରକାର ଜିନିଷ ଶସ୍ତା ଥିଲା । ୧୯୨୯ ମସିହାରେ ଆମେ ମାଇନର ସ୍କୁଲରେ ପଢ଼ୁଥିଲାବେଳେ ଚାଉଳ ଟଙ୍କାରେ ବାରସେର ମିଳୁଥିଲା ଏବଂ ଜଣେ ପିଲା ମାସକୁ ତିନି ଚାରି ଟଙ୍କାରେ ହଷ୍ଟେଲରେ ରହି ଚଳିପାରୁଥିଲା । ଶତାବ୍ଦୀର ଆରମ୍ଭରେ

୧୯୦୦ ମସିହା ପାଖାପାଖି ସମୟରେ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ଓ ଭରତ ନାୟକ ପ୍ରଭୃତି ଯେତେବେଳେ ସ୍କୁଲରେ ପଢ଼ୁଥିଲେ, ସେତେବେଳେ କଟକ, ପୁରୀ ପ୍ରଭୃତି ଅଞ୍ଚଳରେ ଚାଉଳ ଟଙ୍କାରେ ୧୬ ସେରରୁ ୧୮ ସେର୍, ବଡ଼ ଚିଙ୍ଗୁଡ଼ିମାଛ ପଇସାକୁ ଅଧସେର, ଘିଅ ପଇସାକୁ ଗୋଟିଏ ମିଳୁଥିଲା । ବଲାଙ୍ଗୀର ପ୍ରଭୃତି ଗଡ଼ଜାତ ଅଞ୍ଚଳରେ ଜିନଷପତ୍ର ଆହୁରି ଶସ୍ତା ଥିଲା । ଭରତ ନାୟକ ଲେଖିଛନ୍ତି ଯେ ସେତେବେଳେ ସେଠାରେ ଚାଉଳ ଟଙ୍କାରେ ମହଣେ ବା ୪୦ ସେର ମିଳୁଥିଲା । ସ୍କୁଲ ହଷ୍ଟେଲମାନଙ୍କରେ ଜଣେ ପିଲା ମାସକୁ ଦୁଇଟଙ୍କା ଖର୍ଚ୍ଚରେ ଚଳିଯାଉଥିଲା । ସେ ସମୟ ତୁଳନାରେ ୧୯୨୯-୩୦ ମସିହା ବେଳକୁ ଦରଦାମ ଖୁବ୍ ବେଶି ବଢ଼ି ନଥିଲା ।

୧୯୩୨ ମସିହା ଠାରୁ ୧୯୩୫ ମସିହା ମଧ୍ୟରେ ଆମେ କଟକରେ ହାଇସ୍କୁଲରେ ପଢ଼ୁଥିଲାବେଳେ ଚାଉଳ ଟଙ୍କାରେ କଟକ ବାରସେର, ଘିଅ ଟଙ୍କାରେ ଏକସେର, ରୋହି ଭାକୁଡ଼ି ମାଛ ଟଙ୍କାରେ ଏକସେର ଥିଲା । ୧୯୩୬ ମସିହାରୁ ୧୯୪୦ ମସିହା ମଧ୍ୟରେ ଆମେ ରେଭେନ୍‌ସା କଲେଜରେ ପଢ଼ୁଥିଲା-ବେଳେ ଦରଦାମ୍ ୧୯୩୧-୩୨ ମସିହା ଦରଦାମ୍‌ଠାରୁ ଅଧିକ ହୋଇ ନ ଥିଲା । କଲେଜ ହଷ୍ଟେଲରେ ଜଣେ ପିଲା କଲେଜ ଦରମା, ହଷ୍ଟେଲ ସିଟ୍‌ରେଣ୍ଟ, ଖାଇବା ପିଇବା ଖର୍ଚ୍ଚ ମିଶାଇ ମାସକୁ ୨୫ ଟଙ୍କାରେ ସ୍ୱଚ୍ଛନ୍ଦରେ ଚଳିପାରୁଥିଲା । ୧୯୪୦ ମସିହାରେ ମୁଁ ବିହାରର ପାଟନା କଲେଜରେ ପଢ଼ିବାକୁ ଗଲି । ସେଠାରେ ଚାଉଳ, ଡାଲି, ପରିବା, ଘିଅ, ଦୁଧ, ମାଛ, ମାଂସ କଟକଠାରୁ ଅଧିକ ଶସ୍ତା ଥିଲା । ମାସକୁ ମାତ୍ର ସାତଟଙ୍କା ଆଠଅଣାରେ ମେସ୍‌ରେ ମିଲ୍ ଓ ଜଳଖିଆ ଯଥେଷ୍ଟ ଖାଇବାକୁ ମିଳୁଥିଲା । ସେତେବେଳେ ଆଲ୍ଲାହାବାଦ ଓ ବନାରସ୍ ବିଶ୍ୱବିଦ୍ୟାଳୟର ହଷ୍ଟେଲମାନଙ୍କରେ ମଧ୍ୟ ପିଲାମାନେ ସେହିପରି ଶସ୍ତାରେ ଖାଇବାକୁ ପାଉଥିଲେ । ମୋଟ ଉପରେ ବିଂଶ ଶତାବ୍ଦୀର ୧୯୦୦ ମସିହାଠାରୁ ୧୯୪୦ ମସିହା ପର୍ଯ୍ୟନ୍ତ ଓଡ଼ିଶା ସମେତ ଭାରତବର୍ଷର ସବୁଆଡ଼େ ଥିଲା ଶସ୍ତାଯୁଗ । ରାସ୍ତାଘାଟ ଓ ସହର ବଜାର ନ ଥିବା ଅଞ୍ଚଳରେ ଜିନଷପତ୍ର ଅଧିକ ଶସ୍ତା ଥିଲା ।

୧୯୪୧ ମସିହାଠାରୁ ସେ ଶସ୍ତାଯୁଗର ପରିବର୍ତ୍ତନ ଆରମ୍ଭ ହେଲା । ୧୯୪୧ ମସିହା ଡିସେମ୍ବର ମାସରେ ଜାପାନୀମାନେ ଯୁଦ୍ଧରେ ଯୋଗଦେଲେ, ୧୯୪୨ ମସିହାରେ ଭାରତ ଛାଡ଼ ଆନ୍ଦୋଳନ ହେଲା । ୧୯୪୩ ମସିହାରେ ବଙ୍ଗ-ଦେଶରେ ଦୁର୍ଭିକ୍ଷ ଏବଂ ୧୯୪୭ ମସିହାରେ ଦେଶ ବିଭାଜନ ହେଉ ଲକ୍ଷ ଲକ୍ଷ ଲୋକଙ୍କର ଭାରତରୁ ପାକିସ୍ଥାନ ଏବଂ ପାକିସ୍ଥାନ ଓ ବଙ୍ଗଳାଦେଶରୁ ଭାରତକୁ

ସ୍ଥାନାନ୍ତର ହେଲ ଏବଂ କାଶ୍ମୀରରେ ଯୁଦ୍ଧ ଆରମ୍ଭ ହୋଇଗଲ । ଏହିସବୁ ପରସ୍ଥିତିରେ ଦରଦାମ୍ ସବୁଆଡ଼େ ଅତିମାତ୍ରାରେ ବଢ଼ିଗଲ । ୧୯୫୧ ମସିହାରୁ ପଞ୍ଚବାର୍ଷିକ ଯୋଜନାମାନ ଆରମ୍ଭ ହେଲ ଏବଂ ବିଭିନ୍ନ ଉନ୍ନୟନ କାର୍ଯ୍ୟରେ ଶହ ଶହ କୋଟି ଟଙ୍କା ଖର୍ଚ୍ଚ ହେଲ । ୧୯୬୨ ମସିହାରେ ଚୀନ୍‌ଦେଶ ସହ ଏବଂ ୧୯୬୫ ମସିହାରେ ପାକିସ୍ଥାନ ସହ ଯୁଦ୍ଧ ହେଲ । ୧୯୬୭।୬୮ ମସିହାରେ ବିହାର ପ୍ରଭୃତି ଉତ୍ତରଭାରତର ବିସ୍ତୀର୍ଣ୍ଣ ଅଞ୍ଚଳରେ ମରୁଡ଼ି ଓ ଦୁର୍ଭିକ୍ଷ ହେଲ । ୧୯୬୯।୭୦ ମସିହାରୁ ଦରଦାମ୍‌ର ଅତିବୃଦ୍ଧି କାଳ ଆରମ୍ଭ ହେଲ । ତା'ପରେ ପୁଣି ୧୯୮୦ ମସିହାରୁ ୧୯୯୨ ମସିହା ପର୍ଯ୍ୟନ୍ତ ଦରଦାମ୍ କ୍ରମାଗତ ଭାବରେ ହୁହୁ ହୋଇ ବଢ଼ି-ଚାଲିଲ । ତାହା ଶତାବ୍ଦୀ ଶେଷ ଯାଏ ନିୟନ୍ତ୍ରିତ ହୋଇ ପାରନାହିଁ ।

ଜନସଂଖ୍ୟା ବୃଦ୍ଧି, ବିଭିନ୍ନ ଯୋଜନା ପ୍ରକଳ୍ପ ପାଇଁ ବହୁ ଅର୍ଥବ୍ୟୟ ଏବଂ ସେହି ଅନୁପାତରେ ଉତ୍ପାଦନ ବୃଦ୍ଧି ନହେବା, ସରକାରୀ ବଜେଟରେ କ୍ରମାନ୍ୱୟରେ ନିଅଣ୍ଟିଆ ପରିମାଣ ବୃଦ୍ଧି ଦେଶରୁ ଏବଂ ବିଦେଶରୁ ଋଣ ପରିମାଣ ବୃଦ୍ଧି, ଅଧିକ ନୋଟ ଛପାଇ ମୁଦ୍ରା ପରିମାଣ ବୃଦ୍ଧି, ସରକାରୀ, କର୍ମଚାରୀ, କଳ-କାରଖାନା ଶ୍ରମିକମାନଙ୍କର ମଜୁରି ବୃଦ୍ଧି, ଯୋଜନାରେ ଅପବ୍ୟୟ, କଳାବଜାର ଓ ହଜାର ହଜାର କୋଟି ଟଙ୍କାର କଳାଧନ ସୃଷ୍ଟି, ଦୁର୍ନୀତି ପ୍ରଭୃତି ହେତୁ ବଜାରରେ ଟଙ୍କା ଉଡ଼ୁଛି, ମାତ୍ର ତା ତୁଳନାରେ ଜିନିଷପତ୍ର ନାହିଁ । ଫଳରେ ପ୍ରତିଦିନ ଜିନିଷପତ୍ରର ଦାମ୍ ବଢ଼ିଯାଉଛି । ୧୯୯୩ ମସିହା ବେଳକୁ ଚାଉଳ କଲେକୁ ୬।୭ ଟଙ୍କା, ଅଣ୍ଡା କଲେ ଚାରିଟଙ୍କା, ମାଛ କଲେ ୪୦ ଟଙ୍କା, ମାଂସ କଲେ ୬୦ ଟଙ୍କା, ଏବଂ ଭଲ ଲୁଗା ଖଣ୍ଡକୁ ୬୦।୭୦ ଟଙ୍କା, ଚାହା କପ୍‌କୁ ଟଙ୍କାଟାଏ ଏବଂ ପାନ ଖଣ୍ଡକୁ ପଚାଶ ପଇସାରୁ ଏକଟଙ୍କା ହୋଇଛି ।

ଦରଦାମ୍ ସହିତ ସରକାରୀ କର୍ମଚାରୀ ଏବଂ ମଜୁରିଆମାନଙ୍କର ଦରମା ଓ ମଜୁରି ବଢ଼ିଯାଉଛି । ଯୁଦ୍ଧ ପୂର୍ବରୁ ଜଣେ ପିଅନ ଦଶଟଙ୍କା ପାଉଥିବା ସ୍ଥଳେ ବର୍ତ୍ତମାନ ୯୦୦ରୁ ୧୦୦୦ ଟଙ୍କା ପାଉଛି । ବଡ଼ ବଡ଼ ଅଫିସରମାନେ ମାସକୁ ୪୦୦୦ରୁ ୮୦୦୦ ଟଙ୍କା ଦରମା ପାଉଛନ୍ତି ଏବଂ ଦିନମଜୁରିଆ ଦିନକୁ ୨୫ ଟଙ୍କା ପାଉଛି । ତଥାପି ସମସ୍ତଙ୍କର ଅଭାବ । କାରଣ ଜିନିଷପତ୍ରର ଦରଦାମ୍ ମଜୁରିର ଆଗେ ଆଗେ ଚାଲିଛି । ଦରବୃଦ୍ଧି ହେତୁ ଅଳ୍ପସଂଖ୍ୟକ ଶିଳ୍ପପତି, ବ୍ୟବସାୟୀ, ବଡ଼ ବଡ଼ ଚାଷୀ, କଳାବଜାରୀ, ଦୁର୍ନୀତିଗ୍ରସ୍ତ କର୍ମଚାରୀ ଓ ରାଜନୈତିକ ବ୍ୟକ୍ତି ଏବଂ କଣ୍ଟ୍ରାକ୍ଟର ପ୍ରଭୃତି ଅଧିକରୁ ଅଧିକ ଧନୀ ହୋଇଯାଉଛନ୍ତି, ମାତ୍ର ଶ୍ରେଟଚାଷୀ, କଳକାରଖାନାମାନଙ୍କର ଶ୍ରମିକ, ସାଧାରଣ ସରକାରୀ ଓ ବେସରକାରୀ କର୍ମଚାରୀ ପ୍ରଭୃତି ଯେଉଁମାନଙ୍କ ସଂଖ୍ୟା ମୋଟ ଲୋକସଂଖ୍ୟାର ଶତକଡ଼ା ୯୦ ଭାଗ,

ସେମାନଙ୍କର ଆୟ ଦରବୃଦ୍ଧି ଅନୁସାରେ ବଢ଼ୁନାହିଁ । ଫଳରେ ସେମାନେ ଅଭାବ, ଅନଟନ ଓ ଦୁଃଖରେ ଚଳୁଛନ୍ତି । ଶତାବ୍ଦୀର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଦରଦାମର ଏହିପରି ଗତି ଆମ ସମୟର ସମସ୍ତ ଲୋକ ଅନୁଭବ କରିଛନ୍ତି । ଆମ ଜୀବନର ପ୍ରଥମ କୋଡ଼ିଏ ପଚିଶ ବର୍ଷ ଶସ୍ତାକାଳ ଥିଲା । ତା'ପରଠୁଁ ପ୍ରାୟ ପଚିଶ ବର୍ଷ ମହଙ୍ଗା କାଳ ଆମକୁ ଗ୍ରାସ କଲା । ଶେଷକାଳର ଅବସ୍ଥା ଅତି ଦୁସ୍ତର ହୋଇଛି ।

## ଗଣ-ଦାରିଦ୍ର୍ୟ

ଗଣ ଦାରିଦ୍ର୍ୟ ଓଡ଼ିଶାରେ ଚିରକାଳ ଲାଗି ରହିଛି । ବ୍ରିଟିଶ ଶାସନ ପୂର୍ବରୁ ଓଡ଼ିଶାର ଜନସାଧାରଣ ଦରିଦ୍ର ଥିଲେ ଏବଂ ବିଂଶ ଶତାବ୍ଦୀର ଶେଷରେ ମଧ୍ୟ ସେମାନେ ଦରିଦ୍ର ଅଛନ୍ତି । ବନ୍ୟା, ବାତ୍ୟା ଓ ମରୁଡ଼ି ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟ ଓଡ଼ିଶାରେ ଚିରକାଳ ଥିଲା ଏବଂ ଦୁର୍ଭିକ୍ଷ, ଖାଦ୍ୟାଭାବ ଏବଂ ହଇଜା, ବସନ୍ତ ପରି ମହାମାରୀରେ ବହୁଲୋକ ଚିରକାଳ ମରୁଥିଲେ । ଇଂରେଜ ରାଜତ୍ୱ କାଳରେ ବିଶେଷତଃ ଊନବିଂଶ ଶତାବ୍ଦୀର ଶେଷଭାଗ ପର୍ଯ୍ୟନ୍ତ ସାଧାରଣ ଲୋକଙ୍କର ଦାରିଦ୍ର୍ୟ ବୃଦ୍ଧି ପାଇଥିଲା । ସରକାର ଲୋକମାନଙ୍କର ଆର୍ଥିକ ଉନ୍ନତି ଉପରେ ଦୃଷ୍ଟି ଦେଉ ନଥିଲେ । ରାଜ୍ୟରେ ରାସ୍ତାଘାଟ ଓ ଜଳସେଚନ ପ୍ରଭୃତିର ସୁବିଧା ନଥିଲା । ଜମିଦାର, ମହାଜନମାନଙ୍କର ପ୍ରତିପତ୍ତି ବଢ଼ିଥିଲା । କୁଟୀର-ଶିଳ୍ପମାନ ଲୋପ ପାଇଯାଇଥିଲା । କୃଷିର କିଛି ଉନ୍ନତି ହୋଇ ନଥିଲା । ଅତି ଅଳ୍ପ ଲୋକ ଲେଖିପଢ଼ି ଜାଣିଥିଲେ । ସହର ବଜାରରେ ସରକାରୀ କମ୍ପା ବେସରକାରୀ ସଂସ୍ଥାମାନଙ୍କରେ ଚାକିରିକରିବା ସୁବିଧା ଅତି ଅଳ୍ପ ଥିଲା । ଫଳରେ ସାଧାରଣ ଲୋକମାନେ ବେକାର, ସମ୍ବଳହୀନ, ଋଣଗ୍ରସ୍ତ ଏବଂ ରୋଗାକ୍ରାନ୍ତ ହୋଇ ଭିକାରି ପରି ଗରିବ ହୋଇଗଲେ ।

ବିଂଶ ଶତାବ୍ଦୀର ଶେଷରେ ମଧ୍ୟ ଗଣଦାରିଦ୍ର୍ୟର ଅନ୍ତ ଦେଖାଯାଇ ନାହିଁ । ଓଡ଼ିଶାର ଜନସଂଖ୍ୟାର ପ୍ରାୟ ୨୩ ଭାଗ ଆଦିବାସୀ । ସେମାନେ ପ୍ରଧାନତଃ ରାଜ୍ୟର ପଶ୍ଚିମ ଓ ଦକ୍ଷିଣ ଅଞ୍ଚଳରେ ଛଅଗୋଟି ଜିଲ୍ଲାରେ ବାସ କରନ୍ତି । ସେମାନେ ସବୁକାଳେ ଦରିଦ୍ର ଥିଲେ, ଆଜି ମଧ୍ୟ ଅଛନ୍ତି । ନିଜର ଅତି ଅଳ୍ପ ଜମିର ଫସଲରେ ସେମାନେ ବର୍ଷକୁ ତିନିମାସରୁ ଅଧିକ କାଳ ଚଳିପାରନ୍ତି ନାହିଁ । ମୂଲଲାଗି, ବଣ ଜଙ୍ଗଲ ପଦାର୍ଥ ସଂଗ୍ରହ କରି ବଣ ଜଙ୍ଗଲ ପରିବେଶରେ କୁଡ଼ିଆ ଘରେ ଜୀବନ ଯାପନ କରନ୍ତି ।

ଆଦିବାସୀଙ୍କ ପରେ ରାଜ୍ୟର ଜନସଂଖ୍ୟାର ଆଉ ଶତକଡ଼ା ପନ୍ଦର ଭାଗ ହରିଜନ ଓ ଅନୁସୂଚିତ ଜାତିର ଲୋକ । ସେମାନଙ୍କର ସଂଖ୍ୟା ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ଅଧିକ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଲୋକ କୃଷି-ଶ୍ରମିକ

ସ୍ୱବରେ ଏବଂ ଅଳ୍ପସଂଖ୍ୟକ ଲୋକ ଭାଗଚାଷୀ ରୂପେ କାମ କରନ୍ତି । ସେମାନଙ୍କର ନିଜର ଜମିବାଡ଼ି ନାହିଁ । ଆଗେ ଘରଡିହ ମଧ୍ୟ ନଥିଲା । ଶତାବ୍ଦୀର ଆରମ୍ଭରେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଦରିଦ୍ର ଓ ନିରକ୍ଷର ଥିଲେ । ଶତାବ୍ଦୀର ଶେଷରେ ବିଭିନ୍ନ ପ୍ରକାର ଦାରିଦ୍ର୍ୟ ଦୂରୀକରଣ କାର୍ଯ୍ୟକ୍ରମ ସତ୍ତ୍ୱେ ସେମାନଙ୍କର ଆର୍ଥିକ ଅବସ୍ଥାରେ ବିଶେଷ ଉନ୍ନତି ହୋଇ ନାହିଁ ।

ଆଦିବାସୀ ଓ ହରିଜନମାନଙ୍କୁ ମିଶାଇ ଜନସଂଖ୍ୟାର ୩୮ ଭାଗ ପଡେ, ଆଉ ଶତକଡ଼ା ୨୮ ଭାଗ ଅନ୍ୟ ଅନୁନ୍ନତ ଶ୍ରେଣୀର ଲୋକ । ଏମାନେ ସାଧାରଣତଃ ହାଟୁଆ ଜାତିର ଲୋକ ଏବଂ ବେପାରବାଣିଜ, ଓ ବିଭିନ୍ନ ପ୍ରକାର କୌଳିକ ବ୍ୟବସାୟ ଓ କୁଟୀର ଶିଳ୍ପ କରି ଏବଂ କ୍ଷୁଦ୍ର ଓ ନାମମାତ୍ର ଚାଷୀରୂପେ କାର୍ଯ୍ୟକରି ଯେ କୌଣସି ପ୍ରକାରେ ଜୀବିକା ନିର୍ବାହ କରନ୍ତି । ଏମାନଙ୍କ ମଧ୍ୟରୁ ତେଲି, ଶୁଣ୍ଢି ପ୍ରଭୃତି ଅଳ୍ପ କେତେକ ଜାତିର ଲୋକ ସାଧାରଣତଃ ସ୍ୱଚ୍ଛଳ । ଅନ୍ୟ ସମସ୍ତେ ଦରିଦ୍ର ଭାବରେ ବାସ କରନ୍ତି । ଏମାନଙ୍କ ମଧ୍ୟରେ ସାକ୍ଷରତା କମ୍ ଏବଂ ପାଠ ପଢ଼ି ଚାକିରି କରିବା ଲୋକ ମଧ୍ୟ ଅଳ୍ପ ।

ବାକି ରାଜ୍ୟର ଶତକଡ଼ା ୩୪ ଭାଗ ଲୋକ ଉଚ୍ଚଜାତିର ଲୋକ । ଏହିମାନଙ୍କ ମଧ୍ୟରେ ଅଧିକାଂଶ ବଡ଼ ଜମିମାଲିକ ଓ ଚାଷୀ, ଜମିଦାର ଓ ମହାଜନ, ଅଧିକ ରୋଜଗାର କରୁଥିବା ସରକାରୀ ଓ ବେସରକାରୀ କର୍ମଚାରୀ, ଓକିଲ, ମୋକ୍ତାର, ଡାକ୍ତର, ଇଞ୍ଜିନିଅର, ଶିକ୍ଷକ ପ୍ରଭୃତି ଅଛନ୍ତି । ମାତ୍ର ସେମାନଙ୍କର ମୋଟ ସଂଖ୍ୟା ସେହି ଜାତିମାନଙ୍କର ଲୋକସଂଖ୍ୟା ତୁଳନାରେ ଖୁବ୍ କମ୍ । ଉଚ୍ଚ ଜାତିର ଲୋକମାନଙ୍କ ମଧ୍ୟରୁ ମଧ୍ୟ ବହୁ ଲୋକ ଗ୍ରେଟଚାଷୀ ଏବଂ ଭାଗଚାଷୀ ଓ କୃଷିଶ୍ରମିକ ଅଛନ୍ତି । ଶତାବ୍ଦୀର ଶେଷସୁଦ୍ଧା ଓଡ଼ିଶାରେ କାମ କରି ରୋଜଗାର କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଶତକଡ଼ା ୪୭ ଭାଗ ଚାଷୀ ଏବଂ ୨୭ ଭାଗ କୃଷିଶ୍ରମିକ । ଚାଷୀମାନଙ୍କ ମଧ୍ୟରେ ଶତକଡ଼ା ୧୫ ଭାଗ ନାମମାତ୍ର ଚାଷୀ, ୨୭ ଭାଗ କ୍ଷୁଦ୍ର ଚାଷୀ ଏବଂ ୨୮ ଭାଗ ମଧ୍ୟମ ଧରଣର ଚାଷୀ । କେବଳ ଶତକଡ଼ା ୯ ଭାଗ ବଡ଼ ଚାଷୀ । ସୁତରାଂ ଉଚ୍ଚଜାତି ଲୋକମାନଙ୍କ ମଧ୍ୟରୁ ଅଳ୍ପ କେତେକ ଲୋକ ସ୍ୱଚ୍ଛଳ । ଅନ୍ୟମାନେ ଗରିବ । ୧୯୫୦ ମସିହା ପୂର୍ବରୁ ଏହି ସବୁ ଜାତିରେ ଗରିବଙ୍କ ସଂଖ୍ୟା ଅଧିକ ଥିଲା । ବର୍ତ୍ତମାନ ତୁଳନାତ୍ମକ ଭାବରେ କମିଯାଉଛି ।

୧୯୨୦ ମସିହାଠାରୁ ୧୯୫୦ ମସିହା ମଧ୍ୟରେ ଆମ ଗାଁର ଉଚ୍ଚଜାତି ବ୍ରାହ୍ମଣ ଓ ଖଣ୍ଡାୟତ ପ୍ରଭୃତି ଜାତିର ଲୋକଙ୍କର ଉତ୍କଟ ଦାରିଦ୍ର୍ୟ ମୁଁ ନିଜେ ଦେଖିଛି । ଅଧିକାଂଶ ପରିବାରର ଜମି ପରିମାଣ, ଘରେ ଆସ୍‌ବାବ୍ ପତ୍ର, ଲୁଗାପଟା ଖାଇବା ପିଇବା ପ୍ରଣାଳୀ ଓ ପରିମାଣ, ଋଣ ଓ ସମ୍ପତ୍ତି ପରିମାଣ ବିଷୟରେ

ମୋର ପ୍ରତ୍ୟକ୍ଷ ଜ୍ଞାନ ଥିଲା । ବହୁ ପରିବାରଙ୍କର ଧାନ ଚାଉଳ ବର୍ଷକଯାକ ଯାଏ ନାହିଁ, ମହାଜନଘରୁ କରଜ ଆଣିବାକୁ ପଡ଼େ । ପରିବାରର ଲୋକମାନଙ୍କୁ ଦୁଇଓଳି ପେଟପୂରା ଭାତ ଖାଇବାକୁ ଏବଂ ପିଲାମାନଙ୍କୁ ମୁଢ଼ି, ଚୁଡ଼ା ମିଳେ ନାହିଁ । ଘରର ଆସବାବ୍‌ପତ୍ର ଓ ଲୁଗାପଟା କଥା ଛାଡ଼ । ସୁତରାଂ ୧୯୫୦ ମସିହା ପୂର୍ବରୁ କେବଳ ଯେ ଆଦିବାସୀ, ହରିଜନ ଓ ଅନ୍ୟ ଅନୁନ୍ନତ ଜାତିର ଲୋକମାନେ ଗରିବ ଥିଲେ ତାହା ନୁହେଁ । ଉଚ୍ଚଜାତିର ଲୋକମାନଙ୍କ ମଧ୍ୟରେ ମଧ୍ୟ ଦାରିଦ୍ର୍ୟ ବ୍ୟାପକ ଥିଲା । କେବଳ ଅଳ୍ପସଂଖ୍ୟକ ଲୋକଙ୍କୁ ଛାଡ଼ିଦେଲେ, ରାଜ୍ୟର ସାଧାରଣ ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ଖାଇବା ପିଇବାରେ ଅଭାବ ଅନୁଭବ କରୁଥିଲେ ଏବଂ ଋଣଗ୍ରସ୍ତ ଓ ବିଭିନ୍ନ ପ୍ରକାର ରୋଗରେ ପୀଡ଼ିତ ଥିଲେ । ଆମ ସମାଜର ସ୍ୱାଧୀନତା ପୂର୍ବବର୍ତ୍ତୀ ଚିତ୍ର ଗଣ-ଦାରିଦ୍ର୍ୟ ଓ ବୁଭୁକ୍ଷାର ଚିତ୍ର ଥିଲା ।

ଲୋକମାନଙ୍କର ବ୍ୟକ୍ତିଗତ ଦାରିଦ୍ର୍ୟ ବ୍ୟତୀତ ସାମାଜିକ ଓ ଅର୍ଥନୈତିକ ପରିବେଶ ଗଣ-ଦାରିଦ୍ର୍ୟର କାରଣ ଓ ପରିଣତି ଥିଲା । ଉପକୂଳବର୍ତ୍ତୀ ଜିଲ୍ଲା-ମାନଙ୍କରେ ଗ୍ରାମାଞ୍ଚଳରେ ରାସ୍ତାଘାଟ ନ ଥିଲା ଏବଂ ନଈ ନାଳରେ ପୋଲ ନ ଥିଲା । ଗାଁ ଗୋହିରୀ ଓ ଦାଣ୍ଡମାନ ବର୍ଷାଦିନେ କାଦୁଅ ଏବଂ ଶୀତ ଓ ଖରାଦିନେ ଧୂଳିରେ ପୂର୍ଣ୍ଣ ଥିଲା । ଗଡ଼ଜାତ ଅଞ୍ଚଳରେ ରାସ୍ତାଘାଟ ଜଙ୍ଗଲ ଓ ହିଂସ୍ରଜନ୍ତୁ-ପୂର୍ଣ୍ଣ ଥିଲା । ସବୁ ଅଞ୍ଚଳର ଲୋକମାନେ ବେଶି ଦୂରବାଟ ଯାଇପାରୁ ନ ଥିଲେ । ନିକଟବର୍ତ୍ତୀ ଗାଁମାନଙ୍କୁ ପାଦରେ ଯିବା ଆସିବା କରୁଥିଲେ । ଅଳ୍ପସଂଖ୍ୟକ ଜିଲ୍ଲାନ୍ତର୍ଗତ ରାସ୍ତାର ଅଧେ ଅଂଶ ନାଲିଗୋଡ଼ିରେ ପକ୍‌କା ଥିଲାବେଳେ ଆଉ ଅଧେ କଚା ଥିଲା । ଗାଁ ଓ ସହରମାନଙ୍କ ମଧ୍ୟରେ ଯିବା ଆସିବା ଓ ମାଲ ପରିବହନ କୁଳି ଗ୍ରେଟବସ୍ ଏବଂ ବଳଦଗାଡ଼ି ସାହାଯ୍ୟରେ ହେଉଥିଲା । ରାସ୍ତାରେ ଟ୍ରକ୍ ମୋଟେ ଚାଲୁ ନ ଥିଲା । ବଢ଼ି, ମରୁଡ଼ି, ବାତ୍ୟା ପ୍ରଭୃତି ପ୍ରାକୃତିକ ବିପର୍ଯ୍ୟୟ ଏବଂ ହଇଜା, ବସନ୍ତ, ମାଲେରିଆ, ବାତଜର, ଆମାଶୟ ପ୍ରଭୃତି ରୋଗ ଗ୍ରାମବାସୀଙ୍କର ଚିର ସହଚର ଥିଲା । ଗ୍ରାମାଞ୍ଚଳରେ ପୋଷ୍ଟଅଫିସ୍, ହାଇସ୍କୁଲ୍, ଡାକ୍ତରଖାନା ପ୍ରଭୃତି ସୁବିଧା ଖୁବ୍ ଅଳ୍ପ ଥିଲା । ସବୁଆଡ଼େ ହାଟ, ବଜାର, ମେଳା ଦରିଦ୍ରସମାଜର ପ୍ରତୀକ ଥିଲା । ସହରଗୁଡ଼ିକ ବଡ଼ ବଡ଼ ଗାଁ ପରି ଥିଲା । ସେଥିରେ ନାଲିଗୋଡ଼ି ରାସ୍ତା, ରାତିରେ ମିଞ୍ଜି ମିଞ୍ଜି କିରାସିନ ବତି ଆଲୁଅ, ଦୁର୍ବଳ ଘୋଡ଼ାଗାଡ଼ି, ହାତଟଣା ରିକ୍‌ସା, ଏକବଳଦିଆ ଗାଡ଼ି ଓ ଛୋଟ ଛୋଟ ଦୋକାନ ବଜାର ଥିଲା । ଉଭୟ ସହର ଓ ଗ୍ରାମାଞ୍ଚଳରେ ଲୋକମାନଙ୍କର ଶିକ୍ଷା, ସ୍ୱାସ୍ଥ୍ୟ, ବେଶ ପୋଷାକ, ଖାଦ୍ୟପେୟ, କୁସଂସ୍କାର, ଅନ୍ଧବିଶ୍ୱାସ ପ୍ରଭୃତି ଦୈନନ୍ଦିନ ଜୀବନର ସବୁ ବିଷୟରେ ଦରିଦ୍ର ଓ ଅନୁନ୍ନତ ସମାଜର ଲକ୍ଷଣ ପ୍ରତିଫଳିତ ଥିଲା ।

୧୯୨୦ ମସିହା ପୂର୍ବରୁ ଦୁଃସ୍ଥ ଭାବରେ ଚଳୁଥିବା ଲୋକମାନେ ତାହାର ବିରୋଧରେ ଅଭିଯୋଗ କରିବାକୁ ସାହସ କରୁ ନ ଥିଲେ । ୧୯୨୦ ମସିହା ପରେ ଗାନ୍ଧିଜୀ ସେ ସାହସ ଲୋକମାନଙ୍କୁ ଦେଲେ ଏବଂ ସେମାନେ ସବୁ ପ୍ରକାର ଶୋଷଣ ଓ ଅନ୍ୟାୟ ବିରୋଧରେ ସ୍ୱର ଉତ୍ତୋଳନ କଲେ । ଗାନ୍ଧିଜୀଙ୍କ ଅନୁଗାମୀ ସ୍ୱାଧୀନତା-ସଂଗ୍ରାମୀମାନେ ଲୋକମାନଙ୍କ ମଧ୍ୟରେ ଚେତନା ଓ ଉଚ୍ଚ ଆଶା ଜାଗ୍ରତ କଲେ । ସଂଗ୍ରାମୀମାନେ ପ୍ରଚାର କଲେ ଯେ, ଲୋକମାନଙ୍କର ଦାରିଦ୍ର୍ୟ, ନିରକ୍ଷରତା, ରୋଗ, ଦୁଃଖ, ରାଜା, ଜମିଦାର ଓ ମହାଜନମାନଙ୍କର ଶୋଷଣ ପ୍ରଭୃତି ସମସ୍ତ ପ୍ରକାର ଅନଗ୍ରସରତା ଦେଶର ପରାଧୀନତା ଓ ବିଦେଶୀ ସରକାରଙ୍କ ଶୋଷଣ-ନୀତି ଯୋଗୁଁ ଘଟୁଛି । ଦେଶ ସ୍ୱାଧୀନ ହୋଇଗଲେ ସବୁ ପ୍ରକାର ଦୁର୍ଦ୍ଦଶା ଦୂରୀଭୂତ ହୋଇଯିବ ଏବଂ ଅଳ୍ପକାଳ ପରେ ଦେଶରେ ଏକ ସମୃଦ୍ଧ ଓ ଶୋଷଣ-ବିହୀନ ସମାଜ ପ୍ରତିଷ୍ଠିତ ହେବ ।

## ପ୍ରଗତିର ରୀତି

ଦେଶ ସ୍ୱାଧୀନ ହୋଇଗଲା ଏବଂ ଅଳ୍ପକାଳ ପରେ ଆର୍ଥିକ ଅଭିବୃଦ୍ଧି ଓ ସାମାଜିକ ନ୍ୟାୟ ପ୍ରତିଷ୍ଠା ପାଇଁ ପଞ୍ଚବାର୍ଷିକ ଯୋଜନାମାନ ବହୁ ବାଧା ବିଘ୍ନ ମଧ୍ୟରେ ଗୋଟିକ ପରେ ଗୋଟିଏ କାର୍ଯ୍ୟକାରୀ ହେଲା । ଯୋଜନାବଦ୍ଧ କାର୍ଯ୍ୟକ୍ରମରେ ରାସ୍ତାଘାଟ ନିର୍ମାଣ, ଜଳସେଚନ, ବନ୍ୟାନିୟନ୍ତ୍ରଣ, ବିଦ୍ୟୁତ ଶକ୍ତି ଉତ୍ପାଦନ, ରେଳପଥ ଓ ବିମାନ ଚାଳନାର ପ୍ରସାର, କୃଷି, ଶିଳ୍ପ, ବ୍ୟବସାୟ-ବାଣିଜ୍ୟ ବୃଦ୍ଧି, ଶିକ୍ଷା ଓ ସ୍ୱାସ୍ଥ୍ୟ ସେବାର ପ୍ରସାର ପ୍ରଭୃତି ସବୁ କ୍ଷେତ୍ରରେ ଉନ୍ନତି ପାଇଁ ଉଦ୍ୟମ କରାଗଲା । ସାମାଜିକ ନ୍ୟାୟ ପାଇଁ ରାଜା ଓ ଜମିଦାରମାନଙ୍କର ଲୋପ, ଭୂସଂସ୍କାର ବ୍ୟବସ୍ଥା, ମହାଜନ କାରବାର ଉପରେ କଟକଣା ପାଇଁ ବହୁ ପଦକ୍ଷେପ ନିଆଗଲା । ଭାରତର ଅନ୍ୟ ରାଜ୍ୟମାନଙ୍କ ପରି ଓଡ଼ିଶାର ଗାଁ ଓ ସହରମାନଙ୍କ ରୂପ ଅନେକ ପରିମାଣରେ ବଦଳିଗଲା । ରାସ୍ତାଘାଟର ବହୁ ଉନ୍ନତି ହେଲା, ସବୁ ବଡ଼ ବଡ଼ ନଦୀମାନଙ୍କରେ ପୋଲ ନିର୍ମିତ ହେଲା, ସବୁଆଡ଼େ ସହରମାନଙ୍କରୁ ଗ୍ରାମାଞ୍ଚଳକୁ ବଡ଼ ବଡ଼ ବସ୍ ଓ ଟ୍ରକ୍‌ମାନ ଚାଲିଲା । ହୀରାକୁଦ, ବାଲିମେଳା, ମାଛକୁଣ୍ଡ ଓ ରେଙ୍ଗାଲି ପ୍ରଭୃତି ଜଳସେଚନ ଓ ବିଦ୍ୟୁତ ଉତ୍ପାଦନ ପ୍ରକଳ୍ପମାନ କାର୍ଯ୍ୟକାରୀ ହେଲା । ଗ୍ରାମାଞ୍ଚଳମାନଙ୍କୁ ବିଦ୍ୟୁତ ଯୋଗାଣ କରାଗଲା । ସହର ଓ ଗ୍ରାମମାନଙ୍କରେ ବିଦ୍ୟୁତ ଶକ୍ତିର ବ୍ୟବହାର ଅଭୂତପୂର୍ବ ଭାବରେ ବୃଦ୍ଧି ପାଇଲା । ରେଳଗାଡ଼ି ସଂଖ୍ୟା ବୃଦ୍ଧି ପାଇଲା ଏବଂ ରେଳଷ୍ଟେସନ୍‌ମାନଙ୍କର ରୂପ ବଦଳିଗଲା । ସବୁ ଅଞ୍ଚଳରେ ରେଡ଼ିଓ ଏବଂ ଦୂରଦର୍ଶନର ବ୍ୟବହାର ପ୍ରସାରିତ ହେଲା । ବହୁ ସହରରେ ବଡ଼ ବଡ଼ ଶିଳ୍ପ କାରଖାନାମାନ ବସିଲା । ସ୍କୁଲ, କଲେଜ, ଡାକ୍ତରଖାନାମାନଙ୍କର ସଂଖ୍ୟା ଆଶାତୀତ ଭାବରେ ବଢ଼ିଲା ।

ସହରମାନଙ୍କରେ ଦୋକାନ ଓ ବଜାରମାନ ବଡ଼ ହୋଇଗଲା ଏବଂ ସହର-ମାନଙ୍କରେ ଲୋକସଂଖ୍ୟା ବହୁ ପରିମାଣରେ ବୃଦ୍ଧି ପାଇଲା । ଗାଁ ମାନଙ୍କରେ ମଧ୍ୟ ହାଟ, ବଜାର ଓ ଦୋକାନମାନଙ୍କର ଆକାର ବଡ଼ ହୋଇଗଲା । ଶତାବ୍ଦୀର ଶେଷ ବେଳକୁ ରାଜ୍ୟର ସାମାଜିକ ଓ ଅର୍ଥନୈତିକ ରୂପ ବଦଳିଗଲା । ସବୁ ଦିଗରେ ଆଦିମ ଓ ଦରିଦ୍ର ପରିବେଶ ପରିବର୍ତ୍ତେ ଆଧୁନିକତା ଓ ସ୍ୱଚ୍ଛଳତା ପ୍ରକାଶ ପାଇଲା । ୧୯୪୫ ପୂର୍ବରୁ ଭୁବନେଶ୍ୱର ଓ ରାଉରକେଲା ସହର ନ ଥିଲା । ସେ ସମୟରେ କଟକ, ବାଲେଶ୍ୱର, ସମ୍ବଲପୁର, ଅନୁଗୁଳ ସହର, ଭୁବନେଶ୍ୱର, କଟକ ପ୍ରଭୃତି ରେଲଷ୍ଟେସନ, ଆମ ଅଞ୍ଚଳର ଗ୍ରାମମାନଙ୍କରେ ରାସ୍ତା ଓ ବସ୍ ପ୍ରଭୃତି ଚଳାଚଳ ଅବସ୍ଥା ଆମେ ଯାହା ଦେଖିଥିଲୁ ଏବଂ ବର୍ତ୍ତମାନ ଯାହା ଦେଖୁଛୁ ସେଥିରେ ଆକାଶ ପାତାଳ ପ୍ରଭେଦ ଦେଖାଯାଉଛି ।

ତଥାପି ବର୍ତ୍ତମାନ ସୁଦ୍ଧା ଆଦିବାସୀ ଓ ହରିଜନମାନଙ୍କ ଅବସ୍ଥାରେ ବିଶେଷ ଉନ୍ନତି ହୋଇନାହିଁ । ରାଜ୍ୟର ଆଦିବାସୀବହୁଳ ଅଞ୍ଚଳମାନ ପୂର୍ବପରି ଅନଗ୍ରସର ରହିଛି ଏବଂ ସବୁ ଅଞ୍ଚଳରେ ହରିଜନମାନେ ଅତି ଗରିବ ରହିଛନ୍ତି । ଲୋକମାନେ ରେଡ଼ିଓ, ଟେଲିଭିଜନ ଓ ଖବରକାଗଜମାନଙ୍କ ମାଧ୍ୟମରେ ଜାଣି ପାରୁଛନ୍ତି ଯେ, ପୃଥିବୀର ବିଭିନ୍ନ ଉନ୍ନତ ଦେଶ ଓ ଭାରତର ଉନ୍ନତ ଅଞ୍ଚଳ ତୁଳନାରେ ଆମ ରାଜ୍ୟର ଆର୍ଥିକ ପ୍ରଗତି ଅତି ମନ୍ଥର ହୋଇଛି । ଲୋକମାନଙ୍କର ଦାରିଦ୍ର୍ୟ ଦୂରୀକରଣ ଓ ସ୍ୱଚ୍ଛଳ ଜୀବନ ଆଶା ହତାଶାରେ ପରିଣତ ହୋଇଛି । ଲୋକମାନେ ସେମାନଙ୍କର ଅଭାବ ଓ ଅନାଟନ ବିଷୟରେ ସଚେତନ ହୋଇ ଯାଇଛନ୍ତି । ଜିନିଷପତ୍ରରେ ଅଭାବ ଓ ଦରଦାମ୍‌ର ଅତିବୃଦ୍ଧି ହେତୁ ସେମାନଙ୍କ ମନରେ ଅସନ୍ତୋଷ ଭରିରହିଛି । ଉତ୍ପାଦନ ବଢ଼ିବା ସଙ୍ଗେ ସଙ୍ଗେ ଲୋକସଂଖ୍ୟା ଏତେ ବଢ଼ିଯାଉଛି ଯେ, ଲୋକଙ୍କର ଜୀବନଧାରଣ ମାନରେ ଉନ୍ନତି ହୋଇପାରୁ ନାହିଁ ।

ଯେଉଁମାନେ ଧନୀ ଓ ଶିକ୍ଷିତ, ସେମାନେ ଛଳେ ବଳେ କୌଶଳେ ଏବଂ ନ୍ୟାୟ ବା ଅନ୍ୟାୟ ପନ୍ଥାରେ ଉତ୍ପାଦନର ଅଧିକ ଭାଗ ନେଇଯାଉଛନ୍ତି । ଫଳରେ ଧନୀ ଲୋକ ଅଧିକ ଧନୀ ହୋଇଯାଉଛନ୍ତି ଏବଂ ଧନୀ ଦରିଦ୍ରଙ୍କ ମଧ୍ୟରେ ପାର୍ଥକ୍ୟ ବଢ଼ିଯାଉଛି । ସେହି ରୀତିରେ ଉନ୍ନତ ଅଞ୍ଚଳର ଲୋକମାନେ ଆର୍ଥିକ ପ୍ରଗତି ଓ ଉନ୍ନୟନ କାର୍ଯ୍ୟକ୍ରମମାନଙ୍କର ଅଧିକ ସୁଯୋଗ ନେଉଛନ୍ତି । ସେଥିଯୋଗୁଁ ଉନ୍ନତ ଓ ଅନୁନ୍ନତ ଅଞ୍ଚଳମାନଙ୍କ ମଧ୍ୟରେ ପାର୍ଥକ୍ୟ ମଧ୍ୟ ବଢ଼ିଯାଉଛି । ସମାଜର ସବୁଶ୍ରେଣୀର ଲୋକମାନଙ୍କର ନୈତିକ ମୂଲ୍ୟବୋଧ ହ୍ରାସ ପାଇ ଭ୍ରଷ୍ଟାଚାର ଦୁର୍ନୀତି ଏତେ ବଢ଼ିଯାଇଛି ଯେ, ଧନ, ଶିକ୍ଷା ଓ ବୁଦ୍ଧି ବଳରେ, ସରକାରୀ ଏବଂ ବେସରକାରୀ କଳ ସାହାଯ୍ୟରେ ସବଳ ଲୋକମାନେ ଦୁର୍ବଳ ଲୋକମାନଙ୍କୁ

ଶୋଷଣ କରୁଛନ୍ତି । ସ୍ୱାଧୀନତା ପୂର୍ବରୁ ରଜା, ଜମିଦାର, ମହାଜନ ଓ ସାହୁକାର ପ୍ରଭୃତି ଲୋକେ ଦରିଦ୍ର ଜନସାଧାରଣଙ୍କୁ ଶୋଷଣ କରୁଥିଲେ । ସ୍ୱାଧୀନତା ପରେ ସେହି ପୁରୁଣା ଶୋଷଣକାରୀ ଦଳ ନୂତନ ରୂପରେ ଦରିଦ୍ର ଜନସାଧାରଣଙ୍କୁ ଶୋଷଣ କରୁଛନ୍ତି । ସେ ଶୋଷଣକାରୀଙ୍କ ନୂତନ ରୂପ ହେଉଛି ରାଜନୈତିକ ନେତା, କଳାବଜାରୀ, କଳାଧନ ଠୁଳ କରିଥିବା ବ୍ୟବସାୟୀ ଓ ଶିଳ୍ପପତି ଏବଂ ଦୁର୍ନୀତିଗ୍ରସ୍ତ ସରକାରୀ କର୍ମଚାରୀ । ଶତାବ୍ଦୀର ଶେଷରେ ଏହି ଶ୍ରେଣୀର ଲୋକମାନେ ସମାଜର ସବୁ ସ୍ତରରେ ପ୍ରତିଷ୍ଠା ଲାଭ କରିଛନ୍ତି । ଦରିଦ୍ରଲୋକମାନେ ସେମାନଙ୍କ ସହ କାରବାରରେ ଅସହାୟ ହୋଇ ପଡ଼ୁଛନ୍ତି । ଦାରିଦ୍ର୍ୟ ଦୂରୀକରଣ ଏବଂ ଉନ୍ନୟନ କାର୍ଯ୍ୟପାଇଁ ଖର୍ଚ୍ଚ ହେଉଥିବା ଅର୍ଥର ଅଧିକାଂଶ ଭାଗ ଏହି ଶ୍ରେଣୀର ଲୋକମାନେ ଆତ୍ମସାତ୍ କରୁଛନ୍ତି । ମୂଲ୍ୟବୋଧର ହ୍ରାସ ଓ ଦୁର୍ନୀତି ଯୋଗୁଁ ସମାଜରେ ଚୋରି ଡକାୟତି ଏବଂ ବିଭିନ୍ନ ପ୍ରକାର ହତ୍ୟାକାଣ୍ଡ ଓ ଅପରାଧ ବଢ଼ି ଯାଉଛି । ଶତାବ୍ଦୀର ଶେଷରେ ପ୍ରଗତିର ଗତି ଏହିପରି ହୋଇଛି ।

**ଶିକ୍ଷା ପ୍ରସାର**

ଊନବିଂଶ ଶତାବ୍ଦୀରୁ ବିଂଶ ଶତାବ୍ଦୀର ପ୍ରଥମ ଦଶନ୍ଧି ପର୍ଯ୍ୟନ୍ତ ଓଡ଼ିଶାରେ ଚାରିଆଡ଼େ ଗ୍ରାମ ଓ ସହରମାନଙ୍କରେ ସାମୂହିକ ଓ ବ୍ୟକ୍ତିଗତ ଉଦ୍ୟମରେ ଚାଟଶାଳୀ ପ୍ରଣାଳୀରେ ପ୍ରାଥମିକ ଶିକ୍ଷା ଦିଆ ଯାଉଥିଲା । ବିଂଶ ଶତାବ୍ଦୀର ପ୍ରଥମ ଦଶକ ସମୟରୁ ବ୍ରିଟିଶ ଶାସିତ ଓଡ଼ିଶା ଭୂଭାଗରେ ଗ୍ରାମ ଓ ସହରାଞ୍ଚଳରେ ସରକାରୀ ଉଦ୍ୟମରେ ପ୍ରାଥମିକ ବିଦ୍ୟାଳୟମାନ ପ୍ରତିଷ୍ଠିତ ହୋଇଥିଲା । ମାତ୍ର ସେଗୁଡ଼ିକରେ ପୁରୁଣା ଚାଟଶାଳୀ ପ୍ରଣାଳୀରେ ଶିକ୍ଷା ଦିଆଯାଉଥିଲା । ୧୯୨୨—୨୩ ମସିହା ବେଳକୁ ଆମ୍ଭେମାନେ ଯେତେବେଳେ ପ୍ରାଥମିକ ବିଦ୍ୟାଳୟରେ ପ୍ରବେଶ କଲୁ, ସେତେବେଳକୁ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାମାନଙ୍କରେ ପୁରୁଣାକାଳିଆ ଚାଟଶାଳୀ ଏବଂ ଗ୍ରାମବାସୀଙ୍କ ଦ୍ୱାରା ନିଯୁକ୍ତ ଅବଧାନୀ ପ୍ରଥା ପ୍ରାୟ ଲୋପପାଇ ଯାଇଥିଲା । ଆମ ସମୟରେ ନିମ୍ନ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟମାନ ଲୋକାଲ-ବୋର୍ଡ ଏବଂ ଜିଲ୍ଲାବୋର୍ଡମାନଙ୍କ ଅଧୀନରେ ଥିଲା । ପିଲାମାନେ ବିଭିନ୍ନ ଶ୍ରେଣୀରେ ସରକାରୀ ଅନୁମୋଦିତ ପାଠ୍ୟପୁସ୍ତକ ପଢ଼ୁଥିଲେ । ସେତେବେଳକୁ ପିଲାମାନଙ୍କ ପାଇଁ ପ୍ରାଥମିକ ସ୍ତରରୁ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀ ପର୍ଯ୍ୟନ୍ତ ପଢ଼ିବାର ସୋପାନ ସଙ୍ଗଠିତ ହୋଇ ଯାଇଥିଲା ।

ଆମ ସମୟରେ କଟକ, ପୁରୀ, ବାଲେଶ୍ୱର ଜିଲ୍ଲାରେ ପ୍ରତି ବଡ଼ ବଡ଼ ଗାଁ କିମ୍ବା ଦୁଇ ତିନି ଗୋଟି ଛୋଟ ଗାଁ ପାଇଁ ଗୋଟିଏ ପ୍ରାଥମିକ ବିଦ୍ୟାଳୟ ଥିଲା । ମାତ୍ର ମଧ୍ୟଇଂରାଜୀ ସ୍କୁଲ ସଂଖ୍ୟା ଖୁବ୍ ଅଳ୍ପ ଥିଲା ଏବଂ ଇଂରେଜୀ ଶିକ୍ଷା ପ୍ରସାର ଖୁବ୍ ସୀମିତ ଥିଲା । କଟକ ଜିଲ୍ଲାର କେନାଲ ଜଳସେଚିତ ଆମ ଅଞ୍ଚଳ ଓଡ଼ିଶାର

ଅନ୍ୟ ଅଞ୍ଚଳମାନଙ୍କ ତୁଳନାରେ ଅଧିକ ଉନ୍ନତ ଥିଲା । ତଥାପି ଆମ ଅଞ୍ଚଳରେ ପ୍ରତି ଦଶବାର ମାଇଲ ବ୍ୟବଧାନରେ ଗୋଟିଏ ଲେଖାଏଁ ମଧ୍ୟଇଂରାଜୀ ବିଦ୍ୟାଳୟ ଥିଲା । ଗ୍ରାମାଞ୍ଚଳରେ ପ୍ରାୟ ହାଇସ୍କୁଲ ନଥିଲା । ପ୍ରତି ସବ୍‌ଡିଭିଜନ ମହକୁମାରେ ଗୋଟିଏ ଲେଖାଏଁ ହାଇସ୍କୁଲ ଥିଲା ଏବଂ ଜିଲ୍ଲା ମହକୁମାରେ ଗୋଟିଏ ସରକାରୀ ହାଇସ୍କୁଲ ଥିଲା । ଜିଲ୍ଲା ମହକୁମାମାନଙ୍କରେ ଆଉ ଦୁଇ ତିନି ଗୋଟି ହାଇସ୍କୁଲ ଘରୋଇ ଉଦ୍ୟମରେ ପ୍ରତିଷ୍ଠିତ ହୋଇଥିଲା । ପ୍ରତି ପ୍ରାଥମିକ ସ୍କୁଲରୁ କେବଳ ଦୁଇ ତିନିଜଣ ପିଲା ପ୍ରାଥମିକ ଶିକ୍ଷା ଶେଷ କରି ମାଇନର ସ୍କୁଲରେ ନାମ ଲେଖାଇବାକୁ ଯାଇ ପାରୁଥିଲେ । ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ି ପାସ୍ କରିଥିବା ଅଧିକାଂଶ ପିଲା ଆଉ ଉପରକୁ ପଢ଼ି ନପାରି ଗାଁରେ ରହି ଯାଉଥିଲେ । ପ୍ରତି ମାଇନର ସ୍କୁଲରୁ ମଧ୍ୟ କେବଳ ଦୁଇ ଚାରି ପିଲା ହାଇସ୍କୁଲରେ ପଢ଼ିବାକୁ ଯାଉଥିଲେ ।

ସମଗ୍ର ଜିଲ୍ଲାରେ ହାଇସ୍କୁଲ ସଂଖ୍ୟା ଅତି ଅଳ୍ପ ଥିବାରୁ ଅତି ଅଳ୍ପସଂଖ୍ୟକ ପିଲା ହାଇସ୍କୁଲ ପାଠ ପଢ଼ୁଥିଲେ ଏବଂ ୧୯୩୬ ମସିହା ପର୍ଯ୍ୟନ୍ତ ପୁରା ଓଡ଼ିଶା ଡିଭିଜନରୁ ବର୍ଷକୁ ଏକ ହଜାରରୁ ଅଧିକ ପିଲା ମାଟ୍ରିକୁଲେସନ୍ ପରୀକ୍ଷା ଦେଉ ନଥିଲେ । ସେତେବେଳ ପର୍ଯ୍ୟନ୍ତ ସମଗ୍ର ଓଡ଼ିଶା ଡିଭିଜନ ପାଇଁ ଗୋଟିଏ ମାତ୍ର ସାଧାରଣ କଲେଜ ଥିଲା । ସେ କଲେଜ ଥିଲା ରେଭେନ୍‌ସା କଲେଜ ଏବଂ ସେଥିରେ ପ୍ରତିବର୍ଷ ଆଇ.ଏ. ଓ ବି.ଏ. ଚାରି କ୍ଲାସ୍‌ରେ ପ୍ରାୟ ପାଞ୍ଚଶହ ପିଲା ପାଠ ପଢ଼ୁଥିଲେ । ଆମ ସମୟ ୧୯୩୬ ମସିହାରୁ ୧୯୪୦ ମସିହା ପର୍ଯ୍ୟନ୍ତ ସେଥିରେ ଇଂରାଜୀରେ କେବଳ ଏମ୍.ଏ. କ୍ଲାସ୍ ଥିଲା । ଆଇନ ପଢ଼ିବା କ୍ଲାସ୍ ମଧ୍ୟ ସେହି କଲେଜରେ ଥିଲା । ଏମ୍.ଏ. ଓ ଆଇନ୍ କ୍ଲାସ୍‌ମାନଙ୍କରେ ଅତି ଅଳ୍ପସଂଖ୍ୟକ ପିଲା ପାଠ ପଢ଼ୁଥିଲେ । ସେତେବେଳେ ଓଡ଼ିଶାରେ କୌଣସି ବିଶ୍ୱବିଦ୍ୟାଳୟ ନଥିଲା । ଗଡ଼ଜାତ ସମେତ ସମଗ୍ର ଓଡ଼ିଶାର ସ୍କୁଲ, କଲେଜ ସବୁ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା ।

୧୯୩୦ ମସିହାରୁ ୧୯୪୦ ମସିହା ମଧ୍ୟରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଲୋକମାନେ ମାଧ୍ୟମିକ ଶିକ୍ଷା ପ୍ରସାର କରିବା ପାଇଁ ବିଶେଷ ଆଗ୍ରହୀ ଥିଲେ । ସେମାନେ ଚାନ୍ଦା ଢେଦା କରି ନୂତନ ମଧ୍ୟଇଂରାଜୀ ସ୍କୁଲ ପ୍ରତିଷ୍ଠା ଏବଂ ଅବସ୍ଥିତ ମଧ୍ୟଇଂରାଜୀ ସ୍କୁଲମାନଙ୍କୁ ହାଇସ୍କୁଲରେ ପରିଣତ କରିବାକୁ ଉଦ୍ୟମ କରୁଥିଲେ । ସେମାନେ କିନ୍ତୁ ଘରୋଇ ଉଦ୍ୟମରେ କଲେଜ ପ୍ରତିଷ୍ଠା କରିବାକୁ ସାହସ କରୁ ନଥିଲେ । କାରଣ ଗ୍ରାମଆଡ଼େ ଲୋକମାନଙ୍କର ଧାରଣା ଥିଲା ଯେ, କଲେଜ ଅର୍ଥ ବହୁ ବ୍ୟୟସାପେକ୍ଷ ଉଚ୍ଚ ଶିକ୍ଷାଦାନୀ ଗୋଟିଏ ବୃହତ୍ ଅନୁଷ୍ଠାନ । ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ତାହାପରେ ଦ୍ୱିତୀୟ ବିଶ୍ୱଯୁଦ୍ଧ

ସମୟରେ ୧୯୪୩ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ସେତେବେଳେ ତାହା ଅଧୀନରେ କେବଳ ଛଅଗୋଟି ପ୍ରଥମ ଶ୍ରେଣୀ କଲେଜ ଓ ଓଡ଼ିଶାର ଅଳ୍ପସଂଖ୍ୟକ ହାଇସ୍କୁଲ ଥିଲା । ତେଣୁ ହାଇସ୍କୁଲ ଓ କଲେଜ ସଂଖ୍ୟା ବୃଦ୍ଧି କରି ଉଚ୍ଚ ଶିକ୍ଷା ପ୍ରସାର କରିବା ସରକାରଙ୍କର ଆଭିମୁଖ୍ୟ ହେଲା । ୧୯୪୪ ମସିହାରେ ସମ୍ବଲପୁର, ପୁରୀ ଏବଂ ବାଲେଶ୍ୱରରେ ପ୍ରଥମ ଶ୍ରେଣୀ ସରକାରୀ କଲେଜମାନ ପ୍ରତିଷ୍ଠିତ ହେଲା । ତା'ର ପରେ କୋରାପୁଟ ଜିଲ୍ଲାର ଜୟପୁରଠାରେ କଲେଜ ପ୍ରତିଷ୍ଠିତ ହେଲା ଏବଂ ବଲାଙ୍ଗୀର ଓ ବାରିପଦାରେ ରାଜାମାନେ କଲେଜ ପ୍ରତିଷ୍ଠା କଲେ । ଏସବୁ କଲେଜ ଅବସ୍ଥିତ ହାଇସ୍କୁଲ ଘରମାନଙ୍କରେ ଆରମ୍ଭ ହେଲା । ପରେ ସେ କଲେଜମାନଙ୍କ ପାଇଁ ରେଭେନ୍‌ସା କଲେଜ ପରି ଘରଦ୍ୱାର ନିର୍ମାଣ କରି ସେଗୁଡ଼ିକୁ ବଡ଼ କଲେଜରେ ପରିଣତ କରିବା କଳ୍ପନା ଥିଲା । ମାତ୍ର ତାହା କାର୍ଯ୍ୟରେ ପରିଣତ ହୋଇପାରିଲା ନାହିଁ । ସେ କଲେଜସବୁ ବହୁକାଳଯାଏ ସ୍କୁଲ ଘରମାନଙ୍କରେ କାର୍ଯ୍ୟ କରିବାକୁ ବାଧ୍ୟ ହେଲେ । ସେମାନଙ୍କର ପରିବେଶ ଓ ଆକାର ରେଭେନ୍‌ସା କଲେଜ ପରି ବଡ଼ ହୋଇ ପାରିଲା ନାହିଁ, ଯଦିଓ ସେଗୁଡ଼ିକରେ ଛାତ୍ରଛାତ୍ରୀ ସଂଖ୍ୟା ଦ୍ରୁତଗତିରେ ବୃଦ୍ଧି ପାଇଲା ।

୧୯୬୬ ମସିହାଠାରୁ ଘରୋଇ ଉଦ୍ୟମରେ ବିଭିନ୍ନ ସହରାଞ୍ଚଳ ମହକୁମା ଏବଂ ଅନ୍ୟ ପ୍ରଧାନ ଜନବସତିମାନଙ୍କରେ କଳା, ବିଜ୍ଞାନ ଓ ବାଣିଜ୍ୟ ବିଷୟମାନ ଥାଇ କଲେଜମାନ ପ୍ରତିଷ୍ଠିତ ହେଲା । ସେଗୁଡ଼ିକ ମଧ୍ୟରୁ କେତେକ ଅଳ୍ପବର୍ଷ ମଧ୍ୟରେ ବଡ଼ କଲେଜ ହୋଇଗଲେ, ଆଉ କେତେକ ବହୁକାଳ ସମ୍ବଳ-ବିହୀନ ଶ୍ରେଷ୍ଠ କଲେଜ ରୂପରେ ରହିଲେ । ୧୯୭୯—୮୦ ମସିହା ବେଳକୁ ଗ୍ରାମାଞ୍ଚଳରେ ମଧ୍ୟ ଘରୋଇ କଲେଜମାନ ପ୍ରତିଷ୍ଠା କରିବା ପାଇଁ ଲୋକମାନଙ୍କ ମଧ୍ୟରେ ପ୍ରବଳ ଉଦ୍ଦୀପନା ଦେଖା ଦେଲା । କଲେଜ ପାଇଁ କୌଣସି ଆନୁଷଙ୍ଗିକ ବ୍ୟବସ୍ଥା ନଥାଇ, ବହୁ ଦୁର୍ବଳ ଓ ନାମମାତ୍ର କଲେଜ ପ୍ରତିଷ୍ଠିତ ହୋଇଗଲା । ଲୋକମାନଙ୍କର ଓ ରାଜନୈତିକ ନେତାମାନଙ୍କର ଚାପରେ ପଡ଼ି ରାଜ୍ୟସରକାର ଓ ବିଶ୍ୱବିଦ୍ୟାଳୟମାନ ସେ ସବୁ ଅନୁମୋଦନ କଲେ । ୧୯୮୦ ମସିହାଠାରୁ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ରାଜନୈତିକ ନେତା ଏବଂ ସମାଜସେବୀଙ୍କ ନେତୃତ୍ୱରେ ଲୋକମାନେ ଘରୋଇ ସମ୍ବଳ ଓ ସୁବିଧା-ବିହୀନ ଦୁର୍ବଳ କଲେଜ ସବୁ ପ୍ରତିଷ୍ଠା କଲେ । ସରକାର ଓ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗର ବିରୋଧ ସତ୍ତ୍ୱେ ଏ ଉଦ୍ୟମକୁ ବନ୍ଦ କରିପାରିଲେ ନାହିଁ । ଘରୋଇ ଉଦ୍ୟମରେ ସାଧାରଣ କଲେଜମାନ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଲୋକମାନେ ମଧ୍ୟ ବହୁ ସଂଖ୍ୟାରେ ହାଇସ୍କୁଲ, ଟ୍ରେନିଂ କଲେଜ, ଟ୍ରେନିଂ ସ୍କୁଲ ପ୍ରଭୃତି ପ୍ରତିଷ୍ଠା

କଲେ । ସରକାର ମଧ୍ୟ ଶିକ୍ଷାର ପ୍ରସାର ପାଇଁ ବିଭିନ୍ନ ଅନୁନ୍ନତ ଅଞ୍ଚଳରେ ବହୁ ମଧ୍ୟଇଂରାଜୀ ଓ ଉଚ୍ଚ ଇଂରାଜୀ ବିଦ୍ୟାଳୟମାନ ପ୍ରତିଷ୍ଠା କଲେ ।

୧୯୬୬ ମସିହା ପର୍ଯ୍ୟନ୍ତ ରାଜ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟ ଏକମାତ୍ର ସାଧାରଣ ବିଶ୍ୱବିଦ୍ୟାଳୟ ଥିଲା । ୧୯୬୨ ମସିହାରେ କୃଷି ଓ ବୈଷୟିକ ବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ୧୯୬୭ ମସିହାରେ ସମ୍ବଲପୁର ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା । ୧୯୮୦ ମସିହାରେ ପୁରୀଠାରେ ସଂସ୍କୃତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେଲା ।

ଏହିପରି ଭାବରେ ବିଂଶ ଶତାବ୍ଦୀ ମଧ୍ୟରେ ଅଭୂତପୂର୍ବ ଭାବରେ ଶିକ୍ଷା ପ୍ରସାର ହେଲା । ଶତାବ୍ଦୀର ଶେଷରେ ରାଜ୍ୟରେ ତିନିଗୋଟି ସାଧାରଣ ବିଶ୍ୱବିଦ୍ୟାଳୟ ସମେତ ପାଞ୍ଚଗୋଟି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇଛି । ପ୍ରାଥମିକ ବିଦ୍ୟାଳୟ ସଂଖ୍ୟା ୬୦ ହଜାର, ମାଇନର ସ୍କୁଲ ସଂଖ୍ୟା ବାରହଜାର ଏବଂ ହାଇସ୍କୁଲ ସଂଖ୍ୟା ପ୍ରାୟ ୫୬୦୦ ହୋଇଛି । ସ୍ୱୀକୃତପ୍ରାପ୍ତ ୪୦୦ ସାଧାରଣ କଲେଜ ବ୍ୟତୀତ ଆଉ ପ୍ରାୟ ନୂତନ ୩୦୦ କଲେଜ ପ୍ରତିଷ୍ଠିତ ହୋଇଛି । ପ୍ରାଥମିକ ସ୍କୁଲମାନଙ୍କରେ ପ୍ରାୟ ୩୬ ଲକ୍ଷ, ମାଇନର ସ୍କୁଲମାନଙ୍କରେ ଦଶଲକ୍ଷ ଷାଠିଏ ହଜାର, ହାଇସ୍କୁଲମାନଙ୍କରେ ପ୍ରାୟ ଆଠଲକ୍ଷ ଏବଂ କଲେଜମାନଙ୍କରେ ପ୍ରାୟ ଏକଲକ୍ଷ ତିରିଶ ହଜାର ଛାତ୍ରଛାତ୍ରୀ ପାଠ ପଢ଼ୁଛନ୍ତି । ପାଞ୍ଚହଜାରରୁ ଅଧିକ ଛାତ୍ରଛାତ୍ରୀ ଏମ୍.ଏ., ଏମ୍. ଏସ୍‌ସି. ଶ୍ରେଣୀମାନଙ୍କରେ ପଢ଼ୁଛନ୍ତି । ଶତାବ୍ଦୀର ପ୍ରଥମ ଦଶନ୍ଧରେ ଏକଶହରୁ କମ୍ ପିଲା ମାଟ୍ରିକୁଲେସନ୍ ପରୀକ୍ଷା ଦେଉଥିଲାବେଳେ, ଶତାବ୍ଦୀର ଶେଷ ଦଶନ୍ଧରେ ପ୍ରତିବର୍ଷ ପ୍ରାୟ ସାଢ଼େ ତିନିଲକ୍ଷ ପିଲା ମାଟ୍ରିକୁଲେସନ୍ ପରୀକ୍ଷା ଦେଉଛନ୍ତି । ଶତାବ୍ଦୀର ପ୍ରଥମ ଦଶନ୍ଧରେ ଝିଅମାନେ କିମ୍ବା ଆଦିବାସୀ ହରିଜନ ପରିବାରମାନଙ୍କର ପୁଅ ଝିଅମାନେ ମୋଟେ ପାଠ ପଢୁ ନଥିବା ବେଳେ, ଶତାବ୍ଦୀର ଶେଷରେ ସ୍କୁଲ, କଲେଜ ଛାତ୍ରଛାତ୍ରୀଙ୍କ ମଧ୍ୟରେ ଶତକଡ଼ା ୪୦ରୁ ୫୦ ଭାଗ ଛାତ୍ରୀ ପାଠ ପଢ଼ୁଛନ୍ତି ଏବଂ ଶତକଡ଼ା ପ୍ରାୟ ୨୫ ଭାଗ ଆଦିବାସୀ ଛାତ୍ରଛାତ୍ରୀ ଅଛନ୍ତି । ସ୍ଥୂଳତଃ ଏହା ହେଉଛି ରାଜ୍ୟରେ ବିଂଶ ଶତାବ୍ଦୀରେ ଶିକ୍ଷା ପ୍ରସାରର ଚିତ୍ର ।

ଶିକ୍ଷାର ମାନ

ଶିକ୍ଷା ପ୍ରସାର ଶିକ୍ଷା ପ୍ରଗତିର ମାତ୍ର ଗୋଟିଏ ଦିଗ । ଅନ୍ୟ ଦିଗଟି ହେଉଛି ଶିକ୍ଷାର ବିଷୟବସ୍ତୁ ଏବଂ ମାନ । ବିଂଶ ଶତାବ୍ଦୀରେ ଏ ରାଜ୍ୟରେ ସବୁ ସ୍ତରରେ ଶିକ୍ଷାର ଆଶାନୁରୂପ ପ୍ରସାର ହୋଇଛି, ମାତ୍ର ଶିକ୍ଷାର ମାନ ନୈରାଶ୍ୟଜନକ ହୋଇଛି । ଶତାବ୍ଦୀର ପ୍ରଥମ ଦଶନ୍ଧ ପର୍ଯ୍ୟନ୍ତ ଓଡ଼ିଶାର ସବୁ ଅଞ୍ଚଳରେ ପ୍ରାଥମିକ ଶିକ୍ଷା ଗ୍ରାମଲେକମାନଙ୍କ ଦ୍ୱାରା ପରିଚାଳିତ ଚାଟଶାଳୀ-

ମାନଙ୍କରେ ହେଉଥିଲା । ପୁରାତନ ପ୍ରଣାଳୀରେ ଅବଧାନମାନେ ଚାଟଶାଳୀ-ମାନଙ୍କରେ ଶିକ୍ଷାଦାନ କରୁଥିଲେ ଏବଂ ଚାଟଶାଳୀମାନଙ୍କରେ ପିଲାମାନେ ଅକ୍ଷର, ସନ୍ତରଫଳା, ଯୁକ୍ତାକ୍ଷର, ପଣକଆ, କଡ଼ାଗଣ୍ଡା, ଜମିମାପ, ଟଙ୍କାପଇସା ହିସାବ୍, ପୋଥିରୁ ପୁରାଣ ଭାଗବତ ପଢ଼ିବା, ଲେଖନ ସାହାଯ୍ୟରେ ତାଳପତ୍ରରେ ଲେଖିବା ଏବଂ ଗଣିତ ଓ ମାନସାଙ୍କ ପ୍ରଭୃତି ଶିଖିଯାଉଥିଲେ । ଅବଧାନମାନେ ନିଜେ ଏସବୁ ପାଠ ଭଲରୂପେ ଜାଣିଥିଲେ ଏବଂ ସେଥିଯୋଗୁଁ ଗ୍ରାମଲୋକଙ୍କଠାରୁ ଆଦର ପାଉଥିଲେ । ଅବଧାନମାନେ ପିଲାମାନଙ୍କୁ ପାଠ ଶିଖାଇବା ସଙ୍ଗେ ସଙ୍ଗେ ନିୟମାନୁବର୍ତ୍ତିତା, ଶୃଙ୍ଖଳା, ସାମାଜିକ ବ୍ୟବହାର ପ୍ରଭୃତି ଶିକ୍ଷା ଦେଉଥିଲେ । ପିଲାମାନେ ପାଠରେ ମନ ନଦେଲେ କିମ୍ବା ଶୃଙ୍ଖଳିତ ବ୍ୟବହାର ନକଲେ କଠୋର ଶାରୀରିକ ଦଣ୍ଡ ପାଉଥିଲେ । ସେ ଶାରୀରିକ ଦଣ୍ଡ ମଧ୍ୟ ଅଭିଭାବକମାନେ ଅନୁମୋଦନ କରୁଥିଲେ ।

ଚାଟଶାଳୀମାନଙ୍କରେ ଅଳ୍ପସଂଖ୍ୟକ ପିଲା ପଢ଼ୁଥିଲେ ଏବଂ ସେମାନଙ୍କ ମଧ୍ୟରୁ ବହୁ ପିଲା ଚାଟଶାଳୀ ପାଠ ଶେଷପର୍ଯ୍ୟନ୍ତ ବିଦ୍ୟାଳୟରେ ରହୁ ନଥିଲେ । ମାତ୍ର ଯେଉଁ ଅତି ଅଳ୍ପସଂଖ୍ୟକ ପିଲା ଚାଟଶାଳୀ ପାଠ ଶେଷ କରୁଥିଲେ, ସେମାନେ ଲେଖା ପଢ଼ା ଏବଂ ଗଣିତ, ମାନସାଙ୍କ ଭଲରୂପେ ଶିଖିଯାଉଥିଲେ । ଅବଧାନମାନେ ଶହଶହ ବର୍ଷ ଧରି ଚାଟଶାଳୀ ମାଧ୍ୟମରେ ଲୋକମାନଙ୍କ ମଧ୍ୟରେ ପ୍ରାଥମିକ ଶିକ୍ଷା ଦୃଢ଼ ଭାବରେ ବଞ୍ଚାଇ ରଖିଥିଲେ । ୧୯୨୨।୨୩ ମସିହାବେଳକୁ ଆମ୍ଭେମାନେ ପ୍ରାଥମିକ ସ୍କୁଲରେ ପ୍ରବେଶ କଲା ବେଳକୁ ପୁରୁଣାକାଳର ଚାଟଶାଳୀ ଓ ଗାଁ ଲୋକଙ୍କ ଦ୍ୱାରା ନିଯୁକ୍ତ ଅବଧାନ ପ୍ରଥା ଲୋପ ପାଇଯାଇଥିଲା । ଗାଁମାନଙ୍କରେ ସରକାରଙ୍କ ଦ୍ୱାରା ପ୍ରାଥମିକ ବିଦ୍ୟାଳୟମାନ ପ୍ରତିଷ୍ଠିତ ହୋଇଥିଲା ଏବଂ ପିଲାମାନେ ସରକାରୀ ଅନୁମୋଦିତ ପାଠ୍ୟପୁସ୍ତକମାନ ପଢ଼ୁଥିଲେ । ମାତ୍ର ଶିକ୍ଷକମାନେ ପୂର୍ବର ଚାଟଶାଳୀ ପ୍ରଣାଳୀରେ ଶିକ୍ଷା ଦେଉଥିଲେ ଏବଂ ପ୍ରାଥମିକ ବିଦ୍ୟାଳୟମାନଙ୍କରୁ ଉତ୍ତୀର୍ଣ୍ଣ ହେଉଥିବା ପିଲାମାନେ ପ୍ରାଥମିକ ସ୍ତରର ପାଠ ଭଲରୂପେ ଜାଣି ଯାଉଥିଲେ ।

ସେତେବେଳେ ମାଇନର ଓ ହାଇସ୍କୁଲ ସଂଖ୍ୟା ଅତି ଅଳ୍ପ ଥିଲା । ଯେଉଁ ଅଳ୍ପସଂଖ୍ୟକ ଛାତ୍ର ମାଇନର ଓ ହାଇସ୍କୁଲମାନଙ୍କରେ ପଢ଼ୁଥିଲେ ସେମାନଙ୍କର ପ୍ରାଥମିକ ଶିକ୍ଷା ସୁଦୃଢ଼ ଥିଲା । ମାଇନର ଓ ହାଇସ୍କୁଲମାନଙ୍କରେ ଶିକ୍ଷକମାନେ ନିଷ୍ଠାପର ଭାବରେ ପଢ଼ାଉଥିଲେ ଏବଂ ସ୍କୁଲମାନଙ୍କରେ ଶୃଙ୍ଖଳା ଦୃଢ଼ ଥିଲା । ପିଲାମାନେ ଛାତ୍ରାବାସରେ କିମ୍ବା ବିଭିନ୍ନ ଘରୋଇ ମେସ୍‌ରେ ଦୁଃଖକଷ୍ଟରେ ରହୁଥିଲେ ମଧ୍ୟ ସ୍କୁଲପାଠ ମନୋଯୋଗ ଦେଇ ପଢ଼ୁଥିଲେ । ମାଇନର କିମ୍ବା ମାଟ୍ରିକୁଲେସନ ପାସ୍ କରିଥିବା ପିଲା ଯେଉଁ ସ୍ତରମାନଙ୍କର ପାଠ ଭଲରୂପେ ଜାଣି

ଯାଉଥିଲେ । ୧୯୩୬ ମସିହା ପର୍ଯ୍ୟନ୍ତ ଓଡ଼ିଶା ଭିତରରେ ରେଭେନ୍ସା କଲେଜ ଏକମାତ୍ର ସାଧାରଣ କଲେଜ ଥିଲା । ସେଥିରେ ବର୍ଷକୁ ସର୍ବମୋଟ ପ୍ରାୟ ପାଞ୍ଚଶହ ପିଲା ପାଠ ପଢ଼ୁଥିଲେ । ଭଲ ସ୍ତରରୁ ଗ୍ରୁଣି ହୋଇ ଆସି ପିଲାମାନେ କଲେଜରେ ନାମ ଲେଖାଉଥିଲେ । କଲେଜରେ ନିୟମିତ ଭାବରେ ପାଠ ପଢ଼ା ହେଉଥିଲା ଏବଂ ପୂର୍ଣ୍ଣ ଶୃଙ୍ଖଳା ପ୍ରତିଷ୍ଠିତ ଥିଲା । ପିଲାମାନେ ଛାତ୍ରାବାସମାନଙ୍କରେ ସୁଖରେ ରହୁଥିଲେ । ସୁତରାଂ ଯେଉଁ ଅଳ୍ପସଂଖ୍ୟକ ପିଲି ବି. ଏ. କିମ୍ବା ଏମ୍. ଏ ପାସ କରୁଥିଲେ, ସେମାନେ ସାଧାରଣତଃ ସେହି ସ୍ତରର ଜ୍ଞାନ ଅର୍ଜନ କରୁଥିଲେ ।

ସ୍ୱାଧୀନତା ପରଠାରୁ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ପଚାଶ ବର୍ଷ ମଧ୍ୟରେ ପ୍ରାଥମିକ ବିଦ୍ୟାଳୟଠାରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ସବୁ ସ୍ତରରେ ଶିକ୍ଷାନୁଷ୍ଠାନମାନଙ୍କ ସଂଖ୍ୟା ଅଭୂତପୂର୍ବ ଭାବରେ ବଢ଼ିଗଲା । ଉଭୟ ସରକାରୀ ଓ ଘରୋଇ ଉଦ୍ୟମରେ ହଜାର ହଜାରରେ ସଂଖ୍ୟାରେ ସ୍କୁଲ ଏବଂ ଶହ ଶହ ସଂଖ୍ୟାରେ କଲେଜ ପ୍ରତିଷ୍ଠିତ ହେଲା । ସେ ଗୁଡ଼ିକରେ ଶିକ୍ଷାଦାନ ପାଇଁ ଆବଶ୍ୟକ ଘର, ବେଞ୍ଚ, ଡେସ୍କ, ଲାଇବ୍ରେରୀ, ଲାବୋରେଟରୀ ପ୍ରଭୃତି ନ ଥିଲା । ଶତାବ୍ଦୀ ଶେଷରେ ବହୁ ପ୍ରାଥମିକ ସ୍କୁଲରେ ଘର ନାହିଁ କିମ୍ବା ଆବଶ୍ୟକ ସଂଖ୍ୟକ ଶିକ୍ଷକ ନାହାନ୍ତି । ମାଇନର ଏବଂ ହାଇସ୍କୁଲମାନଙ୍କରେ ଅସ୍ଥାୟୀ ଭଙ୍ଗା ଘରମାନଙ୍କରେ ପାଠ ପଢ଼ାଯାଉଛି । ଆବଶ୍ୟକ ସଂଖ୍ୟକ ଶିକ୍ଷକ ନାହାନ୍ତି ଏବଂ ଲାଇବ୍ରେରୀ, ଲାବୋରେଟରୀ, ଛାତ୍ରାବାସ ଓ ଖେଳପଡ଼ିଆ ପ୍ରଭୃତି କିଛି ନାହିଁ । ୧୯୭୦ ମସିହା ପରେ ପ୍ରତିଷ୍ଠିତ ହୋଇଥିବା ଅଧିକାଂଶ ଘରୋଇ କଲେଜ ମାନଙ୍କର ନିଜର ଘରନାହିଁ । ଅବସ୍ଥିତ ମାଇନର କିମ୍ବା ହାଇସ୍କୁଲ-ମାନଙ୍କରେ ସ୍କୁଲ ସମୟ ପୂର୍ବରୁ କଲେଜ କ୍ଲାସ ହେଉଛି । କଲେଜର ଲାଇବ୍ରେରୀ, ଲାବୋରେଟରୀ, ଛାତ୍ରାବାସ ପ୍ରଭୃତି କିଛି ନାହିଁ । ସେ ସବୁ କଲେଜମାନଙ୍କରେ ଏମ୍. ଏ. ପାସ୍ କରି ବେକାର ହୋଇ ବସିଥିବା ସ୍ଥାନୀୟ କେତେକ ଯୁବକ-ଯୁବତୀମାନଙ୍କୁ ଅସ୍ଥାୟୀ ଭାବରେ ଅତି ଅଳ୍ପ ଦରମାରେ ଅଧ୍ୟାପକ ଓ ଅଧ୍ୟାପିକା ରୂପେ ନିଯୁକ୍ତ ଦିଆଯାଉଛି । ଶିକ୍ଷକମାନଙ୍କର ଚାକିରିରେ ସ୍ଥିରତା ନାହିଁ ଏବଂ ଅତି ଅଳ୍ପ ଦରମା ପାଉଥିବାରୁ ଏବଂ ଶିକ୍ଷାଦାନ ପାଇଁ କଲେଜମାନଙ୍କରେ କୌଣସି ସୁବିଧା ଓ ବାତାବରଣ ନ ଥିବାରୁ ସେମାନେ ବିକଳ୍ପ କର୍ମସଂସ୍ଥାନ ପାଇଁ ସର୍ବଦା ଚେଷ୍ଟା କରୁଛନ୍ତି । ଲାଇବ୍ରେରୀ, ଲାବୋରେଟରୀ ପ୍ରଭୃତି ନ ଥିଲେ ଯେ କୌଣସି ପ୍ରକାରେ ସ୍କୁଲ କାମ ଚଳି ଯାଇପାରେ, ମାତ୍ର କଲେଜ କାମ ଚଳିପାରେ ନାହିଁ । ସୁତରାଂ ଏ ସବୁ କଲେଜ ନାମମାତ୍ର ଚାଲିଛି ଏବଂ ଆବଶ୍ୟକ ପରିମାଣ ଓ ମାନର ପାଠପଢ଼ା ହୋଇ ପାରୁନାହିଁ । ଏହିପରି କଲେଜମାନଙ୍କରେ

ପାଠ ପଢ଼ୁଥିବା ଗ୍ରଛାତ୍ରୀମାନଙ୍କ ଜ୍ଞାନ ଅତି ସୀମିତ ହେଉଛି ଏବଂ ଉଚ୍ଚଶିକ୍ଷାର ମାନ ନିମ୍ନତମ ସ୍ଥାନକୁ ଖସିଯାଉଛି ।

ସ୍ଥାନୀୟ ଲୋକମାନଙ୍କର ଉତ୍ସାହ ଏବଂ ରାଜନୈତିକ ନେତାମାନଙ୍କର ଉଦ୍ୟମରେ ଗ୍ରାମାଞ୍ଚଳରେ ଏହିପରି ଶହ ଶହ କଲେଜ ପ୍ରତିଷ୍ଠିତ ହେଉଛି । ଲୋକମାନଙ୍କର ଓ ରାଜନୈତିକ ନେତାମାନଙ୍କ ଚାପରେ ସରକାର ଓ ବିଶ୍ୱ-ବିଦ୍ୟାଳୟମାନ ଏପରି କଲେଜମାନଙ୍କୁ ଅନୁମୋଦନ ଦେଉଛନ୍ତି । ଲୋକମାନେ ବିଚାର କରିପାରୁନାହାନ୍ତି ଯେ, କଲେଜଟିଏ ପ୍ରତିଷ୍ଠା କରିବାକୁ ହେଲେ କେତେକ ସର୍ବନିମ୍ନ ସମ୍ବଳ, ଘରଦ୍ୱାର, ଉତ୍ତମ ଶିକ୍ଷକ, ଲାଇବ୍ରେରୀ ଓ ଆସବାବ୍‌ପତ୍ର ଆବଶ୍ୟକ । ଏସବୁ ନ ଥାଇ କଲେଜଟିଏ ଆରମ୍ଭ କରିଦେଲେ ଶିକ୍ଷା କୁଶିକ୍ଷାରେ ପରିଣତ ହେବ ଏବଂ ପିଲାମାନଙ୍କୁ ତାର ବିଷମୟ ଫଳ ଭୋଗ କରିବାକୁ ପଡ଼ିବ । ବାସ୍ତବ କ୍ଷେତ୍ରରେ ଏହିପରି ଅସ୍ୱୀକୃତ ଓ ଅନ୍‌ଦର୍ଶନୀୟ କଲେଜର ଛାତ୍ରଛାତ୍ରୀମାନେ ପାଠ ପଢ଼ି ଆବଶ୍ୟକ ଜ୍ଞାନ ଅର୍ଜନ କରି ନ ପାରି ନ୍ୟାୟ ବା ଅନ୍ୟାୟ ଉପାୟରେ ବିଶ୍ୱବିଦ୍ୟାଳୟ କିମ୍ବା ବୋର୍ଡ଼ ପରୀକ୍ଷା ମାନଙ୍କରେ ଉତ୍ତୀର୍ଣ୍ଣ ହୋଇଥିବା ପ୍ରମାଣପତ୍ର ଲାଭ କରିବାକୁ ଇଚ୍ଛା କରୁଛନ୍ତି । ସେମାନଙ୍କ ଅଭିଭାବକମାନେ ମଧ୍ୟ ଆଶା କରୁଛନ୍ତି ଯେ, ସେମାନଙ୍କର ପିଲାମାନେ ପରୀକ୍ଷା-ମାନଙ୍କରେ ପାସ୍ କରିଥିବା ପ୍ରମାଣପତ୍ରମାନ ଲାଭକରି ପାରିଲେ, ସେମାନଙ୍କର କର୍ମସଂସ୍ଥାନର ସୁବିଧା ହୋଇପାରିବ ଏବଂ ସମାଜରେ ସେମାନଙ୍କ ସ୍ଥିତି ଦୃଢ଼ ହେବ ।

ଶିକ୍ଷାଦାନ ପାଇଁ ସୁବିଧା ନ କରି ଶିକ୍ଷା ପ୍ରସାର କରିବାର କେତେକ କୁଫଳ ବର୍ତ୍ତମାନ ଅଧିକାଂଶ ଲୋକ ଅନୁଭବ କରୁଛନ୍ତି । ସ୍କୁଲ କଲେଜରେ ବିଧିବଦ୍ଧ ଭାବରେ ପଢ଼ା ନ ହେବାରୁ ପିଲାମାନେ ଘରୋଇ ଟ୍ୟୁସନ ଉପରେ ନିର୍ଭର କରିବାକୁ ବାଧ୍ୟ ହେଉଛନ୍ତି । ଦରିଦ୍ର ଅଭିଭାବକମାନେ ମଧ୍ୟ ପିଲାମାନଙ୍କ ଘରୋଇ ଟ୍ୟୁସନ ପାଇଁ ଖର୍ଚ୍ଚ କରିବାକୁ ବାଧ୍ୟ ହେଉଛନ୍ତି । ଶିକ୍ଷକମାନେ ଅର୍ଥ-ଲାଳସାରେ ସ୍କୁଲ କଲେଜ ଶ୍ରେଣୀ ଅପେକ୍ଷା ଘରୋଇ ଟ୍ୟୁସନ ଉପରେ ଅଧିକ ସମୟ ଓ ମନୋଯୋଗ ଦେଉଛନ୍ତି । ଘରୋଇ ଟ୍ୟୁସନ ସତ୍ତ୍ୱେ ପିଲାମାନେ ବିଭିନ୍ନ ବିଷୟରେ ଆବଶ୍ୟକ ଜ୍ଞାନ ଲାଭ କରିପାରୁ ନାହାନ୍ତି । ସେଥିପାଇଁ ବୋର୍ଡ଼ ଓ ବିଶ୍ୱବିଦ୍ୟାଳୟ ପରୀକ୍ଷାମାନଙ୍କରେ ବ୍ୟାପକ କପି ହେଉଛି । ସମାଜରେ ସାଧାରଣ ଭାବେ ନୈତିକ ମୂଲ୍ୟବୋଧ ହ୍ରାସ ହେବାରୁ ଅଭିଭାବକ ଓ ଶିକ୍ଷକମାନେ ମଧ୍ୟ ପିଲାମାନଙ୍କୁ ଏପରି ଅନ୍ୟାୟ କାର୍ଯ୍ୟରେ ସାହାଯ୍ୟ କରୁଛନ୍ତି । ସରକାର ଜାଣିଶୁଣି ବିଭିନ୍ନ ଚାପରେ ଏସବୁ ବିଷୟରେ ଉଦାସୀନ ରହୁଛନ୍ତି ।

ଏପରି ଉପାୟରେ ଆଇ. ଏ. କିମ୍ବା ବି. ଏ. ପାସ୍ କରିଥିବା ପିଲା ସାଧାରଣ ଭାବେ ଇଂରାଜୀରେ କିମ୍ବା ନିଜ ମାତୃଭାଷାରେ ପୃଷ୍ଠାଏ କିମ୍ବା ଦୁଇପୃଷ୍ଠା ନିର୍ଭୁଲ ଭାବେ ଲେଖି ପାରୁ ନାହାନ୍ତି । କଲେଜରେ ପଢ଼ିଥିବା ବିଷୟରେ କିମ୍ବା ଅନ୍ୟ ସାଧାରଣ ବିଷୟରେ ସେମାନଙ୍କର ଜ୍ଞାନ ଅତି ସୀମିତ । ସ୍କୁଲ କଲେଜ ମାନଙ୍କରେ ପଢ଼ୁଥିବା ଛାତ୍ରଛାତ୍ରୀଙ୍କ ମଧ୍ୟରୁ କେବଳ ଶତକଡ଼ା ପ୍ରାୟ ପଚିଶଭାଗ ବିଶ୍ୱ-ବିଦ୍ୟାଳୟ କିମ୍ବା ବୋର୍ଡ଼ ପରୀକ୍ଷାମାନଙ୍କରେ ପାସ୍ କରୁଛନ୍ତି । ପାସ୍ କରୁଥିବା ପିଲାଙ୍କ ମଧ୍ୟରୁ ଶତକଡ଼ା ପ୍ରାୟ ପନ୍ଦର କୋଡ଼ିଏ ଭାଗ ପିଲାଙ୍କର ଜ୍ଞାନ ଆବଶ୍ୟକ-ମାନର ବୋଲି ଜଣାଯାଉଛି । ଅନ୍ୟମାନଙ୍କର ଜ୍ଞାନ ଅତି ନିମ୍ନ ସ୍ତରର ।

ଦ୍ୱିତୀୟରେ ଶିକ୍ଷକମାନଙ୍କର ଚାକିରିରେ ସ୍ଥାୟିତ୍ୱ ନ ଥିବାରୁ ଏବଂ ସେମାନେ ନିୟମିତରୂପେ ଦରମା ପାଉ ନ ଥିବାରୁ ସେମାନଙ୍କ ମଧ୍ୟରେ ବ୍ୟାପକ ଅସନ୍ତୋଷ ଭରି ରହିଛି ଏବଂ ଦାବି ହାସଲ କରିବାକୁ ସେମାନେ ବହୁ ସମୟରେ ଆନ୍ଦୋଳନ କରୁଛନ୍ତି । ସ୍କୁଲ କଲେଜରେ ନିୟମିତ ପଢ଼ାପଢ଼ି ନ ହେବାରୁ ଶିକ୍ଷକମାନଙ୍କ ମଧ୍ୟରେ ବ୍ୟାପକ ଅସନ୍ତୋଷ ଥିବାରୁ ଓ ପରିଚାଳନା ସମିତିମାନଙ୍କରେ ବ୍ୟାପକ ଭାବରେ ଦୁର୍ନୀତି ଓ ଦଳାଦଳି ଥିବାରୁ ସ୍କୁଲ କଲେଜର ଛାତ୍ର ଛାତ୍ରୀଙ୍କ ମଧ୍ୟରେ ଚରମ ବିଶୃଙ୍ଖଳା ସୃଷ୍ଟି ହେଉଛି । ରାଜନୈତିକ ନେତା ଓ କର୍ମୀମାନେ ଛାତ୍ରସଂଘ ମାଧ୍ୟମରେ ଏ ବିଶୃଙ୍ଖଳାକୁ ସବୁବେଳେ ଉତ୍ସାହିତ କରୁଛନ୍ତି । ବିଶେଷତଃ କଲେଜମାନ ରାଜନୈତିକ କର୍ମୀ ଏବଂ ସମାଜ-ବିରୋଧୀ ଲୋକମାନଙ୍କର କର୍ମସ୍ଥଳ ହୋଇଛି । ସେଥିରେ ଶିକ୍ଷାର ପରିବେଶ ଓ ବାତାବରଣ ଆଦୌ ନାହିଁ । ଫଳରେ ଛାତ୍ରଛାତ୍ରୀମାନେ ଶିକ୍ଷାନୁଷ୍ଠାନମାନଙ୍କରେ ବିଭିନ୍ନ ବିଷୟରେ ଜ୍ଞାନ ଅର୍ଜନ କରିପାରୁ ନାହାନ୍ତି କିମ୍ବା ଶୃଙ୍ଖଳା ଏବଂ ନୈତିକ ଓ ସାମାଜିକ ମୂଲ୍ୟବୋଧ, କିଛି ଶିକ୍ଷା କରିପାରୁ ନାହାନ୍ତି । ବିଂଶ ଶତାବ୍ଦୀର ଶେଷରେ ଓଡ଼ିଶାରେ ସମସ୍ତ ପ୍ରକାର ଶିକ୍ଷାର ଅଭୂତପୂର୍ବ ପ୍ରସାର ହୋଇଛି ସତ, ମାତ୍ର ଶିକ୍ଷାର ମାନ ଅତି ନିମ୍ନ ହୋଇଛି ଏବଂ ଛାତ୍ରଛାତ୍ରୀମାନେ ନୈତିକ ଓ ସାମାଜିକ ମୂଲ୍ୟବୋଧହୀନ ଏବଂ ବିଶୃଙ୍ଖଳିତ ହୋଇ ଶିକ୍ଷାନୁଷ୍ଠାନ-ମାନଙ୍କରୁ ଉତ୍ତୀର୍ଣ୍ଣ ହେଉଛନ୍ତି ।

**ପୁରାତନ ଓ ନୂତନ ସାମାଜିକ ବ୍ୟାଧି :**

ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ, ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ରାସ୍ତାଘାଟ ନ ଥିଲା କିମ୍ବା ଦୂରସ୍ଥାନମାନଙ୍କୁ ଯିବା ଆସିବା କରିବା ସୁବିଧା ନ ଥିଲା । ସାମାଜିକ ଜୀବନ ଛୋଟ ଛୋଟ ଅଞ୍ଚଳ ମଧ୍ୟରେ ସୀମାବଦ୍ଧ ଥିଲା । ତଥାପି ସାମାଜିକ ଜୀବନର କେତେକ ମୌଳିକ ବିଷୟ ସବୁଆଡ଼େ ପ୍ରାୟ ସମାନ

ଥିଲା । ସବୁଆଡ଼େ ଜାତିଭେଦ ଓ ଛୁଆଁ ଅଛୁଆଁ ଭାବ ଦୃଢ଼ଥିଲା । ଅତି ଅଳ୍ପ ଲୋକଙ୍କ ବ୍ୟତୀତ, ସବୁ ଲୋକଙ୍କର ଧର୍ମ ହିନ୍ଦୁଧର୍ମ ଥିବାରୁ ଦେବଦେବୀ ପୂଜା, ପୂଜାର୍ଚ୍ଚ ପରବ, ବିବାହ, ଉପନୟନ ଏବଂ ଦୈନନ୍ଦିନ ଜୀବନଯାପନ ପଦ୍ଧତି ପ୍ରାୟ ସମାନ ଥିଲା । ରୋଗ ଚିକିତ୍ସା ପାଇଁ କବିରାଜି ଔଷଧ ଏବଂ ଗୁଣି-ଗାରେଡ଼ି ପ୍ରଥା ପ୍ରଚଳିତ ଥିଲା । ଅଧିକାଂଶ ଲୋକ ଅଶିକ୍ଷିତ ଥିବାରୁ ସବୁଆଡ଼େ ବହୁ ପ୍ରକାର କୁସଂସ୍କାର ଓ ଅନ୍ଧବିଶ୍ୱାସ ଥିଲା । କୃଷି ପ୍ରାୟ ସବୁ ପରିବାରର ପ୍ରଧାନ ଆୟସୂତ୍ର ଥିବାରୁ ପାରମ୍ପରିକ ରୂପେ ଲୋକମାନେ ଏକାନ୍ନବର୍ତ୍ତୀ ପରିବାରମାନଙ୍କରେ ବାସ କରୁଥିଲେ । ଉଚ୍ଚ ଜାତିର ଧନୀ ଲୋକମାନେ ସାଧାରଣତଃ ସମାଜର ନେତା ଥିଲେ । ସେମାନେ ସମାଜର ପାରମ୍ପରିକ ନୀତି ଏବଂ ଜୀବନ ଯାପନ ପ୍ରଣାଳୀ ପାଳନ କରିବା ପାଇଁ ସାଧାରଣ ଲୋକମାନଙ୍କୁ ବାଧ୍ୟ କରୁଥିଲେ । ଫଳରେ ବହୁକାଳ ସାମାଜିକ ଜୀବନ ଅପରିବର୍ତ୍ତିତ ଥିଲା । ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ପ୍ରତି ବ୍ୟକ୍ତିର ବୃତ୍ତି, ସମାଜରେ ସ୍ଥାନ, ଅନ୍ୟ ଲୋକଙ୍କ ସହିତ ସମ୍ପର୍କ, ପରିବାର ସଙ୍ଗଠନ ଓ ସମାଜରେ ଚଳିବା ପଦ୍ଧତି ପ୍ରଭୃତି ସମସ୍ତ ବିଷୟ ପରମ୍ପରାଗତ ବନ୍ଧା ନିୟମ ଅନୁସାରେ ସ୍ଥିର ହୋଇଥିଲା । ସାମାଜିକ ଶୃଙ୍ଖଳାରୁ ବାହାରି ଯିବାକୁ ବ୍ୟକ୍ତିର ସାହସ ଓ କ୍ଷମତା ନ ଥିଲା । ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶନ୍ଧି ପର୍ଯ୍ୟନ୍ତ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଶହ ଶହ ବର୍ଷ ଧରି ଚଳିଆସିଥିବା ଏହି ପାରମ୍ପରିକ ସମାଜ ପ୍ରଚଳିତ ଥିଲା । ଏହି ସମାଜର ପ୍ରଧାନ ବ୍ୟାଧିମାନ ଥିଲା ଜାତିଭେଦ ଓ ଛୁଆଁ ଅଛୁଆଁ ଭାବ, ଅନ୍ଧବିଶ୍ୱାସ ଓ ବହୁପ୍ରକାର କୁସଂସ୍କାର ଏବଂ ପାରମ୍ପରିକ ସମାଜପତିମାନଙ୍କର ଅତ୍ୟାଚାର ।

ଶତାବ୍ଦୀର ଦ୍ୱିତୀୟ ଦଶନ୍ଧିର ଶେଷରେ, ୧୯୨୦-୨୧ ମସିହାରେ ଭାରତୀୟ ସମାଜରେ ମହାପୁରୁଷ ଗାନ୍ଧିଜୀଙ୍କ ଆବିର୍ଭାବରେ ଯୁଗାନ୍ତକାରୀ ପରିବର୍ତ୍ତନ ଆରମ୍ଭ ହେଲା । ଗାନ୍ଧିଜୀଙ୍କ ନେତୃତ୍ୱରେ ପରିଚାଳିତ ଅସହଯୋଗ ଆନ୍ଦୋଳନ ଏବଂ ସମାଜ-ସଂସ୍କାର କାର୍ଯ୍ୟକ୍ରମ ଭାରତୀୟ ସମାଜରେ ଶହ ଶହ ବର୍ଷ ଧରି ଚଳି ଆସିଥିବା ଜାତିଭେଦ, ଅସ୍ପୃଶ୍ୟତା, କୁସଂସ୍କାର ଏବଂ ପାରମ୍ପରିକ ନେତୃତ୍ୱ ଉପରେ କଠୋର ଆଘାତ କଲା । ସ୍ୱାଧୀନତା-ସଂଗ୍ରାମୀମାନେ ଏ ସବୁ ବିଷୟରେ ଦେଶର ଚାରିଆଡ଼େ ପ୍ରଚାର କଲେ । ସୁତରାଂ ୧୯୨୦ ମସିହାଠାରୁ ୧୯୫୦ ମସିହା ମଧ୍ୟରେ ପୂର୍ବର ମହାଜନ, ଜମିଦାର ଓ ରକ୍ଷଣଶୀଳ ଲୋକମାନଙ୍କର ନେତୃତ୍ୱ କ୍ରମେ ହ୍ରାସ ପାଇବାକୁ ଲାଗିଲା ଏବଂ ଆଦର୍ଶବାଦୀ ସମାଜ-ସଂସ୍କାରକ ସ୍ୱାଧୀନତା-ସଂଗ୍ରାମୀମାନଙ୍କ ପ୍ରଭାବ ବଢ଼ିଲା । ସ୍ୱାଧୀନତା ପୂର୍ବର ସ୍ୱାର୍ଥତ୍ୟାଗୀ ରାଜନୀତି, ଦେଶବ୍ୟାପୀ ସ୍ୱାଧୀନତା ଅନ୍ଦୋଳନ, ପାଶ୍ଚାତ୍ୟ ଶିକ୍ଷା ପ୍ରଚାର, ଗମନାଗମନ,

ଯୋଗାଯୋଗ ଏବଂ ପ୍ରଚାର ସୁବିଧା ପ୍ରଭୃତି ସମାଜ-ସଂସ୍କାରକ ନୂତନ ନେତୃତ୍ୱ ସପକ୍ଷରେ ଗଲା । ତେଣୁ ସମାଜର ନେତୃତ୍ୱ ପୁରାତନପନ୍ଥୀ ସମାଜପତି ମହାଜନ ଓ ଜମିଦାର ପ୍ରଭୃତିଙ୍କ ହାତରୁ ନୂତନ ଆଦର୍ଶବାଦୀ ଓ ସଂସ୍କାରବାଦୀ ଯୁବ ସଂପ୍ରଦାୟଙ୍କ ହାତକୁ ଗଲା ।

୧୯୫୦ ମସିହା ପରେ କିନ୍ତୁ ଅବସ୍ଥା ବଦଳିଗଲା । ୧୯୫୦ ମସିହା ପରେ ପାର୍ଲିଆମେଣ୍ଟ, ବିଧାନସଭା ଏବଂ ପଞ୍ଚାୟତ ପ୍ରଭୃତି ଲୋକପ୍ରତିନିଧି ସଙ୍ଗଠନମାନଙ୍କ ପାଇଁ ଘନ ଘନ ନିର୍ବାଚନ ହେଲା । ନିର୍ବାଚନରେ ଜୟଲାଭ କରି ସବୁ ସ୍ତରରେ କ୍ଷମତା ଲାଭ କରିବା ପାଇଁ ରାଜନୈତିକ ଦଳମାନେ ଜାତୀୟ ସ୍ତରରୁ ଗ୍ରାମପର୍ଯ୍ୟନ୍ତ ସଙ୍ଗଠନମାନ ଗଢ଼ିଲେ ଏବଂ ବିଭିନ୍ନ ରାଜନୈତିକ ନେତା ପ୍ରତିଷ୍ଠା ଓ କ୍ଷମତା ପାଇଁ ବିଭିନ୍ନ ସ୍ତରରେ ସେମାନଙ୍କ ସମର୍ଥକ କର୍ମୀମାନଙ୍କୁ ପ୍ରସ୍ତୁତ କଲେ । ଗ୍ରାମ ଓ ସହର ସବୁ ଅଞ୍ଚଳରେ ସର୍ବବ୍ୟାପୀ ରାଜନୈତିକ ପ୍ରଭାବ ପ୍ରବେଶ କଲା । ସ୍ୱାଧୀନତା ପୂର୍ବରୁ ରାଜନୈତିକ କର୍ମୀ ଓ ସ୍ୱାଧୀନତା-ସଂଗ୍ରାମୀ ମାନଙ୍କର ସ୍ୱାଧୀନତା ଲାଭ ଏକମାତ୍ର ଉଦ୍ଦେଶ୍ୟ ଥିଲା ଏବଂ ସେମାନଙ୍କ ମନରେ ଧନଲିପ୍ସା ଓ କ୍ଷମତା-ଲିପ୍ସା ପ୍ରାଧାନ୍ୟ ଲାଭ କରି ନ ଥିଲା । ସ୍ୱାଧୀନତା ପରେ କିନ୍ତୁ ଧନ ଓ କ୍ଷମତା-ଲିପ୍ସା ପ୍ରାଧାନ୍ୟ ଲାଭ କଲା । ଦେଶସେବା ଓ ଜନସେବା ନାମରେ ଆତ୍ମସେବା ସବୁବେଳେ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ହେଲା । ନିର୍ବାଚନମାନଙ୍କରେ ଜିତିବା ପାଇଁ ବହୁ ଅର୍ଥବଳ ଓ ଜନବଳ ଆବଶ୍ୟକ ହେଲା । ଗ୍ରାମ ଓ ସହରାଞ୍ଚଳମାନଙ୍କରେ କେବଳ ଧନୀ ଲୋକମାନେ ଏ କାର୍ଯ୍ୟ କରିବାକୁ କ୍ଷମ ହେଲେ । ଉଚ୍ଚଜାତିର ରକ୍ଷଣଶୀଳ ପୁରାତନପନ୍ଥୀଙ୍କର ଆଉ ସମାଜରେ ନେତୃତ୍ୱ ନେବାର ସମ୍ଭାବନା ନ ଥିଲା । ଦରିଦ୍ର ସ୍ୱାର୍ଥତ୍ୟାଗୀ ଆଦର୍ଶବାଦୀ ଲୋକମାନଙ୍କର ଜନ-ସମର୍ଥନ ଲାଭ କରିବାକୁ ସମ୍ବଳ ନ ଥିଲା । ସୁତରାଂ ସେମାନେ ନେତୃତ୍ୱ ହରାଇଲେ । ପୂର୍ବତନ ମହାଜନ, ଜମିଦାର ପ୍ରଭୃତି ଧନୀ ପରିବାରମାନଙ୍କର ଯୁବ ସଂପ୍ରଦାୟ ଏ କାର୍ଯ୍ୟ କରିବାକୁ ସମର୍ଥ ହେଲେ ।

ଜାତୀୟ ରାଜନୈତିକ ଦଳମାନେ ସତ୍ ବା ଅସତ୍ ଉପାୟରେ ବହୁ ଅର୍ଥ ସଂଗ୍ରହ କରି ଗ୍ରାମ ବା ସହରମାନଙ୍କରେ ଜନ-ସମର୍ଥନ ଲାଭ ପାଇଁ ଏହିମାନଙ୍କ ମାଧ୍ୟମରେ ଟଙ୍କା ଖର୍ଚ୍ଚ କଲେ । କ୍ଷମତାରେ ଥିବା ରାଜନୈତିକ ନେତାମାନେ ସେମାନଙ୍କର ଏହି ପ୍ରକାର ସମର୍ଥକମାନଙ୍କୁ କଣ୍ଟ୍ରୋଲ ପଦାର୍ଥ ଦୋକାନ, ମଦ ଦୋକାନ, କଣ୍ଟ୍ରାକ୍ଟର କାମ ପ୍ରଭୃତି ବହୁ ପ୍ରକାର ଅର୍ଥ ଉପାର୍ଜନ କରିବାର ସୁବିଧା ଦେଲେ । ସେମାନେ ବ୍ୟବସାୟୀ, କଣ୍ଟ୍ରାକ୍ଟର, ବସ୍ ଟ୍ରକ୍ କଳ କାରଖାନା-ମାନଙ୍କର ମାଲିକ ହେଲେ ଏବଂ ଧନ ଓ ଜନ ବଳରେ ସରପଞ୍ଚ, ପଞ୍ଚାୟତ

ସମିତି ସଭାପତି, ବିଧାନସଭା କିମ୍ବା ପାର୍ଲିଅମେଣ୍ଟ ସଭ୍ୟ, ମନ୍ତ୍ରୀ ପ୍ରଭୃତି ପଦବୀ ଅଧିକାର କଲେ । ସେମାନେ ହେଲେ ସମାଜର ନୂତନ ନେତା । ସେମାନେ ପୁରାତନ ପରମ୍ପରା କିମ୍ବା କୁସଂସ୍କାରରେ ବିଶ୍ୱାସ କରୁ ନ ଥିଲେ କିମ୍ବା ସେମାନଙ୍କର ନ୍ୟାୟ ଅନ୍ୟାୟ ବିଚାର ବା ଧର୍ମଭୟ ନ ଥିଲା । ଅନ୍ୟ ପକ୍ଷରେ ନୀତିପୂର୍ଣ୍ଣ ଶୃଙ୍ଖଳିତ ଆଦର୍ଶ ସମାଜ ଗଠନ କରିବା ପାଇଁ ସେମାନଙ୍କର ଜ୍ଞାନ, ନୈତିକତା ଓ ନିଷ୍ଠା ନ ଥିଲା । ଯେ କୌଣସି ଉପାୟରେ ଧନ ଓ କ୍ଷମତା ଲାଭ କରିବା ଏମାନଙ୍କର ଉଦ୍ଦେଶ୍ୟ ହେଲା । ୧୯୫୦ ମସିହାଠାରୁ ୧୯୬୭ ମସିହା ପର୍ଯ୍ୟନ୍ତ ସ୍ୱାଧୀନତା ପୂର୍ବ ସମୟର ଆଦର୍ଶ କେତେକ ପରିମାଣରେ ଥିଲା, ଯଦିଓ ତାହା ଧୀରେ ଧୀରେ କ୍ଷୀଣ ହୋଇ ଆସୁଥିଲା । ୧୯୭୦ ମସିହା ପରେ ସେ ପୂର୍ବ ଆଦର୍ଶ ଦ୍ରୁତ ଗତିରେ ଲୋପ ପାଇଗଲା ଏବଂ ଉପରୋକ୍ତ ପ୍ରକାରର ଲୋକ ସମାଜର ସବୁ ସ୍ତରରେ ନେତୃତ୍ୱ ନେଲେ ।

ଶତାବ୍ଦୀର ଆରମ୍ଭରୁ ପରିବାର ସଙ୍ଗଠନ ଓ ମୂଲ୍ୟବୋଧର ପରିବର୍ତ୍ତନ ଧୀରେ ଧୀରେ ଆରମ୍ଭ ହୋଇଥିଲା । ଶତାବ୍ଦୀର ପ୍ରଥମ ଓ ଦ୍ୱିତୀୟ ଦଶନ୍ଧି ପର୍ଯ୍ୟନ୍ତ ଏକାନ୍ନବର୍ତ୍ତୀ ଯୌଥ ପରିବାର ପ୍ରାୟ ସବୁଆଡ଼େ ପ୍ରଚଳିତ ଥିଲା ଏବଂ ପରିବାରର ମୁରବିମାନଙ୍କର କନିଷ୍ଠମାନଙ୍କ ଉପରେ କର୍ତ୍ତୃତ୍ୱ ଥିଲା । କ୍ରମେ କ୍ରମେ ଏକାନ୍ନବର୍ତ୍ତୀ ପରିବାରସବୁ ଭାଙ୍ଗିବାକୁ ଲାଗିଲା । କୃଷି ଓ ଜମି, ପରିବାରର ଏକମାତ୍ର ଆୟର ସୂତ୍ର ହୋଇ ରହିଲା ନାହିଁ । ଶତାବ୍ଦୀର ଶେଷବେଳକୁ ପରିବାରସବୁ ଭାଗ ଭାଗ ହୋଇଗଲା । ପରିବାରର ଯୁବକମାନେ ବିଭିନ୍ନ ସହର ବା ଅନ୍ୟ ଅଞ୍ଚଳରେ ବିଭିନ୍ନ ସୂତ୍ରରୁ ଆୟ କରି ନିଜ ନିଜର ଶ୍ରେଷ୍ଠ ପରିବାରରେ ବାସ କଲେ । ମୁରବିମାନଙ୍କର ସେମାନଙ୍କ ଉପରେ କର୍ତ୍ତୃତ୍ୱ ରହିଲା ନାହିଁ ଏବଂ ମୁରବିମାନଙ୍କ ଠାରୁ ସେମାନଙ୍କର ଚିନ୍ତାଧାରା ଓ ମୂଲ୍ୟବୋଧ ଭିନ୍ନ ହେଲା । ପାରମ୍ପରିକ ମୂଲ୍ୟବୋଧରେ ଧର୍ମଭୟ, ଠାକୁର ଠାକୁରାଣୀଙ୍କ ଉପରେ ବିଶ୍ୱାସ, ଗୁରୁଜନମାନଙ୍କୁ ମାନିବା ଓ ଭକ୍ତି କରିବା, ନିୟମ ଅନିୟମ, ନ୍ୟାୟ ଅନ୍ୟାୟ, ସତ ମିଛ, ପାପ ପୁଣ୍ୟ କଥା ବିଚାର କରିବା ଏବଂ ସମାଜରେ ନିୟମ ମାନି ଚଳିବା ପ୍ରଭୃତି ଚିନ୍ତାଧାରାର ପ୍ରଭାବ ଥିଲା । ଶତାବ୍ଦୀର ଶେଷ ଦଶନ୍ଧିମାନଙ୍କରେ ଏ ଚିନ୍ତାଧାରା ଓ ମୂଲ୍ୟବୋଧର ପ୍ରାୟ ପୂର୍ଣ୍ଣ ଅବକ୍ଷୟ ଘଟିଲା । ପାଶ୍ଚାତ୍ୟ ଶିକ୍ଷା ଓ ପାଶ୍ଚାତ୍ୟ ଲୋକମାନଙ୍କ ଚାଲିଚଳଣି ଆମ ଶିକ୍ଷିତ ଓ ଅର୍ଦ୍ଧଶିକ୍ଷିତ ଲୋକମାନଙ୍କ ଉପରେ ବିଶେଷ ପ୍ରଭାବ ପ୍ରକାଇଲା । ସିନେମା ଓ ଦୂରଦର୍ଶନ ପ୍ରଭୃତି ମାଧ୍ୟମ ଏ ପ୍ରଭାବର ଦ୍ରୁତ ପ୍ରସାରରେ ସାହାଯ୍ୟ କଲା । ଆମ ଦେଶର ଚିରନ୍ତନ ମୂଲ୍ୟବୋଧ ଯୁବକମାନେ ପ୍ରାୟ ଭୁଲିଗଲେ ଏବଂ ପାଶ୍ଚାତ୍ୟ ଲୋକମାନଙ୍କର ବାହ୍ୟ ଆଚାର ବ୍ୟବହାର ଏବଂ ବହୁ ଦୁର୍ଗୁଣ ଦ୍ରୁତ ଗତିରେ ଶିଖିଗଲେ ।

ନୂତନ ସମାଜର ଯୁବକମାନେ ଆମ ପିଲାକାଳ ସମାଜରେ ଚଳୁଥିବା ଲୋକଙ୍କ ପରି ଭଗବାନ୍ଙ୍କୁ ଓ ସ୍ଥାନବଳ ବୁଝନ୍ତି । କାରଣ ସେମାନଙ୍କର ପାରମ୍ପରିକ ମୂଲ୍ୟବୋଧ, ଧର୍ମ ବିଷୟରେ କିମ୍ବା ନ୍ୟାୟ ଅନ୍ୟାୟ ବିଷୟରେ ନାହିଁ । ଯୁବକମାନେ ସ୍କୁଲ କଲେଜରେ ପାଠ ପଢ଼ି ଆବଶ୍ୟକ ଜ୍ଞାନ ଅର୍ଜନ କରିପାରୁ ନାହାନ୍ତି କିମ୍ବା ଶୃଙ୍ଖଳା, ବିନୟ, କର୍ତ୍ତବ୍ୟବୋଧ ପ୍ରଭୃତି ଚରିତ୍ରର ସଦ୍‌ଗୁଣମାନ ଶିକ୍ଷା କରିପାରୁ ନାହାନ୍ତି । କଳୁଷିତ ରାଜନୈତିକ ବାତାବରଣ ମଧ୍ୟରେ ସର୍ବଶ୍ରେଣୀର ନେତୃସ୍ଥାନୀୟ ବ୍ୟକ୍ତିମାନେ ମଧ୍ୟ ସେମାନଙ୍କର ନୈତିକ ମୂଲ୍ୟବୋଧ ଓ ସଦାଚାର ହରାଇଛନ୍ତି । ଅନେକ ସ୍ଥଳରେ ନେତୃସ୍ଥାନୀୟ ବ୍ୟକ୍ତି ଯୁବ ସଂପ୍ରଦାୟକୁ କୁପଥରେ ଅଗ୍ରସର ହେବାକୁ ପ୍ରେରଣା ଦେଉଛନ୍ତି । ଫଳରେ ସମଗ୍ର ସମାଜର ଅଧୋଗତି ଘଟୁଛି ।

ଶତାବ୍ଦୀ ଶେଷରେ ଏହି ଅଧୋଗତିପ୍ରାପ୍ତ ସମାଜରେ କେତେଗୋଟି କୁଲକ୍ଷଣ ସର୍ବଶ୍ରେଣୀର ଲୋକ ଅନୁଭବ କରିପାରୁଛନ୍ତି । ପ୍ରଥମରେ ପାଶ୍ଚାତ୍ୟ ସଭ୍ୟତା ପ୍ରଭାବରେ ପୃଥିବୀର ଅନ୍ୟ ଦେଶର ଲୋକମାନଙ୍କ ସହିତ ଆମ ଦେଶରେ ଧନାଗମ ତୃଷ୍ଣା ସର୍ବପ୍ରଧାନ ପ୍ରବୃତ୍ତି ହୋଇଛି । ଧନ ଅର୍ଜନ ପନ୍ଥାରେ ଲୋକମାନେ କୌଣସି ନୀତି ଅନୀତି, ଆଇନ ବେଆଇନ୍, ନ୍ୟାୟ ଅନ୍ୟାୟ କଥା ବିଚାର କରୁ ନାହାନ୍ତି । ଫଳରେ ଦୁର୍ନୀତି, ବ୍ୟଭିଚାର, ଚୋରି, ଡକାୟତି, ଲାଞ୍ଚ ଓ ମିଛ ପ୍ରଭୃତି କୁବ୍ୟବହାର ସର୍ବଶ୍ରେଣୀର ଲୋକଙ୍କ ମଧ୍ୟରେ ଏବଂ ସର୍ବକାର୍ଯ୍ୟରେ ମାଡ଼ିଯାଉଛି । ଶତାବ୍ଦୀର ଶେଷରେ ନୈତିକ ମୂଲ୍ୟବୋଧର ଅବକ୍ଷୟ ହେତୁ ଦୁର୍ନୀତି ସମାଜର ପ୍ରଧାନ ସମସ୍ୟା ହୋଇଛି । ସମାଜର ଅଳ୍ପସଂଖ୍ୟକ ଲୋକ ଦୁର୍ନୀତିପୂର୍ଣ୍ଣ କାର୍ଯ୍ୟରୁ ମୁକ୍ତ ଅଛନ୍ତି ।

ଦୁର୍ନୀତି ସହିତ ଆଉ ଗୋଟିଏ କୁକାର୍ଯ୍ୟ ଲୋକମାନଙ୍କର ଦୈନନ୍ଦିନ ଜୀବନକୁ ବ୍ୟଥିତ କରୁଛି । ବିବାହ କ୍ଷେତ୍ରରେ ବ୍ୟାପକ ଯୌତୁକ ଆଦାନ ପ୍ରଦାନ ଓ ଯୌତୁକ ପାଇଁ ବ୍ୟାପକ ନାରୀ-ନିର୍ଯ୍ୟାତନା ସମାଜର ସବୁ ଶ୍ରେଣୀର ଲୋକମାନଙ୍କ ମଧ୍ୟକୁ ମାଡ଼ିଯାଇଛି । ପୂର୍ବେ ଯୌତୁକ ପ୍ରଥା ଅଳ୍ପ କେତେକ ଧନୀ ଶ୍ରେଣୀର ଲୋକମାନଙ୍କ ମଧ୍ୟରେ ପ୍ରଚଳିତ ଥିଲା । ବର୍ତ୍ତମାନ ଏହା ଅତି ଦରିଦ୍ରଠାରୁ ଅତି ଧନୀ ପର୍ଯ୍ୟନ୍ତ ସବୁ ଶ୍ରେଣୀର ଲୋକଙ୍କ ମଧ୍ୟରେ ପ୍ରବେଶ କରିଛି । ଏ ପ୍ରଥା ମଧ୍ୟ ଦୁର୍ନୀତି ସହିତ ଓତପ୍ରୋତ ଭାବରେ ଜଡ଼ିତ ଏବଂ ଏକ ସୂତ୍ରରୁ ନିର୍ଗତ । ସେ ସୂତ୍ର ହେଉଛି ଧନଲୋଭ, ଧନାଗମ ତୃଷ୍ଣା ଓ ନୈତିକ ମୂଲ୍ୟବୋଧର ଅବକ୍ଷୟ ।

ତୃତୀୟରେ ଚୋରି, ଡକାୟତି ଓ ହିଂସାକାଣ୍ଡ ପ୍ରଭୃତି ଅପରାଧର ଅତ୍ୟଧିକ ମାତ୍ରାବୃଦ୍ଧି ଲୋକମାନଙ୍କର ମନକୁ ଅସ୍ଥିର କରୁଛି । ସେମାନେ ଦୈନନ୍ଦିନ

ଜୀବନରେ ଧନ ଜୀବନ ନିରାପଦ ନୁହେଁ ବୋଲି ସର୍ବଦା ଭୟ କରୁଥିଲେ । ବ୍ରିଟିଶ ରାଜତ୍ୱ ପୂର୍ବରୁ ଏ ଦେଶରେ ଚୋରି ଡକାୟତି ବ୍ୟାପକ ଥିଲା । ବ୍ରିଟିଶ ଶାସକମାନେ ଦେଶରେ କଠୋର ଆଇନ-ଶାସନ ପ୍ରଚଳନ କରିବାରୁ ଅପରାଧର ମାତ୍ରା • ବହୁଗୁଣରେ କମି ଯାଇଥିଲା । ବର୍ତ୍ତମାନ ଶତାବ୍ଦୀର ଶେଷରେ ଅପରାଧର ମାତ୍ରା ବହୁଗୁଣରେ ବଢ଼ିଯାଇଛି । ଏ ଅପରାଧ ବୃଦ୍ଧି ମଧ୍ୟ ଦୁର୍ନୀତି, ନୈତିକ ମୂଲ୍ୟବୋଧର ଅବକ୍ଷୟ, କଳୁଷିତ ରାଜନୀତି ଏବଂ ଦେଶର ଅର୍ଥନୈତିକ ପରିସ୍ଥିତି ସହିତ ଘନିଷ୍ଠ ଭାବରେ ଜଡ଼ିତ । ଅପରାଧର ପ୍ରଣାଳୀ ପାଶ୍ଚାତ୍ୟ ଦେଶର ନିଉୟର୍କ, ରୋମ୍, ପାରିସ୍ ପରି ବଡ଼ ବଡ଼ ସହରରୁ ଆମ ଦେଶର ବମ୍ବେ, କଲିକତା ପ୍ରଭୃତି ସହରମାନଙ୍କ ମଧ୍ୟଦେଇ ଦେଶର ସବୁ ଅଞ୍ଚଳକୁ ମାଡ଼ିଯାଉଛି । ପ୍ରଚଳିତ ରାଜନୈତିକ ପରିସ୍ଥିତି ଓ ଦୁର୍ନୀତି ଅପରାଧର ପ୍ରସାର ପାଇଁ ଇନ୍ଧନ ଯୋଗାଉଛି ।

ଶତାବ୍ଦୀର ଆରମ୍ଭରେ ଜାତିଭେଦ, ଅସ୍ପୃଶ୍ୟତା, ଅନ୍ଧବିଶ୍ୱାସ, କୁସଂସ୍କାର ଓ ରକ୍ଷଣଶୀଳ ସମାଜପତି ଧନୀ ମହାଜନ, ଜମିଦାରମାନଙ୍କର ଶୋଷଣ ପ୍ରଧାନ ସାମାଜିକ ବ୍ୟାଧିମାନ ଥିଲା । ଶତାବ୍ଦୀ ଶେଷରେ କୁସଂସ୍କାର ଓ ଅନ୍ଧବିଶ୍ୱାସ ବହୁ ପରିମାଣରେ କମିଯାଇଛି । ଅସ୍ପୃଶ୍ୟତା ଲୋପ ପାଇଯାଇଛି । ଜାତିଭେଦ ସମ୍ପୂର୍ଣ୍ଣ ଭାବେ ଲୋପ ପାଇ ନାହିଁ, ମାତ୍ର ଅନେକ ପରିମାଣରେ କୋହଳ ହୋଇଯାଇଛି । ସେହିପରି ସମାଜପତି ମହାଜନ ଜମିଦାରମାନଙ୍କ ଶୋଷଣ ଲୋପ ପାଇଯାଇଛି । ମାତ୍ର ସେଗୁଡ଼ିକର ପରିବର୍ତ୍ତେ ଉଦ୍ଭବ ହୋଇଛି ଦୁର୍ନୀତି, ଯୌତୁକ ପ୍ରଥା, ଅପରାଧ, ଅସାଧୁ ରାଜନୈତିକ ନେତା, ବ୍ୟବସାୟୀ, ଶିଳ୍ପପତି ଓ ସରକାରୀ କର୍ମଚାରୀମାନଙ୍କ ଶୋଷଣ ପ୍ରଭୃତି ନୂତନ ସାମାଜିକ ବ୍ୟାଧି । ଶତାବ୍ଦୀର ଶେଷ-ବେଳକୁ ଆମକାଳ ଲୋକଙ୍କ ଜୀବନ ଶେଷ ହୋଇଯାଉଛି । ଏହି ମାରାତ୍ମକ ସାମାଜିକ ବ୍ୟାଧିଗୁଡ଼ିକ ସହ ଆମରି ବଂଶଧରମାନେ ବିଂଶ ଶତାବ୍ଦୀରୁ ଏକବିଂଶ ଶତାବ୍ଦୀକୁ ପାଦ ପକାଉଛନ୍ତି ।

—*—

